# ବୈଚିତ୍ର୍ୟମୟ ଦେଶ : ଆମେରିକା ଭ୍ରମଣ



ଶାନ୍ତନୁ କୁମାର ଆଚାର୍ଯ୍ୟ

# ବୈଚିତ୍ର୍ୟମୟ ଦେଶ : ଆମେରିକା ଭ୍ରମଣ

 ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

**Baichitramaya desha : America Bhramana**
*by* **Santanu Kumar Acharya**

Publisher : **GRANTHA MANDIR**
Binodebehari, Cuttack-2

Printed at : **Optima offset prints**
Sutahat, Cuttack - 753 001

First Edition : 2015

Price : Rs. 550/-



ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ- ୨

ମୁଦ୍ରଣ : ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍
'ଶ୍ରୀନିବାସ', ସୂତାହାଟ, କଟକ- ୧

ପ୍ରଥମ ସଂସ୍କରଣ : ଫେବୃଆରି, ୨୦୧୫

ମୂଲ୍ୟ : ଟ. ୫୫୦/-
ସାଦାବନ୍ଧେଇ : ୫୦୦/-

# ଉତ୍ସର୍ଗ

ଏହି ପୁସ୍ତକଟି ରଚନା କରିବା ପାଇଁ ଯେଉଁମାନେ ସେମାନଙ୍କ ନନା, ମମି, ଓ ଅଜା-ଆଈଙ୍କୁ ଭାରତରୁ ସୁଦୂର ଆମେରିକା ପର୍ଯ୍ୟନ୍ତ ଦୀର୍ଘ ଦଶହଜାର ମାଇଲର ସେତୁ ନିର୍ମାଣ କୌଶଳର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ସେଇ କୃତୀସନ୍ତାନ ମାନଙ୍କ ପ୍ରସାରିତ ଅଂଜଳି ଉପରେ ଏହି ସାରସ୍ୱତ ପ୍ରସାଦଟିକକ କୃତାର୍ଥତା ସହକାରେ ଅର୍ପଣ କରୁଛୁ ।

ଶାନ୍ତନୁକୁମାର ଆଚାର୍ଯ୍ୟ
ନିରୁପମା ଆଚାର୍ଯ୍ୟ

# ବୈଚିତ୍ର୍ୟମୟ ଦେଶ ଆମେରିକା ଭ୍ରମଣ :

## ସମୟର ଡାକ

ଏକ ସମୟରେ ଆମେରିକା ଭ୍ରମଣକୁ ପାଥେୟ କରି ଭ୍ରମଣକାହାଣୀମାନ ରଚିତ ହୋଇଥିଲା ଯାହା ପଢ଼ିଲେ ମନେହେଉଥିଲା ସ୍ୱର୍ଗ ଆମ ମୁଣ୍ଡ ଉପରେ ଆଉ ନାହିଁ; ତାହା ଚାଲିଆସିଲାଣି ଭୌଗୋଳିକ ପୃଥିବୀ ପୃଷ୍ଠର ଏକ ନିର୍ଦ୍ଦିଷ୍ଟ ଭୂଭାଗକୁ ଯାହାକୁ ବର୍ତ୍ତମାନ କୁହାଯାଉଚି ଭୂସ୍ୱର୍ଗ – ଅର୍ଥାତ୍ ଆମେରିକା ।

ଏହି ଧାରଣାର ବଶବର୍ତ୍ତୀ ହୋଇଥିଲେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟର ଅଧିକାଂଶ ଉଚ୍ଚ-ଶିକ୍ଷିତ ଭାରତୀୟ, ବିଶେଷତଃ ଯୁବପିଢ଼ିର ବ୍ୟକ୍ତିମାନେ । ନିଜ ଜୀବନକାଳରେ ଅନ୍ତତଃ ଥରଟିଏ ପାଇଁ ହେଲେ ବି ଆମେରିକା ଦର୍ଶନରେ ଯିବାକୁ ତୀର୍ଥ ଦର୍ଶନ ପରି ପରମ-ସୌଭାଗ୍ୟର ବିଷୟ ଭାବେ ମନେକରୁଥିଲେ ସେମାନେ । ମୁଁ ମଧ୍ୟ ଏକଦା ଥିଲି ସେଇ ମନୋଭାବାପନ୍ନ ଯୁବଗୋଷ୍ଠୀର ଅନ୍ତର୍ଭୁକ୍ତ । ଫଳରେ ୧୯୫୬ରେ ରେଭେନ୍ସା କଲେଜରୁ କେମିଷ୍ଟ୍ରିରେ ସ୍ନାତକୋତ୍ତର ଡିଗ୍ରୀ ପାଇବା ମାତ୍ରେ ମୁଁ ଖୁବ୍ ଉତ୍ସାହର ସହିତ ଆମେରିକାର କୌଣସି ଏକ ନାମୀ ବିଶ୍ୱବିଦ୍ୟାଳୟରେ ଗବେଷଣା କରି ପି.ଏଚ୍‌ଡି ଡିଗ୍ରୀପାଇଁ ଦରଖାସ୍ତ ପକାଇଥିଲି । କିନ୍ତୁ ସେଥିରେ ଅସଫଳ ହୋଇ ନିଜ ଭାଗ୍ୟକୁ ନିନ୍ଦିବା ହିଁ ସାରହୋଇଥିଲା ।

ସେ ଯାହାହେଉ, ବିଂଶ-ଶତାବ୍ଦୀର ଷଷ୍ଠଦଶକରୁ ଭାରତରେ ଆରମ୍ଭ ହୋଇଥିଲା ଏକ ତୀବ୍ର ସାମାଜିକ-ରାଜନୈତିକ ସମସ୍ୟା ଯାହାକୁ କୁହାଗଲା "ବ୍ରେନ୍‌ଡ୍ରେନ" ! ଏହି ବ୍ରେନ୍‌ଡ୍ରେନ ବା ମେଧା-ନିଷ୍କାସନ ପ୍ରକ୍ରିୟା ସ୍ୱାଧୀନତା ପରବର୍ତ୍ତୀ ତିନି ଚାରି ଦଶନ୍ଧି ଶେଷ ପର୍ଯ୍ୟନ୍ତ, ଅର୍ଥାତ୍ ୧୯୯୦ ଅବଧି ଉଦ୍‌ବେଗଜନକ ଭାବେ ବଳବତ୍ତର ରହିଥିଲା । ସେତେବେଳେ ସାରା ଦେଶରେ ହୁଲସ୍ଥୁଲ୍ ପଡିଲା– ଆମର ବୈଜ୍ଞାନିକ ଆଉ ବୈଷୟିକ ବିଦ୍ୟା ଧୁରନ୍ଧର ଡାକ୍ତର ଇଂଜିନିୟର ସବୁ ତ ପଳେଇଲେ ଆମେରିକା– ଏବେ ଏ ଦେଶ ଚଳିବ କିପରି ? ଏତେ ଅର୍ଥ ବିନିମୟରେ ସେମାନଙ୍କୁ ଉଚ୍ଚ ଶିକ୍ଷା ଓ ତାଲିମ ଦିଆଯିବା ପରେ ସେମାନେ ଯଦି ଦେଶ-ମାତୃକା ପ୍ରତି ତିଳାର୍ଦ୍ଧେ ମମତା ନରଖି ଆମେରିକା ଓ ୟୁରୋପକୁ ବଡବଡ ଚାକିରି ଲୋଭରେ ପଳାଇଗଲେ ତେବେ ଏ ଦେଶରେ ଉଚ୍ଚଶିକ୍ଷାର ବିସ୍ତାର କରି କି ଲାଭ ହେବ, ଏଠାର ଗରିବ ଜନସାଧାରଣଙ୍କର ?

କିନ୍ତୁ ୧୯୯୦ ବେଳକୁ ପରିବର୍ତ୍ତିତ ବିଶ୍ୱ-ରାଜନୀତିରେ ହଠାତ୍ ଅନ୍ୟ ଏକ ପ୍ରକାର ଅପ୍ରତ୍ୟାଶିତ ପରିବର୍ତ୍ତନ ଘଟିଲା । ପୂର୍ବ-ଦଶନ୍ଧିମାନଙ୍କରେ ଭାରତରେ "ବ୍ରେନଡ୍ରେନ"କୁ ନେଇ ହାହାକାର ପଡିବା ପରି ବର୍ତ୍ତମାନ ବିଶ୍ୱର ସର୍ବଶକ୍ତିମାନ ଦେଶ ଆମେରିକାରେ

ଭାରତକୁ ନେଇ ସୃଷ୍ଟିହେଲା କୋକୁଆ ଭୟ ! ସେ ଭୟର ନାମ ଅର୍ଥନୀତି ଭାଷାରେ ହେଲା "ପୁଂଜି ଚାଲାଣ"– Out-sourcing of Capital । ଏ ଭୟର ମୁଖ୍ୟ କାରଣ ହେଲା ଭାରତବର୍ଷ । ସେତେବେଳକୁ ଭାରତରେ ଅର୍ଥନୈତିକ ସଂସ୍କାର କାମ ସରିଥାଏ ଓ ମୁକ୍ତ-ବାଣିଜ୍ୟ ଯୁଗ ଆରମ୍ଭ ହୋଇଥାଏ । ଭାରତ ସେତେବେଳକୁ ସୂଚନା ବିଜ୍ଞାନ ବା ଆଇ.ଟି ଯୁଗର ଗୁରୁ ପାଲଟି ସାରା ବିଶ୍ୱରେ କମ୍ପ୍ୟୁଟର ବିଦ୍ୟାର ଅଗ୍ରଣୀ ଦେଶ ଭାବେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥାଏ । ସେଇସବୁ କାରଣରୁ ପରିବର୍ତ୍ତିତ ପରିସ୍ଥିତିରେ ଆମେରିକାର ଅଧିକାଂଶ ବହୁରାଷ୍ଟ୍ରୀୟ କମ୍ପାନୀ ଆମେରିକାରୁ ନିଜନିଜର ଶିଳ୍ପସଂସ୍ଥାଗୁଡିକୁ ସ୍ଥାନାନ୍ତରିତ କରିଚାଲିଥାନ୍ତି ଭାରତର ବଡବଡ ସହର ବାଙ୍ଗାଲୋର, ହାଇଦ୍ରାବାଦ, ପୁଣେ ପ୍ରଭୃତି ଆଇ.ଟି ଗବେଷଣା ଓ ବ୍ୟବସାୟିକ କେନ୍ଦ୍ରାଂଚଳଗୁଡିକୁ । ତା' ସହିତ ଦ୍ରୁତବେଗରେ ବିସ୍ତାର ଲାଭ କରୁଥାଏ କର୍ମ ନିଯୁକ୍ତି କ୍ଷେତ୍ର ଭାରତରେ– ଆଉ ତେଣେ ଆରମ୍ଭ ହୋଇଥାଏ ମର୍ମନ୍ତୁଦ ଛଟେଇ ପର୍ବ ଆମେରିକାରେ । କାରଣ ସୋଭିଏତ୍ ସଂଘର ପତନ ସହିତ ତାଳଦେଇ ପୃଥିବୀ ପୃଷ୍ଠରୁ ଅସ୍ତଗାମୀ କମ୍ୟୁନିଷ୍ଟ ଆଦର୍ଶବାଦର ପ୍ରକୋପ ହ୍ରାସ ପାଇବାମାତ୍ରେ ଦୀର୍ଘ ପଚାଶ ବର୍ଷ ଧରି ପୃଥିବୀକୁ ଆଚ୍ଛନ୍ନ କରିଥିବା ଶୀତଳଯୁଦ୍ଧର (Cold War) ଘନଘଟା ମଧ୍ୟ ବିଶ୍ୱାକାଶରୁ ହଠାତ୍ ଉଭେଇଗଲା । କିନ୍ତୁ ତଦ୍ୱାରା କମ୍ୟୁନିଜମ୍‌କୁ ସବୁଠାରୁ ବେଶୀ ଭୟ କରୁଥିବା ଓ ଶୀତଳଯୁଦ୍ଧରେ ସବୁଠାରୁ ଅଧିକ ବଳୀୟାନ୍ ପୁଞ୍ଜିବାଦୀ ଶକ୍ତି ଆମେରିକାର ଲାଭବାନ୍ ହେବାର ଆଶା ଆକାଂକ୍ଷା ପରିପୂର୍ଣ୍ଣ ହେବା ପରିବର୍ତ୍ତେ ଓଲଟା ସେ ଦେଶର ଅର୍ଥନୀତି ଉପରେ ଶୂନ୍ୟରୁ ପଡିଲା ଚଡକ । ସେ ସମୟର ବିଶ୍ୱ-ବାଣିଜ୍ୟ ସଂସ୍ଥା ଦ୍ୱାରା ଆଗତ ଗ୍ଲୋବାଲାଇଜେସନ୍ ଚୁକ୍ତି ଜରିଆରେ ଭାରତ ଓ ଚୀନ୍ ଭଳି ବିକାଶଶୀଳ ଦେଶମାନଙ୍କୁ ଚୁକ୍ତିବଦ୍ଧ କରିସାରି ସେସବୁ ଗରିବ ଦେଶରେ ବିକଶିତ ଦେଶମାନେ ନିଜର ବିପଣି ବିସ୍ତାରର ସ୍ୱପ୍ନ ଧୂଳିସାତ୍ ହେଇଗଲା, ଶୀତଳ ଯୁଦ୍ଧର ଅବସାନ ଘଟିବା ପରେ ପରେ । ସେଥିରେ ସର୍ବାଧିକ କ୍ଷତି ଘଟିଥିଲା ଆମେରିକାର । କାରଣ ଶୀତଳ ଯୁଦ୍ଧ ପାଇଁ ଆବଶ୍ୟକ ଯୁଦ୍ଧ ସରଂଜାମ ତିଆରି କାରଖାନା (War Industries) ସବୁ ରାତାରାତି ନିଜନିଜ ଶିଳ୍ପର ଉତ୍ପାଦନ ପ୍ରକ୍ରିୟା ବନ୍ଦ କରିଦେବାକୁ ବାଧ୍ୟହେଲେ । ଶୀତଳ ଯୁଦ୍ଧହିଁ ଥିଲା ଆମେରିକାର ଶିଳ୍ପ ସମୃଦ୍ଧିର ମୂଳ କାରଣ, ଯାହାର ଅବସାନ ଅନ୍ତେ ଯୁଦ୍ଧାସ୍ତ୍ର ଉତ୍ପାଦନ ହୋଇପଡିଲା ସଂପୂର୍ଣ୍ଣ ଅନାବଶ୍ୟକ ଓ ଅବାନ୍ତର ! ତା'ପରେ ଆରମ୍ଭ ହେଲା ବଡବଡ କଂପାନୀମାନଙ୍କର ଭାଳେଣି । କାରଖାନା ବନ୍ଦ ହେବା ପରେ ଚାଲିଲା ଚାକିରିରୁ ଛଟେଇ ପ୍ରକ୍ରିୟା । କଂପାନୀ ମାଲିକମାନେ ସବା ପ୍ରଥମେ ନିଜନିଜ କାରଖାନାର ବଡବଡ ମୁଣ୍ଡିଆଳ ମ୍ୟାନେଜର୍ ର୍‍ୟାଙ୍କ୍‌ର ପୋଷ୍ଟ୍‌ରୁ ଆରମ୍ଭ କରୁଥାନ୍ତି ଛଟେଇ ।

ଆମେରିକାର ଅର୍ଥନୀତି ତଥା ସାମାଜିକ ସମସ୍ୟାର ଏଇ ଘୋର ଦୁର୍ଦ୍ଦିନ ସମୟରେ, ୧୯୯୩ରେ, ଆମେରିକା ଭ୍ରମଣର ପ୍ରଥମ ସୁଯୋଗ ପହଂଚିଲା ମୋ ଭାଗ୍ୟରେ । ଅବଶ୍ୟ ସେଇ ବର୍ଷଟି ଥିଲା ୧୮୯୩ରେ ସ୍ୱାମୀ ବିବେକାନନ୍ଦଙ୍କର ବିଖ୍ୟାତ ଆମେରିକା ଯାତ୍ରାର

ଶତବାର୍ଷିକୀ । କିନ୍ତୁ ସେବର୍ଷ ମୁଁ ସେ ଦେଶର ମାଟିରେ ପାଦ ରଖିବା ସମୟରେ କାନରେ ପଡିଲା ହାହାକାର– ଆଜି ଅମୁକ ବହୁରାଷ୍ଟ୍ରୀୟ କଂପାନୀ ତ କାଲି ସମୁକ ବହୁରାଷ୍ଟ୍ରୀୟ ଶିଳ୍ପୋଦ୍ୟୋଗରୁ ପ୍ରେସିଡେଂଟ୍ ଓ ଭାଇସ୍ ପ୍ରେସିଡେଂଟ୍ ର୍ୟାଙ୍କ୍‌ର ମୁଣ୍ଡିଆଳ ଅଫିସର୍‌ମାନେ ରିଟ୍ରେଂଚ୍‌ମେଂଟ୍ ନୋଟିସ୍ ପାଇ ଘରେ ବସିଲେଣି । ପୁଣି, ସେମାନଙ୍କ ଭିତରୁ କେତେକ ରିଟ୍ରେଂଚ୍‌ମେଂଟ୍ ନୋଟିସ୍ ପାଇବାର ଅଳ୍ପ ସମୟ ମଧ୍ୟରେ ଛାତିରେ ତୀବ୍ର ଯନ୍ତ୍ରଣା ଅନୁଭବ କରି ଆମ୍ବୁଲାନ୍ସରେ ହସ୍‌ପିଟାଲ୍ ବୁହା ହେଲେଣି ଓ ସେମାନଙ୍କ ଭିତରୁ ଅନେକ ହତଭାଗ୍ୟ ବ୍ୟକ୍ତି ହସ୍‌ପିଟାଲ୍‌ରେ ପହଂଚିବା ପୂର୍ବରୁ ଅଧା ବାଟରେ "ମାସିଭ୍ ହାର୍ଟ ଆଟାକ୍"ରେ ଆକ୍ରାନ୍ତ ହୋଇ ଶେଷ ନିଶ୍ୱାସ ତ୍ୟାଗ କଲେଣି । ଏହି ଦୁଃସଂବାଦ ସବୁ ସେତେବେଳେ ନିୟମିତ ଭାବେ ଆମେରିକାର ପ୍ରତ୍ୟେକ ଟିଭି ଚାନେଲ୍‌ରେ ସଂପ୍ରସାରିତ ହେଉଥାଏ– ମୋର ସେ ବର୍ଷ ଆମେରିକାରେ ଜୁଲାଇରୁ ଅକ୍ଟୋବର ଚାରିମାସ ରହଣି ସମୟ ଗୋଟାକଯାକ ।

ସେତେବେଳକୁ ବର୍ଷକ ପୂର୍ବରୁ ମୁଁ ସରକାରି ଚାକିରିରୁ ଅବସର ନେଇସାରିଥାଏ । ସେ ବୟସରେ ଆମେରିକାର କୋଉ ବିଶ୍ୱବିଦ୍ୟାଳୟରେ ପାଠ ପଢିବା ବା ଗବେଷଣା କରିବାର ସ୍ୱପ୍ନ ମୋର ନଥାଏ । କିନ୍ତୁ ଜଣେ ଲେଖକ ଭାବେ ପିଲାଦିନୁ ଭୂସ୍ୱର୍ଗ ଆମେରିକା ପ୍ରତି ରହିଥିବା ମୋର କୌତୂହଳ ଆଦୌ ମରିଯାଇ ନଥାଏ; ବରଂ ଆମେରିକା ଦର୍ଶନ ପାଇଁ ପୁଂଜୀଭୂତ ଅଭିଳାଷ ଯୁବସୁଲଭ ଉନ୍ମାଦନା ନେଇ ମୋ ଅନ୍ତର ଭିତରେ ମୁଣ୍ଡଟେକି ଉବୁଟୁବୁ ହେଉଥାଏ । ତେଣୁ ଆମେରିକା ମାଟିରେ ପାଦ ରଖିବା ପର ମୁହୂର୍ତ୍ତରୁ ହିଁ ମୁଁ ସେଇ ଭୂସ୍ୱର୍ଗର ପ୍ରତ୍ୟେକଟି ଦିଗ ପ୍ରତି ସଜାଗ ଦୃଷ୍ଟି ଦେବାକୁ ଆରମ୍ଭ କଲି ଓ ସେ ଦିଗରେ ଏକ ତାତ୍ତ୍ୱିକ ଜିଜ୍ଞାସାପୂର୍ଣ୍ଣ ଅନ୍ୱେଷଣ ମଧ୍ୟ ଆରମ୍ଭ କରିଦେଲି । ସେ ଅନ୍ୱେଷଣରୁ ମୁଁ ଯାହା ଉପଲବ୍ଧି କଲି ତାକୁ ହିଁ ଭିତ୍ତିକରି ଉପସ୍ଥିତ ଭ୍ରମଣ ବୃତ୍ତାନ୍ତଟି ପ୍ରସ୍ତୁତ କରିଛି ।

୧୯୯୩ରୁ ୨୦୧୩ ଭିତରେ ମୁଁ ସମୁଦାୟ ଛଅ ଥର ସପରିବାର ଆମେରିକା ଭ୍ରମଣର ସୁଯୋଗ ପାଇଛି । ସେ ଭିତରୁ ପ୍ରଥମ ପାଂଚ ଥରର ଅଭିଜ୍ଞତାକୁ ସଂକଳ କରି ରୂପାୟିତ କରିବାର ଯଥା ସାଧ୍ୟ ପ୍ରୟାସ କରିଛି ଏ ପୁସ୍ତକରେ । ପ୍ରତି ଥରର ଭ୍ରମଣ ସମୟରେ ମୁଁ ମୋର ପତ୍ନୀ ନିରୁପମା ଏବଂ ଆମେରିକାରେ ପ୍ରବାସୀ ଭାରତୀୟ (NRI) ଭାବେ ବସବାସ କରୁଥିବା ମୋର ତିନି କନ୍ୟା, ଜାମାତା ଏବଂ ପାଂଚଜଣ ନାତିନାତୁଣୀଙ୍କ ଗହଣରେ ଏ ବିଶାଳ ମହାଦେଶର ବହୁ ସ୍ଥାନ ଭ୍ରମଣ କରିଛି । ଏ ବିରାଟ ଭୂଖଣ୍ଡର ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଚାରିଦିଗରେ ବିଛେଇ ହେଇ ରହିଥିବା ଅନେକ ଦର୍ଶନୀୟ ସ୍ଥାନ ଆମେ ଭ୍ରମଣ କରିଛୁ । କେତେକ ବଡବଡ ସହରର ହିନ୍ଦୁ ମନ୍ଦିରମାନଙ୍କରେ ପ୍ରତିଷ୍ଠିତ ଜଗନ୍ନାଥ ମହାପ୍ରଭୁଙ୍କ ବାର୍ଷିକ ରଥଯାତ୍ରା ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେବା ସହିତ ଅନେକ ସାଂସ୍କୃତିକ ସଭାରେ ଭାଷଣ ଦେବା ସୁଯୋଗରେ ସେଠାର ପ୍ରବାସୀ ଓଡିଆ ଓ ଭାରତୀୟ ବୁଦ୍ଧିଜୀବୀଙ୍କ ସହିତ ମତ ବିନିମୟ କରିବାର ସୁଯୋଗ ପାଇଛି ।

କିନ୍ତୁ ଏ ପୁସ୍ତକରେ ବର୍ଣ୍ଣିତ ମୋର ଏକାଧିକ ବାର ଆମେରିକା ଭ୍ରମଣର ସର୍ବାଧିକ

ଉଲ୍ଲେଖନୀୟ ଲକ୍ଷ୍ୟଟି ଥିଲା ଏ ବିଶାଳ ମହାଦେଶର କେତେକ ଚରମ ବିସ୍ମୟକର ସ୍ଥାନ ସ୍ୱଚକ୍ଷୁରେ ଦେଖି ଆମେରିକାର ଭୂସ୍ୱର୍ଗ ଉପାଧିର ଯଥାର୍ଥତା ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିବା । ଈଶ୍ୱରଙ୍କ କୃପା ଓ ଏ ଦେଶରେ ଦୀର୍ଘ ବର୍ଷଧରି ରହି ଆସିଥିବା ମୋର ପିଲାମାନଙ୍କ ସ୍ନେହଶ୍ରଦ୍ଧାପୂର୍ଣ୍ଣ ସହଯୋଗ ଫଳରେ ଆମେ ସେ ଦେଶର ବିଭିନ୍ନ ରାଜ୍ୟରେ ଥିବା କେତେକ ବିଖ୍ୟାତ ପ୍ରାକୃତିକ ବିସ୍ମୟ-ଭରା ସ୍ଥାନ ଭ୍ରମଣ କରିବାରେ ସକ୍ଷମ ହୋଇଛୁ । ସହୃଦୟ ପାଠକ-ପାଠିକା ସେସବୁ ସ୍ଥାନର ପ୍ରାକୃତିକ ତଥା ମହାଜାଗତିକ ତାତ୍ପର୍ଯ୍ୟ ଏହି ଭ୍ରମଣ ବୃତ୍ତାନ୍ତରୁ ଉପଲବ୍ଧି କରିବେ ବୋଲି ଆଶା କରୁଚି ।

ଏଠାରେ ଏହି ଭ୍ରମଣ ବୃତ୍ତାନ୍ତର ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଦିଗ ସଂପର୍କରେ କିଂଚିତ୍ ସୂଚନା ଦେବା ଉଚିତ୍ ମନେକରୁଚି । ୧୯୯୩ରୁ ୨୦୧୪ ଭିତରେ ବାରମ୍ବାର ଆମେରିକା ଭ୍ରମଣ ସମୟରେ ମୁଁ ଆମେରିକାର ବିଭିନ୍ନ ଜନଗୋଷ୍ଠୀର ନିକଟତମ ସଂସ୍ପର୍ଶରେ ଆସିଛି । ଏମାନଙ୍କ ଭିତରେ ଆମ ପ୍ରବାସୀ ଭାରତୀୟଙ୍କ ବ୍ୟତୀତ ଅଛନ୍ତି ଅବିକଳ ଭାରତୀୟ ଚେହେରାର କିଛି ଲୋକ ଯାହାଙ୍କୁ ଆମେ କହୁ ଲୋହିତ ଭାରତୀୟ ବା Red Indians, ସ୍ଥାନୀୟଭାବେ ଏମାନଙ୍କର ପରିଚୟ ହେଲା– 'ଆମେରିକାନ୍ ଇଣ୍ଡିୟାନ୍ସ୍' (American Indians) । ଏହି ଗୋଷ୍ଠୀର ସଂସ୍ପର୍ଶରେ ଆସିବା ପରେ ଲକ୍ଷ୍ୟ କରିଛି ସେମାନଙ୍କ ଶାରୀରିକ ଗଠନ, ଶରୀରର ବର୍ଣ୍ଣ ଏବଂ ଚେହେରାର ଆଶ୍ଚର୍ଯ୍ୟଜନକ ସାମଂଜସ୍ୟ ଆମ ଓଡିଶାର ଅଣଆଦିବାସୀ (ଆଦିବାସୀ ବା ଗିରିଜନ ନୁହେଁ) ଜନସାଧାରଣଙ୍କ ସହିତ । ପୁଣି ବିସ୍ମିତ ହେଲି– ଏହି ଆମେରିକାନ୍ ଇଣ୍ଡିୟାନ୍ ସଂପ୍ରଦାୟର ଉପାସ୍ୟ ଦେବତା ବା ଇଷ୍ଟଦେବଙ୍କ ରୂପ ସହିତ ଆମ ଓଡିଆଙ୍କ ଉପାସ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ରୂପର ଅଦ୍ଭୁତ ସାମଂଜସ୍ୟ ଦେଖି ଓ ତାର ତାତ୍ପର୍ଯ୍ୟ ହୃଦୟଙ୍ଗମକରି । ମୋତେ ଏହି ବିସ୍ମୟ ଘାରିଥିଲା ୧୯୯୩ରେ, ପ୍ରଥମ ଆମେରିକା ଭ୍ରମଣ ସମୟରେ, ନ୍ୟାସ୍‌ଭିଲ୍ ସହରରେ ପ୍ରତିଷ୍ଠିତ ହିନ୍ଦୁ ମନ୍ଦିର ପକ୍ଷରୁ ଅନୁଷ୍ଠିତ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ଅନ୍ତରାଳରେ । ସେଦିନ ସାନ୍ଧ୍ୟ ସଭାରେ ଅତିଥି ଭାବେ ମୋର ବକ୍ତବ୍ୟ ଶୁଣୁଥିବା ଓ ସଭାର କାର୍ଯ୍ୟକ୍ରମର ଭିଡିଓ ଚିତ୍ର ଉତ୍ତୋଳନ କରୁଥିବା ଜଣେ ସ୍ଥାନୀୟ ଆମେରିକାନ୍ ଇଣ୍ଡିୟାନ୍ ଭଦ୍ରଲୋକ ସଭାକାର୍ଯ୍ୟ ଶେଷ ହେବା ପରେ ମତେ ବଧେଇ ଜଣେଇବାକୁ ଆସିଲେ । ସଭାଗୃହର ମଣ୍ଡପ ଉପରେ ଆସୀନ ଚତୁର୍ଦ୍ଧା-ମୂର୍ତ୍ତି ମଧ୍ୟରୁ ଜଗନ୍ନାଥଙ୍କୁ ଲକ୍ଷ୍ୟକରି ସେ ମୋ କାନରେ କହିଲେ– "ମୋ ନାଁ 'ଓଚିଓନି'–ଆମ ଭାଷାରେ ଏହାର ଅର୍ଥ ହେବ 'ଏକଚକ୍ଷୁ' । ତମେ ତମ ଠାକୁରଙ୍କ ବିଷୟରେ ଯାହା ସବୁ କହିଲ ସେଥିରୁ ମନେହେଉଚି ଏ ଠାକୁର ତୁମର ଇଷ୍ଟଦେବ । କିନ୍ତୁ ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହୋଇପାର ଯେ ତମର ଏ ଠାକୁର ମଧ୍ୟ ଆମ ଆମେରିକାନ୍ ଇଣ୍ଡିୟାନ୍‌ଙ୍କ ଇଷ୍ଟଦେବ । ଆମ ଗାଁ (ଚେରୋକି)କୁ ଥରେ ଆସିଲେ ମୁଁ ତୁମକୁ ଦେଖେଇଦେବି କେମିତି ଆମେ ଏ ମୂର୍ତ୍ତିକୁ ଆମ ଗାଁ ମୁଣ୍ଡ ଟୋଟେମ୍ ଖୁଂଟରେ ଖୋଦେଇ କରି ରଖିଚୁ ଓ ପୂଜା କରୁଚୁ. . ."

ଓଚିଓନିଙ୍କ କଥା ମତେ ବିସ୍ମିତ କରିଥିଲା; କିନ୍ତୁ ମୁଁ ସେଥର ସେମାନଙ୍କ ଗାଁ ବା

'ଚେରୋକି'କୁ ଯାଇ ପାରି ନଥିଲି । ଏହାର ଚାରିବର୍ଷ ପରେ ୧୯୯୭ରେ ଦ୍ୱିତୀୟ ଥର ଆମେରିକା ଭ୍ରମଣ ସମୟରେ ଆସିଲା ଏକ ସୁଯୋଗ । ସେଥର ଗ୍ରୀଷ୍ମଋତୁରେ କନେକ୍ଟିକଟ୍ ରାଜ୍ୟର ଆଭ୍ୟନ୍ତରୀଣ ଏକ ଗଭୀର ଅରଣ୍ୟ ଭିତରେ ସ୍ଥାନୀୟ ଆଦିବାସୀଙ୍କ ଗୋଟିଏ ବଡ ସାଂସ୍କୃତିକ ମେଳା ହେଉଥାଏ । ସେ ମେଳା ଦେଖିବାକୁ ଆମେ ସେଠାକୁ ଗଲୁ । ସେ ଏକ ଦୁର୍ଗମ ସ୍ଥାନ । ତଥାପି ସେଠାରେ ମେଳା ସ୍ଥାନରେ ପହଂଚି ଯାହା ଦେଖିଲି ସେସବୁର ଟିକିନିଖି ବିବରଣୀ ଏ ବହିରେ ଦିଆଯାଇଛି । କିନ୍ତୁ ସେଥର ଆମର ଚରମ ବିସ୍ମୟକର ଆବିଷ୍କାରଟି ଥିଲା– ମେଳା ପଡିଆ ନିକଟରେ ଅବସ୍ଥିତ ଆମେରିକାନ୍ ଇଂଡିୟାନ୍‌ମାନଙ୍କର ଏକ ସାଂସ୍କୃତିକ ସଂଗ୍ରହାଳୟ ବା ମ୍ୟୁଜିୟମ୍ ଭିତରେ ସେମାନଙ୍କର ଇଷ୍ଟଦେବଙ୍କର ପ୍ରତିକୃତି ସହିତ ହଠାତ୍ ମୁହାଁମୁହିଁ ଭେଟ ! ତାହା ଥିଲା ସେଦିନ ଆମ ଦଳରେ ଥିବା ପତ୍ନୀ ନିରୁପମା ଓ କନ୍ୟା ନିବେଦିତା ସମେତ ଆମ ସମସ୍ତଙ୍କ ପାଇଁ ସଂପୂର୍ଣ୍ଣ ଅପ୍ରତ୍ୟାଶିତ । ଆମେ ଅବାକ୍ ହେଇ ଚାହିଁ ରହିଲୁ ସଂଗ୍ରହାଳୟର ବିଶାଳ ପ୍ରବେଶ ଦ୍ୱାରର ଚଉକାଠ ଉପରେ ପ୍ରତିଷ୍ଠା ପାଇଥାନ୍ତି ସେ ମୂର୍ତ୍ତିଟି ଯାହାକୁ ନାମିତ କରାଯାଇଥାଏ "The House Deity of American Indians" ନାମରେ । କିନ୍ତୁ ସେଇ ମୂର୍ତ୍ତିଟି ଯେ ସ୍ୱୟଂ ଶ୍ରୀଜଗନ୍ନାଥଙ୍କର ଏହାହିଁ ଥିଲା ଆମ ସମସ୍ତଙ୍କ ପାଇଁ ପ୍ରଗାଢ ବିସ୍ମୟର ବିଷୟ ।

କନେକ୍ଟିକଟ୍‌ର ଆରଣ୍ୟକ ପରିବେଶ ଭିତରେ ସେଦିନ୍ ଶ୍ରୀଜଗନ୍ନାଥଙ୍କ ସହିତ ସେପରି ଭେଟାଭେଟି ହୋଇଯିବା ପରେ ମୋ ମନରେ ସ୍ୱତଃ ଜାଗ୍ରତ ହେଲା ଏକ ପ୍ରଶ୍ନ– ଏ ଦେଶର ରେଡ୍ ଇଂଡିୟାନ୍ ଆଦିବାସୀ ବୋଲାଉଥିବା ଆମେରିକୀୟ ଭାରତୀୟମାନେ ପ୍ରକୃତରେ କିଏ ? ସେମାନେ ତେବେ କ'ଣ ଭାରତୀୟ ବଂଶୋଦ୍ଭବ ? ସେମାନଙ୍କ ପୂର୍ବ-ପୁରୁଷ କ'ଣ ପ୍ରାଚୀନ କଳିଙ୍ଗରୁ ଆସିଥିଲେ କେଉଁ ସୁଦୂର ଅତୀତରେ ନିଜର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କୁ ସାଥିରେ ଧରି ?

ଏଇ ପ୍ରସଙ୍ଗକୁ କେନ୍ଦ୍ରକରି ମୁଁ ଅନେକ ଖୋଳତାଡ କରିଛି ଏବଂ ତହିଁରୁ ଲବ୍ଧ ସଂଶୟ ମତେ ପରିଚାଳିତ କରିଛି ଆମେରିକାର ମୂଳ ଅଧିବାସୀମାନଙ୍କର ଚେର ଖୋଜିବା ପାଇଁ । ସେଇ ପ୍ରକ୍ରିୟାରେ ମୁଁ ଏକ ବିଶ୍ୱାସନୀୟ ତତ୍ତ୍ୱ ପାଇଥିଲି ଜଣେ ଭାରତୀୟ ପରିବ୍ରାଜକଙ୍କ ଲିଖିତ ବିଖ୍ୟାତ ପୁସ୍ତକରୁ– ତାହା ହେଲା ଭିକ୍ଷୁ ଚମନ୍‌ଲାଲ୍‌ଙ୍କ ଲିଖିତ ପୁସ୍ତକ The Hindu America । ଏଥିରେ ବର୍ଣ୍ଣିତ କେତେକ ତଥ୍ୟ ମାଧ୍ୟମରେ ମୁଁ ଅବଗତ ହେଲି ପ୍ରାକ୍ କଲମ୍ବସ୍ ଯୁଗର ଆମେରିକାରେ ପ୍ରସିଦ୍ଧି ଲାଭ କରିଥିବା ତିନୋଟି ପ୍ରାଚୀନ ମାନବ ସଭ୍ୟତା– ମାୟା, ଆଜଟେକ୍ ଓ ଇନ୍‌କା ସଂପର୍କରେ ଯାହା ଭାରତୀୟ ପୁରାଣ ସାହିତ୍ୟରେ ସୂଚୀତ ହୋଇଛି ମୟ, ଆସ୍ତିକ ଏବଂ ଇନ (ସୂର୍ଯ୍ୟ) ନାମରେ । ଏ ସଂପର୍କରେ ଆହୁରି ସ୍ପଷ୍ଟତର ବ୍ୟାଖ୍ୟା ପାଠକମାନେ ପାଇପାରିବେ ଏହି ଭ୍ରମଣ ବୃତ୍ତାନ୍ତରେ ।

ମୋର ଆଶା ପାଠକମାନେ ମୋର ଏଇ ବୌଦ୍ଧିକ କୌତୂହଳ ପଛରେ ଥିବା ସାଧୁ ଉଦ୍ଦେଶ୍ୟର ମର୍ମ ସହଜରେ ବୁଝିନେଇପାରିବେ । ଛଅଥର ଆମେରିକା ଭ୍ରମଣ ସମୟରେ

ମୁଁ ଏଇ ଉଦ୍ଦେଶ୍ୟ ଆଧାରରେ ଏକ ପ୍ରାରମ୍ଭିକ ଅନ୍ୱେଷଣ ଆରମ୍ଭ କରିଛି । ଏ ଦିଗରେ ମୋର ପ୍ରଥମ ପଦକ୍ଷେପ ହେଲା– ଆମେରିକାରେ ତୀର୍ଥସ୍ଥାନ ଖୋଜା । କାରଣ ମୁଁ ଜାଣିବାକୁ ପାଇଥିଲି ଯେ ସ୍ପାନିଶ୍ ଉପନିବେଶବାଦୀମାନେ ଏ ମହାଦେଶରେ ପ୍ରବେଶ କରି ସ୍ଥାନୀୟ ଲୋକଙ୍କର ଧର୍ମବିଶ୍ୱାସ ଉପରେ ପ୍ରଚଣ୍ଡ କୁଠାରାଘାତ କରିବା ସହିତ ସେମାନଙ୍କର ଅଧିକାଂଶ ମନ୍ଦିର ଓ ତୀର୍ଥସ୍ଥାନ ଗୁଡ଼ିକୁ ଭଗ୍ନସ୍ତୂପରେ ପରିଣତ କରିସାରିଛନ୍ତି । ପରବର୍ତ୍ତୀ ସମୟରେ ଅବଶ୍ୟ ସେଇ ଭଗ୍ନ ସ୍ତୂପ ଭିତରୁ କିଛିକିଛି ପ୍ରତ୍ନତାତ୍ତ୍ୱିକ ଭଗ୍ନାଂଶ ଉଦ୍ଧାର କରାଯାଇ ପାରିଚି । ସେଥିରୁ ବହୁ ହିନ୍ଦୁ ଦେବବିଗ୍ରହଙ୍କ ବିକଳାଙ୍ଗ ପ୍ରତିମୂର୍ତ୍ତି ମିଳିଛି । ସେସବୁକୁ ମେକସିକୋ, ଗ୍ୱେଟାମାଲା, ପେରୁ ଇତ୍ୟାଦି ଦେଶର କେତେକ ସଂଗ୍ରହାଳୟରେ ସଂରକ୍ଷିତ କରାଯାଇଛି । କିନ୍ତୁ ସେପ୍ରକାର ସଂଗ୍ରହାଳୟ ଯୁକ୍ତରାଷ୍ଟ୍ର ଆମେରିକାରେ କେଉଁଠି ଥାଇପାରେ ତାର ଅନୁସନ୍ଧାନ ଏବଂ ଉପରୋକ୍ତ ମାୟା ପ୍ରଭୃତି ତିନୋଟି ଅବଲୁପ୍ତ ସଭ୍ୟତା ସଂପର୍କରେ ଅଧିକ ତଥ୍ୟ ସଂଗ୍ରହ ଥିଲା ମୋର ଅଭିପ୍ରାୟ ।

ସେ ଯାହାହେଉ, ଆମେରିକାରେ ମୋର ରହଣି କାଳରେ ବିଭିନ୍ନ ସ୍ଥାନ ଭ୍ରମଣ ସମୟରେ ଆମେ ଏକାନ୍ତ ନୈସର୍ଗିକ ଶୋଭା ମଣ୍ଡିତ ଏବଂ ଟୁରିଜମ୍ ପାଇଁ ବିଖ୍ୟାତ ବହୁ ବିଚିତ୍ର ପ୍ରାକୃତିକ ସ୍ଥାନ ଦେଖିବାକୁ ଯାଇଛୁ– ଯେପରି ପୃଥିବୀର ସର୍ବବୃହତ୍ ଜଳପ୍ରପାତ ପାଇଁ ପ୍ରସିଦ୍ଧ ନାଏଗ୍ରା ଫଲ୍ସ– ଯେଉଁଠି ଜଣେ ଭାରତୀୟ ହୃଦୟରେ ବ୍ୟୋମକେଶ ଶିବଙ୍କ ଦର୍ଶନର ଭାବ ସ୍ୱତଃ ଉଦୟ ହେବ, ବା ସ୍ମୋକୀ ମାଉଂଟେନ ଯେଉଁଠି ଆପାଲାଚିଆନ୍ ପର୍ବତମାଳାର ଏକ ବିଚିତ୍ର ସ୍ଥାନରେ ନଭଶ୍ଚୁମ୍ବୀ ଗିରିଶୃଙ୍ଗର ଗଳାରେ ମେଘମାନେ ବର୍ଷସାରା ନୀଳକଂଠ ଶିବଙ୍କ ଗଳାରେ କୁଣ୍ଡଳୀକୃତ ସର୍ପମାନେ ଘୂରିବୁଲିବା ପରି ସଦାସର୍ବଦା ଘୂରିବୁଲିବାର ଦୃଶ୍ୟ; ସେହିପରି 'ମାମଥ୍‌କେଭ୍' ଯୋଉଠି ଭୂଗର୍ଭରେ ହଜାରେ ମାଇଲ୍ ଶାଖାପ୍ରଶାଖା ବିସ୍ତାର କରିଥିବା ଏକ ପାତାଳ ଫୁଟି ଗହ୍ୱର ରହିଚି, ଯାହାର ଗଭୀରତମ ଅନ୍ଧକାରମୟ ଗହ୍ୱର ମଧ୍ୟରେ ପାତାଳର ନାଗଲୋକର ବିଚିତ୍ରବର୍ଣ୍ଣୀ ଭୟାନକ ସର୍ପମାନଙ୍କ ଆକୃତିର ଷ୍ଟାଲାଗ୍‌ଟାଇଟ୍ ଫର୍ମେସନ୍ ସବୁ ଗହ୍ୱର କାନ୍ଥରୁ ଫଣା ମେଲେଇ ତଳକୁ ଝୁଲୁଥିବାର ଦେଖାଯାଏ । ସେପରି ଅଦ୍ଭୁତ ସ୍ଥାନକୁ ଏ ଦେଶରେ କେହି ମନେକରନ୍ତି ନାହିଁ ପାତାଳପୁର ବା କୌଣସି ତୀର୍ଥସ୍ଥଳ ଭାବେ, ବରଂ ଏସବୁ ବୈଚିତ୍ର୍ୟମୟ ସ୍ଥାନକୁ ନାମିତ କରାଯାଏ World Tourism Centre ଭଳି କିଛି ବ୍ୟବସାୟିକ କେନ୍ଦ୍ର ଭାବେ । ଏହିପରି ହଜାର ହଜାର ଟୁରିଜମ୍ କେନ୍ଦ୍ର ଏଇ ଭୂସ୍ୱର୍ଗ ଆମେରିକାରେ ରହିଛି ଯାହା ଜଣେ ଭାରତୀୟ ଦୃଷ୍ଟିରେ ନୈସର୍ଗିକ ପ୍ରକୃତି କୋଳରେ ଈଶ୍ୱରଙ୍କର ଧରାବତରଣ ପାଇଁ ଉଦ୍ଦିଷ୍ଟ ଏକ ଏକ ତୀର୍ଥକ୍ଷେତ୍ର ବ୍ୟତୀତ ଅନ୍ୟ କିଛି ଭଳି ଦିଶିନପାରେ ।

ଏହି କାରଣରୁ ଗଭୀର ଖେଦ ସହିତ କହିବାକୁ ବାଧ୍ୟହେଉଚିଯେ ଭୂସ୍ୱର୍ଗ ଆମେରିକାରେ ସବୁ ଅଛି; ନାହିଁ କେବଳ ଗୋଟିଏ ଜିନିଷ– ତୀର୍ଥ । ଅଥଚ ମୋ ଗରିବ ଜନ୍ମଭୂମି ଭାରତରେ କିଛି ନଥିଲେ ବି ଭରପୂର୍ ହୋଇ ରହିଚି ସେଇ ଅମୂଲ୍ୟ ସଂପଦ– ତୀର୍ଥ ।

## ସୂଚୀପତ୍ର

# ଅଧ୍ୟାୟ - ଏକ

# ପ୍ରଥମ ଆମେରିକା ଭ୍ରମଣ ଡାଏରୀ - ୧୯୯୩

## ପୂର୍ବାଭାସ–

୧୯୯୩ ବର୍ଷଟି ଥିଲା ମୋ ପାଇଁ ଏକ ସ୍ମରଣୀୟ ବର୍ଷ । ଏଇ ବର୍ଷଟି ଥିଲା ସ୍ୱାମୀ ବିବେକାନନ୍ଦଙ୍କ ଆମେରିକା ଭ୍ରମଣର ଶତାବ୍ଦୀ ପୂର୍ତ୍ତି ବର୍ଷ । ସେବର୍ଷ ମେ' ମାସ ପନ୍ଦରରେ ମତେ ଷାଠିଏବର୍ଷ ପୂରିଲା । ପୂର୍ବବର୍ଷ, ୧୯୯୨ ଜୁନ୍ ତିରିଶରେ ମୁଁ ସରକାରି ଚାକିରିରୁ ଅବସର ନେଇଥାଏ । ଲେଖାପଢ଼ା କାମ ଖୁବ୍ ଜମିଥାଏ ଏଇ ବର୍ଷକ ଭିତରେ; କିନ୍ତୁ ହଠାତ୍ ଭାବନା ପଶିଲା– ବୟସ ହେଲା– ଅଥଚ କୂପମଣ୍ଡୁକ କଳଙ୍କଟା ରହିଗଲା । ଜୀବନଟା କଟିଲା ସରକାରି ଚାକିରିରେ– କିନ୍ତୁ ସେ ଗୋଲାମିର ଫଳ ହେଲା କ'ଣ ? କ'ଣ ମିଳିଲା ଚଉତିରିଶ ବର୍ଷର ଗଧ-ଖଟଣିରୁ ? ବାହାର ଦୁନିଆ ତ ଥରେ ବି ଦେଖି ପାରିଲି ନାହିଁ । ଅନ୍ୟମାନେ କେତେ କେତେ ଥର ବିଦେଶ ଯାଉଚନ୍ତି ସରକାରି ଟଙ୍କାରେ– ଅଥଚ ମୁଁ ଗୋଟାଏ ମୂଷା ଭଳି ରହିଗଲି ଏଇ ଓଡିଶା ଗାତରେ । ଏବେ ତ ଷାଠିଏ ପୂରିବାକୁ ବସିଲାଣି– କହନ୍ତି କଳିଷଠା ଷାଠିଏ ।

ଏମିତି ଆତ୍ମଗ୍ଲାନିରେ ସଢୁଥାଏ ସେଦିନ– ହଠାତ୍ ଫୋନ୍ ବାଜିଲା । ଆମେରିକାରୁ ବଡଝିଅ ବୁଲବୁଲ ଫୋନ୍‌ରେ କହିଲା, "ନନା ! ଗୋଟାଏ ଭଲ ଖବର । ତମେ ଏବର୍ଷ ଆମେରିକା ଆସୁଚ । ଓଡିଶା ସୋସାଇଟି ଅଫ୍ ଆମେରିକା (ଓସା) ତମକୁ ଡାକୁଚି ଏବର୍ଷ ଓସା ମିଟିଂକୁ– ଚିଠି ପାଇଲଣି ?"

କି ଚିଠି ? କି ଓସା ?– ଜବାବ୍ ଦେଲି ଖାମଖିଆଲିଆ ଢଙ୍ଗରେ । ପ୍ରକୃତରେ ଆମେରିକା ଯିବାକୁ ମୋର ମନ ନଥିଲା । ମୋର ଆମେରିକା ପ୍ରୀତି ସତରେ ଆଦୌ ନାହିଁ ବା ନଥିଲା । ଜଣେ ଭାରତୀୟ ବୁଦ୍ଧିଜୀବୀ ଆମେରିକା ବିଷୟରେ ଚିରକାଳ ଯାହା ଭାବିଥାଏ ମୁଁ ସେଥିରୁ ଅଲଗା ନୁହେଁ । ଯଦିବା ମୋର ଦୁଇଦୁଇଟି ଝିଅ ଅଷ୍ଟମଦଶକରୁ ସେଠିକି ଚାଲିଯାଇଚନ୍ତି ବିବାହ ପରେ, ଆଉ ସେଠି ମୋର ତିନୋଟି ନାତି ଜନ୍ମ ହେଇଚନ୍ତି ଆମେରିକାର ନାଗରିକ ଭାବେ, ତଥାପି ଆମେରିକା ପ୍ରୀତି ମୋ' ମନରେ ଜାତ ହୋଇପାରି ନଥାଏ ସେ ଯାକେ ।

ଦି' ଚାରି ଦିନ ପରେ ଡାକରେ ଆସି ପହଞ୍ଚିଲା ଏକ ଚିଠି । ସେଥିରେ 'ଓଡିଶା ସୋସାଇଟି ଅଫ୍ ଆମେରିକା' (The Orissa Society of Americas)ର ସଭାପତି ପ୍ରଫେସର୍ ଦିଗମ୍ବର ମିଶ୍ର ଜଣେଇଥିଲେ– "ଏବର୍ଷ ଜୁଲାଇ ୩ ଓ ୪ରେ ଆମେରିକାର ମିଚିଗାନ୍ ଷ୍ଟେଟ୍‌ର ଟ୍ରୟ (ଡିଟ୍ରିୟଟ୍) ସହରରେ ଓଡିଶା ସୋସାଇଟିର ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା (Keynote Speaker) ଭାବେ ଆପଣଙ୍କୁ ଆମେ ନିମନ୍ତ୍ରଣ ଜଣାଉଚୁ । ସମ୍ମତି ସହ ବାୟୋଡାଟା ଇତ୍ୟାଦି ଶୀଘ୍ର ପଠେଇବାକୁ ଅନୁରୋଧ ।"

ଦିଗମ୍ବର ମିଶ୍ରଙ୍କୁ ମୁଁ ସେପର୍ଯ୍ୟନ୍ତ ବ୍ୟକ୍ତିଗତ ଭାବେ ଚିହ୍ନି ନଥିଲି । ବହୁତ ଭାବିଚିନ୍ତି ତାଙ୍କ ପ୍ରସ୍ତାବରେ ଶେଷରେ ରାଜିହେଲି ।

କିନ୍ତୁ ସେ ପର୍ଯ୍ୟନ୍ତ ଅସଲ କଥାର ମର୍ମ ମୁଁ ବୁଝିପାରୁନଥାଏ । ମୋର ଚାକିରି କାଳରେ ପାଠପଢା ପାଇଁ ବିଦେଶଯାତ୍ରାର ଅନେକଥର ସୁଯୋଗ ଆସିଥିଲେ ବି କାହିଁକି କେଜାଣି ସେସବୁ 'ଘର ଫାଟୁଥାଏ' ଅସଲ ବେଳକୁ– ଅଥଚ ଏଇଲେ ଚାକିରି ସରିଲା ପରେ ପୁଣି ଉପରେ ପଡି ଡାକରା ଆସୁଚି ଆମେରିକାରୁ !

ମନେପଡିଲା ତେରବର୍ଷ ତଳେ ୧୯୮୦ରେ ଦିନେ ସନ୍ଧ୍ୟାରେ ଜଣେ ଅପରିଚିତ ବ୍ୟକ୍ତି ଆମ ଘରେ ଆସି ପହଞ୍ଚିଲେ । ମତେ କହିଲେ– ଶୁଣିଲି ଆପଣଙ୍କର ତିନିଝିଅ । ସମସ୍ତେ ବ୍ରିଲିୟାଣ୍ଟ୍ । ବଡ ଝିଅଟି ଗଲା ବର୍ଷ ଏମ୍.ଏ ପାଶ୍ କରିଚି । ସେ ଝିଅର ବହୁ ପ୍ରଶଂସା ଆପଣଙ୍କର କବିବନ୍ଧୁ ଗୁରୁପ୍ରସାଦ ମହାନ୍ତି କରୁଥିଲେ । ତାଙ୍କରିଠାରୁ ଆପଣଙ୍କର ଘର ଠିକଣା ନେଇ ଏଠିକି ଆସିଚି । ଦୟାକରି ସେ ଝିଅର ଜାତକଟା ମତେ ଦେଖାଇବେ କି ? ମୋ' ପୁଅ ପାଇଁ ପ୍ରସ୍ତାବ ପକାନ୍ତି ଯଦି ଜାତକ ସୁଝନ୍ତା ।

କିଛି ସମୟ କଥାବାର୍ତ୍ତା ପରେ ଜାଣିଲି ସେ ଭଦ୍ରଲୋକ ଓଡିଶା ସରକାରଙ୍କ ଚାକିରିରେ ଜଣେ ପଦସ୍ଥ ପ୍ରଶାସନିକ ଅଫିସର୍ । ତା'ଛଡା ସେ ମଧ୍ୟ ଜଣେ ଜ୍ୟୋତିଷୀ । ତାଙ୍କର ଲେଖାମାନ କୁଆଡେ ପ୍ରକାଶପାଏ ସର୍ବଭାରତୀୟ ଆଷ୍ଟ୍ରୋଲଜିକାଲ୍ ଜର୍ନାଲ୍‌ମାନଙ୍କରେ । ମୋ ବଡଝିଅ ପ୍ରଜ୍ଞେଶନନ୍ଦିନୀ, ଡାକନାଁ ବୁଲବୁଲର ଜାତକ ଦେଖେଇବାକୁ ତାଙ୍କୁ ମୋର ଗୋଟିଏ ପୁରୁଣା ଡାଏରି ଦେଲି । ସେଥିରେ ମୋ ତିନି ଝିଅଙ୍କ ସମେତ ଆମ ପରିବାରର ସମସ୍ତଙ୍କ କୋଷ୍ଠୀର ଟିପ୍ପଣୀ ଥାଏ । ଭଦ୍ରଲୋକ ସେ ଟିପ୍ପଣୀ ପୃଷ୍ଠା ଉପରେ ଆଖି ବୁଲେଇନେଲେ । ତା'ପରେ ବଡଝିଅର କୋଷ୍ଠୀ ଉପରୁ ଦୃଷ୍ଟି ଫେରେଇନେଇ ମୋ ମୁହଁକୁ ଚାହିଁଲେ । କହିଲେ, "ଝିଅର କୋଷ୍ଠୀ ସୁଝୁ ନାହିଁ ମୋ ପୁଅ ପାଇଁ । କିନ୍ତୁ ଦେଖୁଚି ଆପଣଙ୍କର ନିଜ କୋଷ୍ଠୀଟା ମୋ ପାଇଁ ବେଶୀ ଇଣ୍ଟରେଷ୍ଟିଂ ! ମୁଁ ଯାକୁ ଟିପି ନେଇ ପାରେ କି ମୋର ଆଷ୍ଟ୍ରୋଲଜିକାଲ୍ ରିସର୍ଚ୍ଚ କାମ ପାଇଁ ?"

ମୋର ଜାତକପାତକରେ ମୂଳରୁ ବିଶ୍ୱାସ ନଥାଏ । ତଥାପି ତାଙ୍କ ମନ ରଖିବାକୁ କହିଲି – As you like... ପରେ ପରେ ସେ ତାଙ୍କ ପକେଟ୍‌ରୁ କଲମ ବାହାରକଲେ ।

ମୋ' କୋଷ୍ଠୀ ତଳେ ଟିପାଯାଇଥିବା ଜନ୍ମତାରିଖ ଆଉ ମହାଦଶା ବାକି ଇତ୍ୟାଦିରୁ କ'ଣ ସବୁ ଗଣନା ଆରମ୍ଭ କରିଦେଲେ । ରୀତିମତ ଗଣିତ ଚାଷ । କିଛି ସମୟ ପରେ ମୋ' ମୁହଁକୁ ଗମ୍ଭୀର ଦୃଷ୍ଟିରେ ଲକ୍ଷ୍ୟକରି କହିଲେ, "ଆପଣଙ୍କର ତ ଶନିମହାଦଶା ଆରମ୍ଭ ହେଲାଣି ଦି'ବର୍ଷ ତଳୁ ? ଶନି ଆପଣଙ୍କର ସ୍ୱ-ଗୃହରେ । ରାଜଯୋଗ ଦିଆଇବେ ଶନି ଏଇ ମହାଦଶା ପିରିୟଡ୍‌ରେ ।"

– ହସିବାକୁ ବାଧ୍ୟହେଲି । କାରଣ ସାତଦିନ ପୂର୍ବରୁ ମୁଁ ଚାକିରିରୁ ସସପେଣ୍ଡ୍ ହେଇ ଘରେ ବସିଥାଏ । ତା'ପରେ ଯାହାସବୁ କଥାବାର୍ତ୍ତାହେଲା ସେ ସବୁ ମୋ ଆତ୍ମଜୀବନୀରେ ସବିଶେଷ ଲେଖିଚି । ଏବେ ଏତିକି କହିବି– ସେ ଭଦ୍ରଲୋକ ମତେ କହିଯାଇଥିଲେ– ଏପରି ତ ହେବା କଥା ନୁହଁ ଏ କୋଷ୍ଠୀ ଅନୁସାରେ । ହଉ ଯଦି ଦୁର୍ଯୋଗ କିଛି ଘଟିଗଲାଣି ତେବେ ଦେଖିବେ ମହାଦଶା ପିରିୟଡ୍ ଶେଷଆଡକୁ ବହୁତ କିଛି ଅଜାଡି ଦେଇ ଯିବେ ଶନି । ଆପଣ ବହୁ ସମ୍ମାନିତ ହେବେ ଆଉ ବାରମ୍ବାର ବିଦେଶ ଯାତ୍ରା କରିବେ ।

ଓସା ସଭାପତି ଦିଗମ୍ବର ମିଶ୍ରଙ୍କ ନିମନ୍ତ୍ରଣପତ୍ର ପାଇଲାପରେ ସେଇ ଭଦ୍ରଲୋକଙ୍କ ଭବିଷ୍ୟତ୍ ବାଣୀ ମନେପଡିଲା । ତେବେ କ'ଣ ଶନି ମହାଦଶା ପିରିୟଡ୍ ସରିବାବେଳ ଆସିଗଲା !

ଆରମ୍ଭହେଲା କାଗଜପତ୍ର ପ୍ରସ୍ତୁତି । ପାସ୍‌ପୋର୍ଟ ଭିସା ଇତ୍ୟାଦି ସୁରୁଖୁରୁରେ ହେଇଗଲା । ସେ ସମୟରେ ଆମେରିକାନ୍ ଭିସା ପାଇବା ପାଇଁ କଲିକତା ଦୌଡି କନସ୍ୟୁଲେଟ୍ ଅଫିସ୍‌ରେ ଇଣ୍ଟରଭ୍ୟୁ ଇତ୍ୟାଦିର ଦରକାର ନଥିଲା । ସବୁ ଡାକଘର ମାଧ୍ୟମରେ ଓ ଏଜେଣ୍ଟ୍ ମାଧ୍ୟମରେ ହେଇଯାଉଥିଲା । ଆଜିର ଆତଙ୍କବାଦ ଯୁଗ ତଥାପି ଥାଏ ବହୁ ଦୂରରେ ।

ସେଇ ପ୍ରସ୍ତୁତି ଭିତରେ ପୁଣି ଅନ୍ୟ ଏକ ନିମନ୍ତ୍ରଣ ଆସି ପହଞ୍ଚିଲା– ଆମେରିକାରୁ । ସେଇ ବର୍ଷ, ୧୯୯୩ ଜୁଲାଇ ମାସରେ ଆମେରିକାର ଟେନୀସୀ ରାଜ୍ୟର ଏକ ପ୍ରଧାନ ସହର ନ୍ୟାସ୍‌ଭିଲ୍‌ରେ ପ୍ରତିଷ୍ଠିତ ହିନ୍ଦୁମନ୍ଦିରରେ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ପାଳିତ ହେବା ସ୍ଥିର ହୋଇଥାଏ । ସେଇ ଉତ୍ସବରେ ଅତିଥି ଭାବେ ଯୋଗଦେବାକୁ ମତେ ନିମନ୍ତ୍ରଣ ମିଳିଲା । ନିମନ୍ତ୍ରଣ କରିଥିଲେ ସେଠାର ଜଗନ୍ନାଥ ସୋସାଇଟି ଅଫ୍ ଆମେରିକା (The Jagannath Society of Americas – JSA) ।

ସମୟକ୍ରମେ ଦୁଇଟି ଚାରିମାସିଆ ରିଟର୍ଣ୍ଣ ଏୟାର୍ ଟିକେଟ୍ ଆସି ପହଞ୍ଚିଲା ଆମେରିକାରୁ । ଟିକେଟ୍ ହେଇଥାଏ ଦିଲ୍ଲୀରୁ ଆଟ୍‌ଲାଣ୍ଟା– ଲୁଫ୍‌ଥାହାଂସା ଏୟାର୍ ଲାଇନ୍‌ସ୍‌ରେ । ଲୁଫ୍‌ଥାହାଂସା ! ଶବ୍ଦଟାକୁ ଉଚ୍ଚାରଣ କଲାମାତ୍ରେ ମନେପଡିଲା – ମୁଁ ମୋ ଉପନ୍ୟାସ 'ଶତାବ୍ଦୀର ନଚିକେତା'ରେ ଏଇ ଲୁଫ୍‌ତାହାଂସା ଶବ୍ଦଟାକୁ ବ୍ୟବହାର କରିଥିଲି– ବହୁ ବର୍ଷ ତଳେ ୧୯୬୫ରେ– ଏହାର ଅର୍ଥ "ଉଡନ୍ତା ହଂସ" । ଏହା ଏକ ଜର୍ମାନ୍ ଶବ୍ଦ । ସଂସ୍କୃତରେ ହଂସ ଶବ୍ଦର ଅର୍ଥ ଯାହା ଜର୍ମାନୀ ଭାଷାରେ ଅବିକଳ ସେଇଆ । ଏଇଥିପାଇଁ

ହିଟଲର୍ ବୋଧେ ଭାବୁଥିଲେ ଯେ ଭାରତର ଲୋକେ ଆର୍ଯ୍ୟ ଯାହାଙ୍କ ମାତୃଭାଷା ସଂସ୍କୃତ ଅର୍ଥାତ୍ ଜର୍ମାନଭାଷାର ଜନନୀ ! ତେଣୁ ସୁଭାଷ ବୋଷଙ୍କ ପ୍ରତି ପ୍ରୀତି ଜାଗି ଉଠିଥିଲା ସମ୍ଭବତଃ ତାଙ୍କ ହୃଦୟରେ !

## ଯାତ୍ରାରମ୍ଭ

ନିର୍ଦ୍ଧାରିତ ଦିନ (ତା. ୨୭ ମେ, ୧୯୯୩) ରାତିରେ ଆମେ ଦିଲ୍ଲୀରୁ ବାହାରିଲୁ । ଇନ୍ଦିରା ଗାନ୍ଧି ଆନ୍ତର୍ଜାତିକ ବିମାନ ବନ୍ଦରରେ ଆମକୁ ବଳେଇଦେବାକୁ ବିମାନବନ୍ଦରକୁ ଆସିଥିଲେ ଝିଅ ଜୁଲି ଓ ଜୋଇଁ ଅଭିଜିତ୍ । ଜୁଲି ଆମର ସବା ସାନଝିଅ । ଜୋଇଁ ଅଭିଜିତ୍ ରାୟ ଓ ଜୁଲି ଉଭୟ ସେତେବେଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ କେମିଷ୍ଟ୍ରିରେ ପି.ଏଚ୍‌ଡି. ଡିଗ୍ରୀ ପାଇଁ ରିସର୍ଚ୍ଚ କରୁଥାନ୍ତି ।

ସ୍ତ୍ରୀ ନିରୁପମା ଓ ମୁଁ ସେଦିନ ରାତି ପ୍ରାୟ ଦୁଇଟାରେ ଏୟାର୍ ଫ୍ରାନ୍‌ସ୍‌ର ଲୁଫ୍‌ଥାହାଂସା ଏୟାର୍‌ଲାଇନ୍‌ସ୍ ପ୍ଲେନ୍‌ରେ ବସିଲୁ । ସମୟ ନିର୍ଘଣ୍ଟ ଅନୁସାରେ ସେ ପ୍ଲେନ୍ ଦିଲ୍ଲୀରୁ ଜର୍ମାନୀର ଫ୍ରାଙ୍କ୍‌ଫର୍ଟ ଯିବ ଓ ସେଠାରୁ– ଆଟ୍‌ଲାଣ୍ଟା । ଫ୍ରାଙ୍କ୍‌ଫର୍ଟରେ ଚାରି ଘଣ୍ଟା ରହଣି । ଆଟ୍‌ଲାଣ୍ଟାରେ ପହଞ୍ଚିବା ପରେ ଆମକୁ ସେଠାରୁ ବଡଝିଅ ବୁଲବୁଲ ଓ ଜୋଇଁ ପ୍ରବୀର ସ୍ୱାଗତକରି ନେଇଯିବେ ନିଜ ଘରକୁ । ସେତେବେଳେ ସେ ଦୁହେଁ ରହୁଥାନ୍ତି ଆମେରିକାର ଟେନ୍‌ସୀ ଷ୍ଟେଟ୍‌ର ଚାଟାନୁଗା ସହରରେ । ଦୁହେଁ ଇଂଜିନିୟର୍ । ଚାକିରି କରୁଥାନ୍ତି ଏକ ଆମେରିକାନ୍ ନ୍ୟୁକ୍ଲିୟାର୍ ପ୍ଲାଣ୍ଟ୍‌ରେ ।

ଲୁଫ୍‌ଥାହାଂସା ଏୟାର୍‌ଲାଇନ୍‌ସ୍‌ର ସେ ପ୍ଲେନ୍‌ଟା ଏକ ବିଶାଳ ଜମ୍ବୋ ଜେଟ୍ । ଏତେ ବଡ ପ୍ଲେନ୍‌ରେ ମୁଁ ପୂର୍ବରୁ କେବେ ବସିନଥିଲି । କିନ୍ତୁ ନିରୁପମାଙ୍କ ପାଇଁ ତାର କୌଣସି ଅଭିନବତ୍ୱ ନଥିଲା । ଦୁଇବର୍ଷ ତଳେ ୧୯୯୧ରେ ତାଙ୍କର ପ୍ରଥମଥରର ଆମେରିକା ଯାତ୍ରା ଅଭିଜ୍ଞତା ଅର୍ଜନ କାମ ସରିଥାଏ । ମୋ ପାଇଁ ସବୁ ନୂଆ । ପ୍ଲେନ୍ ଭିତରକୁ ପଶି ଦେଖିଲି– ସବୁ ସିଟ୍ ପ୍ରାୟ ଭରପୂର । ଧାଡିଧାଡି ହେଇ ସିଟ୍ ଖଞ୍ଜାହେଇଥାଏ ଏମୁଣ୍ଡରୁ ସେମୁଣ୍ଡ । ପ୍ରତି ଧାଡିରେ ଦଶଟା କରି ସିଟ୍ । ପ୍ଲେନ୍‌ର ଏକମୁଣ୍ଡେ ଠିଆହେଇ ଆରମୁଣ୍ଡକୁ ଚାହିଁଲେ କେବଳ ମଣିଷଙ୍କ ମାଳମାଳ ମୁଣ୍ଡ ଦିଶୁଥାଏ– ଗୋଟାଏ ବନ୍ଧାକୋବି ଫାର୍ମ କ୍ଷେତର ବିଶାଳ କୋବି ପଟାଳିଟିଏ ଭଳି !

ଆମକୁ ଇକନମି ଶ୍ରେଣୀରେ ଝରକାକୁ ଲାଗି ଯୋଡିଏ ସିଟ୍ ମିଳିଥାଏ ପାଖାପାଖି । ନିଜନିଜ ସିଟ୍‌ରେ ବସିଯିବା ପରେ ଆଗକୁ ପଛକୁ ଆଖି ବୁଲେଇ ଚାହିଁଲି । ଦେଖିଲି ବହୁ ଯାତ୍ରୀ ଭାରତୀୟ । ବେଶ୍ କିଛି ସଂଖ୍ୟାରେ ବିଦେଶୀ ଯାତ୍ରୀ ବି । ପିଲାଛୁଆ ବୁଢାବୁଢୀ ସବୁ ବୟସର । ସବୁ ଷ୍ଟୁଆର୍ଡ ଆଉ ଏୟାର୍ ହୋଷ୍ଟେସ୍‌ଙ୍କ ମୁହଁକୁ ଅନେଇ ଜାଣିଲି ସେମାନେ ସମସ୍ତେ ଜର୍ମାନୀ ଲୋକ– ସୁନ୍ଦରୀ ଆଉ ସମସ୍ତଙ୍କ ମୁହଁ ହସହସ ।

କିଛି ସମୟ ପରେ ଘୋଷଣା କରାଗଲା– ସିଟ୍ ବେଲଟ୍ ବାନ୍ଧନ୍ତୁ । ପ୍ଲେନ୍ ପ୍ରସ୍ତୁତ ଟେକ୍ଅଫ୍ ପାଇଁ । ପରେ ପରେ ଚାଲିଲା ପ୍ରସ୍ତୁତି ଦୀର୍ଘ ଯାତ୍ରା ପଥରେ ଅନ୍ତତଃ ନଅ ଦଶ ଘଣ୍ଟାର କ୍ରମିକ ଫ୍ଲାଇଟ୍ ପାଇଁ । ପ୍ଲେନ୍ ଆସ୍ତେ ଆସ୍ତେ ଘୁଞ୍ଚିବା ଅନୁଭବ ହେଲା । ସାମ୍ନାକୁ ଅନାଇ ଦେଖିଲି ଆମ ସାମ୍ନା କାନ୍ଥରେ ଠାଏ ଖଂଜାଯାଇଚି ଗୋଟିଏ ବଡ ବ୍ଲାକ୍‌ବୋର୍ଡ ସାଇଜ୍‌ର ଟି.ଭି. ପର୍ଦ୍ଦା । ମୁଁ ଅନେଇ ରହିଲି ସେ ପର୍ଦ୍ଦାକୁ । ହଠାତ୍ ଦେଖାଗଲା ସେ ପର୍ଦ୍ଦା ଉଜ୍ୱଳ ହେଇଗଲା ଆଉ ତା' ଉପରେ ଦେଖାଗଲା ଆମ ପ୍ଲେନ୍‌ର ଏକ ଛୋଟ ଛବି ବା ଆଇକନ୍ । ଆଉ ସେ ଆଇକନ୍‌ଟା ଆରମ୍ଭ କଲା ଘୁଞ୍ଚି ଘୁଞ୍ଚି ଆଗେଇବାକୁ– ଠିକ୍ ସେଇ ଗତିରେ ଯାହା ଥିଲା ରନ୍‌ୱେ ଉପରେ ପ୍ଲେନ୍‌ର ଗତି । ପୁଣି ଗତିପଥ ଥିଲା ଭାରତବର୍ଷର ମ୍ୟାପ୍‌ରେ ଦିଲ୍ଲୀ ଏୟାର୍‌ପୋର୍ଟର ଲୋକେସନ୍ ସମେତ ଆମର ଯାତ୍ରାପଥର ଏକ ରଙ୍ଗୀନ୍ ମାନଚିତ୍ର ଉପରେ– ତା'ମାନେ ଏମାନେ ଆମକୁ ସିନେମା ନୁହଁ କୌଣସି ଗୋଟାଏ ନୂଆ କଥା ଦେଖେଇବାକୁ ବସିଚନ୍ତି । କହିରଖେ– ସେତେବେଳେ କମ୍ପ୍ୟୁଟର୍ ସଂପର୍କରେ ମୋର ବିଶେଷ ଜ୍ଞାନ ନଥିଲା । ପୁଣି ସେ କାଳରେ ଆଜିର ଜି.ପି.ଏସ୍ ଯନ୍ତ୍ରର (Geo-Positioning System) ପ୍ରଚଳନ ହୋଇନଥାଏ । ପ୍ଲେନ୍‌ର ଉଡାଣ ସାଙ୍ଗେ ସାଙ୍ଗେ ଭୂତଳର ଭୂଗୋଳ ଆଜି ରାତି ସାରା ଦେଖି ହେବ ଜାଣିଲା ପରେ ମୋର ଆଖିରୁ ନିଦ ଛାଡିଗଲା । ଏହାପରେ 'ଦିଲ୍ଲୀ-ଫ୍ରାଙ୍କ୍‌ଫର୍ଟ' ଉଡାଣର ନଅଘଣ୍ଟାର ଫ୍ଲାଇଟ୍‌ଟାଇମ୍ ସାରା ମୁଁ ସେଇ ସ୍କ୍ରିନ୍‌ଟାକୁ ଜଳଜଳ କରି ଚାହିଁ ବସିଲି ।

ରନ୍‌ୱେରେ କିଛିବାଟ ଟ୍ୟାକ୍ସିଂ କଲା ପରେ ହଠାତ୍ ଅନୁଭବ ହେଲା ପ୍ଲେନ୍ ଦିଲ୍ଲୀ ବିମାନ ବନ୍ଦରର ରନ୍‌ୱେ ଛାଡି ଶୂନ୍ୟକୁ ଉଠିଲା । ଏଣେ ସାମ୍ନା ପରଦାରେ ଉଡାଣ ପଥ ଆଉ ପ୍ଲେନ୍‌ର ବେଗ ଓ ଉଚ୍ଚତାର ଟିକିନିଖି ବିବରଣୀ ମଧ୍ୟ ନିର୍ଭୁଲ୍‌ଭାବେ ପ୍ରତିଫଳିତ ହେବାକୁ ଲାଗିଲା । ଉଚ୍ଚତା ବଢୁଥାଏ– ହଜାରେ ଦି'ହଜାର... ପାଞ୍ଚ ଦଶ କୋଡିଏ ହଜାର ହେଇ ଉଚ୍ଚରୁ ଉଚ୍ଚକୁ । ତେଣେ ପ୍ଲେନ୍‌ର ବେଗ ବଢିବଢ଼ି ଚାଲିଥାଏ । ଉଚ୍ଚତା ବଢିବା ସହିତ ତାପମାତ୍ରା ଖସୁଥାଏ ତଳକୁ ତଳକୁ ।

ପ୍ଲେନ୍ ଦିଲ୍ଲୀ ଆକାଶରେ ଗୋଟାଏ ଚକ୍କର୍ ମାରି ମୁହେଁଇଲା ପଶ୍ଚିମକୁ । ଆରମ୍ଭ ହେଲା ବିମାନ ଯାତ୍ରା ବିଧିବଦ୍ଧ ଭାବେ । ହଠାତ୍ ମୋ ଭିତରେ ଗୋଟାଏ ଉଲ୍ଲାସ ଜାତହେଲା । ଏମିତି ଲାଗେ ମତେ ନଭେଲ୍ ଲେଖିଲାବେଳେ ଭାବାବେଗ ଜମି ଆସିବା ପରେ । ସାଙ୍ଗେ ସାଙ୍ଗେ ପକେଟ୍‌ରୁ କଲମ ବାହାର କଲି । ଗୋଟାଏ ଟିପା ଖାତା ପକେଟ୍‌ରୁ କାଢି ଲେଖିଲି– "My first visit to America ।"

ସେଇ ଉଲ୍ଲାସ ଭାବ କ୍ରମଶଃ ପ୍ରଗାଢ ହେବାକୁ ଆରମ୍ଭ କଲା– ପରିଣତ ହେଲା ବିଶ୍ୱ-ଚେତନାରେ । ପାଖ ସିଟ୍‌ରେ ନିରୁପମାଙ୍କୁ ଚାହିଁ ଦେଖିଲି– ସେ ଘୁମେଇପଡିଥାନ୍ତି । ଦୀର୍ଘ ରାତ୍ରି ଉଜାଗରର କ୍ଳାନ୍ତି ସାରା ପ୍ଲେନ୍‌ଟାର ପ୍ରାୟ ଚାରିଶହ ଯାତ୍ରୀଙ୍କୁ ସ୍ୱାଭାବିକ ଭାବେ ଆକ୍ରାନ୍ତ କରିସାରିଥାଏ । ପ୍ଲେନ୍‌ରେ ଲେଟ୍‌ନାଇଟ୍‌ରେ ଡିନର୍ ସର୍ଭିସ୍ ସାରିବା ପରେ ପରେ

ଷ୍ଟୁଆର୍ଡମାନେ ଲାଇଟ୍ ଅଫ୍ କରିଦେଇଥାନ୍ତି । କେବଳ କାଁଭାଁ କେଇଟା ସ୍ତିମିତ ଆଲୋକ ବ୍ୟତୀତ ପ୍ଲେନ୍ ଭିତରଟା ଦିଶୁଥାଏ ପ୍ରାୟାନ୍ଧକାରାଚ୍ଛନ୍ନ । ତନ୍ମୟ ଦୃଷ୍ଟିରେ ସାମ୍ନା ପରଦାକୁ ମୁହୂର୍ତ୍ତେ ବି ଆଖିରୁ ଦୂର ନକରି ମୁଁ ଦେଖୁଥାଏ ଭୂତଳର ମାନଚିତ୍ରରେ ପରିବର୍ତ୍ତନଶୀଳ ଦୃଶ୍ୟାବଳିକୁ । ମତେ ଲାଗିଲା ସତେ ଯେପରି ଏକ ବୈଜ୍ଞାନିକ ଏକ୍ସପେଡିସନ୍‌ରେ ମୁଁ ସେଇମାତ୍ର ବାହାରିଚି– ଠିକ୍ ଯେପରି ଦେଢଶହ ବର୍ଷ ତଳେ ଚାର୍ଲସ୍ ଡାରୱିନ୍ ବିଗଲ ନାମକ ଗୋଟାଏ ପାଲଟଣା ଜାହାଜରେ ବସି ବାହାରିଯାଇଥିଲେ ସେଇ ଐତିହାସିକ ସାମୁଦ୍ରିକ ଅଭିଯାନରେ । ଦକ୍ଷିଣ ପ୍ରଶାନ୍ତ ମହାସାଗରର କୋଉ ଗୋଟାଏ ଅଶ୍ରୁତପୂର୍ବ ଦ୍ୱୀପ ଗାଲାପାଗୋସ୍‌ରେ ଲାଗିଥିଲା ସେ ବୋଇତ, ଆଉ ଡାରୱିନ୍‌ଙ୍କ ଭାଗ୍ୟରବି ଉଦିତ ହୋଇଥିଲା ତାଙ୍କ ଜ୍ଞାନନେତ୍ରର ଉନ୍ମୀଳନ ମାଧ୍ୟମରେ । ଜଗତ୍ ଜାଣିବାକୁ ପାଇଲା ତା'ପରେ ସେଇ ସଂପୂର୍ଣ୍ଣ ଅବିଶ୍ୱାସକର ଐଶ୍ୱରିକ ସତ୍ୟକୁ ଯୁଗାନ୍ତକାରୀ ବିବର୍ତ୍ତନବାଦର ତତ୍ତ୍ୱ ନାଁରେ !

ପିଲାଦିନେ ମାଇନର୍ ସ୍କୁଲ୍‌ରେ ମୋର ସପ୍ତମଶ୍ରେଣୀରେ ଭୂଗୋଳ ଶିକ୍ଷକ ଥିଲେ ମୋ' ନନା । ସେ ବି ମୋର ସାହିତ୍ୟ ଶିକ୍ଷକ । ଭୂଗୋଳ ପଢେଇଲାବେଳେ କ୍ଲାସ୍‌ରୁମ୍ କାନ୍ଥରେ ମାନଚିତ୍ର ଟାଙ୍ଗିବା ସେତେବେଳେ ଥିଲା ଶିକ୍ଷକମାନଙ୍କର ଗୋଟିଏ କର୍ତ୍ତବ୍ୟ; କିନ୍ତୁ ମୁଁ ଲକ୍ଷ୍ୟ କରିଚି ଜୋଗ୍ରାଫି ପଢେଇବାକୁ ମାନଚିତ୍ର ଟାଙ୍ଗିବା ପରେ ହାତରେ ପଏଣ୍ଟର୍ ଧରି ମାନିଚିତ୍ରରେ କୌଣସି ଦେଶର ପାହାଡ ପର୍ବତ ନଦୀ ହ୍ରଦ କିମ୍ବା ସହର ଉପରେ ପଏଣ୍ଟର୍‌ର ମୁନ ଛୁଆଁଇବା ମାତ୍ରେ ସେ ଆତ୍ମ-ବିଭୋର ହେଇପଡୁଥିଲେ । ସେତେବେଳେ ମନେହେଉଥିଲା ସତେକି ମୋ ନନା କେବେ ନା କେବେ ସେଇ ସବୁ ଦେଶଗୁଡାକୁ ଭ୍ରମଣରେ ଯାଇଥିଲେ, ଆଉ ସେସବୁର ଆଖିଦେଖା ଦୃଶ୍ୟଗୁଡାକୁ ଆମ ଆଗରେ ବାଖ୍ୟା କରୁଥିଲେ ! କିନ୍ତୁ ପ୍ରକୃତରେ ସେ କେବେ ବି କୌଣସି ବିଦେଶ ଭ୍ରମଣ କରିନଥିଲେ । ତେବେ ବିଦେଶ ସଂପର୍କରେ କ୍ଲାସ୍‌ରୁମ୍‌ରେ ସେ ଯାହା ସବୁ ବିବରଣୀ ଦେଇଥିଲେ ସେସବୁ ମୋ' ଭିତରେ ଗୋଟାଏ ବିରାଟ ଆର୍କିଟାଇପ୍ (Arche-type) ପେଡି ପାଲଟି ରହିଯାଇଥିଲା ଏଯାଏଁ । ଆଜି ଯାତ୍ରାରେ ସେ ଆର୍କିଟାଇପ୍ ପେଡିର ଘୋଡଣିଟାକୁ କିଏ ଯେପରି ହଠାତ୍ ଟେକି ଦେଲା !

ସାମ୍ନା ପରଦାରେ ଦେଖାଯାଉଥାଏ ପ୍ଲେନ୍ ସେତେବେଳେ ଉଡୁଥାଏ ଅମୃତସହର ଉପରେ! ପ୍ଲେନ୍‌ର ବେଗ ଛଅଶହ ମାଇଲ୍ ବା ନଅଶହ କିଲୋମିଟରକୁ ଛୁଇଁ ଛୁଇଁ ଆସୁଥାଏ । ବାହାରର ତାପମାତ୍ରା ଶୂନ୍ ଠାରୁ ତଳେ ପ୍ରାୟ ପଚାଶ ଡିଗ୍ରୀ ସେଲ୍‌ସିଅସ୍, ଆଉ ଉଚ୍ଚତା ପଞ୍ଚତିରିଶ ହଜାର ଫୁଟ୍ ଭୂ-ପୃଷ୍ଠରୁ ! ମିନିଟ୍ କେତେଟା ନଯାଉଣୁ ପ୍ଲେନ୍ ଉଡିଲା ଭାରତର ଭୌଗୋଳିକ ସୀମା ଟପି ପାକିସ୍ତାନର ସୀମା ଭିତରକୁ । ସ୍କ୍ରିନ୍‌ରେ ଫ୍ଲାସ୍ କଲା– ଲାହୋର । ପରେ ପରେ ଧାଉଁକିନା ଆସିଗଲା କାନ୍ଦାହାର । ପ୍ଲେନ୍ ଭାରତର ରାଜନୈତିକ ସୀମା ଅତିକ୍ରମ କରିବାବେଳେ ଭୂତଳର ଫିଜିକାଲ୍ ମ୍ୟାପ୍‌ରେ ପଡିହେଲା ସିନ୍ଧୁ ନଦୀ

ସମେତ ପଂଜାବର ପଞ୍ଚନଦୀଙ୍କ ନାମ । ଏଇ ପଞ୍ଚନଦୀର ଦେଶକୁ ନେଇ ବେଦରୁ ଆଜିଯାକେ ଯାହାକିଛି ସାହିତ୍ୟ, ଭୂଗୋଳ, ଇତିହାସ, ରାଜନୀତି ବିଜ୍ଞାନ, ସମାଜ ବିଜ୍ଞାନ, ଇତ୍ୟାଦି ଇତ୍ୟାଦି ଶାସ୍ତ୍ର ପୁରାଣ ପଢାହେଇଥିଲା ସବୁଗୁଡାକ ଏକାବେଳକେ ମୋ' ମନକୁ ଆଚ୍ଛନ୍ନ କରିପକେଇଲା । ଅଲେକଜାଣ୍ଡରଙ୍କ ଭାରତ ଆକ୍ରମଣଠୁ ଜିନ୍ନାଙ୍କ 'ଛୀନ୍‌କେ ଲେଗେ ପାକିସ୍ତାନ୍...' ପର୍ଯ୍ୟନ୍ତ ସମସ୍ତ କ୍ଷୋଭ ଅଜାଡି ହେଇପଡିଲା ମନରେ । ସେସବୁକୁ ମନରେ ଚାପିରଖୁରଖୁ ହଠାତ୍ ଇତିହାସ ବଦଳିଗଲା ଭୂଗୋଳର ଆଉ ଏକ ନୂଆ ଅଧ୍ୟାୟକୁ । ଆଫଗାନିସ୍ଥାନର ସୀମା ଭିତରକୁ ପଶିଲା ପ୍ଲେନ୍ । ଆସିଗଲା କାନ୍ଦାହାର ! ମନେପଡିଗଲେ ମହାଭାରତର ଚରିତ୍ରମାନେ– ଗାନ୍ଧାରୀ ଶକୁନି ଇତ୍ୟାଦି । ମୁହୂର୍ତ୍ତକ ଭିତରେ ମହାଭାରତ ପାଲଟିଗଲା ମଧ୍ୟଯୁଗୀୟ ଇତିହାସକୁ । ଦିଶିଗଲା ମହମ୍ମଦ ଘୋରୀର ମୁହଁ । ଭାରତର ଶେଷ ହିନ୍ଦୁ ସମ୍ରାଟ୍ ପୃଥ୍ୱୀରାଜ ଚୌହାନଙ୍କ ସହିତ ତିନିବାର ପରାସ୍ତ ହେଇ କ୍ଷମା ପାଇ ପ୍ରାଣରକ୍ଷାକରି ପଳାୟନ ପରେ ଶେଷରେ ମହମ୍ମଦ ଘୋରୀର ସେ ବିଶ୍ୱାସଘାତକତାର ଚୂଡାନ୍ତ ଦୃଶ୍ୟ– ମହାରାଜା ପୃଥ୍ୱୀରାଜଙ୍କ ଆଖିରେ ନିଆଁ ଖୁଣ୍ଟା ଗେଂଜି ତାଙ୍କୁ ଅନ୍ଧ ଅବସ୍ଥାରେ କାନ୍ଦାହାର ପର୍ଯ୍ୟନ୍ତ ଘୋଷାରି ଘୋଷାରି ନେଇ ଶେଷରେ ସେଇଠି ତାଙ୍କର ମୁଣ୍ଡକାଟ କରିବାର ଦୃଶ୍ୟ– ଇତିହାସ ପୃଷ୍ଠାରୁ ଉଠିଆସିଲା ମନର ଅତଳ ଅବଚେତନରୁ ! ମୁଁ କିଛି ସମୟ ପାଇଁ ସ୍ତବ୍ଧ ହେଇଗଲି । ବହୁ ଚେଷ୍ଟାରେ ମଧ୍ୟଯୁଗରୁ ଉଦ୍ଧାର ପାଇ ସମୟ ସଚେତନ ହେବା ପରେ ଆମ ସମୟର ଆଫଗାନୀସ୍ଥାନ ପୁନର୍ବାର ପ୍ରତିଫଳିତ ହେଲା ସେ ପରଦାରେ । ସେତେବେଳେ ସେ ଭୂମି ପାଲଟି ଯାଇଥାଏ ଆଧୁନିକ ଇତିହାସର ଅଗ୍ନିକୁଣ୍ଡ– ମୁଜାହିଦ୍ଦିନ୍ ଓ ତାଲିବାନ୍‌ଙ୍କ ଲୀଳା ଭୂଇଁ । ପରଦା ଉପରେ ସେ ଭୂଇଁର ଦୃଶ୍ୟ ଦେଖା-ପଡୁଥାଏ ସେତେବେଳେ । ଅଦୂରରେ ହିନ୍ଦୁକୁଶ ପର୍ବତାବଳୀ, ସୁଲେମାନ ପର୍ବତାବଳୀର ତୁଷାରାଚ୍ଛାଦିତ ମନୋହର ଦୃଶ୍ୟପଟ । ତଥାପି ମନେହେଉଥାଏ ଯଦି ଭୂପୃଷ୍ଠରେ ପହରା ଦେଉଥିବା ତାଲିବାନମାନେ ଆମ ପ୍ଲେନକୁ ଲକ୍ଷ୍ୟକରି ଏଇ ମୁହୂର୍ତ୍ତରେ ରକେଟ୍ ନିକ୍ଷେପ କରନ୍ତି ତେବେ କ'ଣ ହେବ ଏ ଉଡନ୍ତା ହଂସରେ ବସିଥିବା ଆମ ଚାରିଶହ ନିରୀହ ସୁସୁପ୍ତ ଯାତ୍ରୀମାନଙ୍କ ଅବସ୍ଥା !

ଏ ଭିତରେ ପ୍ଲେନ୍ ଆଫଗାନିସ୍ଥାନ ସୀମା ଟପି ପ୍ରବେଶ କରିସାରିଥାଏ ଇରାନ୍ ଭିତରକୁ । ସ୍କ୍ରିନ୍ ଉପରେ ଝଲସିଲା– ତେହେରାନ୍ ! ପୁଣି ବଦଳିଗଲା ଚେତନାର ଚିତ୍ର ମୋ ମନ ଭିତରେ । ପ୍ରାଚୀନ ପୌରାଣିକ ପାରସ୍ୟ ଦେଶର ଯାବତୀୟ କିଂବଦନ୍ତୀ ସମେତ ମନର ପରଦାରେ ଝଲସିବାକୁ ଲାଗିଲା ଏକଦା ଏଇ ପାରସ୍ୟ ହିଁ ଥିଲା ସମଗ୍ର ପାଶ୍ଚାତ୍ୟ ସଭ୍ୟତାର ଆଦିମୂଳ । ଏଇଠାରେ ସୃଷ୍ଟି ହେଇଥିଲା ଜୋରାଷ୍ଟ୍ରିୟାନ୍ ଧର୍ମ ଯାହାର ସ୍ରଷ୍ଟା ଥିଲେ ଜାରାଥୁଷ୍ଟ । ଏ ଧର୍ମର ଆଦିଗ୍ରନ୍ଥର ନାମ ଜେଣ୍ଡାଭେସ୍ତା । ଜେଣ୍ଡାଭେସ୍ତାର ଭାଷାର ଭାରତର ସଂସ୍କୃତ ଭାଷା ସହିତ ବହୁ ସାମଂଜସ୍ୟ ଥିବାରୁ କୁହାଯାଏ ଅତୀତରେ ପାରସ୍ୟ

ସହିତ ଭାରତର ସଂପର୍କ ଥିଲା ନିବିଡ। ଭାରତତତ୍ତ୍ୱବିତ୍ (Indologist)ଙ୍କ ମତରେ ସୁଦୂର ବୈଦିକ ଯୁଗରେ ସରସ୍ୱତୀ ନଦୀ କୂଳରେ ବିକଶିତ ତତ୍କାଳୀନ ଆର୍ଯ୍ୟମାନଙ୍କର ଭିଭିନ୍ନ ଗୋଷ୍ଠୀ ବିଚ୍ଛୁରିତ ହୋଇଥିଲା ସିନ୍ଧୁନଦୀର ପଶ୍ଚିମପାର୍ଶ୍ୱ ଦେଶମାନଙ୍କୁ। ଏହି ଶାଖାମାନଙ୍କ ଭିତରୁ ଗୋଟିଏ ଶାଖା (Diaspora) ପ୍ରତିଷ୍ଠା କରିଥିଲା ନିଜକୁ ଏଇ ଅରଣ୍ୟ ବିହୀନ ଅନରଣ୍ୟ ବା ଇରାନ୍ ଦେଶରେ। ସେମାନେ ନିଜର ମହାଜାଗତିକ (Cosmological) ବୈଦିକ ଦର୍ଶନ ଓ ସାହିତ୍ୟକୁ ଅନେକ କାଳ ଜୀବିତ ରଖିପାରିଥିଲେ ମଧ୍ୟ ତାହା ସମୟକ୍ରମେ ରୂପାନ୍ତରିତ ହେଲା ବସ୍ତୁ-କେନ୍ଦ୍ରିକ ପାର୍ଥିବ ଦର୍ଶନକୁ।

ଋଷି ଜାରାଥୁଷ୍ଟ ଥିଲେ ସେଇ ପାର୍ଥିବ ଦର୍ଶନର ପ୍ରବକ୍ତା। ଆଧୁନିକ ବିଜ୍ଞାନର ଭିତ୍ତି ସ୍ଥାପନକାରୀ ଏଇ ଋଷି ଜରାଥୁଷ୍ଟଙ୍କୁ ଭାରତୀୟ ପୁରାଣକାରମାନେ ନାମିତ କରିଛନ୍ତି ଋଷି ଶୁକ୍ରାଚାର୍ଯ୍ୟ ନାମରେ। ତାଙ୍କର ଅନୁଚରମାନଙ୍କୁ ସେ ଜଡବାଦୀ ଦର୍ଶନରେ ଦୀକ୍ଷିତ କରିଥିଲେ। ଜଡବାଦୀ ଦର୍ଶନରେ ଆସ୍ଥା ବିଶ୍ୱାସ ସ୍ଥାପନ କରିଥିବା ଲୋକମାନଙ୍କୁ ଭାରତୀୟ ପ୍ରାଚୀନ ସାହିତ୍ୟ ବା ପୁରାଣରେ ବୁଝାଯାଏ ଅସୁର ଅର୍ଥରେ। ସମୟକ୍ରମେ ସେଇ ଅସୁରଦେଶ ବା ପାରସ୍ୟ, ବିଜ୍ଞାନର ବହୁବହୁ ଯାନ୍ତ୍ରିକ ଉଦ୍ଭାବନୀ କ୍ଷମତା ବଳରେ ବଳୀୟାନ୍ ହେଲା– ଦିଗ୍‌ବିଜୟରେ ପ୍ରମତ୍ତ ହୋଇଥିଲା ଏବଂ ସାମ୍ରାଜ୍ୟ ବିସ୍ତାର କରିଥିଲା– ଯାହାର ନାମ ପାରସ୍ୟ ସାମ୍ରାଜ୍ୟ। ପାରସ୍ୟର ପ୍ରବଳ ପ୍ରତାପୀ ସମ୍ରାଟ୍‌ମାନେ ଉଭୟ ପୂର୍ବ ଓ ପଶ୍ଚିମରେ ସାମ୍ରାଜ୍ୟ ବିସ୍ତାର କରିଥିଲେ। ପାରସ୍ୟର ପଶ୍ଚିମରେ ଆନାତୋଲିଆ (ତୁର୍କୀ), ଗ୍ରୀସ୍, ରୋମ୍ ପ୍ରଭୃତି ଦେଶକୁ ଜୟକରି ନିଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରିଥିଲେ। ପାଶ୍ଚାତ୍ୟ ଉପରେ ପ୍ରାଚ୍ୟର ପ୍ରଭାବ ବିସ୍ତାର ଦିଗରେ ପାରସ୍ୟର ସେଇ ଅବଦାନକୁ ଆଜିର ଐତିହାସିକମାନେ ଅସ୍ୱୀକାର କରନ୍ତି ନାହିଁ। ସେ ଯାହାହେଉ, ଆମ ପ୍ଲେନ୍ ତେହେରାନର ଆକାଶ ପଥରେ ଉଡିଚାଲିଥିବା ବେଳେ ମୋ' ମନକୁ ଯେଉଁ ଚିନ୍ତା ସର୍ବାଧିକ ଆଚ୍ଛନ୍ନ କରିବାକୁ ଆରମ୍ଭକଲା ତା' ପ୍ରାଚୀନ ପାରସ୍ୟ ନୁହେଁ– ଆଧୁନିକ ଇରାନ୍‌ରେ ସେ ସମୟରେ ଘଟୁଥିବା ଘଟଣାବଳୀ ! ସେତେବେଳେ ସମଗ୍ର ବିଶ୍ୱର ଦୃଷ୍ଟିକୁ ଆଚ୍ଛନ କରିରଖିଥାଏ ଖଣ୍ଡିଏ ବହିର ନାମ– ସଲମନ୍ ରସ୍‌ଦୀଙ୍କ 'ସାଟାନିକ୍ ଭର୍ସେସ୍' ! ସେ ବହିର ବିଷୟବସ୍ତୁ ହୋଇଥାଏ ସାରା ବିଶ୍ୱର ଚର୍ଚ୍ଚାର ବିଷୟ। ରସ୍‌ଦୀଙ୍କ ସେଇ ଉପନ୍ୟାସକୁ ଭାରତସରକାର ସେତେବେଳେ ବ୍ୟାନ୍ କରିଦେଇଥାନ୍ତି। ରସ୍‌ଦୀଙ୍କ ମୁଣ୍ଡଉପରେ ଏକ ନିୟୁତ ଡଲାରର ବାଜି ଲଗେଇଥାଏ ଇରାନର ଖୋମେନୀ ସରକାର। ପାରସ୍ୟର ପ୍ରାଚୀନ ଇତିହାସ ଆଉ ସେ ଦେଶର ସୁଫୀସନ୍ଥମାନଙ୍କ ଆଡୁ ମୁହଁ ବୁଲେଇ ରସଦୀଙ୍କ ସାଟାନିକ୍ ଭର୍ସେସ୍ ଆଡକୁ ଅନାଉ ଅନାଉ ସାମ୍ନା ସ୍କ୍ରିନ୍ ଉପରେ ଝଲସିଲା ଆଉ ଗୋଟାଏ ଆକର୍ଷଣୀୟ ସହରର ନାମ– ଆଙ୍କାରା– ତାହାହେଲା ତୁର୍କୀର ରାଜଧାନୀ ସହର ଆଙ୍କାରା !

ତୁର୍କୀ ! ପୁଣି ଆରମ୍ଭ ହେଇଗଲା ମୁଣ୍ଡ ଭିତରେ ମେଲିଥିବା ଆର୍କିଟାଇପ୍ ପେଡିରୁ

ଆଉ ଅସରାଏ ବର୍ଷା । ଏ ଦେଶର ପ୍ରାଚୀନ ନାମ ଆନାତୋଲିଆ । ଅଳ୍ପ କେତେ ବର୍ଷ ତଳେ ଆନାତୋଲିଆର ମାଟି ତଳୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଆବିଷ୍କାର କରିଥିଲେ ଏକ ପୋଡା-ମାଟିର ଫଳକ ଯାହା ଉପରେ ଲେଖାଯାଇଥିଲା ଇନ୍ଦ୍ର ବରୁଣ ପ୍ରଭୃତି କେତେକ ବୈଦିକ ଦେବତାଙ୍କ ନାମ । ପୁଣି ସେଇ ଅଭିଲେଖର ଅବିକଳ ପ୍ରତିଲିପିଟିଏ ମଧ୍ୟ ପୂର୍ବରୁ ଆବିଷ୍କୃତ ହୋଇଥିଲା ଇଜିପ୍ଟର ପ୍ରତ୍ନତାତ୍ତ୍ୱିକ ଖନନରୁ । ଏ ଦୁଇଟିଯାକ ଫଳକ (Heiroglyphic-Script) ଲେଖା ହେବାର ସମୟ ନିର୍ଦ୍ଧାରିତ କରିଥିଲେ ପ୍ରତ୍ନତତ୍ତ୍ୱବିତ୍‌ମାନେ– ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀ, ଅର୍ଥାତ୍ ସେ ସମୟର ମହାପରାକ୍ରମୀ ଇଜିପ୍ଟ ସାମ୍ରାଜ୍ୟର ସମ୍ରାଟ୍ ଦ୍ୱିତୀୟ ରାମସେସ୍‌ଙ୍କ ସମୟରେ । ସେତେବେଳର ଅଜେୟ ସମ୍ରାଟ୍ ଦ୍ୱିତୀୟ ରାମସେସ୍‌ଙ୍କ ବିଶାଳ ସୈନ୍ୟବାହିନୀକୁ ସମ୍ମୁଖ ସମରରେ ପରାସ୍ତ କରିଥିଲେ ପଡୋଶୀ ଆନାତୋଲିଆର ତତ୍କାଳୀନ ଜଣେ କ୍ଷୁଦ୍ରଦେଶର ରାଜା ହାଟ୍ଟୁଶୀଳ (Hittits) । ମହାପରାକ୍ରମୀ ଇଜିପ୍ଟର ସମ୍ରାଟ୍ ଦ୍ୱିତୀୟ ରାମସେସଙ୍କୁ ହାଟ୍ଟୁଶୀଳ ନାମକ କେହି ଜଣେ ସାମାନ୍ୟ ରାଜା ଯୁଦ୍ଧରେ ପରାସ୍ତ କରିବା ସେ ସମୟର ଇତିହାସକୁ ପ୍ରଭାବିତ କରିଥିବ ନିଶ୍ଚେ ଠିକ୍ ସେହିପରି, ଯେପରି ଆଧୁନିକ କାଳରେ ୧୯୬୭ର ସେଇ ସାତଦିନିଆ ଆରବ ଇସ୍ରାଏଲ୍ ଯୁଦ୍ଧରେ ଇସ୍ରାଏଲ୍ ପରାସ୍ତ କରିଥିଲା ସମଗ୍ର ସମ୍ମିଳିତ ଆରବ ଦେଶମାନଙ୍କର ନେତୃତ୍ୱ ନେଇଥିବା ମହାପରାକ୍ରମୀ ଶକ୍ତି ଇଜିପ୍ଟକୁ । ରାଜା ହାଟ୍ଟୁଶୀଳ ବା ପ୍ରାଚୀନ ହିଟ୍ଟିଟ୍‌ସମାନେ ସେହିପରି ପରାସ୍ତ କରିଥିଲେ ତତ୍କାଳୀନ ସାମ୍ରାଜ୍ୟବାଦୀ ଇଜିପ୍ଟର ସମ୍ରାଟ୍ ଦ୍ୱିତୀୟ ରାମ୍‌ସେସ୍‌ଙ୍କୁ ଏବଂ ସେହି ବିଜୟ ପରେ ବିଜୟୀ ଓ ବିଜିତ ଦୁଇଶକ୍ତିଙ୍କ ମଧ୍ୟରେ ଯେଉଁ ସନ୍ଧିପତ୍ର ସ୍ୱାକ୍ଷରିତ ହୋଇଥିଲା ତାର ପ୍ରତିଲିପି ବର୍ତ୍ତମାନ ଦେଖିବାକୁ ମିଳୁଛି ଇଜିପ୍ଟ ଓ ତୁର୍କିର ସରକାରୀ ସଂଗ୍ରହାଳୟରେ । ସେ-ସନ୍ଧିପତ୍ରର ପ୍ରଥମ ବାକ୍ୟରେହିଁ ଲିପିବଦ୍ଧ ହୋଇଥିଲା ବିଜୟୀ ରାଜା ହାଟ୍ଟୁଶୀଳଙ୍କ ଉପାସ୍ୟ ଦେବତା ଇନ୍ଦ୍ର ଓ ବରୁଣଙ୍କ ନାମ । ସେ ସନ୍ଧିପତ୍ର ସ୍ୱାକ୍ଷରିତ ହୋଇଥିଲା ଉଭୟ-ପକ୍ଷର ନେତୃତ୍ୱ ନେଇଥିବା ରାଜା ହାଟ୍ଟୁଶୀଳ ଓ ରାମସେସ-୨ଙ୍କ ନିଜ ହସ୍ତାକ୍ଷରରେ, ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀରେ, ଅର୍ଥାତ୍ ବ୍ୟାସଙ୍କ ରଚିତ ମହାଭାରତର କାଳ ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀର ଶହେ ବର୍ଷ ପରେ !!

ତେହେରାନ୍ ଉପରେ ଆମ ଉଡନ୍ତାହଂସ ପ୍ଲେନ୍ ଉଡି ଚାଲିଥିବା ସମୟରେ ମୋ' ମନରେ ରାଜା ହାଟ୍ଟୁଶୀଳଙ୍କ ନାଁ ବାରମ୍ବାର ପ୍ରତିଧ୍ୱନିତ ହେଉଥାଏ । ଏଭଳି ନାମହିଁ ଯେ ଜଣେ ଭାରତୀୟର, ଯେ ଥିଲେ ଇନ୍ଦ୍ରପୂଜକ, ଏଥିରେ ସନ୍ଦେହ ନଥିଲା ଆଦୌ । କିନ୍ତୁ ପାଶ୍ଚାତ୍ୟ ଐତିହାସିକମାନେ ବର୍ତ୍ତମାନ ସେଇ ଇନ୍ଦ୍ର ନାଁଟାକୁ ତୁର୍କୀର ମାଟିତଳୁ ଆବିଷ୍କାର କରିଦେଇ ଭାରତୀୟ ସଭ୍ୟତାର ମୂଳପ୍ରାମାଣିକ ଗ୍ରନ୍ଥ ବେଦର ଉତ୍ପତ୍ତି ସଂପର୍କରେ ସେପରି ଉଦ୍ଭଟ ହାସ୍ୟାସ୍ପଦ ମତ ପୋଷଣ କରିବା, 'ବେଦ ଭାରତରେ ରଚିତ ନୁହେଁ' ତାହା ମଧ୍ୟ-ପ୍ରାଚ୍ୟରୁ ଯାଇଚି ସିନ୍ଧୁନଦୀ କୂଳକୁ ଦାବୀ କରି ବସିବା କିଭଳି ଯୁକ୍ତିଯୁକ୍ତ ?

ଏହିପରି ସ୍ୱପ୍ନ କଳ୍ପନା ଆଉ ସଂକଳ୍ପ ଭିତରେ ଆମ ପ୍ଲେନ୍ ପ୍ରବେଶକଲା ତୁର୍କୀର ସୀମାନ୍ତ ସହର ପ୍ରସିଦ୍ଧ ଇସ୍ତାନ୍‌ବୁଲର ଆକାଶ ପଥରେ । ଆମେ ସ୍କୁଲ୍‌ରେ ପଢିଲାବେଳେ ଏ ସହରର ନାଁ ଥିଲା କନ୍‌ଷ୍ଟାଣ୍ଟିନୋପ୍ଲ । ଇସ୍ତାନ୍‌ବୁଲ୍ ଏକ ଐତିହାସିକ ସହର । ଦିନେ ଏଇ ସହର ଥିଲା ଅଟୋମ୍ୟାନ୍ ସାମ୍ରାଜ୍ୟର ପ୍ରାଣ କେନ୍ଦ୍ର । ଏ ଥିଲା ଇସ୍‌ଲାମିକ୍-ଧର୍ମାବଲମ୍ବିଙ୍କ ସର୍ବୋଚ୍ଚ ଧର୍ମଗୁରୁ ତଥା ସୁଲତାନ୍ ଖଲିଫାଙ୍କ ଗଡ । ମୁସଲିମ୍‌ମାନଙ୍କ ପାଇଁ ଖଲିଫାଙ୍କ ଆସନ ଖ୍ରୀଷ୍ଟିୟାନ୍‌ମାନଙ୍କର ମହାମାନ୍ୟ ପୋପ୍‌ଙ୍କ ତୁଲ୍ୟ ସାର୍ବଭୌମ; କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮)ର ଅବସାନ ପରେ ଏଇ ଖଲିଫା ଶାସନର ପତନ ଘଟିଥିଲା । ଆରମ୍ଭ ହେଇଥିଲା ଜନପ୍ରିୟ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଯାହାର ନେତୃତ୍ୱ ନେଇଥିଲେ ବିଖ୍ୟାତ ଶାସକ କେମଲ୍‌ପାସା । ସେଇ ସମୟରେ (୧୯୧୯) ଖଲିଫା ପଦବୀର ଉଚ୍ଛେଦ ବିରୁଦ୍ଧରେ ବିଶ୍ୱବ୍ୟାପୀ ଯେଉଁ ହିଂସ୍ର ଇସଲାମିକ୍ ଜନବିକ୍ଷୋଭ ଦେଖାଦେଇଥିଲା ସେଥିରେ ବ୍ରିଟିଶ୍ ଶାସିତ ଭାରତ ମଧ୍ୟ ବିଶେଷ ପ୍ରଭାବିତ ହୋଇଥିଲା । ମୁସଲମାନମାନଙ୍କୁ ସମର୍ଥନ କରି ସେତେବେଳେ ରାଜନୀତିକୁ ନବାଗତ ମହାତ୍ମା ଗାନ୍ଧି ଯେଉଁ ଖିଲାଫତ୍ ଆନ୍ଦୋଳନ ଆରମ୍ଭ କରିଥିଲେ ତାହାହିଁ ଥିଲା ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସର ଆଦି ପର୍ବ ।

ଇସ୍ତାନ୍‌ବୁଲ୍‌ର ଭୂଗୋଳ ଏପରି ଯେ ଏହା ଏସିଆ କି ୟୁରୋପର ଅଂଶ ବୁଝାଯାଏନା । ଏଇଠି ଦୁଇ ମହାଦେଶ ମଝିରେ ଏକ ସଂକୀର୍ଣ୍ଣ ପ୍ରଣାଳୀ– ବସ୍‌ଫୋରସ୍ (Bosphorous Strait) । ଉତ୍ତରରେ କୃଷ୍ଣସାଗର ଓ ଦକ୍ଷିଣରେ ମର୍ମରା ସାଗରକୁ ସଂଯୋଗ କରୁଥିବା ଏଇ ସଂକୀର୍ଣ୍ଣ ପ୍ରଣାଳୀଟିକୁ ପହଁରି ପାରିହେବା ଗୋଟାଏ ରୋମାଞ୍ଚକର ଆହ୍ୱାନ ସମୁଦ୍ର ସନ୍ତରଣ-କାରୀଙ୍କ ପାଇଁ । ସାମ୍‌ନା ସ୍କ୍ରିନ୍‌ରେ ସେ ଅଂଚଳର ମାନଚିତ୍ର ପ୍ରତିଫଳିତ ହେଉଥାଏ । ଦେଖିଲି ବୋସ୍‌ଫରସ୍‌ର ଦକ୍ଷିଣକୁ ମର୍ମରା ସାଗରର ଆହୁରି ଦକ୍ଷିଣକୁ ରହିଚି ଅନ୍ୟ ଏକ ପ୍ରଣାଳୀ– ଡାର୍ଡାନେଲିସ୍ ! ଏ ପ୍ରଣାଳୀ ସଂଯୁକ୍ତ କରୁଥାଏ ମର୍ମରା ସାଗରକୁ ଅନ୍ୟ ଏକ ବୃହତ୍ତର ଜଳଭାଗ ଯାହାର ନାଁ 'ଏଜିୟାନ୍ ସମୁଦ୍ର' । ଏଜିୟାନ୍ ସମୁଦ୍ର ସମଗ୍ର ଗ୍ରୀକ୍ ସାହିତ୍ୟ ଇତିହାସକୁ ପ୍ରଗାଢ ଭାବେ ଆଚ୍ଛନ୍ନ କରିରଖିଥିବା ଏକ ପୌରାଣିକ ଜଳଭାଗର ନାମ । ଏହାର ଚାରିପାଖେ ଏକଦା ଗଢିଉଠିଥିଲା ଅନେକ ଗୌରବାବହ ପ୍ରାଚୀନ ସଭ୍ୟତା– ଆୟୋନିଆନ୍, ସ୍ପାର୍ଟାନ୍, ଗ୍ରୀକ୍, ରୋମାନ୍ ପ୍ରଭୃତି ଯାହା ମୁଁ ପଢିଥିବା ଅନେକ ଗଳ୍ପ, ଉପନ୍ୟାସ, ଇତିହାସ, ଦର୍ଶନ ବହିମାନଙ୍କ ପୃଷ୍ଠାରେ ବାରମ୍ବାର ଉଲ୍ଲେଖ କରାଯାଇଥିଲା । ସେଇ ପୌରାଣିକ ଏଜିଆନ୍ ସାଗର ଏବଂ ମର୍ମରା ସାଗରର ସଂଯୋଗକାରୀ ସଂକୀର୍ଣ୍ଣ ପ୍ରଣାଳୀର ନାଁ ଡାର୍ଡାନେଲିସ୍ ।

ଡାର୍ଡାନେଲିସ୍ ନାମ ସହିତ ମନେପଡିଲା– ଅନେକ ବର୍ଷ ତଳେ ସମ୍ଭବତଃ ୧୯୬୫-୬୬ରେ ଥରେ ବିଶ୍ୱ ପ୍ରସିଦ୍ଧ ସମୁଦ୍ର ସନ୍ତରଣକାରୀ ମିହିର ସେନ୍‌ଙ୍କ ଏକ ବକ୍ତୃତା ମୁଁ ଶୁଣିଥିଲି । ସେଦିନ ଆମେ ଦୁହେଁ ଥିଲୁ ଅତିଥି ଭଦ୍ରକ କଲେଜର ଛାତ୍ରସଂସଦର ବାର୍ଷିକ

ଉତ୍ସବରେ । ସେ ସନ୍ଧ୍ୟା ଉତ୍ସବରେ ମିହିର ସେନଙ୍କ ବକ୍ତୃତା ଶୁଣିବାକୁ ଭଦ୍ରକ କଲେଜ ହତା ଷ୍ଟାଡିୟମ୍‌ରେ ଉପସ୍ଥିତ ଥିଲେ ପ୍ରାୟ ଦୁଇ ତିନି ହଜାର ଶ୍ରୋତା । ସେ ସମୟରେ ଭଦ୍ରକ କଲେଜର ଅଧ୍ୟକ୍ଷ ଥିଲେ ଦର୍ଶନବିଭାଗର ପ୍ରଫେସର୍ ବଳରାମ ସାହୁ । ସେନ୍ ତାଙ୍କ ଅବିସ୍ମରଣୀୟ ବକ୍ତବ୍ୟରେ ପୃଥିବୀର ବିଭିନ୍ନ ସମୁଦ୍ର ସନ୍ତରଣ ସମୟରେ ତାଙ୍କର କେତେକ ଅବିସ୍ମରଣୀୟ ସ୍ମୃତି ବୟାନ କରୁକରୁ ଉଲ୍ଲେଖ କରିଥିଲେ ଏଇ ଡାର୍ଡାନେଲିସ ଚାନେଲ୍‌ରେ ପହଁରିବା ସମୟର ଏକ ଲୋମହର୍ଷଣକାରୀ ଘଟଣା । ସେ କହୁଥିଲେ ପୃଥିବୀର ସବୁଠୁ ଅଧିକ ଭୟଙ୍କର ଜଳଭାଗ ହେଉଚି ଏଇ ଡାର୍ଡାନେଲିସ୍ । ଏଠି ସାର୍କ ଦୌରାତ୍ମ୍ୟ ଅକଥନୀୟ । ପହଁରାଳୀର ଏକମାତ୍ର ଭୟ କାଳେ ପହଁରୁ ପହଁରୁ ଏକ ଅସତର୍କ ମୁହୂର୍ତ୍ତରେ ସେ ହଠାତ୍ ଅନୁଭବ କରିବ ତାର ଗୋଟାଏ ବା ଦୁଇଟାଯାକ ଗୋଡ ବା ହାତ ଆଉ ନାହିଁ – କେତେବେଳେ ସେ ସବୁ ଚାଲିଗଲାଣି ସାର୍କ ମୁହଁରେ ! ଏମିତି ଭାବୁଥିବା ବେଳେ ସେନ୍ ଲକ୍ଷ୍ୟକଲେ ହଠାତ୍ ଗୋଟାଏ ବିଶାଳକାୟ ସାର୍କ କେଉଁଠୁ ଆବିର୍ଭୂତ ହେଲା ଆଉ ତାଙ୍କୁ ପିଛା କରିବାକୁ ଲାଗିଲା । ସେନ୍‌ଙ୍କୁ ଭୟଭୀତ କରିବାକୁ ସେ ମାରାତ୍ମକ ପ୍ରାଗୈତିହାସିକ ଜାନୁଆର ଯେପରି ସଂକଳ୍ପବଦ୍ଧ ହୋଇଥିଲା ! ମଝିରେ ମଝିରେ ସେଇ ମାରାତ୍ମକ ଜନ୍ତୁଟା ଗୋଟାଏ ପ୍ରେତାତ୍ମା ଭଳି ଛାଇ ପାଲଟି ଯାଉଥାଏ । ଦେଖୁଦେଖୁ ଜନ୍ତୁଟା ତାଙ୍କ ପଛପଟୁ କେତେବେଳେ ପହଁରି ଚାଲିଆସିଥାଏ ସାମ୍ନାକୁ । ତା୍ଙ୍କୁ ମୁହଁକରି ଆଗକୁ ବୁଲିପଡି ତାଙ୍କ ସହିତ ଆଖି ମିଳାଉଥାଏ ମଧ୍ୟ । ତାଙ୍କୁ ଭୟଭୀତ କରି ନିଜ ସଂକଳ୍ପରୁ ବିଚ୍ୟୁତ କରିଦେବା ପାଇଁ ସେ ଯେମିତି ଗୋଟାଏ ଦୈବପ୍ରେରିତ ଷଡଯନ୍ତ୍ର ! ବେଳେବେଳେ ସେ ଏତେଦୂର ଭୀତତ୍ରସ୍ତ ହୋଇପଡୁଥିଲେ ଯେ ଭାବୁଥିଲେ ଆପଦ ବେଳେ ତାଙ୍କୁ ସୁରକ୍ଷା ଦେବାକୁ ଯୋଗେଇ ଦିଆଯାଇଥିବା ଲାଇଫ୍ ଗାର୍ଡ ବୋଟକୁ ସେ ଇସାରା ଦେବେ ବୋଟ ଉପରକୁ ତାଙ୍କୁ ଉଠେଇ ନବା ପାଇଁ । କିନ୍ତୁ ସେ ତାଙ୍କ ମିସନ୍ ଶେଷ କରିପାରିଥିଲେ ସୁରୁଖୁରୁରେ ଅବଶ୍ୟ । କହିରଖେ– ମିହିର୍ ସେନ୍ ଥିଲେ ଆମ ବେଳର ରେଭେନ୍ସା କଲେଜର ଛାତ୍ର । ମୁଁ ବି.ଏସ୍.ସି. (୧୯୫୧-୫୩)ପଢିଲାବେଳେ ସେ ଆଇନ୍ ପଢୁଥିଲେ । ରେଭେନ୍ସା କଲେଜର ଲମ୍ବା ଲମ୍ବା ବାରଣ୍ଡା ଓ କରିଡର୍ ଗୁଡାକ ଉପରେ ଦ୍ରୁତବେଗରେ ସାଇକେଲ୍ ଚଳାଇବା ଥିଲା ତାଙ୍କର ଗୋଟାଏ ନିଶା ସତେକି ! ସେଥିପାଇଁ ସେ ମଧ୍ୟ ଦଣ୍ଡିତ ହୋଇଥିଲେ ସେ ସମୟର ପ୍ରସିଦ୍ଧ ପ୍ରିନ୍ସିପାଲ୍ ପ୍ରଫେସର୍ ଗୋଲକ ବିହାରୀ ବାନର୍ଜୀଙ୍କ ଦ୍ୱାରା ।

ସାମ୍ନା ପରଦା ଉପରେ ସେତେବେଳେ ଝଲସିବାକୁ ଆରମ୍ଭକଲାଣି ୟୁରୋପ ମହାଦେଶର ଉପକୂଳ । ଆମ ପ୍ଲେନ୍ ଏହାମଧ୍ୟରେ ପ୍ରବେଶ କରିସାରିଥାଏ ୟୁରୋପ ମହାଦେଶର ଦାକ୍ଷିଣାତ୍ୟ ଦେଶ ବୁଲଗେରିଆରେ । ପରଦା ଉପରେ ଝଲସିଲା– ବୁଲଗେରିଆର ରାଜଧାନୀ ସୋଫିଆ ! ମନେପଡିଲା– 'ସୋଫିଆ' ଶବ୍ଦର ଅର୍ଥ । ଗ୍ରୀକ୍ ଭାଷାରେ ସୋଫିଆ ଶବ୍ଦର ଅର୍ଥ ଜ୍ଞାନର ଦେବୀ ବା ବାକ୍‌ଦେବୀ ସରସ୍ୱତୀଙ୍କୁ ।

ପରଦା ଉପରେ ଆମର ଗନ୍ତବ୍ୟ ପଥରେ ଆଗକୁ ଆସୁଥିବା ପ୍ରଧାନ ୟୁରୋପୀୟ ସହର ଗୁଡିକର ନାଁ ଝଲସିଲା ଏଥର ବାରମ୍ବାର– ବେଲ୍‌ଗ୍ରେଡ୍, ଭିଏନା, ପ୍ରାଗ୍ ଇତ୍ୟାଦି । ପ୍ଲେନ୍ ଉଡିବାକୁ ଆରମ୍ଭ କଲା ବେଲ୍‌ଗ୍ରେଡ୍ ଆକାଶରେ । ବେଲଗ୍ରେଡ୍ ଏକ ପ୍ରସିଦ୍ଧ ସହର, ୟୁଗୋସ୍ଲୋଭିଆର ରାଜଧାନୀ । ୟୁଗୋସ୍ଲୋଭିଆ ନାଁ କହିଲେ ଆମ ସମୟର ଲୋକଙ୍କ ମନରେ ନିଶ୍ଚିତ ଆସିବ ଐତିହାସିକ ପୁରୁଷ ମାର୍ସାଲ୍ ଟିଟୋଙ୍କ ସ୍ମୃତି । ଆମ ସମୟରେ ତିନିଜଣ ବିଶ୍ୱ ଜନନେତା ଖୁବ୍ ପ୍ରସିଦ୍ଧ ଥିଲେ– ଭାରତର ନେହେରୁ, ୟୁଗୋସ୍ଲାଭିଆର ମାର୍ସାଲ୍ ଟିଟୋ ଓ ଇଜିପ୍ଟର କର୍ଣ୍ଣେଲ୍ ନାସେର୍ । ଏମାନେ ସବା ପ୍ରଥମେ ପାଶ୍ଚାତ୍ୟ ଉପନିବେଶବାଦୀ ପ୍ରଭାବ, ବିଶେଷକରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଆମେରିକା ଓ ସୋଭିଏତ୍ ରୁଷ ମଧ୍ୟରେ ବଢିଚାଲିଥବା ଶୀତଳଯୁଦ୍ଧର ପ୍ରଭାବରୁ ଉପନିବେଶବାଦର ଉଚ୍ଛେଦ ପରେ ପରେ ନୂଆ କରି ସ୍ୱାଧୀନ ହୋଇଥିବା ତୃତୀୟ ବିଶ୍ୱର ଦେଶମାନଙ୍କୁ ଶୀତଳ ଯୁଦ୍ଧର ପ୍ରଭାବରୁ ମୁକ୍ତ ରଖିବା ପାଇଁ ଆରମ୍ଭ କରିଥିଲେ ଏକ ନୂଆ ରାଜନୈତିକ ମେଣ୍ଟ ଯାହାର ନାମ ଥିଲା 'ନାମ୍' ବା Non Alignment Movement, (NAM) ।

ବେଲଗ୍ରେଡ୍ ଆଖିରେ ପଡିବାକ୍ଷଣି ମନଭିତରେ ସେଇ ନେହେରୁ-ଟିଟୋ-ନାସେର ଯୁଗର ଘଟଣା ସବୁ ଆପେଆପେ ଚିତ୍ର ପାଲଟି ଆଖି ଆଗକୁ ଚାଲିଆସୁଥାଏ । ସ୍ତ୍ରୀ ନିରୁପମା ଝରକା ପାଖ ସିଟ୍‌ରୁ ହାଇମାରି କହିଲେ– ସୂର୍ଯ୍ୟ ଦିଶିଲେଣି– ଆଉ କେତେ ସମୟ ଲାଗିବ ଫ୍ରାଙ୍କଫର୍ଟ ?

ଧ୍ୟାନ ଭାଙ୍ଗିଗଲା । ଝରକା ବାହାରକୁ ଚାହିଁ ଦେଖିଲି– ସୂର୍ଯ୍ୟ କିରଣ ତଳର ଭୂଭାଗ ଉପରେ ବିଛେଇ ହେଇ ପଡିଚି । ମନେହେଲା ଆମ ପ୍ଲେନ୍ ସେତେବେଳେ ୟୁଗୋସ୍ଲୋଭିଆର କୌଣସି ପାର୍ବତ୍ୟ ଅଂଚଳ ଉପରେ ଉଡିଚାଲିଥାଏ । ପର୍ବତ ଶିଖର ଦିଶୁଥାଏ କୁଢକୁଢ ବାଲି ଗଦା ଭଳି । ପରେ ବୁଝିପାରିଲି ସେଗୁଡାକ ବାଲି ଗଦା ନୁହେଁ– ବରଫ ଗଦା ! ସୂର୍ଯ୍ୟକିରଣରେ ଝଟକୁଥିବା ବରଫ ଗଦା ସବୁ ବାଲିର ଭ୍ରମ ସୃଷ୍ଟିକରୁଥାଏ । ତାହା ଥିଲା ୟୁରୋପରେ ପ୍ରଥମ ସକାଳ ଦର୍ଶନର ସୁଯୋଗ ମୋ ପାଇଁ ।

ପ୍ଲେନ୍‌ରେ ବ୍ରେକ୍‌ଫାଷ୍ଟ ସର୍ଭିସ୍ ଆରମ୍ଭ ହେଉଥାଏ । ସିଟ୍‌ରୁ ବାହାରି ମୁହଁ ଧୋଇ-ପକେଇବାକୁ ନିରୁପମାଙ୍କୁ କହିଲି । ମୁଁ ବି ମୋ ସିଟ୍‌ରୁ ଉଠି ଏୟଲ୍‌ରେ କିଛି ସମୟ ଚାଲବୁଲ କଲି । ଟୟଲେଟ୍ ଦରଜା ପାଖରେ ଭିଡ ଲାଗିଥାଏ । ନିଜ ପାଳି ପାଇଁ ଅପେକ୍ଷା କରୁକରୁ ଆଖି ବୁଲେଇଲି କାଳେ କୌଣସି ଚିହ୍ନା ଲୋକଙ୍କୁ ଭେଟିବା ଆଶାରେ– କୌଣସି ଚିହ୍ନା ମୁହଁ ଦେଖିଲିନାହିଁ; କିନ୍ତୁ ଭାରତୀୟ ଯାତ୍ରୀମାନଙ୍କ ଭିତରେ ଦେଖିଲି ବହୁତ ବୁଢାବୁଢୀଙ୍କୁ । ମନେହେଉଥିଲା କେତେଜଣ ଥିଲେ ବିଲ୍‌କୁଲ୍ ନିରକ୍ଷର– ସେମାନେ ମୋଭଳି ପ୍ରଥମଥର ଆମେରିକା ଯାଉଥାନ୍ତି । ନିରୁପମାଙ୍କ ପାଇଁ ଅବଶ୍ୟ ଏ ଥିଲା ଦ୍ୱିତୀୟବାର ଆମେରିକା ଯିବା । ତେଣୁ ଆନ୍ତର୍ଜାତିକ ପ୍ଲେନ୍ ଯାତ୍ରା ତାଙ୍କ ପାଇଁ ସେଭଳି କୌତୂହଳ ସୃଷ୍ଟି କରୁନଥିବ

ଜାଣିଥିଲି । ଟୟଲେଟ୍ ପାଖରେ ଲାଗିଥିବା ଭିଡ ଭିତରେ ଲକ୍ଷ୍ୟ କଲି ଜଣେ ଭାରତୀୟ ମଧ୍ୟବୟସ୍କା ମହିଳା ଇତସ୍ତତଃ ହଉଥାନ୍ତି । ମୁଁ ତାଙ୍କର ଇତସ୍ତତାକୁ ଲକ୍ଷ୍ୟ କରି ଜାଣିଲି– ପ୍ଲେନ୍‌ରେ ଟୟଲେଟ୍ ବ୍ୟବହାର ତାଙ୍କ ପାଇଁ ନୂଆ । ତାଙ୍କ ସମସ୍ୟା ଜାଣିବାକୁ ଯେତେବେଳେ ପଚାରିଲି– କିଛି ସାହାଯ୍ୟ ଚାହୁଁଚନ୍ତି କି– ଉତ୍ତର ମିଳିଲା– କାଲି ରାତିରେ ଏ ପାଇଖାନା ଭିତରେ ପଶି ମୁଁ ଭାରି ହଇରାଣ ହେଇଚି ବାପା । ଯେତେ ଚେଷ୍ଟା କଲି କବାଟ ଖୋଲି ପାରିଲି ନାହିଁ । ବହୁତ ବାଡିଆବାଡି କଲା ପରେ ଜଣେ କର୍ମଚାରୀ ଆସି କବାଟ ଖୋଲିଲେ । ଏଇଲେ ଏ ଜନ୍ତା ଭିତରକୁ ପୁଣି ପଶିବାକୁ ଡର ମାଡୁଚି । କ'ଣ କରିବି– ମତେ ଇଂରେଜୀ କହିଆସେନି । ତମେ ମତେ ଟିକେ ସାହାଯ୍ୟ କରନ୍ତ ନାହିଁ? ମୁଁ ନିରୁପମାଙ୍କୁ ଡାକି କହିଲି ସେ ଭଦ୍ରମହିଳାଙ୍କୁ ସାହାଯ୍ୟ କରିବାକୁ ।

ନଅ ଦଶ ଘଣ୍ଟାର କ୍ରମାଗତ ଉଡାଣ ପରେ ପ୍ଲେନ୍ 'ଫ୍ରାଙ୍କ୍‌ଫର୍ଟ' ବିମାନ ବନ୍ଦରରେ ଅବତରଣର ସୂଚନା ମିଳିଲା । ସେତେବେଳକୁ ଭାରତୀୟ ସମୟ– ପୂର୍ବାହ୍ନ ପ୍ରାୟ ଏଗାରଟା– ଜର୍ମାନ୍ ସମୟ ସକାଳ ସାଢେ ଛ' ।

ପ୍ଲେନ୍‌ରୁ ଝରକା ବାହାରକୁ ଚାହିଁ ଦେଖିଲି– ଫ୍ରାଙ୍କ୍‌ଫର୍ଟ ବିମାନବନ୍ଦର ପାଖରେ ପାର୍କିଂ ଲଟ୍‌ମାନଙ୍କରେ ହଜାର ହଜାର ଗୁଂଜରପୋକ (ଇଂରେଜୀରେ – ବିଟଲ୍) ଏକାଠି ଜମିଗଲା ପରି ଏକ ଅଦ୍ଭୁତ ଦୃଶ୍ୟ ! ପ୍ରକୃତରେ ତାହା ଥିଲା– ହଜାର ହଜାର କାର୍ ପାର୍କିଂ ଜାଗାର ଦୃଶ୍ୟ । ଏତେ ସଂଖ୍ୟାରେ କାର୍ ଏକାଠି ହେବା ଦୃଶ୍ୟ ଦେଖିବା ମୋ ପାଇଁ ସେଇ ପ୍ରଥମ । ପୁଣି ଆହୁରି ଅଭିଭୂତକାରୀ ଥିଲା– ବିମାନ ବନ୍ଦରକୁ ଚାରିପଟୁ ଘେରିରହିଥିବା ମାଇଲ୍ ମାଇଲ୍ ବ୍ୟାପୀ ଘଞ୍ଚ ନୀଳ ଅରଣ୍ୟର ସେଇ ଅତ୍ୟନ୍ତ ମନୋରମ ଦୃଶ୍ୟ ! ତାହା ଥିଲା ୟୁରୋପରେ ଗ୍ରୀଷ୍ମଋତୁର ମନୋମୁଗ୍ଧକର ପାଇନ୍ ଅରଣ୍ୟଗୁଡ଼ିକର ସ୍ୱର୍ଗୀୟ ଦୃଶ୍ୟ । ପ୍ରକୃତି ଓ ବିଜ୍ଞାନର ଅପୂର୍ବ ସମନ୍ୱୟ ଓ ସହାବସ୍ଥାନର ସେଇ ବିଚିତ୍ର ଦୃଶ୍ୟ ମତେ ପାଶ୍ଚାତ୍ୟ ସଭ୍ୟତାର ଶକ୍ତି ଓ ସୌନ୍ଦର୍ଯ୍ୟ ସଂପର୍କରେ ପ୍ରଥମ ବଳିଷ୍ଠ ସୂଚନା ଦେବାକୁ ଆରମ୍ଭକଲା । ଏଭଳି ଦୃଶ୍ୟ ଭାରତର ଅଧିକାଂଶ ବିମାନ ବନ୍ଦର ନିକଟରେ ଦୁଷ୍ପ୍ରାପ୍ୟ ।

ପରବର୍ତ୍ତୀ ଉଡାଣ ପାଇଁ 'ଫ୍ରାଙ୍କ୍‌ଫର୍ଟ ବିମାନବନ୍ଦରରେ ଆମକୁ ଚାରିଘଣ୍ଟା ଅପେକ୍ଷା କରିବାକୁ ହେଲା । ଜର୍ମାନୀ ଦେଶର ମାଟିକୁ ପ୍ରଥମ ଥର ପାଇଁ ଛୁଉଁଥିବା ଯେକୌଣସି ସଚେତନ ଭାରତୀୟ ପରି ମୁଁ ସେଠାକାର ଲୋକମାନଙ୍କ ଚାଲିଚଳଣ ହାବଭାବରୁ ପ୍ରଥମେ ଖୋଜିବା ଆରମ୍ଭ କରିଥିଲି– ଭାରତ ସହିତ ଜର୍ମାନୀର ସାଂସ୍କୃତିକ ସଂପର୍କର ସୂତ୍ର; କିନ୍ତୁ ବିମାନ ବନ୍ଦରରେ ଚାରିଘଣ୍ଟା ରହଣି ଭିତରେ ଦେଖିଲି ବିମାନବନ୍ଦରର ବହୁ କର୍ମଚାରୀ ଭାରତୀୟ ବଂଶଜ । ତା'ଛଡା ଖୋଦ୍ ଜର୍ମାନୀ କର୍ମଚାରୀମାନେ ବି ଆମ ଭାରତୀୟଙ୍କ ପରି ଅନେକଟା ଖୁମାଣିଆ ମୁହଁ କରି ଯାତ୍ରୀମାନଙ୍କ ପ୍ରତି ଅମନୋଯୋଗୀ । ମୁହଁରେ ହସ ନଥାଏ । ଆଗାମୀ ଫ୍ଲାଇଟ୍ ବିଷୟରେ କିଛି ପଚାରିବାକୁ ଯାଇ ଯାହା ବ୍ୟବହାର ପାଇଲି

ତାହା ମତେ ସୁଖକର ମନେହେଲାନାହିଁ । ବୋଧହୁଏ ଦ୍ୱିତୀୟ ବିଶ୍ୱଯୁଦ୍ଧର ଏଇ ପ୍ରଭାବ ଏ ଦେଶ ଉପରେ ଏଇଆ ଭାବି ଚୁପ୍ ରହିଲି ।

ଫ୍ରାଙ୍କ୍‌ଫର୍ଟ ଆନ୍ତର୍ଜାତିକ ବିମାନବନ୍ଦର ଏକ ବିଶାଳ ସ୍ୱୟଂଚାଳିତ ଯନ୍ତ୍ର ଭଳି ସଂସ୍ଥା । ଏଠାରେ ଏକକାଳୀନ ଶହଶହ ପ୍ଲେନ୍ ଅବତରଣ କରନ୍ତି ଓ ଉଡାଣ ନିଅନ୍ତି । ସେ ଦୃଶ୍ୟ ଥିଲା ମୋର କଳ୍ପନାତୀତ । ପରେ ଅବଶ୍ୟ ମୁଁ ସେଭଳି ଅଭିଭୂତକାରୀ ଦୃଶ୍ୟ ଅନେକବାର ଦେଖିବାକୁ ପାଇଥିଲି ଲଣ୍ଡନର ହିଥ୍ରୋ, ହଲାଣ୍ଡର ଆମ୍‌ଷ୍ଟାର୍‌ଡ୍ୟାମ୍, ଆମେରିକାର ନ୍ୟୁୟର୍କ, ଆଟ୍‌ଲାଣ୍ଟା, ସିକାଗୋ, ଡେଟ୍ରଏଟ୍, ମିନିଆପଲିସ୍ ପ୍ରଭୃତି ବଡ ବଡ ଆନ୍ତର୍ଜାତିକ ବିମାନବନ୍ଦର ମାନଙ୍କରେ । ସେସବୁଠାରେ ଗୋଟାଏ ଗୋଟାଏ ରନ୍‌ୱେରେ ପଛକୁ ପଛ ଧାଡିଧାଡି ହେଇ ଏକକାଳୀନ ଚାଳିଶ ପଚାଶଟା ପ୍ଲେନ୍ ଯେପରି ଚଢେଇମାନଙ୍କ ପରି ମାଟିରେ ବସିରହିଥାନ୍ତି ଓ ପରେପରେ ଗୋଟାକ ପରେ ଗୋଟାଏ ଯେଭଳି ଟେକ୍‌ଅଫ୍ ନିଅନ୍ତି ଓ ଗନ୍ତବ୍ୟ ଆକାଶ ପଥରେ ଫୁର୍‌ଫାର୍ ହେଇ ଉଡିଯାଆନ୍ତି ସେ ଦୃଶ୍ୟ ଆଖିରେ ନଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରିହୁଏନା । ପାଶ୍ଚାତ୍ୟ ସଭ୍ୟତାର ମୂଳ ଶକ୍ତି ଶୃଂଖଳା ଜ୍ଞାନ । ତା' ସହିତ ଏମାନଙ୍କର 'ଟେକ୍ନୋଲଜିକାଲ୍ ପ୍ରେସିସନ୍' । ଏହାର ମର୍ମ ବୁଝିଲା ପରେ ଯାଇ ପାଶ୍ଚାତ୍ୟ ସଭ୍ୟତାର ହଜାର ଦୋଷ କ୍ଷମାକରି ସେଠାକାର ଲୋକମାନଙ୍କ ପ୍ରତି ସ୍ୱତଃ ସମ୍ମାନବୋଧ ଆସିଯାଏ ମନରେ । ସେଇ ମନୋଭାବ ମତେ ଆଚ୍ଛନ୍ନ କରିବାକୁ ଆରମ୍ଭ କଲା ଫ୍ରାଙ୍କ୍‌ଫର୍ଟରୁ ।

ଏହାପରେ ଆରମ୍ଭ ହେଲା ଟ୍ରାନ୍ସ ଆଟ୍‌ଲାଣ୍ଟିକ୍ ଉଡାଣ । ପ୍ରାୟ ତିନିହଜାର ମାଇଲ୍ ଜଳଭାଗକୁ ଏକ ସପ୍ତାହରେ ଅତିକ୍ରମ କରିବା ପ୍ରୟାସ ନିଶ୍ଚିତ ଭାବେ ଶଂକାପ୍ରଦ । କିନ୍ତୁ ଜିପିଏସ୍ ସ୍କ୍ରିନ୍‌ରେ ଆଟ୍‌ଲାଣ୍ଟିକ୍ ମହାସାଗରର ଭୌଗୋଳିକ ଚିତ୍ର ମତେ ପୁଣି ବିସ୍ମୟାଭିଭୂତ କଲା । ଏହାର ବିଭିନ୍ନ ଅଂଶର ଅଗଭୀରତା ଓ ଜଳଭାଗ ଭିତରେ ଥିବା ଅସଂଖ୍ୟ ଛୋଟବଡ ଦ୍ୱୀପଗୁଡିକୁ ମାନଚିତ୍ରରେ ଦେଖିଲା ବେଳେ ମନରେ ଅହେତୁକ ଆଶା ଜନ୍ମୁଥାଏ– ଭଗବାନ୍ ନକରନ୍ତୁ ଯଦି ଦୈବାତ୍ ଆମ ପ୍ଲେନ୍‌ଟା ବର୍ତ୍ତମାନ ଦୁର୍ଘଟଣାଗ୍ରସ୍ତ ହେଇ ତଳକୁ ଖସିପଡେ ତେବେ ହୁଏତ ଆମମାନଙ୍କର ବଞ୍ଚିଯିବାର ସଂଭାବନା ତଥାପି ରହିଚି ଯାହା ସ୍ଥଳଭାଗରେ ହୁଅନ୍ତା ବୋଧହୁଏ ଅସଂଭବ !

ଏଇଭଳି ଉଦ୍‌ଭଟ କଳ୍ପନାଜଳ୍ପନା ଭିତରେ ଓ ପ୍ରାୟ ସାତଘଣ୍ଟା ଅବିରାମ ଉଡାଣ ପରେ ଆମ ପ୍ଲେନ୍ ଆମେରିକା ମହାଦେଶର ପୂର୍ବଉପକୂଳର ନିଉଫାଉଣ୍ଡଲ୍ୟାଣ୍ଡ୍ ଦ୍ୱୀପର ଆକାଶ ସୀମାରେ ପହଞ୍ଚିଲା । ଆସିଗଲା ତେବେ ଆମେରିକା ! ନିଉଫାଉଣ୍ଡଲ୍ୟାଣ୍ଡ ମୋର ଆମେରିକା ସଂପର୍କରେ ଜ୍ଞାନର ଏକ ବତୀଘର ଭଳି । ସେଇ ବତୀଘରର ଆଲୋକ ଦେଖାଯିବାକ୍ଷଣି ବାସ୍ତବିକ୍ ଏକ ପରିପୂର୍ଣ୍ଣତାବୋଧ ମନକୁ ଛାଏଁ ଛୁଇଁଲା । ମୋ ଜୀବନରେ ଆମେରିକା ଭ୍ରମଣ ତେବେ ସତରେ ବାସ୍ତବରେ ପରିଣତ ହେଲା !

ଏହାପରେ ନିରୁପମାଙ୍କୁ ନିଦରୁ ଉଠେଇ ଘୋଷଣାକଲି – ଆଟ୍‌ଲାଣ୍ଟାରେ ଆମେ ପହଞ୍ଚିଲେ ଜାଣ । ଆଉ କେତେ ଘଣ୍ଟା ମାତ୍ର । ଭାବୁଚି ବୁଲୁ ପ୍ରବୀର କୁନି ପ୍ରତୀକଙ୍କୁ ନେଇ ତ ନିଶ୍ଚୟ ଆସିଥିବେ ଏୟାରପୋର୍ଟକୁ । କିନ୍ତୁ କ'ଣ ମନେହଉଚି ଜାଣ– କନେକ୍ଟିକଟ୍‌ରୁ ହୁଏତ ମହେଶ ଆଉ ସୁଲୁ ବି ଅମୃତ ମନୀଶଙ୍କୁ ସାଙ୍ଗରେ ନେଇ ଆସିଥାଇପାରନ୍ତି । ହଁ, ଅମୃତ ମନିଶ ପ୍ରତୀକ ନିଶ୍ଚୟ ଆସିଥିବେ ଏୟାରପୋର୍ଟକୁ ! ନାତି ତିନିଙ୍କ ନାମ ଉଚ୍ଚାରଣ ମାତ୍ରେ ନିରୁପମା ଚେଙ୍ଗାହେଇ ଉଠିବସିଲେ । ଏହାପରେ ଆରମ୍ଭ ହେଲା ପ୍ଲେନ୍‌ର ଲ୍ୟାଣ୍ଡିଂ ଟାଇମ୍‌କୁ ଉଦ୍‌ଗ୍ରୀବ ହୋଇ ଅପେକ୍ଷାକରିବା; କିନ୍ତୁ ସମୟ ସତେକି ଆଦୌ ସରିବାକୁ ନାରାଜ !

## ଆମେରିକାର ପ୍ରଥମ ମାନବିକ ସ୍ପର୍ଶ

ନିର୍ଦ୍ଧାରିତ ସମୟରେ ଆମ ପ୍ଲେନ୍ ଅବତରଣ କଲା ଯୁକ୍ତରାଷ୍ଟ୍ର ଆମେରିକାର ଦାକ୍ଷିଣାତ୍ୟ ରାଜ୍ୟ ଜର୍ଜିଆର ପ୍ରଧାନ ସହର ଓ ଆମ ଗନ୍ତବ୍ୟସ୍ଥଳ ଆଟଲାଣ୍ଟା ବିମାନ-ବନ୍ଦରରେ । ପ୍ଲେନ୍‌ରୁ ଓହ୍ଲାଇ ଆମେ ଚାଲିଲୁ ଲଗେଜ୍ କ୍ଲିୟରାନ୍ସ ସେଣ୍ଟର୍‌କୁ । ଶହଶହ ସହଯାତ୍ରୀ ବି ଚାଲିଥାନ୍ତି ସେଇ ଦିଗରେ । ଲଗେଜ୍ କ୍ଲିୟରାନ୍ସ ପରେ କଷ୍ଟମ୍‌ସ୍ କ୍ଲିୟରାନ୍ସ । ସେଇଟା ଆମ ପାଇଁ ଚିନ୍ତାର ବିଷୟ । ପ୍ରଥମବାର ଆନ୍ତର୍ଜାତିକ ବିମାନଯାତ୍ରା । ହଜାରେ ସତର୍କତା ଭିତରେ ଗତିକରି ଶେଷରେ ଯାଇ ବାହାରିବୁ ଏ ଅଡ୍‌ଡାରୁ । ନିରୁପମା ଚାରିଆଡକୁ ଚାହୁଁଥାନ୍ତି– କାଳେ କୋଉଠି ଦେଖାପଡିଯିବକି ମୁହଁ ଆମ ପିଲାଙ୍କର– ନାତି ତିନୋଟିଙ୍କର ?

କିନ୍ତୁ, ଦୁର୍ଯୋଗ ! ଲଗେଜ୍ ସେଣ୍ଟର୍‌ରେ ଘାଇଁ ଘାଇଁ ହେଇ ଘୂରୁଥିବା କନ୍‌ଭେୟର୍ ବେଲ୍ଟ୍‌ରେ ଆମର ଚାରିଟା ସୁଟ୍‌କେଶ୍ ପହଞ୍ଚିବାକୁ ଡେରିହଉଥାଏ । ବହୁତବେଳ ଅପେକ୍ଷା କଲା ପରେ ଯାଇ ଗୋଟାଏ ସୁଟ୍‌କେଶ୍ ପହଞ୍ଚିଲା ହାତ ପାହାନ୍ତିରେ । ସେଇଟାକୁ ତଳକୁ କାଢିପକେଇବାକୁ ହାତ ବଢେଇଦେଲା କ୍ଷଣି ହଠାତ୍ ମୋ ପିଠି ଉପରେ ଗୋଟାଏ କିଏ ଜୋର୍‌ରେ ଧକ୍କା ଦେଲା ଜାଣି ପଛକୁ ବୁଲିପଡି ଚାହିଁଲି– ଦେଖିଲି ଏକ ଅସଂଭବ ବ୍ୟାପାର । ଗୋଟାଏ ମସ୍ତବଡ କୁକୁର– ବାଘ ଭଳି ଆଲ୍‌ସେସିୟାନ୍– ମତେ ଜଗି ଠିଆହେଇଥାଏ । ଟିକେ ଦୂରରେ ତା' ମାଷ୍ଟର୍, ଜଣେ ୟୁନିଫର୍ମପିନ୍ଧା ପୁଲିସ୍ ଅଫିସ୍‌ର ଠିଆହେଇଥାନ୍ତି । ବ୍ୟାପାରଟାକୁ ଭଲକରି ବୁଝିବା ପୂର୍ବରୁ ଆମକୁ ସେ ଅଫିସର୍ ନିର୍ଦ୍ଦେଶ ଦେଲେ– "ଗୋ ଟୁ ଦ' ବ୍ଲୁ-ଲାଇନ୍ !"

ବ୍ଲୁ-ଲାଇନ୍ ମାନେ ଡ୍ରଗ୍ ଚେକିଂ ! ମୋ ଛାତି ଥରିବାକୁ ଲାଗିଲା । ବାକ୍ସ ଚାରିଟାକୁ କନ୍‌ଭେୟର୍ ବେଲ୍ଟ୍‌ରୁ କାଢି ଠେଲା ଗାଡିରେ ଲୋଡ୍ କରି ଆମେ ସ୍ୱାମୀ ସ୍ତ୍ରୀ ବାଧ୍ୟ ଶିଶୁ ଯୋଡିଏ ପରି ଚାଲିଲୁ ଆମକୁ ଯୁଆଡକୁ ଯିବାକୁ ନିର୍ଦ୍ଦେଶ ଦିଆଗଲା ।

## ଡ୍ରଗ୍ ସର୍ଚ୍ଚର ଫଳ ବାହାରିଲା ଭିନ୍ନ ପ୍ରକାର

ଆମକୁ ନିଆଗଲା ଗୋଟାଏ ସ୍ୱତନ୍ତ୍ର ସର୍ଚ୍ଚ-ରୁମ୍‌କୁ । ସେଠି ଜଣେ ଆମେରିକାନ୍ ଅଫିସର୍ ଆମର ଲଗେଜ୍ ଗୋଟି ଗୋଟି କରି ଖାନତଲାସ ଆରମ୍ଭକଲେ । ଖାନତଲାସରୁ ଯାହା ବାହାରିଲା ସେଥିରେ ଆମ ହଲକ ଶୁଖିଗଲା । ଗୋଟାଏ ବାକ୍ସରେ ଭର୍ତ୍ତିହେଇ ରହିଥାଏ ଖାଲି ପିଠା ଆଉ ମିଠା । ଦୁଇଦିନ ଲାଗି ନିରୁପମା ଓ ଝିଅ ଜୁଲି, ପିତମ୍ପୁରାରେ ତାଙ୍କ ଦିଲ୍ଲୀ ଘରେ ସେ ପିଠାଗୁଡାକ ଛାଣିଥିଲେ । ବିଚରା ଅଭିଜିତ୍ ଦିଲ୍ଲୀ ବୁଲିବୁଲି ନାନା ପ୍ରକାର ମିଠେଇ କିଣାକିଣି କରିଥିଲେ । ଏ ସବୁ ଆସିଥାଏ ଆମ ଦୁଇ ଝିଅ ଜୋଇଁ ଆଉ ସେମାନଙ୍କର ତିନିପୁଅ ଅମୃତ, ମନୀଶ ଓ ପ୍ରତୀକଙ୍କ ପାଇଁ । ଆମେରିକାରେ ଜନ୍ମିତ ଏଇ ପିଲା ତିନୋଟିଙ୍କୁ ଭାରତୀୟ ପିଠାପଣା ସଂପର୍କରେ ଚିହ୍ନା କରେଇଦବା ଥିଲା ମତଲବ୍ ଯା' ପଛରେ ।

କିନ୍ତୁ ନିର୍ଦ୍ଦୟ ଆମେରିକାନ୍ ଅଫିସରଟି ଆଖିରେ ସେ ପିଠାମିଠା ବାକ୍ସଟା ପଡିଯିବା ମାତ୍ରେ ସତେବା ସେ ଗୋଟାଏ ରାକ୍ଷସ ପାଲଟିଗଲା । ପିଠା ଆଉ ମିଠା ବାକ୍ସଟାକୁ ଗୋଟାଏ ଝଟକାରେ ଉଠେଇନେଇ ସିଧା ଗୋଟାଏ ଡଷ୍ଟବିନ୍‌ରେ ଅଜାଡିଦେବାକୁ ଟେକୁଥିବା ଦେଖି ନିରୁପମା ହାଉଳି ଖାଇଲେ– "ଫର୍ ଗଡ୍‌ସେକ୍– ନୋ... ନୋ... ନୋ... ପ୍ଲିଜ୍ ଦୋଣ୍ଟ୍ ଡୁ ଦ୍ୟାଟ୍ ! ଡୋଣ୍ଟ୍ ଡୁ ଦ୍ୟାଟ୍ !''

ଲୋକଟାର ହାତ ମୁହୂର୍ତ୍ତକ ପାଇଁ ଅଟକି ଗଲା । ଠିକ୍ ସେତିକିବେଳେ ଦୈବ-ପ୍ରେରିତ ଭାବେ ଗୋଟାଏ ଅପୂର୍ବ ଯୋଗାଯୋଗ ଘଟିଲା । ସେ ଅଫିସର୍ ସମେତ ରୁମ୍‌ରେ ଉପସ୍ଥିତ ଆମେ ତିନିଜଣଯାକ ଏକାବେଳକେ ଲକ୍ଷ୍ୟକଲୁ– ରୁମ୍‌ର EXIT କାଚ କବାଟ ଉପରେ ଲେସି ହେଇ ବାହାରପାଖୁ ଭିତରକୁ ଉଣ୍ଡୁଥାଏ ତିନି ଯୋଡା ଆଖି ! ଜୁଳୁଜୁଳୁ କରି ରୁମ୍ ଭିତରକୁ ଅନାଇରହିଥାନ୍ତି ତିନିଯୋଡା କଳାକଳା ଡୋଳା !

ନିରୁପମା କବାଟ ପାଖକୁ ଝପଟିଯାଇ କାଚ ଏପାଖୁ ସେଇ ଆଖି ଛଟିକୁ ଘନଘନ ଚୁମା ଦେବାରେ ଲାଗିଲେ । ସେ ଦୃଶ୍ୟ ଦେଖି ଅଫିସରଟି ମୋ ମୁହଁକୁ କେମିତି ଗୋଟାଏ ଚାହାଣିରେ ଅନାଇ ପଚାରିଲା,

"Hey, who are they– these kids ? – Your grand children ?"

"Yes ! These are the titbits we have got with us to entertain our three grand children born in this country. These are nothing but some home made sweets our Indian children would love. We thought of imparting a little cultural education to these kids who are yet alien to their own culture. For your kind information Officer, I am a teacher and I write stories for children."

ମୋ କଥା ଶୁଣି ଲୋକଟା ଉପରକୁ ଟେକିଥିବା ମିଠା ବାକ୍ସଟାକୁ ଆସ୍ତେ କରି ପୁଣି

ରଖିଦେଲା ଟେବ୍‌ଲ୍ ଉପରେ । ତା' ଆଖିର ଚେହେରା ସେତେବେଳୁ ପୂରା ଅଲଗା । ସାଢେ ଛ'ଫୁଟିଆ ଅର୍ଘାତିଆ ମଣିଷଟା ସେତେବେଳକୁ ଭାବ ଗଦ୍‌ଗଦ୍ ହେଇଗଲାଣି ଦେଖି ମୋର ଆଶା ସଂଚାର ହେଲା । ପ୍ରସ୍ଥାନ କବାଟ କାଚ ଉପରେ ନାକ ତିନିଟାକୁ ଚାପିଦେଇ କୁଲୁରୁବୁଲୁରୁ ହେଇ ଆମ ଆଡକୁ ହାତ ହଲଉଥବା ଶିଶୁ ତିନୋଟିଙ୍କ ଆଡୁ ମୁହଁ ବୁଲେଇ ଆଣି ସେ ମତେ ଚାହିଁଲା ଛଳଛଳ ଆଖିରେ ଆଉ କହିଲା–

"Hey ! Why didn't you tell me that from the beginning ? You know I too am a grand father. I do have a heart for sure. Why didn't you say that from the beginning ? Well – you may take away all these and my best wishes too for the kids"

କଷ୍ଟମସ୍ କ୍ଲିୟରାନ୍ସ ସାରି ଆମେ ଏୟାରପୋର୍ଟରୁ ବାହରିଆସିଲୁ । ଆମକୁ ପାଛୋଟି ନେବା ପାଇଁ ବିମାନବନ୍ଦରରେ ଉପସ୍ଥିତ ଥିଲେ ମୋର ଦୁଇ ଜୋଇଁ, ଝିଅ ଓ ଆମର ତିନି ନାତି । ବଡ ଜୋଇଁ ପ୍ରବୀର ଓ ଝିଅ ବୁଲବୁଲ ସେମାନଙ୍କର ଚାରିବର୍ଷର ପୁଅ ପ୍ରତୀକକୁ ଧରି ଆସିଥିଲେ ଟେନୀସୀର ଚାଟାନୁଗା ସହରରୁ । ମଝିଆ ଜୋଇଁ ମହେଶ ଓ ଝିଅ ନିବେଦିତା ସେମାନଙ୍କର ଦୁଇପୁଅ ଅମୃତ (ସାତବର୍ଷ) ଓ ମନୀଶ (ଦୁଇବର୍ଷ)ଙ୍କୁ ନେଇ ଆସିଥିଲେ ସୁଦୂର କନେକ୍ଟିକଟ୍ ରାଜ୍ୟର ଗ୍ଲାସ୍‌ଟନ୍‌ବରି ସହରରୁ । ମିଳନପର୍ବର କୋଳାକୋଳି ହର୍ଷୋଲ୍ଲାସ ଅନ୍ତେ ଆମେ ବାହାରିଲୁ ଚାଟାନୁଗା । ସେଇଠି ସ୍ଥିର ହେଇଥାଏ ଆମର ଏଥରକର ଦୁଇମାସିଆ ରହଣି– ଆମେରିକା ପ୍ରଥମବାର ଭ୍ରମଣ କାଳର ।

ଦୁଇଟି କାର୍‌ରେ ଜିନିଷପତ୍ର ଲୋଡ୍‌କରି ବାହାରିଲୁ ଆମେମାନେ ଏୟାରପୋର୍ଟ ବାହାରକୁ । ବାହାରକୁ ବାହାରିବାମାତ୍ରେ ମୁଁ ମୋ ଉତ୍ସୁକତା ସଂଭାଳି ନପାରି ଝିଅଜୋଇଁଙ୍କୁ ପଚାରିଲି ସେ ରହସ୍ୟ– "ଆରେ ! ପିଲା ତିନିଟା କେମିତି ଚାଲିଗଲେ ସେ ପର୍ଯ୍ୟନ୍ତ– ଏୟାରପୋର୍ଟ ଭିତରର ସିକ୍ୟୁରିଟି ଜୋନ୍ ଭିତର କଷ୍ଟମସ୍ ଚେକିଂ ରୁମ୍‌ର କବାଟ ପର୍ଯ୍ୟନ୍ତ ? ସେମାନଙ୍କୁ ସେଠି ଠିକଣା ସମୟରେ ନଦେଖିଥିଲେ ତ ଆଜି ସବୁତକ ପିଠାମିଠା ଆମର ଯାଇଥାନ୍ତା ଏ ଦେଶର ଘୁସୁରିଙ୍କ ମୁହଁକୁ ! ତୋ' ମମି ଆଉ ଜୁଲିଙ୍କ ଏତେ ପରିଶ୍ରମ ମାଟିରେ ମିଶିଯାଇଥାନ୍ତା ଯାହା ଲାଗୁଚି !"

ଉତ୍ତର ମିଳିଲା– ଏୟାର୍‌ପୋର୍ଟରୁ ତମର ବାହାରିବାରେ ଡେରି ହଉଚି ଦେଖି ଭାବିଲୁ କଷ୍ଟମସ୍‌ବାଲା ତୁମକୁ ନିଶ୍ଚୟ ହଇରାଣ କରୁଚନ୍ତି– ନହେଲେ ଏତେ ଡେରି ଲାଗନ୍ତା କାହିଁକି ପଦାକୁ ବାହାରିବାକୁ ? ପିଲା ତିନିଟା ପଶିଗଲେ ଅଜାଆଈଙ୍କୁ ଖୋଜିବାକୁ ଭିତରକୁ । ଏ ଦେଶରେ ଛୁଆମାନଙ୍କୁ ସବୁ ଛାଡ !

ଆମେରିକାରେ ମାନବିକତାର ସେଇ ଥିଲା ପ୍ରଥମ ପରିଚୟ ! ସେ ପରିଚୟ ମତେ ମିଳିଗଲା 'ଆମେରିକା ଭ୍ରମଣ'ର ସେଇ ପ୍ରଥମ-ପାଦ ଯାତ୍ରାରୁ ।

## ଚାଟାନୁଗା

ଚାଟାନୁଗା ନାଁଟା ମୂଳରୁ ମତେ କେମିତିକେମିତି ଲାଗୁଥାଏ । ବଡ କଉତୁକିଆ ନାଁ ନିଶ୍ଚୟ । ଆମେରିକାର ଭୂଗୋଳ ପଢିଲାବେଳେ ସେଭଳି ନାଁ କେବେ ଶୁଣିନଥିଲି । ତେଣୁ ସେ ନାଁର ତାତ୍ପର୍ଯ୍ୟ ଜାଣିବାକୁ ପ୍ରବୀରଙ୍କୁ ପଚାରି ଜାଣିଲି– ଏହା ଗୋଟିଏ ରେଡ୍ ଇଣ୍ଡିଆନ୍ ନାମ । ଆମେରିକାରେ ଏମିତି ରେଡ୍ ଇଣ୍ଡିଆନ୍ ନାଁର ବହୁ ସହର, ଏପରିକି ରାଜ୍ୟ ଅଛି । ରେଡ୍ ଇଣ୍ଡିଆନ୍‌ମାନେ ଆମେରିକାର ଆଦିବାସୀ ।

ଚାଟାନୁଗା ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣାଂଚଳ ରାଜ୍ୟ ଟେନାସୀର ଗୋଟିଏ ଛୋଟ ସହର । ଏଇଠି ପ୍ରବୀର ଓ ବୁଲବୁଲ ଉଭୟ ଗୋଟିଏ ନ୍ୟୁକ୍ଲିୟାର୍ ରିଆକ୍ଟର୍ ନିର୍ମାଣକାରୀ ସଂସ୍ଥାର ଇଂଜିନିୟର୍ ଥିଲେ ସେତେବେଳେ । ସେମାନେ ତାଙ୍କର ଛୋଟ ପୁଅ ପ୍ରତୀକକୁ ନେଇ ଗୋଟିଏ ଭଡା ଘରେ ରହୁଥିଲେ– ସହରର ଗୋଟାଏ ସୁନ୍ଦର ଅଂଚଳରେ । ସେ ଜାଗାର ନାଁ ହିକ୍ସନ୍ (Hixon) । ଆଟ୍‌ଲାଣ୍ଟା ଏୟାରପୋର୍ଟରୁ ତାଙ୍କ ଘର ପ୍ରାୟ ତିନିଘଣ୍ଟାର ଡ୍ରାଇଭ୍ । ଆଟ୍‌ଲାଣ୍ଟା ଏକ ବିଶାଳ ସହର । ଏ ସହର ଭିତର ଦେଇ ଆମ କାର୍ ଗତି କରୁଥିଲା ବେଳେ ପ୍ରବୀର ମତେ ଆଟ୍‌ଲାଣ୍ଟାର ଗୁରୁତ୍ୱ ବିଷୟରେ କେତେଟା ଆଗୁଆ ଖବର ଜଣେଇଦେଲେ । କହିଲେ, "ନନା ! ଏ ସହରଟା ପୂରା କଳା ଲୋକଙ୍କ ସହର– ହେଲେବି ଏଠି ଭର୍ତ୍ତି ହେଇ ରହିଚନ୍ତି ଆମ ଭାରତୀୟ ଲୋକ– ବିଶେଷକରି ଗୁଜୁରାଟି ଲୋକ । ପୂରା ଗାଁ ବସେଇଦେଇଚନ୍ତି ଗୁଜୁରାଟିମାନେ ଏ ରାଜ୍ୟରେ । ଗୁଜୁରାଟିଙ୍କୁ ଏ ଦେଶର ଲୋକେ ନାଁ ଦେଇଚନ୍ତି ପଟେଲ ମୋଟେଲ । ଏଠି ଯୋଉଠି ଦେଖିବେ ଗୋଟାଏ ହୋଟେଲ କି ମୋଟେଲ ତା' ମାଲିକ ନିଶ୍ଚେ ହେଇଥିବେ ପଟେଲ୍ ସାଙ୍ଗିଆର ଗୁଜୁରାଟି ଲୋକ । ହୋଟେଲ ଓ ମୋଟେଲ ଏମାନଙ୍କର ଏକଚାଟିଆ ବ୍ୟବସାୟ କହିଲେ ଚଳେ ଏ ଦେଶରେ । ଆମେ ଆଟ୍‌ଲାଣ୍ଟା ବୁଲିବାକୁ ଆସିବା । ଏଠି ଦେଖିବେ କେତେଟା ଦର୍ଶନୀୟ ଜିନିଷ– ସି.ଏନ୍.ଏନ୍ ଟାୱାର୍, କୋକାକୋଲା ବଟଲିଂ ପ୍ଲାଣ୍ଟ୍ ଆଉ ସବୁଠୁ ବଢିଆ ଗୋଟାଏ ଜାଗା– ୱର୍ଲଡ୍ ଫାର୍ମରସ୍ ମାର୍କେଟ୍ ! ଏ ମାର୍କେଟ୍‌ରେ ସାରା ପୃଥିବୀର ସବୁ ଦେଶର ଫଳମୂଳ ପନିପରିବା ମିଳେ । ଏପରିକି ଭଇଁଚି କୋଳି, ନରକୋଳି, ବେତକୋଳି ପର୍ଯ୍ୟନ୍ତ ଯାହା ଖୋଜିବେ ମିଳିବ ଏ ମାର୍କେଟ୍‌ରେ ! ..."

"ଆଉ ପାନ ? ପାନପତ୍ର ମିଳେ ଏଠି ?"– ମୁଁ ସେତେବେଳେ ଖୁବ୍ ପାନ ଖାଉଥିଲି । ଆମ ସାଙ୍ଗରେ ଥୋଡାଏ ପାନପତ୍ର ବି ଅଣାଯାଇଥିଲା ଦିଲ୍ଲୀରୁ । ସେ ପାନପତ୍ର ଡବାଟାକୁ ବି ଡ୍ରଗ୍ ମନେକରି ପିଠା ମିଠା ସାଙ୍ଗରେ ସେଇ କଷ୍ଟମସ୍ ଅଫିସରଟି ଫିଙ୍ଗିଦବାକୁ ଯାଉଥିଲା ଅଳିଆ ବାକ୍ସକୁ । ଦୈବାତ୍ ବର୍ତ୍ତିଗଲା ସେତକ– ଆମ ନାତି ତିନିଙ୍କ କୃପାରୁ ସିନା !

ପ୍ରାୟ ଦି'ଘଣ୍ଟା ଡ୍ରାଇଭ୍ ପରେ ପହଞ୍ଚିଲୁ ଚାଟାନୁଗାରେ । ଏମାନେ ରହୁଥିବା

ହିକ୍ସନ୍‌ଟାଉନ୍ ଭିତରେ ତାଙ୍କ ଘରଟା ଗୋଟାଏ ନିପଟ ବଣ ଭିତରେ କହିଲେ ଚଳେ । ଘର ଚାରିପାଖ ବିଶାଳ ବିଶାଳ ବୃକ୍ଷ ସଂଭାରରେ ଭରପୂର । କି ଗଛ ସେଗୁଡ଼ିକ କେଜାଣି ! ଶୁଣିଲି– ଆମେରିକାର ସବୁ ମଧ୍ୟବିତ୍ତ ଲୋକ ଏଇଭଳି ବଣୁଆ ନିକାଞ୍ଚନ ସ୍ଥାନରେ ଘର କରି ରହନ୍ତି । ସବୁ ଘର କାଠରେ ତିଆରି । କାଠ ପ୍ରଚୁର । ଅରଣ୍ୟରେ ବି ପ୍ରଚୁର ଓକ୍, ମ୍ୟାପ୍ଲ, ପାଇନ୍ ଇତ୍ୟାଦି ବୃକ୍ଷ-ସଂପଦ । ଏମାନଙ୍କ କଲୋନିର ନାମ– 'ହାମ୍ପଟନ୍ ଉଡସ୍ ସର୍କଲ୍' ।

ରାସ୍ତାରୁ ଘରର ଡ୍ରାଇଭ୍-ୱେକୁ ମୋଡ଼ିଲାବେଳେ ନାକରେ ବାଜିଲା ଏକ ମନୋରମ ବାସ୍ନା– ଅବିକଳ ପଦ୍ମଫୁଲର ବାସ୍ନା । ଆଶ୍ଚର୍ଯ୍ୟ ହେଲି । ପଚାରିଲି– ପଦ୍ମଫୁଲର ଏ ଅପୂର୍ବ ସୁବାସ କୋଉଠୁ ଆସିଲା ?

ମତେ ଝିଅ ବୁଲବୁଲ ଦେଖେଇଲା ଗେଟ୍ ଖୁଣ୍ଟ କଡ଼କୁ ଲାଗି ବଡ଼ବଡ଼ ଚଉଡ଼ା ପତ୍ର ଥିବା ଗୋଟିଏ ଗଛ ଆଡ଼କୁ ଯୋଉଥିରେ ପଦ୍ମଫୁଲ ଆକୃତିର ବଡ଼ବଡ଼ ଧଳା ଫୁଲ ବହୁସଂଖ୍ୟାରେ ଫୁଟି ଚହଟୁଥାଏ । ବୁଲବୁଲ କହିଲା– ''ଏ ବାସ୍ନା ଏଇ ଗଛର ଫୁଲର ।''

ମ୍ୟାଗ୍ନୋଲିଆ ନାଁ ମୁଁ ଶୁଣିଥିଲି ଖୁବ୍ ପିଲାଦିନେ । ମୋ ଅଜାଙ୍କ ବଗିଚାରେ ଗୋଟାଏ ବଡ଼ ଗଛକୁ ଚିହ୍ନେଇଦେଇଥିଲେ ଅଜା କୁଳମଣି ମିଶ୍ର, ଆଉ କହିଥିଲେ, ଯା'ର ପୂରା ନାଁ କ'ଣ ଜାଣୁ ? ମନେରଖ– ମ୍ୟାଗ୍‌ନୋଲିଆ ଗ୍ରାଣ୍ଡିଫ୍ଲୋରା । ଏ ଗଛରେ ଫୁଟିବ ସେ ଫୁଲ ଗଛଟା ବଡ଼ ହେଇଗଲେ । କେମିତି ଫୁଲ ଜାଣିଚୁ– ଅବିକଳ ସରସ୍ୱତୀଙ୍କ ପଦ୍ମାସନର ବର୍ଣ୍ଣନା ଯେମିତି– ବିରାଟ ଧଳା ପଦ୍ମଫୁଲ, ଯାହାକୁ କହନ୍ତି ଶତଦଳପଦ୍ମ! ଏ ଫୁଲ ଫୁଟିଲେ ଖଣ୍ଡମଣ୍ଡଳ ମହକିଯିବ ବାସ୍ନାରେ ।

କିନ୍ତୁ ହାୟ ! ଅଜାଙ୍କ ବଗିଚାର ସେ ଗଛଟାରେ କେବେ ସେଭଳି ପଦ୍ମଫୁଲ ଫୁଟିବା ଆମେ ଦେଖି ପାରିଲୁ ନାହିଁ । ବର୍ଷ ପରେ ବର୍ଷ ସେ ଗଛଟା ବଢ଼ି ବଢ଼ି ଶେଷରେ ଗୋଟାଏ ଦ୍ରୁମ ପାଲଟିଲା ପଛକେ, କିନ୍ତୁ ସେଥିରେ ଅଜାଙ୍କ କହିବା ଶ୍ୱେତ ଶତଦଳ ଫୁଟିଲା ନାହିଁ । ଆମେ ବଡ଼ ହେଲୁ । ପରିହାସ କରି ଅଜାଙ୍କୁ ପଚାରିଲୁ, "ଅଜା ! କାହିଁ ତ ସେ ଶତଦଳ ଫୁଟିଲା ନାଇଁ, ଓଲଟା ଗୁଡ଼ାଏ କ'ଣ ପୋକଶୁଂଘା ଭଳି ଫୁଲ ଫୁଟୁଚି ଏ ଗଛରେ ? ଏଇ ପୋକଶୁଂଘାକୁ କହନ୍ତି ତେବେ– ମ୍ୟାଗ୍‌ନୋଲିଆ ଗ୍ରାଣ୍ଡିଫ୍ଲୋରା ?"

ଅଜା ଆମର ପ୍ରଥମ ବିଶ୍ୱଯୁଦ୍ଧର ଭେଟେରାନ୍ ଇଂଜିନିୟର୍ । ପୁଣି ସେତେବେଳେ କଲିକତା କର୍ପୋରେସନ୍‌ର ଇଂଜିନିୟର୍ । ମହାଜ୍ଞାନୀ, ମହା-ବଦ୍‌ରାଗୀ । ଆମ ପରିହାସ ଶୁଣି ସେ କିନ୍ତୁ ରାଗିଲେ ନାହିଁ । ଓଠ ଦୁଇଟାକୁ ଘୋଡ଼େଇପକେଇଥିବା ପାଚିଲା ନିଶ ଆଉ ଦାଢ଼ିର ଜଙ୍ଗଲଟାକୁ ଆଡ଼େଇଦେଇ ସେ କହିଲେ, "ମତେ ଚିତାକାଟିଚି ସେ ମାଙ୍କଡ଼ମୁହାଁ ଗୋରା ନର୍ସରୀବାଲା କଲିକତାର । କହିଲା– "This is Magnolia-Grandiflora. The dam fool..."

କିନ୍ତୁ ପିଲାଦିନର ସେଇ କଳ୍ପିତ ଫୁଲଟିକୁ ଆଜି ଆଖିରେ ଦେଖିଲି । ଅବିକଳ ଧଳା-

ପଦ୍ମ ପରି ବହୁ ପାଖୁଡାର, ଆଉ ଗୋଟାଏ ଆହ୍ଲାଦଦାୟକ ସୁବାସ ସେ ଫୁଲର । ସେଇ ହେଲା ପ୍ରଥମ ପରିଚୟ ଏ ଦେଶର ବୃକ୍ଷ-ସଂପଦ ସାଙ୍ଗେ ମୋର ସେଦିନ ।

'ଆମେରିକା ଭ୍ରମଣ'ର ପ୍ରଥମ ଅଧ୍ୟାୟ ଆରମ୍ଭ ମୋ ପାଇଁ ସେଇଠୁ । ଆମେରିକା ଭ୍ରମଣର ଗୋଟିଏ ଯୋଜନା ମୁଁ ମନେମନେ ତିଆରି କରିନେଲି ତା'ପରେ । ପ୍ରଥମେ ବଡବଡ ସହର ଓ ଦୋକାନ ବଜାର ମଲ୍ ଇତ୍ୟାଦି ଦେଖି ବାହାରିବା ପୂର୍ବରୁ ଏ ଦେଶର ପ୍ରାକୃତିକ ଇତିହାସ ଜାଣିବା ମୋର ପ୍ରଥମ କର୍ତ୍ତବ୍ୟ ବୋଲି ବୁଝିପାରିଲି । ସେଇଠୁ ଆରମ୍ଭ-ହେଲା ଘର ଚାରିପାଖେ ଘେରିରହିଥିବା ସେଇ ଅଜଣା ଗଛଗୁଡାକୁ ଚିହ୍ନିବାର ପ୍ରଚେଷ୍ଟା ।

ଆମେରିକାର ଗଛ ଫୁଲ ଫଳ ଏକବାରେ ଅଲଗା ଆମ ଭାରତର ବୃକ୍ଷ ଜଗତ୍ ଠାରୁ । ଝିଅ ବୁଲବୁଲର ଘର ଚାରିପାଖେ ଗୋଟାଏ ସୁନ୍ଦର ବଗିଚା କରାଯାଇଥାଏ– ସେଥିରେ ଫୁଲଗଛ ଭର୍ତ୍ତି ହେଇଥାଏ– ପୁଣି ଅନେକ ବିଚିତ୍ର ଆକୃତି ଓ ରଙ୍ଗର ଗୁଳ୍ମ । ସେସବୁର ଡାଳ ପତ୍ର ଫୁଲ ଫଳ ଦେଖିଲେ କେହି ଗୋଟିଏ ବି ଆମ ଭାରତର ଗ୍ରୀଷ୍ମ-ମଣ୍ଡଳର ଗଛ ଭଳି ମନେହଉନଥାନ୍ତି । ଗୋଟାଏ ଡାଏରୀରେ ମୁଁ ସେସବୁର ସୂଚନା ଲେଖି ରଖିଲି । ଆମେରିକାରେ ମୋର ଏଥର ଚାରିମାସ ରହଣିକାଳରେ ଅନ୍ୟାନ୍ୟ କାମ ଭିତରେ ମୁଁ ସେଇ କାମଟିକୁ ଆଗେଇନବାକୁ ଚାହିଁଲି ।

## ଆମେରିକାର ବୃକ୍ଷ-ସଂପଦ

ପ୍ରଥମେ ଝିଅ ବୁଲବୁଲର ଘର ହତାରେ ଥିବା ଗୁଡାଏ ବଡବଡ ଗଛ ଖୁବ୍ ଉଚ୍ଚ ଆକାଶକୁ ମୁଣ୍ଡ ଟେକି ଠିଆହେଇରହିଚନ୍ତି ଦେଖି ପଚାରିଲି ଝିଅକୁ ସେ ଗଛ ଗୁଡାକର ନାଁ କଣ ଜାଣିବାକୁ । ସେ କହି ପାରିଲା ନାହିଁ ଠିଆହେଇଥିବା ଗଛଗୁଡାକର ନାଁ କହିନପାରିବାରୁ ଝିଅକୁ ପରିହାସରେ କହିଲି, ''ତୁ ତମ ବାଡିପଟେ ଠିଆହେଇଥିବା ଏ ଗଛଗୁଡାକୁ ତ ଚିହ୍ନିନୁ କହୁଚୁ– ତେବେ ୧୯୮୨ରୁ ୧୯୯୨– ଏ ଦଶ ବର୍ଷ ଭିତରେ ଏ ଦେଶକୁ ଆସି ତୁ କଣ ଦେଖୁଥିଲୁ? ଇଭଲ୍ୟୁସନ୍ ତତ୍ୱ ଅନୁସାରେ ଏମାନେ ପରା ହେଲେ ଏ ଧରା ବକ୍ଷର ସର୍ବ-ପ୍ରଥମ ନାଗରିକ! ତାଙ୍କୁ ନଚିହ୍ନି ନଜାଣି ତମେ ସବୁ କି ପାଠ ପଢୁଥାଅ ଶୁଣେ?''

ମୋ କଥା ଶୁଣି ଝିଅ ଜୋଇଁ ଲାଜେଇଗଲେ । ସେମାନେ ତାଙ୍କ ଘର ସାମନାରେ ରହୁଥିବା ଗୋଟିଏ ଖାଣ୍ଟି ଆମେରିକାନ୍ ବୁଢାକୁ ଡାକି ପଚାରିଲେ । ସେ ବୁଢା ଭଦ୍ରଲୋକ ମଧ୍ୟ ନିଜର ଅଜ୍ଞତା ପ୍ରକାଶ କଲେ । କିନ୍ତୁ ସେ ତାଙ୍କ ଜାମାତା ଜଣେ ଜଙ୍ଗଲ ବିଭାଗ ଅଫିସରଙ୍କୁ ଡକେଇ ମୋ ସହ ଚିହ୍ନା କରାଇଦେଲେ । ସେ ଭଦ୍ରଲୋକ ମତେ ପ୍ରଥମେ ସେ ଗଛଗୁଡାକର ନାମ କହିଲେ, ''ଏ ଡେଙ୍ଗା ଡେଙ୍ଗା ଗଛଗୁଡ଼ାକର ନାଁ ହେଲା ସିଡାର, ଓକ୍, ମ୍ୟାପଲ୍ ଇତ୍ୟାଦି ।'' ତା'ପରେ ସେ ମତେ ଗୋଟିଏ ବହି ପଢିବାକୁ ଦେଲେ ।

ସେଥିରେ ଆମେରିକାର ଉଦ୍‌ଭିଦ ଓ ପ୍ରାଣୀ ଜଗତ୍‌ର ଚିତ୍ର ସହିତ ଅନେକ ମୌଳିକ ସୂଚନା ରହିଥାଏ । ଆମେରିକା ଉପରେ ମୋର ପାଠପଢ଼ା ଓ ଗବେଷଣା ଆରମ୍ଭ ସେଇଠୁ ।

ଏହା ପରେ ମୁଁ ହିକ୍ସନ୍‌ର ଜଙ୍ଗଲରେ ବୁଲିବୁଲି ଗଛମାନଙ୍କୁ ଚହ୍ନିଲାଗିଲି । ଆମେରିକା ମାଟି ସହିତ ପ୍ରାଥମିକ ପରିଚୟ ଯେତେ ଯେତେ ସମୃଦ୍ଧ ହେଲା ମୋର ଏ ଦେଶ ପ୍ରତି ଆକର୍ଷଣ ସେତେସେତେ ବଢ଼ିଲାଗିଲା । ଏହା ପରେ ମୁଁ ଜାଣିବାକୁ ଚାହିଁଲି ଏ ଦେଶର ପ୍ରଥମ ଅଧିବାସୀ ବା ଆମେ ଭାରତୀୟମାନେ ଯାହାଙ୍କୁ 'ଲୋହିତ ଭାରତୀୟ' କହୁ ସେମାନେ କିଏ ଓ କୋଉଠି ଥାଆନ୍ତି ସେ ଖବର ନେବାକୁ । ଏ ବିଷୟରେ ମଧ୍ୟ ବିଶେଷ ଖବର ମତେ ସହଜରେ ମିଳିଲା ନାହିଁ । କେବଳ କୁହାଗଲା ସେମାନେ ବିତାଡ଼ିତ ଅବସ୍ଥାରେ ଯାଇ ଆଶ୍ରୟ ନେଇଚନ୍ତି ବଣଜଙ୍ଗଲରେ, ଠିକ୍ ଆମ ଦେଶର ଆଦିମ ଅଧିବାସୀଙ୍କ ପରି । ସେମାନଙ୍କ ବାସସ୍ଥାନକୁ କୁହାଯାଏ– ଚେରୋକି । କୌଣସି ଏକ ଚେରୋକି ବୁଲି ଦେଖିବାକୁ ମୋର ମନ ଡାକିଲା । ମନେପଡ଼ିଲା– କରଂଜିଆ କଥା । ୧୯୮୩ରେ କରଂଜିଆରେ ଥିଲା ବେଳେ ମୁଁ ଆମର ସେଠାକାର ମୟୂରଭଂଜର ଆଦିବାସୀଙ୍କ ଉପରେ ଗବେଷଣା କରିଥିଲି । ସେଭଳି ଏକ ଗବେଷଣାର ସୁଯୋଗ ପାଇଁ ଏଥର ଆମେରିକା ରହଣି ଭିତରେ କାଳେ ସୁଯୋଗ ମିଳିପାରେ ଏଇ ଆଶାରେ ରହିଲି । କିନ୍ତୁ ତାହା ଅସଂପୂର୍ଣ୍ଣ ରହିଗଲା ।

ଏମାନଙ୍କ ଘର ଚାରିପାଖେ ସାଜସଜ୍ଜା ଉଦ୍ଦେଶ୍ୟରେ କେତେଗୁଡ଼ିଏ ଖୁବ୍ ସୁନ୍ଦର ସୁନ୍ଦର ରଙ୍ଗବେରଙ୍ଗୀ ପତ୍ର ଓ କୋଳି ଭଳି ଫଳ ଭର୍ତ୍ତି ବୁଦବୁଦିକିଆ ଗଛଲତା ଦେଖିଲି । ସେମାନଙ୍କର ନାମ ସଂଗ୍ରହ କଲି । Euronymus Japonica ଗୋଟିଏ ଆଖିଦୃଷିଆ ବୁଦା ଗଛ । ଏହାର ପତ୍ରଗୁଡ଼ିକ ସରୁ ସରୁ କିନ୍ତୁ ଖୁବ୍ ସାନ୍ଦ୍ର । ଏହାର ରଙ୍ଗ ଅତ୍ୟନ୍ତ ଗାଢ଼ ସବୁଜ । ଛୋଟଛୋଟ ବୁଦା ଆକାରରେ ସ୍ଥାନେ ସ୍ଥାନେ ସଜା ହେଲା ପରି ଘର ଚାରିପାଖେ ପୋତା-ହୋଇଥାଏ । ସେହିପରି ଗୁଡ଼ିଏ ପାଇନ୍‌ଜାତିର ଶୋଭାବର୍ଦ୍ଧକ ସୌଖୀନ ବୁଦାଗଛ ହେଲା– ଜୁନିପର୍, ଥୁଜା, ୟୁ (ଟ୍ୟାକ୍ସ୍) ଇତ୍ୟାଦି । ଏଗୁଡ଼ିକ ମଧ୍ୟ ଆମେରିକାର ପ୍ରତି ମଧ୍ୟବିତ୍ତ ଲୋକଙ୍କ ଘର ବଗିଚାରେ ଦେଖିବାକୁ ମିଳେ ।

ଫୁଲ ଭିତରେ ଅନେକ ଜାତିର ଫୁଲ ଦେଖିଲି ଚାଟାନୁଗାରେ । ସେସବୁ ଭିତରୁ କେତେକର ନାଁ ଡାଏରିରେ ଟିପିଥିଲି । ଯଥା : ହାଇଡ୍ରାଞ୍ଜିଆ-ମାକ୍ରୋ-ଫିଲ୍ଲା (Hydranjea Macro-phylla)– ଏ ଗୁଡ଼ିକ ହରେକ ରଙ୍ଗର ଆଉ ବଡ଼ବଡ଼ ପେନ୍ଥାରେ ଫୁଟେ ଖରାଦିନ ସାରା । ମାଉଣ୍ଟେନ୍ ଲରେଲ (Mountain Laurel)– ଏଗୁଡ଼ିକର କଟାକଟା ପତ୍ର ଦେଖିବାକୁ ଖୁବ୍ ସୁନ୍ଦର । ଏଥିରେ ସୁନାରି ଫୁଲପରି ବଡ଼ବଡ଼ ପେନ୍ଥାର ଫୁଲ ହୁଏ । ମ୍ୟାଗ୍ନୋଲିଆ (Magnolia) ସ୍ଥଳପଦ୍ମ ଆକୃତିର ବଡ଼ବଡ଼ ଫୁଲ ଗଛସାରା ଭର୍ତ୍ତି ହେଇଥାଏ । ଗଛଗୁଡ଼ିକ ଲଙ୍କାଆମ୍ବ ଗଛ ପରି ଦେଖିବାକୁ । ନାଦିନା ଡୋମେଷ୍ଟିକା (Nadina Dom-

estica)– ଏଥିରେ ନାଲିନାଲି ଲେଟ୍ଟା ଲେଟ୍ଟା ପାଚିଲା କୋଳି ଭଳି ଫଳ ସାରା ବୁଦାଟାକୁ ଖୁନ୍ଦି ପକେଇ ଫଳେ । ଏହାର ଫୁଲ ବି ଲେଟ୍ଟାଲେଟ୍ଟା ହେଇ ଧନିଆ ଆକୃତିର । ଏଗୁଡ଼ିକ ଶୋଭାବର୍ଦ୍ଧକ ଉଦ୍ଭିଦ– ଘର ଚାରିପାଖେ ଲଗାଯାଇଥାଏ । ମେହୋନିଆଁ– (Mahonia) ଏଥିରେ ଗାଢ ନୀଳ ବର୍ଣ୍ଣ ଲେଂଥାଲେଂଥା ଫଳ ଖୁନ୍ଦିହେଇଥାଏ ଆଉ ପତ୍ର ଗୁଡ଼ିକ ବିଚିତ୍ର । ଫାସେଡେରା (Fatshedera Lize) କଇଁଚି କାକୁଡ଼ି ପତ୍ର ଆକୃତିର ମନ ଲୋଭା ଚିକ୍କଣ ସବୁଜ ରଙ୍ଗର ପତ୍ର ବିଶିଷ୍ଟ ଗୁଳ୍ମ । ଲିଲି ଏଞ୍ଚାଟମେଣ୍ଟ– (Lily Enchantment) । ନାନାବର୍ଣ୍ଣର ଲିଲି ଫୁଲରେ ଭର୍ତ୍ତି ବାଡ଼ିବଗିଚା ଏ ଦେଶର ଲୋକଙ୍କ ସଉକ । ଗ୍ରୀଷ୍ମ ଋତୁର ଆରମ୍ଭରୁ ଏଠାକାର ବାଡ଼ିବଗିଚାରେ ମାଟି ଫୁଟେଇ ଲିଲି ଫୁଲମାନ ମୁଣ୍ଡଟେକେ– ଆମ ଭାରତବର୍ଷରେ ସେପରି ମଧ୍ୟ ଦେଖାଯାଏ । ଆଜିଲିଆ (Azalea) ଆମ ଭାରତର ଟଗର ବା ସୁଗନ୍ଧରାଜ ଗଛରେ ଫୁଲ ଫୁଟିଲା ଭଳି ଏ ଗଛଗୁଡ଼ାକରେ ଧଳାଧଳା, କିନ୍ତୁ ଏଥିରେ ବାସ୍ନା ନଥାଏ । ବହୁ ସଂଖ୍ୟାର କଢ ଏକା ବୃନ୍ତରୁ ଫୁଲ ହୋଇ ଫୁଟିବାରୁ ଖୁବ୍ ଆଖିଦୃଷିଆ ହୋଇଥାଏ । ଲିରିଓପ (Liriope) ଦେଖିବାକୁ ଭାରତର ଗଙ୍ଗା ଦୁବ ପରି, ସବୁଜ ଓ ହଳଦିଆ ରଙ୍ଗର ଘାସ ।

## ଆମେରିକାର ବଜାରରେ ସାଧାରଣ ପନିପରିବା

ଆମେରିକାରେ ପନିପରିବା ଇତ୍ୟାଦି କିଣିବାକୁ ହେଲେ ପାଖ ଗ୍ରୋସେରି ଦୋକାନକୁ ଯିବାକୁ ହୁଏ । ଏଠି ରାସ୍ତା କଡରେ ଦୋକାନ ବଜାର ବସେଇବା ସଂପୂର୍ଣ୍ଣ ନିଷେଧ । ରାସ୍ତାରେ ଚାରିଚକିଆ ଯାନ ଛଡା ଦୁଇ ଚକିଆ ଯାନ କ୍ୱଚିତ୍ ଦେଖିଥିଲି ମୁଁ ୧୯୯୩ରେ । ତା'ଛଡା ରାସ୍ତାରେ ପଦଚାରୀ ନଥାନ୍ତି । ଚାରି ଛ' ବା ତତୋଽଧିକ ଲେନ୍‌ର ରାସ୍ତା-ଘାଟଗୁଡ଼ିକ ଅତି ପରିଷ୍କାର ପରିଚ୍ଛନ୍ନ । ଗାଡ଼ିଗୁଡ଼ାକ ହାଇ-ୱେରେ ଅନ୍ୟୂନ ପଞ୍ଚଷଠି ମାଇଲ୍ ସ୍ପିଡ୍‌ରେ ଭାଇଁ ଭାଇଁ ହେଇ ଉଡ଼ିଲା ପରି ଗତିକରୁଥାନ୍ତି । ପ୍ରତି ରାସ୍ତା ପାଇଁ ଯାନବାହନର ଗତି ନିର୍ଦ୍ଧାରିତ । ଗ୍ରାମିଣ ରାସ୍ତାରେ ବି କାର୍ ଗୁଡ଼ିକର ସ୍ପିଡ୍ ନିର୍ଦ୍ଧାରିତ ।

ଆମେରିକୀୟ ସଭ୍ୟତା ବିକାଶର ଅନ୍ୟତମ ମାନଦଣ୍ଡ ହେଲା ଏହାର ରାସ୍ତାଘାଟ । ସାରା ଦେଶ ଉପରେ ଜାଲ ପରି ବିଛେଇ ହେଇ ପଡ଼ିଥିବା ଏଇ ଆଧୁନିକ ରାସ୍ତା ଓ ହଜାର ହଜାର ଫ୍ଲାଇଓଭର୍ ଗୁଡ଼ିକର ବିକାଶ ଘଟିଚାଲିଚି ୧୯୩୦ର ଗ୍ରେଟ୍ ଡିପ୍ରେସନ୍ ପରଠାରୁ । ସେ ସମୟର ରାଷ୍ଟ୍ରପତି ରୁଜ୍‌ଭେଲ୍ଟ ଓ ମୋଟରଗାଡ଼ି କଂପାନୀର ମାଲିକ ହେନ୍‌ରୀ ଫୋର୍ଡଙ୍କ ସ୍ୱପ୍ନରୁ ଆଜିର ଆଧୁନିକ ଆମେରିକାର ଉଦ୍ଭବ ବୋଲି ଯାହା କୁହାଯାଏ ତାର ସତ୍ୟତା ଆଖିରେ ଦେଖିଲି । ଏଠାକାର ରାସ୍ତାକଡରେ ଆବର୍ଜନା ଗଦା ହୁଏ ନାହିଁ କି କଣ୍ଟାଝଣ୍ଟା ବଣ ବୁଦା ଦେଖାଯାଏନା । ରାସ୍ତାକୁ ସମାନ୍ତର ଭାବେ ଦୁଇକଡେ ଶ୍ୟାମଳ ଘାସପଡ଼ିଆ । ଏ ପଡ଼ିଆ ବା ଲଅନ୍ ଗୁଡ଼ିକୁ ରୀତିମତ ଘାସକଟା ଯନ୍ତ୍ର ବା ମୋଇଂ ମେସିନ୍ ଯୋଗେ କଟାଯାଇ

ତନ୍ଛନ୍ ରଖାଯାଇଥାଏ । ରାସ୍ତା ଉପରେ ସ୍ଥାନେ ସ୍ଥାନେ ଏପାଖୁ ସେପାଖ ଯାଏଁ ବ୍ୟାନର୍ ଲାଗିଥାଏ । ଏଗୁଡ଼ିକ ରୋଡସାଇଡ୍‌ରେ ଆଗକୁ ଆସୁଥିବା ସହର ବା ଗନ୍ତବ୍ୟସ୍ଥଳର ନାମ ଓ କେଉଁ ଲେନ୍‌ରେ ଗାଡ଼ି ଚଳେଇଲେ ରାସ୍ତାରୁ ସହଜରେ ବାହାରିଯାଇହେବ ତା'ର ନିର୍ଦ୍ଦେଶ ଢେର୍ ଆଗରୁ ଚାଳକଙ୍କୁ ମିଳିପାରେ ।

ବଜାରସଉଦା କରିବାକୁ ଆମକୁ ସାଙ୍ଗରେ ନେଇ ବୁଲବୁଲ ଦିନେ ପାଖ ଗ୍ରୋସେରି ଦୋକାନକୁ ବାହାରିଲା । ସେଠି ପହଞ୍ଚିଲା ପରେ ପ୍ରଥମେ ଆଖିରେ ପଡ଼ିଲା– ଉଜ୍ଜ୍ୱଳ ଆଲୋକ ଝଞ୍ଜା ପରିବା ସପିଂ ୱିଣ୍ଡୋଗୁଡ଼ାକ । ଧାଡ଼ିଧାଡ଼ି ଥାକ ଉପରେ ସଜା ହୋଇ ରହିଥାଏ ଜାତିଜାତି ପନିପରିବା, ଫଳମୂଳ ଆଉ ଶାକ ସବ୍‌ଜି । ରୁମ୍ ଭିତରଟା ଥଣ୍ଡା ଆଉ ସ୍ଥାନେ ସ୍ଥାନେ ପରିବାଗୁଡ଼ିକୁ ତାଜା ରଖିବାକୁ ଥାକଗୁଡ଼ିକ ତଳେ ବରଫ ଗୁଣ୍ଡ ବିଛେଇ ଦିଆଯାଇଥାଏ । ତାଜା ପରିବା ଗୁଡ଼ିକର ଦୃଶ୍ୟ ଅତ୍ୟନ୍ତ ଆକର୍ଷଣୀୟ ।

ସେଇ ସୁନ୍ଦର ଦୃଶ୍ୟ ଉପଭୋଗ ପାଇଁ ମୁଁ ଏ ବଜାର ଭିତରେ ବୁଲିବୁଲିକା କିଛି ପନିପରିବାର ନାମ ସଂଗ୍ରହ କଲି । କେତେଟା ସେଭଳି ନାଁ ହେଲା– ସ୍ପିନାଚ୍ (ପାଳଙ୍ଗ ଶାଗ), ଗ୍ରିନ୍ ଟପ୍ ରାଡ଼ିଶ୍ (ମୂଳାଶାଗ), ଗ୍ରୀନ୍ ଅନିଅନ୍‌ସ୍ (ପିଆଜ ଷଣ୍ଢା), ଲେଟୁସ୍ (ବନ୍ଧାକୋବି ପତ୍ର ଭଳି ଶାଗ– ସାଲାଡ୍ ପାଇଁ ବ୍ୟବହୃତ), ସିଲେରି (ସାମାନ୍ୟ ରସୁଣିଆ ବାସ୍ନାର ଶାଗ– ସାଲାଡ୍‌ପାଇଁ), ଗ୍ରିନ୍ ପିପର୍ (ବଡ଼ବଡ଼ କାପ୍ସିକମ୍ ଆକୃତିର ସବୁଜ ଲଙ୍କା), ଗୋଲ୍‌ଡ ପିପ୍‌ରସ (ସୁନା ରଙ୍ଗର କାପ୍‌ସିକମ୍ ଭଳି ଲଙ୍କା), ଆଲ୍‌ଫା ଆଲ୍‌ଫା ସ୍ପ୍ରାଉଟ୍, ଗ୍ରିନ୍ ପିଜ୍ (ମଟର), ଚାଇନିଜ୍ ରେଡ୍ ବିନ୍‌ସ୍ (ବିନ୍ ଜାତିର), ସିଲାଣ୍ଟ୍ରୋ (ଧନିଆପତ୍ର), ସ୍କ୍ୱାସ୍ (କଖାରୁ), ଜୁକୁନି (ଛୋଟ କଖାରୁ ଜାତିର ପରିବା), ମେକ୍ସିକାନ୍ ପଟାଟୋ (ଆଳୁ– ପ୍ରାୟ ଛ' ଇଞ୍ଚ ବ୍ୟାସର ଗୋଲଗୋଲ ଆଳୁ ଇତ୍ୟାଦି ।

ଏହା ବ୍ୟତୀତ ଅନେକ ଜାତିର ଫଳମୂଳ ଓ କୋଳି । ଏ ଦେଶ ଫଳର ଦେଶ । ଏଠି ବଜାରରେ ପ୍ରଧାନ ଆକର୍ଷଣୀୟ ଫଳ ହେଲା– ଜାତିଜାତିର କମଳାଲେମ୍ବୁ, ଅଙ୍ଗୁର, ବାନାନା (କଦଳୀ) ଛଡ଼ା ଷ୍ଟ୍ରବେରି, ବ୍ଲୁ–ବେରି, କିୱି ଫ୍ରୁଟ୍‌ସ୍ (ସପେଟା ପରି ଦେଖିବାକୁ ନିଉଜିଲାଣ୍ଡରୁ ଆମଦାନୀ ଫଳ), କାଣ୍ଟାଲୋପ୍ (ଗୋଲ ଗୋଲ ଫୁଟି ଭଳି ଦେଖିବାକୁ ଫଳ) ଓ ଆହୁରି ଅନେକ ।

ଆମେରିକାର ବଡ଼ ବଜାର ବା ମଲ୍‌ଗୁଡ଼ିକ ଅତି ଚମତ୍କାର ସ୍ଥାନ । ଏ ଗୋଟିଏ ସ୍ୱତନ୍ତ୍ର ଜଗତ ଯୋଉଠି ସବୁ ପ୍ରକାର ବ୍ୟବହାର୍ଯ୍ୟ ପଦାର୍ଥ ଏକ ଜାଗାରେ ମିଳେ । ବଡ଼ବଡ଼ ବହି- ଦୋକାନ, ରେଷ୍ଟୁରାଁ ବ୍ୟତୀତ ମନୋରଂଜନ ପାଇଁ ଏଠି ପାର୍କ ଲାଉଁଜ ଇତ୍ୟାଦି ମାଗଣାରେ ବ୍ୟବହାର କରିବାକୁ ମିଳେ । ସମଗ୍ର ସ୍ଥାନଟି ଶୀତତାପ ନିୟନ୍ତ୍ରିତ । ଖରାଦିନେ ବୟସ୍କ ଲୋକମାନେ, ବିଶେଷତଃ ଗରିବ ଲୋକ ଏ ଜାଗାରେ ସମୟ ବିତେଇବାକୁ ଆସନ୍ତି ।

## ଟି.ଭି.ଏ ଓ ଚିକାମଗା ହ୍ରଦ

ତା ୮ ଜୁନ୍, ୧୯୯୩ : ସନ୍ଧ୍ୟା ଛ'ଟା ଏଠି ପ୍ରକୃତରେ ସନ୍ଧ୍ୟା ନୁହେଁ– ଉଦୁଉଦିଆ ଖରାବେଳ ! ସୂର୍ଯ୍ୟ ଜଳୁଥାଏ ଆକାଶରେ ଓ ବେଶ୍ ଗରମ ବି । ଆମେରିକାର ଗ୍ରୀଷ୍ମଋତୁରେ ଦିନଗୁଡାକ ଖୁବ୍ ଲମ୍ବା– ପ୍ରାୟ ଅଠରଘଣ୍ଟା– ଆଉ ରାତି ମୋଟେ ଛ' ଘଣ୍ଟା !

ସେଦିନ ଆମର ଲକ୍ଷ୍ୟସ୍ଥଳ ଥିଲା– ଏ ଦେଶର ଅନ୍ୟତମ ଗୌରବମୟ ଇଂଜିନିୟରିଂ ସିଦ୍ଧିସ୍ଥଳ TVA-Project ଓ ଏଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ଚିକାମଗା-ହ୍ରଦ । କାର୍ ନେଇ ଆମେ ବାହାରିଲୁ ହାଇୱେରେ– ଟେନୀସୀ ନଦୀ ଦିଗରେ । ଘଣ୍ଟାକ ଭିତରେ ପହଞ୍ଚିଲୁ ଟେନୀସୀ ନଦୀ ଉପରେ ବନ୍ଧାଯାଇଥିବା ଏକ ଅତି ଲମ୍ବା ବ୍ରିଜ୍ ନିକଟରେ । ଏହାକୁ କୁହାଯାଏ ଆମେରିକାର ବିଖ୍ୟାତ ଟେନୀସୀ ଭ୍ୟାଲି ଅଥରିଟି ବା (TVA) ଜଳବିଦ୍ୟୁତ୍ ଯୋଜନା । ଆମ ଓଡିଶାର ହୀରାକୁଦ ବନ୍ଧ ଯୋଜନା ଏଇ ପ୍ରୋଜେକ୍ଟର ଛାଞ୍ଚରେ ନିର୍ମିତ ବୋଲି କୁହାଯାଏ । ହୀରାକୁଦ ବନ୍ଧ ଯୋଜନାରେ କାମ କରିଥିବା ଭାରତ ତଥା ଓଡିଶାର ବହୁ ବଡ ବଡ ଇଂଜିନିୟର୍ ଏଇଠି ତାଲିମ ପାଇଥିଲେ । ସେମାନଙ୍କ ଭିତରୁ ଜଣେ ବିଖ୍ୟାତ ସାହିତ୍ୟିକ ଓ ଇଂଜିନିୟର୍ ସ୍ୱର୍ଗତ ଭୁବନେଶ୍ୱର ବେହେରା ।

ଟି.ଭି.ଏ. ସଂପର୍କରେ ଖବର ନେବାରୁ ଜାଣିଲି– ଟେନୀସୀ ନଦୀ ଉପରେ ଅନ୍ୟୂନ ନଅଟା ବନ୍ଧ ନିର୍ମାଣ କରାଯାଇ ଏ ବିଶାଳ ଜଳବିଦ୍ୟୁତ୍ ଯୋଜନାଟି କରାଯାଇଚି । ଏ ଯୋଜନାର ଜଳଭଣ୍ଡାର ସୃଷ୍ଟିକରାଯାଇଚି ତେଇଶିଟି ବିଶାଳ ହ୍ରଦ ମାଧ୍ୟମରେ । ଏ ହ୍ରଦ-ଗୁଡ଼ିକର ଜଳରାଶି ଯେପରି ପରିଚ୍ଛନ୍ନ ଦେଖାଯାଏ ପ୍ରକୃତରେ ତାହା ନୁହେଁ । ଚତୁଃପାର୍ଶ୍ୱର କଳ-କାରଖାନାର ଧୋଅରା ପାଣିର ପ୍ରଦୂଷଣ ଯୋଗୁ ଏହାର ପାଣି ପିଇବା ପାଇଁ ଅନୁପଯୁକ୍ତ । ଏହାର ପାଣିରେ ପାରଦ (ମର୍କରୀ), କୀଟନାଶକ ଔଷଧ, ତେଜଷ୍କ୍ରିୟ ବସ୍ତୁ ଏବଂ କଂସେଇଖାନା, ଡାକ୍ତରଖାନାର ବର୍ଜ୍ୟ ଜିନିଷ ମିଶିଥାଏ । ପ୍ରଦୂଷଣ ସ୍ତର ସୀମାତିରିକ୍ତ ହେବାରୁ ହ୍ରଦ ପାଣିରେ ବିଧିବଦ୍ଧଭାବେ ଅକ୍ସିଜେନ୍ ମିଶାଯାଏ । ଗତ ପାଞ୍ଚବର୍ଷ ଭିତରେ ଚିକାମଗା ହ୍ରଦର ଅମ୍ଳଜାନିକରଣ ବାବଦ ୪୪ ମିଲିୟନ୍ ଡଲାର ଖର୍ଚ୍ଚ ହୋଇସାରିଚି ବୋଲି ହ୍ରଦକୂଳର ଏକ ସୂଚନାକେନ୍ଦ୍ରରୁ ଜାଣିବାକୁ ପାଇଲି ।

ସେଇ ସୂଚନା କେନ୍ଦ୍ରରୁ ଆହୁରି ମଧ୍ୟ ଜାଣିହେଲା– ଏ ହ୍ରଦର ମାଛ ଇତ୍ୟାଦି ଖାଇବା ନିଷେଧ । ପୁଣି, ଏ ହ୍ରଦ ପାଣିରେ 'ୱାଟର୍ ମିଲ୍ ଫଏଲ୍' ନାମକ ଏକ ବିଦେଶୀ ଦଳ କୁଆଡୁ କେମିତି ଆସି ଧୀରେ ଧୀରେ ସାରା ହ୍ରଦକୁ ଆଚ୍ଛନ୍ନ କଲା । ଏହାକୁ ପ୍ରାକୃତିକ ଉପାୟରେ ନିୟନ୍ତ୍ରଣ କରାଯିବାର ସମସ୍ତ ଚେଷ୍ଟା ବିଫଳ ହେଲା । ତେଣୁ କର୍ତ୍ତୃପକ୍ଷ ବାଧ୍ୟ-ହୋଇ ଉଦ୍ଭିଦନାଶକ ଔଷଧ (ହର୍ବିସାଇଡ) ହ୍ରଦ ଜଳରେ ସିଞ୍ଚନ କରୁଚନ୍ତି । ଏହା ଫଳରେ ଚିକାମଗା ହ୍ରଦର ଜଳ ଆଉ ବ୍ୟବହାର ଉପଯୋଗୀ ହୋଇ ରହିନାହିଁ ।

## ଚିକାମଗା ହ୍ରଦ – ନୈସର୍ଗିକ ଶୋଭାର ଆକର

ଚିକାମଗା ଆମେରିକାର ଆଦିମ ଅଧିବାସୀଙ୍କ ନାମକରଣ । ଚାଟାନୁଗା, ଚିକାମଗା ଭଳି ବହୁବହୁ ସ୍ଥାନର ନାମ ସାରା ଆମେରିକାର ବିଭିନ୍ନ ଅଞ୍ଚଳରେ ଏବେବି ଜୀବିତ ଅଛି ।

କାର୍ ପାର୍କିଂ ପରେ ହ୍ରଦକୂଳରେ ଲଗାଯାଇଥିବା ସୂଚନା ଫଳକ ଆମେ ପଢ଼ିଲୁ । ବୁଲବୁଲ କହିଲା, "ନନା ! ଏଇ ଯୋଉ ଲେଖାହେଇଚି ଯେ ହ୍ରଦ ପାଣି ରେଡିଓ ଆକ୍ଟିଭ୍ ପଦାର୍ଥଦ୍ୱାରା ଦୂଷିତ ହେଇଚି ତାର କାରଣ ଆମେ– ଆମ ନ୍ୟୁକ୍ଲିୟର୍ ରିଆକ୍ଟର୍ କଂପାନୀ ଏଇ ହ୍ରଦ କୂଳରେ ! ହେଇ ଚାହଁ ସେଠିକି– ଆମ 'ୱାଟ୍ସ୍ ବାର' କଂପାନୀ ସାଇଟ୍‌ଟା ହେଇ ସେଠି ହ୍ରଦ ଆରପାରିରେ ।"

ଆଖି ବୁଲେଇ ଆରପାରିକୁ ଚାହିଁଲି– ଆଖି ପାଇଲା ନାହିଁ । କେବଳ ଦୂର ଦିଗନ୍ତରେ ପାଇନ୍ ଅରଣ୍ୟର ଚୂଳ ସବୁ ଏକ ଆଦ୍ୟନ୍ତ ନଥିବା ଜଗତ୍‌ର ସୀମାନ୍ତ ରେଖା ଆଙ୍କୁଥାଏ ଯାହା ।

ସେତେବେଳକୁ ଶହଶହ ସଂଖ୍ୟାରେ କାର୍ ଧାଡଧାଡି ହେଇ ପାର୍କିଂ ଲଟ୍‌ମାନଙ୍କରେ ଠିଆ ହେଇ ସାରିଲେଣି । ପ୍ରତିଟି କାର୍ ପଛରେ ବନ୍ଧାହେଇଥାଏ ଗୋଟାଏ ଲେଖାଁ ଟ୍ରେଲର୍ । ଏ ଟ୍ରେଲର୍ ଗୁଡାକରେ ବୋଝାଇ କରି ଅଣାଯାଇଥାଏ ଗୋଟାଏ ଗୋଟାଏ ଡଙ୍ଗା । ଡଙ୍ଗା ଗୁଡିକ ଯନ୍ତ୍ରଚାଳିତ । ଏ ଡଙ୍ଗାଗୁଡାକୁ ଟାଣିନେଇ କାର୍ ସବୁ ସିଧା ହ୍ରଦ ପାଣି ଭିତରକୁ କିଛି ବାଟ ପଶିଯାନ୍ତି । ଡଙ୍ଗାଗୁଡିକୁ ଯେ ଯାହା ଗାଡିର ଟ୍ରେଲରରୁ ଓହ୍ଲାଇ ଦେଇ କାର ଗୁଡିକ ପୁଣି ଫେରିଆସୁଥାନ୍ତି ପାର୍କିଂ ସାଇଟ୍‌କୁ । ଏ ଦେଶର ମଧ୍ୟବିତ୍ତମାନଙ୍କର ପ୍ରଧାନ ସଉକ ବୋଟିଂ । ସପ୍ତାହାନ୍ତ ଛୁଟିମାନଙ୍କରେ ବୋଟିଂ ପାଇଁ ପ୍ରଶସ୍ତ ସମୟ । ଛୁଟି ହେବାମାତ୍ରେ ସେମାନେ ଧାଆଁନ୍ତି କୋଉ ନଦୀ, ହ୍ରଦ ବା ସମୁଦ୍ରକୁ– ଗାଡି ପଛରେ ଡଙ୍ଗା ବୋଝେଇ ଟ୍ରେଲର୍‌ଟାଏ ବାନ୍ଧିଦେଇ । ଚିକାମଗା ହ୍ରଦରେ ବୋଟିଂ ଏଠିକା ଲୋକଙ୍କର ଏକ ବଡ ସଉକ । କେବଳ ଡଙ୍ଗା ନୁହେଁ, ପାଣି ଉପରେ ସ୍କିଂ ଓ ୱାଟର୍ ସ୍କୁଟର୍ ଛୁଟେଇ ଘଣ୍ଟା ଘଣ୍ଟା ଜଳକେଳି କରିବା ଏଠାକା ପୁଅ ଝିଅଙ୍କ ବିଶେଷ ସଉକ ।

ଚିକାମଗା ହ୍ରଦରେ ସେତେବେଳେ ଅସଂଖ୍ୟ ବୋଟ୍, ୱାଟର୍ ସ୍କିଂ, ୱାଟର୍ ସ୍କୁଟରିଂ ପାର୍ଟି ଜଳ କେଳି ଆରମ୍ଭ କରିଦେଇଥାନ୍ତି । ପାଣି ମନ୍ଥନ ଚାଲିଥାଏ ବୋଟଗୁଡାକର ଇଂଜିନ୍ ଚାଳିତ ପ୍ରୋପେଲର୍ ମାଡରେ । ସବୁଠୁଁ ବେଶୀ ଘଁ ଘଁ ଶବ୍ଦରେ କାନ ଅତଡା ପଡୁଥାଏ ୱାଟର୍ ସ୍କୁଟର ଗୁଡାକର ସାଇଁ ସାଇଁ ଛୁଟିବାରେ ।

ଆମେମାନେ ସେ ଶବ୍ଦରୁ ରକ୍ଷାପାଇବାକୁ ଟିକିଏ ନିକାଞ୍ଚନ ଜାଗାକୁ ଚାଲିଗଲୁ । ହ୍ରଦର ଚତୁଃପାର୍ଶ୍ୱ ଉପରେ ଆଖି ବୁଲେଇ ଚାହିଁଦେବା କ୍ଷଣି ହଠାତ୍ ଏକ ନୈସର୍ଗିକ ଶୋଭାର

ଭଣ୍ଡାରର ଦ୍ୱାର ଆଖି ଆଗରେ ଉନ୍ମୋଚିତ ହୋଇଗଲା ! ବିଶାଳ ଚିକାମଗା ହ୍ରଦର ସାମଗ୍ରିକ ଛବିଟା ସେଇ ମାତ୍ର ଆସିଲା ଆଖି ଆଗକୁ । ଆମେ ସେତେବେଳେ ପହଞ୍ଚି ସାରିଥାଉ ଏକ ନିଘଞ୍ଚ ପାଇନ୍ ଜଙ୍ଗଲ ଭିତରେ । ଆମ ଚାରିପାଖେ ପଚାଶରୁ ଷାଠିଏ ଫୁଟ୍ ଉଚ୍ଚର ଡେଙ୍ଗା ଡେଙ୍ଗା ପାଇନ୍ ଗଛ । ସେଗୁଡ଼ିକର ମିଳିତ ଡାଳପତ୍ର ମୁଣ୍ଡ ଉପର ଆକାଶରେ ଏକ ବିଶାଳ ଛତା ମେଲିଲା ପରି ମେଲିଯାଇଥାଏ । ପାଇନ୍ ବଣ ଆମ ଓଡ଼ିଶାର ମୟୂରଭଂଜର ଶାଳବଣ ପରି ଦିଶେ । ମନେପଡ଼ିଗଲା କରଂଜିଆ ଆଉ ଶିମିଳିପାଳର ଜଙ୍ଗଲ । ଖୁସିରେ ଚାରିଆଡ଼କୁ ଆଖି ବୁଲେଇଲି । ଦେଖିଲି– ବଣ ଭିତରେ ଅରାଏ ଜାଗାରେ ଧାଡ଼ିଧାଡ଼ି ହେଇ ମୋଟାମୋଟା ପାଇନ୍ କାଠଗଣ୍ଡି ପଡ଼ିଚି । ସେଗୁଡ଼ିକୁ ସାମାନ୍ୟ ଚଂଛାଚଂଛି କରି ଡାଇନିଂ ଟେବ୍ଲ ଓ ବେଞ୍ଚ ଭଳି କରିଦିଆଯାଇଚି । ପାଖରେ ରୋଷେଇବାସ ପାଇଁ ଚୁଲା ଇତ୍ୟାଦିର ବନ୍ଦୋବସ୍ତ ବି ରହିଚି । ଏସବୁ ହେଲା ପିକନିକ୍ ସ୍ପଟ୍ । ଆଜି ଅବଶ୍ୟ ପିକ୍‌ନିକ୍ ପାର୍ଟିମାନେ ନଥାନ୍ତି । ଲକ୍ଷ୍ୟକଲି ଗୋଟିଏ ନିରୋଳା କଣରେ କଳା ସ୍ତ୍ରୀଲୋକଟିଏ ବସି ବହି ପଢୁଚି । ପୁଣି ଆହୁରି ନିରୋଳାରେ କାମାଶକ୍ତ ଗୌରବର୍ଣ୍ଣ ସ୍ତ୍ରୀ ଓ ପୁରୁଷ ଯୋଡ଼ି ଉଦ୍ଦାମ ପ୍ରେମରେ ଲିପ୍ତ ରହିଥାନ୍ତି । ପୁନଶ୍ଚ ଲକ୍ଷ୍ୟ କଲି– ଗୋଟାଏ ଧଡଡା କାର୍‌ରୁ ବୁଢ଼ାଟିଏ ବୁଢ଼ୀଟିଏ ଓହ୍ଲେଇଲେ । ଚେହେରାରୁ ମନେହେଉଥାଏ ଏମାନେ ନିଶ୍ଚୟ ଲୋହିତ ଭାରତୀୟ । ଠିକ୍ ଆମରି ଭାରତୀୟଙ୍କ ପରି ଦେହର ରଙ୍ଗ ଓ ଶରୀର ଗଠନ । ଏ ଦମ୍ପତି କାର୍‌ରୁ ଓହ୍ଲେଇ ବଣ ଭିତରକୁ ଗଲେ । ବୁଢ଼ାଟି ଥରଟିଏ ଆଖି ବୁଲେଇ ଚାହିଁଲା ଚାରିଆଡ଼କୁ । ବୋଧହୁଏ ତା' ଆଖିରେ ପଡ଼ିଗଲା– ଆଲିଙ୍ଗନବଦ୍ଧ ଗୌରବର୍ଣ୍ଣ ଆମେରିକାନ୍ ଯୋଡ଼ିଟି । ପରେ ପରେ ଲୋକଟା ଘୃଣାରେ ବା ଅନ୍ୟ କେଉଁ କାରଣରୁ ପିଚ୍‌କିନା ମେଞ୍ଚେ ଛେପ ତା' ମୁହଁରୁ ଫିଙ୍ଗିଲା ସେଇ ଜାନ୍ତବ ଦୃଶ୍ୟ ଦିଗକୁ ।

ଆଦିଗନ୍ତ ବିସ୍ତାରୀ ସେଇ ପାଇନ୍ ଚନ୍ଦ୍ରାତପ ତଳେ ଏଇସବୁ ଦୃଶ୍ୟ ଦେଖୁ ଦେଖୁ ମନେହେଲା ଏ ହ୍ରଦ କୂଳଟି ବୋଧହୁଏ ଗୋଟିଏ ରଙ୍ଗମଞ୍ଚ । ଏଠାରେ ଦିନ ଦି'ପହରେ ବି ନାନା ନାଟକ ଅଭିନୀତ ହେଉଥାଏ ଏହିପରି । ବଣ ଭିତରଟା ବି ପାଲଟିଯାଇଥାଏ ଜହ୍ନରାତି ପରି ଛାଇ ଆଲୁଅର ମିଶାମିଶି ଗାଁ ଗୋହିରୀ ପରି ସ୍ୱପ୍ନିଳ । ଦିନ ଦି'ପହରେ ବି ଗ୍ରୀଷ୍ମଋତୁର ସୂର୍ଯ୍ୟ ଏ ଅରଣ୍ୟରେ ପାଲଟିଯାଏ ପୂର୍ଣ୍ଣମୀ ରାତିର ପୂର୍ଣ୍ଣଚନ୍ଦ୍ର ।

ଚିକାମଗା ହ୍ରଦର ସମଗ୍ର ପରିଧି ହୁଏତ ଶତାଧିକ ମାଇଲ୍ ହୋଇଥାଇପାରେ । ଆଉ, ସମଗ୍ର ପରିଧିକୁ ଗୋଟାଏ ଦୁର୍ଗର ସୁଉଚ୍ଚ କାନ୍ଥ ପରି ବେଢ଼ି ଠିଆହେଇରହିଥାଏ ସେଇ ବିଶାଳ ପାଇନ୍ ବଣ । ସେ ଅରଣ୍ୟର ପ୍ରଭାବ ଧୀରେ ଧୀରେ ମତେ ଆଚ୍ଛନ୍ନ କରିବାକୁ ଆରମ୍ଭକଲା । କିଛି ସମୟ ପରେ ମନେହେଲା– ମୁଁ ଗୋଟାଏ ପ୍ରାଗୈତିହାସିକ ଦୃଶ୍ୟର କେନ୍ଦ୍ରରେ ଠିଆହେଇଚି । ଏ ପ୍ରାଗ୍‌ଐତିହାସିକ ଦୃଶ୍ୟ କଳ୍ପନା କରିଥିଲି ବହୁ ବର୍ଷ ତଳେ ସାର୍ ଆର୍ଥର୍ କୋନାନ୍‌ଡୟେଲ୍‌ଙ୍କ ବିଖ୍ୟାତ ପୁସ୍ତକ 'ଦ ଲଷ୍ଟ୍ ୱାର୍ଲଡ୍' ପଢ଼ିଲାବେଳେ ।

ମନେପଡିଲା– ଚିକାମଗା ହ୍ରଦ ଓ ତା'ର ଚତୁଃର୍ପାଶ୍ୱର ଏଇ ପ୍ରାଗ୍ଐତିହାସିକ ଅରଣ୍ୟର ଛବି ମୁଁ ଦେଖିଥିଲି କେତେବର୍ଷ ତଳେ ନ୍ୟାସନାଲ୍ ଜିଓଗ୍ରାଫିକ୍ ମ୍ୟାଗାଜିନ୍‌ର କୌଣସି ଏକ ସଂଖ୍ୟାରେ । ପରେ ପୁଣି ଏଥର ଆମେରିକା ଭ୍ରମଣ ସମୟରେ ମୁଁ ସେ ପ୍ରାଗୈତିହାସିକତାର ସୌନ୍ଦର୍ଯ୍ୟକୁ ଦେଖିଥିଲି ବିଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକ ଷ୍ଟିଫେନ୍ ସ୍ପିଲ୍‌ବର୍ଗଙ୍କ ଅନବଦ୍ୟ ଛବି 'ଜୁରାସିକ୍‌ପାର୍କ'ରେ ।

ଚିକାମଗା ହ୍ରଦ ପ୍ରତି ମୋର ଆକର୍ଷଣ ଚିରନ୍ତନ ହୋଇ ରହିଗଲା । ଏଠାକୁ ବାରମ୍ବାର ବୁଲି ଆସିବାକୁ ମନ ବଳିଲା । ପାର୍କିଂ ପ୍ଲେସ୍ ନିକଟରେ ଲଗାଯାଇଥିବା ନୋଟିସ୍ ବୋର୍ଡ଼ରୁ ହ୍ରଦକୂଳର ବିଷାକ୍ତତା ସଂପର୍କରେ ଯେତେ ସବୁ ବୈଜ୍ଞାନିକ ସତର୍କତା ବିଷୟ ପଢିଥିଲି ସେସବୁକୁ ମନରୁ ପାଶୋରି ନଥାଏ । ତଥାପି ଏତେ ସୁନ୍ଦର ହ୍ରଦଟାକୁ ଗୋଟାଏ ବିଷକୁଣ୍ଡ ବୋଲି ବର୍ଣ୍ଣନା କରୁଥିବା ସତର୍କବାଣୀକୁ ଉପହାସ ନକରି ଭାବିଲି– ଦିନେ ଶ୍ରୀକୃଷ୍ଣଙ୍କୁ ଗୋପାଳ ବାଳକମାନେ ଏଇଭଳି ସତର୍କବାଣୀ ଶୁଣାଇଥିବେ ନିଶ୍ଚୟ ! କହିଥିବେ– କାହ୍ନା, ଏ କାଳିନ୍ଦୀ ଜଳକୁ ଯାନା ! ସେଠି ପରା କାଳୀୟ ନାଗ ବାସକରୁଚି ! ତା' ଗରଳରେ କାଳିନ୍ଦୀର ପାଣି ବିଷ ପାଲଟି ସାରିଚି ଜାଣୁଚି ? ଶହ ଶହ ଗାଈଗୋରୁ ଏ ହ୍ରଦ ପାଣି ପିଇ ମରିସାରିଲେଣି । ତୁ ତା' ଭିତରକୁ ଯାଆନାରେ କାହ୍ନା !

କିନ୍ତୁ କାହ୍ନା ସାଙ୍ଗମାନଙ୍କ ସତର୍କ ବାଣୀକୁ ତୁଚ୍ଛ କରି କନ୍ଦୁକ ଉଦ୍ଧାର କରିବାକୁ ଡେଇଁପଡିଥିଲା ସେଇ କାଳୀୟ ନାଗର ମୁଣ୍ଡ ଉପରକୁ । ଦିନେ ଆଧୁନିକ ମାନବ ତା' ସମୟର କାଳୀୟନାଗ ବୈଜ୍ଞାନିକ ଯୁଗ ଜ୍ୱାଳାରୁ ରକ୍ଷା ପାଇବା ପାଇଁ କୌଣସି ନା କୌଣସି କାହ୍ନାର ଆଶ୍ରୟ ମାଗିବ । ଏଇ ଉପଲବ୍ଧି ନେଇ ଚିକାମଗା ହ୍ରଦ ବୁଲା ସାରି ଆମେ ଘରକୁ ଫେରି ଆସିଥିଲୁ ସେଦିନ ବେଶ୍ ଟିକେ ଡେରି ରାତିରେ ।

## ଆମେରିକାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରଥମ ରଥଯାତ୍ରା–

ନ୍ୟାସ୍‌ଭିଲ୍, ତା ୧୯ ଜୁନ୍, ୧୯୯୩– ଆମେରିକାରେ ଏହା ଥିଲା ଜଗନ୍ନାଥ ମହାପ୍ରଭୁଙ୍କର ପ୍ରଥମ ରଥଯାତ୍ରା ଉତ୍ସବ । ଏଥିପାଇଁ ସ୍ଥାନ ନିରୂପିତ ହୋଇଥିଲା, ନ୍ୟାସ୍‌ଭିଲ୍, ଟେନେସୀ ହିନ୍ଦୁ ମନ୍ଦିରରେ । ଆଜିର ରଥଯାତ୍ରାରେ ଜଣେ ଅତିଥି ଓ ବକ୍ତାଭାବେ ମୁଁ ନିମନ୍ତ୍ରିତ ହୋଇଥିଲି । ଚାଟାନୁଗାରୁ ନ୍ୟାସ୍‌ଭିଲ୍ ପ୍ରାୟ ଦୁଇଘଣ୍ଟାର ବାଟ– କାର୍‌ରେ । ଆମେ ସକାଳୁ ସକାଳୁ ଘରୁ ବାହାରିଗଲୁ । ପାଞ୍ଚବର୍ଷର ନାତି ପ୍ରତୀକକୁ ସାଙ୍ଗରେ ନେଇ ଝିଅ ବୁଲବୁଲ, ବାବ୍‌ଲୁ (ଦେବଦତ୍ତ ଦାଶ), ନିରୁପମା ଓ ମୁଁ ଚାଟାନୁଗାରୁ ବାହାରିଲୁ । ବାବଲୁ ମୋ ବଡ ସଢୁ ବୁଦ୍ଧଦେବ ଦାଶ ଓ ଶାଳିକା ଅନୁପମାଙ୍କ ପୁଅ । ସେ ଏଇ ଟେନେସୀର ଏକ ଇଂଜିନିୟରିଂ କଲେଜର ଛାତ୍ର ଥିଲା ସେତେବେଳେ ।

ଚାଟାନୁଗାରୁ ନ୍ୟାସଭିଲ୍– ଟେନେସୀ ରାଜ୍ୟର ଅତୁଳନୀୟ ପ୍ରାକୃତିକ ଦୃଶ୍ୟ ଦେଖୁ

ଦେଖୁ ଦୁଇଘଣ୍ଟା କଟିଗଲା । ଆମେ ପହଞ୍ଚିଲୁ ନ୍ୟାସ୍‌ଭିଲ୍‌ରେ । ଏ ଗୋଟିଏ ବେଶ୍ ବଡ ସହର ଆମେରିକାର । ଆମେ ଆଗେଇଲୁ ସିଧା ସହରର ଗୋଟିଏ ପ୍ରାନ୍ତରେ ଅଳ୍ପ କେତେ ବର୍ଷ ହେଲା ତିଆରି ହେଇଥିବା ଏଠାକାର ହିନ୍ଦୁ ମନ୍ଦିରକୁ । ମନ୍ଦିରଟି ଗୋଟିଏ ପାହାଡର କାନ୍ଧି ଉପରେ । ପାହାଡକୁ ଘେରି ରହିଥାଏ ଗହନ ପୁରାତନ ପାଇନ ବଣ । ପାହାଡ କଡରେ କାର୍ ପାର୍କିଂ ଏରିଆ । ବହୁ ସଂଖ୍ୟାରେ ବିଭିନ୍ନ ରାଜ୍ୟର ନମ୍ବର ପ୍ଲେଟ୍ ଲାଗିଥିବା କାର୍ ପାର୍କିଂ ଏରିଆରେ ରଖାଯାଇଥାଏ– ଆମେ ପହଞ୍ଚିଲା ବେଳକୁ ।

ବାବ୍‌ଲୁ ଗୋଟାଏ କାର୍‌ର ନମ୍ବର ପ୍ଲେଟ୍ ଦେଖେଇ କହିଲା, ‘‘ଦେଖ୍ ମଉସା ! ଏ କାର୍‌ରେ କାନାଡାର ନମ୍ବର୍ ପ୍ଲେଟ ଲାଗିଚି । ଆଉ ଏପାଖେ– କାଲିଫର୍ଣ୍ଣିଆ, ଫ୍ଲୋରିଡା, ଟେକ୍ସାସ୍, ନ୍ୟୁୟର୍କ, କନେକ୍ଟକଟ୍ ନମ୍ବର ପ୍ଲେଟ୍ । ବାପରେ– ରଥଯାତ୍ରା ପାଇଁ ଆମେରିକାର ଏକାବନଟାଯାକ ଷ୍ଟେଟ୍ ଉଠିଆସିଚି ନା କ’ଣ ?’’ ବୁଲବୁଲ ଆଉ ନିରୁପମା ଦୁହେଁ କାର୍ ବକ୍ସରୁ ଠାକୁରମାନଙ୍କ ପାଇଁ ଅଣାଯାଇଥିବା ଫୁଲ, ଭୋଗ ସାମଗ୍ରୀ ସବୁକୁ ନିଷ୍ଠାପର ଭାବେ କାଢୁଥାନ୍ତି ।

ନିରୁପମା ଦୁଃଖ ପ୍ରକାଶ କଲେ, ‘‘ଆହା ! ପ୍ରବୀର ଆସି ପାରିଲେ ନାହିଁ । ଏ ରଥଯାତ୍ରା ପାଇଁ ବିଚରା କେତେ ଆୟୋଜନ କରିଥିଲେ । ତାଙ୍କୁ ଏତିକିବେଳେ ହବାକୁ ଥିଲା ସେ ଅଲକ୍ଷଣା ରୋଗ– ହାଡଫୁଟି !’’

ଆମେରିକାରେ ବି ହାଡଫୁଟି ହୁଏ– ଏ ଧାରଣା ନଥିଲା ମୋର । କିନ୍ତୁ ପଢିଥିଲି– ଆମେରିକାକୁ ଏଠାକାର ଗୋରା ଉପନିବେଶବାଦୀମାନେ ୟୁରୋପରୁ ଆମଦାନୀ କରିଥିଲେ ମହାମାରୀ ବସନ୍ତ ଜୀବାଣୁ– ଖାସ୍ ମୂଳପୋଛ କରିଦେବାକୁ ଏଠାକାର ଆଦିମ ଅଧିବାସୀ ଲୋହିତ ଭାରତୀୟଙ୍କୁ ! ସେମାନଙ୍କୁ ସମ୍ମୁଖଯୁଦ୍ଧରେ ପରାସ୍ତ କରିବା ଅସମ୍ଭବ ଦେଖି ଉପନିବେଶବାଦୀମାନେ ୟୁରୋପରୁ ଜାହାଜ ଭର୍ତ୍ତିକରି କମ୍ବଳ ଆମଦାନୀ କରାଇଥିଲେ– ସେ କମ୍ବଳଗୁଡାକ ୟୁରୋପରେ ବସନ୍ତରୋଗାକ୍ରାନ୍ତ ଲୋକଙ୍କ ବ୍ୟବହୃତ ପରିତ୍ୟକ୍ତ ପୁରୁଣା କମ୍ବଳ । ଦରିଦ୍ର ଆଦିବାସୀ ମାନଙ୍କୁ ଶୀତବସ୍ତ୍ରଭାବେ ସେଗୁଡିକୁ ବଣ୍ଟନ କରାଯାଉଥିଲା ମାଗଣାରେ । ପରେପରେ ବସନ୍ତ ରୋଗର ମହାମାରୀ ବ୍ୟାପିଯାଇଥିଲା ସାରା ଆମେରିକାରେ ।

କାର୍‌ରୁ ଓହ୍ଲାଇ ମୁଁ ପ୍ରଥମେ ଜାଗାଟାର ଅବସ୍ଥିତିକୁ କଳନା କରିବା ଉଦ୍ଦେଶ୍ୟରେ ଚାରିଆଡକୁ ଆଖି ବୁଲେଇ ଦେଖିଲି । ମନ୍ଦିର ସମ୍ମୁଖରେ ଆଦିଗନ୍ତ ବିସ୍ତୃତ ନୀଳରଙ୍ଗର ପାଇନ୍ ଅରଣ୍ୟ ଉପରେ ଆଖି ବୁଲେଇ ଦେଖିଲି । ଗ୍ରୀଷ୍ମର ସବୁଜ ଶ୍ୟାମଳ ଢେଉଢେଉକା ଅରଣ୍ୟର ଶୋଭାରାଶି ଭିତରୁ ମତେ ଦିଶିଗଲା ଆମ ଓଡିଶାର ପୁରୀ ଉପକୂଳର ସାଗରବେଳାର ଦୃଶ୍ୟ । ସେଇ ସାମୁଦ୍ରିକ ପ୍ରଭାବ ଯୋଗୁ ବୋଧହୁଏ ଆମେ ଯେଉଁ ପାହାଡ ଉପରୁ ସେ ଦୃଶ୍ୟ ଦେଖୁଥିଲୁ ତାହାକୁ ନୀଳଶୈଳ ଆଖ୍ୟା ଦେବାକୁ ମଧ୍ୟ ମୋ ମନ କହିଲା ।

ଏଇ ନୀଳଶୈଳ ଉପରେ ପ୍ରତିଷ୍ଠିତ ଏଠାକାର ହିନ୍ଦୁ ମନ୍ଦିରଟି କିନ୍ତୁ ଗୋଟିଏ ଓଡିଶୀ

ଶିଳ୍ପ-କଳାର ଶୈଳୀରେ ନିର୍ମିତ ମନ୍ଦିର ନଥିଲା । ବାହାରକୁ ଏହା ଏକ ଦକ୍ଷିଣ ଭାରତୀୟ ଶୈଳୀର ବୋଇତାଳ ମନ୍ଦିରପରି ମନେହେଉଥାଏ । ମନ୍ଦିରଟିର ଉପରେ ଦଧିନଉତି ନଥିଲା କି ସମ୍ମୁଖରେ ଥିବା ସ୍ତମ୍ଭଟି ମଧ୍ୟ ଅରୁଣ ସ୍ତମ୍ଭ ନୁହେଁ ଦେଖିଲି । ପରେ ଅନୁସନ୍ଧାନରୁ ଜଣାଗଲା– ଗୋଟିଏ ପୁରୁଣା ଗୀର୍ଜା ଘରକୁ ସ୍ଥାନୀୟ ପ୍ରବାସୀ ଭାରତୀୟମାନେ କିଛି ବର୍ଷ ପୂର୍ବରୁ କିଣିନେଇ ତାହାକୁ ରୂପାନ୍ତରିତ କରିଥିଲେ ହିନ୍ଦୁ ମନ୍ଦିରକୁ । ମନ୍ଦିରଟି ବହୁସଂଖ୍ୟକ ଦକ୍ଷିଣଭାରତୀୟଙ୍କ ଆର୍ଥିକ ଅନୁଦାନରୁ ପୁନଃନିର୍ମିତ ହୋଇଥିବାରୁ ଏହାର ଆକୃତିକୁ ମଧ୍ୟ ଦକ୍ଷିଣଭାରତୀୟ ମନ୍ଦିର ଢାଞ୍ଚାରେ ଗଢାଯାଇଥିଲା ।

ଲୋକ ଭିଡ କ୍ରମଶଃ ବଢିଚାଲିଥାଏ । ସେଇ ଭିଡ ଦେଇ ଆମେ ସମସ୍ତେ ଚାଲିଲୁ ମନ୍ଦିର ଭିତରକୁ । ଦେଖିଲୁ, ମନ୍ଦିରଟି ବାସ୍ତବରେ ଏକ ଆଧୁନିକ ଚଳଣି ପାଇଁ ଉପଯୁକ୍ତ ପ୍ରକାଣ୍ଡ ଦୋ'ମହଲା ସୌଧ । ସମୁଦାୟ ସୌଧଟି କାଠରେ ତିଆରି ହୋଇଥିଲେ ବି ଏକକାଳୀନ ଶହଶହ ଲୋକଙ୍କ ବ୍ୟବହାର ଉପଯୋଗୀ ଏହା ଏକ ବିଶାଳ ଗୃହ । ଏହାର ତଳମହଲାରେ ଏକ ପ୍ରଶସ୍ତ ହଲ୍ । ଏଥିରେ ସଭା-ସମିତି ପାଇଁ ଶତାଧିକ ଚେୟାର୍ ସହିତ ବକ୍ତୃତା ଉପଯୋଗୀ ଏକ ବିରାଟ ମଞ୍ଚ ରହିଚି । ଏହା ସହିତ ଏଇ ତଳମହଲାରେ ରହିଚି– ଅତିଥିଶାଳା, ସାଜସରଂଜାମ କୋଠରୀ, ରୋଷଘର, ଆହାର କକ୍ଷ, ଶୌଚାଳୟ ଇତ୍ୟାଦିର ବ୍ୟବସ୍ଥା ।

ସୌଧର ଉପର ମହଲାଟି ପୂଜା ଓ ପ୍ରାର୍ଥନା ପାଇଁ ଉଦ୍ଦିଷ୍ଟ । ଉପରକୁ ଯାଇ ଦେଖିଲି– ଏହା ବାସ୍ତବିକ ଏକ ନୁହେଁ ବହୁ ମନ୍ଦିରର ସମଷ୍ଟିରୁ ଗଠିତ ଏକ ପୂଜା ପୀଠ । ଏଠାର ପ୍ରଧାନ ଆରାଧ୍ୟ ଦେବବିଗ୍ରହ ହେଲେ ଗଣପତି । ଗଣପତିଙ୍କୁ କେନ୍ଦ୍ରକରି ହିନ୍ଦୁମାନଙ୍କର ପ୍ରାୟ ସମସ୍ତ ଆରାଧ୍ୟ ଦେବଦେବୀ– ଶୈବ, ଶାକ୍ତ, ବୈଷ୍ଣବ ମତର ଦେବଦେବୀ ଏବଂ ଶ୍ରୀରାମ, ଶ୍ରୀକୃଷ୍ଣ ପ୍ରଭୃତି ଅବତାରମାନେ ନିଜନିଜର ସ୍ୱତନ୍ତ୍ର ଆସ୍ଥାନରେ ସ୍ଥାନିତ ।

ଏହି ସର୍ବଭାରତୀୟ ଧାର୍ମିକ ମତବାଦର ପୃଷ୍ଠଭୂମିରେ ଆମ ଜଗନ୍ନାଥଙ୍କ ସ୍ଥାନ କୋଉଠି ? ଆଖି ବୁଲେଇ ଦେଖିଲି– ମନ୍ଦିରର ଗୋଟାଏ କଣରେ ଖୁବ୍ ଲୋକ ଭିଡ ହେଇଗଲାଣି । ଶଂଖ, ହୁଳହୁଳି ହରିବୋଲ ପଡୁଚି– ବ୍ରାହ୍ମଣଙ୍କ ମନ୍ତ୍ର ପାଠ ବି । ଆମେ ଚାଲିଲୁ ସେ ଆଡକୁ । ଦେଖିଲୁ ଆରମ୍ଭ ହୋଇଯାଇଥାଏ ରଥଯାତ୍ରା ପାଇଁ ଠାକୁରମାନଙ୍କ ପ୍ରସ୍ତୁତି କାମ ।

ଠାକୁରମାନଙ୍କୁ ଦର୍ଶନ କରିବାକୁ ଲୋକ ଭିଡ କାଟି ଭିତରକୁ ପଶିବାକୁ ହେଲା । କେତେଟି ପୂର୍ବ ପରିଚିତ ମୁହଁ ଦେଖିଲି । ସେସବୁ ମୁହଁଗୁଡିକ ମୁଁ ବହୁବର୍ଷ ତଳେ ଦେଖିଥିଲି ଓଡିଶାରେ । କେତେକ ଥିଲେ ପୁରୁଣା ଛାତ୍ରଛାତ୍ରୀ, ଅନ୍ୟ କେତେଜଣ୍ ସାଙ୍ଗ ସାଥୀ ।

ଠାକୁରମାନଙ୍କ ଆସ୍ଥାନ ପାଖକୁ ଯାଇ ଦେଖିଲି– ଗୋଟିଏ ମେଢ ପରି ଆସ୍ଥାନରେ ଚାରି ଠାକୁର ବସିଚନ୍ତି । ମେଢଟି ଆମ କଟକର ଚଉଧୁରୀ ବଜାର ଦୁର୍ଗାମେଢଠୁ ବି

ଆକାରରେ ଛୋଟ । ତେବେ ଖୁବ୍ ଝଟକୁଥାଏ ମେଢଟି । ଚାରିଠାକୁର ସଜାସଜି ହୋଇ ଆହୁରି ଝଟକୁଥାନ୍ତି । ନାନାଜାତି ଫୁଲର ହାରରେ ମଣ୍ଡି ହୋଇ ଠାକୁରେ ଭାରି ହସଖୁସିଆ ଦିଶୁଥାନ୍ତି । ମନେ ମନେ କହିଲି– ଜଗତର ନାଥ ନାମ ସତରେ ସାର୍ଥକ ହେଲା ତା'ହେଲେ ଠାକୁରେ ! ଯୋଉ ଲୋକ ତମକୁ ଏ ନାଁ ଦେଇଥିଲା ସେ ଲୋକର ଦୂରଦୃଷ୍ଟିକୁ ଧନ୍ୟ କହିବ ! ତମ ନାମ ନହେଲେ କାହିଁକି ସେ ଦେଇଥାନ୍ତା– ଜଗତର ନାଥ ବୋଲି !

ସ୍ଥାନୀୟ ଓଡିଆମାନଙ୍କୁ ମନେ ମନେ ଧନ୍ୟବାଦ ଦେଲି । ସେମାନଙ୍କ ଦୁଃସାହସକୁ ପ୍ରଶଂସା କଲି । ଜାଣିଥିଲି– ଏ ଓଡିଆମାନେ ସର୍ବଭାରତୀୟ ପ୍ରବାସୀମାନଙ୍କ ଭିତରେ ସର୍ବ-କନିଷ୍ଠ । ବହୁ ପଛରେ ଏମାନେ ଦରିଆ ପାରି ହୋଇ ଆସିଚନ୍ତି ପୃଥିବୀର ଏପଟ ଗୋଲାର୍ଦ୍ଧକୁ ଜୀବନ ଜୀବିକାର ସନ୍ଧାନରେ । ସଂଖ୍ୟାରେ ମଧ୍ୟ ଅତି କମ୍ । ଅନ୍ୟମାନଙ୍କ ତୁଳନାରେ ସେମିତି କିଛି ବଡ ଚାକିରି କି ବଡ ବ୍ୟବସାୟ ଧନ୍ଦା ନାହିଁ ଏମାନଙ୍କର– ହେଲେ ବି କମ୍ ସାହସ ତ ନୁହଁ ଏ ଓଡିଆ ଏନ୍.ଆର୍.ଆଇ ମାନଙ୍କର ! ନହେଲେ ଏ ଧନୀ କୁବେର ଦକ୍ଷିଣ ଭାରତୀୟଙ୍କ ମନ୍ଦିରରେ ଅତିଥି ଅଭ୍ୟାଗତ ଭଳି ଜାଗାଟିରେ କାଲି ସକାଳେ ମାଗିଯାଚି ନିଜ ଠାକୁରଙ୍କୁ ବସାଇବାପରେଏମାନେ ସାହସ କରିପାରିନଥାନ୍ତେ ଆଦୌ ଏ ମହା ବ୍ୟୟବହୁଳ ମହା ହଙ୍ଗମା କାମ ରଥଯାତ୍ରା ପରି ଗୋଟାଏ ସ୍ୱତନ୍ତ୍ର ଆଖିଦୃଷ୍ଟିଆ ଉତ୍ସବ ଆରମ୍ଭ କରିଦବାକୁ !

ହଠାତ୍ ବାଦ୍ୟବାଜଣା ଜୋର୍ ବାଜିଉଠିଲା । ଉଠିଲା ହରିବୋଲ ହୁଳହୁଳି ଧ୍ୱନି ଆଉ କଳରୋଳ । ଆମେରିକାରେ ଏ ହୁଳହୁଳି ଶବ୍ଦ ଶୁଣି ସତରେ ରୁମ ଟାଙ୍କୁରିଉଠିଲା । ଦେଖିଲି ଜନତା ଭିତରେ ଉପସ୍ଥିତ ବହୁସଂଖ୍ୟାରେ ଭଦ୍ରମହିଳା ହୁଳହୁଳି ପକେଇବାକୁ ଚେଷ୍ଟିତ । ଏମାନେ ସମସ୍ତେ ବେଶ-ପୋଷାକରୁ ଦିଶୁଥାନ୍ତି ଅତି ଆଧୁନିକା ଆଉ ନିଶ୍ଚିତ ଭାବେ ଉଚ୍ଚଶିକ୍ଷିତା ବି । ଭାରତରେ ଥିଲେ ଏମାନେ ହୁଳହୁଳି ପକେଇବାକୁ ନିଶ୍ଚୟ କୁଣ୍ଠିତ ହୋଇଥାନ୍ତେ– କିନ୍ତୁ ଆମେରିକାରେ ଏମାନେ ପରସ୍ପର ସାଙ୍ଗେ ବାଦ କଲା ଭଳି ପକାଉଥାନ୍ତି ହୁଳହୁଳି । କୁହାଯାଏ ମଣିଷ ପରଦେଶୀ ହେଲେ ଯାଇ ନିଜ ଦେଶକୁ ଝୁରେ । ଘରେ ଭାଇ ସାଙ୍ଗେ ବାଦ କରୁଥିବା ମଣିଷ ବିଦେଶରେ ଭାଇକୁ ନିତି ଝୁରିହେଉଥାଏ ।

ଠାକୁରମାନଙ୍କୁ ରଥକୁ ନିଆଯିବା ପାଇଁ ଉଦ୍ୟମ ଆରମ୍ଭ ହେଲା । ପ୍ରଥମେ ଯିବେ ସୁଦର୍ଶନ । ତାଙ୍କୁ ଏକା ଏକା କାନ୍ଧରେ ଉଠେଇ ନେବାକୁ ଚାହିଁଲେ ଜଣେ କେହି ସୁଦର୍ଶନ ବ୍ୟକ୍ତି । ''ନାନା– ସେମିତି ଏକା ଏକା କାନ୍ଧରେ ମୁଦ୍ଗର ଉଠେଇଲା ଭଳି ସୁଦର୍ଶନଙ୍କୁ ଉଠେଇ ନିଅନ୍ତୁ ନାଇଁ ଆପଣ ।'' ଜଣେ କିଏ ପ୍ରତିବାଦ କଲେ । ଏଇଟା ସୁନ୍ଦର ଦିଶିବ ନାହିଁ । ଆସନ୍ତୁ ସମସ୍ତେ ହାତ ପକେଇବା–'' କହୁ କହୁ ଆହୁରି ଅନେକ ହାତ ଲମ୍ବି-ଆସିଲା ଏକା ସାଙ୍ଗେ । ଚାଲିଲା ଧରାପରା ।

ଠାକୁରମାନଙ୍କ ସ୍ପର୍ଶ ପାଇବା ପାଇଁ କିଏ ବା ଲାଳାୟିତ ନହୁଅନ୍ତା ! ଶେଷରେ ସ୍ଥିର ହେଲା– ଗୋଟିଏ ଗୋଟିଏ ଗ୍ରୁପ୍‌ରେ ବିଭକ୍ତ ହୋଇ ଭକ୍ତମାନେ ଠାକୁରମାନଙ୍କୁ ରଥକୁ

ନେବେ । ନାରୀମାନେ ଚାହିଁଲେ ସୁଭଦ୍ରାଙ୍କୁ ନେବେ ରଥକୁ– ବାକିମାନେ ଯେ ଯାହା ଗ୍ରୁପ୍‌ରେ ବଡଠାକୁର ସାନଠାକୁରଙ୍କୁ ଉଠାନ୍ତୁ । ସେଇ ନୀତି ଅନୁସରଣ କରାଗଲା ।

ଠାକୁରମାନଙ୍କୁ ଜଣ ଜଣ କରି ପହଣ୍ଡି କରାଇ ମନ୍ଦିରରୁ ବାହାରକରି ରଥକୁ ନିଆଗଲା । ପୂର୍ବରୁ କହିଚି– ଏ ମନ୍ଦିର ଦୁଇମହଲାର ଘର । ଉପର ମହଲାରେ ଠାକୁର-ମାନେ ପୂଜା ପାଆନ୍ତି । ଉପର ମହଲାରୁ ତଳ ମହଲାକୁ ଠାକୁରମାନଙ୍କୁ ସ୍ଥାନାନ୍ତର କରାଯିବା ସତରେ କଷ୍ଟକର । ବହୁ ସାବଧାନରେ ଠାକୁରମାନଙ୍କୁ ଉପର ମହଲାରୁ ଆଣି ରଥରେ ବସାଗଲା ।

ରଥ ବିଷୟରେ ପଦେ କହିବା ଉଚିତ୍ ହେବ । ଏ ବର୍ଷ ରଥଯାତ୍ରା ପାଇଁ ଠାକୁରମାନଙ୍କ ପାଇଁ ଗୋଟିଏ ମାତ୍ର ରଥ କରାଯାଇଥିଲା । ସେ ରଥ ତିଆରି ହେଇଥିଲା– ପ୍ରସିଦ୍ଧ ମାସାଚୁସେଟ୍‌ସ ବିଶ୍ୱବିଦ୍ୟାଳୟ ବା ଏମ୍.ଆଇ.ଟିର ୱର୍କସପ୍‌ରେ । ପ୍ରାୟ କୋଡ଼ିଏ ଫୁଟ୍ ଉଚ୍ଚ ରଥର ବିଶେଷତ୍ୱ ହେଲା– ଏଥିରେ ହାଇଡ୍ରଲିକ୍ ବ୍ରେକ୍‌ମାନ ଖଂଜାଯାଇ ଏହାକୁ ସଂପୂର୍ଣ୍ଣ ନିର୍ଭରଯୋଗ୍ୟ, ନିରାପଦ ଓ 'ରୋଡ୍ ୱର୍ଦି' କରାଯାଇଥାଏ । ରଥଟିକୁ ସ୍ଥାନୀୟ ଓଡ଼ିଆମାନେ ଅବିକଳ ପୁରୀ ଢଙ୍ଗରେ ରଙ୍ଗ କନା ଓ ଅନ୍ୟାନ୍ୟ ସାଜସରଂଜାମ ସହିତ ଫୁଲରେ ସଜେଇ-ଦେଇଥାନ୍ତି ।

ରଥଟଣା ଆରମ୍ଭ ପୂର୍ବରୁ ଛେରାପହଁରା । ସେଥିପାଇଁ ମୁଖ୍ୟ ଅତିଥି ପ୍ରଫେସର୍ କାହ୍ନୁଚରଣ ମିଶ୍ର ଉପସ୍ଥିତ ରହିଥାନ୍ତି । ଛେରାପହଁରା ଅନ୍ତେ ରଥ ଟଣା । ଏଇଠି ଦେଖିବା କଥା ସାଧାରଣ ଲୋକଙ୍କ ଉତ୍ସାହ । ଆମେରିକାର ବିଭିନ୍ନ ରାଜ୍ୟରୁ ଆସି ଠୁଳ ହେଇ-ସାରିଥିବା ଲୋକମାନେ ଆବାଳବୃଦ୍ଧବନିତା ବର୍ତ୍ତମାନ ପ୍ରବଳ ଉତ୍ସାହରେ ଲାଗିପଡିଲେ ରଥଟଣାରେ । ସେମାନଙ୍କ ଭିତରେ ଗୋରା ଆମେରିକାନ୍ ସ୍ତ୍ରୀ ପୁରୁଷଙ୍କ ସଂଖ୍ୟା କିଛି କମ୍ ନଥିଲା । କେତେଜଣ ଇସ୍‌କନ୍ ଭକ୍ତ ବି ଥିଲେ । ସେମାନଙ୍କ ଭିତରେ ଥିଲେ କିଛି କଳା ଲୋକ । ସେମାନେ ଆସିଥିଲେ ଆଫ୍ରିକାର କୌଣସି ରାଜ୍ୟର ଇସ୍‌କନ୍ ସଂସ୍ଥାରୁ ।

ରଥଦାଣ୍ଡଟି ବେଶୀ ବଡ ନୁହେଁ; କିନ୍ତୁ ଦି'ପହର ଖରାରେ ମନ୍ଦିରର ପାଦଦେଶରେ ପାହାଡ ଢାଲୁରେ ହଜାରେ ଫୁଟ୍ ଆକ୍ରାନ୍ତ ଏକ ରାସ୍ତା ଉପରେ ରଥ ଟାଣିବା ଥିଲା ଏକ ଆହ୍ୱାନ । ଜୁନ୍ ମାସରେ ଏଠିକା ଖରା ତାତି ଆମ ଓଡ଼ିଶା ତୁଳନାରେ ଆଦୌ କମ୍ ନୁହେଁ ।

ଏ ଜାଗାରେ ରଥର ଗତିକୁ ନିୟନ୍ତ୍ରଣ କରାଯିବା ବାସ୍ତବିକ୍ କଷ୍ଟକର । ସେଇ ଅନିଶ୍ଚିତତାକୁ ଏଠାର ପ୍ରବାସୀ ଓଡ଼ିଆ ଇଂଜିନିୟରମାନେ ଦୃଷ୍ଟିରେ ରଖି ବୋଧହୁଏ ରଥଟିକୁ ନିର୍ମାଣ କରାଇଥିଲେ ଏମ୍.ଆଇ.ଟିରେ ।

ରଥଦାଣ୍ଡରେ ରଥ ଥରଟିଏ ପରିକ୍ରମା ଅନ୍ତେ ଜୀଉମାନଙ୍କୁ ବସାଇ ରଥ ଫେରିଆସିଲା ପୁନର୍ବାର ମନ୍ଦିରର ତଳମହଲାର ମୁଖ୍ୟ ପ୍ରବେଶ ଦ୍ୱାର ପାଖକୁ । ଏଠାରୁ ଠାକୁରମାନଙ୍କୁ ଶଂଖ ହୁଳହୁଳି ଓ ବାଦ୍ୟ-ବାଜଣା ସହିତ ଭକ୍ତି ସହକାରେ ପାଛୋଟି ନିଆଗଲା ସଭାଗୃହ

(ଅଡିଟୋରିୟମ୍)ରେ ସଜ୍ଜିତ ହୋଇଥିବା ମଣ୍ଡପ ଉପରକୁ । ଆଗାମୀ ନଅଦିନ ପାଇଁ ଠାକୁରମାନେ ଏଇ ମଣ୍ଡପରେ ଆସୀନ ହୋଇ ପୂଜା ପାଇବାର ବ୍ୟବସ୍ଥା କରାଯାଇଥାଏ । ତେଣୁ ଆପାତତଃ ଏଇ ଗୃହଟିକୁ ହିଁ ପୁରୀ ଜଗନ୍ନାଥଙ୍କ ରଥଯାତ୍ରା ଉପଚାର ଅନୁଯାୟୀ ନ୍ୟାସ୍‌ଭିଲ୍ ମନ୍ଦିରର ଶ୍ରୀ ଜୀଉମାନଙ୍କର ଗୁଣ୍ଡିଚା ମନ୍ଦିର ଭାବେ କଳ୍ପନା କରାଯାଇଥିଲା । ଏହାପରେ ଠାକୁରମାନେ ଗୁଣ୍ଡିଚା ମନ୍ଦିରରେ ବିରାଜମାନ ହେଲେ ।

## ଓଟିଓନିର ଜଗନ୍ନାଥ

ସେଦିନ ରଥଯାତ୍ରା ଉତ୍ସବ ଅବସରରେ ଆୟୋଜକମାନେ ଏକ ସର୍ବସାଧାରଣ ସଭାର ବ୍ୟବସ୍ଥା କରିଥିଲେ । ଏ ସଭାର ଉଦ୍ଦେଶ୍ୟ ଥିଲା ଆମେରିକା ଭଳି ଏକ ଉନ୍ନତ ପାଶ୍ଚାତ୍ୟ ଦେଶର ଲୋକଙ୍କୁ ଭାରତୀୟ ସଂସ୍କୃତିର ମୂଳ– ସର୍ବଧର୍ମ ସମନ୍ୱୟର ତତ୍ତ୍ୱ ବା ଜଗନ୍ନାଥ ସଂସ୍କୃତି ସଂପର୍କରେ ଅବଗତ କରାଇବା । ସେଥିପାଇଁ ଆୟୋଜକମାନେ ଓଡିଶାରୁ ଜଗନ୍ନାଥ ତତ୍ତ୍ୱ ବିଶାରଦ ବିଦ୍ୱାନ୍ ପ୍ରଫେସର୍ କାହ୍ନୁଚରଣ ମିଶ୍ରଙ୍କୁ ମୁଖ୍ୟବକ୍ତା ଭାବେ ନିମନ୍ତ୍ରିତ କରି ଆଣିଥିଲେ । ତାଙ୍କ ଛଡା ଅନ୍ୟ ନିମନ୍ତ୍ରିତ ଅତିଥି ଥିଲୁ ଆମେ ଦୁଇଜଣ– ପ୍ରସିଦ୍ଧ କଣ୍ଠଶିଳ୍ପୀ ଶ୍ରମତୀ ସୁନନ୍ଦା ପଟ୍ଟନାୟକ ଓ ମୁଁ । ଆମ ଛଡା ଅନ୍ୟଜଣେ ଅଫିସିଆଲ୍ ଅତିଥିଙ୍କୁ ଡକାଯାଇଥିଲା ମଧ୍ୟ– ସେ ହେଲେ ୱାସିଂଟନ୍‌ରେ ଅବସ୍ଥିତ ଭାରତୀୟ ଦୂତାବାସର ଜଣେ ବରିଷ୍ଠ ଓଡିଆ କୂଟନୀତିଜ୍ଞ ଅଫିସର୍ ଶ୍ରୀ ମଳୟ ମିଶ୍ର ।

ଆଲୋଚନା ସଭାର କାର୍ଯ୍ୟକ୍ରମକୁ ଭିଡିଓ ରେକର୍ଡିଂ ସାହାଯ୍ୟରେ ରେକର୍ଡ କରାଇବାର ବ୍ୟବସ୍ଥା କରାଯାଇଥାଏ । ଭିଡିଓଗ୍ରାଫର୍ ହେଲେ ଜଣେ ସ୍ଥାନୀୟ ଲୋକ । ଏଠାରେ ମୁଁ ତାଙ୍କରି ବିଷୟରେ ହିଁ କହିବା ଉଦ୍ଦେଶ୍ୟରେ ଏ ଲେଖାଟି ଲେଖୁଛି ।

– ସଭା ଯଥାରୀତି ଆରମ୍ଭ ହେଲା । ହଲ୍ ପୂରା ଭର୍‌ପୁର୍ – 'ଜାମ୍‌ପ୍ୟାକ୍‌ଡ୍' କହନ୍ତି ଯାହାକୁ । ମଞ୍ଚରେ ଆମେ ଅତିଥିମାନେ ବସିଲୁ । ସଭା ପରିଚାଳନା କଲେ ଏଠାକାର ଜଣେ ବିଶିଷ୍ଟ ଓଡିଆ ଏନ୍‌ଆର୍‌ଆଇ– ଡଃ. ରାଧାକାନ୍ତ ମିଶ୍ର । ଆରମ୍ଭରୁ ସୁନନ୍ଦା ପଟ୍ଟନାୟକ ଜଗନ୍ନାଥଙ୍କୁ ଆବାହନ କଲେ ତାଙ୍କ ଅନିନ୍ଦ୍ୟ କଣ୍ଠ-ନିଃସୃତ ଜଗନ୍ନାଥାଷ୍ଟକ ଗାନକରି । ଏହାପରେ ମୁଖ୍ୟବକ୍ତା ପ୍ରଫେସର୍ କାହ୍ନୁଚରଣ ମିଶ୍ର ତାଙ୍କ ଦୀର୍ଘ ତାତ୍ତ୍ୱିକ ବକ୍ତବ୍ୟ ପାଠକଲେ– ଜଗନ୍ନାଥ-ତତ୍ତ୍ୱର ବହୁ ଦିଗ ଉପରେ ଚର୍ଚ୍ଚାକରି କ୍ରମେ ଦେଖାଗଲା ଶ୍ରୋତାମାନେ ହାଇମାରି ହଲ୍‌ରୁ ବାହାରିଯାଉଚନ୍ତି । ପରେ ପରେ ମଳୟ ମିଶ୍ରଙ୍କୁ ଡକାଗଲା । ସେ ଜଣେ ପୁରୀ ବାସିନ୍ଦା । ଜଗନ୍ନାଥଙ୍କ ବିଷୟରେ ସେ ବି କିଛି ତତ୍ତ୍ୱ କହିଲେ; କିନ୍ତୁ ସଭା ଆଉ ଜମିଲା ଭଳି ମନେହେଲା ନାହିଁ ।

ତୃତୀୟ ଓ ଶେଷ ବକ୍ତାଭାବେ ମତେ ଡକାଗଲା । ମୁଁ ଆମେରିକାର ଶ୍ରୋତାମାନଙ୍କ ଆଗରେ ପୂର୍ବରୁ କେବେ ବକ୍ତୃତା କରିନଥିଲି । ତେବେ, ସଭାରେ ଉପସ୍ଥିତ ଶ୍ରୋତାମାନେ

ଥିଲେ ମୁଖ୍ୟତଃ ଭାରତୀୟ । ଅଧିକାଂଶ ମୁହଁ ଦକ୍ଷିଣ ଭାରତୀୟ,-କିଛିଟା ବଙ୍ଗାଳି, ବିହାରୀ, ଉତ୍ତର ଭାରତୀୟ । ଗୋରା ଲୋକ ଦିଶୁଥିଲେ ଦୁଇତିନିଜଣ ଇସ୍‌କନ୍ ବାବାଜି ।

ସେ ପର୍ଯ୍ୟନ୍ତ ମୁଁ ଏ ସଭାର ଭିଡିଓଗ୍ରାଫରଙ୍କୁ ଜଣେ ଶ୍ରୋତା ବୋଲି ଭାବୁନଥିଲି । ପୁଣି ଚେହେରା ଦେଖି ଜାଣି ବି ହେଉନଥାଏ ସେ ଆମେରିକାନ୍ ନା ନୁହେଁ । ତା' ମୁହଁର ଗଢଣ ଅନେକଟା ଆମ ଓଡିଆ ପରି; କିନ୍ତୁ ଭଲକରି ଦେଖିଲେ ଦିଶୁଥାଏ ଓଡିଆ ନୁହେଁ– ହୁଏତ ଆମେରିକାନ୍ । ରଙ୍ଗ ତମ୍ବାଳିଆ, କଇଁଥା ନାଲି । ସନ୍ଦେହ ହେଲା– ତେବେ କ'ଣ ଯୋଉ ରେଡ୍ ଇଣ୍ଡିୟାନ୍ ବା ଲୋହିତ ଭାରତୀୟ ଲୋକଙ୍କ ବିଷୟ କୁହାଯାଏ ଏ ସେଇ ଜାତିର କି ? କାହିଁକି କେଜାଣି ପିଲାଦିନୁ ରେଡ୍ ଇଣ୍ଡିଆନ୍ ଶବ୍ଦଟା ମତେ ଆକୃଷ୍ଟ କରିଆସୁଥାଏ । ସ୍କୁଲ୍ ପାଖ ବହିରୁ ସେମାନଙ୍କ ବିଷୟରେ ଯେତିକି ପଢାଯାଉଥିଲା ସେତିକିରୁ ଯାହା ଅନ୍ଦାଜ୍ କରିହେଉଥିଲା ସେତିକି ଜାଣିଥାଏ ଆଜିଯାକେ ସେମାନଙ୍କ ବିଷୟରେ । ପରେ କଲମ୍ବସ୍‌ଙ୍କ ଆମେରିକା ଆବିଷ୍କାର ଓ ଆମେରିକାର ମୂଳ ଅଧିବାସୀଙ୍କ ଇଣ୍ଡିଆନ୍ ନାମକରଣ ମତେ ସେମାନଙ୍କ ସଂପର୍କରେ ଆହୁରି ବେଶୀ କୌତୂହଳୀ କରାଇଥିଲା । କଲମ୍ବସ୍‌ଙ୍କ ପରେ ତାଙ୍କ ଦେଶ ସ୍ପେନ୍‌ର ଶାସକମାନେ ଆମେରିକା ଉପରେ ଯେଉଁ ଦୁର୍ଦ୍ଦାନ୍ତ ଉପନିବେଶବାଦ ଜାହିର କରି ଯେତେ ସବୁ ଅମାନୁଷିକ ଅତ୍ୟାଚାର କରିଯାଇଚନ୍ତି ସେ ସବୁର ଉତ୍ୟକ୍ତକର କାହାଣି ପଢିଥିଲି । ସେଥିରୁ ସେଇ ବର୍ବର ସ୍ପାନିସ୍ ଉପନିବେଶବାଦୀଙ୍କ ଉପରେ ମୋର ଯେତିକି ଘୃଣା ଜାତ-ହୋଇଥିଲା ତା'ଠାରୁ ବେଶି ସହାନୁଭୂତି ଅବଶ୍ୟ ଜାଗ୍ରତ ହୋଇଥିଲା ସେମାନଙ୍କର ଶିକାର ପାଲଟିଥିବା ବିଚରା ରେଡ୍‌ଇଣ୍ଡିୟାନ୍‌ଙ୍କ ପ୍ରତି । ଏଇ ପରିପ୍ରେକ୍ଷୀରେ ସଭା ଆରମ୍ଭରୁ ମୁଁ ସେ ଲୋକଟିର ଗତିବିଧି ଚାଲିଚାଲଣ ପ୍ରତି ବରାବର ଧ୍ୟାନ ରଖିଥାଏ– କାରଣ ଅନ୍ୟ କିଛି ନୁହେଁ– କେବଳ ବିଶୁଦ୍ଧ କୌତୂହଳ ।

ବକ୍ତବ୍ୟ ପାଇଁ ଆହ୍ୱାନ ପାଇ ମୁଁ ମାଇକ୍ ଷ୍ଟାଣ୍ଡ୍ ପାଖକୁ ଗଲି । କାହ୍ନୁବାବୁଙ୍କ ବକ୍ତୃତା-ବେଳେ ଶ୍ରୋତାଙ୍କ ହାବଭାବକୁ ଲକ୍ଷ୍ୟକରି ବୁଝିପାରିଥିଲି ଯେ ସେମାନେ ଥିଓରି ବା ତତ୍ତ୍ୱରେ ଆଗ୍ରହୀ ନୁହନ୍ତି । ଭାରତରେ ସାଧାରଣ ସଭାମାନଙ୍କରେ ବାରମ୍ବାର ବକ୍ତୃତା ଦେବା ଭିତରେ ମୁଁ ଜନତାର ମନସ୍ତତ୍ତ୍ୱର ମୂଳମନ୍ତ୍ରଟିକୁ ବେଶ୍ ବୁଝିସାରିଥାଏ । ସାଧାରଣ ସଭାରେ ତତ୍ତ୍ୱ ଆଲୋଚନା ନିରର୍ଥକ ବୋଲି ଜାଣିସାରିଥାଏ । ଜନତା ତତ୍ତ୍ୱ ବୁଝେନା, ବୁଝେ ଲୀଳା– ସେମାନଙ୍କୁ କ୍ଲାସ୍‌ରୁମ୍ ବକ୍ତୃତା ଶୁଣେଇଲେ ଶ୍ରୋତା ବିରକ୍ତ ହୁଏ, ହାଇମାରେ, ଗପସପ୍ କରେ, ବକ୍ତୃତା ସରିବା ଆଗରୁ ହଲରୁ ଖସି ପଳାଏ– ଏ ହେଲା ଜଣେ ଭଲ ବକ୍ତାର କାଣ୍ଡଜ୍ଞାନ !

ସେଇ କାଣ୍ଡଜ୍ଞାନକୁ ଦୃଷ୍ଟିରେ ରଖି ମୁଁ ସ୍ଥିରକରିନେଲି– ଜଗନ୍ନାଥଙ୍କ ଅଘଟନ-ଘଟନ ପଟୀୟସୀ ଲୀଳା ବିଷୟରେ ହିଁ କହିବି । ସେ ଲୀଳାକୁ ତ ମୁଁ ମୋ ଜୀବନରେ କେତେବାର ଅଙ୍ଗେ ନିଭେଇ ସାରିଥାଏ ସେତେବେଳକୁ– ସେଇ ବିଷୟ ମନରେ ରଖି ମୁଁ ମାଇକ୍‌ରେ

କହିଲି, ''ବନ୍ଧୁଗଣ, ଆପଣମାନେ ଜାଣନ୍ତି ମୁଁ ଜଣେ ବିଜ୍ଞାନର ଛାତ୍ର । ବିଶ୍ୱବିଦ୍ୟାଳୟସ୍ତରରେ ପୋଷ୍ଟ୍ ଗ୍ରାଜୁଏଟ୍ କ୍ଲାସ୍‌ରେ କେମିଷ୍ଟ୍ରି ପଢାଏ । ମୁଁ ଆପଣମାନଙ୍କ ପରି ସେତେଟା ଈଶ୍ୱର-ବିଶ୍ୱସୀ ନୁହେଁ । ଭଗବାନ୍‌ଙ୍କୁ ଆଖିବୁଜି ବିଶ୍ୱାସ କରିଯିବା ଲୋକ ମୁଁ ନୁହେଁ । ପରୀକ୍ଷା ନକରି ମୁଁ କିଛି କଥାକୁ ଆଖିବୁଜା ମାନି ନିଏ ନାଇଁ । ସେଦୃଷ୍ଟିରୁ ଆପଣମାନେ ମତେ କହିପାରନ୍ତି ମୁଁ ଜଣେ ଅଜ୍ଞେୟବାଦୀ ବା ଆଗନୋଷ୍ଟିକ୍ । କିନ୍ତୁ ମୋ ଜୀବନର ଗୋଟିଏ ଅଭିଜ୍ଞତା ମୁଁ ଆପଣମାନଙ୍କ ଆଗରେ ଉପସ୍ଥାପିତ କରିବାକୁ ଯାଉଚି । ଦୟାକରି ଧୈର୍ଯ୍ୟର ସହିତ ଶୁଣନ୍ତୁ ।

ଏତିକି କହିବାପରେ ଲକ୍ଷ୍ୟାକଲି ହଲ୍ ଭିତରେ ଅନେକଟା ନୀରବତା ଆସିଗଲା । ଲୋକେ ପରସ୍ପର ଭିତରେ ଗପକରିବା ଛାଡି ମୋ' କଥାକୁ କାନ ଦେଲେ । ସେଇ ସୁଯୋଗରେ ମୁଁ ମୋ ଜୀବନର ଏକ ଘଡିସନ୍ଧି ସମୟରେ ଜଗନ୍ନାଥଙ୍କୁ ନେଇ ଘଟିଥିବା ଏକ ଅଦ୍ଭୁତ ଘଟଣାଟାର ଅବତାରଣା କଲି । ଏଠି କହିରଖେ ଏ ଘଟଣାଟି ମୁଁ ମୋର ଆତ୍ମଜୀବନୀରେ ସବିଶେଷ ଉଲ୍ଲେଖ କରିଚି– ତେଣୁ ଏଠାରେ ତାହାର ପୁନରାବୃତ୍ତି କରିବି ନାହିଁ । ତେବେ ସେ ସଂପର୍କରେ କେବଳ କେତେକ ସୂଚନା ମାତ୍ର ଦେଉଚି ।

ସେତେବେଳେ ମୋ' ଚାକିରି ଜୀବନରେ ଚାଲିଥାଏ ଘୋର ଦୁର୍ଦ୍ଦିନ । ଉପରସ୍ଥ ଅଫିସର୍‌ମାନଙ୍କ ଷଡଯନ୍ତ୍ରରୁ ରକ୍ଷାପାଇବା ପାଇଁ ମାସମାସଧରି ଛୁଟିରେ ରହିବାକୁ ବାଧ୍ୟ-ହେଉଥାଏ । ଦରମା ବନ୍ଦଥାଏ । ବହୁ କଷ୍ଟରେ ଧାର ଉଧାର କରି ଘର ଚଳାଉଥାଏ । ସେତେବେଳେ ମୋ ବଡଝିଅ ବୁଲବୁଲ, ଯେ ଆଜି ମତେ ଆମେରିକାର ଏଇ ରଥଯାତ୍ରାରେ ଉପସ୍ଥିତ ହେବା ପାଇଁ ପ୍ଲେନ୍ ଟିକେଟ୍ ଦେଇ ଓଡିଶାରୁ ଏଠିକି ଆଣିଛି ସେଇ ଝିଅ ସେଦିନ ଏମ୍.ଏ. ଫାଇନାଲ୍ ପରୀକ୍ଷା ଦେଉଥାଏ– ଉତ୍କଳ-ବିଶ୍ୱବିଦ୍ୟାଳୟର ସୋସିଓଲଜି ବିଭାଗରେ । ତା'ର ସେଦିନ ଦରକାର ଥାଏ ଟଙ୍କା ଦୁଇଶହ– ବିଶ୍ୱବିଦ୍ୟାଳୟର ପରୀକ୍ଷା ଫିସ୍ ଦାଖଲ ପାଇଁ; କିନ୍ତୁ ମୁଁ ସେତକ ଟଙ୍କା ଯୋଗାଡ କରିପାରୁନଥାଏ । ସେତେବେଳେ ମୁଁ ଓଡିଶା ସରକାରଙ୍କ ଶିକ୍ଷାବିଭାଗର ଜଣେ ବରିଷ୍ଠ ରିଡର୍ – ପ୍ରଥମଶ୍ରେଣୀ ଅଫିସର୍ । କିନ୍ତୁ ଟଙ୍କା ଦୁଇଶହ ଯୋଗାଡ କରିବାକୁ ସେଦିନ କେତେ ଘର ବୁଲି ଚିହ୍ନା ପରିଚିତ ସାଙ୍ଗ ଓ ପଡୋଶୀଙ୍କ ପାଖରେ ହାତ ପତେଇଲି । ସମସ୍ତେ ମାସ ଶେଷର ଦ୍ୱାହି ଦେଇ ବା ଅନ୍ୟ କିଛି ଆଳରେ ନିରାଶ ବାଣୀ ଶୁଣେଇଲେ । ଟଙ୍କା ଯୋଗାଡ ନକରିପାରି ମନ କଷ୍ଟରେ ଘରକୁ ଫେରିଲି । ସେ ସମୟରେ ମୁଁ ମୋର ପ୍ରସିଦ୍ଧ ଉପନ୍ୟାସ ''ଶକୁନ୍ତଳା'' ରଚନାରେ ଦିନରାତି ନିମଗ୍ନ ରହୁଥାଏ । ଝିଅର ପରୀକ୍ଷା ଫିସ୍ ପାଇଁ ଦରକାର ଟଙ୍କା କେଇଟା ଯୋଗାଡ କରିନପାରି ନିରାଶ ହୋଇ ଘରକୁ ଫେରି ପୁଣି ବସିଗଲି ଲେଖା ଟେବୁଲ୍ ପାଖରେ । ସେ ରାତିରେ ଉପନ୍ୟାସର ଅସଂପୂର୍ଣ୍ଣ ରହିଯାଇଥିବା ଅଧ୍ୟାୟଟିକୁ ପୂରା କରିଦେବାକୁ ମନରେ ସ୍ଥିର କରିସାରିଥାଏ । ଝିଅ ବାରମ୍ବାର ପଚାରୁଥାଏ, ''ନନା ! ଟଙ୍କା ମିଳିଲା ?'' ମୁଁ ତା' ମନର ବ୍ୟାକୁଳତାକୁ ବୁଝୁଥାଏ । ନୈରାଶ୍ୟକୁ ଛାତିରେ ଚାପି କହୁଥାଏ, ''ଅପେକ୍ଷା

କର– କାଲି ସକାଳୁ ଯୋଉଠୁ ହେଲେ ଆଣି ତତେ ତୋ' ପରୀକ୍ଷା ଫିସ୍ ଟଙ୍କା ଦେବି ମା'। ଆଜି ରାତିଟା ଅପେକ୍ଷା କରିଯା ।''

ଝିଅ ବୋଧହୁଏ ମୋ ଅସହାୟତା ବୁଝିନେଇସାରିଥାଏ । ସେ ଆଉ ସେ ବିଷୟ ତା' ନଭାବି ପଢାରେ ମନଦେଲା । ଘରେ ସ୍ତ୍ରୀ ମଧ୍ୟ ନଥାନ୍ତି– ସେ ଯାଇଥାନ୍ତି ତାଙ୍କ ବାପଘର କଟକ କୌଣସି ଘରୋଇ କାମରେ । ମୋ' ହେପାଜତରେ ଥା'ନ୍ତି ଦୁଇଝିଅ ବୁଲବୁଲ ଓ ତା' ତଳ ଭଉଣୀ ସୁଲୁ । ସେ ମଧ୍ୟ ସେତେବେଳେ ପୋଷ୍ଟ୍‌ଗ୍ରାଜୁଏଟ୍ ଛାତ୍ରୀ ବିଶ୍ୱବିଦ୍ୟାଳୟରେ ।

ସନ୍ଧ୍ୟା ବିତିଗଲା । ରାତି ବଢିବା ପରେ ଝିଅମାନେ ରୋଷେଇ କାମ ସାରି ମତେ ଡାକିଲେ ଖାଇବାପାଇଁ । ଖିଆପିଆ ସାରି ସେମାନେ ଚାଲିଗଲେ ନିଜ ଶୋଇବା ବଖରାକୁ । ମୁଁ ଫେରିଲି ଲେଖାପଢା ଟେବୁଲ୍ ପାଖକୁ । ରାତି ବଢି ଚାଲିଥାଏ । ମଧ୍ୟ ରାତି ସରିକି କ୍ଳାନ୍ତି ଅନୁଭବ କଲି । ପଢା ରୁମ୍‌ରେ ପଡିଥିବା ଖଟିଆ ଉପରେ ଟିକେ ଲୋଟିପଡିଲି । ଖଟିଆ ଉପରେ ଚିତ୍‌ହୋଇ ପଡିଯିବାବେଳେ ହଠାତ୍ ଆଖିରେ ପଡିଗଲା–କାନ୍ଥରେ ଟଙ୍ଗା-ହେଇଥିବା ଗୋଟାଏ କ୍ୟାଲେଣ୍ଡର୍ । ସେଇ କ୍ୟାଲେଣ୍ଡର ଛବିରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ହସହସ ମୁହଁ ତିନିଟି ମୋ ଆଖିରେ ପଡିଯିବା ମାତ୍ରେ ମୁଁ ଶୋଇବା ଅବସ୍ଥାରୁ ଉଠି ବସିଲି । ସନ୍ଧ୍ୟାବେଳ ଗୋଟାକ ଚେଷ୍ଟାକରି ସାମାନ୍ୟ ଟଙ୍କା ଦୁଇଶହ ପାଇଁ ହାତ ପତେଇ ଯେତେ ସବୁ ନାସ୍ତିବାଣୀ ଶୁଣିଥିଲି ସେ ସବୁ ଗୋଟାଏ ଗୋଟାଏ ଲାଣ୍ଡମାଇନ୍ ଭଳି ଯେ ମୋ ଭିତରେ କୋଉଠି ପୋତାହେଇଥିଲା ଏହା ବୁଝା ପଡିବା ପୂର୍ବରୁ ମୋ ଅନ୍ତର ଭିତରେ ଭୟଙ୍କର ବିସ୍ଫୋରଣଟାଏ ଘଟିଲା ।

ବିପନ୍ନ ଓଡିଆ ସରକାରି କର୍ମଚାରି ଓ ଜଣେ ଦୁଃସ୍ଥ ଲେଖକ ନିଜର ଅର୍ଥନୈତିକ ଦୁର୍ଗତି ପାଇଁ ଆଉ କାହାକୁ ବା ଦାୟୀ କରନ୍ତା– ଓଡିଆଙ୍କ ଇଷ୍ଟଦେବ ବୋଲାଉଥିବା ଏଇ ଚକାଆଖିଆ କଳାଠାକୁର ଜଗନ୍ନାଥଙ୍କ ଛଡା ? କ୍ୟାଲେଣ୍ଡର ଭିତରୁ ନିର୍ଲଜ୍ଜ ପରି ହସହସ-ମୁହଁରେ ଯୋଡାଏ ଗୋଲ ଗୋଲ ଆଖିରେ ବଳଦ ଭଳି ଅନାଇରହିଥିବା ସେଇ ତଥାକଥିତ ଠାକୁର ଜଗନ୍ନାଥଙ୍କ ଉପରେ ସେଦିନ ମୋର ସବୁତକ ରାଗ ଝଡେଇଦେଲି– ସେଇ ବିସ୍ଫୋରଣରେ । ମୋର ସେ କ୍ରୋଧ ବାସ୍ତବିକ୍ ଥିଲା ଅତ୍ୟନ୍ତ ସାତ୍ତ୍ୱିକ; ମାତ୍ର ଅତି ସାଂଘାତିକ ! ତାହାରି ନାଁ ବ୍ରହ୍ମକ୍ରୋଧ ! ସେଇ ବ୍ରହ୍ମ କ୍ରୋଧରେ ଅନ୍ଧହେଇ ମୁଁ ଜଗନ୍ନାଥଙ୍କୁ ମନ ଇଚ୍ଛା ଗାଳି ଦେବାକୁ ଲାଗିଲି ଓ ମୋର ଜୀବନର ସମସ୍ତ ବ୍ୟର୍ଥତା ପାଇଁ ତାଙ୍କୁ ହିଁ ଦାୟୀ କଲି । ମୋର ଅଭିଯୋଗର ବିଷୟ ଥିଲା– ମୁଁ ଜଣେ ବିଜ୍ଞାନ ଛାତ୍ର ହୋଇ ବିଜ୍ଞାନରେ ରିସର୍ଚ୍ଚ ଛାଡି ଓଡିଆ ସାହିତ୍ୟ ପିଛା ପଡିଲି କାହିଁକି ? କାହିଁକି ମୋ ଜୀବନକୁ ନଷ୍ଟଭ୍ରଷ୍ଟ କରିଦେଲି ବୃଥାଟାରେ ବିଗତ ପଚିଶବର୍ଷ ହେଲା ? ଜଗନ୍ନାଥଙ୍କ ଦେଶ ବୋଲାଉଥିବା ଓଡିଶା ଭଳି ଏକ ଅନଗ୍ରସର ରାଜ୍ୟରେ ମାତୃଭାଷା ଓଡିଆରେ ପଚିଶ ପଚିଶ

ବର୍ଷ ଧରି ନିଷ୍ଫଳ ସାହିତ୍ୟ ଚାଷରେ ମାତି ଜୀବନଟାକୁ ନଷ୍ଟ କରିଦେଲି କାହିଁକି ବୃଥାଟାରେ ? କିଏ ପୂରେଇ ଦେଲା ମତେ ଏ ବେଠି ଖଟା ସାହିତ୍ୟ କାମରେ ଯାହାର କଡାକର ମୂଲ୍ୟ ନାହିଁ ଆଜିର ଦୁନିଆରେ ? ଏ ନିଶ୍ଚୟ ତୋ'ରି କାମ ଜଗନ୍ନାଥ ! ତୋ'ରି ପ୍ରେରଣାରେ, ତୋ'ରି ଶିକ୍ଷାରେ ପଡି ପରା ମୁଁ ମୋ ସାଂସାରିକ ବୁଦ୍ଧିକୁ ପଛରେ ପକାଇ ପଚିଶବର୍ଷତଳେ ବାହାରିଆସିଥିଲି ଦିନେ ତୋର ଭାଷା ସଂସ୍କୃତି ସାହିତ୍ୟର ଆଭିଜାତ୍ୟ ରକ୍ଷାକୁ ଜୀବନର ପରମ କର୍ତ୍ତବ୍ୟ ମନେକରି ? ମୋ ସରକାରି ଚାକିରି କ୍ୟାରିୟରକୁ ପରୱା ନକରି କେମିଷ୍ଟ୍ରିରେ ପିଏଚ୍.ଡି କାମ ଅଧାରୁ ଫୋପାଡିଦେଇ ପଳେଇଆସିଥିଲି ପରା ମାତୃଭାଷା ଓଡିଆର ସେବାକୁ ଜୀବନରେ ଅଗ୍ରାଧିକାର ଦେବାକୁ ! କହ କ'ଣ ମିଳିଲା ମତେ ? କ'ଣ ଦେଲୁ ତୁ ମତେ ପ୍ରତିଦାନରେ ତୋର ଏ ନିଷ୍ଫଳ ସେବାରେ ଜୀବନଟାକୁ ଉତ୍ସର୍ଗ କରିଦେଇ ? ତୁ ମୋ ଜୀବନକୁ ନଷ୍ଟ କରିଦେଲୁରେ ପୋଡାମୁହାଁ ଜଗନ୍ନାଥ ! କେବଳ ମୋର ନୁହେଁ, ଯେତେ ଯେତେ ଲୋକ ତତେ ଭଗବାନ୍‌ଫଗବାନ କହି ପୂଜା-କରିଆସୁଚନ୍ତି ଏଯାବତ୍ ସେ ସମସ୍ତଙ୍କର ସତ୍ୟାନାଶର କାରଣ ହେଇଚୁ ତୁ । ତୁ ଓଡିଆଙ୍କ ଉପାସ୍ୟ ଠାକୁର ନୁହଁ– ଓଡିଆଙ୍କ ଶତ୍ରୁ ! ଓଡିଆ ଜାତିର ଅଧଃପତନର ମୂଳ କାରଣ ତୁ । ଆଜିଠାରୁ ମୁଁ ତତେ ବର୍ଜନ କଲି ! ତୋ ପୋଡା ମୁହଁକୁ ଆଉ ଦିନେ ବି ଚାହିଁବି ନାହିଁ । ଏଇ ମୋର ପ୍ରତିଜ୍ଞା– ମୋ ଭୀଷ୍ମ ପ୍ରତିଜ୍ଞା... !''

ଏମିତି ଏମିତି ମନଭର୍ତ୍ତିକରି ଗାଳି କରି ଚାଲିଲି ମୁଁ ଅଶେଷ ଅଭିମାନ ଓ କ୍ରୋଧରେ । ପ୍ରାୟ ଅଧଘଣ୍ଟାଏ କାଳ ମନଇଚ୍ଛା ସେମିତି ଗାଳି କଲା ପରେ ଟିକିଏ ଆଶ୍ୱସ୍ତ ଲାଗିଲା । ମନ ଅଭିମାନ ମେଣ୍ଟାଇସାରି ମୁଁ ଏଥର ପୁଣି ଖଟିଆ ଉପରେ ଲୋଟିପଡିଲି । ଶୀତ ଦିନ । ଡିସେମ୍ବର ମାସ । କମ୍ବଳ ଟାଣିନେଇ ମୁହଁ ଘୋଡେଇ ଶୋଇବାକୁ ଯାଉଚି ପୁଣି ଆଖିରେ ପଡିଲା ସାମ୍ନା କାନ୍ଥରୁ ଝୁଲୁଥିବା ସେଇ କ୍ୟାଲଣ୍ଡରଟା । ଚିତ୍ର ତିନିଟା ସେମିତି ଜଳଜଳ କରି ଚାହିଁଥାନ୍ତି ମତେ ଆଉ ନାଳିନାଳି-ଓଠରେ ହସୁଥାନ୍ତି । ଇସ୍ କି ନିଲଠା ମୁହଁରେ ହସୁଥାନ୍ତି ସେମାନେ ! ଏତେ ଗାଳି ଖାଇ ତଥାପି ଟିକେ ହେଲେ ବି ଲାଜ ଲାଗୁନି ଏମାନଙ୍କୁ ? ଗମ୍ଭୀର ହେଲି । ସେଇ ମୁହଁ ତିନିଟାକୁ ଭଲକରି ଅନାଇଲି । ଦେଖିଲି – ସେଇ କଳାମୁହାଁ ଠାକୁରଟାର ଗୋଲଗୋଲ ଆଖି ଯୋଡାକ ମତେ ଚାହିଁଚି । କ'ଣ ଯେମିତି କହିବ କହିବ ହୋଇ କହିନପାରି ଖାଲି ହସୁଚି ! କାହିଁକି କେଜାଣି ମନରେ ଟିକେ ଦୁଃଖ ଆସିଲା । ଭାବିଲି – ଗାଳି କରୁକରୁ ବହୁତ ବେଶୀ ଗାଳି କରିଦେଲି ବୋଧେ । ତଥାପି ମୋ ଗାଳି ଶୁଣି କୌଣସି ପ୍ରତିବାଦ ନକରି ଏ ମୁହଁ ତଥାପି ଚାହିଁ ରହିଚି କାହିଁକି ଏମିତି ମତେ ନିରୀହ ଲୋକଟିଏ ପରି ? ଏକ ଅହେତୁକ ଦୟା ଆସିଲା ମୋର ତା' ପ୍ରତି ।

କହିଲି, ''ଶୁଣ ତେବେରେ ନିର୍ଲଜ୍ ଠାକୁର ! ତୋ' ସହିତ ମୋର ସଂପର୍କ ଏଯାକେ ତଥାପି ତୁଟିନାହିଁ ବୋଲି ଜାଣ ! ଯଦି ଏ ସଂପର୍କ ରହୁ ବୋଲି ତୁ ଚାହୁଁ ତେବେ ମୋର

ଗୋଟାଏ ସର୍ତ୍ତ ରହିଲା ତୋ' ସାଙ୍ଗେ କାଲି ସକାଳ ପର୍ଯ୍ୟନ୍ତ । ସର୍ତ୍ତଟା ହେଲା ଏଇଆ– କାଲି ବଡିଭୋର୍‌ରୁ, ମୋ' ନିଦ ଭାଙ୍ଗିବା ଆଗରୁ ତୁ ଆସି ମୋ କବାଟ ବାଡେଇ ମତେ ନିଦରୁ ଉଠେଇବୁ– ଆଉ, ମୋ ହାତକୁ ଚୁପ୍‌ଚାପ୍ ଟଙ୍କା ଦୁଇଶହ ବଢେଇଦେଇ ଚାଲିଯିବୁ । ଯଦି ଏଇ ସର୍ତ୍ତ ମାନି କାମଟା କରିଦବୁ ତେବେ ଯାଇ ତୋ' ସାଙ୍ଗେ ମୋ' ସଂପର୍କ ରହିବ ଅତୁଟ୍ ! ନଚେତ୍ ନାହିଁ, କଦାପି ନୁହେଁ...' ଏତିକି କହି ମୁଁ ଶୋଇଗଲି । କମ୍ବଳଟାକୁ ମୁହଁ ଉପରକୁ ଟାଣିନେଲି ଯେମିତି ସେ ମୁହଁ ତିନିଟାକୁ ଆଉ ନଦେଖେ !

ପରଦିନ କୁଆ କା' କଲା ପୂର୍ବରୁ ମୋ ଶହୀଦନଗର ଘରର ସାମ୍ନା କବାଟ କଲିଂ ବେଲ୍ ବାଜିଲା । ମୋ ନିଦ ଭାଙ୍ଗିବା ଆଗରୁ ପ୍ରଥମେ ବଡଝିଅ ବୁଲ୍‌ବୁଲ୍ ଶୁଣିଲା ସେ ଶବ୍ଦ । ସେଇ ମତେ ନିଦରୁ ଉଠେଇ ଦେଲା । କହିଲା, ''ନନା, ଉଠ । କିଏ ଆସିଚନ୍ତି ଏତେ ସକାଳୁ ଆମ ଘରକୁ...''

ମୁଁ ନିଦ ମଳମଳ ଆଖିରେ ଶେଯରୁ ଉଠି ବସିଲି । କଲିଂ ବେଲ୍ ଘନଘନ ବାଜି ଚାଲିଥାଏ । ବିରକ୍ତ ଲାଗିଲା । ସକାଳୁ ସକାଳୁ କିଏ ଡିଷ୍ଟର୍ବ କରୁଚି କାହିଁକି ? ବିରକ୍ତ ମନରେ ଦାଣ୍ଡ କବାଟ ଖୋଲିଲି । ଦେଖିଲି– ଜଣେ ଖଦଡ ଧୋତୀ ପଞ୍ଜାବୀ ପିନ୍ଧା ପରିଚିତ ଭଦ୍ରଲୋକ ବଡ ବ୍ରିଫ୍‌କେଶ୍‌ଟିଏ ଧରି କବାଟ ଆରପାଖେ ଠିଆହେଇଚନ୍ତି । ହତା ବାହାରେ ଗେଟ୍ ଆଗରେ ରହିଚି ତାଙ୍କ ଜିପ୍ । ଇଂଜିନ୍ ତଥାପି ବନ୍ଦହେଇନାହିଁ ।

ଭଦ୍ରଲୋକ ତରତର ହେଇ ଡ୍ରଇଂରୁମ୍ ଭିତରକୁ ପଶିଆସିଲେ । ବ୍ରିଫ୍‌କେଶ୍‌ଟାକୁ ମୋ' ଆଖି ସାମ୍ନାରେ ମେଲିଦେଲେ । ଦେଖିଲି– ଥାକଥାକ ହେଇ ଗୁଡାଏ ଅର୍ଦ୍ଧନୂଆ ଶହେଟଙ୍କିଆ ପାଞ୍ଚଶହ ଟଙ୍କିଆ ନୋଟ୍ ସଜା ହେଇ ରଖାଯାଇଚି ସେ ବ୍ରିଫ୍ କେଶ୍ ଭିତରେ ।

ଭଦ୍ରଲୋକ ଗୋଟିଏ ଶହେଟଙ୍କିଆ ନୋଟ୍ ବିଡା ବାହାରକଲେ । ସେ ବିଡାରୁ ଓଟାରି ଆଣିଲେ ଯୋଡାଏ ଶହେଟଙ୍କିଆ ନୋଟ୍ । ମୋ ହାତକୁ ସେ ଦୁଇଟା ନୋଟ୍ ବଢେଇଦେଇ କହିଲେ, ''ନିଅନ୍ତୁ ! ଏଇଠୁ, ଆପଣଙ୍କ ପାଖରୁ ଆରମ୍ଭ କରାଗଲା ଆମ ପାର୍ଟିର ନିର୍ବାଚନ ପ୍ରଚାର । ମୁଁ ଚାଲିଲି । ଆପଣଙ୍କୁ ଏ ସରକାର ବହୁତ ହାରାସ୍ କରିଚି– ଆମେ ଖବର ରଖିଚୁ । ଅପେକ୍ଷା କରନ୍ତୁ । ଆଉ ପନ୍ଦରଦିନ ପରେ ଆମ' ସରକାର କ୍ଷମତାକୁ ଆସିବ– ଆପଣଙ୍କ କଥା ଆମେ ବୁଝିବୁ । ମୁଁ ବାହାରିଲି ।

ସେ ବାହାରି ଚାଲିଗଲେ । ଶହେଟଙ୍କିଆ ନୋଟ୍ ଦୁଇଟାକୁ ହାତରେ ଧରି ମୁଁ ଭକୁଆ ପାଲଟି ଚାହିଁରହିଥାଏ । ସେଇଟା ଥିଲା ଭାରତରେ ଇନ୍ଦିରା ଗାନ୍ଧି ସରକାର ଘୋଷଣା କରିଥିବା ଏମର୍ଜେନ୍ସି ପର, ୧୯୭୭ର ସାଧାରଣ ନିର୍ବାଚନର ପୂର୍ବ ସମୟ । ସେଇ ନିର୍ବାଚନରେ ଇନ୍ଦିରା ଗାନ୍ଧିଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ସରକାରର ପତନ ଘଟିଲା ଆଉ ଭାରତରେ ପ୍ରଥମ ଜନତା ସରକାର ପ୍ରତିଷ୍ଠା ହୋଇଥିଲା ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ।

ମୋ ଜୀବନରେ, ଅଙ୍ଗେ ନିଭେଇଥିବା ସେଇ ସତ୍ୟ ଘଟଣାଟାକୁ ଆମେରିକାର

ନ୍ୟାସ୍‌ଭିଲ୍ ସହରରେ ଅନୁଷ୍ଠିତ ହେଉଥିବା ସେଥରର ଶ୍ରୀ ଜଗନ୍ନାଥଙ୍କ ପ୍ରଥମ ରଥଯାତ୍ରା ଉତ୍ସବର ସାଧାରଣ ସଭାରେ ଉପସ୍ଥାପନ କରିବା ସମୟରେ ଶ୍ରୋତାମାନଙ୍କର ପ୍ରତିକ୍ରିୟାକୁ ଲକ୍ଷ୍ୟ କରି ଯାହା ଅନୁଭବ କରିଥିଲି ସେ ସବୁକୁ ମୁଁ ଲିପିବଦ୍ଧ କରିଚି ମୋ ଡାଏରିରେ । ସେମାନେ ସମସ୍ତେ ଆମେରିକାରେ ବସବାସ କରୁଥିବା ପ୍ରବାସୀ ଭାରତୀୟ ବା ଏନ୍.ଆର୍.ଆଇ । ବେଶୀ ଭାଗ ଅଣଓଡିଆ । ଅଧିକାଂଶ ମଧ୍ୟ ଇଂଜିନିୟର୍ ଡାକ୍ତର ଇତ୍ୟାଦି ପ୍ରଫେସନାଲ୍ ଲୋକ । ସେମାନେ ବିଜ୍ଞାନର ଭାଷା ବୁଝନ୍ତି, ସାହିତ୍ୟ ଦର୍ଶନ ଇତ୍ୟାଦିର ଧାର ନଧାରିବା ସ୍ୱାଭାବିକ । ଆଶଙ୍କା ଥିଲା ମନରେ– ବୋଧିହୁଏ ମୋର ଏ ବ୍ୟକ୍ତିଗତ ଅନୁଭୂତିକୁ ପିଲାଖେଳ ମନେକରି ମଝିରୁ ଉଠି ପଳେଇବେ । କିନ୍ତୁ ଦେଖି ଅବାକ୍ ହେଲି– ସେମାନେ କେହି ଜଣେ ବି ମୋ ବକ୍ତୃତା ମଝିରୁ ଉଠି ଚାଲିଯାଇନଥିଲେ । ବକ୍ତୃତା ଶେଷରେ ହଲ୍ ପ୍ରତିଧ୍ୱନିତ ହୋଇଉଠିଲା କରତାଳିରେ । ଅନେକେ ମୋ ସହିତ ହାତ ମିଳେଇବାକୁ ଆଗେଇ ଆସିଲେ । ଗଦ୍‌ଗଦ କଣ୍ଠରେ କେହି କେହି ପଚାରିଲେ, "Is it true?"

କେବଳ ଜଣେ ବ୍ୟକ୍ତି ମୁହଁ ବିକୃତ କରି ମତେ ନିନ୍ଦାକଲେ, ''ଏଇ କଥା କହିବାକୁ ଭାରତରୁ ଆସିଥିଲେ ? ଜଗନ୍ନାଥଙ୍କୁ ପୂଜା ନକରି ଗାଳିଦେଲେ ସେ ଭକ୍ତର କଥା ଶୁଣନ୍ତି ବୋଲି କହିବାକୁ ଆସିଚନ୍ତି ଏଠିକି ଆପଣ ? ଛିଃ ଛିଃ !'' ପରେ ଜାଣିଲି ସେ ଭଦ୍ରଲୋକ ଜଣେ ଓଡିଆ ଏନ୍.ଆର୍.ଆଇ । ବହୁବର୍ଷଧରି ସେ ଏଠାରେ ଭେଟେରିନାରି ଡାକ୍ତରଭାବେ କୁକୁରମାନଙ୍କର ଚିକିତ୍ସା କରୁଛନ୍ତି । କିଛି ବର୍ଷ ପରେ ପରେ ସେ ଜଣେ ତନ୍ତ୍ରସାଧକ ପାଲଟିଗଲେ ।

ଏଇ ଭିତରେ ଦେଖିଲି ଭିଡ ଠେଲି ଜଣେ ଲୋକ ମୋ'ଆଡକୁ ଦୁଇହାତ ମେଲି ଆଗେଇ ଆସୁଚନ୍ତି । ପାଖକୁ ଆସି ସେ ମୋତେ ଅପ୍ରତ୍ୟାଶିତ ଭାବେ ଦୃଢ ଆଲିଙ୍ଗନ କଲେ । କହିଲେ, ''କଂଗ୍ରାଚ୍ୟୁଲେସନ୍ସ୍ ! ତମ କଥା ପୂରାଟା ମୁଁ କାନ ଡେରି ଶୁଣିଚି । ଜାଣିଚ ନା– ତମର ଏ ଠାକୁର ଯାହାଙ୍କୁ ତମେ କହୁଚ ତମର– ସେ ଠାକୁର ବି ଆମ ଆମେରିକାନ୍ ଇଣ୍ଡିଆନ୍‌ଙ୍କ ଇଷ୍ଟଦେବ (House Deity) ? ଆମ ଚେରୋକିକୁ ଆସ– ଦେଖେଇଦେବି– ଆମ ଗାଁ ମୁଣ୍ଡ ଟୋଟେମ୍ ପୋଲରେ ଏଇସବୁ ଠାକୁରମାନଙ୍କ ରୂପ କାଠରେ ଖୋଦେଇହେଇ ପୋତାଯାଇଥାଏ । ସେମାନେ ହେଲେ ଆମ ଗାଁର ଠାକୁର । ଆବହମାନ କାଳରୁ ଆମେ ସେମାନଙ୍କୁ ପୂଜା କରି ଆସୁଚୁ । ଆଶ୍ଚର୍ଯ୍ୟ– ଆମ ଠାକୁର ବି ତମ ଭାରତରେ ପୂଜା ହେଉଚନ୍ତି ବୋଲି କହୁଚ ?''

କିଛି ସମୟ କଥାବାର୍ତ୍ତା ପରେ ଲୋକଟି ସହିତ ମୋର ଭାବାଳାପ ଘନିଷ୍ଠତର ହେଲା । ମୁଁ ତାଙ୍କୁ ପଚାରିଲି ତାଙ୍କର ପରିଚୟ । ମୋ ହାତକୁ ଖଣ୍ଡେ ଭିଜିଟିଂ କାର୍ଡ ବଢେଇ ଦେଇ ସେ ଚୁପ୍‌କିନା କାନରେ କହିଲା, ''ମୋ ନାଁ Gyari D. Caudel– କିନ୍ତୁ ଏଇଟା ମୋ ରିଏଲ୍ ନାଁ ନୁହଁ । ଏ ଗୋରା ଆମେରିକାନ୍‌ଙ୍କୁ ଠକିବାକୁ ଆମେ ଏଇ ଖ୍ରିଷ୍ଟିୟାନ୍ ନାମ

ବ୍ୟବହାର କରୁ; କିନ୍ତୁ ଆମେ ଆମେରିକାନ୍ ଇଣ୍ଡିୟାନ୍‌ମାନଙ୍କ ପ୍ରକୃତ ନାମ ଅଲଗା । ମୋ ନାଁ କ'ଣ ଜାଣିଚ– Ochioni – ଆମ ଚେରୋକି ଭାଷାରେ ଯା'ର ଅର୍ଥ One Eye, ମାନେ ଏକ ଚକ୍ଷୁ !''

ଓଚିଓନି ସହିତ ସେଇ ସାକ୍ଷାତ୍‌କାର ମୋର ଆଖି ଖୋଲିଦେଇଥିଲା । ପରବର୍ତ୍ତୀ ସମୟରେ ମୁଁ ଯେତେଥର ଆମେରିକା ଆସିଚି ସେତେଥର ଏ ଦେଶର ମୂଳ ଅଧିବାସୀ ସେଇ ଲୋହିତ ଭାରତୀୟମାନଙ୍କର ବାସସ୍ଥାନ, ସେମାନଙ୍କ ମେଳାମହୋତ୍ସବ, ସେମାନଙ୍କ ସାଂସ୍କୃତିକ ସଂଗ୍ରହାଳୟକୁ ଯାଇଚି । ସେମାନଙ୍କ ଲିଖିତ ସାହିତ୍ୟ ବହି ବଜାରରୁ କିଣି ପଢିଚି ଓ ପାଠାଗାରମାନଙ୍କରୁ ସଂଗ୍ରହ କରି ପଢିଚି । ଜାଣି ଆଶ୍ଚର୍ଯ୍ୟ ହେଲି– ସେମାନଙ୍କ ଭିତରେ ବର୍ତ୍ତମାନ ବହୁ ସଂଖ୍ୟାରେ ପାଶ୍ଚାତ୍ୟ ଡିଗ୍ରୀଧାରୀ ବିଶେଷଜ୍ଞ ବୈଜ୍ଞାନିକ, ସାହିତ୍ୟିକ, କଳାକାର ଅଛନ୍ତି ଓ ସେମାନଙ୍କର ପ୍ରକାଶିତ ସାହିତ୍ୟ ମଧ୍ୟ ବହୁ ଉଚ୍ଚକୋଟୀର ଏବଂ ସେସବୁ ପୁସ୍ତକ ଆମେରିକାର ବହିଦୋକାନ ଓ ଲାଇବ୍ରେରୀରେ ମହଜୁଦ୍ ।

ଓଚିଓନି ମୋ ପାଇଁ ଏକ ଆବିଷ୍କାର ଏଇ ''ନିଉୱାର୍ଲଡ୍'' ନାମଧାରୀ ଭୂଖଣ୍ଡ ଆମେରିକାରେ । ବାସ୍ତବରେ ଆମେରିକା ଗୋଟାଏ ନୂଆ ପୃଥିବୀ ନୁହେଁ ଆଦୌ । ଏହା ଆମ ଭାରତବର୍ଷ ପରି ଏକ ଅତ୍ୟନ୍ତ ପ୍ରାଚୀନ ସଭ୍ୟତାର ପୃଥିବୀ ଯାହାକୁ ଆମ ଭାରତୀୟ ପୁରାଣରେ ଆଖ୍ୟାୟିତ କରାଯାଇଚି 'ପାତାଳ' ନାଁରେ । ପାତାଳ ସହିତ ପୌରାଣିକ ଯୁଗରେ ଭାରତର ସଂପର୍କ ଥିଲା ନିବିଡ । ଏଠି ରାବଣଙ୍କ ଶଶୁର ମୟଙ୍କ ରାଜ୍ୟ ଥିଲା ବୋଲି ରାମାୟଣରେ ବର୍ଣ୍ଣିତ । ମହାଭାରତରେ ମଧ୍ୟ ମୟଙ୍କ ନାମୋଲ୍ଲେଖ ଅଛି । ମୟ ଜଣେ ପ୍ରସିଦ୍ଧ ଆର୍କିଟେକ୍ଟ ଯେ ନିର୍ମାଣ କରିଥିଲେ ମାୟା ସଭ୍ୟତାର ଅତୁଳନୀୟ ଶିଳ୍ପକଳାର ଦେବମନ୍ଦିର ଏବଂ ପ୍ରାସଦାବଳୀ ଯାହାକୁ ସ୍ପେନୀୟ ଉପନିବେଶବାଦୀମାନେ ଧ୍ୱଂସ କରିଥିଲେ ।

ଭାରତୀୟ ପୁରାଣମାନଙ୍କରେ ପାତାଳ ସଭ୍ୟତା ସଂପର୍କରେ ବହୁ ଉଲ୍ଲେଖ ରହିଚି । ମହାଭାରତରେ ମୟଙ୍କ ଦ୍ୱାରା ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପାଇଁ ଇନ୍ଦ୍ରପ୍ରସ୍ଥ ନିର୍ମାଣ କରାଇଥିଲେ । ପାତାଳରେ ମହାଦାନୀ ଅସୁରରାଜ ବଳିଙ୍କ ପାଇଁ ଦ୍ୱିତୀୟସ୍ୱର୍ଗ ନିର୍ମାଣ କରାଇଥିଲେ ବିଷ୍ଣୁ–ବାମନାବତାରରେ । ପାତାଳର ନାଗକନ୍ୟା ଉଲୁପିଙ୍କୁ ଅର୍ଜୁନ ବିବାହ କରିଥିବା ବିଷୟ ରହିଚି ମହାଭାରତରେ । ଐତିହାସିକ ଯୁଗରେ ବି ମୟଙ୍କ ଦେଶକୁ ମାୟା ସଭ୍ୟତାର ଦେଶ କୁହାଯାଏ, ଯାହାର ଆଧୁନିକ ନାମ ମେକ୍ସିକୋ । ଏଇ ଐତିହାସିକ କାଳରେ ମଧ୍ୟ ଆମେରିକା ଓ ପେରୁରେ ତିନୋଟି ପ୍ରାଚୀନ ସଭ୍ୟତାର ଠାବ କରାଯାଇଚି– ମୟ, ଆଜ୍‌ଟେକ ଓ ଇନ୍‌କା । ହିନ୍ଦୁ ବିଦ୍ୱାନ୍‌ମାନଙ୍କ ମତରେ ଆଜ୍‌ଟେକ ଶବ୍ଦର ସୂତ୍ର– ଆସ୍ତିକ । ଭାଗବତରେ ମହର୍ଷି ଆସ୍ତିକଙ୍କ ନାମୋଲ୍ଲେଖ ରହିଚି । ସେ ପରିକ୍ଷିତଙ୍କ ପୁତ୍ର ମହାରାଜ ଜନ୍ମେଜୟଙ୍କ ଦ୍ୱାରା ଅନୁଷ୍ଠିତ ସର୍ପଯଜ୍ଞରେ ନାଗରାଜ ତକ୍ଷକଙ୍କ ଜୀବନ ରକ୍ଷା କରିଥିବା ପ୍ରସଙ୍ଗର ବିଶଦ ବର୍ଣ୍ଣନା ମିଳେ ଭାଗବତରୁ । ସେହିପରି ଦକ୍ଷିଣ ଆମେରିକାର ଅନ୍ୟତମ ଧନାଢ୍ୟ ଦେଶ ପେରୁର

ପ୍ରାଚୀନ ସଭ୍ୟତାର ନାମ ହେଲା 'ଇନ୍‌କା' । ଇନ୍‌କା ଶବ୍ଦର ସୂତ୍ର ହେଲା– ଇନ୍ ଅର୍ଥାତ୍ ସୂର୍ଯ୍ୟ । ପେରୁର ଆରାଧ୍ୟ ଦେବତା ହେଲେ ସୂର୍ଯ୍ୟ । ସୂର୍ଯ୍ୟ ପୂଜା ପରଂପରା ଏବେ ମଧ୍ୟ ପେରୁରେ ରହିଚି । ଏଠାରେ ଉଲ୍ଲେଖଯୋଗ୍ୟ– ରାମାୟଣରେ ରାମଚନ୍ଦ୍ରଙ୍କ ବଂଶକୁ ସୂର୍ଯ୍ୟ ବା ଇନ୍ ବଂଶ ବୋଲି ନାମିତ କରାଯାଏ । ଆମେରିକାନ୍ ପ୍ରାଚୀନ ସଭ୍ୟତା ଉପରେ ଗବେଷଣା କରୁଥିବା ଐତିହାସିକମାନଙ୍କ ମତରେ ଇନ୍‌କା, ଆଜ୍‌ଟେକ ଓ ମାୟା ସଭ୍ୟତାର ମୂଳସଂପର୍କ ଭାରତ ସହିତ ଓତଃପ୍ରୋତ ଭାବେ ଜଡିତ । ଏ ସଂପର୍କରେ ଭାରତୀୟ ଗବେଷକ ତାଙ୍କ ବିଖ୍ୟାତ ''ହିନ୍ଦୁ ଆମେରିକା'' ଗ୍ରନ୍ଥରେ ପ୍ରଚୁର ତଥ୍ୟ ସହିତ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତ ବିଶଦଭାବେ ଉଦ୍ଧାର କରିଛନ୍ତି ।

ଓଟିଓନି ମୋ' ପାଇଁ ଆମେରିକା ଓ ଭାରତର ସଂପର୍କ ସ୍ଥାପନ ନିମିତ୍ତ ଏକ ସେତୁ ଥିଲେ । ତାଙ୍କର ଦୁଃଖଦ ବିୟୋଗ ଖବର ପାଇଥିଲି ୨୦୦୯ରେ ।

(ଆମେରିକା ଉପରେ ମୋର ଏକ ଭ୍ରମଣୋପନ୍ୟାସ ''ତୃଷ୍ଣା : ଏକ ଅନାବିଷ୍କୃତ ଆମେରିକା'' (୧୯୯୯)ରେ ପ୍ରକାଶ ପାଇଚି । ପ୍ରକାଶକ : 'ଗ୍ରନ୍ଥମନ୍ଦିର', କଟକ-୨) ।

## ଓଡିଶା ସୋସାଇଟି ଅଫ୍ ଆମେରିକା (ଓସା) ବାର୍ଷିକ ସମ୍ମିଳନୀ – ୧୯୯୩

ସେ ବର୍ଷ ଜୁଲାଇ ୩ ଓ ୪ରେ ଆମେରିକାର ପ୍ରବାସୀ ଓଡିଆମାନଙ୍କର ଐତିହାସିକ ଅନୁଷ୍ଠାନ 'ଓସା'ର ବାର୍ଷିକ ସମ୍ମିଳନୀ ଆମେରିକାର ମିସିଗାନ୍ ରାଜ୍ୟର ଟ୍ରୟ ସହରରେ ଆୟୋଜନ କରାଯାଇଥାଏ । ସେ ସମ୍ମିଳନୀରେ ମୁଖ୍ୟ ଅତିଥି ଏବଂ ବକ୍ତା (Key Note Speaker) ଭାବେ ଯୋଗଦେବାକୁ ନିମନ୍ତ୍ରିତ ହୋଇଥିଲି ।

'ଓସା' ସମ୍ମିଳନୀରେ ଯୋଗଦେବା ଉଦ୍ଦେଶ୍ୟରେ ଆମେମାନେ ଦିନକ ଆଗରୁ, ଜୁଲାଇ ମାସ ୨ତାରିଖରେ ଦୀର୍ଘଯାତ୍ରାରେ ବାହାରିଲୁ ସୁଦୂର ଦକ୍ଷିଣ ରାଜ୍ୟ ଟେନେସୀର ଚାଟାନୁଗା ସହରରୁ । ଗନ୍ତବ୍ୟସ୍ଥଳ– ସାତଶହ ପଚାଶ ମାଇଲ୍ ଉତ୍ତରରେ ମିସିଗାନ୍ ରାଜ୍ୟର ଟ୍ରୟ ସହର । ସେଇ ସହରରେ ଏବର୍ଷର 'ଓସା' ଉତ୍ସବ ଆୟୋଜିତ ହେଉଥାଏ । ଏତେ ଲମ୍ବା ବାଟ ସତ୍ତ୍ୱେ ସେଠିକି ଯିବା ପାଇଁ ଆମେ ପ୍ଲେନ୍‌ରେ ନଯାଇ ରାଜରାସ୍ତା ବା ହାଇୱେରେ ଡ୍ରାଇଭ୍ କରି ଯିବାକୁ ମନ କଲୁ । ତାର କାରଣ– ରାଜରାସ୍ତାରେ ଡ୍ରାଇଭ୍‌କରି ଆମେରିକାର ବିଭିନ୍ନ ରାଜ୍ୟ ଭିତର ଦେଇ ଯାତ୍ରା କଲାବେଳେ ଏ ଭୂଖଣ୍ଡର ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବା ସହିତ ସେଠାକାର ଜନଜୀବନ ସଂପର୍କରେ କିଛି ଆଖି ଦେଖା ଓ କିଛି ପ୍ରତ୍ୟକ୍ଷ ଅନୁଭୂତି ସଂଗ୍ରହ କରିବା ମୋର ଲକ୍ଷ୍ୟ ରହିଥିଲା ।

ସକାଳ ଆଠରେ ଆମେ ପାଞ୍ଚଜଣ– ପ୍ରବୀର, ବୁଲବୁଲ, ପ୍ରତୀକ (ପାଞ୍ଚବର୍ଷର ନାତି), ନିରୁପମା ଓ ମୁଁ ଆମ ନିଜ ପରିବାରର କାର୍‌ରେ ଚାଟାନୁଗା ଘରୁ ବାହାରିଲୁ । ପୂର୍ବରୁ ପ୍ରବୀର ଗୋଟାଏ ରୋଡମ୍ୟାପ୍ ବୁଲବୁଲ ହାତରେ ଧରେଇଦେଇଥିଲେ । ତାର

ଦାୟିତ୍ୱ ଥିଲା– ସେ ମ୍ୟାପ୍ ଦେଖି ଗନ୍ତବ୍ୟ ସ୍ଥଳକୁ ଯିବା ରାସ୍ତା ବତେଇବ ଓ ବାଟରେ ପଡୁଥିବା ବିଭିନ୍ନ ଛୋଟବଡ଼ ସହର ଓ ଦର୍ଶନୀୟ ସ୍ଥାନର ନାଁ ଆଉ ଗ୍ୟାସ୍ ଷ୍ଟେସନ୍, ରେସ୍ଟୁରାଁ ଇତ୍ୟାଦିର ଆଗୁଆ ଖବର ବତେଇବ ।

ଟେନିସୀରୁ ମିସିଗାନ୍ ପାଞ୍ଚଟା ବଡ ବଡ ରାଜ୍ୟର ସୀମା ଅତିକ୍ରମ କଲେ ଆସିବ ଟ୍ରୟ– ସେ ବର୍ଷର 'ଓସା' ମିଟିଂ ପାଇଁ ନିର୍ଦ୍ଧାରିତ ସହର । ମଝିରେ ଆହୁରି ଦୁଇଟି ରାଜ୍ୟ କେଣ୍ଟକି ଏବଂ ଓହାଇଓ । କେଣ୍ଟକୀ ଓ ଓହାଇଓ ନାଁ ଦୁଇଟା ଶୁଣି ନିରୁପମା ଖୁବ୍ ଆଗ୍ରହ ପ୍ରକାଶ କଲେ । ପିଲାଦିନେ ପଢ଼ିଥିବା ଖଣ୍ଡେ ବହି– ''ଟମ୍‌କକାଙ୍କ କୁଟୀର'' ମନେପଡିଗଲା ତାଙ୍କର । ମୁଁ ବି ସେ ଉପନ୍ୟାସଟି ପଢିଥିଲି । ଏ ବହିଟି ମୂଳ ଇଂରେଜୀ ଉପନ୍ୟାସ "Uncle Tom's Cabin"ର ଅନୁବାଦ ଇଂରେଜୀ ଉପନ୍ୟାସର ଲେଖିକା ହେଲେ ଆମେରିକାର ଅନ୍ୟତମ ଯୁଗସ୍ରଷ୍ଟା ଔପନ୍ୟାସିକା ଶ୍ରୀମତୀ ହାରିଏଟ୍ ବିଚର୍ ଷ୍ଟୋ । ଉପନ୍ୟାସର ବିଷୟବସ୍ତୁ ଥିଲା ଆମେରିକାରେ କ୍ରୀତଦାସ ପ୍ରଥା ପ୍ରଚଳିତ ଥିବା ସମୟରେ କଳାଲୋକଙ୍କ ଉପରେ ଗୋରାମାନଙ୍କର ଅମାନୁଷିକ ଅତ୍ୟାଚାରର ଏକ ଲୋମହର୍ଷକ ଅଥଚ ମାନବିକ କରୁଣାର କାହାଣୀ । ବହିର ନାୟକ ଜଣେ ବିଶ୍ୱସ୍ତ ବୃଦ୍ଧ କ୍ରୀତଦାସ 'ଅଙ୍କଲ୍ ଟମ୍' ବା ଟମ୍‌କକା । ନିରୁପମା ଟମକକାଙ୍କ କୁଟୀର ବହିରେ ବର୍ଣ୍ଣିତ ଅନେକ ଜାଗାର ନାଁ ମନେପକେଇଲେ । ସେ ସବୁ ଜାଗା ଆମ ଯିବା ବାଟରେ ପଡିବ ବୋଲି ରୋଡ ମ୍ୟାପ୍‌ରୁ ଜଣାଗଲା । ତେଣୁ ଆମେ ଖୁସିରେ ସେସବୁ ଜାଗା ଦେଖିବାକୁ ବ୍ୟଗ୍ରହୋଇ ରାସ୍ତା କଡକୁ ଚାହିଁଚାହିଁ ଯାଉଥାଉ ।

ଏ ଦେଶର ହାଇୱେ ଗୁଡିକ ମଧ୍ୟ ଆମ ପାଇଁ ଦର୍ଶନୀୟ । ଏତେ ଚଉଡା, ଏତେଗୁଡାଏ ଲେନ୍ ବିଶିଷ୍ଟ ରୋଡ ଆମ ଭାରତରେ ସେତେବେଳେ ବିରଳ । ପୁଣି ରାସ୍ତା ଉପରେ ସ୍ଥାନେ ସ୍ଥାନେ ବଡ ବଡ ବ୍ୟାନର୍ ଭଳି ରୋଡ୍‌ସାଇନ୍ ଓ ଡିରେକ୍‌ସନ୍ ! ମଝିରେ ମଝିରେ ଅସଂଖ୍ୟ ଟର୍ଣ୍ଣ ପାଇକ୍ ଓ ଫ୍ଲାଇଓଭର୍ ! ହାଇୱେରୁ ବାହାରି ଅନ୍ୟ ରାସ୍ତା ଧରିବାକୁ ହେଲେ ଟର୍ଣ୍ଣ ପାଇକ ଦେଇ ବୁଲିଯାଇ ଫ୍ଲାଇ ଓଭର୍ ବାଟେ ଅନ୍ୟବାଟକୁ ଯାଇହୁଏ । କୋଉ ଲେନ୍‌ରେ ଗଲେ କୋଉ କଡପଟିଆ ରାସ୍ତାକୁ ଯାଇହେବ ତା'ର ଆଗୁଆ ସୂଚନା ବହୁପୂର୍ବରୁ ଡ୍ରାଇଭର୍ ପାଇବା ଦରକାର । ନହେଲେ ଏ ଦେଶର ନିୟମ ଅନୁସାରେ ହାଇୱେର ନ୍ୟୂନତମ ସ୍ପିଡ୍ ଘଣ୍ଟା ପ୍ରତି ହାରାହାରି ଷାଠିଏରୁ ୧୦୦ କି.ମି. ବେଗରେ ଛୁଟୁଥିବା ଗାଡି-ଗୁଡାକର ଡ୍ରାଇଭର୍‌ମାନେ ମହା ଅସୁବିଧାରେ ପଡନ୍ତେ । ଏଇ କାରଣରୁ ରାସ୍ତା ଉପରେ ବ୍ୟାନର୍ ଭଳି ଖଂଜାଯାଇଥାଏ ଆଲୋକିତ ରୋଡ୍‌ସାଇନ୍ ମାନ ।

ଆମେରିକାର ରାସ୍ତାଘାଟର ପରିଚ୍ଛନ୍ନତା, ଶୃଙ୍ଖଳା ମତେ ସବୁବେଳେ ଅଭିଭୂତ କରେ । ରାସ୍ତାରେ ଏକକାଳୀନ ଅନବରତ ସାଇଁ ସାଇଁ ଛୁଟୁଥିବା ଅସଂଖ୍ୟ ଯାନ-ବାହନର ଚାଳକମାନଙ୍କର ଟ୍ରାଫିକ୍ ନିୟମ ପ୍ରତି ଅବିଚଳିତ ଧ୍ୟାନ ଓ ସମ୍ମାନବୋଧ ମତେ ବିସ୍ମିତ

କରେ । ସେଦିନ ଚାଟାନୁଗାରୁ ଟ୍ରୟ– ସାତଶହ ପଚାଶ ମାଇଲ୍, ଦଶ ଘଣ୍ଟାର ଡ୍ରାଇଭ୍ ଭିତରେ ମୁଁ ମୁଖ୍ୟତଃ ଏଠାକାର ଯାନବାହନ ଚାଳକଙ୍କ ଆଇନ୍‌କାନୁନ ମାନିବା ଅଭ୍ୟାସ ପ୍ରତି ବିଶେଷ ଧ୍ୟାନଦେଇ ଲକ୍ଷ୍ୟ କରୁଥାଏ । ଅବଶ୍ୟ ସାରା ହାଇୱେ ଗୋଟାକଯାକ ଲକ୍ଷ୍ୟ କଲି– ପୁଲିସ୍ ଗାଡିଗୁଡ଼ାକ ତଥାପି ବହୁସଂଖ୍ୟାରେ ପଇଁତରା ମାରୁଥାନ୍ତି । ପୁଲିସ୍ ଗାଡି ପ୍ରତି ଏ ଦେଶର ଶିକ୍ଷିତ ଅଶିକ୍ଷିତ ସବୁଶ୍ରେଣୀର ଡ୍ରାଇଭର୍‌ମାନଙ୍କର ଡରଭୟ ଥାଏ । ନାଲିନେଳି ଆଲୁଅ ଖଂଜା ପୁଲିସ୍ କାର୍ ସାମ୍ନାରେ ଯାଉଥିବା ଦେଖିବାମାତ୍ରେ ଆମ କାର୍ ଚାଳକ ପ୍ରବୀର କାର୍ ସ୍ପିଡୋମିଟର୍ ପ୍ରତି ଧ୍ୟାନପୂର୍ବକ ସଚେତନ ହେଇପଡୁଥାନ୍ତି । ରାସ୍ତା-କଡରେ ଲଗାଯାଇଥିବା ସାଇନ୍‌ବୋର୍ଡରେ ଯେତିକି ସ୍ପିଡ୍ ଲିମିଟ୍ ଦର୍ଶାଯାଇଥାଏ ସେଥିରୁ ସାମାନ୍ୟ ବେଶୀ ଥିଲେ ସେ ସାଙ୍ଗେ ସାଙ୍ଗେ କାର୍‌ର ବେଗ କମେଇଦେଉଥାନ୍ତି । ହସିହସି କହୁଥାନ୍ତି– ମାମୁଁଙ୍କ ହାବୁଡେ ପଡିଲେ ରକ୍ଷା ନାହିଁ ଏ ଦେଶରେ– ସିଧା ଫାଇନ୍ ନହେଲେ ଜେଲ୍ । ଏଥିରୁ ଖୋଦ୍ ପ୍ରେସିଡେଣ୍ଟଙ୍କ ଝିଅର ବି ରକ୍ଷା ନାହିଁ । ପୁଲିସ୍ ଟିକଟ୍ ଦେବାମାନେ ଡ୍ରାଇଭର୍‌କୁ ଫାଇନ୍ ଦେବାକୁ ହେବ । ଫାଇନ୍ ଦେଲେ ବି ପ୍ରତିଥର ଟିକେଟ୍ ପାଇଲାପରେ ଇନ୍‌ସୁରାନ୍ସ ବଢି ବଢି ଯିବ । ତିନିଥର ଟିକେଟ୍ ପାଇଗଲେ ଡ୍ରାଇଭିଂ ଲାଇସେନ୍ସ ମୂଳରୁ ରଦ୍ଦ । ଏଠି ମଣିଷର ଗୋଡ ହେଲା କାର୍– ଡ୍ରାଇଭିଂ ଲାଇସେନ୍ସ କଟିଲାମାନେ ଗୋଡ କଟିଗଲା ଜାଣନ୍ତୁ! ପୁଲିସ୍‌କୁ ଲାଞ୍ଚ ଦେବା କଥା ଏ ଦେଶରେ ଏପର୍ଯ୍ୟନ୍ତ ଶୁଣାଯାଇନି । ପୁଲିସ୍ ଏଠାକାର ଲ'ମେକର୍‌ଙ୍କ ଚାକର ନୁହେଁ– ଆମ ଇଣ୍ଡିଆ ଆଉ ଆମେରିକା ଭିତରେ ଏଇଟା ମୂଳ ପ୍ରଭେଦ । ଏଠି ଏଇ କାରଣରୁ ଡିମୋକ୍ରାସି ବଞ୍ଚିଛି ଯାହା ଭାରତରେ ଖାଲି ନାଁକୁ ମାତ୍ର ।

ବାଟରେ ଦୁଇ ତିନିଟା ଜାଗାରେ ଆମକୁ କାର୍ ଅଟକେଇବାକୁ ପଡିଲା– ଗ୍ୟାସ୍ ଫିଲିଂ ଆଉ ଟଏଲେଟ୍ ଯିବା ପାଇଁ । ଦିନ ତମାମ୍ କାର୍-ଜର୍ଣ୍ଣି ସତ୍ତ୍ୱେ ମୁଁ ବିଶେଷ କ୍ଳାନ୍ତି ଅନୁଭବ କରୁନଥାଏ– କାରଣ, ଆମେରିକାର ରାସ୍ତାକଡର ପ୍ରାକୃତିକ ଦୃଶ୍ୟ ଅପୂର୍ବ । ଆଧୁନିକ ଆମେରିକାର ପ୍ରାୟ ଦୁଇଶହ ବର୍ଷର ଇତିହାସ ଓ ୧୯୩୦ର 'ଗ୍ରେଟ୍ ଡିପ୍ରେସନ୍' ପରେ ପରେ ଏ ଦେଶରେ ଆରମ୍ଭ ହୁଏ ଶିଳ୍ପ ବିପ୍ଳବ । ପୁଣି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଆମେରିକାର ଶିଳ୍ପ ବିପ୍ଳବର ଅଗ୍ରଗତି ଆକାଶ ଛୁଆଁ ! ଏହା ସତ୍ତ୍ୱେ ଏ ଦେଶର ପ୍ରାକୃତିକ ଦୃଶ୍ୟ ମୁଖ୍ୟତଃ ଆରଣ୍ୟକ । ରାସ୍ତା କଡେ କଡେ, ବ୍ୟାପକ ଅଂଚଳରେ, ଦେଖିଲି ଆଦିମ ଅରଣ୍ୟ ଦୁର୍ଭେଦ୍ୟ ଦୁର୍ଗମାନଙ୍କର କାନ୍ଥ ପରି ଆକାଶକୁ ଛୁଇଁ ଠିଆହୋଇ ରହିଚି । ଗ୍ରୀଷ୍ମକାଳୀନ ଶ୍ୟାମଳିମା ହେତୁ ସେଗୁଡିକ ଶୋଭାପାଉଥାନ୍ତି ଜୀବନ୍ତ ଚିତ୍ରପଟ ପରି । ସେ ଦୃଶ୍ୟସଂଭାର ଦେଖୁଥିବାବେଳେ ମନରେ ରାମାୟଣର ଅରଣ୍ୟ କାଣ୍ଡରେ ବର୍ଣ୍ଣିତ ନୈସର୍ଗିକ ଦୃଶ୍ୟାବଳୀର ଭାବମାନ ଛାଏଁ ଛାଏଁ ଚିତ୍ରିତ ହେଉଥାଏ । ମନେହେଉଥାଏ– ଆଧୁନିକ ଆମେରିକା ପ୍ରକୃତରେ ଆମ ଭାରତର ବୈଦିକ ବା ଉପନିଷଦୀୟ ଯୁଗକୁ ସମୟ ମାପରେ ଏ ପର୍ଯ୍ୟନ୍ତ ସୁଦ୍ଧା ଅତିକ୍ରମ କରିନାହିଁ । ଆମେରିକା ଆଜି ମଧ୍ୟ ଏପରି ଏକ

ଦେଶ ଯୋଉଠି ମଣିଷ ଆରଣ୍ୟକ ସଂପଦ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ । ଏଠି ଧନୀ-ଦରିଦ୍ର ସବୁ ଶ୍ରେଣୀର ଲୋକଙ୍କ ବାସଗୃହ କାଠରେ ତିଆରି । ପୁଣି ଏ ଶୀତପ୍ରଧାନ ଦେଶରେ ବହୁ ଲୋକ ଏପର୍ଯ୍ୟନ୍ତ ମଧ୍ୟ ଶୀତଦିନେ ନିଜ ନିଜ ବାସଗୃହକୁ ଉଷୁମ ରଖିବା ପାଇଁ ଫାୟାର୍ ପ୍ଲେସ୍‌ରେ କାଠ ଜାଳନ୍ତି । ଏ ଦେଶରେ କାଠର ସବୁଠୁ ବେଶୀ ଆବଶ୍ୟକତା କାଗଜ ତିଆରି ପାଇଁ । ପ୍ରତିଦିନ ଏମାନଙ୍କ ଘରେ ଟଏଲେଟ୍‌ରେ ଶୌଚପାଇଁ ବ୍ୟବହୃତ ହୁଏ ପ୍ରଚୁର ପରିମାଣ କାଗଜ । ଡିନର୍ ଟେବୁଲ୍‌ରେ ନ୍ୟାପ୍‌କିନ୍ ଇତ୍ୟାଦି ଏବଂ ଅନ୍ୟାନ୍ୟ ହଜାରେ ରକମ ବ୍ୟବହାର ପାଇଁ ଏଠି ଘରେ ଘରେ ଦରକାର କୋଟି କୋଟି ଟନ୍ କାଗଜ । ସେ କାଗଜର ଆବଶ୍ୟକତା ମେଣ୍ଟାଏ ଲକ୍ଷଲକ୍ଷ ଏକର ଜଙ୍ଗଲରୁ ନିୟମିତ କଟା-ଚାଲିଥିବା କୋଟି କୋଟି ଗଛ । ସେ ଦୃଷ୍ଟିରୁ କାଠ ଏ ଦେଶର ଜୀବନ ନାଟିକା କହିଲେ ଅତ୍ୟୁକ୍ତି ହେବନି । ଅଥଚ ୧୪୯୨ରେ କଲମ୍ବସ୍ ଆମେରିକା ଆବିଷ୍କାର କରିବା ପରଠାରୁ ଆଜି ପର୍ଯ୍ୟନ୍ତ ପାଞ୍ଚଶହ ବର୍ଷ ଧରି ୟୁରୋପର ଉପନିବେଶବାଦୀମାନେ ଚେର ଲମ୍ବେଇ ଲମ୍ବେଇ ସାରା ମହାଦେଶକୁ ପାଶ୍ଚାତ୍ୟ ସଭ୍ୟତା ଦ୍ୱାରା ସଂପୂର୍ଣ୍ଣ କବଳିତ କରିସାରିଥିଲେ ମଧ୍ୟ ଏ ଦେଶର ସେଇ ପ୍ରାଚୀନ ଆରଣ୍ୟକ ଚିତ୍ର ଆଜି ପର୍ଯ୍ୟନ୍ତ ଅମ୍ଳାନ ଓ ଅପରିବର୍ତ୍ତନୀୟ । ଏହା କିପରି ସଂଭବ– ତାହା ଥିଲା ମୋର ପରମ ବିସ୍ମୟର ହେତୁ, ସେଇ ହଜାରେ କିଲୋମିଟର ଲମ୍ବା ରାସ୍ତାରେ ଯାତ୍ରା କାଳ ଅନ୍ତରାଳରେ ।

ଅବଶ୍ୟ ମଝିରେ ମଝିରେ ଆସୁଥାଏ ଦୃଶ୍ୟପଟର ସାମୟିକ ପରିବର୍ତ୍ତନ । ଟେନେସୀ ସୀମା ପାରିହେଇ ଆମେ କେଣ୍ଟକୀ ସୀମାରେ ପ୍ରବେଶ କଲା ପରେ ପରେ ରାସ୍ତାକଡରେ ଦେଖାଗଲା ବିସ୍ତୀର୍ଣ୍ଣ ଅଂଚଳ ବ୍ୟାପୀ ଚାଷ କ୍ଷେତ ଆଉ ମଝିରେମଝିରେ ଅତି ବଡ ବଡ ରାଞ୍ଚ୍ ବା ପଶୁପାଳନର ଫାର୍ମ ମାନ । ଚାଷ କ୍ଷେତରୁ ମୁଖ୍ୟ ଫସଲ ଗହମ ଓ ମକା ସେତେବେଳକୁ ଅମଳ କରାଯାଇସାରିଥାଏ । ଆମ ଓଡିଶାରେ ପୁଷମାସରେ ଧାନ କଟା ହେବା ପରେ ଚାଷ ଜମି ଯେପରି ଶୁଖିଲା ଦିଶେ ପ୍ରାୟ ସେଇ ପରି ଦେଖାଯାଉଥାଏ । ମଝିରେ ମଝିରେ ଗୁଡାଏ ଗୁଡାଏ ଗହମ ବା ମକା ନଡାକୁଟାର ବିଶାଳ ବିଶାଳ ରୋଡ-ରୋଲର୍ ଆକୃତିର ଫଡର୍ ରୋଲ୍ ସବୁ ବିଲରେ ରଖାଯାଇଥିବା ଦେଖିଲି । ପ୍ରବୀର କହିଲେ, ''ଏସବୁ ହେଲା କ୍ୟାଟଲ୍ ଫଡର୍– ପଶୁମାନଙ୍କର ଶୀତଦିନିଆ ଆହାର ପାଇଁ । ଶୀତଦିନେ ଏ ଦେଶ ଜାଣନ୍ତୁ ମରୁଭୂମିଠୁ ବି ହୀନ । ମାଟି ଉପରେ ଆଣ୍ଠିଏ ଆଣ୍ଠିଏ ବରଫ । ଗଛବୃକ୍ଷରେ ପତ୍ର ନଥାଏ– ଖାଲି ଡାଙ୍ଗ । ବରଫ ତଳେ ପୋତିହେଇ ଘାସ ମରିଯାଏ । ସେତେବେଳେ ଗୃହପାଳିତ ପଶୁମାନଙ୍କର ମୂଳ ଆହାର ହେଲା ଏଇ ନଡା–ଫଡର୍, ତେଣୁ ଏଠି ଫଡର୍ ସଂଗ୍ରହ ଏକ ପ୍ରଧାନ କାମ । ବିଲରେ ଗଡୁଥିବା ଏଇ ଫଡର୍ ରୋଲ୍‌ଗୁଡାକ ଯନ୍ତ୍ର ସାହାଯ୍ୟରେ ଗହମ ବା ମକା ନଡାରୁ ତିଆରି କରାଯାଇଥାଏ । ଏସବୁକୁ ଟ୍ରକ୍‌ରେ ସ୍ଥାନାନ୍ତର କରାଯାଏ ବାର୍ଣ୍ଣହାଉସ୍‌କୁ । ଏଠାକାର ବାର୍ଣ୍ଣହାଉସ୍ ଦେଖିବା ଭଳି ସ୍ଥାନ ।

ଅମଳ ହୋଇଥିବା ଶସ୍ୟକୁ ଏମାନେ ସଂଚୟ କରନ୍ତି ବଡ ବଡ ଗମ୍ବୁଜାକୃତି ସାଇଲୋମାନଙ୍କରେ । ଦୂରରୁ ଗାଁ ମୁଣ୍ଡର ସାଇଲୋ ମାନ ଦିଶେ ବିଶାଳକାୟ ୱାଟର୍ ଟାୱାର୍ ପରି । କେଣ୍ଟକୀ ଓ ଓହାଇଓରେ ରାସ୍ତା କଡଯାକ ଆମେ ଦେଖିଲୁ ସେଇସବୁ ବାର୍ଣ୍ଣ-ହାଉସ୍ ଆଉ ସାଇଲୋମାନଙ୍କର ଦୃଶ୍ୟ । କିନ୍ତୁ ମୋ ପାଇଁ ବିଶେଷ ଆକର୍ଷଣୀୟ ହୋଇଥାଏ– ରାସ୍ତା କଡେକଡେ ଆଉ ଏକ ଅଭିଭୂତକାରୀ ଦୃଶ୍ୟ– ସେଗୁଡ଼ିକ ହେଲା– କ୍ୟାଟଲ୍-ରାଞ୍ଚ୍ ! ଗୋପାଳନ ପାଇଁ ଉଦ୍ଦିଷ୍ଟ ଏଇ ର୍ୟାଞ୍ଚ୍‌ମାନଙ୍କରେ ଦେଖିବାକୁ ମିଳିଲା ହଜାର ହଜାର ହୃଷ୍ଟପୁଷ୍ଟ ଗାଈ ବାଛୁରୀ ଓ ଘୋଡାଙ୍କ ମୁକ୍ତ ଆକାଶ ତଳେ ଚାରଣ ଭୂମିରେ ଆହାର ବିହାରର ଦୃଶ୍ୟ । ଏତେ ସଂଖ୍ୟାରେ ଗାଈଗୋରୁଙ୍କ ଗୋଠ ଦେଖି ମୋର ଭାରତୀୟ ମନରେ ଉଦୟ ହେଲା ଗୋପ ବୃନ୍ଦାବନର ଭାଗବତୀ ଭାବନାବଳୀ । ସେତିକିବେଳେ ସେଇ ଉଷୁମ ଭାବନାଗୁଡାକ ଉପରେ ପ୍ରବୀର ଅଜାଡିଦେଲେ ଅସରାଏ ବରଫ ମିଶା ଥଣ୍ଡା ପାଣି ! କହିଲେ, ''ଏ ଯୋଉ ସୁନ୍ଦରିଆ ଗାଈ ବାଛୁରୀ ଚରି ବୁଲିବା ଦେଖୁଚନ୍ତି ସେମାନେ ଆଉ କିଛିଦିନ ପରେ ଏଠି ନଥିବେ– ସେମାନେ ଥିବେ ମଣିଷଙ୍କ ପେଟରେ ନହେଲେ କୋଉ ଗ୍ରୋସେରି ଷ୍ଟୋର୍‌ର ବିଫ୍-କାଉଣ୍ଟର୍-ଟ୍ରେ ରେ ।'' ଏ ବକ୍ତବ୍ୟ ମୋ ମନକୁ ବିମର୍ଷ କରିଦେଲା ।

ତେବେ ରାଞ୍ଚ୍‌ରେ ଚରିବୁଲୁଥିବା ସୁସ୍ଥସୁନ୍ଦର ଘୋଡାମାନଙ୍କର କଥା ଅଲଗା ବୋଲି ଶୁଣି ମନ ଟିକିଏ ହାଲୁକା ଲାଗିଲା । ପ୍ରବୀର କହିଲେ, ''ଘୋଡାଙ୍କ କଥା ଅଲଗା । ଏମାନେ କୋଉ କାମରେ ଲାଗନ୍ତି ଜାଣନ୍ତି ? ଏ ଦେଶର ଲୋକଙ୍କର ଘୋଡାଚଢା ସଉକ୍ ଖୁବ୍ ବେଶୀ । ଅନେକ ଧନୀ ମଧ୍ୟବିତ୍ତ ଲୋକ ସହରରେ ଥାଇ ଗ୍ରାମାଞ୍ଚଳମାନଙ୍କରେ ନିଜନିଜର ପୋଷା ଘୋଡାଗୁଡ଼ିକୁ ପାଳିବା ଦାୟିତ୍ୱ ଦେଇଥାନ୍ତି ର୍ୟାଞ୍ଚ୍ ମାଲିକମାନଙ୍କୁ । ଛୁଟିଦିନମାନଙ୍କରେ ସେମାନେ ଘୋଡା ଚଢିବାକୁ ଆସନ୍ତି ଏ ରାଞ୍ଚମାନଙ୍କୁ । ତା'ଛଡା ହର୍ଷ-ରେସ୍ ଏ ଦେଶର ଲୋକଙ୍କର ଏକ ବଡ ନିଶା । ର୍ୟାଞ୍ଚ୍‌ମାନଙ୍କରେ ରେସ୍ ହର୍ଷ ବ୍ରିଡିଂ ମଧ୍ୟ କରାଯାଏ ବହୁ ସଂଖ୍ୟାରେ ।''

ଏ ଭିତରେ ଆମେ କେଣ୍ଟକୀ ରାଜ୍ୟ ସୀମା ପାରିହୋଇ ଓହାଇଓ ରାଜ୍ୟରେ ପଶିବାକୁ ଯାଉଥାଉ । ଦୁଇ ରାଜ୍ୟ ସୀମାରେ ଏକ ବିଶାଳ ନଦୀ– ଓହାଇଓ ନଦୀ । ଯା'କୁ ପାରି ହେବାକୁ ଥାଏ ଏକ ବିରାଟ ପୋଲ । ମ୍ୟାପ୍‌ପଢାଳି ଝିଅ ବୁଲବୁଲ ମାନଚିତ୍ରରୁ ଆଖି ଉଠେଇ ଗୋଟାଏ ମନଖୁସିଆ ପାଟିକଲା, କହିଲା, 'ହେଇ ଦେଖ ! ଆସିଗଲା ଓହାଇଓ ରିଭର୍ !''

ନିରୁପମା ନାତି ପ୍ରତୀକ ସାଙ୍ଗେ କ'ଣ ସବୁ ଗପସପ କରୁଥିଲେ ପଛ ସିଟ୍‌ରେ । ହଠାତ୍ ଚମକି ଉଠି ପଚାରିଲେ, ''କାହିଁ କାହିଁ? କୋଉଠି ଓହାଇଓ ରିଭର୍ ? ଟିକେ ରୋକ ତ ପ୍ରବୀର !''

ପ୍ରବୀର ଗାଡି ମନ୍ଥର କଲେ, ରାସ୍ତାକଡରେ ଠାଏ ନିରାପଦ ଜାଗା ଦେଖି ଅଟକେଇଲେ । ଆମେ କାର୍‌ରୁ ବାହାରିପଡିଲୁ । ଓହାଇଓ ନଦୀବନ୍ଧ ଉପରେ ଠିଆହେଇ ନଈଟାକୁ ଆଖିପୂରେଇ ଦେଖିଲୁ । ଓହାଇଓ ଏକ ବିଶାଳ ଗଭୀର ସୁନାବ୍ୟା ନଦୀ । ଏଥିରେ ବର୍ଷ ତମାମ୍ ଜଳ ପ୍ରବାହ ଅବ୍ୟାହତ ରହେ– ଦେଖିବାକୁ ବର୍ଷାଦିନିଆ ମହାନଦୀ ପରି ।

ପୂର୍ବରୁ ନିରୁପମା ସେ ନଦୀ ବିଷୟରେ ତାଙ୍କ ପିଲାଦିନ ପଢା ଉପନ୍ୟାସ ''ଟମ୍‌କକାଙ୍କ କୁଟୀର''ରୁ କେତେଗୁଡାଏ ଜୀବନ୍ତ ଛବି ଆମ ଆଗରେ ବାଢିସାରିଥାନ୍ତି । ଗାଡିରୁ ଓହ୍ଲାଇ ଆମେ ସମସ୍ତେ ସେ ନଈକୂଳର ମାଟି ଛୁଇଁଲାମାତ୍ରେ ଅନୁଭବ କଲୁ ସତେ ଯେମିତି ମାଟି ଭିତରୁ ହଠାତ୍ ସେଇ ଉପନ୍ୟାସର ଘଟଣାବଳୀ ଓ ଚରିତ୍ରମାନେ ପୁନର୍ଜୀବନ ପାଇ ଗୋଟି ଗୋଟି ହେଇ ଉପରକୁ ଉଠିଆସିଲେ ।

ନିରୁପମା କାନ୍ଦ କାନ୍ଦ ସ୍ୱରରେ କହିଲାଗିଥାନ୍ତି– ''ଏଇଠି ଏଇଠି... ଏଲିଜା ଡେଇଁ-ପଡିଥିଲା ତାର ପାଞ୍ଚବର୍ଷର ପୁଅ ହାରୀକୁ କାଖେଇ ନଈ ଭିତରକୁ । ତା' ପଛେପଛେ ଭୋକିଲା ଗଧିଆ ପଲ ପରି ଗୋଡେଇ ଆସୁଥାନ୍ତି ପଳାତକ କ୍ରୀତଦାସମାନଙ୍କୁ ଧରିବା ପାଇଁ ନିଯୁକ୍ତ ଠିକାଦାର ଦଳ । ସବୁରି ଆଗରେ ସେଇ ବଦ୍‌ମାସ ନରାଧମ– ଟମ୍ ଲକର୍ । ଲକର୍ ଘୋଡାରେ ବସି ଧଇଁସଇଁ ହେଇ ଅଟକିଗଲା ଏଇ ନଈବନ୍ଧ ଉପରେ ସେଦିନ । କିନ୍ତୁ ସେତେବେଳକୁ ବିଚାରୀ ଏଲିଜା ତା' କୁନିପୁଅ ହାରୀକୁ କାଖରେ ଜାକି ଡେଇଁ-ପଡିଥାଏ ନଈ ଭିତରକୁ । ଏଇ ସେ ନଈ !''

ପାଞ୍ଚବର୍ଷର ନାତି ପ୍ରତୀକ କଇଁକଇଁ ହେଇ କାନ୍ଦିଉଠିଲା । ସେଇ କାନ୍ଦ ଭିତରେ ସେ ଜାଣିବାକୁ ଚାହୁଁଥିଲା– ଏଲିଜା ଓ ତା' କୁନିପୁଅ ହ୍ୟାରୀ ବଞ୍ଚିଲେ ନା ନାହିଁ ?

ନିରୁପମା ଲୁହ ପୋଛି ନାତିକୁ କାଖକରିନେଲେ । ତା' ଆଖିରୁ ଲୁହ ପୋଛିଦେଇ କହିଲେ, ''ସେତେବେଳେ ଭୟଙ୍କର ଶୀତଦିନ । ବରଫ ବର୍ଷୁଥାଏ ଆକାଶରୁ । ଏ ନଈଟା ସେଦିନ ପୂରା ବରଫ ପାଲଟିଯାଇଥାଏ । ତେବେ ଚକଡାଏ ଚକଡାଏ ବରଫ ଚଟାଣ ନଈ ପାଣିର ସୁଅରେ ଆସ୍ତେ ଆସ୍ତେ ଭାସି ଭାସି ଯାଉଥାଏ । ଗୋଟାଏ ଭାସନ୍ତା ବରଫ ଚକଡା ଉପରକୁ ପ୍ରାଣ ବିକଳରେ ଡେଇଁପଡିଲା ବିଚାରୀ ଏଲିଜା ତା' ପୁଅ ହାରୀକୁ କାଖେଇ । ନୃଶଂସ କ୍ରୀତଦାସ ଶିକାରୀ ଟମ୍ ଲକର୍ ତା' ଦଳବଳ ନେଇ ନଈକୂଳରେ ପହଞ୍ଚିଲାବେଳକୁ ମା' ପୁଅ ଭାସି ଭାସି ଚାଲିଯାଇଥାନ୍ତି ନଈ ଆରପାରିକୁ !''

## ସିନ୍‌ସିନାଟି, ଡେଟ୍ରୟଟ୍ ଓ ଟ୍ରୟ

ଓହାଇଓ ଯୁକ୍ତରାଷ୍ଟ୍ର ଆମେରିକାର ବେଶ୍ ବଡ ଏକ ରାଜ୍ୟ । ସିନ୍‌ସିନାଟି ଏହାର ଏକ ପ୍ରଧାନ ସହର । ଏଠି ଅନେକ ବର୍ଷ ଆଗରୁ ରହୁଚନ୍ତି ନିରୁପମାଙ୍କ ସାନଭାଇ, 'ମୋ' ଶାଳକ, ଡାକ୍ତର ରଣଜିତ୍ ରଥ । ସେ ଉଣେଇଶଶହ ଷାଠିଏରେ କଟକ ଶ୍ରୀରାମଚନ୍ଦ୍ର ଭଂଜ

ମେଡିକାଲ୍ କଲେଜରୁ ଏମ୍.ବି.ବିଏସ୍. ଡିଗ୍ରୀ ନେଇ ଆସିଥିଲେ ଆମେରିକା ଡାକ୍ତରି ବିଦ୍ୟାରେ ଉଚ୍ଚତର ଶିକ୍ଷା ପାଇଁ । ସମୟକ୍ରମେ ୟେଲ୍ ବିଶ୍ୱବିଦ୍ୟାଳୟରୁ ଏମ୍.ଡି ଡିଗ୍ରୀ ପାଇ ସେ ଗତ ପ୍ରାୟ ତିନି ଦଶନ୍ଧି ଧରି ଏଇ ସହରର ଏକ ବିଖ୍ୟାତ ଡାକ୍ତରଖାନାରେ ହୃଦ୍‌ରୋଗ ବିଭାଗରେ ଶଲ୍ୟ ଚିକିତ୍ସକ ଭାବେ ପ୍ରାକ୍ଟିସ୍ କରିଆସୁଥାନ୍ତି । ସେ ମଧ୍ୟ ଏଇ ସହରର ବାସିନ୍ଦା ଏକ ପ୍ରତିଷ୍ଠିତ ରୋମାନ୍ କାଥଲିକ୍ ପରିବାରରେ ବିବାହ କରିଛନ୍ତି । ବିବାହ ପରେ ପତ୍ନୀ ଶ୍ରୀମତୀ ମେରୀ (ମିଡେନ୍‌ଡ୍ରଫ୍) ଓ ଶିଶୁକନ୍ୟା ସୀଲାକୁ ସାଙ୍ଗରେ ନେଇ ରଣଜିତ୍ ଭାରତ ଯାଇଥିଲେ । ରଣଜିତ୍‌ର ସ୍ତ୍ରୀ ମେରୀକୁ ଆମେ ସେଇ ଦିନୁ ଜାଣିଥାଉ ଓ ଏଇ ଭିତରେ ଚିଠିପତ୍ର ଓ ଟେଲିଫୋନ୍ ଜରିଆରେ ତାଙ୍କ ସହିତ ଆମର ସଂପର୍କ ଘନିଷ୍ଠତର ହୋଇସାରିଥାଏ । ଏ ଭିତରେ ସେମାନଙ୍କର ଗୋଟିଏ ପୁଅ ଓ ଝିଅ ମଧ୍ୟ ଜନ୍ମ ହୋଇ ବଡ ହୋଇଗଲେଣି ଜାଣିଥିଲୁ । ସେମାନଙ୍କ ନିବାସ ସହର ସିନ୍‌ସିନାଟି ଦେଇ ଡ୍ରାଇଭ୍ କଲାବେଳେ ସେ ପରିବାରକୁ ଭେଟିବାକୁ ମନ ହେଉଥିଲେ ବି ସମୟ ଅଭାବରୁ ଆମେ ଅଟକିବାକୁ ଚାହିଁଲୁ ନାହିଁ ।

ସିନ୍‌ସିନାଟି ପାରିହେଇ ଆମେ ଚାଲିଲୁ ଆହୁରି ଆଗକୁ ଆଗକୁ ଉତ୍ତର ଦିଗରେ ମିସିଗାନ୍ ରାଜ୍ୟ ଅଭିମୁଖେ । ଯୁକ୍ତରାଷ୍ଟ୍ରର ମିସିଗାନ୍ ରାଜ୍ୟ ବିଷୟରେ ପଢିଥିଲି । ଏ ରାଜ୍ୟର ଏପରି ନାମକରଣର କାରଣ ମନେପଡିଲା । ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡା ସୀମାରେ ଆମେରିକା ମହାଦେଶର ପାଞ୍ଚଟି ମହାନ୍ ହ୍ରଦ ଲେକ୍ ସୁପିରିୟର୍, ମିସିଗାନ୍, ହ୍ୟୁରନ୍, ଇରି, ଅଣ୍ଟାରିଓ । ଏଇ ପଞ୍ଚହ୍ରଦ ଅଂଚଳ ଆମ ଭାରତର ପ୍ରାଚୀନ ପଞ୍ଚନଦ ଅଂଚଳ ସହିତ ଅନେକାଂଶରେ ତୁଳନୀୟ । ପ୍ରାୟ ଦଶ ହଜାର ବର୍ଷ ତଳେ ଭାରତର ବୈଦିକ ସଭ୍ୟତା ଆମର ପଞ୍ଚନଦ ଅଂଚଳରେ ସମୃଦ୍ଧି ଲାଭ କରିଥିଲା ବୋଲି କୁହାଯାଏ । ସେହିପରି ଆଜିର ଆମେରିକାନ୍ ସଭ୍ୟତା (ଯଦି ସେପରି କିଛି ଥାଏ) ମୋଟେ ଚାରିଶହ ପାଞ୍ଚଶହ ବର୍ଷ ତଳେ ଏଇ ପଞ୍ଚହ୍ରଦ ଅଂଚଳରେ ବିକାଶ ଲାଭ କରିଥିବା ଜଣାଯାଏ ।

ଆମେରିକାର ବିଖ୍ୟାତ ଫୋର୍ଡ କଂପାନୀ ପ୍ରଥମେ ୧୯୩୦ରେ ଏଇ ମିସିଗାନ୍ ନଦୀ କୂଳ ସହର ଡେଟ୍ରୟଟ୍ ଠାରେ ତାଙ୍କର ମୋଟର ନିର୍ମାଣ କାରଖାନା ପ୍ରତିଷ୍ଠା କରିଥିଲେ ଯାହା ପରବର୍ତ୍ତୀ କାଳରେ ଆଣିଥିଲା ଶିଳ୍ପବିପ୍ଳବ ଆମେରିକାରେ । କିନ୍ତୁ ୧୯୯୨ରେ ଆମେ ମିସିଗାନ୍ ହ୍ରଦ କୂଳର ଡେଟ୍ରୟଟ୍‌ରେ ପହଞ୍ଚି ଦେଖିଲୁ ମିସିଗାନ୍ ହ୍ରଦର ଏକ ଡକ୍‌ରେ ଲାଗିଚି ବିରାଟ ଏକ ଜାହାଜ । ତା' ଉପରେ ଲୋଡ୍ ହେବାରେ ଲାଗିଚି ଛୋଟବଡ ମୋଟର୍ କାର୍ ମାନ ।

ମୁଁ ପ୍ରବୀରଙ୍କୁ ପଚାରିଲି, ''ଏ କାର୍ ଗୁଡାକ କ'ଣ ଫୋର୍ଡ କଂପାନୀର ?'' ମୁରୁକି ହସି ସେ ମୋ ପ୍ରଶ୍ନର ଉତ୍ତର ଦେଲେ, ''ନା ! ବର୍ତ୍ତମାନ ଆମେରିକା କଂପାନୀର କାର ଏଠିକା ଲୋକେ ଆଉ ପସନ୍ଦ କରୁନାହାନ୍ତି । ଏ ଯୋଉ କାର ଜାହାଜରେ ଲୋଡ୍ ହେବା

ଦେଖୁଚନ୍ତି ସେଗୁଡାକ ସବୁ ଜାପାନୀ କାର୍ । ଏଠି ବର୍ତ୍ତମାନ ଜାପାନୀ କାର କିଣିବାକୁ ଲୋକଙ୍କର ପ୍ରଥମ ପସନ୍ଦ । ଏଇ ଦେଖନ୍ତୁ– ସେଠି ଦିଶୁଚି ଜାପାନୀ କାର୍ ଟୟୋଟା ମାନ୍ୟୁଫାକ୍‌ଚରିଂ କାରଖାନାର ଚିମିନି କେତେଟା । ଜାହାଜରେ ଲୋଡ କରାଯାଉଥିବା ଏ କାରଗୁଡାକ ସେଇ କାରଖାନାରେ ତିଆରି ହେଇଥିଲା– ବର୍ତ୍ତମାନ ଜାହାଜରେ ଲୋଡ୍ କରାଯାଉଚି କୋଉ ଦେଶକୁ ରପ୍ତାନୀ ପାଇଁ । ଆମେରିକାରେ ତିଆରି ଜାପାନୀ କାର ବୋଧହୁଏ ରପ୍ତାନୀ ହଉଚି ୟୁରୋପକୁ । ଏ ଜାହାଜ ସିଧା ଚାଲିଲା ଜାଣ ଏଠୁ ଲେକ୍ ହ୍ୟୁରନ୍, ଇରି, ଅଣ୍ଟାରିଓ ବାଟେ ସେଣ୍ଟ ଲରେନ୍ସ ନଈ ବାଟେ ଆଟଲାଣ୍ଟିକ୍ ଓସୋନ୍‌କୁ । ସେଠୁ ୟୁରୋପ କି କୌଣସି ପ୍ରାଚ୍ୟଦେଶକୁ ରପ୍ତାନି ଚାଲିଚି ଏ ଜାପାନି କାର୍ ଆମେରିକାରୁ । ଆମେରିକାନ୍ ଲେବରର୍‌ମାନେ ମୂଳରୁ ଜାପାନି କାର୍ ବିରୁଦ୍ଧରେ ଖୁବ୍ ତୁମ୍ଭିତୋଫାନ କରୁଥିଲେ; କିନ୍ତୁ ଜାପାନ ମଁହା ଚଲାଖ୍ । ସେ ଜାପାନରୁ ଏଠିକି କାର୍ ଏକ୍ସପୋର୍ଟ ନକରି ବସେଇଲା କାର୍ ତିଆରି କାରଖାନା ଏଇଠି ଆମେରିକାରେ । ଲେବରର୍‌ମାନେ କାମ ପାଇଗଲେ । ଏଇଲେ ସବୁ ଚୁପ୍ ।''

ଆମେରିକାର ଅର୍ଥନୀତିରେ ସେତେବେଳେ ଏକ ଦୁର୍ଦ୍ଦିନ ଆରମ୍ଭ ହେବାକୁ ଯାଉଥାଏ ବୋଲି ମୁଁ ଖବରକାଗଜରୁ ପଢିଥିଲି । ସେ ଦୁର୍ଦ୍ଦିନ ଆମେରିକା ନିଜେ ଅର୍ଜିଥାଏ– ୧୯୯୦ ବେଳୁ, ସୋଭିଏତ୍ ୟୁନିୟନ୍‌ର ପତନ ପରେ ପରେ । ଆମେରିକାର ନେତୃତ୍ୱରେ ସେତେବେଳକୁ ଆନ୍ତର୍ଜାତିକ ମୁକ୍ତ ବାଣିଜ୍ୟ ପାଇଁ ବିଶ୍ୱ ବାଣିଜ୍ୟ ସଂସ୍ଥା (W.T.O) ସହିତ ଚୁକ୍ତିପତ୍ରରେ ସବୁ ଦେଶ ଦସ୍ତଖତ୍ କରିଚାଲିଥାନ୍ତି । କିନ୍ତୁ ଆମେରିକା ସେ ପର୍ଯ୍ୟନ୍ତ ଜାଣିପାରିନଥାଏ ଯେ ସେଇ ମୁକ୍ତ ବାଣିଜ୍ୟ ଦିନେ ତା' ନିଜ ଦେଶର ଅର୍ଥନୀତିର ବିନାଶର କାଳ ହେବ । ମାନ୍ଦା ଅବସ୍ଥାର ଅୟମାରମ୍ଭ ସମୟ ୧୯୯୩ରେ– ଆମର ପ୍ରଥମ ଥର ଆମେରିକା ଭ୍ରମଣ ସେଇ ବର୍ଷ । ତାର ମାରାତ୍ମକ ସୂଚନା ମିଳୁଥାଏ ପ୍ରତିଦିନ ଗଣ-ମାଧ୍ୟମର ଘୋଷଣାରୁ । ବର୍ଲିନ୍ ୱାଲ୍ ପତନ ସହିତ ଆରମ୍ଭ ହୋଇଥିବା ଶୀତଳ-ଯୁଦ୍ଧର ଉପଶମ ପ୍ରକ୍ରିୟା ଆରମ୍ଭ ପରେ ପରେ ଆମେରିକା ଉପରେ ଲାଗିଲା ପ୍ରଥମ ଧକ୍କା । ଶୀତଳ ଯୁଦ୍ଧର କ୍ରମବର୍ଦ୍ଧିଷ୍ଣୁ କ୍ଷୁଧା ମେଣ୍ଟାଇବା ଲକ୍ଷ୍ୟରେ ଆମେରିକା ଗତ ପଚାଶ ବର୍ଷ ଭିତରେ ଯେତେ ସବୁ ବିରାଟ ବିରାଟ ଯୁଦ୍ଧ ସାମଗ୍ରୀ ତିଆରି କାରଖାନା ବସେଇଚାଲିଥିଲା ଶୀତଳ ଯୁଦ୍ଧ ଶେଷ ହୋଇଯିବା ମାତ୍ରେ ସେ କାରଖାନା ସବୁରୁ ଉତ୍ପାଦନ ବନ୍ଦକରିଦିଆଗଲା । କଂପାନୀମାଲିକମାନେ କଂପାନୀରେ ବେଶୀ ଦରମାରେ ନିଯୁକ୍ତ ବଡ ଛୋଟ ଅଫିସର୍‌ମାନଙ୍କୁ ପ୍ରଥମେ ଚାକିରିରୁ ବିଦା କରିବା ଆରମ୍ଭ କଲେ– କଂପାନୀର ପ୍ରେସିଡେଣ୍ଟ୍ ଓ ଭାଇସ୍-ପ୍ରେସିଡେଣ୍ଟ୍‌ମାନେ ବି ବାଦ୍ ପଡିଲେ ନାହିଁ । ରାତାରାତି ଚାକିରି ହରେଇଥିବା ଏଇ ଉଚ୍ଚ-ଶିକ୍ଷିତ ବିଶେଷଜ୍ଞ ଦଳ ଏ ଧକ୍କା ସଂଭାଳି ନପାରି ଅନେକ ସଂଖ୍ୟାରେ ହୃଦ୍‌ଘାତ ରୋଗରେ ଆକ୍ରାନ୍ତ ହେବାକୁ ଲାଗିଲେ ଓ ଅନେକ ମଧ୍ୟ ଅକାଳ ମୃତ୍ୟୁ ମୁଖରେ ପଡିଲେ । ଏଇ

ସବୁ ଦୁଃସଂବାଦ ଦିନରାତି ଟିଭିରେ ପ୍ରଚାରିତ ହୋଇଚାଲିଥାଏ ସେତେବେଳେ । ସାରା ବିଶ୍ୱରେ ମୁକ୍ତ ବାଣିଜ୍ୟକୁ ନେଇ ନାନା ତର୍କ-ବିତର୍କ ବିଚାର ବିମର୍ଶ ଚାଲିଥାଏ । ସେଇ ଘଡିସନ୍ଧି କାଳର ପୃଷ୍ଠଭୂମି ସଂପର୍କରେ ମୁଁ ବିଶେଷ ସଚେତନ ହେବାକୁ ବାଧ୍ୟ ହେବାର ଅନ୍ୟତମ କାରଣ– ସେତେବେଳେ ମୋ' ନିଜର ଦୁଇଜାମାତା ଓ ଝିଅ ଆମେରିକାର ଭିନ୍ନ ଭିନ୍ନ ମଲଟିନ୍ୟାସନାଲ୍ କଂପାନୀରେ ପଦସ୍ଥ ଇଂଜିନିୟରିଂ ସର୍ଭିସ୍‌ମାନଙ୍କରେ ଚାକିରି କରୁଥାନ୍ତି, ଆଉ ପ୍ରତିଦିନ ସନ୍ଧ୍ୟାରେ ଅଫିସ୍‌ରୁ ଘରକୁ ଫେରିବା ସମୟରେ ସେମାନଙ୍କ ମୁହଁରେ ଲେସିହୋଇଯାଇଥିବା ଚିନ୍ତାର କାଳିମା ଆମକୁ ଅତ୍ୟନ୍ତ ଶଙ୍କାଗ୍ରସ୍ତ କରୁଥାଏ ।

ଡେଟ୍ରୟଟ୍ ସହର ସୀମା ଟପି ମିସିଗାନ୍ ହ୍ରଦ କୂଳେକୂଳେ ଅନେକ ଆଗକୁ ଡ୍ରାଇଭ୍ କଲା ପରେ ଆମେ ପହଞ୍ଚିଲୁ ଶେଷରେ ଟ୍ରୟରେ । ଆମେ ହିଲଟନ୍ ହୋଟେଲରେ ପହଞ୍ଚିବା ବେଳକୁ ପଶ୍ଚିମ ଆକାଶ ତଥାପି ବେଶ୍ ଉଜ୍ଜ୍ୱଳ । ଗ୍ରୀଷ୍ମଋତୁର ସନ୍ଧ୍ୟା ଉତ୍ତର ଗୋଲାର୍ଦ୍ଧରେ ବହୁତ ଲମ୍ୱା । ସକାଳ ଆଠରୁ ସନ୍ଧ୍ୟା ସାତ– ନଅଘଣ୍ଟାର ଦୀର୍ଘ ଡ୍ରାଇଭ୍ ଭିତରେ ସାଢେ ସାତଶହ ମାଇଲ୍‌ର ସଫର୍ ବେଶ୍ କ୍ଳାନ୍ତିକର ହେଲେ ମଧ୍ୟ ମୋ' ପାଇଁ ଥିଲା ଖୁବ୍ ଆନନ୍ଦଦାୟକ ।

'ଓସା' କନ୍‌ଭେନ୍‌ସନ୍ ପାଇଁ ଆମେରିକା ଓ କାନାଡାରୁ ସପରିବାର ଆସୁଥିବା 'ଓସା'ର ସଭ୍ୟସଭ୍ୟାମାନେ ହୋଟେଲ୍ କାଉଣ୍ଟର୍‌ରେ ନିଜ ନିଜ ନାଁ ରେଜିଷ୍ଟ୍ରି କରୁଥାନ୍ତି । ଆମ ଦଳଟି ହାଜର ହେଲୁ ସେଇଠି । ଅନେକ ପୂର୍ବପରିଚିତ ଓଡିଆ ଲୋକଙ୍କୁ ମୁଁ ସେଇ ହୋଟେଲ୍ ଅଳିନ୍ଦରେ ଭେଟିଲି । ସେମାନଙ୍କ ଭିତରୁ ଅଳ୍ପ କେତେଜଣ ଥିଲେ ମୋର ଛାତ୍ରାବସ୍ଥାର ସ୍କୁଲ୍ କଲେଜ ସହପାଠୀ । ସେମାନେ ଏ ଦେଶକୁ ବହୁ ବର୍ଷ ପୂର୍ବେ ଆସି ଚାକିରିବାକିରି କରୁଥାନ୍ତି– ଅନେକ ମଧ୍ୟ ଆସିଥନ୍ତି ନୂଆ ନୂଆ । ସେମାନଙ୍କ ଭିତରୁ କେତେଜଣ ମୋର ପୂର୍ବତନ ଛାତ୍ର– ବିଜେବି, ରେଭେନ୍‌ସା, ଜଗତସିଂହପୁର କଲେଜ ପ୍ରଭୃତିର । ସେମାନଙ୍କୁ ଦେଖି ଆନନ୍ଦର ସୀମା ରହିଲା ନାହିଁ– ମନେହେଲା ମୁଁ ଯେପରି ଆମେରିକାରେ ନାହିଁ– ଅଛି ଓଡିଶାରେ !

## ଟ୍ରୟ, ତା ୩ ଜୁଲାଇ, ୧୯୯୩ : ଛବିଶତମ ଓସା ଅଧିବେଶନ ଉଦ୍‌ଘାଟନ ଉତ୍ସବ

ଟ୍ରୟର ନର୍ଦର୍ଣ ହିଲ୍‌ଟନ୍– ଆନ୍ତର୍ଜାତିକମାନର ଏକ ପଞ୍ଚତାରକା ହୋଟେଲ । ଏ ହୋଟେଲର 'ବଲ୍‌ରୁମ୍'ରେ ଚଳିତ ବର୍ଷ 'ଓସା'ର ଛବିଶତମ କନ୍‌ଭେନ୍‌ସନ୍‌ର ଆୟୋଜନ କରାଯାଇଥାଏ । ସକାଳ ନଅରେ ଉଦ୍‌ଘାଟନ ଉତ୍ସବ ପାଇଁ ଆମେ ସମସ୍ତେ ହୋଟେଲ୍‌ର ସଭା କକ୍ଷରେ ପହଞ୍ଚିଲୁ । ପ୍ରାୟ ପାଞ୍ଚଶହ ଡେଲିଗେଟ୍‌ଙ୍କ ଉପସ୍ଥିତି ଯୋଗୁ ସଭା ଗୃହ ବେଶ୍ ମୁଖରିତ ଆଉ ଚଳଚଞ୍ଚଳ ହୋଇଉଠିଥାଏ । ସେମାନଙ୍କ ଭିତରେ ବେଶ୍ କିଛି ସଂଖ୍ୟାର ଟିନ୍-ଏଜର୍ସ ! ଏ ତରୁଣ-ତରୁଣୀ, କିଶୋର-କିଶୋରୀମାନେ ଦ୍ୱିତୀୟ ଜେନେରେସନ୍‌ର

ଓଡିଆ ଏନ୍.ଆର୍.ଆଇ, ଏ ଦେଶରେ। ସେମାନଙ୍କ ଛଡା କିଛି ଶିଶୁ ମଧ୍ୟ ଥାଆନ୍ତି। ସେମାନଙ୍କ ଗପସପ ହସଖୁସି ଯୋଗୁ ହଲ୍ ଭିତରଟା ଆହୁରି ଜୀବନ୍ତ ହୋଇଉଠିଥାଏ। ତେବେ ଲକ୍ଷ୍ୟକଲି ଏଇ ନୂଆପୀଢିର ଓଡିଆ ପିଲାମାନେ ପରସ୍ପର ଭିତରେ ହସ ଖୁସି ଗପସପ ଥଟ୍ଟାମଜା ଚଳେଇଥାନ୍ତି ଏଠାକାର କଥିତ ଭାଷା ଇଂରେଜୀରେ। ସେମାନଙ୍କ ମା' ବାପାମାନେ ବି ନିଜ ନିଜ ଭିତରେ ଇଂରେଜୀରେ ଆଳାପ ଆଲୋଚନାରେ ରତଥାନ୍ତି।

ଓଡିଆ ଶିକ୍ଷିତମାନେ ଓଡିଶାରେ ବି ସାଧାରଣତଃ ନିଜର ମାତୃଭାଷାରେ ଘରୋଇ କଥାବାର୍ତ୍ତା ହେବାକୁ ପସନ୍ଦ କରନ୍ତି ନାହିଁ– ଏ କିଛି ନୂଆ କଥା ନୁହେଁ। ଓଡିଶା ବାହାରେ ପରିସ୍ଥିତି ଆହୁରି ଶୋଚନୀୟ। ଦିଲ୍ଲୀରେ ପଦସ୍ଥ ଓଡିଆ ଅଫିସର୍‌ମାନେ ନିଜକୁ ଓଡିଆ ବୋଲି ପରିଚିତ କରନ୍ତି ନାହିଁ ଅଫିସ୍‌ରେ। ଶ୍ରମିକ ଶ୍ରେଣୀର ଓଡିଆମାନେ ଦିଲ୍ଲୀ, ବମ୍ବେ, କଲିକତାରେ ନିଜକୁ ଓଡିଶାର ଲୋକ କହିବାକୁ ଡରନ୍ତି। ସେମାନେ ସ୍ଥାନୀୟ ହିନ୍ଦୀ, ବଙ୍ଗଳା, ତେଲୁଗୁ ଭାଷାର ଆଢୁଆଳରେ ଲୁଚିଯିବାକୁ ନିରାପଦ ଭାବନ୍ତି। ଭାଷାକ୍ଷେତ୍ରରେ ଓଡିଆମାନଙ୍କର ଏଇ ଆତ୍ମଗୋପନ ପ୍ରବୃତ୍ତିର ଯଥେଷ୍ଟ ଐତିହାସିକ କାରଣ ରହିଚି। ସେ ଯାହା ହୋଇଥାଉ ପଛେ, ସେମାନେ ସର୍ବଭାରତୀୟ କ୍ଷେତ୍ରରେ ନିଜର ରାଜନୈତିକ ଗୁରୁତ୍ୱ ହରାଇ ଆସିଚନ୍ତି ବହୁ କାଳରୁ। ୧୯୩୬ ମସିହାର ଏପ୍ରିଲ୍ ପହିଲା ତାରିଖରେ, ବହୁ ବର୍ଷର ରାଜନୈତିକ ସଂଗ୍ରାମ ଅନ୍ତେ, ବ୍ରିଟିଶ୍ ଭାରତରେ ସେମାନଙ୍କୁ ସବା ପ୍ରଥମେ ଭାଷାଭିତ୍ତିରେ ଏକ ସ୍ୱତନ୍ତ୍ର-ରାଜ୍ୟ ମିଳିଥିଲା, ଯାହା ଭାରତର ଅନ୍ୟ ଭାଷାଭାଷୀଙ୍କ ପାଇଁ ଗଭୀର ଈର୍ଷାର କାରଣ ହୋଇଥିଲା। ତଥାପି ଓଡିଆମାନଙ୍କର ଆତ୍ମବିଶ୍ୱାସ ଜାଗ୍ରତ ହୋଇ ପାରିଲା ନାହିଁ। ସେମାନେ ତଥାପି ଭୀରୁ ନିଜ ପରିଚୟ ଜାହିର କରିବାକୁ ଘର ବାହାରେ।

ଏଇ ବିଷୟରେ ଚିନ୍ତା କରୁକରୁ ସଭା ଆରମ୍ଭ ପାଇଁ ଡାକରା ଦିଆଗଲା। ସାଙ୍ଗେ ସାଙ୍ଗେ ବଲ୍ ରୁମ୍ ଭିତର କୋଳାହଳ ଥମ୍ ପଡିଗଲା। ଡେଲିଗେଟ୍‌ମାନେ ନିଜନିଜ ସିଟ୍ ଧରିଲେ। ସଭା ଗୃହରେ ଏକ ବଡ ମଞ୍ଚ ନିର୍ମିତ ହୋଇଥାଏ। ସୁନ୍ଦର ସାଜସଜ୍ଜା ମଧ୍ୟ। ଡାୟସ୍‌ରେ ପାଞ୍ଚ ଛ'ଟା ଚେୟାର୍ ପଡିଥାଏ। ଚଳିତ ଅଧିବେଶନରେ ସଭାପତିତ୍ୱ କରୁଥାନ୍ତି 'ଓସା' ସଭାପତି ଡକ୍ଟର ଦିଗମ୍ବର ମିଶ୍ର। ଡ : ମିଶ୍ର ସଭା ଆରମ୍ଭ ହେବା ଘୋଷଣାକଲେ ଓ ଅତିଥିମାନଙ୍କୁ ଜଣ ଜଣ କରି ମଞ୍ଚକୁ ନିମନ୍ତ୍ରଣ କଲେ। ଆମେମାନେ ଯାଇ ନିଜ ନିଜ ଆସନରେ ବସିଲୁ।

ଏ ମଞ୍ଚରେ ଉପସ୍ଥିତ ଅତିଥିମାନଙ୍କ ଭିତରେ ଅଣଓଡିଆ ଅତିଥି ଦୁଇଜଣଙ୍କୁ ଦେଖିଲି। ସେ ଦୁହେଁ ହେଲେ– ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥି, ଟ୍ରୟ, ମିସିଗାନ୍ ସିଟିର ମେୟର୍ ଶ୍ରୀମତୀ ଜ୍ୟାଁ ଷ୍ଟାଇନ୍ (Jeanne Stine), ଅନ୍ୟତମ ଅତିଥି ସିକାଗୋ ସହରରେ ଅବସ୍ଥିତ ଭାରତର ପ୍ରମୁଖ ବାଣିଜ୍ୟଦୂତ (କନ୍‌ସଲ୍ ଜେନେରାଲ୍) ଶ୍ରୀ କେ. ଆର୍. ସିହ୍ନା। ସେମାନଙ୍କ ବ୍ୟତୀତ ଓଡିଶାରୁ ଆଗତ ଆମେ ତିନିଜଣ– ପ୍ରଫେସର୍ କାହ୍ନୁ ଚରଣ ମିଶ୍ର, ମୁଁ

(ମୁଖ୍ୟଅତିଥି, ବକ୍ତା ବା 'କୀ-ନୋଟ୍ ସ୍ପିକର୍') ଏବଂ ଓଡିଶାରେ 'ଓସା' ସେଣ୍ଟର୍‌ର ପରିଚାଳକ ଭାବେ କାର୍ଯ୍ୟନିର୍ବାହ କରୁଥିବା ଓଡିଆ ସାମ୍ବାଦିକ ଶ୍ରୀ ସତ୍ୟ ମହାପାତ୍ର । ଏହା ବ୍ୟତୀତ ଟ୍ରୟ ସହରର ଓଡିଆ ଏନ୍.ଆର୍.ଆଇଙ୍କ ପକ୍ଷରୁ ଅଭ୍ୟର୍ଥନା ସମିତିର ମୁଖ୍ୟ ଶ୍ରୀ ନଟବର ଖୁଣ୍ଟିଆ ଓ ୨୬ତମ 'ଓସା' କନ୍‌ଭେନ୍‌ସନ୍‌ର ଆବାହକ ଡଃ. ସୁଦର୍ଶନ ମିଶ୍ର ମଧ୍ୟ ମଞ୍ଚରେ ଉପସ୍ଥିତ ଥିଲେ ।

ଅତିଥିମାନଙ୍କର ପରିଚୟ ଦେଲେ ଦିଗମ୍ବରବାବୁ । କାହ୍ନୁବାବୁଙ୍କୁ ଅନୁରୋଧ କରାଗଲା ସଭାରମ୍ଭରେ ମାଙ୍ଗଳିକ ବେଦମନ୍ତ୍ର ପାଠ କରିବାକୁ । ପରେ ପରେ ସ୍ୱାଗତ ସଂଭାଷଣ ଜଣାଇଲେ ନଟବରବାବୁ ଓ ସୁଦର୍ଶନ ବାବୁ । କାର୍ଯ୍ୟକ୍ରମ ଅନୁସାରେ ଟ୍ରୟ ସହରର ମେୟର୍ ଶ୍ରୀମତୀ ଷ୍ଟାଇନ୍ 'ଓସା' କନ୍‌ଭେନ୍‌ସନ୍‌ର ସମସ୍ତ ସଭ୍ୟସଭ୍ୟାଙ୍କୁ ତାଙ୍କ ସହରକୁ ଆଗମନ ପାଇଁ ସ୍ୱାଗତ ଜଣାଇଲେ ଓ ଏକ ସଂକ୍ଷିପ୍ତ ଭାଷଣ ଦେଲେ । ତାଙ୍କ ପଛକୁ ଭାରତୀୟ ବାଣିଜ୍ୟଦୂତ ଶ୍ରୀ ସିହ୍ନାଙ୍କ ଭାଷଣ ।

ବର୍ତ୍ତମାନ ମୋ ପାଳି ଆସିଲା । ମତେ ଆହ୍ୱାନ କରାଗଲା 'କୀ ନୋଟ୍ ଆଡ୍ରେସ୍' ପାଇଁ । ଏଥିପାଇଁ ସମୟ ସୀମା ଥିଲା କୋଡିଏ ମିନିଟ୍ ।

## କନ୍‌ସଲ୍ ଜେନେରାଲ୍‌ଙ୍କ ସତର୍କବାଣୀ

ସଭା ଆରମ୍ଭ ହେବା ପୂର୍ବରୁ ଭି.ଆଇ.ପି ଅତିଥିମାନଙ୍କ ସହିତ ପ୍ରାଥମିକ ମୌଖିକ ପରିଚୟ ସମୟରେ ଭାରତର ମୁଖ୍ୟ ବାଣିଜ୍ୟଦୂତ ଶ୍ରୀ କେ. ଆର୍. ସିହ୍ନା ମତେ ଚୁପ୍‌ଚୁପ୍ କରି କାନରେ କହିଥିଲେ, ''ଏ ସହରର ମେୟର୍ ଶ୍ରୀମତୀ ଷ୍ଟାଇନ୍ ଜଣେ ଗୁରୁତ୍ୱପୂର୍ଣ୍ଣ ରାଜନେତା । ଏଇମାନେ ପରେ ଗଭର୍ଣ୍ଣର୍ ଏବଂ ସିନେଟ୍ ମେମ୍ବର୍ ହୁଅନ୍ତି । ତେଣୁ ଦୟାକରି ବକ୍ତୃତା ଦେବା ସମୟରେ ପ୍ରୋଟୋକଲ୍ ପ୍ରତି ଧ୍ୟାନଦେବାକୁ ଭୁଲିବେ ନାହିଁ ।''

ମୋ ବକ୍ତବ୍ୟ– 'ଓସା'ର ବିଧି ଅନୁସାରେ ମତେ ଇଂରେଜୀରେ ଭାଷଣ ଦେବାକୁ ହେଲା । ନିର୍ଦ୍ଧାରିତ କୋଡିଏ ମିନିଟ୍ ପରେ ଅଧିକ ପାଞ୍ଚ ମିନିଟ୍ ପାଇଁ ମଧ୍ୟ ମତେ ସମୟ ଦିଆଯାଇଥିଲା । ଭାଷଣର ସାରାଂଶ ନିମ୍ନରେ ଉଦ୍ଧାର କରୁଛି :

– ''ବନ୍ଧୁଗଣ ! ଆପଣମାନେ ଗତକାଲି ସନ୍ଧ୍ୟାରେ ଟିଭି ଦେଖିଥିବେ । ମୁଁ ମଧ୍ୟ ଦେଖୁଥିଲି । ଗୋଟିଏ ବିଶେଷ ଘଟଣା ମତେ ଖୁବ୍ ବିବ୍ରତ କଲା । ଟି.ଭି ପରଦାରେ ଦେଖିଲି ଜଣେ ବ୍ୟକ୍ତିଙ୍କୁ ଆମ୍ବୁଲାନ୍ସରେ ସ୍ଥାନାନ୍ତରିତ କରାଯାଉଚି । ଜଣାଗଲା ସେ ଜଣେ ହୃଦ୍‌ଘାତରେ ପୀଡିତ ଅସୁସ୍ଥ ବ୍ୟକ୍ତି । ଜଣେ ଖୁବ୍ ବଡ ଚାକିରିଆ ଏ ଦେଶର– କୁଆଡେ ଜଣେ କଂପାନୀ ପ୍ରେସିଡେଣ୍ଟ୍ କି ଭାଇସ୍ ପ୍ରେସିଡେଣ୍ଟ୍ । କିନ୍ତୁ ଦୁଃଖର କଥା ଭଦ୍ରଲୋକ ଡାକ୍ତରଖାନାରେ ପହଞ୍ଚିବା ପୂର୍ବରୁ ଅଧବାଟରେ ଶେଷନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ଅକାଳମୃତ୍ୟୁରେ ଆମେରିକାରେ ହାହାକାର ପଡିଚି । ମୋ ଝିଅକୁ ପଚାରି ଜାଣିଲି ସେ

ଭଦ୍ରଲୋକ ଅଳ୍ପଦିନ କେତେଟା ପୂର୍ବରୁ ଚାକିରିରୁ ବହିଷ୍କୃତ ହୋଇଥିଲେ । ଏ ବହିଷ୍କାର ପାଇଁ ତାଙ୍କର କିଛି ଦୋଷ ନଥିଲା । ସେ ମହାଶୟ ଶିକାର ହେଲେ ଆମେରିକାର ଆଜିର ଅର୍ଥନୈତିକ ଦୁର୍ଗତିରେ । ସେ ଏକା ନୁହନ୍ତି, ଏଇଲେ ଏ ଦେଶର ଅନେକ ବଡବଡ କଂପାନୀ ଏଇ ଚାକିରି ଛଟେଇ ନୀତି ଆପଣେଇନବାକୁ ବାଧ୍ୟ ହେଇଚନ୍ତି । ଚଡକ ପଡୁଚି ପ୍ରତି ସପ୍ତାହ ଶୁକ୍ରବାର ସନ୍ଧ୍ୟାରେ ବୋଲି ଶୁଣୁଚି । ବଡବଡ କଂପାନୀର CEO ମାନେ ଶୁକ୍ରବାର ସକାଳେ ଅଫିସ୍‌କୁ ବାହାରିଲାବେଳେ ଘରେ ଶୋକର ଛାୟା ଖେଳିଯାଉଚି– ପତି ବା ପତ୍ନୀ, ବାପା କି ମା' ଆଜି ସନ୍ଧ୍ୟାରେ ଘରକୁ ଫେରିଲାବେଳେ ଚାକିରିରେ ଥିବେ କି ନାଇଁ– ଏଇ ସନ୍ଦେହରେ ! ଏ ପ୍ରକାର ପରିସ୍ଥିତି ମୁଁ ମଧ୍ୟ ଲକ୍ଷ୍ୟ କରୁଚି ଆମ ନିଜ ଘରେ । ମୋର ଦୁଇ ଇଂଜିନିୟର୍ ଜାମାତା ଓ ଗୋଟିଏ ଝିଅ ଏଠାକାର ଦୁଇଟି ବଡ ଜଣାଶୁଣା କଂପାନୀରେ ଉଚ୍ଚପଦବୀରେ ଚାକିରି କରି ଆସୁଚନ୍ତି ବହୁ ବର୍ଷ ଆଗରୁ । କିନ୍ତୁ ଆଜିର ପରିସ୍ଥିତିରେ ସେମାନଙ୍କ ଚାକିରିରେ ମଧ୍ୟ ଏପରି ଅନିଶ୍ଚିତତା ପହଞ୍ଚିଯାଇଚି ଯେ ଆମେ ବାପ ମା' ସେମାନଙ୍କ ମାନସିକ ଅବସ୍ଥା ଉପଲବ୍ଧି କରି ଘୋର ଆତଙ୍କିତ । ଯଦି ସତରେ ଏମାନଙ୍କୁ ତାଙ୍କ କଂପାନୀ ବିନା ଦୋଷରେ ଛଟେଇକରିଦିଏ ଚାକିରିରୁ ତେବେ ଅବସ୍ଥା ହବ କ'ଣ? ଏଇ ଆମ ଦୁଶ୍ଚିନ୍ତାର କାରଣ ।

ଆମେରିକାରେ ଏପରି ଶୋଚନୀୟ ଅର୍ଥନୈତିକ ଦୁର୍ଗତି ଯେ ଦିନେ ଘଟିବ ଏକଥା ୧୯୯୦ ପୂର୍ବରୁ କେହି ସ୍ୱପ୍ନରେ ବି ଭାବିନଥିଲା । ସେତେବେଳେ ସମସ୍ତେ ସୁଖ ସ୍ୱପ୍ନରେ ମଜଗୁଲ ଥିଲେ ଯେ ଯାହାହେଉ ପୃଥିବୀରୁ ଶୀତଳ ଯୁଦ୍ଧ ସରିଗଲା, କମ୍ୟୁନିଜିମ୍‌ର ବିଷ ଦାନ୍ତ ଭାଙ୍ଗିଗଲା, ଆମେରିକାର ପହିଲା ନମ୍ବର ଶତ୍ରୁ ସୋଭିଏତ୍ ରୁଷିଆର ପତନ ଘଟିଗଲା– ଯା' ପରେ ବଢିଚାଲିବ ଆମେରିକାର ଗୁରୁତ୍ୱ । ଆମର ଆମେରିକା ହେବ ବିଶ୍ୱର ନମ୍ବର ୱାନ୍ ପିଲିଟିକାଲ୍ ପାୱାର୍ । ୟୁନିପୋଲାର୍ ୱର୍ଲଡ୍‌ରେ ଆମେରିକା ହବ ନମ୍ବର ୱାନ୍ ଲିଡର୍ । କିନ୍ତୁ ସୋଭିଏତ୍ ରୁଷର ପତନର ବର୍ଷେ ନଯାଉଣୁ ଏ କି ବିପଦ ଘୋଟିଲା ଦେଶକୁ? କୋଲ୍ଡ ୱାର୍ ସମୟର ସବୁ ବଡବଡ ଶିଳ୍ପକାରଖାନା ହଠାତ୍ ବନ୍ଦକରିଦେଲେ ଉତ୍ପାଦନ? ଆରମ୍ଭ ହେଇଗଲା ଛଟେଇ– ପ୍ରଥମେ ପ୍ରେସିଡେଣ୍ଟ୍, ଭାଇସ୍ ପ୍ରେସିଡେଣ୍ଟ୍, CEOମାନଙ୍କ ଠୁଁ ? ଛୋଟ ଚାକିରିଆମାନେ ଦିନ ଗଣୁଚନ୍ତି । ଏଇ ହପ୍ତାଟା ଯଦି ଭଲରେ ଭଲରେ କଟିଯାଏ– ଶୁକ୍ରବାର ସନ୍ଧ୍ୟାରେ ରିଟ୍ରେଞ୍ଚର ସ୍ଲିପଟା ନମିଳେ ତେବେ ଭଗବାନ୍ ନିଶ୍ଚେ ଅଛନ୍ତି ବୋଲି ଜାଣିବାକୁ ହେବ ପରା !

ଏ ଗଲା ଅର୍ଥନୈତିକ ସଂକଟ ବ୍ୟାପାର । ବର୍ତ୍ତମାନ ଦେଖାଯାଉ ସାଂସ୍କୃତିକ ସମସ୍ୟା । ଏ ଦେଶରେ ମୋର ମାତ୍ର ଚାରିସପ୍ତାହ ରହଣିରୁ ମୁଁ ଜାଣିପାରୁଛି ଏଠାକାର ଏନ୍.ଆର୍.ଆଇ ମାନଙ୍କର ଅଉ ଏକ ଭୟଙ୍କର ସମସ୍ୟା । ତାହା ହେଲା– ଆତ୍ମପରିଚୟ ବିଲୋପର ସମସ୍ୟା । ମୋର ତିନୋଟି ନାତି ଏ ଦେଶରେ ଜନ୍ମନେଇଚନ୍ତି– ତେଣୁ ସେମାନେ ଏ

ଦେଶର ଖୋଦ୍ ନାଗରିକ ହେବାକୁ ଦାବିଦାର । କିନ୍ତୁ ଯାହା ମନେହଉଚି– ଏ ଦେଶର ଜନ୍ମସିଦ୍ଧ ନାଗରିକତ୍ୱ ହାସଲ କରିପାରିଥିଲେ ମଧ୍ୟ ସେମାନେ ନିଜର ପରିଚୟକୁ ନେଇ କଦାପି ଗର୍ବିତ ହୋଇ ପାରିବେ ନାହିଁ । କାରଣ ସେମାନଙ୍କ ମନରେ ସଦାବେଳେ ଉଙ୍କି-ମାରୁଚି ସନ୍ଦେହ– ଆମକୁ ସହପାଠୀମାନେ ଇଣ୍ଡିୟାନ୍ ମନେକରି ଘୃଣା କରୁନାହାନ୍ତି ତ ! ଏଭଳି ଅଭିଯୋଗ ମୁଁ ଶୁଣିଲିଣି କେତେବାର ମୋ'ର ସ୍କୁଲପଢୁଆ ନାତିମାନଙ୍କ ମୁହଁରୁ ।

ମୁଁ ଜଣେ ସାହିତ୍ୟିକ ଓ ବିଜ୍ଞାନର ଛାତ୍ର । ସାହିତ୍ୟିକ ଭାବେ ମୁଁ କିଛିକିଛି ମନୋ-ବିଜ୍ଞାନ ତତ୍ତ୍ୱ ଆହରଣ କରିଚି । ସେ ତତ୍ତ୍ୱର ଏକ ମୌଳିକ ବିଷୟ ହେଲା– ମଣିଷ ଯେତେ ବିଖ୍ୟାତ ବା ଧନୀ ହୋଇଥାଉ ପଛେ ଯଦି ସେ ତା' ନିଜ ପିତାମାତା ବା ସଂପ୍ରଦାୟକୁ ନେଇ ଗର୍ବିତ ନୁହେଁ ତେବେ ତା'ର ଅବଦମିତ ମନରେ ବରାବର ଏକ ହୀନମନୋଭାବ ରହିବ । ଏ ହୀନମନୋଭାବ ମଣିଷର ମାନସିକ ଭାରସାମ୍ୟ ରକ୍ଷାରେ ବହୁ କ୍ଷତି ଉପୁଜାଏ । ଅନେକ ସମୟରେ ଏପରି ଲୋକମାନେ ଗଭୀର ମାନସିକ ଅବସାଦରେ ପାଗଳ ବି ହୋଇଯାନ୍ତି । ସେପ୍ରକାର ମାନସିକ ବ୍ୟାଧିରେ ଆଜିର ଆମେରିକାର ବହୁ ବ୍ୟକ୍ତି ପ୍ରପୀଡିତ– ସେମାନେ ଅଧିକାଂଶ କଳାଲୋକ ନଚେତ୍ ବିଦେଶରୁ ଆସିଥିବା ଆଶ୍ରୟପ୍ରାର୍ଥୀ– ଏହା ଏ ଗୃହରେ ଉପସ୍ଥିତ ମୋର ବନ୍ଧୁ କାନାଡାର ମନସ୍ତତ୍ତ୍ୱବିତ୍ ପ୍ରଫେସର୍ ଡକ୍ଟର୍ ପୁରୋହିତ ଅନ୍ତତଃ ସମର୍ଥନ କରିବେ । ଏ ସଂପର୍କରେ ଆମେରିକାର ଆଜିର ଗଣମାଧ୍ୟମ ଆହୁରି ବେଶୀ ପରିମାଣର ଘଟଣା ଓ ପରିସଂଖ୍ୟାନ ପ୍ରତିଦିନ ଯୋଗାଇ ଚାଲିଚି ।

ଏ ବିଷୟ ଏଠାରେ ଉପସ୍ଥାପନର କାରଣ– ବର୍ତ୍ତମାନ ଏ ଆତ୍ମ-ବିସ୍ମରଣ ରୋଗ ଏଠାକାର ଓଡିଆ ଏନ୍.ଆର୍.ଆଇ.ମାନଙ୍କୁ ମଧ୍ୟ ସଂକ୍ରମିତ କରିସାରିଚି । ତାର ପ୍ରମାଣ– ମୁଁ ଏଗୃହକୁ ପ୍ରବେଶ ସମୟରେ ଲକ୍ଷ୍ୟ କରିଚି ଏଠାରେ ଉପସ୍ଥିତ ପ୍ରାୟ ସମସ୍ତ ଦ୍ୱିତୀୟପୀଢିର ଏନ୍.ଆର୍.ଆଇ. ଓଡିଆ ପିଲାମାନେ ନିଜନିଜ ଭିତରେ ଇଂରେଜୀରେ କଥାବାର୍ତ୍ତା ହେଉଛନ୍ତି । ପଚାରି ବୁଝିଲି– ସେମାନେ ପ୍ରାୟ କେହି ଆଉ ନିଜର ମାତୃଭାଷା ଓଡିଆ କହିପାରନ୍ତି ନାହିଁ ବା ବୁଝି ପାରନ୍ତି ନାହିଁ । ତା' ଅର୍ଥ ସେମାନଙ୍କ ପିତାମାତାମାନେ ନିଶ୍ଚୟ ଚାହାନ୍ତି ନାହିଁ ଯେ ନିଜ ପିଲାମାନେ ଓଡିଆରେ କଥାବାର୍ତ୍ତା ହୁଅନ୍ତୁ । ତେଣୁ ସେମାନେ ନିଜ ପିଲାମାନଙ୍କ ସହିତ ଘରେ ଘରେ କେବଳ ଇଂରେଜୀରେ ହିଁ କଥାବାର୍ତ୍ତା କରୁଥିବେ । ହୁଏତ ତାହା ଏ ଦେଶରେ ତିଷ୍ଠିବା ପାଇଁ ଏକାନ୍ତ ଆବଶ୍ୟକ ହୋଇପଡିଚି– ତେଣୁ ମୁଁ ସେମାନଙ୍କୁ ଏଥିପାଇଁ ଦୋଷ ଦେଇପାରିବିନାହିଁ; କିନ୍ତୁ ମନସ୍ତତ୍ତ୍ୱ ସାମାଜିକ ମଣିଷର ଆବଶ୍ୟକତା କଥା ବୁଝେନା । ମନସ୍ତତ୍ତ୍ୱ ତା' ଟ୍ୟାକ୍ସ ଠିକଣା ସମୟରେ ଆଦାୟ କରିନେବ । ଫଳ ହେବ– କିଛି ବର୍ଷ ପରେ ଏ ଦେଶରେ ଜନ୍ମିତ ଭାରତୀୟ ପିଲାମାନେ ଓ ସେମାନଙ୍କର ବଂଶଧରମାନେ ଦିନେ ଏ ଦେଶରେ ଏକ ଅବାଂଛିତ ଜନଗୋଷ୍ଠୀ ରୂପେ ସଂଖ୍ୟାଗରିଷ୍ଠଙ୍କ ଦ୍ୱାରା ବିଚାର୍ଯ୍ୟ ହେବେ । ସେମାନେ ଯେତେ ସୁନ୍ଦର ଇଂରେଜୀ କହୁଥାନ୍ତୁ ବା ଯେତେ ଭଲ ଛାତ୍ରଛାତ୍ରୀଭାବେ ସ୍କୁଲ୍

କଲେଜରେ ପୋଜିସନ୍ ରଖୁଥାନ୍ତୁ ପଛେ, ସେମାନେ ହେବେ ଏ ଦେଶ ପାଇଁ ଅବାଂଛିତ ସଂଖ୍ୟାଲଘୁ । ଏଇ ସମସ୍ୟା ସେଦିନ ଏ ଦେଶର ଜଣେ ପ୍ରସିଦ୍ଧ କଳା ଲେଖକଙ୍କୁ କିପରି ମର୍ମନ୍ତୁଦ ପରିସ୍ଥିତିର ସମ୍ମୁଖୀନ କରାଇଥିଲା ତାହା ଆପଣମାନଙ୍କୁ ଅବିଦିତ ନୁହେଁ । ସେ ଲେଖକଙ୍କ ନାମ– ଆଲେକ୍ସ ହ୍ୟାଲି ଆଉ ତାଙ୍କର ପ୍ରସିଦ୍ଧ ପୁସ୍ତକର ନାମ– 'ଦ ରୁଟ୍' ।

ଆଜି ଆମେରିକାର କଳାଲୋକଙ୍କର ଯେଉଁ ମନସ୍ତାତ୍ତ୍ୱିକ ସମସ୍ୟା ଆଲେକ୍ସ ହ୍ୟାଲିଙ୍କୁ ବିଚଳିତ କରିଚି, ତାହା ଆସନ୍ତାକାଲି ଓଡିଆଙ୍କ ସମେତ ସବୁ ଭାରତୀୟ ଏନ୍.ଆର୍.ଆଇ.ଙ୍କ ବଂଶଧରଙ୍କୁ ନିଶ୍ଚୟ ଆକ୍ରାନ୍ତ କରିବ । ମନେରଖିବାକୁ ହେବ ଏ ସମସ୍ୟା ଭାରତୀୟଙ୍କ ପାଇଁ ନୂଆ ନୁହେଁ । ବିଗତ ଶତାବ୍ଦୀରେ ମଧ୍ୟ ଭାରତୀୟମାନେ ଏଇ ଦୁରାରୋଗ୍ୟ ବ୍ୟାଧିରେ ପ୍ରପୀଡିତ ହୋଇଥିଲେ । ସେତେବେଳେ ଦକ୍ଷିଣ ଆଫ୍ରିକା ଓ କ୍ୟାରିବିୟାନ୍ ଅଞ୍ଚଳକୁ ଇଂରେଜ ଉପନିବେଶବାଦୀମାନେ ବହୁ ସଂଖ୍ୟାରେ ଦାଦନ ଶ୍ରମିକ ବା କୁଲିମାନଙ୍କୁ ଚାଲାଣ କରିଆଣିଥିଲେ ଭାରତରୁ । ସେମାନଙ୍କ ଅବସ୍ଥା ବିଷୟରେ ଆପଣମାନେ ଜାଣିଥିବେ ମହାତ୍ମା ଗାନ୍ଧିଙ୍କ ଆତ୍ମଜୀବନୀରୁ ଅନ୍ତତଃ । ମହାତ୍ମାଗାନ୍ଧି ସେଦିନ ଦୈବାତ୍ ତ୍ରାଣକର୍ତ୍ତା ରୂପେ ଆବିର୍ଭୂତ ହୋଇଥିଲେ ଦକ୍ଷିଣ ଆଫ୍ରିକାରେ ଓ ସେଇଠାରୁ ଆରମ୍ଭ ହୋଇଥିଲା ଭାରତୀୟ ସ୍ୱାଧୀନତା ସଂଗ୍ରାମ ଯଜ୍ଞ– ଯାହା ଶେଷରେ ସମଗ୍ର ବିଶ୍ୱରୁ ଉପନିବେଶବାଦର ଶେଷ କୁଶାଙ୍କୁରଟିକୁ ମଧ୍ୟ ଉପାଡି ଫୋପାଡି ଦେବାକୁ ସମର୍ଥ ହୋଇଥିଲା ।

ବନ୍ଧୁଗଣ, ମନେରଖନ୍ତୁ– ଉପନିବେଶବାଦର ଉତ୍ସ ଆତ୍ମ-ବିସ୍ମୃତି । ଗତଶତାବ୍ଦୀର ଭାରତୀୟ ଶ୍ରମିକ ବା କୁଲିମାନେ ଆପଣମାନଙ୍କ ପରି ଉଚ୍ଚଶିକ୍ଷିତ ନଥିଲେ– ସେମାନେ ଥିଲେ ସଂପୂର୍ଣ୍ଣ ନିରକ୍ଷର । ସେମାନେ କେବଳ କାମକରି ପେଟ ପୋଷିବାକୁ ଆସିଥିଲେ ବିଦେଶ । ସେମାନେ ଯଦି ନିଜର ଭାରତୀୟତାକୁ ଭୁଲିଯାଇଥିଲେ ବା ମାତୃଭାଷାକୁ ଭୁଲିଯାଇଥିଲେ ତାହା ସେମାନଙ୍କ ପାଇଁ ଦୋଷାବହ ନହୋଇପାରେ । କିନ୍ତୁ ଯଦି ଆପଣମାନଙ୍କ ଭଳି ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀଧାରୀ ମେଧାବୀ ଛାତ୍ରମାନେ ଚାକିରିସର୍ବସ୍ୱ ହୋଇ ନିଜର ଜନ୍ମଭୂମି ଓ ମାତୃଭାଷାକୁ ଭୁଲି ଦ୍ୱିତୀୟଶ୍ରେଣୀର ନାଗରିକତ୍ୱକୁ ନେଇ ଗର୍ବିତ ହେଉଥାନ୍ତି ଆଉ ନିଜ ପିଲାମାନଙ୍କୁ ମଧ୍ୟ ସେଇ "survival of the fittest" – ନୀତିରେ ଦୀକ୍ଷିତ କରୁଥାନ୍ତି ତେବେ ଇତିହାସ ଦିନେ ନା ଦିନେ ତା' ଋଣ ପରିଶୋଧ ପାଇଁ ଦାବୀକରିବ । ଆପଣମାନଙ୍କର ବଂଶଧରମାନେ ଏ ଦେଶରେ ଯେତେ ସଂଭ୍ରାନ୍ତ ଧନୀଲୋକଙ୍କ ଶ୍ରେଣୀରେ ଗଣା ହେଲେ ମଧ୍ୟ ବହୁ ମନସ୍ତାତ୍ତ୍ୱିକ ନିର୍ଯାତନାର ଶିକାର ହେବେ । ବହୁ ଆଧ୍ୟାତ୍ମିକ ସଂକଟ ସେମାନଙ୍କୁ ଗ୍ରାସ କରିବା ଅସଂଭବ ନୁହେଁ ।

ବନ୍ଧୁଗଣ, ଏ ସବୁ ଦୃଷ୍ଟିରୁ ନିଜକୁ ଓ ନିଜର ବଂଶଧରମାନଙ୍କର ମଙ୍ଗଳ ନିମନ୍ତେ ଆପଣମାନେ ଆପଣମାନଙ୍କ ଜନ୍ମଭୂମି, ଧର୍ମ, ମାତୃଭାଷାକୁ ଭୁଲନ୍ତୁ ନାହିଁ । ଆପଣମାନଙ୍କ ପାଇଁ ଏଇଠି ମୁଁ ଏକ ଶୁଭ-ସଂବାଦ ପରିବେଷଣ କରୁଚି । ଦୟାକରି କାନ ଦିଅନ୍ତୁ ।

ମୁଁ ଭାରତରୁ ଆସିବା ପୂର୍ବରୁ ଆମ ଦେଶରେ ବର୍ତ୍ତମାନ ଚାଲିଥିବା ଏକ ଯୁଗାନ୍ତକାରୀ ରାଜନୈତିକ ଚିନ୍ତନ ପ୍ରକ୍ରିୟାକୁ ଅଧ୍ୟୟନ କରୁଥିଲି । ସେ ଚିନ୍ତନର ଭିତ୍ତିହେଲା – ଆଜିର ଜଗତିକରଣ ବା ଗ୍ଲୋବାଲାଇଜେସନ୍ ଅର୍ଥନୀତିକୁ ନେଇ ସମଗ୍ର ବିଶ୍ୱରେ ଚାଲିଥିବା ନାନା ହଇଚଇ ସତ୍ତ୍ୱେ ବର୍ତ୍ତମାନର ଭାରତ ସରକାର ମୁକ୍ତବଜାର ନୀତିକୁ ପୂର୍ଣ୍ଣପ୍ରାଣରେ ଗ୍ରହଣ କରିନେଇସାରିଚନ୍ତି । ପ୍ରଧାନମନ୍ତ୍ରୀ ନରସିଂହ ରାଓ ଓ ତାଙ୍କ ମନ୍ତ୍ରୀମଣ୍ଡଳରେ ନୂଆକରି ଯୋଗଦେଇଥିବା ଜଣେ ପ୍ରବୀଣ ଅର୍ଥନୀତି ବିଶେଷଜ୍ଞ ଡକ୍ଟର ମନମୋହନ ସିଂହ ଏକ ଅଭିନବ ଯୋଜନା ପ୍ରସ୍ତୁତ କରିସାରିଚନ୍ତି । ଆପଣମାନେ ଜାଣନ୍ତି ଭାରତ ବର୍ତ୍ତମାନ ବିଶ୍ୱ-ବାଣିଜ୍ୟ ସଂସ୍ଥା (W.T.O.) ସହିତ ଚୁକ୍ତିବଦ୍ଧ ହୋଇ ଏକ ବିଧିବଦ୍ଧ ସଭ୍ୟ ବନିସାରିଚି । ବର୍ତ୍ତମାନ ଭାରତ ସରକାରଙ୍କ ପଲିସି ହେଉଚି– ପୂର୍ବର ନେହେରୁଭିଆନ୍ ଅର୍ଥନୀତିକୁ ପରତ୍ୟାଗ କରି ଭାରତ ପୃଥିବୀର ସବୁ ଦେଶଙ୍କ ସହିତ ମୁକ୍ତ-ବାଣିଜ୍ୟ କରିବ । ବିଦେଶୀ-ପୁଂଜି ଭାରତରେ ବିନିଯୋଗ ପାଇଁ ବର୍ତ୍ତମାନ ଆଉ ପୂର୍ବର କଟକଣା ନାହିଁ । ଭାରତର ବ୍ୟୁରୋକ୍ରାସିର ବଡ କଳଙ୍କ କୋଟା-ପରମିଟ୍‌ରାଜର ଅବସାନ ଘଟିଚି । ବର୍ତ୍ତମାନ ବିଦେଶୀ ପୁଞ୍ଜି ସଂଗ୍ରହ ପାଇଁ ଭାରତର ସବୁ ରାଜ୍ୟରୁ ମନ୍ତ୍ରୀମାନେ ବିଦେଶରେ ବୁଲିବୁଲି ବହୁଦେଶୀୟ କଂପାନୀମାନଙ୍କୁ ନିଜ ନିଜ ରାଜ୍ୟରେ ପୁଞ୍ଜି ଖଟେଇବାକୁ ପ୍ରବର୍ତ୍ତାଇ ଚାଲିଚନ୍ତି । ଏ ଦିଗରେ ଆମ ଓଡିଶା ପଛରେ ନାହିଁ । ଓଡିଶାରୁ ବହୁ ମନ୍ତ୍ରୀ ଓ ଅଫିସର୍ ବର୍ତ୍ତମାନ ମଧ୍ୟ ସେଇ ପୁଂଜି ସଂଗ୍ରହ ପ୍ରସ୍ତାବ ନେଇ ଆମେରିକାରେ ଉପସ୍ଥିତ ଅଛନ୍ତି ।

ମୋର ପ୍ରସ୍ତାବ– 'ଓସା' ପକ୍ଷରୁ ଏଇ ଅଧିବେଶନରେ ଭାରତ ସରକାରଙ୍କର ଏଇ ମୁକ୍ତ-ବାଣିଜ୍ୟ ନୀତିକୁ ସମର୍ଥନ କରି ପ୍ରସ୍ତାବ ଗ୍ରହଣ କରନ୍ତୁ ଏବଂ ଓଡିଶାରେ ଆପଣମାନେ ନିଜେ ବହୁ ପରିମାଣରେ ପୁଞ୍ଜି ଖଟାନ୍ତୁ, ମୁକ୍ତବଜାରରେ ସେୟାର୍ କିଣନ୍ତୁ । ଖାଲି ସେତିକି ନୁହେଁ– ସେଠାକାର ବ୍ୟାଙ୍କମାନଙ୍କରୁ ମ୍ୟୁଚୁଆଲ୍ ବଣ୍ଡ ଆଦି କିଣନ୍ତୁ, ଭାରତର ଅର୍ଥନୀତିକୁ ସୁଦୃଢ କରିବାକୁ ବହୁମାତ୍ରାରେ ଡଲାର ପ୍ରେରଣ କରନ୍ତୁ । ଆମ ଏନ୍.ଆର୍.ଆଇ. ମାନେ ଜାଣିରଖନ୍ତୁ ଅଗାମୀ କେତେବର୍ଷ ଭିତରେ ଭାରତ ହିଁ ହେବ ପୃଥିବୀର ସର୍ବଶ୍ରେଷ୍ଠ ଧନୀରାଷ୍ଟ୍ର ! ଇତିହାସ କହେ ସପ୍ତଦଶ ଶତାବ୍ଦୀର ଭାରତ ଥିଲା ବିଶ୍ୱର ସର୍ବଶ୍ରେଷ୍ଠ ଧନୀରାଷ୍ଟ୍ର । ସେତେବେଳେ ଭାରତରେ ଆଓରଙ୍ଗଜେବ୍‌ଙ୍କ ଶାସନ । ତଥାପି ଧନୀରାଷ୍ଟ୍ରଭାବେ ଭାରତର ଏତେ ପ୍ରସିଦ୍ଧି ଥିଲା ଯେ ପାଶ୍ଚାତ୍ୟ ଉପନିବେଶବାଦୀମାନେ ସେଇ ଦେଶ ସହିତ ବାଣିଜ୍ୟ କରିବାକୁ ବ୍ୟାକୁଳ ହୋଇ ପାଲଟଣା ଜାହାଜରେ ବାଟ ଖୋଜିଖୋଜି ଯାଇ ପହଞ୍ଚିଥିଲେ ଭାରତରେ । ଇଷ୍ଟ୍‌ଇଣ୍ଡିଆ କଂପାନୀ ଥିଲା ସେଇଭଳି ଏକ ଛୋଟିଆ ଇଂରେଜୀ କଂପାନୀ । ସେମାନେ ଆଓରଙ୍ଗଜେବ୍‌ଙ୍କ ଦରବାରରେ ନତଜାନୁ ହୋଇ ଅନୁମତି ମାଗିଥିଲେ ଭାରତ ସହିତ ବାଣିଜ୍ୟ ବ୍ୟବସାୟ ପାଇଁ । ତା' ପରବର୍ତ୍ତୀ ଇତିହାସ ଆପଣମାନେ ଭଲ କରି ଜାଣନ୍ତି– ତାର ତର୍ଜମା ଅନାବଶ୍ୟକ ।

ଶେଷରେ ମୁଁ ପୁଣି ଆପଣମାନଙ୍କୁ ଅନୁରୋଧ କରୁଚି – ଭାରତକୁ ଭୁଲନ୍ତୁ ନାହିଁ– ଜନ୍ମମାଟି ଓଡିଶାକୁ ଭୁଲନ୍ତୁ ନାହିଁ । ଓଡିଆଭାଷା ଓ ଶ୍ରୀଜଗନ୍ନାଥଙ୍କୁ ଆଦୌ ପାଶୋରିବେ ନାହିଁ । ଏଣିକି ନିଜକୁ ଭାରତୀୟ ଓ ଓଡିଶାର ଲୋକ ଭାବେ ପରିଚୟ ଦେଇ ଗର୍ବର ସହିତ ମୁଣ୍ଡଟେକି ବଞ୍ଚନ୍ତୁ ଓ ବହୁ ପରିମାଣରେ ଡଲାର ଭାରତକୁ ପଠାନ୍ତୁ । ନମସ୍କାର ।

– ମୋ ମୁହଁରୁ କଥା ସରିଚି କି ନାହିଁ ହଠାତ୍ ପ୍ରତିବାଦ ଶୁଣାଗଲା ମଞ୍ଚାସୀନ ଆମେରିକାନ୍ ଅତିଥି ଟ୍ରୟ ମିସିଗାନ୍ ସିଟିର ମେୟର୍ ଶ୍ରୀମତୀ ଜ୍ୟାଁ ଷ୍ଟାଇନ୍‌ଙ୍କ କଣ୍ଠରୁ । ସେ ଉଚ୍ଚସ୍ୱରରେ ପଚାରିଲେ, “Why ? Why should they send US Dollars outside ?”

ସଭା ଗୃହ ସ୍ତବ୍ଧ ହେଇଗଲା । ମୁଁ ଟିକେ ହଡବଡେଇଗଲି । ଭାରତର ବାଣିଜ୍ୟ ଦୂତ କେ. ଆର. ସିଂହ ମତେ ଚାହିଁଲେ । ମୁଁ ଭାବିଲି ବୋଧହୁଏ ପ୍ରୋଟୋକଲ୍ କୋଉଠି ବିଗିଡି ଗଲା କି କ’ଣ । କିନ୍ତୁ ତାଙ୍କ କାହିଁକି ପ୍ରଶ୍ନର ଉତ୍ତର ତତ୍‌କ୍ଷଣାତ୍ ମୋ’ ପାଟିରୁ ବାହାରିପଡିଲା– “Because your Excellency is only the adopted mother Yashoda, while their real mother Devaki is languishing over there.”

ହଠାତ୍ ଘନଘନ କରତାଳିରେ ହଲ୍ କମ୍ପିଉଠିଲା । ଯଶୋଦା ଓ ଦେବକୀ ଉଦାହରଣ ଶ୍ରୋତାମାନଙ୍କ ମନକୁ ପାଇଗଲା । ମେୟର୍ ଷ୍ଟାଇନ୍ ମୋ ଉତ୍ତରର ମର୍ମ ବୁଝି ପାରିଲେ ନାହିଁ । କେ. ଆର. ସିଂହ ତାଙ୍କ ପାଖ ଚେୟାର୍‌ରୁ ଝୁଙ୍କିପଡିଲେ ମାଡାମ୍‌ଙ୍କ କାନ ପାଖକୁ । କ’ଣ କହିଲେ କେଜାଣି– ବୋଧହୁଏ ଯଶୋଦା ଓ ଦେବକୀ ନାମର ତାତ୍ପର୍ଯ୍ୟ ଚୁମ୍ବକରେ ବୁଝେଇଦେଲେ । ପରେ ପରେ ମାଡାମ୍ ଠିଆହେଇପଡିଲେ– ସଭାପତି ଦିଗମ୍ବର ମିଶ୍ରଙ୍କୁ ଅନୁରୋଧ କଲେ ତାଙ୍କୁ ଆଉଥରେ ସଭାକୁ ସଂବୋଧନ କରିବା ସୁଯୋଗ ଦେବାକୁ ।

ମେୟର୍ ଜ୍ୟାଁ ଷ୍ଟାଇନ୍ ଏଥର ସମସ୍ତଙ୍କୁ ଆହୁରି ଅଧିକ ବିସ୍ମିତ କଲେ । ପ୍ରଗଳ୍‌ଭ ସ୍ୱରରେ କହିଲେ– ମୁଁ ମୁଖ୍ୟବକ୍ତାଙ୍କ ଶେଷ ମନ୍ତବ୍ୟଟା ସତରେ ବୁଝିପାରିନଥିଲି– ଭାରତର କନ୍‌ସଲ୍ ଜେନେରାଲ୍ ମତେ ବୁଝେଇଦେଲେ– ବୁଝିଗଲି । ବକ୍ତା ଠିକ୍ କହୁଚନ୍ତି– ଏ ଦେଶ ଆପଣମାନଙ୍କ ମା’ ନୁହେଁ, ପାଳିତା ମା’ କେବଳ । ନିଜ ମା’କୁ କେହି କେବେ ଭୁଲିଯାଇପାରେନା । ପରିସ୍ଥିତିରେ ପଡି ନିଜର ମା’, ବାପାଙ୍କୁ ଭୁଲିଯାଇଥିବା ମଣିଷ ଆତ୍ମ ପରିଚୟ ହରାଇ ପାଗଳ ହେଇଯିବା ବିଚିତ୍ର ନୁହେଁ । ସେ ଠିକ୍ କହୁଚନ୍ତି । ଆପଣମାନେ ଜାଣନ୍ତି ମୁଁ ନିଜେ ଜଣେ ଜର୍ମାନ୍ ଜାତିର ଲୋକ । ମୋ’ ନାଁକୁ ତ ଲୁଚେଇ ନାହିଁ । ମୋ’ ନାମ ପଛରେ ଯୋଡ ଷ୍ଟାଇନ୍ ସାଙ୍ଗିଆ ଲାଗିଚି ସେଇଟା ମୋ’ ଅସଲ ମା’ର ପରିଚୟ । ଏଇ ପରିଚୟ ଯୋଗୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଏଇ ଆମେରିକାରେ ଆମ ଜର୍ମାନ୍ ଜାତିର ଲୋକଙ୍କୁ ସେବେଳର ସରକାର ଜେଲରେ ଠୁଙ୍କି ଦେଇଥିଲେ । ଆମେ ଚିହ୍ନଟ ହେଇଥିଲୁ ହିଟଲରଙ୍କ ନାଜିବାଦର ସମର୍ଥକ ଭାବେ । କେହି ଚିନ୍ତା କରିନଥିଲେ

ଆମେମାନେ ଏ ଦେଶର ନାଗରିକତ୍ୱ ପାଇ କେତେ ପୁରୁଷ ଆଗରୁ ରହିଆସୁଥିଲୁ । ଆମେ ହେଲୁ ଶତୃପକ୍ଷ ସେମାନଙ୍କ ଆଖିରେ । ଯୁଦ୍ଧ ପରେ ଆମେ ଘେଟ୍ଟୋରୁ ମୁକ୍ତିପାଇଥିଲୁ । ସେ ସମୟ ମନରୁ ପାଶୋର ଯିବାର ନୁହଁ । କିଏ କହିବ ସେ ଅବସ୍ଥାର ପୁନରାବୃତ୍ତି ନହବ ? କୁହାଯାଏ ଇତିହାସର ପୁନରାବୃତ୍ତି ଘଟେ । ବକ୍ତାଙ୍କ ମତକୁ ସ୍ୱାଗତ କରୁଚି । ଆପଣମାନେ ନିଜ ମାତୃଦେଶକୁ ଭୁଲନ୍ତୁ ନାହିଁ । ବିପଦ ଆପଦବେଳେ ମା'କୁ ସାହାଯ୍ୟ କରିବା ମାନବିକତାର କାମ । ମୁଁ ଏଠାରେ ଆଉ ଏକ କଥା ବି ସ୍ୱୀକାର କରୁଚି– ଭାରତୀୟମାନଙ୍କ ପାଖରେ ମୁଁ ବ୍ୟକ୍ତିଗତ ଭାବେ ଚିରଋଣୀ । ଆପଣମାନେ ଶୁଣିଲେ ନିଶ୍ଚୟ ଖୁସି ହେବେ– ଜଣେ ଭାରତୀୟ ଡାକ୍ତର ମୋ ଜୀବନ ରକ୍ଷା କରିଛନ୍ତି । କେତେବର୍ଷ ତଳେ ମୁଁ ଏକ ଦୁରାରୋଗ୍ୟ ରୋଗର ଶିକାର ହେଇଥିଲି । ଆମ ଆମେରିକାନ୍ ଡାକ୍ତରମାନେ ଆଶା ଛାଡିଦେଇଥିଲେ । କିନ୍ତୁ ସେଇ ଭାରତୀୟ ଡାକ୍ତର ଜଣକ ମୋର ଚିକିତ୍ସା ଦାୟିତ୍ୱ ହାତକୁ ନେବା ପରେ ମୁଁ ଭଲହେଲି ।''

– କରତାଳିରେ ସଭାସ୍ଥଳ ପୁଣି ମୁଖରିତ ହେଲା ।

ପରେ ପରେ ମାଡାମ୍ ତାଙ୍କ ପୋଲିଓ ବ୍ୟାଗ୍ ଭିତରୁ ଦୁଇଟି ବଡ ବଡ ଚାବିକାଠି ବାହାରକଲେ– ପ୍ରାୟ ଆଠଇଞ୍ଚ ଲମ୍ବର ଚକ୍ ଚକ୍ ପିତ୍ତଳର ଚାବିକାଠି । ସେ ଦୁଇଟିକୁ ପ୍ରଦର୍ଶିତ କରି ମାଡାମ୍ ଘୋଷଣା କଲେ, "Now I present these two keys to our distinguished guests as token of high honour. This is our custom to present the key of our city Troy, Mishigan, to our most valued guests."

ଟ୍ରୟ ସହରର ଚାବିକାଠି ମତେ ଓ ଭାରତର ବାଣିଜ୍ୟଦୂତଙ୍କୁ ଅର୍ପଣ କଲେ ମାଡାମ୍ ମେୟର୍ ଜ୍ୟାଁ ଷ୍ଟିନ୍ ।

ସଭାର ଅବଶିଷ୍ଟ କାର୍ଯ୍ୟକ୍ରମ ଚାଲିଲା । ଅନ୍ୟବକ୍ତାମାନଙ୍କ ଭାଷଣ ଓ ସଭାପତିଙ୍କ ସମ୍ବୋଧନ ଅନ୍ତେ ସକାଳଓଳିର ମୁଖ୍ୟ କାର୍ଯ୍ୟକ୍ରମ, ଉଦ୍‌ଘାଟନ ଅଧିବେଶନ ଶେଷକରାଗଲା ।

ସେଦିନର ଅପରାହ୍ନ ଓ ସନ୍ଧ୍ୟା ଅଧିବେଶନ ପରେ ଓଡିଶୀନୃତ୍ୟ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମ କରାଗଲା । ପରଦିନର କାର୍ଯ୍ୟକ୍ରମ ଗୁଡିକ ମଧ୍ୟ ଯଥାବିଧି ଚାଲିଲା । ୫, ଜୁଲାଇ ସକାଳୁ ଆମେ ଟ୍ରୟ ଛାଡିଲୁ । ସନ୍ଧ୍ୟାରେ ପହଞ୍ଚିଲୁ ଚାଟାନୁଗାରେ ।

## ଆମେରିକାରେ ଇସ୍‌ଲାମିକ୍ ଆତଙ୍କବାଦର ପ୍ରଥମ ପଦପାତ

୧୯୯୩ରେ ମୋର ଆମେରିକା ଭ୍ରମଣବର୍ଷ ତିନୋଟି ସ୍ମରଣୀୟ ଆନ୍ତର୍ଜାତିକ ଗୁରୁତ୍ୱପୂର୍ଣ୍ଣ ଘଟଣା ଏ ଦେଶରେ ଘଟିଥିଲା । ପ୍ରଥମଟି ହେଲା– ସେବର୍ଷ ଜାନୁଆରିରେ ବିଲ୍ କ୍ଲିଣ୍ଟନ୍ ଆମେରିକାର ୪୨ତମ ପ୍ରେସିଡେଣ୍ଟ୍‌ଭାବେ ଶପଥ ଗ୍ରହଣ କରିଥିଲେ ଓ ଲେଡି

ହିଲାରି କ୍ଲିଣ୍ଟନ୍‌ଙ୍କ ସହ ହ୍ୱାଇଟହାଉସ୍‌ରେ ପ୍ରବେଶ କରିଥିଲେ । ସେ ବର୍ଷ ମଧ୍ୟ ଥିଲା ସ୍ୱାମୀ ବିବେକାନନ୍ଦଙ୍କ ସିକାଗୋ ଧର୍ମସଭାରେ ଭାଷଣର ଶତାବ୍ଦୀ ପୂର୍ତ୍ତିର ବର୍ଷ । ସିକାଗୋ ଓ ନ୍ୟୁୟର୍କରେ ସେଥିପାଇଁ ଭାରତୀୟମାନେ ଆନ୍ତର୍ଜାତିକ ସ୍ତରର ବହୁ ଆଡମ୍ବରପୂର୍ଣ୍ଣ ସ୍ମାରକୀ ସଭାମାନ ଆୟୋଜନ କରିଥିଲେ । ସେ ସବୁ ସଭାରେ ଯୋଗଦେବାର ସୌଭାଗ୍ୟ ମୋର ନଥିଲା । ତଥାପି ମୁଁ ନିଜକୁ ଭାଗ୍ୟବାନ୍ ମନେକରେ ଯେ ସ୍ୱାମିଜୀଙ୍କର ଆମେରିକା ଭ୍ରମଣର ଶତାବ୍ଦୀ ବର୍ଷ ହିଁ ଆମେରିକା ଭ୍ରମଣର ଅପୂର୍ବ ଯୋଗାଯୋଗ ଘଟିପାରିଥିଲା ମୋ' ଜୀବନରେ ! ଏ ଦୁଇଟି ଥିଲା ଶୁଭଙ୍କରୀ ଘଟଣା ।

କିନ୍ତୁ ତୃତୀୟ ଘଟଣାଟି ଥିଲା ବାସ୍ତବରେ କେବଳ ଆମେରିକା ନୁହେଁ; ସାରା ବିଶ୍ୱ ପାଇଁ ଘୋର ମାରାତ୍ମକ ଦୁଃସମୟର ପୂର୍ବାଭାସ । ତା ୬ ଜୁଲାଇ ୧୯୯୩ ଦିନ ଗଣମାଧ୍ୟମରେ ପ୍ରଚାରିତ ହେଲା– ଚାରିମାସ ତଳେ, ଫେବୃଆରି ୨୬ରେ ନ୍ୟୁୟର୍କର ୱାର୍ଲଡ଼ ଟ୍ରେଡ୍ ସେଣ୍ଟରରେ ଯେଉଁ ଆତଙ୍କବାଦୀ ବୋମା ବିସ୍ଫୋରଣ କାଣ୍ଡ ଘଟିଥିଲା ତାର ମୁଖ୍ୟନାୟକ ଏକଆଖିଆ ମୁଲ୍ଲା ଶେଖ୍ ଓମାର ଅବଦୁଲ ରହମାନ୍ ଧରାପଡିଥିଲା ଓ ତାର ବିଚାର ଶେଷହୋଇଥିଲା । ସେ ଦୋଷୀ ସାବ୍ୟସ୍ତ ହୋଇ ଆଜୀବନ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲା । ମୁଲ୍ଲା ଦେହରୁ ତାର ଧର୍ମୀୟ ପୋଷାକ ଉତାରି ଦିଆଯାଇଥିଲା, ତାକୁ ସାଧାରଣ କଏଦୀର ଜେଲ୍ ପୋଷାକ ପିନ୍ଧାଇଦିଆଯାଇଥିଲା । ସେ ସଂବାଦରୁ ଆହୁରି ଜଣାଯାଇଥିଲା ଯେ ଏଇ ମୁଲ୍ଲା ଜଣେ ଇଜିପ୍ଟ ନିବାସୀ ସୁନ୍ନୀ-ମୁସଲମାନ । ତାର ଆମେରିକା ପ୍ରତି ପ୍ରବଳ ଘୃଣା– ତାହା ଏତେ ଗଭୀର ଥିଲା ଯେ ସେ ଚାହୁଁଥିଲା ଆମେରିକାକୁ ସମୂଳେ ଧ୍ୱଂସ କରିଦେବାକୁ । ତେଣୁ ସେ ଆରମ୍ଭ କରିଥିଲା ତାର ବିଧ୍ୱଂସୀ କ୍ରିୟାକଳାପ ନ୍ୟୁୟର୍କ ଟ୍ରେଡ୍‌ସେଣ୍ଟରରୁ । ସେ ମଧ୍ୟ ଯୋଜନା କରିଥିଲା ନ୍ୟୁୟର୍କର ମୁଖ୍ୟ ଯୋଗାଯୋଗ ରାସ୍ତା ହଡସନ୍ ନଦୀର ଭୂତଳ ଟନେଲ୍‌ରେ ବିସ୍ଫୋରଣ ଘଟାଇବା ପାଇଁ । ତଦ୍ୱାରା ଆମେରିକାର ପ୍ରଧାନ ବାଣିଜ୍ୟ ସହର ନ୍ୟୁୟର୍କ ସଂପୂର୍ଣ୍ଣ ପକ୍ଷାଘାତ ଗ୍ରସ୍ତ ହୋଇଯାଇଥାନ୍ତା ଓ ଆମେରିକାର ଅର୍ଥନୀତିକୁ ମୁମୂର୍ଷୁ କରିଦିଆଯାଇଥାନ୍ତା ।

ତେବେ ଲକ୍ଷ୍ୟ କରିଥିଲି– ଗଣମାଧ୍ୟମରେ ଏ ଖବର ପ୍ରକାଶ ପାଇବା ସତ୍ତ୍ୱେ ମୁଲ୍ଲା ଓମାର ଅବଦୁଲ୍ ରହମାନ୍ ବା ତାର ଆତଙ୍କବାଦୀ ଇସ୍‌ଲାମିକ୍ ଗୋଷ୍ଠୀର ଷଡଯନ୍ତ୍ରକୁ ସେତେବେଳେ ଆମେରିକାର ଜନସାଧାରଣ ବିଶେଷ ଗୁରୁତ୍ୱ ଦେଇନଥିଲେ । ସେମାନେ ଭାବୁଥିଲେ– ଆତଙ୍କବାଦ ବିଶ୍ୱ ସମସ୍ୟା ନୁହେଁ, ଏହା ଏକ ଆଞ୍ଚଳିକ ସମସ୍ୟା ମାତ୍ର । ସେସବୁ ସମସ୍ୟା ମଧ୍ୟପ୍ରାଚ୍ୟରେ ହିଁ ଘଟେ– ବିଶେଷତଃ ଭାରତ ଉପରେ ଇସଲାମିକ୍ ଆତଙ୍କବାଦୀ ଆକ୍ରମଣକୁ ଅଧିକାଂଶ ଆମେରିକାନ୍ ନ୍ୟାୟସଙ୍ଗତ ମନେକରୁଥିଲେ । ମୁଁ ନିଜେ କେତେକ ମଧ୍ୟବିତ୍ତ ବୁଦ୍ଧିଜୀବୀ ଆମେରିକାନ୍‌ଙ୍କ ସହିତ କଥାବାର୍ତ୍ତାରୁ ଏ ତଥ୍ୟ ଜାଣିବାକୁ ପାଇଥିଲି । ସେମାନେ କହୁଥିଲେ– ଭାରତର ହିନ୍ଦୁମାନେହିଁ ମୁସଲମାନଙ୍କ

ଉପରେ କ୍ରମାଗତ ଅତ୍ୟାଚାର କରିଆସୁଛନ୍ତି । କାଶ୍ମୀର ଉପରେ ପାକିସ୍ଥାନର ନ୍ୟାୟସଂଗତ ଦାବୀକୁ ଭାରତ ମାନୁନାହିଁ, ତେଣୁ କାଶ୍ମୀର ସମସ୍ୟା ସ୍ୱାଧୀନତା ପରଠାରୁ ସେଠାରେ ଉପୁଜିଚି । ହିନ୍ଦୁମାନେ ହିଁ କାଶ୍ମୀର ସମସ୍ୟାଜନିତ ଆତଙ୍କବାଦ ପାଇଁ ଦାୟୀ । ଏଇ କାରଣରୁ ଆମେରିକା ପାକିସ୍ଥାନକୁ ଅସ୍ତ୍ରଶସ୍ତ୍ର ଯୋଗାଇଆସୁଚି, ନହେଲେ ଭାରତ କୋଉ କାଳୁ ବିଚରା ପାକିସ୍ଥାନ ଭଳି ଏକ କ୍ଷୁଦ୍ର ଦେଶକୁ କୁକ୍ଷୀଗତ କରିସାରନ୍ତାଣି ।

କିନ୍ତୁ ଆମେରିକାବାସୀଙ୍କ ଆଖି ଫିଟିଲା ବର୍ଷ ଆଠଟା ପରେ । ୨୦୦୧, ସେପ୍ଟେମ୍ବର ନ' ତାରିଖରେ (୯/୧୧) ଘଟିଲା ନ୍ୟୁୟର୍କର ୱଲର୍ଡ-ଟ୍ରେଡ୍-ସେଣ୍ଟର୍ ଉପରେ ନାହିଁ ନଥିବା ବିଧ୍ୱଂସକାରୀ ଆକ୍ରମଣ । ୧୧୦ ମହଲାର ପୃଥିବୀର ସର୍ବୋଚ୍ଚ ଟାୱାର ଦୁଇଟା ଆଖି ଆଗରେ ଧୂଳିସାତ୍ ହେଇଗଲା । ତା'ସହିତ ଆମେରିକାର ସାମରିକ ଶକ୍ତିର ମୁଖ୍ୟକେନ୍ଦ୍ର 'ପେଣ୍ଟାଗନ୍'କୁ ମଧ୍ୟ ଇସଲାମିକ୍ ଆତଙ୍କବାଦୀମାନେ ଆକ୍ରମଣକରି ଆଂଶିକ କ୍ଷୟକ୍ଷତି ଘଟାଇବାକୁ ସମର୍ଥ ହେଲେ ।

ଇସ୍‌ଲାମିକ୍ ଆତଙ୍କବାଦୀ ଗୋଷ୍ଠୀର ଅସଲ ମତଲବ ସଂପର୍କରେ ଆମେରିକାର ଜନମତ ତା'ପରେ ଯାଇ ସ୍ପଷ୍ଟ ହୋଇଥିଲା ।

୧୯୯୩ରେ ମୋ' ଆମେରିକା ଭ୍ରମଣ ଏସବୁ ଦୃଷ୍ଟିରୁ ଥିଲା ଅତ୍ୟନ୍ତ ଶିକ୍ଷାପ୍ରଦ ।

## ଆମେରିକାର କେତେକ ଗୁରୁତ୍ୱପୂର୍ଣ୍ଣ ଦର୍ଶନୀୟ ସ୍ଥାନ ଭ୍ରମଣ

ତା ୪ ସେପ୍ଟେମ୍ବର ୧୯୯୩– ଏଇ ପ୍ରଥମଥର ଆମେରିକା ଭ୍ରମଣ ସମୟରେ ଆମେ ଆମେରିକାର କେତେକ ଅତି ଗରୁତ୍ୱପୂର୍ଣ୍ଣ ସ୍ଥାନ ଓ ଅନୁଷ୍ଠାନ ବୁଲି ଦେଖିଥିଲୁ । ସେଦିନ ଆମେ ବାହାରିଲୁ ଚାଟାନୁଗାରୁ କାର୍‌ରେ ପ୍ରାୟ ଛ'ଶହ ମାଇଲ୍ ଦକ୍ଷିଣରେ ଫ୍ଲୋରିଡାକୁ । ସେଠାରେ ମୁଖ୍ୟ ଦର୍ଶନୀୟ ସ୍ଥାନ ହେଲା ଡିଜ୍‌ନିଲ୍ୟାଣ୍ଡ, ଏପ୍‌କଟ୍ (EPCOT) ସେଣ୍ଟର୍, ନାସା, କେପ୍-କାନାଭେରାଲ୍‌ରେ କେନେଡି ମହାକାଶଯାନ ଉତ୍‌କ୍ଷେପଣ କେନ୍ଦ୍ର, ଡେଟୋନା ବିଚ୍ ଇତ୍ୟାଦି ।

## ଡିଜ୍‌ନିଲ୍ୟାଣ୍ଡ ଓ ଏପ୍‌କଟ୍ ସେଣ୍ଟର୍, ଅର୍ଲାଣ୍ଡୋ, ଫ୍ଲରିଡା

ଫ୍ଲରିଡା ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣପୂର୍ବରେ, ଆଟ୍‌ଲାଣ୍ଟିକ୍ ମହାସାଗର ଉପକୂଳର ଏକ ସମୃଦ୍ଧ ରାଜ୍ୟ । ଏହାର ମୁଖ୍ୟ ଅର୍ଥନୀତି ଟୁରିଜିମ୍‌କୁ କେନ୍ଦ୍ର କରି । ତେବେ ଫଳଚାଷ ପାଇଁ ଏ ରାଜ୍ୟ ମଧ୍ୟ ବିଖ୍ୟାତ । ଫ୍ଲରିଡା ସୀମା ଟପିବାମାତ୍ରେ ବାଟ ଯାକ ଦେଖିଲୁ ବ୍ୟାପକ କମଳା ବଗିଚା ଆଉ ବିଚିତ୍ର ଜାତିର ଉଦ୍ଭିଦ । ଏଠି ଗୋଟିଏ ଜାତିର ବରଗଛ ଅଛି ଯାହାର ଓହଳ ଭାରତର ବର ଓହଳ ପରି ମୋଟା ମୋଟା ଚେର ପରି ତଳକୁ ଲମ୍ବି

ନଥାଏ । ଓହଳ ପରିବର୍ତ୍ତେ ଏଠାକାର ବରଗଛ ଡାଳରୁ ବାହାରେ ସରୁସରୁ ଗୋଛା ଗୋଛା ଦାଢି ଭଳି କୈଶିକ ଚେର । କେରାକେରା ସୂତା ପ୍ରତି ଡାଳରୁ ସ୍ଥାନେ ସ୍ଥାନେ ଓହଳିବାଦ୍ୱାରା ଦୂରରୁ ମନେହେବ ଏଠାକା ବରଗଛର ଦାଢି ଥାଏ– ଠିକ୍ ଆମ ଭାରତୀୟ ଋଷିମୁନିମାନଙ୍କ ମୁହଁରୁ ଲମ୍ବିଥିବା ଦାଢି ଭଳି ଏଗୁଡ଼ିକର ରୂପ । ମୁଁ ଏ ଗଛମାନଙ୍କୁ 'ଋଷି ବୃକ୍ଷ' ନାଁ ଦେଇଥିଲି । ତେବେ ଫ୍ଲୋରିଡାର ମୁଖ୍ୟ ଆକର୍ଷଣ ହେଲା– 'ଡିଜନିଲ୍ୟାଣ୍ଡ' ଓ 'ଏପ୍‌କଟ୍ ସେଣ୍ଟର୍' । ଏଗୁଡ଼ିକୁ କହନ୍ତି ''ଥିମ୍ ପାର୍କ'' । ଏ ପାର୍କର ଉଦ୍ଦେଶ୍ୟ– ଦର୍ଶକର କଳ୍ପନା-ଶକ୍ତିର ପୁନର୍ଜାଗରଣ କରାଇବା । ତାହା ସଂଭବ ହୁଏ ଦୁଇଟି ପନ୍ଥାରେ– ପ୍ରତ୍ୟେକ ମଣିଷ ଭିତରେ ସ୍ୱପ୍ନ ଦେଖିବାର ପ୍ରବୃତ୍ତିର ଜାଗରଣ ମାଧ୍ୟମରେ ଅଥବା ବିଜ୍ଞାନ ଓ ବୈଷୟିକ ଜ୍ଞାନର ସୀମା ଆରପାରିରୁ ଉଙ୍କିମାରୁଥିବା ନୂଆ ନୂଆ ସଂଭାବନାଗୁଡ଼ିକୁ କଳ୍ପନା ମାଧ୍ୟମରେ ରୂପ ଦେଇ ସାକାର କରାଇବାରେ ।

ଡିଜନିଲ୍ୟାଣ୍ଡ ହେଲା ବିଶ୍ୱବିଖ୍ୟାତ ମିକିମାଉସ୍ କାର୍ଟୁନ୍ ମୁଭିର ଉଦ୍‌ଭାବକ, ପ୍ରସିଦ୍ଧ କଳାକାର ଓ କାର୍ଟୁନିଷ୍ଟ୍ ଓ୍ୱାଲଟ୍ ଡିଜନୀଙ୍କ ନାମରେ ନାମିତ ଏକ ଅପୂର୍ବ ସ୍ୱପ୍ନ ରାଜ୍ୟ । ଏହା କେବଳ ପିଲାଙ୍କ ପାଇଁ ନୁହେଁ – ସବୁ ବୟସର ଲୋକମାନଙ୍କ ପାଇଁ ମ୍ୟାଜିକ୍ ଲ୍ୟାଣ୍ଡ୍ ବା ସ୍ୱପ୍ନପୁରୀ । ଏଠାରେ ଆଧୁନିକ ବିଜ୍ଞାନଯୁଗର ହେତୁବାଦୀ ଶୁଷ୍କ ହୃଦୟର ମଣିଷମାନେ ମଧ୍ୟ କଳ୍ପନାର ମହାନ୍ ସଂଭାବନାପୂର୍ଣ୍ଣ ଏକ ଭିନ୍ନ ବିଶ୍ୱ ପରିଦର୍ଶନ କରନ୍ତି ଓ ନିଜର ଅଯଥା ଯୁକ୍ତିଖୋର୍ ମନୋବୃତ୍ତିକୁ ତ୍ୟାଗ କରିବାକୁ ପ୍ରସ୍ତୁତ ହୁଅନ୍ତି । ସ୍ୱପ୍ନକୁ ସାକାର କରିବା ପାଇଁ ଏଇ ଡିଜନିଲ୍ୟାଣ୍ଡ ପରିଭ୍ରମଣରେ ସାରା ବିଶ୍ୱର କୋଟିକୋଟି ନରନାରୀ ଓ ଶିଶୁ ପ୍ରତିବର୍ଷ ଏ କେନ୍ଦ୍ରରେ ଅନ୍ୟୂନ ସାତୋଟି ଦିନ କଟାଇବାକୁ ପ୍ରତି ଗ୍ରୀଷ୍ମଋତୁରେ ଏଠିକି ଆସନ୍ତି । ଏଠି ଦର୍ଶକଙ୍କୁ ବୁଲାଇ ଦେଖାଇବା ପାଇଁ ଗାଇଡ୍ ନଥାନ୍ତି । ରୋଲର୍ କୋଷ୍ଟର୍‌ରେ ବସି ଦର୍ଶକମାନେ ଏହି ଥିମ୍ ପାର୍କର ଅନେକ ଦର୍ଶନୀୟ ବସ୍ତୁ ନିକଟକୁ ଯାଆନ୍ତି । ରୋଲର୍‌କୋଷ୍ଟର ରାଇଡ୍ ଏକ ଅପୂର୍ବ ଅଭିଜ୍ଞତା ଯାହା କେବଳ ଅନୁଭବ କରିହୁଏ– ସେ ଅଭିଜ୍ଞତାକୁ ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ ।

ଡିଜନି ଲ୍ୟାଣ୍ଡ୍ ପାଖକୁ ଲାଗି ଆଉ ଏକ ଜାଗା– ଏପ୍‌କଟ୍ (EPCOT) ସେଣ୍ଟର୍ । ଡିଜନିଲ୍ୟାଣ୍ଡ ପରି ଏହା ମଧ୍ୟ ଶହଶହ ଏକର କ୍ଷେତ୍ର ଉପରେ ପ୍ରତିଷ୍ଠିତ ଗୋଟିଏ 'ଥିମ୍ ପାର୍କ' । ଏ କ୍ୟାମ୍ପସ୍ ବିଜ୍ଞାନ ଓ ବୈଷୟିକ ଜ୍ଞାନର ସର୍ବୋଚ୍ଚ ଉଦ୍ଭାବନ ବିଷୟରେ ଦର୍ଶକଙ୍କୁ ମୌଳିକ ସୂଚନା ମାନ ଦିଏ । ଏ ପାର୍କ ଭିତରେ ଦର୍ଶନୀୟ ହେଲା– ଭବିଷ୍ୟତର ବିଶ୍ୱ (Future World) ଓ ବିଶ୍ୱର ରୂପଶାଳା ପ୍ରଦର୍ଶନୀ (World Show Case) ।

ଏଇ ଦୁଇ ଥିମ୍ ପାର୍କରେ ବିଭିନ୍ନ ବୈଜ୍ଞାନିକ ବିଭାଗର ବିଷୟ ଅନୁଯାୟୀ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ମଣ୍ଡପ ବା ପାଭିଲିୟନ୍ ରହିଚି । ପାଭିଲିୟନ୍ ଗୁଡ଼ିକ ଶୀତତାପ ନିୟନ୍ତ୍ରିତ ଗୋଟିଏ ଗୋଟିଏ ବିଶାଳ ବିଲଡିଂ ମଧ୍ୟରେ ଅବସ୍ଥିତ । ସେ ବିଲଡିଂ ଗୁଡ଼ିକ ଭିତରକୁ

ପ୍ରବେଶ କରିବାକୁ ଦର୍ଶକକୁ ସ୍ୱତନ୍ତ୍ର ଟିକେଟ୍ କରିବାକୁ ପଡେ । ଭିତରକୁ ପ୍ରବେଶ କଲାପରେ ଦର୍ଶକକୁ ଯନ୍ତ୍ରଚାଳିତ ସ୍ୱୟଂକ୍ରିୟ ରୋଲରକୋଷ୍ଟର ଆରୋହଣ କରିବାକୁ କୁହାଯାଏ । ରୋଲରକୋଷ୍ଟର ଗୁଡିକରେ ଆରୋହଣକାରୀ ଅନୁଭବ କରେ ଟାଇମ୍-ମେସିନ୍‌ରେ ବସିବା ପରି । ଅତୀତରୁ ବର୍ତ୍ତମାନ ସମୟ ଦେଇ ସୁଦୂର୍ ଭବିଷ୍ୟତ ପର୍ଯ୍ୟନ୍ତ ସବୁ ଯୁଗ ଓ ସମୟର ଅନୁଭବ ଦେବାକୁ ସକ୍ଷମ ଏଇ ଟାଇମ୍ ମେସିନ୍ ଗୁଡିକ ବାସ୍ତବରେ ଦର୍ଶକର ଦେହ ମନ ବୁଦ୍ଧି ଓ ପ୍ରଜ୍ଞା ସଂବଳିତ ବିଭିନ୍ନ ସ୍ତରର ଅନୁଭବ ଓ ଅଭିଜ୍ଞତାର ଉନ୍ମେଷ ସାଧନ ପାଇଁ ଉଦ୍ଦିଷ୍ଟ ।

ଏହିପରି କେତେକ ଥିମ୍ ପାର୍କରେ ଭ୍ରମଣବେଳେ ଆମେମାନେ ଅନେକ ବିସ୍ମୟକର ଦୃଶ୍ୟ ଦେଖିଥିଲୁ । ସେ ଭିତରେ ଥିଲା– ଷ୍ଟିଫେନ୍ ସ୍ପିଲ୍‌ବର୍ଗଙ୍କ ସେଇ ସମୟରେ ବିଶ୍ୱ ଖ୍ୟାତି ଅର୍ଜିଥିବା 'ଜ୍ୟୁରାସିକ୍ ପାର୍କ' ମୁଭି ନିର୍ମାଣରେ ବ୍ୟବହୃତ ସୁଟିଂ ସ୍ପଟ୍ ଓ ସେଟ୍ ସମୂହ । ପ୍ରାଗ୍‌ଐତିହାସିକ ଯୁଗରେ ପୃଥିବୀର ମହାଭୟଙ୍କର ପରିବେଶ ଭିତରେ ଚଳପ୍ରଚଳ ହେଉଥିବା ଡାଇନୋସୋରମାନଙ୍କର ଜଗତର ବାସ୍ତବ ରୂପ ଆମେ ସେଇଠାରେ ଦେଖିଥିଲୁ ଓ ସେ ଯୁଗର ଲୋମହର୍ଷକ ସ୍ପର୍ଶ ବାସ୍ତବ ଭାବେ ଅନୁଭବ କରିଥିଲୁ ।

ଆଉ ଗୋଟିଏ ଥିମ୍ ପାର୍କରେ ଆମେ ଦେଖିଥିଲୁ, ବିନା ମାଟିରେ, ବିନା ଗଛରେ କେବଳ ଶୂନ୍ୟରେ ଫଳିଥିବା କଦଳିକାନ୍ଧି, ଅମୃତଭଣ୍ଡା ଓ କାନ୍ଧି କାନ୍ଧି ନଡିଆ ! ଏଗୁଡିକ ଆଗାମୀ ଯୁଗର ଫାର୍ମିଂ ଓ ହର୍ଟିକଲ୍‌ଚର୍ ବିଭାଗର ଦୃଶ୍ୟ । ଯେତେବେଳେ ମଣିଷ ମହାଶୂନ୍ୟରେ ରକେଟ୍‌ଯାନରେ ବସି ବର୍ଷ ବର୍ଷ କାଳ ବିଚରଣ କରିବ ଓ ନିଜର ଖାଦ୍ୟ ଉତ୍ପାଦନ ପାଇଁ ପୃଥିବୀର ମୃତ୍ତିକା ଓ ଜଳବାୟୁର ସାହାଯ୍ୟ ଉପରେ ନିର୍ଭର କରିହେବ ନାହିଁ, ସେ ସମୟରେ ଚାଷବାସର ସଂଭାବନା ହେଲା ଏ ଥିମ୍ ପାର୍କର ପ୍ରସଙ୍ଗ । ବୈଜ୍ଞାନିକମାନେ ବାସ୍ତବକ୍ଷେତ୍ରରେ ନୂଆ ନୂଆ ଟେକ୍‌ନିକ୍ ପ୍ରୟୋଗ କରି, ଆବଶ୍ୟକୀୟ ରାସାୟନିକ ଉପାଦାନ-ଦ୍ୱାରା ମହାଶୂନ୍ୟରେ ମଧ୍ୟ ଚାଷ କରାଯିବାର ସଂଭାବନାକୁ ଏହିଠାରେ କାର୍ଯ୍ୟତଃ ପ୍ରଦର୍ଶନ କରିଛନ୍ତି । ଏ ମଧ୍ୟ ଥିଲା ଭବିଷ୍ୟତରେ ବିନା ମାଟିରେ ପୃଥିବୀର କୃଷି ଅନୁପଯୋଗୀ ସ୍ଥାନରେ ଚାଷବାସ କରିବା ସଂଭାବନାକୁ ସାକାର କରିବାର ଅନନ୍ୟ ପ୍ରମାଣ ।

## କେନଡି ସ୍ପେସ୍ ସେଣ୍ଟର, ନାସା

ତା ୯, ସେପ୍ଟେମ୍ବର ୧୯୩୩ : ଫ୍ଲୋରିଡାର ଅର୍ଲାଣ୍ଡୋ ସହର ନିକଟରେ ଏଠାକାର ଅନ୍ୟତମ ଶ୍ରେଷ୍ଠ ଟୁରିଷ୍ଟ ଆକର୍ଷଣ– 'ନାସା' (NASA) । ଏହା ଆଟଲାଣ୍ଟିକ୍ ମହାସାଗର ତଟର ଅନ୍ତରୀପ, କେପ୍ କାନାଭାରାଲ୍‌ରେ ପ୍ରତିଷ୍ଠିତ କେନେଡି ସ୍ପେସ୍ ସେଣ୍ଟର୍‌ର ମୁଖ୍ୟ ମହାକାଶ ଗବେଷଣା ପ୍ରତିଷ୍ଠାନ । ଆମେ ସକାଳୁ ସକାଳୁ ଡ୍ରାଇଭ୍ କଲୁ ସେଠାକୁ ।

ଗ୍ରୀଷ୍ମଋତୁରେ ଫ୍ଲୋରିଡାର ପାଗ ପ୍ରାୟ ଆଷାଢମାସର ଓଡିଶା ଭଳି– ଉଷୁମ ଆଉ

ଓଦାଳିଆ । ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଝଡ ବର୍ଷା ପବନ । ପରେ ପରେ ଭଲକରି ଅସରାଏ ଅସରାଏ ବର୍ଷା ହେଇଯାଏ । ଏଠାକା ମାଟି ବର୍ଷସାରା ଓଦା ସନ୍ତସନ୍ତିଆ । ରାସ୍ତା କଡେ କଡେ ଝାଡ ଜଙ୍ଗଲରେ ଗଛଲତା ଅନେକଟା ଆମ ଅଂଚଳର ଗଛଲତା ପରି । ପାଇନ୍ ଗଛ ସହିତ ବିଭିନ୍ନ ରକମ ଗ୍ରୀଷ୍ମ ଜଳବାୟୁର ଗଛଲତା ଭର୍ତ୍ତି ହେଇଥାଏ । ରାସ୍ତାକଡଯାକ ଛୋଟବଡ ଝରଣା ଓ ଜଳାଶୟ । ରାସ୍ତା କଡରେ ଆହୁରି ବି ଦେଖିଲୁ– ଅନେକ ଥଣ୍ଡିଆ କୁମ୍ଭୀର ମୁକ୍ତ ଭାବେ ବିଚରଣ କରୁଥାନ୍ତି । ପୋଖରୀରେ ଦଳ ଦଳ ହଂସ ହଂସରାଳି ବିହାର କରୁଥାନ୍ତି । ଏ ହଂସମାନଙ୍କୁ ଏଠି କେହି ମାରି ଖାଇଯାନ୍ତିନାହିଁ । ଆମେ ଯୋଉ ଭଡାଘରେ ସାତଦିନକାଳ ରହିଥିଲୁ ତା' ପାଖରେ ଗୋଟାଏ ପୋଖରୀ ଥାଏ । ସେ ପୋଖରୀ କୂଳରେ ବିଭିନ୍ନଜାଗାରେ ହଂସମାନେ ମାଟି ଉପରେ ଅଣ୍ଡା ଦେବା ଦେଖିଚୁ । ଏମାନଙ୍କ ଶତ୍ରୁ ମଣିଷ ନୁହେ; ବିଲୁଆ ଓ କୋଳିଶିଆଳି ଏମାନଙ୍କ ଅଣ୍ଡା ଲୁଟ କରନ୍ତି ରାତିରେ । ବିଲୁଆଙ୍କୁ ଏଠି କହନ୍ତି 'କୋୟୋଟ୍' । ସେଇମାନେ ଏ ହଂସମାନଙ୍କ ମୁଖ୍ୟ ଶତ୍ରୁ ।

ନାସାରେ ପହଞ୍ଚି ସେଠାକାର ମୁଖ୍ୟ କାର୍ଯ୍ୟାଳୟ ଭିତରକୁ ଗଲୁ ଓ ସେଠାରେ ଥିବା ସ୍ପେସ୍ ମ୍ୟୁଜିୟମ୍ ବୁଲି ଦେଖିଲୁ । ଏଠି ଦର୍ଶକମାନେ ଇଚ୍ଛାକଲେ ମହାକାଶଚାରୀ (ଆଷ୍ଟ୍ରୋନଟ୍) ମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ପେସ୍ ସୁଟ୍ ପିନ୍ଧିପାରିବେ । ଏହା ବ୍ୟତୀତ ମହାକାଶ ଯାନରେ ଆରୋହଣର ଅନୁଭବ ପାଇଁ କେତେକ ରାଇଡ୍ ଏଠି ଦର୍ଶକମାନଙ୍କ ପାଇଁ ଉପଲବ୍ଧ ।

ନାସାର ପ୍ରଧାନ ଆକର୍ଷଣ ଉପଗ୍ରହ ଉତ୍କ୍ଷେପଣ କେନ୍ଦ୍ର । ଦର୍ଶକମାନଙ୍କ ପାଇଁ ଉଦ୍ଦିଷ୍ଟ ଏକ ସ୍ୱତନ୍ତ୍ର ବସ୍‌ରେ ବସି ଆମେ ଉତ୍କ୍ଷେପଣ କେନ୍ଦ୍ରକୁ ଗଲୁ । ଦୂରରୁ ସମୁଦ୍ର କୂଳ ଆକାଶରେ ଏକ ବିଶାଳ ବେଲୁନ୍ ଭଳି କିଛି ଦେଖାଗଲା । ପ୍ରକୃତରେ ତାହା କିନ୍ତୁ ହେଲା ହାଇଡ୍ରୋଜେନ୍ ଗ୍ୟାସ୍‌ର ଏକ ବିରାଟ ଟ୍ୟାଙ୍କ୍ । ଏହା ଭିତରେ ହାଇଡ୍ରୋଜେନ୍ ଗ୍ୟାସ୍ ସଞ୍ଚିତ ହୋଇଥାଏ । ରକେଟ୍‌ରେ ବ୍ୟବହୃତ ଇନ୍ଧନ ପାଇଁ ଏ ହାଡ୍ରୋଜେନ୍ ଗ୍ୟାସ୍ ବ୍ୟବହୃତ ହୁଏ ।

ଅଳ୍ପ ସମୟ ପରେ ଆମେ ସେ ଟାଙ୍କି ପାଖାପାଖି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲୁ । ବସ୍‌ରୁ ଓହ୍ଲାଇଲା ପରେ ଗାଇଡ୍ ଆମକୁ ନେଇଗଲେ ଉତ୍କ୍ଷେପଣ ସ୍ଥାନ ନିକଟକୁ । ଏକ ବିରାଟ କ୍ୟାମ୍ପସ୍ ବାହାରେ ରହି ଆମେ ଲକ୍ଷ୍ୟକଲୁ ଭିତରେ ଉତ୍କ୍ଷେପଣ ପିଣ୍ଡି ବା ଲଞ୍ଚ-ପ୍ୟାଡ୍‌ର ଦୃଶ୍ୟକୁ । ସେଇ ଲଞ୍ଚ ପ୍ୟାଡ୍‌ଟିକୁ ପ୍ରସ୍ତୁତ କରାଚାଲିଥାଏ କୌଣସି ଉତ୍କ୍ଷେପଣ ପ୍ରୋଗ୍ରାମ୍ ଉଦ୍ଦେଶ୍ୟରେ । ଗାଇଡ୍ କହିଲେ– ସେ ପ୍ୟାଡ୍‌ଟି ହେଲା ଅଣଚାଳିଶ ନମ୍ବର ଲଞ୍ଚକଂପ୍ଲେକ୍ସ୍‌ର ଏକନମ୍ବର ଲଞ୍ଚ ପ୍ୟାଡ୍ । ଏଇ ଲଞ୍ଚପ୍ୟାଡ୍‌ରୁ ଏପ୍ରିଲ ୧୨, ୧୯୮୧ରେ ପ୍ରଥମ ମାନବଚାଳିତ 'ସ୍ପେସ୍-ସଟଲ୍' ଛଡାଯାଇଥିଲା । ସେ ସଟଲ୍‌ର କମାଣ୍ଡର୍ ଥିଲେ ଜନ୍ ୟଙ୍ଗ୍ ଓ ପାଇଲଟ୍ ରବର୍ଟ କ୍ରିପର୍ । ପରେ ପରେ ଆହୁରି ଅନେକ ଥର ସ୍ପେସ୍ ସଟଲ୍ ଏଇ ପ୍ୟାଡ୍‌ରୁ ମହାକାଶକୁ ଉତ୍କ୍ଷେପଣ କରାଯାଇଥିଲା ଓ ସଟଲ୍ ଗୁଡିକ ନିର୍ବିଘ୍ନରେ ପୃଥିବୀପୃଷ୍ଠରେ ଅବତରଣ କରିସାରିଚି । ଏହି ଲଞ୍ଚ ପ୍ୟାଡ୍‌ରୁ ଦଶବର୍ଷ ପରେ, ତା ୧୬

ଜାନୁଆରିରେ ସ୍ପେସ୍-ସଟଲ କଲମ୍ବିଆ ସାତଜଣ ମହାକାଶଚାରୀଙ୍କୁ ନେଇ ଯାତ୍ରା କରିଥିଲା । ସେଥିରେ ଥିଲେ ଭାରତର ପ୍ରଥମ ନାରୀ ମହାକାଶଚାରୀ କଳ୍ପନା ଚାୱାଲା । କିନ୍ତୁ ଦୁର୍ଭାଗ୍ୟ-ବଶତଃ ଏଇ ସ୍ପେସ୍‌ସଟଲ୍ କଲମ୍ବିଆ (ଏସ୍.ଟି.ଏସ୍-୧୦୭) ଫେବୃଆରି-୧ ତାରିଖରେ ଦୁର୍ଘଟଣାର ସମ୍ମୁଖୀନହୋଇ ମଧ୍ୟାକାଶରେ ଧ୍ୱଂସପାଇଥିଲା ।

ଏହାପରେ ୧୯୬୯ ମସିହାରେ ଆପୋଲୋ-୧୧ ମହାକାଶଯାନରେ ଚନ୍ଦ୍ର ପୃଷ୍ଠରୁ ଅଣାଯାଇଥିବା ମାଟି ଓ ଉକ୍ତ ଯାନରେ ଖଂଜା ଯାଇଥିବା ଲୁନାର ମୋଡ୍ୟୁଲର୍ ମଡେଲ୍ ଇତ୍ୟାଦିର ସଂଗ୍ରହାଳୟ ଦେଖିବାକୁ ଗଲୁ । ସେଠି ଚନ୍ଦ୍ରପୃଷ୍ଠରେ ତା ୨୦ ଜୁଲାଇ ୧୯୬୯ରେ ଅବତରଣ କରିଥିବା ଆପୋଲୋ-୧୧ରେ ଖଞ୍ଜାଯାଇଥିବା ଚନ୍ଦ୍ରଯାନ (ଲୁନାର୍ ମୋଡ୍ୟୁଲ୍)ର ଏକ ଅବିକଳ ମଡେଲ୍ ପ୍ରଦର୍ଶିତ ହୁଏ । ଏଇ ମୋଡ୍ୟୁଲ୍‌ଟି ବାସ୍ତବିକ ଥିଲା ଏକ ପ୍ରାକ୍ଟିସ୍ ମୋଡ୍ୟୁଲ୍ । ଏଥିରେ ଚନ୍ଦ୍ରପୃଷ୍ଠରେ ପାଦ ରଖିଥିବା ପ୍ରଥମ ମାନବ ଆଷ୍ଟ୍ରୋନଟ୍ ନିଲ୍ ଆର୍ମଷ୍ଟ୍ରଙ୍ଗ୍ ଓ ତାଙ୍କ ସାଥି ଏଡ୍‌ୱିନ୍ ଆଲ୍‌ଡ୍ରିନ୍ ଚନ୍ଦ୍ରରେ ଅବତରଣ କରିବାର ଆବଶ୍ୟକୀୟ କାଇଦା କସରତ୍ ସବୁର ପୂର୍ବାଭ୍ୟାସ କରିଥିଲେ ।

ଏଇ ମୋଡ୍ୟୁଲ୍‌ର ଚାରିପାଖେ ଚନ୍ଦ୍ରପୃଷ୍ଠରୁ ସଂଗୃହୀତ ମାଟି ବିଛା ଯାଇଥିଲା । ଚନ୍ଦ୍ରର ମାଟିକୁ ଛୁଇଁ ଆମେ ଅଭିଭୂତ ହେଲୁ । ଦେଖିବାକୁ ଏ ମାଟି କିଟକିଟ କଳା । କେମିଷ୍ଟ୍ରି ଲାବୋରେଟୋରିରେ ମୁଁ ଟାଇଟାନିୟମ୍ ଡାଇଅକ୍ସାଇଡ୍ ଦେଖିଥିଲି, କେତେକ ରାସାୟନିକ ଏକ୍ସପେରିମେଣ୍ଟରେ ଏହାର ବ୍ୟବହାର କରିଥିଲି । ଦେଖିଲି– ଚନ୍ଦ୍ରର 'ମାଟି' କୁହାଯାଉଥିବା ପଦାର୍ଥ ଅବିକଳ ସେଇ ଟାଇଟାନିୟମ୍ ଡାଇଅକ୍ସାଇଡ୍ ପରି ନିପଟ କଳା, ରଗଡା ବାଲି ଭଳି ଜିନିଷ କେବଳ ।

## ଡେଟୋନା ବିଚ୍‌ରେ ପିତୃ-ତର୍ପଣ

ନାସା ଭ୍ରମଣ ସାରି ଆମେ ବାହାରିଲୁ ଆଟଲାଣ୍ଟିକ୍ ଉପକୂଳର ଅନ୍ୟଏକ ଦର୍ଶନୀୟ ସ୍ଥାନ 'ଡେଟୋନା ବିଚ୍' (Daytona Beach) ଦେଖିବାକୁ । ସମୁଦ୍ରକୂଳର ଏଇ ସୁନ୍ଦର ବେଳାଭୂମି, କିନ୍ତୁ ଆମ ପୁରୀ ସମୁଦ୍ରର ବେଳାଭୂମି ପରି ସୁନେଲି ବାଲୁକାମୟ ନୁହେଁ । ଏଠାକାର ବେଳାଭୂମିର ବାଲି ଅବିକଳ ସିମେଣ୍ଟ ପରି ପାଉଁଶିଆ ଓ ଟାଣ । ଏହା ଉପରେ ପ୍ରବୀର ଗାଡି ଚଳେଇ ଆମକୁ ବହୁଦୂର ପର୍ଯ୍ୟନ୍ତ ବୁଲେଇ ଦେଖେଇଲେ । ଉପକୂଳର ଏଇ ବେଳାଭୂମି ଟୁରିଷ୍ଟ୍‌ମାନଙ୍କ ପାଇଁ ଖୁବ୍ ଆକର୍ଷଣୀୟ । କୂଳଯାକ ବହୁ ହଲିଡେ ହୋମ୍ ଏବଂ ହୋଟେଲ୍ ଭର୍ତ୍ତି । ସମୁଦ୍ରର ରଙ୍ଗ ମଧ୍ୟ ସୁନୀଳ ଏବଂ ଆକର୍ଷଣୀୟ ।

ଠାଏ ଗାଡିରୁ ଓହ୍ଲେଇ ମୁଁ ଆଟ୍‌ଲାଣ୍ଟିକ୍ ମହାସାଗର କୂଳରେ ଠିଆହେଲି । ଆଞ୍ଜୁଳାଏ ପାଣି ଧରି ମୋ' ସମ୍ମୁଖରେ ସୁଦୂର ପୂର୍ବଦିଗରେ ଭାରତବର୍ଷକୁ ସ୍ମରଣକଲି । ଜନ୍ମଭୂମି

ଭାରତକୁ ମନେପକେଇ ସେ ଦିଗକୁ କିଛି ସମୟ ଏକାନ୍ତରେ ଧ୍ୟାନମଗ୍ନ ଭାବେ ଚାହିଁବା ଭିତରେ ମୋର ଭାବାନ୍ତର ଘଟିଲା । ସେଇ ଧ୍ୟାନରେ ମତେ ଦିଶିଲା ମୋର ଅଜା ସ୍ୱର୍ଗତ କୁଳମଣି ମିଶ୍ରଙ୍କ ତେଜୋଦୀପ୍ତ ଋଷିସୁଲଭ ଶ୍ମଶ୍ରୁଳ ମୁଖ-ମଣ୍ଡଳ । ସେଇ ମତେ ସମୁଦ୍ର-ମାନଙ୍କର ମହିମା ବିଷୟରେ ବହୁ ପିଲାଦିନୁ ଅବଗତ କରାଇଥିଲେ । ମତେ ପ୍ରେରଣା ଦେଇଥିଲେ– ସମୁଦ୍ର ଆରପାରିରେ ରହିଚି ବହୁ ବହୁ ଅଦ୍ଭୁତ ଦେଶ, ସେସବୁ ଦେଶ ନଦେଖିଲେ ମଣିଷ ଜୀବନ ଅପୂର୍ଣ୍ଣ ରହେ । ତୁ ବଡହେଲେ ଜାହାଜରେ ଯାଇ ସେ ସବୁ ଦେଶ ବୁଲିବୁ, ଦେଖିବୁ– ତା'ହେଲେ ବଡମଣିଷ ହବୁ ।

ଅଜାଙ୍କ ସ୍ମୃତିରେ ମୁଁ ମହାସମୁଦ୍ର ଆଟଲାଣ୍ଟିକ୍‌ର ସେଇ ମନୋରମ ଡେଟୋନା ବେଳାଭୂମିରେ ଠିଆହେଇ ଜଳ-ତର୍ପଣ କଲି । ଏହା ସହିତ ଦିବଂଗତ ମୋ' ଆଈ, ବୋଉ, ନନା, ନାନୀ (ଶକୁନ୍ତଳା) ଓ ପିତୃପୁରୁଷମାନଙ୍କୁ ସ୍ମରଣ ପୂର୍ବକ ତର୍ପଣ ମଧ୍ୟ କରିଥିଲି ।

[ ୨୦୦୬ରେ ମୁଁ ଓ ନିରୁପମା ଚତୁର୍ଥଥର ଆମେରିକା ଭ୍ରମଣ ସମୟରେ କାଲିଫର୍ଣ୍ଣିଆ ଉପକୂଳରେ ଏହିପରି ପିତୃ ତର୍ପଣ କରିଥିଲୁ ପ୍ରଶାନ୍ତ ମହାସାଗର ଜଳରେ । ]

## କନେକ୍ଟିକଟ୍ ଯାତ୍ରା

ତା ୧୦ ଜୁଲାଇ ୧୯୩୩ (ଶନିବାର) । ଆମେ ଟେନୀସୀ, ଚାଟାନୁଗାରୁ ବାହାରି ଆଟ୍‌ଲାଣ୍ଟା ବିମାନ ବନ୍ଦରକୁ ଆସିଲୁ । ସେଠାରୁ ପ୍ଲେନ୍‌ରେ ଆସିଲୁ କନେକ୍‌ଟିକଟ୍‌ର ରାଜଧାନୀ ସହର ହାର୍ଟଫୋର୍ଡକୁ– ପ୍ରାୟ ଦୁଇହଜାର ମାଇଲ୍ ଉତ୍ତରଦିଗରେ । କନେକ୍ଟିକଟ୍ ରାଜ୍ୟକୁ ଏଠି କହନ୍ତି ''କନ୍‌ଷ୍ଟିଟ୍ୟୁସନ୍ ଷ୍ଟେଟ୍'' । ଏଇଠି ତିଆରିହେଇଥିଲା ଆଜିର ଯୁକ୍ତରାଷ୍ଟ୍ର ଆମେରିକାର ମୂଳ ସଂବିଧାନ– ସେଥିପାଇଁ ଏ ରାଜ୍ୟର ବାସିନ୍ଦାମାନଙ୍କର ଖୁବ୍ ଗର୍ବ । ନିଜ ନିଜ ଗାଡିର ନମ୍ବର ପ୍ଲେଟ୍‌ରେ ବିଜ୍ଞାପିତ କରନ୍ତି ସେମାନେ ସେଇ ପଦବୀଟାକୁ – କନ୍‌ଷ୍ଟିଟ୍ୟୁସନ୍ ଷ୍ଟେଟ୍ ! ଚାଟାନୁଗାର ପ୍ରାୟ ଦେଢହଜାର ମାଇଲ୍ ଉତ୍ତରରେ ହାର୍ଟଫୋର୍ଡ ।

ହାର୍ଟଫୋର୍ଡର ଉପକଣ୍ଠ (ସବର୍ବ)ରେ ମଝିଆ ଜୋଇଁ ଡକ୍ଟର ମହେଶ ଚନ୍ଦ୍ର ପତି ଓ ଝିଅ ନିବେଦିତା (ସୁଲୁ) ରହୁଥିଲେ ୮୦୫, ନିପ୍‌ମିକ୍ ରୋଡ, ଗ୍ଲାସ୍‌ଟନ୍‌ବରିରେ ନିଜ ଘରେ । ଘରଟାକୁ ଦେଖି ମନେହେଲା ଏକ ଅରଣ୍ୟ ମଧ୍ୟରେ ଆଶ୍ରମ ପରି । ଚାରିଆଡେ ବଡ ବଡ ଗଛ । ସେଇ ଆରଣ୍ୟକ ପରିବେଶରେ ନିଜ ଘର ତିଆରିକରି ନିରାଞ୍ଜନରେ ବସବାସ କରିବା ଏଠାକାର ମଧ୍ୟବିତ୍ତ ମାନଙ୍କର ଖୁବ୍ ସଉକ । ଏଠାକାର ଚଳଣି ଅନୁସାରେ କୌଣସି ଲୋକର ବାସଗୃହ ଅନ୍ୟ ଲୋକର ବାସଗୃହକୁ ଲଗାଲାଗି ହେଇ ରହିବା ଠିକ୍‌ନୁହଁ । ପ୍ରତି ଘର ଅନ୍ୟ ଲୋକର ଘରଠାରୁ କିଛି ଦୂରରେ ରହିବାକୁ

ଆମେରିକାନ୍ ମଧ୍ୟବିତ୍ତମାନେ ପସନ୍ଦ କରନ୍ତି । ଚୋରି ଡକାୟତି ଭୟ ଯେ ଏଠି ନାହିଁ ତା' ନୁହେଁ; କିନ୍ତୁ ଛଡ଼କା ଚୋରିଚପଟି ଏଠି ଖୁବ୍ କମ୍ । ପୁଲିସ୍ ପ୍ରତି ସାଧାରଣ ଲୋକଙ୍କର ଭୟ ଥାଏ, ଖାଲି ଭୟ ନୁହେଁ– ଆଇନ୍ ପ୍ରତି ସମ୍ମାନବୋଧ ମଧ୍ୟ ଏ ଦେଶର ସାଧାରଣ ନାଗରିକର ରକ୍ଷାକବଚ । ତେଣୁ ଏମାନେ ନିର୍ଭୟରେ ଘରେ ତାଲା ପକେଇଦେଇ ମାସମାସ ଧରି ବାହାରେ ରହିଲେ ବି ଘରେ ଚୋରିର ଭୟ ନଥାଏ ।

ଅବଶ୍ୟ ଲୋକମାନେ ସେମାନଙ୍କ ଘରେ ନିରାପତ୍ତା ପାଇଁ ସିକ୍ୟୁରିଟି ସିଷ୍ଟମ୍ ଲଗାଇଥା'ନ୍ତି । ଏହା ନିକଟସ୍ଥ ପୁଲିସ୍ ଥାନା ସହିତ ଆପେ ଆପେ ସଂଯୋଗ ରକ୍ଷାକରେ । ସଂକେତ ପାଇବା ମାତ୍ରେ ପୁଲିସ୍ ନିଶ୍ଚିତ ଭାବେ ଖୁବ୍ କମ୍ ସମୟ ଭିତରେ ଘଟଣା ସ୍ଥଳରେ ପହଞ୍ଚେ । ପୁଲିସ୍, ଡାକ୍ତର ଓ ଦମକଳ ସେବାର ନିର୍ଭରଯୋଗ୍ୟ ବ୍ୟବସ୍ଥା ଉପରେ ଆମେରିକାର ଆଧୁନିକ ସାମାଜିକ ନିରାପତ୍ତା ପ୍ରତିଷ୍ଠିତ, ଯାହା ଭାରତରେ ଦୁର୍ଲଭ ।

ମହେଶ ଓ ସୁଲୁଙ୍କ ଏଇ ଘରଟି ଥିଲା ସେଇ ସାମାଜିକ ବ୍ୟବସ୍ଥା ଅନୁରୂପ ଏକ ଆରଣ୍ୟକ ପରିବେଶରେ । କିଛି ବର୍ଷ ପୂର୍ବେ ଜଣେ ଜଣାଶୁଣା ଆମେରିକାନ୍ ସ୍ପୋର୍ଟସମ୍ୟାନ୍ ଏ ଘରକୁ ନିଜ ପାଇଁ ତିଆରିକରିଥିଲେ । କାଠରେ ତିଆରି ସେଇ ଦୁଇମହଲାର ଘରଟିକୁ ସେ ତାଙ୍କ ରୁଚି ଅନୁସାରେ ତିଆରିକରାଇଥିଲେ । ଏ ଘରର ଏକ ବିଶେଷତ୍ୱ ଥିଲା ତାଙ୍କ ବ୍ୟକ୍ତିଗତ ରୁଚିର ପ୍ରମାଣ ଯାହା ଅବଶ୍ୟ ଆମ ଭାରତୀୟଙ୍କୁ ଲାଗନ୍ତା ହାସ୍ୟାସ୍ପଦ ।

ଉକ୍ତ ସ୍ପୋର୍ଟସମ୍ୟାନ୍ ଭଦ୍ରଲୋକ ଏଇ ଘରର ଦାଣପଟେ ତିଆରି କରେଇଥିଲେ ଏକ ବିଳାସ-କକ୍ଷ– 'ସୌନା' ବା 'ସୋଲାର୍ ବାଥ୍ ପ୍ଲେସ୍' । ଏ କକ୍ଷର କାନ୍ଥ ବାଡ ଛାତ ସବୁ ସ୍ୱଚ୍ଛ କାଚରେ ନିର୍ମିତ । ବାଥ୍‌ଟବ୍ ଭିତରେ ଗାଧୋଇଲା ବେଳେ ଛାତ ବାଟେ ଖରାଦିନେ ସୂର୍ଯ୍ୟକିରଣ ମୁକ୍ତଭାବେ ପାଇବାକୁ ସେ ଏଇ ସୌନା ବାଥ୍‌ରୁମ୍‌ଟିକୁ ନିଜ ଘର ଆଗରେ ତିଆରି କରାଇଥିଲେ । ପୁଣି ଏଠାକା ଚଳଣି ଅନୁସାରେ ବାଥ୍ ଟବ୍‌ରେ ସ୍ନାନକରନ୍ତି ଲୋକେ । ତେବେ ନିଜ ଘର ବାହାରେ ନଗ୍ନଦେହରେ ବାଥ୍‌ଟବ୍‌ରେ ଗାଧୋଇବାଟା ଭାରତୀୟଙ୍କ ରୁଚି ବହିର୍ଭୂତ– ଏହା ଜାଣି ମଧ୍ୟ ମହେଶ ଏ ଘରଟିକୁ କିଣିଥିଲେ କେବଳ ଏହାର ମନୋରମ ଆରଣ୍ୟକ ପରିବେଶ ଓ ଏହାର ସଂଭ୍ରାନ୍ତ ସାମାଜିକ ଚଳଣିକୁ ଦୃଷ୍ଟିରେ ରଖି ।

ଏ ଘରର ଅନ୍ୟତମ ବିଶେଷତ୍ୱ ହେଲା– ଘର ପଛପଟ ହତାକୁ ଲାଗି ସେଇ ବିଶାଳ ସାଧାରଣ ପାର୍କର ଅବସ୍ଥିତି । ସେ ପାର୍କର ନାମ ଜେ.ବି. ଉଇଲିୟାମ୍ ପାର୍କ । ପାର୍କ ଭିତରେ ନିଘଞ୍ଚ ନିସ୍ତବ୍ଧ ଅରଣ୍ୟ ଭିତରେ ଅଙ୍କା ବଙ୍କା ଜଗିଂ ଟ୍ରାକ୍‌ମାନ ଲମ୍ବିଥାଏ ବହୁ ଦୂର । ମଝିରେ ମଝିରେ ଉଚ୍ଚା ନିଚା, ଉଠାଣି-ଗଡାଣି ଜାଗା । ପାହାଡିଆ ଅଂଚଳ ଭିତରେ ଏ ସବୁ ଟ୍ରାକ୍‌ରେ ଜଗିଂ କରିବା ଖୁବ୍ ଆନନ୍ଦଦାୟକ । ଏଇ ପାର୍କ ଭିତରେ କେତେଗୁଡିଏ ପ୍ରାକୃତିକ ଝରଣା ବର୍ଷ ସାରା ପ୍ରବାହିତ ହେଉଥାଏ । କେତେକ ଝରଣାକୁ ସ୍ଥାନେ ସ୍ଥାନେ ଆବଦ୍ଧକରି ବଡବଡ ଜଳାଶୟମାନ ସୃଷ୍ଟି କରାଯାଇଥାଏ । ଜଳାଶୟ କଡରେ କାଠ ବେଞ୍ଚ୍

ପଡିଥାଏ ଜଗିଂ କାଳରେ ଥକିପଡୁଥିବା ଲୋକଙ୍କ ପାଇଁ । ଏଠାକୁ ବିଭିନ୍ନ ବୟସର ଲୋକ ଜଗିଂ କରିବାକୁ ଆସନ୍ତି ସହରର ନାନା ଅଂଚଳରୁ– ବେଶୀ ଭାଗ ବୁଢ଼ାବୁଢ଼ୀ ।

ଏଇ ପାର୍କ ଭିତରେ ବୁଲିବାକୁ ସାଙ୍ଗରେ ଦୁଇ ସାନ ସାନ ନାତି ଅମୃତ ଓ ମନିଶଙ୍କୁ ନେଇ ମୁଁ ଓ ନିରୁପମା ଆସୁଥିଲୁ ସେଠାରେ ରହିବା ଭିତରେ । ଅନେକ ସମୟରେ ମୁଁ ଏକା ଏକା ଘରୁ ବାହାରିଆସେ । ଏମିତି ଏକାକୀ ବୁଲୁବୁଲୁ ଥରେ ମୁଁ ଗୋଟିଏ ପୋଖରି-କୂଳ ବେଞ୍ଚରେ ବସିଲି । ବେଞ୍ଚର କାଠ ବାଡାରେ ଖୋଦେଇହେଇଥିବା ଗୋଟିଏ ନାମ ସେଦିନ ମୋ ଆଖିରେ ପଡିଲା– ନାଟାଲିଆ । କେହି ଜଣେ ପ୍ରେମିକ ନିଶ୍ଚୟ ତାର ପ୍ରିୟତମାକୁ ଝୁରିଝୁରି ପକେଟ୍ ଛୁରିରେ ଖୋଦେଇ କରିଥିଲା ବେଞ୍ଚ ବାଡାରେ ସେ ନାଁଟାକୁ ।

ବହୁ ବର୍ଷ ତଳେ ଗ୍ରୀଷ୍ମଛୁଟିରେ ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପନା କରୁଥିବା ବେଳେ କନିକା ଲାଇବ୍ରେରୀରୁ ଲିଓ ଟଲଷ୍ଟୟଙ୍କ ବିଖ୍ୟାତ ଉପନ୍ୟାସ 'ୱାର୍ ଆଣ୍ଡ୍ ପିସ୍' ଘରକୁ ଆଣି ପଢିଥିଲି । ପ୍ରାୟ ୧୩୦୦ ପୃଷ୍ଠାର ସେ ବୃହତ୍‌କାୟ ଉପନ୍ୟାସଟି ପଢିବାକୁ ମତେ ଏକ ମାସ ସମୟ ଲାଗିଯାଇଥିଲା । ତେବେ ଏତେ ଦୀର୍ଘ ଐତିହାସିକ ଉପନ୍ୟାସଟି ପଢି ଶେଷକରିବାରେ ମୋର କୌଣସି ଅବସାଦ ଜାତ ହୋଇନଥିଲା । ବରଂ ଉପନ୍ୟାସର ଷ୍ଟାଇଲ୍ ଓ ଉପନ୍ୟାସର ଲକ୍ଷ୍ୟ ସଂପର୍କରେ ମୋର ଅନେକ ଦ୍ୱିଧା ତଦ୍ୱାରା ସମାହିତ ହୋଇଥିଲା । ତେବେ ଏ ବିଶାଳ ଉପନ୍ୟାସର ମାଧ୍ୟାକର୍ଷଣ ଶକ୍ତିର ଉତ୍ସ ଥିଲା ଏହାର ଶକ୍ତିଶାଳୀ ନାରୀ-ଚରିତ୍ର 'ନାଟାଲିଆ' । ନାଟାଲିଆ ନାଁଟିକୁ ମୁଁ ସେଇ ଦିନୁ ଖୁବ୍ ଭଲପାଇସାରିଥିଲି ।

ସେଦିନ ସେଇ ନାଁଟି ଜେ.ବି. ଉଇଲିୟାମ୍ ପାର୍କର ଏଇ ପୋଖରୀ କୂଳ ବେଞ୍ଚ ବାଡାରେ ଖୋଦେଇ କରାଯାଇଥିବା ଦେଖି ଆଶ୍ଚର୍ଯ୍ୟ ହେଲି । ପ୍ରାୟ ପ୍ରତିଦିନ ପାର୍କ ବୁଲି-ଆସିଲାବେଳେ ମୁଁ ସେଇ ବେଞ୍ଚରେ ବସେ ଓ ନାଟାଲିଆ ନାଁଟିକୁ ଏପରି ଖୋଦେଇ କରିଥିବା ପ୍ରେମିକଟିର ମନୋଭାବକୁ ନେଇ କଳ୍ପନା କରେ । ଦିନେ ପୋଖରିକୂଳରେ ବସି ସେଇ ପ୍ରେମିକଟିର ମନସ୍ତତ୍ତ୍ୱକୁ ନେଇ କଳ୍ପନା କରୁଥିବାବେଳେ ଏକ ଭିଜନ ଦୃଶ୍ୟମାନ ହେଲା । ମତେ ଦିଶିଲା– ପୋଖରୀ ଆରପାରି ପାଇନ୍ ଜଙ୍ଗଲ ଭିତରେ କେହି ଜଣେ ନାରୀ ଏକା ଏକା ଜଗିଂ କରୁଛନ୍ତି । ସନ୍ଧ୍ୟାର ଅନ୍ଧାର ଘୋଟିଆସୁଥାଏ । ସେପରି ସମୟରେ ଏକାକୀ ଜଣେ ନାରୀ ଗଭୀର ଅରଣ୍ୟ ଭିତରେ ବିଚରଣ କରୁଥିବା ଦୃଶ୍ୟ ମତେ ଅସ୍ୱାଭାବିକ ମନେହେଲା । ଅବଶ୍ୟ ଏ ଦେଶ ନାରୀ ସ୍ୱାଧୀନତାର ଦେଶ । ଏଠି ନାରୀମାନେ ନିର୍ଭୟରେ ଅରଣ୍ୟ ବିହାର କରିବା ନିତାନ୍ତ ଅସ୍ୱାଭାବିକ ନୁହେଁ । କିନ୍ତୁ ମୋର ଭାରତୀୟ ଚେତନାରେ ଗଭୀର ଅରଣ୍ୟରେ ବିଚରଣରତା ସେ ନାରୀ ଚରିତ୍ର ଉଦ୍ରେକ କଲା ଏକ ପୌରାଣିକ ରୂପକଳ୍ପ । ମୁଁ ମନେକଲି ଏ ନାରୀଟି ଅନ୍ୟ କେହି ନୁହେଁ– ଜଣେ ବୃକ୍ଷପରୀ ବା ଶାଳଭଞ୍ଜିକା ଯେ ଏଇ ଅରଣ୍ୟର ଆତ୍ମା ! ସଂଭବତଃ ଏଇ ସେଇ ନାଟାଲିଆ

ଯାହା ବିଷୟରେ ମୁଁ ଚିନ୍ତାକରୁଚି ! ଏହାର ପ୍ରେମିକ ଅନ୍ୟ କେହି ନୁହନ୍ତି– ମୁଁ ନିଜେ !

ମୋର ସେଇ ଉପଲବ୍ଧିକୁ ମୁଁ ଏକ ଗଳ୍ପରେ ରୂପାୟିତ କରିଥିଲି । ଗଳ୍ପଟିର ଶୀର୍ଷକ "ନାଟାଲିଆର ଓଁକାର" । ତାହା ପ୍ରକାଶ ପାଇଥିଲା ପରବର୍ଷ "ଓଡିଶା ସୋସାଇଟି ଅଫ୍ ଆମେରିକାଜ୍" ବା 'ଓସା'ର ବାର୍ଷିକ ସଂଖ୍ୟା ମାଗାଜିନ୍‌ରେ । ମହେଶ-ସୁଲୁଙ୍କ ସେଇ ନିପ୍‌ଜିକ୍ ରୋଡ୍ ଘରଟିର ସ୍ମୃତି ମୋ ମନରେ ଚିରଦିନ ପାଇଁ ଲିପିବଦ୍ଧ ହୋଇ ରହିଯାଇଚି ।

୧୯୯୩ରେ ଆମେ ପ୍ରଥମଥର ଆମେରିକା ଆସିବାର କିଛିବର୍ଷ ପୂର୍ବରୁ ଓଡିଶାର ପ୍ରଖ୍ୟାତଯଶା ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ଥରେ ତାଙ୍କର ଆମେରିକା ଭ୍ରମଣ ସମୟରେ ଏଇ ଘରେ ଆମ ଝିଅଜୋଇଁଙ୍କର ଅତିଥି ହୋଇଥିଲେ । ସେ ଓଡିଶାକୁ ଫେରିଯାଇ ଏ ଘରଟିର ଭୂରି ଭୂରି ପ୍ରଶଂସା କରି ମତେ କହିଥିଲେ, "ଶାନ୍ତନୁବାବୁ ! ଆପଣଙ୍କ ଝିଅ ଜୋଇଁଙ୍କ କନେକ୍ଟିକଟ୍ ଘରେ ଦୁଇଦିନ ଅତିଥି ହୋଇଥିଲି । ସେମାନେ କୋଉଠି ରହୁଛନ୍ତି ଜାଣନ୍ତି– ରାମାୟଣର ପଞ୍ଚବଟୀ ଆଶ୍ରମରେ ! ଥରେ ଯାଇ ଦେଖିଆସନ୍ତୁ ନା !"

ଏ ଘରେ ଅତିଥି ହୋଇଥିଲେ ମଧ୍ୟ ଓଡିଶାର ଆହୁରି କେତେଜଣ ବିଶିଷ୍ଟ ବ୍ୟକ୍ତି । ସେମାନଙ୍କ ଭିତରେ ଥିଲେ ବିଖ୍ୟାତ ନୃତ୍ୟାଙ୍ଗନା ପଦ୍ମଶ୍ରୀ ସଂଯୁକ୍ତା ଓ ତାଙ୍କ ସ୍ୱାମୀ ଶ୍ରୀ ରଘୁନାଥ ପାଣିଗ୍ରାହୀ, ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ, ବିଶ୍ୱ-ପ୍ରସିଦ୍ଧ ପଦାର୍ଥବିଜ୍ଞାନୀ ଡକ୍ଟର ଯୋଗେଶ ଚନ୍ଦ୍ର ପତି । ଏମାନେ ସମସ୍ତେ ମହେଶଙ୍କ ପାରିବାରିକ ସଂପର୍କୀୟ । ଏମାନଙ୍କ ବ୍ୟତୀତ ଓଡିଶାର କବି ସୀତାକାନ୍ତ ମହାପାତ୍ର ମଧ୍ୟ ଥରେ ଏଘରେ ଅତିଥି ହୋଇଥିଲେ । ସେତେବେଳେ ସେ ଷ୍ଟଡିଲିଭ୍ ନେଇ ହାର୍ଭାଡ୍ ବିଶ୍ୱବିଦ୍ୟାଳୟରେ କେତେ ମାସ ଗବେଷଣା କରୁଥିଲେ । ଦୁଃଖର କଥା, ପରବର୍ତ୍ତୀ ସମୟରେ ୧୯୯୭ରେ ମୋର ପୁନର୍ବାର ଆମେରିକା ଭ୍ରମଣ ବେଳକୁ ଏ ଘରଟି ଆଉ ମହେଶ-ସୁଲୁଙ୍କର ନିଜ ଘର ହୋଇ ରହିନଥିଲା । ସେମାନେ ସେ ଘରଟିକୁ ବିକିଦେଇ ଚାଲିଯାଇଥିଲେ ସେଇ ଗ୍ଲାସ୍‌ଟନବରୀର ଅନ୍ୟ ଏକ ଅଞ୍ଚଳରେ ନିର୍ମିତ ଏକ ବଡ ଘରକୁ । ତେବେ, ନିପ୍‌ଜିକ୍ ରୋଡ୍‌ର ଏଇ ଘରଟିରେ ଥିଲାବେଳେ ଆମେ ସେଥର ଆମେରିକାର ପୂର୍ବ ଉପକୂଳର ଧନାଢ୍ୟ 'ନିଉ-ଇଂଲାଣ୍ଡ' ଅଞ୍ଚଳରେ ଥିବା ବହୁ ଦର୍ଶନୀୟ ସ୍ଥାନ ଭ୍ରମଣ କରିଥିଲୁ । ସେସବୁ ଭିତରେ ଉଲ୍ଲେଖନୀୟ– ବଷ୍ଟନ୍‌ର ହାର୍ଭାଡ୍ ବିଶ୍ୱବିଦ୍ୟାଳୟ, ମାସାଚୁସେଟ୍‌ର ଏମ୍.ଆଇ.ଟି, ନିଉ ହେଭେନ୍‌ରେ ୟେଲ୍ ବିଶ୍ୱବିଦ୍ୟାଳୟ, ଗ୍ରୋଟନ୍‌ରେ ଆମେରିକାର ନାଭାଲ୍ ବେସ୍, ଆମେରିକାର ଦୁଇ ପ୍ରସିଦ୍ଧ ଲେଖକ ଲେଖିକା ମାର୍କ ଟ୍ୱେନ୍ ଓ ହାରିଏଟ୍ ବିଚ୍‌ର ଷ୍ଟୋଙ୍କ ବାସଗୃହ ଏବଂ ଅନ୍ୟାନ୍ୟ ଦର୍ଶନୀୟ କେତେକ ସ୍ଥାନ ସମେତ କନେକ୍ଟିକଟ୍‌ର ପଡୋଶୀରାଜ୍ୟ ନ୍ୟୁୟର୍କର ନ୍ୟୁୟର୍କ ସିଟିରେ ଅବସ୍ଥିତ ଜାତିସଂଘର ମୁଖ୍ୟ କାର୍ଯ୍ୟାଳୟ (U.N Headquarters), ଷ୍ଟାଚ୍ୟୁ ଅଫ୍ ଲିବର୍ଟି (Statue of Liberty) ଇତ୍ୟାଦି ଅନେକ ପ୍ରମୁଖ ଦର୍ଶନୀୟ ସ୍ଥାନ ।

## ହାର୍ଭାଡ ବିଶ୍ୱବିଦ୍ୟାଳୟ ଦର୍ଶନ : କେତୋଟି ସ୍ମରଣୀୟ ଘଟଣା – (ତା ୩୧, ଜୁଲାଇ, ୧୯୯୩)

ଜଣେ ଶିକ୍ଷାବିତ୍ ଭାବେ ହାର୍ଭାଡ ବିଶ୍ୱବିଦ୍ୟାଳୟ ବୁଲିବା ସମୟରେ ମୋ ନଜରକୁ ଆସିଥିଲା କେତେଟା ସ୍ୱତନ୍ତ୍ର ପ୍ରସଙ୍ଗ ଯାହା ଗାଇଡ୍ ବୁକ୍‌ରେ ନଥିଲା । ପ୍ରଥମରୁ ଆମ ପାଇଁ ନିଯୁକ୍ତ ଅଫିସିଆଲ୍ ଗାଇଡ ଜଣଙ୍କୁ ଦେଖି ମୁଁ ତାଙ୍କୁ ଜଣେ ଭାରତୀୟ ବୋଲି ମନେକଲି । ସେ ନିଜ ପରିଚୟ ଦେଇ କହିଲେ– ସେ ଏ ବିଶ୍ୱବିଦ୍ୟାଳୟର ଜଣେ ଗବେଷକ ଛାତ୍ର । ଜଣେ ଭାରତୀୟ ଲୋକଙ୍କୁ ହାର୍ଭାଡର ଗବେଷକ ଛାତ୍ର ଭାବେ ପାଇ ମୁଁ ଖୁବ୍ ଖୁସିରେ ତାଙ୍କର ତାରିଫ୍ କରି ପଚାରିଲି, ''ଆପଣ ଇଣ୍ଡିଆର କୋଉ ଷ୍ଟେଟ୍‌ର ନାଗରିକ ? ଦିଶୁଚନ୍ତି ବେଙ୍ଗଲର ଭଳି ତ !''

ମୋର ସେପରି ଅନୁମାନରେ ଭଦ୍ରଲୋକ କ୍ଷୁବ୍ଧ ହେଲା ପରି ମୁହଁ ଆମ୍ବିଳା କଲେ । ପରେ ପରେ ନିଜର ସ୍ୱତନ୍ତ୍ର ପରିଚୟ ଦେଲା ପରି କହିଲେ, ''ମୁଁ ଇଣ୍ଡିଆନ୍ ନୁହଁ– ବାଙ୍ଗଲାଦେଶୀ । ବାଙ୍ଗଲାଦେଶ ଇଣ୍ଡିଆ ନୁହେଁ ।''

ଏହା ତାଙ୍କର ଭାରତବିରୋଧୀ ମନୋଭାବକୁ ପଦାରେ ପକାଇଦେଲା ଅବଶ୍ୟ । କିନ୍ତୁ ସେ ଭଦ୍ରଲୋକ ତା'ପରେ ଆମର ସେଇ ଘଣ୍ଟିକିଆ ଆଭ୍ୟନ୍ତରୀଣ ଟୁର୍ ପ୍ରୋଗାମ୍‌ଟିକୁ ଖୁବ୍ ସନ୍ତୋଷଜନକ ଭାବେ ପରିଚାଳିତ କରିଥିଲେ ।

ଆମର ପଞ୍ଚଚାଳିଶ ମିନିଟିଆ ଟୁର୍ ଆରମ୍ଭହେଲା ସେଇଠୁ ଯୋଉଠୁ ଆରମ୍ଭହେବା କଥା– "The Statue of Three Lies" ଅର୍ଥାତ୍ ତିନିମିଥ୍ୟାର ପ୍ରତିମୂର୍ତ୍ତିଙ୍କ ଠାରୁ । ଏ ପ୍ରତିମୂର୍ତ୍ତିଟି ପୁଣି କାହାର– ପ୍ରତିଷ୍ଠାତା ସ୍ୱୟଂ ଜନ ହାର୍ଭାଡଙ୍କର ! ପ୍ରତିମୂର୍ତ୍ତି ତଳେ ଅବଶ୍ୟ ଲେଖାଥିଲା "John Harvard, Founder–1638" । ଖ୍ରୀ. ୧୬୩୮ରେ ପ୍ରତିଷ୍ଠିତ ଏଇ ବିଶ୍ୱବିଖ୍ୟାତ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତାଙ୍କୁ ଅଫିସିଆଲ୍ ଗାଇଡ୍ ସେପରି ଅଶୋଭନୀୟ ଭାଷାରେ ପରିଚୟ କରାଇବା ଶୁଣି ମୁଁ ମର୍ମାହତ ହେଲି; କିନ୍ତୁ ପରେ ଜାଣିଲି ଏଇ ଉକ୍ତିଟି ଏଠାକାର ଏକ ପ୍ରଚଳିତ ''ବିଶ୍ୱାସ'' ! ଏଠାକାର ଜାଣିବାଶୁଣିବା ଲୋକମାନେ ଓ ପଣ୍ଡିତମାନେ ଏ ତିନି ଅସତ୍ୟ ସଂପର୍କରେ କହନ୍ତି ଯେ ପ୍ରଥମେ ଜନ୍ ହାର୍ଭାଡ୍ ବାସ୍ତବରେ ଏ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ନୁହନ୍ତି । ପୁଣି ଅନ୍ୟ ଦୁଇ ଅସତ୍ୟ ସଂପର୍କରେ ପଣ୍ଡିତମାନଙ୍କ ମତ ଏ ଅନୁଷ୍ଠାନ ୧୬୩୮ରେ ନୁହେଁ, ୧୬୩୬ରେ ପ୍ରତିଷ୍ଠା ପାଇଥିଲା । ପୁଣି ଏଇ ମାର୍ବଲ୍ ପଥରର ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତିଟିକୁ ମଧ୍ୟ ସେମାନେ ଜନ୍ ହାର୍ଭାଡଙ୍କ ପ୍ରକୃତ ଚେହରା ବୋଲି ମାନନ୍ତି ନାହିଁ ।

ସେ ଯାହାହେଉ ଆମର ଟୁର୍ ଆରମ୍ଭ ହୋଇଥିଲା ସେଇ ପ୍ରତିମୂର୍ତ୍ତି ପାଖରୁ । ଆମେ ତା'ପରେ କ୍ୟାମ୍ପସ୍ ଭିତରେ ଏକାନ୍ତ ଦର୍ଶନୀୟ କେତେକ ସ୍ଥାନ ବୁଲି ଦେଖିଲୁ । ସେ ଭିତରେ ମୋ' ମନରେ ସ୍ଥାୟୀ ରେଖାପାତ କରିଥିଲା କେତେକ ବିଷୟ–

ୱାଇଡନର୍ ଲାଇବ୍ରେରୀ (Widener Library), ହଲିସ୍-ହଲ୍ (Hollis-Hall), ମେମୋରିଅଲ ଚର୍ଚ (Memorial Church), ସଂଗ୍ରହାଳୟ (Harvard University-Museum), ସାଇନ୍ସସେଣ୍ଟର (Science Center) ଆଦି କେତେକ ଯଥାର୍ଥରେ ଦର୍ଶନୀୟ ଏବଂ ଜ୍ଞାନୋଦ୍ଦୀପକ ଅନୁଷ୍ଠାନ ।

**ୱାଇଡ୍‌ନର୍ ଲାଇବ୍ରେରୀ :** ଏ ଲାଇବ୍ରେରୀ ସଂପର୍କରେ କୁହାଯାଏ– ଏହା ବିଶ୍ୱ-ସ୍ତରୀୟ ଲାଇବ୍ରେରୀ ବ୍ୟବସ୍ଥାରେ ଅନ୍ୟତମ ବୃହତ୍ ପୁସ୍ତକାଗାର । ସମଗ୍ର ୟୁ.ଏସ୍.ଏ.ରେ ତୃତୀୟ ସ୍ଥାନ ଅଧିକାର କରିଥିବା ଏ ପୁସ୍ତକାଗାରରେ ଗଚ୍ଛିତ ରହିଚି– ୩.୨ ନିୟୁତ (ବତିଶ ଲକ୍ଷ) ପୁସ୍ତକ । ଏ ସମସ୍ତକୁ ସଂଗ୍ରହ କରାଯାଇଥିବା ବହିଥାକର ଦୈର୍ଘ୍ୟ– ପାଞ୍ଚ ମାଇଲ୍ ବା ଆଠ କିଲୋମିଟର !

ଏଇ ବିଶାଳ ପୁସ୍ତକାଗାର ନିର୍ମାଣ ପଛରେ ଏକ କରୁଣ ମାନବିକ ଘଟଣା ବିଶ୍ୱବିଦ୍ୟାଳୟର ଇତିହାସରେ ସ୍ମରଣୀୟ । ୧୯୧୨ ମସିହାରେ ଘଟିଥିବା ସେଇ ଦାରୁଣ ଦୁର୍ଘଟଣା– 'ଟାଇଟାନିକ ଜାହାଜ ବୁଡ଼ି'ରେ ଏ ବିଶ୍ୱବିଦ୍ୟାଳୟର ଜଣେ ପୂର୍ବତନ ଛାତ୍ର ମୃତ୍ୟୁବରଣ କରିଥିଲେ । ତାଙ୍କ ନାମ ''ହାରି ଏଲ୍‌ଭିନ୍ ୱାଇଡ୍‌ନର୍'' । ତାଙ୍କ ସ୍ମୃତିରକ୍ଷା ପାଇଁ ହାରିଙ୍କ ମା' ବିଶ୍ୱବିଦ୍ୟାଳୟ ଏଣ୍ଡାଉମେଣ୍ଟକୁ ତାଙ୍କ ସ୍ୱର୍ଗତ ପୁତ୍ର ନାମରେ ଏକ ପୁସ୍ତକାଗାର ନିର୍ମାଣ ପାଇଁ ସମସ୍ତ ଅର୍ଥ ଦାନକରିଥିଲେ । ଏଣ୍ଡାଉମେଣ୍ଟକୁ ଅର୍ଥ ଦାନ ସହିତ ଏକ ସର୍ତ୍ତ ରହିଥିଲା ତାହା ହେଲା– ଏ ପୁସ୍ତକାଗାର ବିଲଡିଂର ଢାଞ୍ଚାରେ କୌଣସି ପରିବର୍ତ୍ତନ କରାଯାଇପାରିବ ନାହିଁ– ଏପରିକି ଭବିଷ୍ୟତରେ ଏହାର ଢାଞ୍ଚାରେ ବ୍ୟବହୃତ ଇଟା ଖଣ୍ଡେ ମଧ୍ୟ ଅଦଳ ବଦଳ କରାଯାଇ ପାରିବନାହିଁ । ଯଦି ମରାମତି ନିହାତି ଦରକାର ହୁଏ ତେବେ ବିଲଡିଂର ଯତ୍‌ସାମାନ୍ୟ ଭଗ୍ନାଂଶକୁ ମଧ୍ୟ ମାସାଚୁସେଟ୍‌ର ''ଜେନେରାଲ୍ କୋର୍ଟ'' ନିୟନ୍ତ୍ରଣରେ ଥିବା ଏକ ସଂଗ୍ରହାଳୟରେ ଗଚ୍ଛିତ କରାଯିବ । ଶହେବର୍ଷ ତଳେ ନିର୍ମିତ ୱାଇଡନର୍ ଲାଇବ୍ରେରୀ ସଂପର୍କିତ ସେଇ ସର୍ତ୍ତ ଆଜି ପର୍ଯ୍ୟନ୍ତ ହାର୍ଭାଡର କର୍ତ୍ତୃପକ୍ଷ ନିଷ୍ଠାପର ଭାବେ ପାଳନ କରନ୍ତି ।

ହାର୍ଭାଡ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ବର୍ତ୍ତମାନ ଆହୁରି ଅନେକ ପୁସ୍ତକାଗାର ବିଦ୍ୟମାନ । ସେ ଭିତରୁ ଦୁଇଟି ହେଲା– ପୁସେ (Pusey Library) ଲାଇବ୍ରେରୀ ଓ ହାଉଟନ୍ ଲାଇବ୍ରେରୀ (Houton Library ) ।

ପୁସେର ବିଶେଷତ୍ୱ ହେଲା– ଏଠାରେ ଅଛି ବିଶ୍ୱବିଦ୍ୟାଳୟର ଅଭିଲେଖାଗାର, ହାର୍ଭାଡ୍ ଥିଏଟର୍ ସଂପର୍କରେ ସମସ୍ତ ରେକର୍ଡପତ୍ର, ହାର୍ଭାଡ୍ ମ୍ୟାପ୍ ସଂଗ୍ରହାଳୟ ଓ ଥିଓଡର୍ ରୁଜ୍‌ଭେଲ୍ଟ ପ୍ରଦର୍ଶନୀ ମଣ୍ଡପ ଇତ୍ୟାଦି । ପୁସେ ଲାଇବ୍ରେରୀ ଅଗଣାରେ ଗୋଟିଏ ଦର୍ଶନୀୟ ଜାପାନିଜ୍ 'ମ୍ୟାପ୍ଲ ଗଛ' ଦେଖିଲୁ । ଏ ମ୍ୟାପ୍ଲ ଗଛଟିର ପତ୍ର ଛୋଟ ଛୋଟ, ସଂପୂର୍ଣ୍ଣ ଲାଲ୍ ରଙ୍ଗର ଓ ଖୁବ୍ ସୁନ୍ଦର । ଶୁଣିଲୁ ଏ ମ୍ୟାପ୍ଲ ଗଛ ଶାନ୍ତିର ପ୍ରତୀକ ଭାବେ ଜାପାନ

ଦେଶର ସରକାରଙ୍କ ଅବଦାନ– ବୋଧହୁଏ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଆମେରିକାର ହିରୋସୀମା ଓ ନାଗାସାକୀ ଉପରେ ପରମାଣୁ ବୋମା କ୍ଷେପଣ ଜନିତ ଅମାନୁଷିକତାର ପରବର୍ତ୍ତୀ ଶାନ୍ତି ପର୍ବର ସ୍ମାରକୀ ! ଏପରି ଗୋଟିଏ ଜାପାନିଜ୍ ମ୍ୟାପ୍ଲ ଆମେ ପରେ ପୁଣି ଦେଖିଲୁ– ନ୍ୟୁୟର୍କରେ ମିଳିତ ଜାତିସଂଘର ମୁଖ୍ୟକାର୍ଯ୍ୟାଳୟର ତଳ ମହଲା ପ୍ରଦର୍ଶନୀ ଗୃହ ସଂଲଗ୍ନ ବଗିଚାରେ । ଏ ପ୍ରଦର୍ଶନୀ କେବଳ ୧୯୪୫ରେ, ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ପର୍ଯ୍ୟାୟରେ ଘଟିଥିବା ଜାପାନର ହିରୋସୀମା ଓ ନାଗାସାକି ସହର ଉପରେ ପରମାଣୁ ବୋମା ଆକ୍ରମଣ ଜନିତ ଭୟାବହ ପରିଣତି ବିଷୟ ଆଧାରିତ ।

**ହଲିସ୍ ହଲ୍** (Hollis Hall)– ହାର୍ଭାଡର ଅନ୍ୟତମ ଗୌରବାବହ ଅନୁଷ୍ଠାନ ହେଲା ହଲିସ୍ ହଲ୍ । ୧୭୬୩ରେ ନିର୍ମିତ ଏ ଛାତ୍ରାବାସ ବା ଡର୍ମିଟୋରିର ଐତିହ୍ୟ ଦର୍ଶକମାନଙ୍କ ପକ୍ଷରେ ଏକାନ୍ତ ସ୍ମରଣୀୟ । ଏ ଛାତ୍ରାବାସର ପ୍ରଥମ ଅନ୍ତେବାସୀମାନଙ୍କ ଭିତରୁ ଦୁଇଜଣ ଛାତ୍ର ପରବର୍ତ୍ତୀ ସମୟରେ ଜଗତବିଖ୍ୟାତ ହୋଇଥିଲେ । ସେ ଦୁହେଁ ହେଲେ– ଆମେରିକାର ଦୁଇ ପ୍ରସିଦ୍ଧ ଲେଖକ ଓ ଦାର୍ଶନିକ 'ରାଲଫ୍ ୱାଲଡୋ ଇମରସନ୍' (Ralph Waldo Emerson) ଓ 'ହେନରୀ ଡେଭିଡ୍ ଥୋରୋ' (Henry David Thoreau) ।

ଏ 'ହଲିସ୍ ହଲ'ର ସ୍ମୃତି ମଧ୍ୟ ଆମେରିକାର ସ୍ୱାଧୀନତା ସଂଗ୍ରାମ ସହିତ ଜଡିତ । ଏଇ ହଲ୍‌ରେ ବିପ୍ଲବର ମୁଖ୍ୟ କମାଣ୍ଡର ଜର୍ଜ ୱାସିଂଟନ୍‌ଙ୍କ ସଂଗ୍ରାମୀ ସୈନ୍ୟମାନେ ସାମୟିକ ଭାବେ ଡେରା ପକେଇଥିଲେ ।

ଏଇ ଐତିହାସିକ ହଲ୍‌ର ପାହାଚ ଓ କାନ୍ଥରେ ସ୍ଥାନେସ୍ଥାନେ ବସନ୍ତ ରୋଗାକ୍ରାନ୍ତ ଲୋକର ମୁହଁରେ ଥିବା ଗାତଗାତୁଆ ଚିହ୍ନ ଭଳି ଅନେକ କଟା ଦାଗ ଦେଖିବାକୁ ମିଳେ । ଏଗୁଡିକର ସ୍ମୃତି ବିଶ୍ୱବିଦ୍ୟାଳୟର ଐତିହ୍ୟ ସହିତ ଜଡିତ । ଏ ସବୁ ଗାତ ସୃଷ୍ଟି ହେଇଥିଲା ବହୁ ବର୍ଷ ପୂର୍ବେ । ସେତେବେଳେ ସେଣ୍ଟ୍ରାଲ୍ ହିଟିଂ ବ୍ୟବସ୍ଥା ନଥିଲା । ପ୍ରବଳ ଶୀତରୁ ନିଜକୁ ରକ୍ଷା କରିବାକୁ ଏ ଛାତ୍ରାବାସର ଅନ୍ତେବାସୀମାନେ ସେତେବେଳେ ସୈନ୍ୟବାହିନୀଙ୍କ ତୋପରେ ବ୍ୟବହୃତ ବଡ ବଡ ଲୁହା ଗୋଳାଗୁଡିକୁ ଉତ୍ତପ୍ତ କରି ଆଣି ରଖୁଥିଲେ । ହଲ୍‌ର କାଠ ଚଟାଣ ପୋଡିଯାଇ ସ୍ଥାନେ ସ୍ଥାନେ ପୋଡା ଦାଗ ରହିଯାଇଚି ସେଇକାଳୁ । ବହୁ ବର୍ଷ ବିତିଯାଇଥିଲେବି ସେଇ ପୋଡା ଦାଗକୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଏ ପର୍ଯ୍ୟନ୍ତ ସାଇତି ରଖିଚନ୍ତି ଅତୀତ ଯୁଗର ସ୍ମାରକୀ ଭାବେ !

**ହାର୍ଭାଡର ଗଚ୍ଛିତ ନିଜସ୍ୱ ଧନରାଶି** (Endowment)– ହାର୍ଭାଡ ବିଶ୍ୱବିଦ୍ୟାଳୟ ଏକ ସ୍ୱୟଂଚାଳିତ ଶିକ୍ଷାସଂସ୍ଥା ଯାହା ଉପରେ ଆମେରିକା ସରକାରର ମୁରବିଗିରି ଚାଲେନା । ଆମ ଭାରତର ବିଶ୍ୱବିଦ୍ୟାଳୟଗୁଡିକ ଯେମିତି ନାଁକୁ ମାତ୍ର ସ୍ୱୟଂଶାସିତ ସେମିତି ଆଦୌ ନୁହେଁ । ତାର ମୂଳ କାରଣ ଏ ଦେଶର ବିଶ୍ୱବିଦ୍ୟାଳୟ ଗୁଡିକର ନିଜସ୍ୱ ପୁଞ୍ଜିର ପରିମାଣ

ଖୁବ୍ ବେଶୀ । ଏମାନେ ଅର୍ଥନୈତିକ ସ୍ୱାଧୀନତା ପାଇବା ପାଇଁ ପ୍ରଚୁର ପରିମାଣରେ ଅନୁଦାନ ସଂଗ୍ରହ କରନ୍ତି । ସେ ଏକ ବ୍ୟାପକ ବିଷୟ– ଏଠାରେ ସେ ସଂପର୍କରେ ଆଲୋଚନା କରିବା ଅନାବଶ୍ୟକ । ଅନୁସନ୍ଧାନରୁ ଜାଣିଲି-- ହାର୍ଭାଡର ଅର୍ଥନୈତିକସ୍ଥିତି ସତରେ ଈର୍ଷାଉଦ୍ରେକକାରୀ ଭାବେ ଅକଳ୍ପନୀୟ । ୧୯୯୩ରେ ଏହାର ନିଜସ୍ୱ ପାଣ୍ଠି (ଏଣ୍ଡାଉମେଣ୍ଟ) ଥିଲା– ୧୨ (ବାର) ବିଲିୟନ ଡଲାର !

**ହାର୍ଭାଡରେ ଛାତ୍ର ବିଶୃଂଖଳା ବିରଳ କାହିଁକି—** ଆମେରିକାର ଯେତେଟି ବିଶ୍ୱ-ବିଦ୍ୟାଳୟ ଦେଖିଚି ସେଠି ମୁଁ ସେମାନଙ୍କ ଆଡମିନିଷ୍ଟ୍ରେସନ୍ ସଂପର୍କରେ ଅନୁସନ୍ଧାନ କରେ । ମୋର ମୌଳିକ ପ୍ରଶ୍ନ – ଆପଣଙ୍କ ବିଶ୍ୱବିଦ୍ୟାଳୟ କ୍ୟାମ୍ପସରେ ଛାତ୍ର ଶୃଂଖଳା ପରିସ୍ଥିତି କ'ଣ? ଛାତ୍ରମାନେ ଏଠି ଷ୍ଟ୍ରାଇକ୍‌କରି କଲେଜ ବନ୍ଦବାନ୍ଦ କରିବା, ଗାଡି ମୋଟର ପୋଡାଜଳା ଭଙ୍ଗାରୁଜା କରି ବିଶ୍ୱବିଦ୍ୟାଳୟ ସଂପତ୍ତି ନଷ୍ଟ କରନ୍ତି କି? କ୍ୟାମ୍ପସ୍ ଭିତରେ ଆଇନ୍ ଶୃଂଖଳା ରକ୍ଷାପାଇଁ କି ବ୍ୟବସ୍ଥା ରହିଚି ଇତ୍ୟାଦି ।

ମୋର ପ୍ରଶ୍ନ ସେମାନଙ୍କୁ ଆଶ୍ଚର୍ଯ୍ୟଜନକ ବା ଦୁର୍ବୋଧ୍ୟ ମନେହୁଏ । ସେମାନେ ବୁଝିପାରନ୍ତିନାହିଁ– ଛାତ୍ରମାନେ କାହିଁକି କ୍ଲାସ୍ ବନ୍ଦକରିବେ, କାହିଁକି ପୋଡା ଜଳା କରିବେ?

ହାର୍ଭାଡ୍ କ୍ୟାମ୍ପସ୍ ଭ୍ରମଣବେଳେ ମୁଁ ଏଇ ପ୍ରଶ୍ନ ଉଠେଇ ଗାଇଡଙ୍କୁ ପଚାରିଲି, ''ୟୁନିଭରସିଟିରେ ଷ୍ଟୁଡେଣ୍ଟସ୍ ଷ୍ଟ୍ରାଇକ୍ ହୁଏ?''

ମୋର ପ୍ରଶ୍ନର ଉତ୍ତର ମିଳିଲା ଗୋଟାଏ କଂକ୍ରିଟ୍ ଉଦାହରଣରୁ । ସତେବେଳେ ନାମ ଲେଖା ସମୟ । କ୍ୟାମ୍ପସ୍‌କୁ ବହୁ ବହୁ ଦେଶରୁ ଅଭିଭାବକମାନେ ସେମାନଙ୍କ ପୁଅଝିଅମାନଙ୍କ ନାମ ଲେଖା ଉଦ୍ଦେଶ୍ୟରେ ଆସିଥାନ୍ତି । ସେମାନଙ୍କ ଚେହେରା ଦେଖି ଚିହ୍ନିବା କଷ୍ଟକର ନୁହଁ– କିଏ ଚାଇନିଜ୍, କିଏ ମଧ୍ୟପ୍ରାଚ୍ୟ ତ କିଏ ଭାରତୀୟ ଭୂଖଣ୍ଡର ଅଧିବାସୀ ।

କ୍ୟାମ୍ପସ୍ ଭିତରେ ବୁଲାଚଲା କରୁଥିବା ଜଣେ ନିର୍ଦ୍ଦିଷ୍ଟ ଯୁବକଙ୍କୁ ନିଘା କରିବାକୁ ଗାଇଡ୍ ମତେ କହିଲେ । ପଚାରିଲେ, ''ଏ କିଏ ଜାଣନ୍ତି?''– ମୁଁ ଅନୁମାନ କରୁଥିବା-ବେଳେ ଗାଇଡ୍ ମୋ କାନରେ କହିଲେ, ''ଏ ଜଣେ ଦୁର୍ଦ୍ଦାନ୍ତ ଆଫଗାନ୍ ମୁଜାହିଦ୍ଦିନ୍ ! ଗଲା ବର୍ଷ ଏ ପିଲା ଆଫଗାନିସ୍ତାନରେ ଏ. କେ. ଫର୍ଟିସେଭେନ୍ ଧରି ଯୁଦ୍ଧ କରୁଥିଲା । ବିନାଦ୍ୱିଧାରେ ମଣିଷ ମାରୁଥିଲା । ଏଇଲେ ଏ ପିଲା ଆସିଚି ଏଠି ପାଠ ପଢିବାକୁ । ଏ ପିଲା ବାଘରୁ ହଠାତ୍ ପାଲଟିଚି ମୂଷା । କାହିଁକି କହିଲେ? ତାର କାରଣ ହଜାର ହଜାର ଡଲାର ଆଗୁଆ ଡିପୋଜିଟ୍ କରି ଏ ଯୁବକ ଆସିଚି ପାଠ ପଢିବାକୁ ଏଠି ହାର୍ଭାଡରେ । ଷ୍ଟ୍ରାଇକ୍ କଲେ ତା'ର କ୍ଷତି, ଅନ୍ୟ କାହାରି ନୁହେଁ । ସେକଥା ତାକୁ ଭଲକରି ଜଣା । ଗୋଟାଏ ଗୋଟାଏ କୋର୍ସ ପିଛା ଶହ ଶହ ଡଲାର ଖର୍ଚ୍ଚ କରିବାକୁ ହୁଏ । ଆପଣଙ୍କ ଇଣ୍ଡିଆ ଭଳି ଏଠି ମାଗଣାରେ ମାଗଣାରେ ପ୍ରାଇମେରି ସ୍କୁଲ୍‌ରୁ ବି.ଏ., ଏମ୍.ଏ ପିଏଚ୍.ଡି

ପର୍ଯ୍ୟନ୍ତ ପାଠ ପଢିବା କଥାର ବ୍ୟବସ୍ଥା ଚଳେନାହିଁ ଏ ଦେଶରେ । ଏଠି ପାଠ ବିକ୍ରୀ ହୁଏ । ପିଲାଙ୍କ ଟଙ୍କାରେ ୟୁନିର୍ଭସିଟି ଚଳେ । ରିସର୍ଚ୍ଚ ହୁଏ । ନୂଆ ନଲେଜ ଜେନରେଟ୍ ହୁଏ । ନଲେଜକୁ ଏଠି କହନ୍ତି ବୌଦ୍ଧିକ ସଂପତ୍ତି ବା ''ଇଣ୍ଟେଲେକ୍ଚ୍ୟୁଆଲ୍ ପ୍ରପର୍ଟି'' । ଏ ସଂପତ୍ତିକୁ ପ୍ୟାଟେଣ୍ଟ କରିଆରେ ସ୍ୱତ୍ତ୍ୱାଧିକାର ଦିଆଯାଏ । ଆପଣଙ୍କ ଇଣ୍ଡିଆ ଭଳି ଏଠି ପ୍ୟାଟେଣ୍ଟ ବା କପିରାଇଟ୍ ଚୋରିକୁ ବରଦାସ୍ତ କରାଯାଏନା– ତେଣୁ ଛାତ୍ର ବିଦ୍ରୋହ ଏ ଦେଶରେ ବିରଳ ।

''ତେବେ ଏଠାକାର ଛାତ୍ର ବିକ୍ଷୋଭର ଗୋଟାଏ ତରିକା ବି ଅଛି । ଗୋଟାଏ ଘଟଣା ଶୁଣନ୍ତୁ । କେତେବର୍ଷ ତଳେ ଏଠାକାର ଦଳେ ଫ୍ରେସ୍‌ମେନ୍ (ନୂଆ ନାଁ ଲେଖେଇଥିବା ପିଲା) ଏଠି ଗୋଟାଏ ଅଭିନବ ଧରଣର ପ୍ରତିବାଦ କରିଥିଲେ– ୟୁନିର୍ଭସିଟି ରେକର୍ଡରେ ଅଛି । ସେତେବେଳର ନିୟମାନୁସାରେ ଡାଇନିଂରୁମ୍‌ରେ ବସି ଡିନର୍ ଖାଇବାବେଳେ ଛାତ୍ରମାନଙ୍କୁ ଜ୍ୟାକେଟ୍ ଆଉ ଟାଇ ପନ୍ଧିବାକୁ ହେଉଥିଲା । କିନ୍ତୁ ନୂଆ ପିଲାମାନେ ଜିଦି କଲେ– ସେମାନେ ସାଦା ପୋଷାକରେ ଡିନର୍ ଖାଇବେ । କିନ୍ତୁ ୟୁନିର୍ଭସିଟି କର୍ତ୍ତୃପକ୍ଷ ଅନୁମତି ଦେଲେ ନାହିଁ । ତେଣୁ ସେମାନେ ସେଦିନ ଡାଇନିଂହଲ୍‌ରେ ପହଞ୍ଚିଲେ ଜ୍ୟାକେଟ୍ ଓ ଟାଇ ପିନ୍ଧି– କିନ୍ତୁ ଅଣ୍ଟାତଳକୁ ପୂରା ଲଙ୍ଗଳା ! ଏ ଦୃଶ୍ୟ ଦେଖି ବୁଢା ଡିନ୍‌ଙ୍କ ଅକଲ୍ ଗୁଡୁମ୍ । ପରେ ପରେ ଡ୍ରେସ୍‌କୋର୍ଡରୁ ଜ୍ୟାକେଟ୍ ଟାଇ ନିୟମ ହଟାଇ ନିଆଗଲା ।

''ଆଉ ହଁ, ଭିଏତ୍‌ନାମ୍ ଯୁଦ୍ଧବେଳେ ଏ ଦେଶର କଲେଜ ଛାତ୍ରମାନଙ୍କୁ ବହୁ ସଂଖ୍ୟାରେ 'କନ୍‌ସ୍କ୍ରିପସନ୍' ଅର୍ଥାତ୍ ସୈନ୍ୟବାହିନୀରେ ଯୋଗଦେବାକୁ ବାଧ୍ୟ କରାଯାଉଥିଲା । ସେତେବେଳେ କେବଳ ଏଠି ହାର୍ଭାଡରେ ନୁହେଁ, ସାରା ଆମେରିକାର ୟୁନିର୍ଭସିଟିମାନଙ୍କରେ ପ୍ରବଳ ଛାତ୍ର ବିକ୍ଷୋଭ ଦେଖାଦେଇଥିଲା । ସେସବୁ ସ୍ୱତନ୍ତ୍ର ବିଷୟ । କିନ୍ତୁ ସାଧାରଣ ସମୟରେ ଆମେରିକାର ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଜୀବନରେ ଛାତ୍ର ବିଶୃଂଖଳା ବିରଳ ।

ଏ ଦେଶରେ କ୍ୟାମ୍ପସ୍ ସିକ୍ୟୁରିଟି ବ୍ୟବସ୍ଥା ମଧ୍ୟ ଖୁବ୍ କଡାକଡି । ୟୁନିର୍ଭସିଟିର ନିଜର ପୁଲିସ୍ ଅଛନ୍ତି । ଦରକାର ପଡିଲେ କ୍ରିମିନାଲ୍ କେଶରେ ଲିପ୍ତ ପିଲାଙ୍କୁ କାଉଣ୍ଟି ପୁଲିସ୍‌କୁ ହସ୍ତାନ୍ତର କରାଯାଏ । ହେଲେ ମଲା ଜାଣ ସେ ପିଲା । ଛାତ୍ରର ଚରିତ୍ର ବା ଆଚରଣରେ ଯଦି କିଛି କଳା-ଦାଗ ଲାଗେ ତେବେ ଗୋଡେଇଥିବ ସେ ଦାଗ ପଛେ ପଛେ ଜୀବନ ସାରା । ଯୁଆଡେ ଗଲେ ବି ସରକାରି ବା ବେସରକାରୀ ଚାକିରିରେ ପଶିବା ବେଳେ ଉଠିବ ସେ କଥା– ତମ ନାଁରେ ପୁଲିସ୍ ରେକର୍ଡ ଅଛିକି ? ତମ ଇଣ୍ଡିଆରେ ଛାତ୍ର କହିଲେ ପୁଲିସ ଭୟକରେ ଆକସନ୍ ନବାକୁ– କିନ୍ତୁ ଏଠି ପୁଲିସର ସେ ଭୟ ନାହିଁ । ପ୍ରେସିଡେଣ୍ଟର ପିଲାକୁ ବି ପୁଲିସ୍ ଏଠି ନିର୍ଭୟରେ ଆରେଷ୍ଟ୍ କରେ କୌଣସି ଅପରାଧରେ । ତେଣୁ ଏଠାକାର କ୍ୟାମ୍ପସ୍ ଭିତର ଆଇନ୍ ଶୃଙ୍ଖଳା ପରିସ୍ଥିତି ସବୁବେଳେ ନିୟନ୍ତ୍ରଣ ଭିତରେ ରହି ଆସିଚି ମୂଳରୁ ।''

**ହାର୍ଭାଡର ବିଶେଷ ଦର୍ଶନୀୟ ସ୍ଥାନ– ୟୁନିଭର୍ସିଟି ସଂଗ୍ରହାଳୟ (ମ୍ୟୁଜିୟମ୍)**

ତା'ପରେ, ଗାଇଡ୍ ଆମକୁ ନେଲେ ୟୁନିଭର୍ସିଟି ସଂଗ୍ରହାଳୟ ଭିତର ବୁଲେଇ ଦେଖେଇବାକୁ । ହାର୍ଭାଡ ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟ ଦେଖି ବିସ୍ମିତ ହେବାକୁ ପଡେ । କୌଣସି ବିଶ୍ୱବିଦ୍ୟାଳୟର ନିଜସ୍ୱ ସଂଗ୍ରହାଳୟ ଏତେ ସମୃଦ୍ଧ ହୋଇଥାଇପାରେ ତାହା ଥିଲା ମୋ କଳ୍ପନାର ବାହାରେ । ସେ ବିଷୟରେ ବିସ୍ତୃତ ବର୍ଣ୍ଣନା ଏଠି ଦେଇହେବନାହିଁ । ଚୁମ୍ବକରେ– ଏଠାକାର ସଂଗ୍ରହାଳୟର ବିଶେଷ ଆକର୍ଷଣୀୟ ହେଲା : ଗ୍ଲାସ୍ ମ୍ୟୁଜିୟମ୍, ଜିଓଲଜିକାଲ୍ ମ୍ୟୁଜିୟମ୍ ଓ ଟ୍ୟାକ୍ସୋନମି ମ୍ୟୁଜିୟମ୍ ।

ଗ୍ଲାସ୍ ମ୍ୟୁଜିୟମ୍‌ର ପ୍ରଦର୍ଶିତ ସାମଗ୍ରୀ ହେଲା– କାଚ ! ଖାଲି କାଚରେ ତିଆରି ଏତେ ରକମର ଜିନିଷ ଦେଖି ଆଖି ଖୋସି ହେଇଗଲା । କାଚ୍‌ରେ ତିଆରି ବିଶାଳ ବୃକ୍ଷଲତାର ବିଶାଳ ଉପବନଟିଏ ଦେଖି ମୁଗ୍ଧ ହେଲି । ଏ ଉପବନର କାଚଗଛ ଗୁଡିକର ଡାଳପତ୍ର ସବୁ ପ୍ରାକୃତିକ ଗଛର ଡାଳପତ୍ର ପରି ଦିଶୁଥାଏ ଜୀବନ୍ତ । କାଚ ଗଛରେ ଭରିହୋଇଥାଏ ସବୁଜ ପତ୍ର । ସେଥିରେ ଫୁଟିଥାଏ ହରରଙ୍ଗୀ ଫୁଲ ଓ ଫଳିଥାଏ ବହୁ ସଂଖ୍ୟାରେ କଞ୍ଚା ପାଚିଲା ଫଳ । କଳା ଓ ବିଜ୍ଞାନର ଅପୂର୍ବ ସମନ୍ୱୟ ଦ୍ୱାରା ସୃଷ୍ଟ ସେଇ କାଚ ମ୍ୟୁଜିୟମ ଭିତରେ ଗଚ୍ଛିତ ରହିଥାଏ ଆହୁରି ଅନେକ ରକମର ଦର୍ଶନୀୟ ସାମଗ୍ରୀ ।

ସେହିପରି 'ଟ୍ୟାକ୍ସୋନମି' ସେକସନ୍‌ରେ ଦେଖିବାକୁ ମିଳେ ପ୍ରାଗୈତିହାସିକ ଓ ଐତିହାସିକ ଯୁଗର ବିଭିନ୍ନ ବିରଳ ଗୋଷ୍ଠୀର ପ୍ରାଣୀମାନଙ୍କର ଜୀବନ୍ତ ମଡେଲ ସବୁ । ଆରମ୍ଭରୁ ନଜରକୁ ଆସେ, ଏ ସେକ୍‌ସନ୍‌ରେ, ଏକ ବିଶାଳ ଡାଇନୋସୋର୍‌ର କଂକାଳ । ଶହେ ଫୁଟ ବା ତା'ଠୁ ବଡ ଡାଇନୋସର୍‌ର କଂକାଳକୁ ବୈଜ୍ଞାନିକମାନେ ନିର୍ମାଣ କରିଥାନ୍ତି ପୃଥିବୀର ବିଭିନ୍ନ ସ୍ଥାନରୁ ମିଳିଥିବା ଜୀବାସ୍ମ ସବୁକୁ ଉଦ୍ଧାରକରି । ନିଜର କଳ୍ପନା ପ୍ରୟୋଗ ଦ୍ୱାରା ଜୀବାସ୍ମରୁ ସୃଷ୍ଟି କରାଯାଇଥାଏ ଏକ ବିଶାଳ ଡାଇନୋସର୍‌ର କଂକାଳ ! ଦର୍ଶକ ଆଗରେ ପ୍ରାଗୈତିହାସିକ ଯୁଗର ପ୍ରାକୃତିକ ପରିବେଶର ଏକ ଝଲକ ପରିବେଷଣ ପାଇଁ ଉଦ୍ଦିଷ୍ଟଥାଏ ସଂଗ୍ରହାଳୟର ଏ ସେକ୍‌ସନ୍ ।

ଡାଇନୋସୋର୍ ସହିତ ସଂଗ୍ରହାଳୟର ଏଇ ଅଂଶରେ ଦେଖିବାକୁ ମିଳିଲା ଐତିହାସିକ ସମୟର ଅନ୍ୟାନ୍ୟ ବହୁ ଆରଣ୍ୟକ ପଶୁପକ୍ଷୀଙ୍କର ସ୍ୱରୂପ । ସେ ଭିତରେ ଥାଏ ଆଖିରେ ପଡିଲା ଭଳି ଏକ ବିଶାଳକାୟ ଜନ୍ତୁ 'ମୁଜ'ର ମଡେଲ୍ । ଏମାନେ ଆମେରିକାର ଆରଣ୍ୟକ ପାର୍ବତ୍ୟାଞ୍ଚଳର ଏକ ବିଶାଳକାୟ ପଶୁ । 'ମୁଜ' ବିଷୟରେ ମୁଁ ଆମେରିକାନ୍ ଉପନ୍ୟାସମାନଙ୍କରେ ପଢିଚି– କିନ୍ତୁ କେବେ ବି କଳ୍ପନା କରିପାରିନଥିଲି ତାର ପ୍ରକାଣ୍ଡ ରୂପ । ତେଣୁ ସେଇ ମଡେଲ୍ ପାଖରେ ମୋର କିଛି ସମୟ କଟିଥିଲା । ମନେପଡୁଥାଏ ଆମେରିକାର ବିଖ୍ୟାତ ଲେଖକ ରବର୍ଟପର୍ସିଗ୍‌ଙ୍କ "ଜେନ୍ ଆଣ୍ଡ୍ ମୋଟର୍‌ସାଇକେଲ୍ ମେଣ୍ଟେନାନ୍ସ" ଉପନ୍ୟାସରେ ପଢିଥିବା କେତେକ ମାର୍ମିକ ଦୃଶ୍ୟ ।

ଏ ସେକ୍‌ସନ୍‌ର ଅନ୍ୟତମ ଆକର୍ଷଣୀୟ ବିଭାଗ ହେଲା– ସାମୁଦ୍ରିକ ଜୀବମାନଙ୍କର ପ୍ରଦର୍ଶନୀ । ବହୁ ବିଚିତ୍ର ସାମୁଦ୍ରିକଜୀବଙ୍କୁ ଆକ୍ୱାରିୟମ୍‌ରେ ଦେଖିବାକୁ ମିଳିଲା ଏଠି । କମ୍ପ୍ୟୁଟର୍ ସାହାଯ୍ୟରେ ସେମାନଙ୍କର ଉଚ୍ଚାରିତ କଣ୍ଠସ୍ୱରର ସଂପୂର୍ଣ୍ଣ ଅନୁକରଣ କରିପାରୁଥିବା ମଡେଲ୍ ଗୁଡିକୁ ବୁଲିବୁଲି ଦେଖିଲୁ । ମଡେଲ୍ ନିକଟରେ ଥିବା ସୁଇଚ୍‌କୁ ଟିପିବାମାତ୍ରେ ସଂପୃକ୍ତ ଜୀବର ବୋବାଳି ବା ଗର୍ଜନ ଶୁଣିବାକୁ ମିଳୁଥିବାରୁ ଏ ସେକସନ୍‌ରେ ପିଲାଙ୍କ ଭିଡ଼ ଲାଗିଥାଏ ।

ଏହାପରେ ଗଲୁ ଖଣିଜ ପଥର ବିଭାଗ ଦେଖିବାକୁ । ସେଠି ଅନେକ ରକମର ଅନେକ ରଙ୍ଗର ମଣିପଥରର ସ୍ଫଟିକ (କ୍ରିଷ୍ଟାଲ୍) ପ୍ରଦର୍ଶିତ ହେଉଥାଏ । ସେସବୁ ଭିତରେ ଥିଲା ନାନାଜାତିର ଓ ବହୁମୂଲ୍ୟ ରତ୍ନପଥରର ପ୍ରଦର୍ଶନୀ । ସବୁଠାରୁ ଆକର୍ଷଣୀୟ ଓ ବିସ୍ମୟକର ଥିଲା– ବହୁସଂଖ୍ୟାରେ ବହୁ ଆକାର ପ୍ରକାରର ବଡବଡ ହୀରାଖଣ୍ଡ ! ଜୀବନରେ ଏତେ ସଂଖ୍ୟାରେ ଏତେପ୍ରକାର ଏଡେ ବଡବଡ ହୀରାଖଣ୍ଡ ଦେଖିବା ଥିଲା ମୋର ସୌଭାଗ୍ୟ । ପ୍ରତ୍ୟେକ ହୀରା ମୁଣ୍ଡାକୁ ରଖାଯାଇଥାଏ ସ୍ୱତନ୍ତ୍ର ଧରଣର କାଚବାକ୍ସ ଭିତରେ । ସେ ଖଣ୍ଡଗୁଡିକର ପ୍ରାପ୍ତି ସଂପର୍କରେ ସଂକ୍ଷିପ୍ତ ଇତିହାସ ମଧ୍ୟ ସୂଚେଇ ଦିଆଯାଇଥାଏ ପ୍ରତି ଖଣ୍ଡ ପାଖରେ । ସେଇ ଇତିହାସରୁ ଜଣାଯାଏ ସେସବୁ ହୀରା ପୃଥିବୀର ବିଭିନ୍ନ ଦେଶର ହୀରା ଖଣିରୁ ସଂଗୃହୀତ ହୋଇଥିଲା । ସେଥିରେ ଥିଲା ଭାରତରୁ ପ୍ରାପ୍ତ କେତେକ ହୀରାଖଣ୍ଡ ମଧ୍ୟ । ତେବେ ସବୁଠୁ ବଡ ହୀରାଖଣ୍ଡଟା ମିଳିଥିଲା ଦକ୍ଷିଣ ଆଫ୍ରିକାର ହୀରାଖଣିରୁ ।

ଈଷତ୍ ହଳଦିଆ ରଙ୍ଗର କ୍ରିକେଟ୍ ବଲ୍‌ଠୁ କିଛି ବଡ ସାଇଜ୍‌ର ସ୍ୱଚ୍ଛ ସେଇ ହୀରାଖଣ୍ଡଟାର ମୂଲ୍ୟ କେତେ ହୋଇଥିବ ଜାଣିବାକୁ କୌତୂହଳ ହେଲା । ଗାଇଡ୍‌ଙ୍କୁ ପଚାରିଲି । ସେ ହସିଦେଇ କହିଲେ, ''କେହି ଜାଣେନା– ତାର କାରଣ ଚୋରମାନଙ୍କ ପ୍ରଲୋଭନ ନିବାରଣ ପାଇଁ ହୁଏତ । କିନ୍ତୁ ଏ ଅମୂଲ୍ୟ ସଂପଦକୁ ହାସଲ କରିବାକୁ ହାର୍ଭାଡ କର୍ତ୍ତୃପକ୍ଷଙ୍କୁ କମି କାରସାଦି କରିବାକୁ ପଡିନାହିଁ । ଜାଣନ୍ତି– ଏ ହୀରାଖଣ୍ଡକୁ ଦକ୍ଷିଣ ଆଫ୍ରିକାରୁ କେତେ ଦଫାରେ ଏଠିକି ଅଣାଯାଇଥିଲା ? ପ୍ରାୟ ଦଶଟା ମିଛ ହୀରାର ପାର୍ସଲ୍ ପଠାଗଲା ପରେ ଶେଷରେ ଏଇ ସତ ହୀରାର ପାର୍ସଲଟିକୁ ପଠାଇଥିଲା କଂପାନୀ ଏଠିକି । ସେ ବ୍ୟବସ୍ଥା କରାଯାଇଥିଲା କେବଳ ଗୋଟିଏ କାରଣରୁ– ଆନ୍ତର୍ଜାତିକ ଦସ୍ୟୁଙ୍କୁ ଭଣ୍ଡାଇବା ଲକ୍ଷ୍ୟରେ ।''

''ଆନ୍ତର୍ଜାତିକ ଦସ୍ୟୁଙ୍କ ନଜର କ'ଣ ବର୍ତ୍ତମାନ ନାହିଁ ଯା' ଉପରେ ?''– ମୁଁ ଜାଣିବାକୁ ଚାହିଁଲି– ବର୍ତ୍ତମାନ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଏ ଅମୂଲ୍ୟ ବସ୍ତୁଟିର ସୁରକ୍ଷା ପାଇଁ କେଉଁ ବ୍ୟବସ୍ଥା କରିଛନ୍ତି ସେ ସଂପର୍କରେ ।

''ଏ ରୁମ୍‌ର କାନ୍ଥବାଡର ଆଖି ଅଛି, କାନ ଅଛି, ନାକ ଅଛି ଓ ପାଟି ବି ଅଛି– ଜାଣିରଖନ୍ତୁ । ଆପଣ ଏ ହୀରା ଖଣ୍ଡଟି ଆଡକୁ ସାମାନ୍ୟ ଲୋଲୁପ ଦୃଷ୍ଟିରେ ଅନାନ୍ତୁ ତ ଥରେ– ଦେଖିବେ କ'ଣ ହବ ! ଚାରିଆଡେ ସତର୍କଘଣ୍ଟି ବାଜିଉଠିବ । ସୁରକ୍ଷାବାହିନୀ

ଆଖି ପିଛୁଳାକେ ପହଞ୍ଚିଯିବେ । ଆପଣଙ୍କର ସମସ୍ତ ଚାଲିଚଳଣ ତେଣେ ଗୁପ୍ତ ଫଟୋଗ୍ରାଫିକ୍ କ୍ୟାମେରାରେ ରେକର୍ଡ କରାଚାଲିଚି । କ୍ୟାମେରା ଆଖିରୁ ଆପଣ କଦାପି ବର୍ତ୍ତିପାରିବେ ନାହିଁ ।''– ଗାଇଡ୍ ଆମଠାରୁ ବିଦାୟ ନେଇଥିଲେ ତା'ପରେ ।

ଗାଇଡଙ୍କଠାରୁ ବିଦାୟ ନେବା ପୂର୍ବରୁ ମୁଁ ତାଙ୍କୁ ଧନ୍ୟବାଦ ଦେଇସାରି କହିଲି, ''ମୋର ଭାରି ଇଚ୍ଛା ଥିଲା ଏ ବିଶ୍ୱବିଦ୍ୟାଳୟରେ ପଢିବାକୁ– ମୋର ସେ ଇଚ୍ଛା ସ୍ୱପ୍ନ ପାଲଟିଗଲା । ତେବେ ଆଶା ଅଛି ମୋର କେହି ଜଣେ ନାତିନାତୁଣୀ ଏ ଅନୁଷ୍ଠାନରେ ପାଠପଢନ୍ତୁ । ଆଚ୍ଛା– ଏଠି ବର୍ତ୍ତମାନ ନାମ ଲେଖେଇବାକୁ କେତେ ଖର୍ଚ୍ଚ ଲାଗେ ?

ଉତ୍ତର ମିଳିଲା, ''ଏଠି ଫ୍ରେସ୍‌ମେନ୍‌ଙ୍କ ନାଁ ଲେଖା ଫି' କେବଳ ହେଲା –୨୫ ହଜାର ଡଲାର । ତା'ଛଡା ଅଛି ନାନାବିଧ ଖର୍ଚ୍ଚ । ମୁଁ ପୁଣି ଏକ ଅଲଗା ବିଷୟରେ ଜାଣିବାକୁ ଚାହିଁଲି, ''ଏ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ କର୍ତ୍ତା କିଏ ?''

ଉତ୍ତର ମିଳିଲା, ''ସର୍ବୋଚ୍ଚ କର୍ତ୍ତା ହେଲେ ୟୁନିର୍ଭସିଟିର ପ୍ରେସିଡେଣ୍ଟ୍ । ତାଙ୍କ ତଳେ କାର୍ଯ୍ୟକାରୀ କମିଟିରେ ଅଛନ୍ତି ସାତଜଣ ଡିନ୍ (ବୟସ୍କ ସିନିୟର୍ ପ୍ରଫେସର୍) । ଏଇ ହେଲା ଏ ସଂସ୍ଥାର ପରିଚାଳନା ବୋର୍ଡ ।''

## ହାର୍ଭାଡ କ୍ୟାମ୍ପସ୍‌ର ସାଧାରଣ ବାତାବରଣ

ପରେ ପରେ ଆମେ ହାର୍ଭାଡ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ ଜୀବନ ଦେଖିବାକୁ କିଛି ସମୟ ଘୂରି ବୁଲିଲୁ । ଏ ବିଶ୍ୱବିଖ୍ୟାତ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍ ଭିତରଟା ବୁଲି ଦେଖିଲା-ବେଳେ ମନେହେଲା ଗୋଟାଏ ବିଶ୍ୱ ଯୁବ-ଉତ୍ସବ ଏ ରଙ୍ଗମଞ୍ଚ ଉପରେ ଅଭିନୀତ ହୋଇ-ଚାଲିଚି ଦିବାରାତ୍ର । ସତେ ବା ଏ ରଙ୍ଗମଞ୍ଚର କୌଣସି ସୀମା ସରହଦ ନାହିଁ । ଚାରିଆଡେ ଖୋଲାମେଲା ଏ ରଙ୍ଗମଞ୍ଚ ଉପରକୁ ଅବାଧ ପ୍ରବେଶ ସବୁବେଳେ ଲାଗିରହିଥାଏ ସମସ୍ତଙ୍କର । ତା'ରି ଭିତରେ ଚାଲିଥାଏ ପାଠ-ପଢା, ରିସର୍ଚ୍ଚ, ନାଚ ଗୀତ, ଥିଏଟର୍ ଅଭିନୟ, ତର୍କସଭା, ବକ୍ତୃତା ପ୍ରତିଯୋଗିତା ଇତ୍ୟାଦି ସବୁକିଛି ଏକାବେଳେ ।

ସେତେବେଳେ ସନ୍ଧ୍ୟା ସାଢେ ପାଞ୍ଚ । ସୂର୍ଯ୍ୟାଲୋକ ପର୍ଯ୍ୟାପ୍ତ । ହତା ବାହାର ଭଳି ମନେହେଉଥିବା ଯାନବାହନ ଚଳାଚଳ କରୁଥିବା ଏକ ରାସ୍ତାକଡରେ ଗୁଡାଏ ବହି-ଦୋକାନ ଦେଖିଲୁ । ସବୁ ଦୋକାନରେ ଅସମ୍ଭବ ଲୋକ ଗହଳି । ଚାଲିଥାଏ ବହିକିଣା । ଆମ ଉତ୍କଳ ବିଶ୍ୱବିଦ୍ୟାଳୟ ହତା ଭିତରେ ବା ବାହାରେ ଗୋଟିଏ ବି ବହିଦୋକାନ ଥିବା ମୁଁ ଦେଖିନଥିଲି ମୋର ଛାତ୍ର ସମୟରେ ବା ସେଠି ରେଜିଷ୍ଟ୍ରାର୍ ଚାକିରି କରୁଥିବାବେଳେ; କିନ୍ତୁ ହାର୍ଭାଡ୍ କ୍ୟାମ୍ପସ୍‌ରେ ଶତାଧିକ ବହିଦୋକାନ ଓ ଲୋକଭିଡ ଦେଖି ମନରେ ଈର୍ଷାହେଲା । ଗୋଟିଏ ବହିଦୋକାନରେ ପଶିଲୁ । ଦେଖିଲି ଖାଲି ପାଠ୍ୟ-ପୁସ୍ତକ ନୁହେଁ– ବହି ଥାକଗୁଡାକରେ ଭର୍ତ୍ତି ଉପନ୍ୟାସ, ଗଳ୍ପ, ନାଟକ, ଦର୍ଶନ ଓ

ଚିନ୍ତାଉଦ୍ରେକକାରୀ ବହୁ ବିଖ୍ୟାତ ଲେଖକଙ୍କ ସୃଷ୍ଟ ପ୍ରବନ୍ଧ ପୁସ୍ତକ ।

ଆମେରିକାର ବହିବ୍ୟବସାୟ କୌଣସି ନେଁଛେଁ ବ୍ୟବସାୟ ନୁହେଁ । ପୂର୍ବରୁ ମୁଁ ଏ ଦେଶର କେତେକ ବିଖ୍ୟାତ ବହିଦୋକାନରେ ବୁଲି ଦେଖିଥିଲି । ସେସବୁ ଭିତରେ "ବାର୍ଣ୍ଣସ୍ ଓ ନୋବେଲ", "ୱାଲଡେନ୍" ଇତ୍ୟାଦି ବେଶ୍ ଜଣାଶୁଣା । ସାରା ଆମେରିକାରେ ପ୍ରାୟ ସବୁ ସହରରେ ଏମାନଙ୍କର ବହି ଦୋକାନ ରହିଚି । ଏଠି ମଧ୍ୟ ସେମାନଙ୍କର ବହି-ଦୋକାନ ଦେଖିଲୁ ।

ଠାଏ ଦେଖିଲୁ "ଇନ୍‌ଫର୍ମୋସନ୍ ସେଣ୍ଟର୍" ନାମ ଫଳକ ଲଗା ଏକ କାଉଣ୍ଟର୍ । ସେଠିକି ଯାଇ ଦେଖିଲୁ– ଇନ୍‌ଫର୍ମୋସନ୍ ସେଣ୍ଟର ସାମ୍ନାରେ ଲାଗିଚି ଯୁବ-ଉତ୍ସବ । ଗୋଟାଏ ମାଇକ୍‌ରେ କ'ଣ ଘୋଷଣା କରାଚାଲିଚି, ଆଉ ଗୁଡିଏ ଅଦ୍ଭୁତ ବେଶ ପୋଷାକ ଧାରୀ ଯୁବକ ଯୁବତୀ ମୁହଁରେ ଦେହରେ ନାନା ପ୍ରକାର ରଙ୍ଗ ବୋଳିହେଇ ରାସ୍ତା ଉପରେ ଅଭିନୟ କରୁଚନ୍ତି । କାହାର କାହାର ମୁହଁରେ ମୁଖା । ମୁଣ୍ଡରେ ମଇଁଷି ଶିଙ୍ଗର ଶୀରସ୍ତ୍ରାଣ । ବୋଧହୁଏ ସେକ୍ସପିୟରଙ୍କ "ମିଡ୍ ସମର୍ ନାଇଟ୍ ଡ୍ରିମ୍" ନାଟକ ଅଭିନୟ ଚାଲିଥାଏ ।

ଟିକେ ଦୂରରେ ଲାଗିଥାଏ ହିପି ଓ ଜିପ୍‌ସିଙ୍କ ମେଳା । ସେଠି ମଧ୍ୟ ଚାଲିଥାଏ ଅଭିନୟ– ଆବ୍‌ସର୍ଡ ନାଟକର ।

## ମାସାଚୁସେଟସ୍ (ଏମ୍.ଆଇ.ଟି) କ୍ୟାମ୍ପସ୍ ଭ୍ରମଣ

ମାସ୍‌ଚୁସେଟସ୍ ଆଭେନ୍ୟୁ କଡରେ ଚାଲିଥିବା ହାର୍ଭାଡ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ଯୁବୋତ୍ସବ ଦେଖିସାରି ଆମେ ବାହାରିଲୁ ଟିକେ ଦୂରରେ ଥିବା ଅନ୍ୟଏକ ବିଖ୍ୟାତ ବିଶ୍ୱ-ବିଦ୍ୟାଳୟର କ୍ୟାମ୍ପସ– ମାସାଚୁସେଟ୍‌ସ୍‌ର ବିଖ୍ୟାତ ଏମ୍.ଆଇ.ଟି ଦେଖିବା ପାଇଁ । ତେବେ ସମୟ ସେଥିପାଇଁ ଅନୁକୂଳ ନଥିଲା । ସନ୍ଧ୍ୟା ଗଡିଗଲାଣି । ତଥାପି ଏମ୍.ଆଇ.ଟି କ୍ୟାମ୍ପସ୍‌ରେ ଲାଗିଥାଏ ଗହଳି । ଦିନବେଳେ ଆସିଥିଲେ ହୁଏତ ଏମ୍.ଆଇ.ଟିର ଅନ୍ଦିକନ୍ଦି ବୁଲି ଦେଖିପାରି-ଥାନ୍ତୁ– ଆଜି ହାର୍ଭାଡ କ୍ୟାମ୍ପସ୍‌ରେ ବୁଲିବା ଭଳି– ତଥାପି କ୍ୟାମ୍ପସ୍ ଭିତରକୁ ଟିକେ ପଶିଲୁ ।

ମହେଶ ଆମକୁ ନେଇ ଚାଲିଲେ ଏକ ଡର୍ମିଟୋରି ଆଡେ । ଏଠି ଛାତ୍ରମାନେ କିପରି ରହନ୍ତି ଚଳନ୍ତି ଦେଖିବା ଜାଣିବା ପାଇଁ ଡର୍ମିଟୋରିର ଇନ୍‌ଫର୍ମେସନ୍ ସେଣ୍ଟର୍ ଭିତରକୁ ପଶିଲୁ । ଏକ ବିରାଟ କରିଡର୍ ଭିତରେ ଚାଲୁ ଚାଲୁ ଠାଏ ଅଟକିଲୁ । ମହେଶ ଆମକୁ ଦେଖେଇଲେ କରିଡର୍‌ର ଗୋଟାଏ କାନ୍ଥରେ ମରାଯାଇଥିବା ଏକ ବିଶାଳ ନିଉଜ୍ ବୁଲେଟିନ୍ ବୋର୍ଡ ଭଳି କୌଣସି ସୂଚନାଫଳକ ପାଖରେ ।

ଦେଖିଲୁ ସେ ଫଳକରେ ଛାତ୍ରଛାତ୍ରୀମାନଙ୍କ ନିଜନିଜର ଅଭାବ ଅସୁବିଧା ଓ ଅଭିମତ ସମେତ ବିଶ୍ୱବିଦ୍ୟାଳୟର ପରିଚାଳନାରେ ଖିଲାପ ସଂପର୍କରେ କେତେକ ଅଭିଯୋଗ ମଧ୍ୟ ଲିପିବଦ୍ଧ କରାଯାଇଚି ।

କୌତୂହଳରୁ ସେଠି ଅଟକି ରହିଲି କିଛି ସମୟ । ଏଠାକାର ପିଲାମାନଙ୍କର ବିଶ୍ୱ-ବିଦ୍ୟାଳୟର ପରିଚାଳନା ବିରୁଦ୍ଧରେ କି ପ୍ରକାର ଅଭିଯୋଗ ସବୁ ଥାଏ ଜାଣିବାକୁ ଇଚ୍ଛା-ହେଲା । ପଢ଼ି ଲାଗିଲି ଗୋଟିଗୋଟି କରି ସେ ବୋର୍ଡ ଉପରେ ଲିପିବଦ୍ଧ ଅଭିମତ ଓ ଅଭିଯୋଗ ଗୁଡ଼ିକୁ । ଗୋଟିଏ ଜାଗାରେ ଅଟକି ଗଲି । ମୋ ଆଖି ଦୁଇଟା ଆପଣାଛାଏଁ ବିସ୍ଫାରିତ ହେଇଗଲା । ଲାଜ ଓ ଘୃଣାରେ ମୋ ମୁହଁ ତଳକୁ ହେଇଗଲା । ଛିଃ, ଏଭଳି ଅସଭ୍ୟ କଥା କ'ଣ ଲେଖାଯାଏ କୌଣସି ବିଶ୍ୱବିଦ୍ୟାଳୟ କାନ୍ଥରେ– ପୁଣି ଏମ୍.ଆଇଟି ଭଳି ବିଶ୍ୱ-ବିଖ୍ୟାତ ଶିକ୍ଷାନୁଷ୍ଠାନର କାନ୍ଥଟାରେ ? ଚାରିଆଡକୁ ଚାହିଲିଁ ଲାଜରେ ଅବିଶ୍ୱାସରେ– କେହି ଦେଖୁ ନାହିଁତ ? ନିରୁପମା, ମହେଶ, ସୁଲୁ ଓ ଦୁଇ ବାଳୁତ ନାତି ଅମୃତ ଓ ମନୀଶ ଅନ୍ୟଆଡେ ବୁଲିବୁଲି କ'ଣ ସବୁ ଦେଖୁଚନ୍ତି । ଟିକେ ଆଶ୍ୱସ୍ତ ହେଲି । କାହାରିକୁ ସେ ବିଷୟ ଜାଣିବାକୁ ଦେଲିନାହିଁ ।

ଆମର ଏମ୍.ଆଇ.ଟି ବୁଲା ସେଦିନ ସେତିକିରେ ସରିଲା । ଘରକୁ ଫେରିବୁ । ସମୟ ରାତି ନ' । ମାସାଚୁସେଟସ୍ ଛାଡିଲୁ । ଗ୍ଲାସ୍‌ଟନ୍‌ବରିର, ନିପ୍‌ଜିକ୍‌ରୋଡ ଘରେ ପହଞ୍ଚିଲୁ ପ୍ରାୟ ରାତି ସାଢେ ଏଗାରରେ ।

## ଏମ୍.ଆଇ.ଟି ଇତିହାସର ଏକ କଳଙ୍କିତ ଘଟଣା

ଏମ୍.ଆଇ.ଟିର କାନ୍ଥରେ ଲେଖାଯାଇଥିବା ସେ ଲଜ୍ଜ୍ୟାଜନକ ସଂବାଦଟାକୁ ମୁଁ ମନରୁ ପୋଛି ଦେବାକୁ ଯେତେ ଚେଷ୍ଟା କଲେ ବି ତାହା ପୋଛି ହେଲା ନାହିଁ । ପରଦିନ ବାହାରିଲା ସେ ଖବର ସ୍ଥାନୀୟ ସଂବାଦପତ୍ର ''ଗ୍ଲାସ୍‌ଟନ୍‌ବରି ହେରାଲ୍ଡ''ରେ ।

ଆମେରିକା ସୁପ୍ରିମକୋର୍ଟର ଏକ ରାୟ ସେଦିନ ପ୍ରକାଶ ପାଇଥିଲା । ସେଥିରେ ଏମ୍.ଆଇ.ଟିର ଜନୈକ ସିନିୟର୍ ରିସର୍ଚ୍ଚ ଫାକ୍‌ଲ୍‌ଟି ସଭ୍ୟଙ୍କୁ ମାନ୍ୟବର ସୁପ୍ରିମ୍‌କୋର୍ଟ ଏକ ସାଂଘାତିକ କ୍ରାଇମ୍‌ରେ ଦୋଷୀ ସାବ୍ୟସ୍ତ କରିବା ଉଲ୍ଲେଖ ଥିଲା । ସେଇ ରାୟରେ ତାଙ୍କୁ କେତେ ବର୍ଷ ଜେଲଦଣ୍ଡ ବ୍ୟତୀତ ତାଙ୍କଠାରୁ ଅଢେଇଲକ୍ଷ ଡଲାର ଜୋରିମାନା ଆଦାୟ କରିବା ପାଇଁ ଆଦେଶ ଥିଲା ଓ ସେ ଅର୍ଥକୁ ତାଙ୍କ ନିଜ କନ୍ୟାର କ୍ଷତି ପୂରଣ ବାବତ ଭରଣା କରିବାକୁ ମାନ୍ୟବର କୋର୍ଟ ରାୟ ଦେଇଥିଲେ ।

କ୍ରାଇମ୍‌ଟା ହେଲା– ଉକ୍ତ ଏମ୍.ଆଇ.ଟି ରିସର୍ଚ୍ଚ-ଫାକଲ୍‌ଟିର ବରିଷ୍ଠ-ସଭ୍ୟ ନିଜ ଔରସରୁ ଜନ୍ମିତ ଶିଶୁକନ୍ୟାକୁ ଚାରିବର୍ଷ ବୟସରୁ ପ୍ରତିଦିନ ଧର୍ଷଣ କରିବା ଆରମ୍ଭ କରିଥିଲେ ତାକୁ ଶୋହଳ ବର୍ଷ ହେବା ପର୍ଯ୍ୟନ୍ତ– ଅନ୍ତତଃ ୩,୦୦୦ (ତିନିହଜାର) ଥର !

ବୟଃପ୍ରାପ୍ତି ପରେ ହତଭାଗିନୀ କନ୍ୟାଟି ନିଜର ନଷ୍ଟ ବାଲ୍ୟକାଳ ଓ ଚାରିବର୍ଷ ବୟସରୁ ଶୋଳବର୍ଷ ଲଗାତାର ବାରବର୍ଷ କାଳ ଭୋଗିଥିବା ସମସ୍ତ ନାରକୀୟ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଯନ୍ତ୍ରଣା ଲାଗି ନିଜ ଜନ୍ମକଲା ବାପକୁ ଦାୟୀ କରଥିଲା ଓ ଜଣେ

ସହାନୁଭୂତିଶୀଳ ସାଇକିଆର୍ଟିଷ୍ଟଙ୍କ ସହାୟତାରେ କୋର୍ଟରେ ଆଶ୍ରୟ ଲୋଡିଥିଲା ।

ଆମେରିକାର ପାରିବାରିକ ଜୀବନରେ ଏଭଳି କୁତ୍ସିତ ଘଟଣାମାନ ଘଟିବା ନୂଆ ନୁହେଁ । କିନ୍ତୁ ଏମ୍.ଆଇ.ଟି ଭଳି ଜଗତ୍ ବିଖ୍ୟାତ ଉଚ୍ଚଶିକ୍ଷାନୁଷ୍ଠାନର ବିରିଷ୍ଟ ଗବେଷକ ଜଣେ ଏଭଳି ଅମାନୁଷିକ ଅପକର୍ମ କରିପାରନ୍ତି– ଏହା ଅବିଶ୍ୱାସ୍ୟଥିଲା ।

## ଗ୍ରୋଟନ୍, ବୁଡାଜାହାଜ ଘାଟି ପରିକ୍ରମା– (ତା ୧୨ ଅଗଷ୍ଟ, ୧୯୯୩)

ସେଦିନ ସକାଳୁ ବାହାରିଲୁ ଗ୍ରୋଟନ୍ । କନେକ୍ଟିକଟ୍ ରାଜ୍ୟର ଏଇ ଉପକୂଳ ସହର ଗ୍ରୋଟନ୍‌ର ଖ୍ୟାତି ଶୁଣିଥିଲି । ସେଠି ରହିଚି ଆମେରିକାନ୍ ନାଭିରେ ବ୍ୟବହୃତ ହୋଇଥିବା ଐତିହାସିକ ସବ୍‌ମାରାଇନ୍‌ଗୁଡିକର ଏକ ପ୍ରଦର୍ଶନୀ ଗୃହ । ସେଠି ଆମେରିକାର ପ୍ରଥମ ପରମାଣୁ ଶକ୍ତି ପରିଚାଳିତ ବୁଡାଜାହାଜ ''ନଟିଲସ୍'' ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବ୍ୟବହୃତ କେତେକ ଜର୍ମାନୀ ବୁଡାଜାହାଜ ସମେତ ଅନେକ ''ସବ୍-ମାରାଇନ୍''ର ପ୍ରଦର୍ଶନୀ ମଣ୍ଡପ ରହିଚି । ଗୋଟିଏ କାର୍‌ରେ ଜୋଇଁ ମହେଶ ଓ ମଝିଆ ଝିଅ ନିବେଦିତା (ସୁଲୁ) ଏବଂ ଆମେ ଅଜା ଆଈ ଓ ଆମର ଦୁଇ ଚଗଲା ନାତି (ଅମୃତ, ମନୀଶ) ସବାର ହେଇ ସକାଳୁ ସକାଳୁ ଡ୍ରାଇଭ୍ କଲୁ ଗ୍ଲାସ୍‌ଟନ୍‌ବରିରୁ ଗ୍ରୋଟନ୍ ।

ଦୁଇଘଣ୍ଟାର ଡ୍ରାଇଭ୍ ପରେ ଆମେ ପ୍ରାୟ ସକାଳ ଦଶଟାରେ ଗ୍ରୋଟନ୍‌ରେ ପହଞ୍ଚିଲୁ । ପ୍ରଦର୍ଶନୀ ଅଂଚଳରେ ପ୍ରବେଶ ପାଇଁ ଆବଶ୍ୟକୀୟ ଟିକେଟ୍ ସଂଗ୍ରହ ପରେ ଆମେ ଚାଲିଲୁ ସମୁଦ୍ରକୂଳକୁ । ସେଠାରେ ପ୍ରଥମେ ଆମ ଦୃଷ୍ଟି ଆକର୍ଷଣକଲା ମୁକ୍ତାକାଶ ତଳେ ସମୁଦ୍ରବାଲିରେ ରଖାଯାଇଥିବା ଏକ ପ୍ରଦର୍ଶିତ ସାମଗ୍ରୀ– ତାହାହେଲା ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜାପାନ ପକ୍ଷରୁ ବ୍ୟବହୃତ ଟର୍ପେଡୋ– ''ମେଟ୍ ଜାପାନିଜ୍ - ୮ (Mate Japanese-8, Torpedo sub-maraine) ।

ଏହା ଥିଲା ୧୯୪୧ରେ ପର୍ଲହାର୍‌ବୋର୍‌ରେ ଆମେରିକାର ବିଶାଳ ନୌବହର ଉପରେ ଆକ୍ରମଣ କରିଥିବା ପ୍ରଥମ ଜାପାନୀ ବୁଡାଜାହଜ । ଏ ବୁଡାଜାହାଜଟିରେ ଦୁଇଜଣ ଚାଳକ ଥିଲେ । ଏହାର ଶରବ୍ୟ ଥିଲା ଆମେରିକାର କୌଣସି ଏକ ଯୁଦ୍ଧ ଜାହାଜ । ଚାଳକମାନେ ଏଇ ଛୋଟିଆ ବୁଡାଜାହାଜରେ ପାଣି ତଳେ ତଳେ ଗୁପ୍ତରେ ଆସି ଲକ୍ଷ୍ୟସ୍ଥଳରେ ଥିବା ଯୁଦ୍ଧଜାହାଜ ତଳେ ଟର୍ପେଡୋ ଖଞ୍ଜିବାବେଳେ ଆମେରିକାନ୍ ନୌସେନା ଆକ୍ରମଣର ଶିକାର ହୋଇଥିଲେ । ଜଣେ ବୁଡାଜାହାଜ ଚାଳକର ଘଟଣାସ୍ଥଳରେ ମୃତ୍ୟୁ ହୋଇଥିଲା, ଅନ୍ୟଜଣକ ଧରାପଡିଥିଲା । ସେଇ ଥିଲା ଜାପାନର ସବା ପ୍ରଥମ ଯୁଦ୍ଧବନ୍ଦୀ ଆମେରିକାନ୍ ନୌସେନା ହାତରେ । ତାହା ଥିଲା ଜାପାନ ପକ୍ଷରୁ ଆମେରିକା ଉପରେ ସବା-ପ୍ରଥମ ଆତ୍ମଘାତୀ ଆକ୍ରମଣ ।

**ଜର୍ମାନ୍ ସି-ହଣ୍ଟ୍– HU 75 (U-507)–**

ଏଇ ହେଲା ସେଇ "ୟୁ-ବୋଟ୍" ଯାହା ବିଷୟରେ ମୁଁ ଅନେକ ଉପନ୍ୟାସ ଓ ଲେଖା ପଢ଼ିଥିଲି– କିନ୍ତୁ "ୟୁ-ବୋଟ" କେମିତିକିଆ ଜିନିଷ ଜାଣିନଥିଲି । ଜର୍ମାନ୍ ଭାଷାରେ ସି-ହଣ୍ଟ (ହଣ୍ଡ)ର ଅର୍ଥ ସମୁଦ୍ରର ସିଲମାଛ । ୟୁ-ବୋଟ୍‌ଟା ଦେଖିବାକୁ ଗୋଟିଏ ସିଲ୍‌ମାଛ ପରି– ପାଞ୍ଚ-ଛ' ଫୁଟ ଲମ୍ବ ସିଲିଣ୍ଡର୍ ପରି ଅଣ୍ଡାକୃତି ବୁଡ଼ା-ଜାହାଜ । ଏଇ ବାମନ ସବ୍‌ମାରାଇନ୍ ଗୁଡ଼ିକ ସାହାଯ୍ୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ହିଟଲର୍‌ର ନାଜିବାହିନୀ ମିତ୍ର-ପକ୍ଷର ପ୍ରାୟ ୧,୦୦,୦୦୦ (ଏକ ଲକ୍ଷ) ଜାହାଜ ଧ୍ୱଂସ କରିଦେବାକୁ ସମର୍ଥ ହୋଇଥିଲା ।

**'ସାଇମନ୍ ଲେକ୍' ଏକ୍ସପ୍ଲୋରର୍–**

ଖ୍ରୀ: ୧୯୩୬ରେ ସାଇମନ୍ ଲେକ୍ ନାମକ ଜଣେ ଆମେରିକାନ୍ ବିଶେଷଜ୍ଞ ଏଇ ଆବିଷ୍କାରକ ଜାହାଜ ତିଆରି କରିଥିଲେ । ଏଥିରେ ଆରୋହଣ କରି ଆବିଷ୍କାରକମାନେ ଗଭୀର ଜଳସ୍ତରକୁ ବୁଡ଼ିପାରୁଥିଲେ ଓ ପାଣିତଳର ଅଜଣା ଜଗତରେ ଅନୁସନ୍ଧାନ କାର୍ଯ୍ୟ-କରୁଥିଲେ । ପାଣିତଳର ମୃତ୍ତିକା, ଖଣିଜପଦାର୍ଥ, ଉଦ୍ଭିଦ ଓ ପ୍ରାଣୀ ଜଗତ୍‌ର ନମୁନା ସଂଗ୍ରହ ପାଇଁ ଏଥିରେ ଆବଶ୍ୟକୀୟ ଯାନ୍ତ୍ରିକ ବ୍ୟବସ୍ଥା ଖଞ୍ଜାଯାଇଥିଲା । ଆମେ ଏ ଛୋଟ ବୁଡ଼ାଜାହାର ଭିତରକୁ ଯାଇ ତାର ଆଭ୍ୟନ୍ତରୀଣ ପରିବେଶ ଅନୁସନ୍ଧାନ କରିଥିଲୁ ।

**ମାଇଲେ ଇଟାଲିୟାନ୍ (ପିଗ୍‌ସ୍) (Maiale Italian Pigs)–**

ଏ ଶ୍ରେଣୀର ଟିକି ଟିକି (ମିଜେଟ୍) ବୁଡ଼ାଜାହଜଗୁଡ଼ିକ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଇଟାଲୀର ତତ୍‌କାଳୀନ ଏକଛତ୍ରବାଦୀ ନେତା ମୁସୋଲିନିଙ୍କ ନୌସେନାଦ୍ୱାରା ବ୍ୟବହୃତ ହେଉଥିଲା । ଏଗୁଡ଼ିକର ଡାକନାମ 'ଘୁସୁରୀ ଛୁଆ' ବା 'ପିଗ୍' । ଏଗୁଡ଼ିକ ଜର୍ମାନୀର ମହା-ମାରାତ୍ମକ ସବ୍‌ମାରାଇନ୍ ୟୁ-ବୋଟ୍‌ର ସମକକ୍ଷ । ଜିବ୍ରାଲ୍‌ଟର୍‌ଠାରେ ଲଙ୍ଗର୍ ପକାଇଥିବା ବ୍ରିଟିଶ୍ ନୌବାହିନୀର ଯୁଦ୍ଧଜାହାଜଗୁଡ଼ିକ ଉପରେ ପ୍ରବଳ ଆକ୍ରମଣ କରୁଥିଲା ଇଟାଲୀ ଏଇ ଛୋଟ ପିଗ୍ ବୁଡ଼ାଜାହାଜ ଗୁଡ଼ିକରେ ଖଞ୍ଜା ଟର୍ପେଡୋ ସାହାଯ୍ୟରେ । ପିଗ୍‌ର ଚାଳକ ଦୁଇଜଣ ନାବିକ ଟର୍ପେଡିୟର୍ । ସେମାନଙ୍କୁ ସମୁଦ୍ରର ପାଣିତଳେ ମୂଳ ବୁଡ଼ାଜାହାଜରୁ ପିଗ୍‌ରେ ବସାଇ ବାହାର କରିଦିଆଯାଉଥିଲା । ପରେ ପରେ ସେମାନେ ପ୍ରୋପେଲର୍-ଚାଳିତ ପିଗ୍ ପିଠିରେ ବସି ପାଣି ତଳେ ତଳେ ଲୁଚି ଲୁଚି ଶତ୍ରୁପକ୍ଷର ଜାହାଜ ନିକଟକୁ ଆସୁଥିଲେ ଓ ସେଥିରେ ଟର୍ପେଡୋ ଖଞ୍ଜିଦେଇ ମୂଳ ସବ୍‌ମାରାଇନ୍ ପାଖକୁ ଫେରିଯାଉଥିଲେ । ଏ ପିଗ୍‌ଗୁଡ଼ିକର ପ୍ରୋପେଲର୍ ବ୍ୟାଟେରି ଶକ୍ତିରେ ଚାଳିତ ହେଉଥିଲା ।

## ପୋଜିଡନ୍ ମିସାଇଲ୍ ଟ୍ୟୁବ୍ (Poseidon Missile Tube)

ଏଗୁଡିକ ମୋଟା ମୋଟା ଟ୍ୟୁବ୍ ଆକୃତିର କ୍ଷେପଣାସ୍ତ୍ର । ଏହାକୁ ବୁଡାଜାହାଜରୁ ପାଣି-ତଳେ ତଳେ କ୍ଷେପଣ କରାଯାଉଥିଲା ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟରେ । ଆଜିର୍ ମାରାତ୍ମକ ସର୍ବାଧୁନିକ ଜଳସ୍ତର ତଳ କ୍ଷେପଣାସ୍ତ୍ରର ପୂର୍ବଜ ଏମାନେ ।

## ନଟିଲ୍ସ (1903) ସବ୍-ମାରାଇନ୍

ଏ ପର୍ଯନ୍ତ ଆମେ ବାହାରେ ବାହାରେ ଘୂରି ବୁଲି ଉପର ବର୍ଣ୍ଣିତ ସାମଗ୍ରୀଗୁଡିକ ଦେଖୁଥିଲୁ । କିନ୍ତୁ ଆମେ ଯୋଉ ଲକ୍ଷ୍ୟରେ ଆମେରିକାର ଏଇ ବିଖ୍ୟାତ ନାଭାଲ୍ ବେସ୍ ଦେଖିବାକୁ ଆସିଥିଲୁ ତାହା ଏ ପର୍ଯ୍ୟନ୍ତ ଆରମ୍ଭ ହେଇନଥିଲା । ଗୋଟଏ ବୁଡାଜାହାଜର ଭିତରଟା କେମିତି ଜଗତ୍ ହୋଇଥାଇପାରେ ତାହା ଦେଖିବାକୁ ମନ ବ୍ୟାକୁଳ ହେଉଥାଏ । ବର୍ତ୍ତମାନ ସେ ଆଶା ପୂରଣ ହେବାକୁ ଯାଉଥାଏ । ମନରେ ଉଦ୍‌ବିଗ୍ନତା ଥାଏ । ହଠାତ୍ ପ୍ରବେଶ ଦ୍ୱାର ଉପରେ ଗୋଟାଏ ଲେଖା ଉପରେ ଆଖି ପଡିଲା । ଟିକେ ଅଟକିଯାଇ ପଢିଲି– "Whatever one man can imagine, another can achieve – *Joules Verne*" ଅର୍ଥାତ୍– ଜଣେ ମଣିଷ ଯାହା କଳ୍ପନା କରେ ତାକୁ ଅନ୍ୟ ଜଣେ ବାସ୍ତବ କରିଦେଇପାରେ ।

ଜୁଲ୍ସ୍-ଭର୍ଣ୍ଣ ମୋର ଅନ୍ୟତମ ପ୍ରିୟ ଲେଖକ । ତାଙ୍କର ସାଇନ୍ସ ଫିକ୍‌ସନ୍‌ମାନ ପଢିଚି । ତାଙ୍କୁ କୁହାଯାଏ ବୈଜ୍ଞାନିକ ଉପନ୍ୟାସର ଜନ୍ମଦାତା । ବୈଜ୍ଞାନିକମାନେ ସାଧାରଣତଃ ସାହିତ୍ୟକୁ ମନେକରନ୍ତି ଦ୍ୱିତୀୟଶ୍ରେଣୀର ସୃଷ୍ଟିଶୀଳତା । କିନ୍ତୁ ସେମାନେ ଜାଣନ୍ତି ନାହିଁ – ମଣିଷ ପ୍ରଥମେ କଳ୍ପନାକରେ, ସ୍ୱପ୍ନ ଦେଖେ, ସ୍ୱପ୍ନରୁ ଜନ୍ମନିଏ ଦର୍ଶନ ଓ ଦର୍ଶନରୁ ଆସେ କର୍ମ ପ୍ରେରଣା । ସେଇ କର୍ମର ଫଳ ହେଲା ନୂଆ ଉଦ୍‌ଭାବନ ବା ଆବିଷ୍କାର । ବୋଧହୁଏ ଆଜିର ସବ୍‌ଜାନ୍ତା ବୈଜ୍ଞାନିକମାନଙ୍କୁ ନିଜ ଅହମିକା ସଂପର୍କରେ ଟିକେ ଚେତେଇଦବା ଲକ୍ଷ୍ୟରେ ଆଧୁନିକ ବିଜ୍ଞାନର ପ୍ରବେଶ ଦ୍ୱାର ଭଳି ଏ ପ୍ରଦର୍ଶନୀର ଦ୍ୱାର ଦେଶରେ ଜୁଲ୍ସ୍ ଭର୍ଣ୍ଣଙ୍କ ଉପଦେଶଟିକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରି ଝୁଲେଇଦିଆଯାଇଥିଲା ।

ଭର୍ଣ୍ଣଙ୍କ ଉକ୍ତିଟି ପଢୁପଢୁ ପଚାଶବର୍ଷ ତଳେ ପଢିଥିବା ପ୍ରାୟ ଏହି ମର୍ମର ଅନ୍ୟ ଏକ ଉକ୍ତି ମୋର ମନେପଡିଲା । ସେଇଟି ଥିଲା ଗୋଟିଏ ନିପଟ ମଫସଲ ଗାଁର ଏକ ମଧ୍ୟ-ଇଂରାଜୀ ବିଦ୍ୟାଳୟର ଗେଟ୍ ସାମ୍ନାରେ ଲଗାହେଇଥିବା ଏକ କ୍ଷୁଦ୍ର ମାର୍ବଲ୍ ଫଳକ ଉପରେ ଲେଖାଟି– "Whatever Man Has Done Man may Do" । (ଯାହା ଜଣେ ବ୍ୟକ୍ତି ସାଧନକରିପାରିଚି ତାହାକୁ ଅନ୍ୟଜଣେ ମଧ୍ୟ ସାଧନ କରିପାରେ) ।

ସେଇ ଉକ୍ତିଟିର କି ଅର୍ନ୍ତନିହିତ ଶକ୍ତି ଥିଲା କେଜାଣି ସେଦିନ ମୋ' ଭିତରେ ସୁପ୍ତ ବ୍ୟକ୍ତିତ୍ୱ ମୁହୂର୍ତ୍ତକେ ଜାଗ୍ରତ କରିଦେଇଥିଲା । ମତେ ସେତେବେଳେ ଏଗାର ବର୍ଷ ।

୧୯୪୪ ମସିହାର ବିଶ୍ୱଯୁଦ୍ଧ ବେଳ । ଦୁଇବର୍ଷ ତଳେ ବୋଉ ମରିଯାଇଥାଏ । ମୁଁ ପଢୁଥିଲି ଆମ ଗାଁ ସିଦ୍ଧେଶ୍ୱରପୁର ମାଇନର୍ ସ୍କୁଲ୍‌ର ଷଷ୍ଠ ଶ୍ରେଣୀରେ । ସେ ବର୍ଷ ଥିଲା ସର୍ଟ ସେସନ୍ ବର୍ଷ । ଛ'ମାସ ପାଠ ପଢ଼ି ଆମେ ଷଷ୍ଠରୁ ପ୍ରମୋସନ୍ ପାଇ ଉଠିଥାଉ ସପ୍ତମଶ୍ରେଣୀକୁ । ନନା ମତେ ନେଇଆସିଥିଲେ ଆମ ଗାଁ ସ୍କୁଲରୁ ତାଙ୍କ ଚାକିରି ଜାଗା ବାଙ୍କି ସୁବର୍ଣ୍ଣପୁରକୁ । ସପ୍ତମରେ ମୋ ନାଁ ଲେଖାହେଇଥାଏ । ସ୍କୁଲ୍‌କୁ ଯିବା ପ୍ରଥମଦିନ ଗେଟ୍ ଆଗରେ ଟିକେ ଅଟକିଯାଇଥିଲି । ଗେଟ୍ ଖୁଣ୍ଟ ଉପରେ କ'ଣ ଧାଡ଼ିଏ ଲେଖାହେଇଥାଏ ବଡ଼ବଡ଼ ଇଂରେଜୀ ହରଫରେ ଏକ ଧଳା ମାର୍ବଲ ପଥର ଉପରେ । ଲେଖାଟିକୁ ମନ ଦେଇ ପଢ଼ିଲି । ପରେପରେ ମୁଁ କବିତା ଲେଖିବାକୁ ଇଚ୍ଛା କଲି । ଭାବିଲି– ମୁଁ ବି ଆମ ବେଳର ମହାକବି ରବୀନ୍ଦ୍ରନାଥ ହୋଇପାରିବି । ଶତାଧିକ କବିତା ସେଇ ବର୍ଷ ମୁଁ ରଚନା କରିଥିଲି ।

ସେ ଥିଲା ମୋ ଅତୀତ । ଆଜି ଅଣଚାଶ-ପଚାଶ ବର୍ଷ ପରେ, ୧୯୯୩ରେ, ଅବିକଳ ସେଇ ଅଦ୍ଭୁତ ସ୍ପନ୍ଦନ ମୋ ଅନ୍ତରରେ ଅନୁଭୂତ ହେଲା । ଜୁଲସ୍ ଭର୍ଣ୍ଣଙ୍କ ସେଇ ଉକ୍ତିଟି ନୌବହର ସବ୍‌ମାରାଇନ୍ ସଂଗ୍ରହାଳୟର ପ୍ରବେଶ-ପଥରେ ଆଖିରେ ପଡ଼ିଯିବା ମାତ୍ରେ ମୁଁ ରୋମାଞ୍ଚିତ ହୋଇଉଠିଲି ।

କିଛି ସମୟ ପାଇଁ ମୁଁ ସେଠାରେ ଅନ୍ୟମନସ୍କ ଭାବେ ଅଟକି ଗଲି । 'ନଟିଲସ୍ ସବ୍-ମାରାଇନ୍‌ର' ଇଣ୍ଟରନାଲ୍-ଗାଇଡେଡ୍-ଟୁର୍-ପ୍ରୋଗ୍ରାମ୍ ଆରମ୍ଭ ହେବାକୁ ଯାଉଥାଏ । ବାରମ୍ବାର ଡାକରା ଦିଆଗଲାଣି ମାଇକ୍‌ରେ । ନିରୁପମା ମତେ ଚେତେଇଦେଲେ– 'ଏଠି ଠିଆହେଇ କ'ଣ ଦେଖୁଚ ? ଭିତରକୁ ଚାଲନା ! ତେଣେ ସମସ୍ତେ ଅପେକ୍ଷା କରୁଚନ୍ତି ଜାଣିପାରୁନ ?''

ପ୍ରଦର୍ଶନୀ ହଲ୍ ଭିତରକୁ ଗଲୁ ସମସ୍ତେ । ଭିତରେ ଠାଏ ପ୍ରଦର୍ଶିତ ହେଇଥାଏ ପୁଣି ଗୋଟାଏ ପୁରୁଣାକାଳର ଟର୍ପେଡୋ– ''ଟର୍ପେଡୋ ହ୍ୱାଇଟ୍ ହେଡ୍, ୧୯୦୩, ନମ୍ବର-୯୭'' । ଏ ଜାତିର ଜାହାଜ ବିଧ୍ୱଂସକାରୀ ଅସ୍ତ୍ର ବ୍ୟବହୃତ ହୋଇଥିଲା ୧୯୦୩ର ସବ୍-ମାରାଇନ୍‌ରେ ।

ଏହାପରେ ଆରମ୍ଭ ହେଲା ଆମର ସବ୍‌ମାରାଇନ୍ 'ନଟିଲସ୍' ଗର୍ଭ ଭିତରକୁ ଯାତ୍ରା । ଆମ ସାଥିରେ ଥିବା ଅନ୍ୟସବୁ ଦର୍ଶକଙ୍କୁ ଛୋଟ ଛୋଟ ଦଳରେ ବିଭକ୍ତ କରିଦିଆଗଲା । ପ୍ରତି ଦଳକୁ ଗୋଟିକ ପରେ ଗୋଟାଏ କରି ଭିତରକୁ ଛଡାଯାଉଥାଏ । କେତେଟା ଦଳ ଯିବା ପରେ ଆମ ଦଳର ପାଳି ପଡ଼ିଲା । ଶୁଣିବାକୁ ମିଳିଲା– ସବ୍‌ମାରାଇନ୍ ଭିତରେ ବୁଲି ଦେଖିବାକୁ ଅନ୍ତତଃ ତିରିଶରୁ ଚାଳିଶ ମିନିଟ୍ ସମୟ ଲାଗିବ । ଲମ୍ବ ଓ ପ୍ରସ୍ଥରେ ନଟିଲସ୍ ସବ୍‌ମାରାଇନ୍‌ଟି ଥିଲା ଗୋଟିଏ ମଧ୍ୟମ-ଧରଣର ଜାହାଜ । ଏହାର ଅଭ୍ୟନ୍ତରକୁ ଓହ୍ଲାଇବା ପାଇଁ ସିଢ଼ିବାଟେ ଯିବାକୁ ହୁଏ । ଆମେ ଖୁବ୍ ସାବଧାନତା ସହକାରେ ସେଇ ସରୁଆ ଲୁହା ଶିଢ଼ିରେ ତଳକୁ ଓହ୍ଲାଇଲୁ । ତଳେ ପ୍ରତ୍ୟେକ ଦର୍ଶକ ପାଇଁ ହଳେ ହେଡ୍ ଫୋନ୍ ଯୋଗାଇଦିଆଗଲା । ହେଡ୍ ଫୋନ୍ କାନରେ ଦେବା ପରେ ଆମେ ଶୁଣିବାକୁ ପାଇଲୁ

ପୂର୍ବରୁ ରେକର୍ଡ କରାଯାଇଥିବା ନିର୍ଦ୍ଦେଶାବଳୀ। ନିର୍ଦ୍ଦେଶକୁ କାନେଇ କାନେଇ ଆଗେଇବାକୁ ହେଲା।

ହେଡ୍ ଫୋନ୍‌ରେ ଶୁଭୁଥିବା ପ୍ରତ୍ୟେକଟି ନିର୍ଦ୍ଦେଶକୁ ମାନି ଅଗ୍ରସର ହୋଇ ପ୍ରଥମେ ପହଞ୍ଚିଲୁ ସବ୍‌ମାରାଇନ୍‌ର ଡାଇନିଂ ରୁମ୍‌ରେ– ଯାହା ଦେଖିଲୁ ପ୍ରଥମେ ବିଶ୍ୱାସ ହେଲା ନାହିଁ ଆଖିକୁ। ଖାଇବା ଟେବୁଲ୍‌କୁ ଘେରି ବସିଥାନ୍ତି ଦଳେ 'କ୍ରୁ'! ୟୁ.ଏସ୍. ନାଭି-ପୋଷାକଧାରୀ ନାବିକଙ୍କୁ ଦେଖିପକେଇ ଆମେ ଭାବିଲୁ ବୋଧହୁଏ ସବ୍‌ମାରାଇନ୍‌ଟା ଆକ୍ଟିଭ୍ ରହିଚି– ନଚେତ୍ ଏ ନୌସେନା ଏଠିକି ଆସିଲେ କୁଆଡୁ ! ପରେ ଅବଶ୍ୟ ଆମେ ଆମ ଆଖିର ଭ୍ରମ ବୁଝିପାରିଲୁ। ହୋ ହୋ ହସରେ ଫାଟିପଡିଲା ସବ୍‌ମାରାଇନ୍ ଭିତର। ପ୍ରକୃତରେ ସେମାନେ ଜୀବନ୍ତ ନାବିକ ନଥିଲେ– ଗୁଡାଏ 'ଡମି' କେବଳ। ଡାଇନିଂ ରୁମ୍‌ର ସବୁଆଡର ସାଜସଜାଠୁ ଆରମ୍ଭ କରି 'କଟ୍‌ଲେରି' ସରଂଜାମ ଓ ଖାଦ୍ୟପେୟ ଅବିକଳ ସେଇଭଳି ସଜାହେଇଥିଲା ଯେମିତି ଥିଲା ୧୯୦୩ରେ କାର୍ଯ୍ୟରତ ଅବସ୍ଥାରେ।

ଏହାପରେ ଆମର ଟୁର୍ ପ୍ରୋଗ୍ରାମ୍ ଆଗକୁ ଆଗକୁ ବଢିଚାଲିଲା। ଜାହାଜର ଇଂଜିନ୍ ରୁମ୍, ରେଡିଓ ରୁମ୍, ବିଶ୍ରାମକକ୍ଷ, ଶୟନକକ୍ଷ, କ୍ୟାପଟେନ୍‌ଙ୍କ ସ୍ୱତନ୍ତ୍ର କାବିନ୍ ଇତ୍ୟାଦି ସବୁ ଜାଗା ଦେଖିଲୁ। ପ୍ରତ୍ୟେକ ଜାଗାରେ କର୍ମରତ କର୍ମଚାରୀ ଓ ଅଫିସର୍‌ମାନେ ନିଜ ନିଜ କର୍ତ୍ତବ୍ୟ ପାଳନରେ ବ୍ୟସ୍ତ ଥିବା ଦେଖିଲୁ। କଫି ରୁମ୍‌ରେ ପହଞ୍ଚି ଦେଖିଲୁ ଫୁରସତ୍ ମେଣ୍ଟାଉଥିବା ସେଲର୍‌ମାନେ ହସଖୁସିରେ ଏକାଠି ବସି କଫି ପିଉଚନ୍ତି ଓ ଖବରକାଗଜ ପଢୁଚନ୍ତି। ହେଡ୍ ଫୋନ୍‌ରେ ଶୁଣିବାକୁ ପାଇଲୁ– ଏ କଫି ରୁମ୍ ଚବିଶ ଘଣ୍ଟା ଖୋଲାଥାଏ ଓ ଏଠି ନାବିକମାନଙ୍କୁ କଫି-ସର୍ଭ କରାଯାଏ। ଏହାପରେ ପଶିଲୁ ଲାଇବ୍ରେରୀ ରୁମ୍‌ରେ। ସେଠି ବହି ଆଲମିରାରେ ଗଚ୍ଛିତ ରହିଥାଏ ଥାକ ଥାକ ବହି। ସେଠି ଦେଖିଲୁ ଅନେକ 'ଡମି' ଆରାମ ଚେୟାର୍‌ରେ ବସି ହାତରେ ବହି ଧରି ପଢୁଚନ୍ତି। ଏହାପରେ ପଶିଲୁ ରିଟାୟାରିଂ ରୁମ୍‌ରେ। ସେଠି ଦୁଇଜଣ ଅଫିସର୍ ବସି ଗପ ଜମେଇଥାନ୍ତି। ସେ ରୁମ୍‌ର କାନ୍ଥରେ ଖୋସାଯାଇଥାଏ କେତେକ 'ଫୋଗ୍ରା'। ସେ ଭିତରେ ଥାଏ ଦୁଇଟି ଫଟୋ– ସୁନ୍ଦରୀ ନାରୀ ଦୁଇଜଣଙ୍କର।

ଏ ସବୁର ତାତ୍ପର୍ଯ୍ୟ ହେଲା– ବାହାର ଦୁନିଆରୁ ବର୍ଷର ଅନ୍ୟୂନ ଛ'ମାସ କାଳ ବିଚ୍ଛିନ୍ନ ହୋଇ ରହୁଥିବା ଜଳମଗ୍ନ ସବ୍‌ମାରାଇନ୍ ନାବିକମାନଙ୍କର ଦୈନନ୍ଦିନ ଜୀବନକୁ ଲୋକେ ଯେପରି ବିରକ୍ତିକର ଓ ନିରସ ମନେକରନ୍ତି ତାହା ଆଦୌ ସେପରି ନୁହେଁ। ସେମାନେ ମନଖୁସିରେ ସେଇ ଅସ୍ୱାଭାବିକ ସ୍ଥିତି ଭିତରେ ଥାଇ ମଧ୍ୟ ନିଜର କର୍ତ୍ତବ୍ୟ ସଂପାଦନ କରିଥାନ୍ତି।

ନଟିଲସ୍ ସବ୍‌ମାରାଇନ୍ ଭିତରଟା ଘୂରି ବୁଲିବା ପରେ ଆମେ ବାହାରକୁ ଆସିଲୁ। ଏହାପରେ ମ୍ୟୁଜିୟମ୍ ପରିଦର୍ଶନ। ମ୍ୟୁଜିୟମ୍ ଭିତରେ ନଟିଲ୍‌ସ ପରି ପୁରୁଣା ସବ୍-

ମାରାଇନ୍ ବ୍ୟତୀତ ଆଜିର ସର୍ବାଧୁନିକ ପରମାଣୁ ମିସାଇଲ୍ ଖଞ୍ଚା ଅନେକ୍ପ୍ରକାର ସବ୍ମାରାଇନ୍ର ମଡେଲ୍ 'ଟୋଗ୍ରା' ଆମକୁ ଦେଖାଇଦିଆଗଲା । କେତୋଟି ଉଲ୍ଲେଖନୀୟ ଏକ୍ଜିବିଟ୍ର ବିବରଣୀ ତଳେ ଦିଆଗଲା ।

## ସର୍ବପ୍ରଥମ 'ପରମାଣୁ ପରିଚାଳିତ' ନଟିଲସ୍-୯୦ ନର୍ଥ, ଅଗଷ୍ଟ ୧୯୫୮

ଅଗଷ୍ଟ ୩, ୧୯୫୮ରେ ଏଇ ସବ୍ମାରାଇନ୍ଟି ବିଶ୍ୱ-ରେକର୍ଡ ସୃଷ୍ଟିକଲା । ଏ ହେଲା ସର୍ବ ପ୍ରଥମ ଐତିହାସିକ ସବ୍ମାରାଇନ୍ ଯାହା ପରମାଣୁ ଶକ୍ତି ପରିଚାଳିତ । ଏହାର ଅନ୍ୟତମ ବିଶ୍ୱ-ସ୍ତରୀୟ ରେକର୍ଡ ହେଲା– ଉତ୍ତରମେରୁର ୯୦ ଡିଗ୍ରୀ ଅକ୍ଷାଂଶର ସଠିକ୍ ସ୍ଥାନ ନିର୍ଣ୍ଣୟ । ଆର୍କଟିକ୍ ମହାସାଗରର ବରଫାବୃତ ଜଳରାଶି ତଳେ ତଳେ ଦୁଇଦିନ ଯାତ୍ରା ଅନ୍ତେ ଏ ଆଣବିକ ଶକ୍ତିଚାଳିତ ବୁଡାଜାହାଜ ପହଞ୍ଚିପାରିଥିଲା ଉତ୍ତରଦିଗର ନବେଡିଗ୍ରୀ ଅକ୍ଷାଂଶର ସେଇ ବିନ୍ଦୁରେ ଯାହାକୁ ଭୂଗୋଳରେ ଆମେ ଚିହ୍ନଟ କରୁ ''ନର୍ଥପୋଲ୍'' ଭାବେ ।

ଏ ସବ୍ମାରାଇନ୍ର କମାଣ୍ଡରଙ୍କ ନାମ କମୋଡର୍ ଉଇଲିୟାମ୍ ଆର୍.ଆଣ୍ଡର୍ସନ୍ । ନର୍ଥପୋଲ୍ ଯାତ୍ରା ଶେଷକରି ଏଇ ସବ୍ମାରାଇନ୍ଟି ମେରୁ ଅଂଚଳର ଘନ ବରଫାବୃତ ଜଳକୁ ଭେଦକରି ଉପରକୁ ଉଠିନପାରି ପାଣି ତଳେ ତଳେ ଫେରି ଆସିଥିଲା ଆଇସ୍ଲାଣ୍ଡର ଏକ ନୌଘାଟିକୁ ।

ଆଇସ୍ଲାଣ୍ଡରେ ପହଞ୍ଚିବା ପରେ ପରେ କମାଣ୍ଡର ଆଣ୍ଡର୍ସନ୍ଙ୍କୁ ହେଲିକେପ୍ଟର୍ ଯୋଗେ ପାଛୋଟି ନିଆଯାଇଥିଲା ସିଧା ଆମେରିକାର ହ୍ୱାଇଟ୍ ହାଉସ୍କୁ । ସେଠାରେ ତତ୍କାଳୀନ ପ୍ରେସିଡେଣ୍ଟ୍ ଡ୍ୱାଇଟ୍ ଡି. ଆଇଜେନ୍ହାୱାର୍ ତାଙ୍କୁ ରାଷ୍ଟ୍ରୀୟ-ସମ୍ମାନରେ ଭୂଷିତ କରିଥିଲେ । ଏଠାରେ ଉଲ୍ଲେଖନୀୟ– ଏହି ସବ୍-ମାରାଇନ୍ଟି ଥିଲା ଉତ୍ତରମେରୁକୁ ଯାତ୍ରା-କରିଥିବା ସର୍ବପ୍ରଥମ ପରମାଣୁ ଶକ୍ତି ପରିଚାଳିତ ପୋତ ।

## ସବ୍-ମାରାଇନ୍ ସ୍କେଟ୍ (Skate) ପରିକ୍ରମା

ନଟିଲସ୍ ୯୦-ନର୍ଥ ପରିଦର୍ଶନ ପରେ ଆମେ ଦେଖିବାକୁ ଗଲୁ ମ୍ୟୁଜିୟମ୍ର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ପରମାଣୁ ଶକ୍ତି ପରିଚାଳିତ ସବ୍ମାରାଇନ୍ ସ୍କେଟ୍ର ଅଭ୍ୟନ୍ତର ବୁଲି ଦେଖିବାକୁ । – ଏହା ମଧ୍ୟ ଇତିହାସ ସୃଷ୍ଟି କରିଥିଲା ।

ମାର୍ଚ୍ଚ ୧୭, ୧୯୫୯ରେ ସବ୍ମାରାଇନ୍ 'ସ୍କେଟ୍'ର କମାଣ୍ଡର୍ ଜେମ୍ସ୍ ଏଫ୍ କେଲ୍ଭେଟ୍ (James F. Calevet) ସବ୍ମାରାଇନ୍ 'ସ୍କେଟ୍' ସାହାଯ୍ୟରେ ପୁନର୍ବାର ଉତ୍ତରମେରୁ ଅଭିଯାନରେ ସଫଳ ହୋଇଥିଲେ । ତାଙ୍କ ପୂର୍ବରୁ ଆଣ୍ଡର୍ସନ୍ ସବ୍ମାରାଇନ୍

ସାହାଯ୍ୟରେ ଉତ୍ତର ମେରୁର ୯୦ ଡିଗ୍ରୀ ଅକ୍ଷାଂଶ ବିନ୍ଦୁ ନିରୂପଣ କରିଥିଲେ; କିନ୍ତୁ ଜଳ ଉପରକୁ ସବ୍‌ମାରାଇନ୍‌କୁ ଉଠାଇବାରେ ସଫଳ ହୋଇନଥିଲେ, କିନ୍ତୁ କମାଣ୍ଡର କାଲେଭେଟ୍ ସଫଳ ହୋଇଥିଲେ । ଏଠାରେ ସ୍ମରଣଯୋଗ୍ୟ– ତାଙ୍କ ପୂର୍ବରୁ ପଚାଶ ବର୍ଷ ତଳେ ରବର୍ଟ ପିୟରି (Robert Peary) ଉତ୍ତରମେରୁ ଆବିଷ୍କାର କରିଥିଲେ, କିନ୍ତୁ ତାହା ଥିଲା ପାଣି ଉପରେ ଜାହାଜ ଚଳାଇବା ଭଳି ସ୍ୱାଭାବିକ ନୌ-ଅଭିଯାନ । ଜେମ୍ସ୍ କାଲେଭେଟ୍ ଏକ ଦୁଷ୍କର ଅଭିଯାନରେ ବାହାରି ସବ୍‌ମାରାଇନ୍ ସାହାଯ୍ୟରେ ତାହା ସଂପନ୍ନ କରିପାରିଥିଲେ ।

## ପରମାଣୁ ଚାଳିତ ସବ୍-ମାରାଇନ୍‌ରେ ପୃଥିବୀ-ପରିକ୍ରମା ରେକର୍ଡ

ପ୍ରଦର୍ଶନୀରେ ଥିଲା ଆହୁରି ଏକ ବିଶ୍ୱ ରେକର୍ଡ ଦେଇଥିବା ସବ୍‌ମାରାଇନ୍ । ଏ ସବ୍‌ମାରାଇନ୍‌ର ନାମ– ''ୟୁ.ଏସ୍.ଟ୍ରାଇଟନ୍ (U.S-Triton) ମେ ୧୯୬୦ ।''

ଏହି ପରମାଣୁ ପରିଚାଳିତ ସବ୍‌ମାରାଇନ୍ ତା ୧୫ ଫେବୃଆରି ୧୯୬୦ରେ ଆମେରିକାର ଏକ ପୋତାଶ୍ରୟରୁ ଯାତ୍ରା ଆରମ୍ଭକରି ୮୩ ଦିନ ପରେ ପୁଣି ଯାତ୍ରାରମ୍ଭ ସ୍ଥାନକୁ ଫେରିଆସିଥିଲା । ଏହାର କମାଣ୍ଡର ଥିଲେ କ୍ୟାପ୍‌ଟେନ୍ ଏଡ୍‌ୱାର୍ଡ ଏଲ୍. ବିଚ୍ । ଏଇ ସବ୍‌ମାରାଇନ୍‌କୁ ପୃଥିବୀ ପରିକ୍ରମା ପାଇଁ ୩୬,୦୦୦ (ଛତିଶ ହଜାର) ନଟିକାଲ୍ ମାଇଲ୍ ଜଳପଥ ସମୁଦ୍ର ଗର୍ଭରେ ଯାତ୍ରା କରିବାକୁ ପଡିଥିଲା– ମଝିରେ ମାତ୍ର ଦୁଇଥର ପାଣି ଉପରକୁ ଉଠିବା ଦରକାର ପଡିଥିଲା– ଥରଟିଏ– ଜଣେ ଅସୁସ୍ଥ ନାବିକଙ୍କ ଚିକିତ୍ସା ପାଇଁ ଓ ଅନ୍ୟଥର ଜଣେ ନାଭାଲ୍ ଅଫିସରଙ୍କୁ କୌଣସି ଜରୁରୀ କାମରେ ପଠାଇବାପାଇଁ ।

ଏଠାରେ ମନେପଡେ ପ୍ରାୟ ପାଞ୍ଚଶହ ବର୍ଷ ତଳେ ୧୫୧୯ ଖ୍ରୀଷ୍ଟାବ୍ଦରେ ବିଖ୍ୟାତ ଆବିଷ୍କାରକ ମ୍ୟାଜେଲାନ୍‌ଙ୍କ ସାମୁଦ୍ରିକ ଅଭିଯାନ କଥା । ଗୋଟିଏ ସାଧାରଣ ପାଲଟଣା ବୋଇତ ନେଇ ଏହି ୟୁରୋପୀୟ ଆବିଷ୍କାରକ ଜଳପଥରେ ପୃଥିବୀ ପରିକ୍ରମା ଉଦ୍ଦେଶ୍ୟରେ ବାହାରିଥିଲେ । ସେତେବେଳେ ପୃଥିବୀଟା ଗୋଲ୍ ବା ଚଟ୍‌କା ସଠିକ୍ ଜଣାନଥିଲା । ସାଧାରଣ ଲୋକ ବିଶ୍ୱାସ କରୁଥିଲେ ପୃଥିବୀଟା ଗୋଟାଏ ଅସରନ୍ତି ସମତଳ ଭୂମି ଯାହାର ଆଦି ଅନ୍ତ ନାହିଁ । କିନ୍ତୁ ଦୁଇବର୍ଷ ପରେ ଯେତେବେଳେ ମ୍ୟାଜେଲାନ୍‌ଙ୍କ ପୋତ ସମଗ୍ର ପୃଥିବୀ ପରିକ୍ରମା କରି ପୁଣି ଯାତ୍ରାରମ୍ଭ ସ୍ଥଳକୁ ଫେରିଆସିଲା ତାହା ଥିଲା ବୈଜ୍ଞାନିକ ଆବିଷ୍କାର ଇତିହାସର ଏକ ବିରଳ ମୁହୂର୍ତ୍ତ । ତେବେ ଏ ବିରଳ ମୁହୂର୍ତ୍ତଟି ଥିଲା ଏକ ଶୋଚନୀୟ ବିୟୋଗାନ୍ତକ ନାଟକର ପରିସମାପ୍ତି ପରି ଅତ୍ୟନ୍ତ କରୁଣ– କାରଣ ଅଭିଯାନର ନାୟକ ସ୍ୱୟଂ କ୍ୟାପଟେନ୍ ମାଜେଲାନ୍ ସେ ପୋତରେ ନଥିଲେ । ବାଟରେ କୌଣସି ଏକ ଦ୍ୱୀପରେ ପିଇବା ପାଣି ସଂଗ୍ରହ କରିବାକୁ ବୋଇତରୁ ଓହ୍ଲାଇବା ଅବସରରେ ତାଙ୍କୁ ସ୍ଥାନୀୟ ଆଦିବାସୀ ଜଳଦସ୍ୟୁ ସନ୍ଦେହରେ ହତ୍ୟାକରିଦେଇଥିଲେ ।

## ଟ୍ରାଇଡେଣ୍ଟ୍-ବାଲିଷ୍ଟିକ୍ କ୍ଷେପଣାସ୍ତ୍ର-ଖଂଜା ସବ୍‌ମାରାଇନ୍‌ର ଅଭ୍ୟନ୍ତର ପରିଦର୍ଶନ

ଗ୍ରୋଟନ୍ ସବ୍‌ମାରାଇନ୍ ପ୍ରଦର୍ଶନୀର ସବୁଠୁ ପ୍ରଭାବଶାଳୀ ଅଙ୍ଗ ଥିଲା– ସେଇ ଟ୍ରାଇଡେଣ୍ଟ୍ ସବ୍‌ମାରାଇନ୍ । ଏଥିରେ ଖଞ୍ଜାଯାଏ ଯୁଦ୍ଧରେ ବ୍ୟବହାର ଉପଯୋଗୀ ମହାମାରାତ୍ମକ ଟ୍ରାଇଡେଣ୍ଟ୍ ବାଲିଷ୍ଟିକ୍ କ୍ଷେପଣାସ୍ତ୍ର (ମିସାଇଲ୍) । ଏ ବିଷୟରେ ଆମେ ସଂବାଦପତ୍ରରୁ ଅନେକ ଭୟଙ୍କର ସଂବାଦ ପଢିଥିଲୁ; କିନ୍ତୁ ବାଲିଷ୍ଟିକ୍ ମିସାଇଲ୍‌ର ରୂପ ପୂର୍ବେ କେବେ ଦେଖିନଥିଲା ମୋ' ଆଖି ।

ସବ୍‌ମାରାଇନ୍ ଭିତରକୁ ପଶିଲୁ । ଏହାର ଅଭ୍ୟନ୍ତର ଅନେକଟା ମୂଳରୁ ଦେଖିସାରିଥିବା ନଟିଲ୍‌ସ ସବ୍‌ମାରାଇନ୍‌ର ଅଭ୍ୟନ୍ତର ପରି । ଏହା ଭିତରେ ବି ଡାଇନିଂ ରୁମ୍‌ରେ ନାଭି-ପୋଷାକ ପିନ୍ଧା 'ଡମି-କ୍ରୁ' ମାନେ ଡିନର୍ ସର୍ଭ କରିଥିବା ଦେଖିଲୁ । ଏହାର ଇଂଜିନ୍‌ରୁମ୍, ରେଡି ରୁମ୍, 'କ୍ରୁ' ରିଟାୟାରିଂ କ୍ୟାବିନ୍, ଅଫିସରମାନଙ୍କର ବୈଠକଖାନା, ଲାଇବ୍ରେରୀ ଇତ୍ୟାଦି ଥାଏ; କିନ୍ତୁ ଏହାର ସ୍ୱାତନ୍ତ୍ର୍ୟ ଥିଲା ଏଥିରେ ଖଞ୍ଜାଯାଇଥିବା ପରମାଣୁ ବୋମା ବହନକାରୀ ବାଲିଷ୍ଟିକ୍ ମିସାଇଲ୍ ପୁଞ୍ଜ । ଏ ବିଧ୍ୱଂସକାରୀ ମିସାଇଲ୍ ଗୁଡିକ ଆନ୍ତର୍ଦ୍ଦେଶୀୟ ଦୂରତାକୁ ଅବଲୀଳା କ୍ରମେ ଅତିକ୍ରମ କରିବା କ୍ଷମତା ସଂପନ୍ନ ବୋଲି ଜାଣିଲୁ ।

ଏକଦା ସମଗ୍ର ପଶ୍ଚିମ ସାମରିକ ଶକ୍ତିସଂପନ୍ନ ଦେଶମାନଙ୍କର ସର୍ବ ବୃହତ୍ ବିଧ୍ୱଂସ-କାରୀ ସାମୁଦ୍ରିକ ସବ୍‌ମାରାଇନ୍ ଥିଲା ଏଇ ଓହାଇଓ ଶ୍ରେଣୀର ଟ୍ରାଇଡେଣ୍ଟ୍ କ୍ଷେପଣାସ୍ତ୍ର-ଯୁକ୍ତ ବୁଡାଜାହାଜ । ଏହାର ଅଗ୍ରଭାଗରୁ (ବୋ)ରୁ ମଙ୍ଗ (ଷ୍ଟର୍ଣ୍ଣ) ୫୬୦ ଫୁଟ ଓ ୪୨ ଫୁଟ 'ହଲ୍ ଡାୟାମିଟର୍'ର ଏଇ ସବ୍‌ମାରାଇନ୍ ଉଚ୍ଚତାରେ ଏକ ଚାରିମହଲା କୋଠା ଘର ପରି । ଏଥିରେ ଦୁଇପାଖେ ଛ' ଛ'ଟା କରି ସମୁଦାୟ ୧୨ଟି ଟ୍ରାଇଡେଣ୍ଟ୍ ମିସାଇଲ୍ ଖଞ୍ଜା-ଯାଇଥିବା ଦେଖିଲି । ଜାଣିବାକୁ ମିଳିଲା– ଏ କ୍ଷେପଣାସ୍ତ୍ରଗୁଡିକ ସାଧାରଣ ନୁହନ୍ତି; ଏଗୁଡିକ ଅସଲ ନ୍ୟୁକ୍ଲିୟର୍ ବମ୍ ବହନକାରୀ ମିସାଇଲ୍ ରୂପେ ବ୍ୟବହୃତ ହେବାକୁ ଉଦ୍ଦିଷ୍ଟ । ତେବେ ଏଇ ଚରମ ବିଧ୍ୱଂସକାରୀ ଯୁଦ୍ଧାସ୍ତ୍ରର ନିୟନ୍ତ୍ରଣ କ୍ଷମତା ସବ୍‌ମାରାଇନ୍‌ର କମାଣ୍ଡରଙ୍କ ହାତରେ ନଥିଲା– ଏହାର ନିୟନ୍ତ୍ରକ ହେଲେ ଯୁକ୍ତରାଷ୍ଟ୍ର ଆମେରିକାର ସର୍ବୋଚ୍ଚ କର୍ତ୍ତା ସ୍ୱୟଂ ପ୍ରେସିଡେଣ୍ଟ ! ଆମେରିକାର ପ୍ରେସିଡେଣ୍ଟଙ୍କ ହାତରେ ଥାଏ କେବଳ 'ହଟ୍-ବଟନ୍' ଯାହା ଏଇ ମାରାତ୍ମକ କ୍ଷେପଣାସ୍ତ୍ର ଗୁଡିକୁ ନିୟନ୍ତ୍ରଣ କରେ । ପୃଥିବୀର ଯେକୌଣସି ସ୍ଥାନରୁ ସମୁଦ୍ର ଗର୍ଭରୁ ଶତ୍ରୁ ଦେଶ ଉପରକୁ କ୍ଷେପଣାସ୍ତ୍ର ନିକ୍ଷେପ କରାଯାଇପାରେ ।

ସବ୍‌ମାରାଇନ୍ ଭିତରୁ ବାହାରିବା ପୂର୍ବରୁ ଆମେ ଏଥିରେ ଖଞ୍ଜାଯାଇଥିବା 'ପେରିସ୍କୋପ୍' ଦେଇ ଦେଖିଲୁ । ସମୁଦ୍ରରେ ବୁଡିରହିଥିବା ଅବସ୍ଥାରେ ସବ୍‌ମାରାଇନ୍ ଭିତରୁ ଏଇ ଯନ୍ତ୍ର ସାହାଯ୍ୟରେ ଜଳ ଉପରସ୍ତରର ବାହାର ଦୁନିଆକୁ ପର୍ଯ୍ୟବେକ୍ଷଣ କରାଯାଏ ।

କନେକ୍ଟିକଟ୍ ଗ୍ରୋଟନ୍‌ଠାରେ ଅବସ୍ଥିତ ସେଇ ୟୁ.ଏସ୍ ନାଭାଲ୍ ବେସ୍‌ର ସବମାରାଇନ୍

ମ୍ୟୁଜିୟମ୍ ଭ୍ରମଣ ମୋ ପାଇଁ ଥିଲା ଏକାନ୍ତ ଶିକ୍ଷାପ୍ରଦ ଏକ ଭ୍ରମଣ । ଗ୍ରୋଟନ୍‌ରୁ ଗ୍ଲାସ୍‌ଟନ୍‌ବରିକୁ ଫେରିବା ବାଟରେ ମୁଁ କାର୍ ଭିତରେ ଅନେକ ସମୟ ଚୁପ୍‌ଚାପ ବସିଥିବା ଦେଖି ଜୋଇଁ ମହେଶ ପଚାରିଲେ,"ନନା ! କ'ଣ ଭାବୁଚନ୍ତି ?"

ମୋର ଉତ୍ତର ନଥିଲା । ଭାବୁଥିଲି କେବଳ ଜୁଲସ୍ ଭର୍ଣ୍ଣଙ୍କ ସେଇ ଉକ୍ତିଟିର ସାର୍ଥକତାକୁ– "ମଣିଷ ଆଜି ଯାହା ସ୍ୱପ୍ନ ଦେଖେ କାଲି ତାହାକୁ ବାସ୍ତବରୂପ ଦେଇପାରେ ଅନ୍ୟ କେହି ଜଣେ ମଣିଷ" । ତେବେ ମନରେ ଆଉ ଏକ ଅବଶୋଷ ମଧ୍ୟ କାମ-କରୁଥାଏ– ଭାରତୀୟମାନେ ସ୍ୱପ୍ନଦେଖା ବନ୍ଦକରିଦେଲେ କାହିଁକି ? ଭାରତୀୟ ସାହିତ୍ୟରୁ କଳ୍ପନାଶକ୍ତି ଉଭେଇଗଲା କାହିଁକି ? ଆଜିର ଭାରତୀୟ କବି ଲେଖକମାନେ କେବଳ ପାଶ୍ଚାତ୍ୟ ଚିନ୍ତକମାନଙ୍କ ପଦାଙ୍କ ଅନୁସରଣ କରୁଚନ୍ତି କାହିଁକି ? କେବେ ସେମାନଙ୍କର ନିଜସ୍ୱ ସ୍ୱପ୍ନ ଦେଖିବା ଦକ୍ଷତା ଫେରିଆସିବ ?

## ୟେଲ୍ ବିଶ୍ୱବିଦ୍ୟାଳୟ ଭ୍ରମଣ (ତା ୨୫ ଅଗଷ୍ଟ, ୧୯୯୩)

ୟେଲ୍ ବିଶ୍ୱଦ୍ୟାଳୟ ଦେଖିବାକୁ ମୋର ବହୁତ ଦିନୁ ଅଭିଳାଷ ଥିଲା । ସେଦିନ ମୋର ମନସ୍କାମନା ପୂରଣ କଲା ଝିଅ ସୁଲୁମା (ନିବେଦିତା) । ୟେଲ୍ ବିଶ୍ୱବିଦ୍ୟାଳୟ ନିଉ-ହାଭେନ୍‌ରେ ଏମାନଙ୍କ ନିପ୍‌ଜିକ୍ ରୋଡ୍ ଗ୍ଲାସ୍‌ଟନ୍‌ବରି ଘରଠୁ ଅଳ୍ପ ଦୂରରେ । ଏହା ଏକ ବିରାଟ ବିଶ୍ୱବିଦ୍ୟାଳୟ । ଆମେରିକାର ସୁଖ୍ୟାତି ଓ ପରମ୍ପରାର ପ୍ରାଚୀନତା ଦୃଷ୍ଟିରୁ ହାର୍ଭାଡ ବିଶ୍ୱବିଦ୍ୟାଳୟର ସମକକ୍ଷ । ଶୁଣିଲୁ ବର୍ତ୍ତମାନର ଆମେରିକାନ୍ ପ୍ରେସିଡେଣ୍ଟ ବିଲ୍ କ୍ଲିଣ୍ଟନ୍ ଓ ତାଙ୍କ ପତ୍ନୀ ହିଲାରୀ କ୍ଲିଣ୍ଟନ୍ ଉଭୟ ୟେଲ୍‌ରେ ଆଇନ୍ ପଢୁଥିଲେ । ମୋର ଶାଳକ ଡାକ୍ତର ରଣଜିତ୍ ରଥ ମଧ୍ୟ ଏଇ ବିଶ୍ୱବିଦ୍ୟାଳୟରେ ଡାକ୍ତରୀ ପାଠ ପଢି ଏମ୍.ଡି କରିଥିଲା ଓ ବର୍ତ୍ତମାନ ଓହାଇଓ ସିନ୍‌ସିନାଟିରେ ଜଣେ ବିଖ୍ୟାତ ହାର୍ଟ-ସର୍ଜନ୍ । ଏସବୁ ଦୃଷ୍ଟିରୁ କନେକ୍ଟିକଟ୍ ଛାଡିବା ପୂର୍ବରୁ ଏ ବିଖ୍ୟାତ ଶିକ୍ଷାନୁଷ୍ଠାନକୁ ଥରେ ଦେଖିଆସିବାକୁ ମନକଲି ।

ସେଦିନ ଅପରାହ୍ନରେ ମୁଁ ଓ ସୁଲୁମା ଦୁଇଜଣ ଘରୁ କାର୍‌ରେ ବାହାରିଲୁ । ମହେଶ ଚାକିରିଆ– ସେ ଆଜି ଆମକୁ ବୁଲାଇ ନେବା ପାଇଁ ସମୟ କରି ପାରିଲେ ନାହିଁ । ନିରୁପମା ବୁଲିଯିବାକୁ ଚାହିଁଲେ ନାହିଁ ମଧ୍ୟ । ତେଣୁ ଆମେ ବାପ ଝିଅ ଦୁହେଁ ୟେଲ୍ ବୁଲିବାକୁ ଘରୁ ବାହରିପଡିଲୁ । ଦେଖିଲି ସୁଲୁମା କାର୍ ଡ୍ରାଇଭିଂରେ ଦକ୍ଷ ବନିଗଲାଣି ଏଇ ଦଶବର୍ଷ ଭିତରେ । ସେ ୧୯୮୨ରେ, ବାହା ହେବା ପରେପରେ ଆମେରିକା ଆସିଚି । ଏ ଭିତରେ ସେ କନେକ୍ଟିକଟ୍ ବିଶ୍ୱବିଦ୍ୟାଳୟରେ ଦୁଇବର୍ଷିଆ ଏମ୍.ଏସ୍.ଡବ୍‌ଲ୍ୟୁ ଡିଗ୍ରି ମଧ୍ୟ କଲାଣି– ଚାକିରି ଖୋଜୁଚି ।

ତେବେ ସୁଲୁର ୟେଲ୍ ବିଶ୍ୱବିଦ୍ୟାଳୟ ସଂପର୍କରେ ବେଶୀ କିଛି ଧାରଣା ନଥାଏ । ତେଣୁ ଆମକୁ ୟେଲ୍ କ୍ୟାମ୍ପସ୍ ଭିତରେ ବୁଲେଇ ଦେଖାଇବାକୁ ଜଣେ ଓଡିଆ

ଭଦ୍ରମହିଳାଙ୍କୁ ସେ ଅନୁରୋଧ କରିସାରିଥାଏ । ସେ ହେଲେ ୟେଲ୍‌ର ଟିଚିଂ ଷ୍ଟାଫ୍ ଡକ୍ଟର ଭାନୁଶଙ୍କର ଜେନାଙ୍କ ପତ୍ନି । ଭାନୁଙ୍କ ପରିଚୟ ହେଲା ସେ ଡକ୍ଟର ପ୍ରଫୁଲ୍ଲ କୁମାର ଜେନାଙ୍କ ପୁଅ । ପ୍ରଫୁଲ୍ଲବାବୁଙ୍କୁ ମୁଁ ପୋଷ୍ଟ୍ ଗ୍ରାଜୁଏଟ୍ କଲାବେଳେ ରେଭେନ୍ସା କଲେଜରୁ ଚିହ୍ନେ । ସେ କେମିଷ୍ଟ୍ରି ବିଭାଗର ଛାତ୍ର ଥିଲେ— ପରେ ସେ ବନାରସ ବିଶ୍ୱବିଦ୍ୟାଳୟରୁ ମେଟାଲର୍ଜି ଡିଗ୍ରୀ ନେଇ ଭାରତର ବିଭିନ୍ନ ସ୍ଥାନରେ ବଡ଼ବଡ ଚାକିରି କରିଥିଲେ ଓ ସମୟ କ୍ରମେ ଭୁବନେଶ୍ୱରର ରିଜିଓନାଲ୍ ରିସର୍ଚ୍ଚ ଲ୍ୟାବ୍‌ର ନିର୍ଦ୍ଦେଶକ ହୋଇଥିଲେ ।

ଦିନ ଦୁଇଟାବେଳେ ଆମେ ୟେଲ୍‌ରେ ପହଞ୍ଚିଲୁ । ସେଠାରେ ଭାନୁଙ୍କ ପତ୍ନୀ ଆମ ପାଇଁ ୟେଲ୍ କ୍ୟାମ୍ପସ୍‌ର ଟୁରିଷ୍ଟ୍ ପଏଣ୍ଟରେ ଅପେକ୍ଷା କରିଥାନ୍ତି । ସେ ଆମକୁ ସଂଖୋଳିଲେ ଓ ୟୁନିର୍ଭସିଟି ଭ୍ରମଣରେ ଆସିଥିବା ଅନ୍ୟ ବହୁ ଟୁରିଷ୍ଟଙ୍କ ଗହଣରେ ଠିଆକଲେ । ସେଇଠାରୁ ଜଣେ ୟୁନିଭର୍ସିଟି ଗାଇଡ୍ ଆମ ଦଳକୁ ବୁଲାଇ ଦେଖାଇବା ଦାୟିତ୍ୱ ହାତକୁ ନେଲେ । ଗାଇଡ୍ ଜଣକ ନିଜେ ଥିଲେ ଏ ବିଶ୍ୱଦ୍ୟାଳୟର ଜଣେ ବରିଷ୍ଠ କଲେଜ ଛାତ୍ରୀ । ତାଙ୍କ ଶରୀରର ବର୍ଣ୍ଣ ଓ ଚହେରା ଅନେକଟା ଆମ ଭାରତୀୟଙ୍କ ପରି । ତେବେ ତାଙ୍କ ନାମରୁ ମନେହେଲା ସେ ଜଣେ ଆମେରିକାନ୍— ହୁଏତ ଲୋହିତ ଭାରତୀୟ ହୋଇଥାଇପାରନ୍ତି । ତାଙ୍କ ହସଖୁସିଆ ମୁହଁ ଓ ମଜାଳିଆ କଥାବର୍ତ୍ତା ଆମକୁ ଖୁବ୍ ଶୀଘ୍ର ଆପଣାର କରିନେଲା ।

## ୟେଲ୍‌ରେ ଗୁରୁ-ବନ୍ଦନା ପରମ୍ପରା

ୟେଲ୍ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ବୁଲିବା ଆରମ୍ଭ ହେବା ପୂର୍ବରୁ ଗାଇଡ୍ ଆମକୁ ପ୍ରଥମେ ବିଶ୍ୱିଦ୍ୟାଳୟ ପ୍ରତିଷ୍ଠାତାଙ୍କ ପ୍ରତିମୂର୍ତ୍ତି ପାଖକୁ ନେଲେ । ଏଠି ମଧ୍ୟ ହାର୍ଭାଡ୍ କ୍ୟାମ୍ପସ୍‌ରେ ପ୍ରତିଷ୍ଠାତାଙ୍କ ପ୍ରତିମୂର୍ତ୍ତି ପରି ଏ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତାଙ୍କ ଗୋଟିଏ ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତି ଅଛି । ଗାଇଡ ଆମକୁ ସେଠିକି ନେଇଗଲେ । ଦେଖିଲୁ— ଏଇ ବିଶାଳ ବ୍ରୋଞ୍ଜ ପ୍ରତିମୂର୍ତ୍ତିଟି ପାଖକୁ ଯାଇ ଗାଇଡ୍ ଭଦ୍ରମହିଳା ପ୍ରଥମେ ପ୍ରତିମୂର୍ତ୍ତିର ପାଦ ସ୍ପର୍ଶକଲେ ଓ ହାତକୁ ନିଜ କପାଳରେ ଛୁଆଁଇଲେ । ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ଲାଗିଲା । ଏ ଖ୍ରିଷ୍ଟିୟାନ୍ ଦେଶର ଉଚ୍ଚଶିକ୍ଷାନୁଷ୍ଠାନରେ ତେବେ କ'ଣ ଆମ ଭାରତ ପରି ଗୁରୁବନ୍ଦନାର ପରମ୍ପରା ଚଳେ ? ଯୋଉ ଧର୍ମରେ ମୂର୍ତ୍ତିପୂଜା ନିଷେଧ, ସେ ଧର୍ମର ଲୋକ କ'ଣ ଗୁରୁଙ୍କ ପ୍ରତିମୂର୍ତ୍ତିର ପାଦ ଛୁଇଁ ବନ୍ଦନା କରନ୍ତି ?

ଗାଇଡ୍‌ଙ୍କୁ ମୋ ମନର ସନ୍ଦେହ ବିଷୟ ପଚାରିଲି । ସେ ଯାହା କହିଲେ ସେଥିରେ ମୁଁ ଆହୁରି ବିସ୍ମିତ ହେଲି । ''ଦେଖନ୍ତୁ—'' ପ୍ରତିମୂର୍ତ୍ତିର ପାଦର ବ୍ରୋଞ୍ଜ ଯୋତାହଳକୁ ଦେଖେଇ ଗାଇଡ୍ ହସିହସି କହିଲେ, ''ଏ ଯୋତା ଦୁଇଟାର ଅଗକୁ ଚାହାନ୍ତୁ ଭଲକରି— ଦେଖୁଚନ୍ତି କେମିତି ଚକଚକ ଦିଶୁନି ସୁନା ପରି ? ଏ ମୂର୍ତ୍ତିଟି ବ୍ରୋଞ୍ଜର । ବ୍ରୋଞ୍ଜ ନୂଆ ବେଳେ ଅବିକଳ ସୁନା ପରି ଝଟକେ । କିନ୍ତୁ ପାଣି ପବନରେ ବେଶୀଦିନ ରହିଲେ ଆସ୍ତେ ଆସ୍ତେ

କଳାପଡିଯାଏ । ଏ ମୂର୍ତ୍ତିଟି ଅଷ୍ଟାଦଶ ଶତାବ୍ଦୀର– ଦୁଇଶହ ବର୍ଷରୁ ବେଶୀ ଏ ଏଇଠି ଠିଆହେଇଚି । ପୂରା କଳାପଡିଗଲାଣି । ମୂର୍ତ୍ତିର ଯୋତାହଳକ ବି କଳା ପଡି ସାରିଚି । କିନ୍ତୁ ଯୋତା ହଳକର ମୁନିଆ ଅଗ ଦୁଇଟାକୁ ଦେଖୁଚନ୍ତି– କେମିତି ସୁନାପରି ଝଟକୁଚି ସୂର୍ଯ୍ୟକିରଣରେ ! କାହିଁକି କହିଲେ ? ତା'ର କାରଣ ପରୀକ୍ଷା ହଲ୍‌କୁ ଯିବା ପୂର୍ବରୁ ଏ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ, ଶତକଡା ୯୯ ଭାଗ, ଏଇ ମୂର୍ତ୍ତିର ପାଦ ଛୁଇଁ ପଶନ୍ତି ପରୀକ୍ଷା ହଲ୍‌କୁ । ସେମାନଙ୍କ ହାତର ଆଙ୍ଗୁଳି ବରାବର ଏ ଯୋତା ହଳଟାର ମୁନିଆ ଅଗକୁ ମାଜିମାଜି ଏମିତି ଚକଚକ କରି ରଖିଚି ସୁନା ପରି । ଏ ହେଲେ ଆମ ୟେଲ୍ ବିଶ୍ୱ-ବିଦ୍ୟାଳୟର ପ୍ରତିଷ୍ଠାତା ସର୍ବ-ପ୍ରଥମ ପ୍ରେସିଡେଣ୍ଟ୍ ।''

## ଗୋଟିଏ ଗାଈର ବିଶ୍ୱବିଦ୍ୟାଳୟ ଚର୍ଚ୍ଚ-ଶିଖର ଆରୋହଣ ଉପାଖ୍ୟାନ

ଏହାପରେ ଗାଇଡ୍ ଆମକୁ ବିଶ୍ୱବିଦ୍ୟାଳୟ ହତାର ଏକ ସୁନ୍ଦର ଚର୍ଚ୍ଚ ବିଲଡିଂ ପାଖକୁ ନେଲେ । ହାର୍ଭାଡ ପରି ଏଠି ମଧ୍ୟ କ୍ୟାମ୍ପସ୍ ଭିତରେ ଚର୍ଚ୍ଚଟିଏ ଦେଖିଲୁ । ଚର୍ଚ୍ଚ ଆଗରେ ଆମକୁ ଠିଆକରି ଗାଇଡ୍ କହିଲେ– ''ଏଠି ଛାତ୍ରଛାତ୍ରୀ ଓ ଷ୍ଟାଫ୍‌ମାନେ ରୀତିମତ ଚର୍ଚ୍ଚରେ ପ୍ରାର୍ଥନା କରିବା ପରମ୍ପରା ବଳବତ୍ତର ରହିଆସିଚି ମୂଳରୁ । ତେବେ ମୁଁ ଆପଣମାନଙ୍କୁ ବର୍ତ୍ତମାନ ପ୍ରାର୍ଥନା କରିବାକୁ ଏଠିକି ଆଣିନାହିଁ । ଏ ଚର୍ଚ୍ଚକୁ ନେଇ ଏକାଧାରରେ ଗୋଟିଏ ମଜା ଓ ଦୁଃଖଦ କାହାଣୀ ଶୁଣନ୍ତୁ– ତା'ହେଲେ ଆପଣମାନେ ବୁଝିପାରିବେ ଏ ବିଶ୍ୱଦ୍ୟାଳୟର ଛାତ୍ରଙ୍କ ଉଦ୍ଭଟ ଉଦ୍ଭାବନୀ ଶକ୍ତିରୁ ବେଳେ ବେଳେ କିଭଳି ଉଭୟ ହାସ୍ୟାସ୍ପଦ ଆଉ ମାରାତ୍ମକ ସମସ୍ୟା ସୃଷ୍ଟିହୁଏ, ଆଉ ତାର ସମାଧାନ ମଧ୍ୟ କିଭଳି ବିଚିତ୍ର ଭାବେ କରାଯାଏ ।

ଯାହା କହୁଚି ତାକୁ ଏକ ମନଗଢା କାହାଣୀ ବୋଲି ଭାବନ୍ତୁ ନାହିଁ– ଏକଥା ୟୁନିଭର୍ସିଟି ରେକର୍ଡରୁ ଉଦ୍ଧାର କରୁଚି ବୋଲି ଜାଣନ୍ତୁ । ଏଇ କେତେବର୍ଷ ତଳର ଘଟଣା । ସେଦିନ ବଡିସକାଳୁ ଦେଖାଗଲା ଗୋଟାଏ ଗାଈ କେମିତି କେଜାଣି ଚର୍ଚ୍ଚର ଷ୍ଟିପଲ୍ (ଶିଖର) ଉପରକୁ ଚଢିଯାଇଚି ଆଉ ହମ୍ବାରଡି ପକଉଚି । ଏ ଖବର ପ୍ରଚାରିତ ହେବା ପରେ ବହୁଲୋକ ଧାଇଁ ଆସିଲେ । ଦେଖିଲେ ଗୋଟାଏ ବେଶ୍ ବଡ ଗାଈ ଚର୍ଚ୍ଚ ଷ୍ଟିପଲ୍ ଉପରୁ ତଳକୁ ଅନେଇ ଠିଆହେଇଚି ଆଉ ବିକଳରେ ବୋବାଳି ଛାଡିଚି । ଏହା କିପରି ସଂଭବ ହେଲା କେହି ଚିନ୍ତା କରି ପାରିଲେ ନାହିଁ– କାରଣ ଚର୍ଚ୍ଚ ଉପରକୁ ଉଠିବାକୁ ହେଲେ ଗୋଟିଏ ସରୁ ସ୍ପାଇରାଲ୍ ଷ୍ଟେୟାରକେଶ୍ ଦେଇ ଉପରକୁ ଚଢିବାକୁ ହୁଏ ।

ସ୍ପାଇରାଲ୍ ଷ୍ଟେୟାର୍ କେଶ୍ ବାଟେ ଘୁରିଘୁରିକା ଶହେଫୁଟ୍ ଉଚ୍ଚକୁ ଚଢିବା ସାଧାରଣ ମଣିଷଙ୍କ ପକ୍ଷେ ବି ବେଶ୍ କଷ୍ଟସାଧ୍ୟ– ତେବେ ଏତେ ବଡ ଗୋଟାଏ ଗାଈ କେମିତି ସେ ସିଢିରେ ଉଠିଉଠିକା ଚାଲିଗଲା ସେଠିକି ? ଡିନ୍‌ମାନଙ୍କ ମୁଣ୍ଡ ଘୂରିଗଲା । ଫିଜିକ୍ସ ପ୍ରଫେସର୍‌ମାନଙ୍କୁ ଡକାଗଲା– ସେମାନେ ବି ବୁଝି ପାରିଲେ ନାହିଁ ସେ ଅଜବ ଘଟଣାର

ତତ୍ତ୍ୱ । ବହୁ ଖୋଳତାଡ ପରେ ଜଣାଗଲା ଏ କାଣ୍ଡର କର୍ତ୍ତା ହେଉଚି ବିଶ୍ୱବିଦ୍ୟାଳୟର ଜଣେ ଦୁଷ୍ଟ ଅଣ୍ଡରଗ୍ରାଜୁଏଟ୍ କ୍ଲାସ୍‌ର ଛାତ୍ର ।

ଏନ୍‌କ୍ୱାରି କମିଟି ସେ ଦୁଷ୍ଟଛାତ୍ରକୁ ବହୁ ପଚରାପଚରି କଲାପରେ ଜାଣିଲେ ଗାଈଟାକୁ ସେଇ ଏକା ଏକା ଚଢେଇଚି ଗତ ରାତିସାରା ଅଜସ୍ର ପରିଶ୍ରମ କରି । ତାହା ଥିଲା ତା' ମୁଣ୍ଡରୁ ବାହାରିଥିବା ଏକ ସୁଚିନ୍ତିତ କୌଶଳର ପରିଣତି ।

ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ସେଇ ଦୁଷ୍ଟ ପିଲାକୁ କିଭଳି ଦଣ୍ଡିତ କରିବେ ବୁଝିପାରିଲେ ନାହିଁ । ଶେଷକୁ ସ୍ଥିରହେଲା ଦଣ୍ଡ ପରିବର୍ତ୍ତେ ପିଲାଟାର ଉଦ୍ଭଟ କଳ୍ପନା ଲାଗି ତାକୁ ପୁରସ୍କୃତ କରାଯିବା ଉଚିତ୍ । ତେଣୁ ତାକୁ ଫିଜିକ୍ସରେ ଅନରାରି ଡକ୍ଟରେଟ୍ ଉପାଧିରେ ଭୂଷିତ କରାଗଲା ।

ତେବେ ବିଚରା ଗାଈଟିକୁ ସମସ୍ତ ଚେଷ୍ଟା ପରେ ବି ଆଉ ଧରାବକ୍ଷକୁ ଫେରାଇ ଆଣିବା ସମ୍ଭବ ହେଲାନାହିଁ । ସେଥିପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ବିଚରା ନିର୍ଦ୍ଦୋଷ ପ୍ରାଣୀକୁ ପୁରସ୍କୃତ କଲେ– ସେଇଠି ଚର୍ଚ୍ଚ ଉପରେ ସ୍ୱର୍ଗାରୋହଣ ପାଇଁ ବ୍ୟବସ୍ଥା ଦ୍ୱାରା । ତାର ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ଧରାବତରଣ କରାଇବା ବ୍ୟତୀତ ଅନ୍ୟ ଉପାୟ ନଥିଲା ।

ଏପରି ଅନେକ ଘଟଣା ମଝିରେ ମଝିରେ ଏଠାକାର ବିଶ୍ୱବିଦ୍ୟାଳୟମାନଙ୍କ ପ୍ରାଙ୍ଗଣରେ ଘଟେ । ଏଠାର ନୀତି ଅନୁସାରେ ଦୁଷ୍ଟାମିର ଉଦ୍ଦେଶ୍ୟ ଯଦି ଗଠନମୂଳକ ତେବେ ଦୁଷ୍ଟକୁ ଦଣ୍ଡ ନଦେଇ ପୁରସ୍କୃତ କରାଯାଉ । ଏଇ ନୀତିରେ ଆମେରିକାର ବହୁ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ଆତଯାତ ଛାତ୍ରଛାତ୍ରୀଙ୍କ ଭିତରେ 'ଜିନିୟସ୍' ସର୍ଚ୍ଚ କରିଥାନ୍ତି ଯାହା ଆମ ଭାରତରେ ଅଚିନ୍ତନୀୟ ।

## ୟେଲ୍ କ୍ୟାମ୍ପସ୍‌ର ଚେହେରା

କ୍ୟାମ୍ପସ୍ ଭ୍ରମଣ ବେଳେ ଏହାର ବାହ୍ୟ ରୂପ ମତେ ଦିଶିଲା ଗୋଟିଏ ମଧ୍ୟଯୁଗୀୟ ୟୁରୋପର ମଠ (Monastery) ପରି । ଏହାର କୋଠାବାଡିର କାନ୍ଥ ମାନ ଲାଲ୍‌ରଙ୍ଗର ଇଟା ଆଉ ଆବୁଡାଖାବୁଡା ପଥରରେ ତିଆରି– ଦିଶୁଥାଏ ସତେକି ହଜାରେ ବର୍ଷ ତଳର ବିଲଡିଂ ପରି; କିନ୍ତୁ ଏହାର ବୟସ ଏତେ ପୁରୁଣା ନୁହେଁ– ମାତ୍ର ଦୁଇଶହ ବର୍ଷର । କିନ୍ତୁ ଦୁଇଶହ ବର୍ଷ ତଳର ମୂଳ ଡାଞ୍ଚା ସହିତ ପରବର୍ତ୍ତୀ ସମୟରେ ଅନେକ ନୂଆ କୋଠାବାଡି ନିର୍ମାଣ କରାଯାଇଥିଲେ ବି ଏହାର ଚେହେରା ଦିଶୁଥାଏ ଏକାଭଳି ପ୍ରାଚୀନ । ଏହା କିପରି ସଂଭବ ହେଲା ଜାଣିବାକୁ ଚାହିଁଲି । ଗାଇଡ ବତେଇଦେଲେ ତା' ସୂତ୍ର । କହିଲେ, ''ଏଠି ପ୍ରାଚୀନତାକୁ ବହୁତ ମୂଲ୍ୟ ଦିଆଯାଏ । କିନ୍ତୁ ୟୁରୋପୀୟମାନଙ୍କ ଆଖିରେ ଆମେରିକା ତଥାପି ଏକ ଇତିହାସବିହୀନ ଅର୍ବାଚୀନ ଦେଶ । ଏଇ ମନୋଭାବକୁ କାଟିବା ପାଇଁ ଏ ଦେଶରେ ଚିନ୍ତାଶୀଳ ଲୋକମାନେ ଆମେରିକାକୁ ପ୍ରାଚୀନତାର ପ୍ରଚ୍ଛଦ ତଳେ ଘୋଡାଇ ରଖିବାକୁ ବରାବର ତତ୍ପର । ସେଥିପାଇଁ ଆମ ବିଶ୍ୱବିଦ୍ୟାଳୟ ନୀତିଗତ ଭାବେ ନୂଆ

ବିଲଡିଂ ଗୁଡିକୁ ପୁରୁଣା ଇଟାରେ ତିଆରି କରାଏ । ତେବେ ଏତେ ବର୍ଷ ତଳର ପୁରୁଣା ଇଟା ମିଳିବ କୁଆଡୁ ? ସେଥିପାଇଁ ନୂଆ ଇଟାକୁ ମାଟିତଳେ ପୋତି ରଖିଦିଆଯାଏ ବହୁବର୍ଷ ପର୍ଯ୍ୟନ୍ତ– ସିଜନିଂ କରିବା ପାଇଁ । ବିଲଡିଂ ପାଇଁ ଦରକାର ପଥରଗୁଡାକୁ ମଧ୍ୟ ସେମିତି ପ୍ରାଚୀନତାର ରୂପ ଦେବାପାଇଁ ମଧ୍ୟଯୁଗୀୟ ମଠବାଡିରେ ଲାଗୁଥିବା ପଥର ଭଳି ଆବୁଡା ଖାବୁଡା କରି କାଟି କାମରେ ଲଗାଯାଏ । ଏଇ କାରଣରୁ ଆମ ୟୁନିଭର୍ସିଟିକୁ ବାହାରୁ ଦେଖିଲେ ଅନେକଟା କ୍ୟାମ୍ବ୍ରିଜ୍ ବା ଅକ୍ସଫୋର୍ଡ ଭଳି ଦିଶେ ।''

ଗାଇଡ୍‌ଙ୍କ କଥା ମତେ ଚେତେଇଦେଲା– ଆମ କଟକର ରେଭେନ୍ସା କଲେଜର ରୂପ । କୁହାଯାଏ ରେଭେନ୍ସାର ଢାଞ୍ଚା କୁଆଡେ କ୍ୟାମ୍ବ୍ରିଜ୍ ଭଳିଆ । ବିଦେଶୀମାନଙ୍କ ମୁହଁରୁ କ୍ୟାମ୍ବ୍ରିଜ୍ ଅକ୍ସଫୋର୍ଡ ନାଁ ଶୁଣିଲେ ଆମ ବୁଦ୍ଧିଜୀବୀଙ୍କ ଛାତି କୁଣ୍ଢେମୋଟ ହେଇଯାଏ । ସେମାନେ ଭୁଲିଯାନ୍ତି ନିଜ ଦେଶର ସୁପ୍ରାଚୀନ ଗୁରୁକୁଳ ତକ୍ଷଶୀଳା ଏପରିକି ମଧ୍ୟଯୁଗୀୟ ପୁଷ୍ପଗିରି ବା ନାଳନ୍ଦା ଇତ୍ୟାଦି ବୌଦ୍ଧ ବିଶ୍ୱଦ୍ୟାଳୟ ଗୁଡିକର ବିଶ୍ୱଖ୍ୟାତି । ଆମମାନଙ୍କ ହୀନମନ୍ୟତା ପରିପ୍ରେକ୍ଷୀରେ ୟେଲ୍‌ର ବୁଦ୍ଧିଜୀବୀଙ୍କ ଇତିହାସ ସଚେତନତା ମତେ ବିସ୍ମିତ କଲା । ନୂଆ ଇଟାକୁ ମାଟିତଳେ ପୋତା ଯାଇ ତାକୁ ମଧ୍ୟଯୁଗୀୟ ରୂପ ଦେବାର ପ୍ରଚେଷ୍ଟା ଆତ୍ମ-ପ୍ରତାରଣାତ୍ମକ ହେଲେ ମଧ୍ୟ ପ୍ରଶଂସନୀୟ ।

## ୟେଲ୍ କ୍ୟାମ୍ପସ୍‌ର ମୁଖ୍ୟ ଦର୍ଶନୀୟ ସ୍ଥଳ–

ୟେଲ୍ କ୍ୟାମ୍ପସ୍ ଭିତରଟା ଅତି ବଡ । ଏହାକୁ ଏକାଦିନକେ ବୁଲି ଦେଖିବା ବେଶ୍ ଆୟାସସାଧ୍ୟ । ଜଣେ ରସାୟନ ବିଦ୍ୟା ଛାତ୍ରଭାବେ ମୁଁ ସ୍ୱଭାବତଃ ଏ ବିଶ୍ୱବିଦ୍ୟାଳୟର କେମିଷ୍ଟ୍ରି ଓ ବିଜ୍ଞାନ ବିଭାଗର ସର୍ବାଧୁନିକ ଲାବୋରେଟୋରି କେତେଟା ବୁଲିବାକୁ ଚାହିଁଲି । ଶୁଣିଲି– ଭାରତଜନ୍ମିତ ନୋବେଲ୍ ପୁରସ୍କାର ବିଜେତା ହରଗୋବିନ୍ଦ ଖୁରାନା ଥିଲେ ଏଇ ୟେଲ୍ ବିଶ୍ୱଦ୍ୟାଳୟର କେମିଷ୍ଟ୍ରି ବିଭାଗର ଜଣେ ଗବେଷକ– ସେ ବର୍ତ୍ତମାନ ଅନ୍ୟତ୍ର । ଆମେରିକାରେ ବିଶ୍ୱବିଦ୍ୟାଳୟର ଶିକ୍ଷକମାନଙ୍କ ସାମାଜିକ ମର୍ଯ୍ୟାଦା ବିଷୟରେ ମୁଁ ଅବଗତ ଥିଲି; କିନ୍ତୁ ସେମାନଙ୍କ ଚାକରିର ସ୍ଥିତି ଯେ ଏତେ ଅନିଶ୍ଚିତ ଜାଣିନଥିଲି । ଗାଇଡ୍ ବୁଝେଇ ଦେଲେ – ଏଠି ଚାକିରିରେ ସ୍ଥାୟୀତ୍ୱ ସେଇ ପର୍ଯ୍ୟନ୍ତ ବଳବତ୍ତର ରହେ ଯୋଉ ପର୍ଯ୍ୟନ୍ତ ପ୍ରଫେସର୍‌ମାନେ ନିଷ୍ଠାପର ଭାବେ ଗବେଷଣା କରୁଥାନ୍ତି ଓ ନିୟମିତ ନୂଆ ନୂଆ ତଥ୍ୟ ସଂବଳିତ ପେପର୍ ପ୍ରକାଶ କରୁଥାନ୍ତି । କିନ୍ତୁ ଗବେଷଣା ଚାଲୁ ରଖିବାକୁ ହେଲେ ଆବଶ୍ୟକୀୟ ଅର୍ଥ ଗବେଷକଙ୍କୁ ନିଜେ ଯୋଗାଡ କରିବାକୁ ହୁଏ । ଏହା ସଂଭବ ହୁଏ ବଡ ବଡ କଂପାନିମାନଙ୍କ ପୃଷ୍ଠପୋଷକତାରେ । ସେଥିପାଇଁ ଗବେଷକମାନଙ୍କୁ କଂପାନୀମାନଙ୍କର ଦ୍ୱାରସ୍ଥ ହେବାକୁ ହୁଏ । ପ୍ରସ୍ତାବିତ ଗବେଷଣା ପ୍ରୋଜେକ୍ଟଗୁଡିକୁ ସେମାନେ ଗ୍ରହଣକଲେ ଯାଇ ଆର୍ଥିକ ସାହାଯ୍ୟ ଆଶା କରାଯାଇପାରେ । ଏହା ଅତ୍ୟନ୍ତ କଷ୍ଟସାଧ । ତଥାପି ଆମେରିକାରେ

ବ୍ୟାବସାୟିକ କଂପାନୀମାନେ ହିଁ ମୁଖ୍ୟତଃ ନୂଆ ନୂଆ ପ୍ୟାଟେଣ୍ଟର ଅସଲ ପୃଷ୍ଟପୋଷକ । ହରଗୋବିନ୍ଦ ଖୁରାନା ବାଦ୍‌ପଡ଼ିନଥିଲେ ଏ ଦେଶର ବୈଜ୍ଞାନିକଙ୍କ ଏଇ ଅଗ୍ନିପରୀକ୍ଷାରୁ ।

ଏହାପରେ ଆମେ ବୁଲିବାହାରିଲୁ ୟେଲ୍ କ୍ୟାମ୍ପସ୍‌ର କେତେକ ବିଖ୍ୟାତ ଦର୍ଶନୀୟ ସ୍ଥାନ ଦେଖିବାକୁ । ଗାଇଡ୍ ଆମକୁ ପ୍ରଥମେ ନେଲେ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ଦେଖେଇବାକୁ । ଏଠି ଦୁଇଟା ଖୁବ୍ ବଡ ବଡ ଲାଇବ୍ରେରୀ ଅଛି– ଗୋଟିଏ ଅତି ପୁରୁଣା, ଅନ୍ୟଟି ଅତି ନୂଆ । ପୁରୁଣା ଲାଇବ୍ରେରୀ ବିଲ୍‌ଡିଂଟିର ବାହାର ଓ ଭିତର ଦୃଶ୍ୟ ଅନେକଟା ଗୋଟିଏ ମଧ୍ୟଯୁଗୀୟ ଇଟାଲୀୟ ଚର୍ଚ୍ଚ ପରି । ଭିତରକୁ ଯାଇ ଦେଖିଲି– ଏହାର ଛାତରେ ଅନେକ ସୁନ୍ଦର ସୁନ୍ଦର କାରୁକାର୍ଯ୍ୟମୟ ପଥର ଖୋଦେଇ ଚିତ୍ର ରହିଚି । ମନେପଡିଲା ଆୟାରଭିଂଷ୍ଟୋନ୍‌ଙ୍କ ''ଆଗୋନି ଆଣ୍ଡ୍ ଏକ୍‌ଷ୍ଟାସି'' ଉପନ୍ୟାସରେ ବର୍ଣ୍ଣିତ ରେନାସାଁ ଯୁଗର ବିଖ୍ୟାତ ଶିଳ୍ପୀ ମାଇକେଲ୍ ଆଞ୍ଜେଲୋଙ୍କ ସିଷ୍ଟିନ୍ ଚାପେଲ୍‌ର ଛାତରେ ଅଙ୍କିତ ଚିତ୍ରାବଳୀର ଦୃଶ୍ୟ । ୟେଲ୍‌ର ପୁରୁଣା ଲାଇବ୍ରେରୀ ସମ୍ଭବତଃ ସେଇ ଆଦର୍ଶକୁ ଦୃଷ୍ଟିରେ ରଖି ଏ ଗୃହଟିକୁ ନିର୍ମାଣ କରାଇଥିଲେ । ଏ ବିଲ୍‌ଡିଂର ଅନନୁକରଣୀୟ ପାଠାଗାର ବ୍ୟବସ୍ଥାକୁ ଲକ୍ଷ୍ୟ କଲାବେଳେ ଆମ ସମୟର ରେଭେନ୍ସାକଲେଜର କନିକା ଲାଇବ୍ରେରୀ ମନେପଡିଲା । କିନ୍ତୁ ଆମେରିକାର ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାରେ ପୁସ୍ତକାଗାରର ଗୁରୁତ୍ୱର ମର୍ଯ୍ୟାଦା ସହିତ ଆମ ଦେଶର ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାରେ ପୁସ୍ତକାଗାର ବ୍ୟବସ୍ଥାର ତୁଳନା ଥିଲା ଅବାନ୍ତର ।

ଏହାପରେ ଗାଇଡ୍ ଆମକୁ ନେଇଗଲେ ଏଠାର ସର୍ବାଧୁନିକ ପୁସ୍ତକାଗାରଟିକୁ ବୁଲେଇ ଦେଖେଇବାକୁ । ୟେଲ୍‌ର ଏ ନୂଆ ପୁସ୍ତକାଗାର ବିଲ୍‌ଡିଂକୁ ଦୂରରୁ ଦେଖି ପ୍ରଥମେ ଆଖିକୁ ବିଶ୍ୱାସ କରିହେଲା ନାହିଁ । କାରଣ ସେଇ ୪୦/୫୦ ଫୁଟ୍ ଉଚ୍ଚ ବିଶାଳ ଆକୃତିର ବହୁତଳ ଓ ବହୁମୁଖୀ ପ୍ରାସାଦଟି ଦୂରରୁ ଦିଶିଲା ଯେମିତି ଗୋଟାଏ ବଡ ମହୁଫେଣା ଶୂନ୍ୟରେ ଝୁଲୁଚି ! ନିକଟକୁ ଆସିଲାରୁ ଦେଖାଗଲା ସମୁଦାୟ ବିଲ୍‌ଡିଂଟି ପୃଥିବୀପୃଷ୍ଠରେ ମାତ୍ର ଚାରୋଟି 'ପିଭର୍ଟ୍' ଉପରେ ପ୍ରତିଷ୍ଠିତ ହୋଇଚି ।

ବାହାରୁ ଅନେକ ସମୟ ବିଲ୍‌ଡିଂଟାକୁ ବିସ୍ମୟ ବିସ୍ଫାରିତ ନେତ୍ରରେ ଅନାଇସାରି ଆମେ ଭିତରକୁ ଗଲୁ । ଦେଖିଲୁ ଏକ ବିଶାଳ ଗର୍ଭଗୃହ ମଝିରେ ନାଡ ଉପରେ ଠିଆ ଫୁଟନ୍ତା ପଦ୍ମପରି ପାଖୁଡା ମେଲିଚି । ଏଇ ପାଖୁଡା ଗୁଡିକ ପ୍ରତ୍ୟେକ ହେଲା ଗୋଟିଏ ଗୋଟିଏ ବହି ଥାକ । ସେଗୁଡିକ ଉପରେ ସଜଡାହେଇ ରଖାଯାଇଚି ବହି !

''ଏ ପୁସ୍ତକାଗାରରେ ଗଚ୍ଛିତ ରହିଚି ପୃଥିବୀର ସର୍ବ-ପ୍ରାଚୀନ ଓ ସର୍ବାଧୁନିକ ପାଣ୍ଡୁଲିପି ଓ ବହି । ଲକ୍ଷ ଲକ୍ଷ ବହି ! ବହୁ ବିରଳ ପାଣ୍ଡୁଲିପି ଏ ଲାଇବ୍ରେରୀରେ ଅଛି ।'' ଗାଇଡ୍ ଆମକୁ ବହିମାନଙ୍କ ବିଷୟରେ କିଛି ସୂଚନା ଦେବା ଭିତରେ ଲକ୍ଷ୍ୟ କଲି ଏ ଗମ୍ବୁଜାକୃତି ବିଶାଳ ଘରର ଗୋଲାକାର କାନ୍ଥର ଚାରିଆଡ ମଣିମୁକ୍ତା ପରି ଝଲଝଲ ହଉଚି ।

''ଏ ଘରର କାନ୍ଥ କାହିଁକି ଏମିତି ରେଡିୟମ୍ ଭଳି ଆଲୋକ ବିକୀରଣ କରୁଚି ?''

ଗାଇଡ୍‌ଙ୍କୁ ବିସ୍ମିତ ସ୍ୱରରେ ପଚାରିଲି ।

''ଠିକ୍ ଧରିଚନ୍ତି ଆପଣ ଏ ଘରର ସିକ୍ରେଟ୍‌ଟାକୁ''– ଗାଇଡ୍ ହସିଲେ ଆଉ ଆମକୁ ସନ୍ଦେହମୁକ୍ତ ହେବାକୁ କହିଲେ, ''ରେଡିୟମ୍ ନୁହେଁ– ଏ ବିଲ୍‌ଡିଂର କାନ୍ଥ ତିଆରିହେଇଚି ଏକ ଜାତିର ଅର୍ଦ୍ଧ-ସ୍ୱଚ୍ଛ ମାର୍ବଲ୍ ପଥରରେ । ଯା' ଭିତର ଦେଇ ବାହାରୁ ସୂର୍ଯ୍ୟାଲୋକ ଭିତରକୁ ପଶୁଚି ଆଉ ବିଚିତ୍ର ଆଭା ସୃଷ୍ଟିକରୁଚି । କାନ୍ଥଗୁଡାକୁ ଚାହାନ୍ତୁ– ପ୍ରତ୍ୟେକଟି ଅର୍ଦ୍ଧ ସ୍ୱଚ୍ଛ ମାର୍ବଲ୍ ସ୍ଲାବ୍‌ର ରଙ୍ଗ ଭିନ୍ନ ଭିନ୍ନ ହୋଇଥିବାରୁ କାନ୍ଥଗୁଡିକ ପାଲଟିଚି ଆଧୁନିକ ପେଣ୍ଟିଂର ବିଶାଳ ଏକ କ୍ୟାନ୍‌ଭାସ୍ ପରି ।''

ଆମେ ସେଇ କାନ୍ଥରେ ଚିତ୍ରିତ ରୂପସବୁକୁ ଅଭିଭୂତ ହୋଇ କିଛି ସମୟ ଚାହିଁ ରହିଲୁ ।

''ଏ ହେଲା ୟେଲ୍‌ର ସର୍ବାଧୁନିକ ଲାଇବ୍ରେରୀ, କିନ୍ତୁ ଏଠାର ଅନ୍ୟ ଏକ ବୈଶିଷ୍ଟ୍ୟ ଆପଣମାନେ ଏ ପର୍ଯ୍ୟନ୍ତ ଦେଖିନାହାନ୍ତି ।'' – ଗାଇଡ୍ ତା'ପରେ ଆମକୁ ଦେଖେଇଲେ ଏକ ମ୍ୟାଜିକ୍ । ନିଜ ପକେଟ୍‌ରୁ ଗୋଟିଏ ସିଗାରେଟ୍ ଲାଇଟର୍ ବାହାରକରି ସେ ଆମକୁ କହିଲେ, ''ଚାହାନ୍ତୁ''– ପରେପରେ ହାତର ଲାଇଟର୍‌ଟାକୁ ଚିପି ଜଳେଇଦେଲେ ଗାଇଡ୍ ।

ତତ୍‌କ୍ଷଣାତ୍ ଗୋଟାଏ ଅଜଗର ସାପ୍ ଶୂନ୍ୟରୁ ବେକ କାଢି ଆମ ଆଖି ଆଗରେ ଉଭାହେଲା ସତେବା ! ତାର ଫୁତ୍‌କାରରେ ଗାଇଡ୍‌ଙ୍କ ହାତର ଜଳନ୍ତା ଲାଇଟର୍ ଲିଭିଗଲା । ପରେ ପରେ ସାପ ମୁହଁ ବୁଲେଇ ଫେରିଗଲା ତା' ଜାଗାକୁ ।

ଏ ଆକସ୍ମିକତା ଆମ ଭିତରୁ କାହାକୁ କାହାକୁ କିଞ୍ଚିତ୍ ଭୟଭୀତ କଲା ନିଶ୍ଚୟ । କିନ୍ତୁ ଯା'ର କାରଣ ଜାଣିଲା ପରେ ଆମେ ସମସ୍ତେ ପ୍ରକୃତରେ ସଂପୂର୍ଣ୍ଣ ବିସ୍ମିତ ହୋଇଗଲୁ ।

ୟେଲ୍‌ର ଏଇ ସର୍ବାଧୁନିକ ପୁସ୍ତକାଗାରରେ ଖଞ୍ଜାଯାଇଥାଏ ଅନେକଗୁଡିଏ ଅଗ୍ନିନିର୍ବାପକ ଯନ୍ତ୍ର । ଲାଇବ୍ରେରୀ ଭିତରେ ଯେକୌଣସି ସ୍ଥାନରେ ସାମନ୍ୟ ନିଆଁ ଜଳିଲେ ଏ ଯନ୍ତ୍ର ତତ୍-କ୍ଷଣାତ୍ ନିଆଁର ଉପସ୍ଥିତିକୁ ବାରିନେଇପାରେ ଓ ପ୍ରତିଷେଧକ ବ୍ୟବସ୍ଥା ସ୍ୱରୂପ ଗୋଟାଏ ସାପ ପରି ଟ୍ୟୁବ୍ ଘଟଣାସ୍ଥଳକୁ ଆପେ ଆପେ ଲମ୍ବି ଆସେ । ସେଥିରୁ ଅଗ୍ନି ନିର୍ବାପକ ଅଙ୍ଗରକାମ୍ଳ ଗ୍ୟାସ୍ ଉପଯୁକ୍ତ ଓ ଉଚିତ୍ ପରିମାଣରେ ବାହାରି ଜଳନ୍ତାନିଆଁକୁ ଆଖି ପିଛୁଳାକେ ଲିଭେଇଦିଏ ।

## ଆର୍ଟ ଗ୍ୟାଲେରି

ୟେଲ୍ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ର ହାଇଷ୍ଟ୍ରିଟ୍ ଓ ଚାପେଲ୍ ଷ୍ଟ୍ରିଟ୍ ଛକରେ ''ବ୍ରିଟିଶ୍ ମ୍ୟୁଜିୟମ୍ ଅଫ୍ ପେଣ୍ଟିଙ୍ଗସ୍'' ନାମକ ଏକ ବିଶାଳ ଆର୍ଟ ଗ୍ୟାଲେରି ଅଛି । ଗାଇଡ୍ ଆମକୁ ବୁଲେଇନେଲେ ସେଇ ଆର୍ଟ ଗ୍ୟାଲେରି ଦେଖେଇବାକୁ । ଏକ ବିଶାଳ ଚାରିମହଲା କୋଠାର ବିଭିନ୍ନ ମହଲାରେ ଷୋଡଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଚାରିଶତାବ୍ଦୀର ବଛା ବଛା ବିଖ୍ୟାତ ଚିତ୍ରକରଙ୍କ ଚିତ୍ରକଳା ପ୍ରଦର୍ଶିତ ହୁଏ । ସବା ତଳମହଲାରେ ଊନବିଂଶ

ଶତାବ୍ଦୀର ପେଣ୍ଟିଂ ପ୍ରଦର୍ଶନୀ ମଣ୍ଡପକୁ ଆମେ ପଶିଲୁ। ଭିତରକୁ ପଶିଲା ପରେ ଆଖି ଝଲସିଉଠିଲା ବିରାଟ ହଲ୍ ଭିତରେ ମେଲିଥିବା ସେଇ ବିପୁଳ ବର୍ଣ୍ଣାଢ୍ୟ କଳାର ବିପଣିକୁ ଚାହିଁ ଦେବାକ୍ଷଣି। ପ୍ରଦର୍ଶନୀଟି ଥିଲା ଊନବିଂଶ ଶତାବ୍ଦୀର ଇମ୍ପ୍ରେସନିଜିମ୍ ଯୁଗର ବଛା ବଛା ଚିତ୍ରକରଙ୍କ ଛବିଗୁଡ଼ିକୁ ନେଇ। ଇମ୍ପ୍ରେସନିଜିମ୍ କଳା ସଂପର୍କରେ ମୋର କିଞ୍ଚିତ୍ ଜ୍ଞାନ ଥିଲା। ବିଶେଷତଃ ସେ ଯୁଗର ପ୍ରଧାନ ଚିତ୍ରକର ଭ୍ୟାନ୍‌ଗଗ୍, ସେଜାନ୍, ଗଗିଁ ପ୍ରଭୃତି ଅନେକଙ୍କର ଜୀବନୀ ସହିତ ସେ ଯୁଗର ଦର୍ଶନ ଓ ସାମାଜିକ ପରିବେଶ ସଂପର୍କରେ ମୁଁ ଅବଗତ ଥିଲି। ତେଣୁ ଏ କଳା ପ୍ରଦର୍ଶନୀଟି ମୋ ପାଇଁ ଥିଲା ଖୁବ୍ ଆକର୍ଷଣୀୟ ଆଉ ଶିକ୍ଷାପ୍ରଦ।

ଏଇ ମଣ୍ଡପ ଭିତରେ ବୁଲିବାରେ ଆମର ବହୁତ ସମୟ କଟିଗଲା। ସେଥିପାଇଁ ଉପର ମହଲାର ଅନ୍ୟାନ୍ୟ ଶତାବ୍ଦୀମାନଙ୍କର ପ୍ରଦର୍ଶନୀ ବୁଲିବାକୁ ସମୟ ଅଭାବ ହେଲା। ତେବେ ଉପର ମହଲାଗୁଡ଼ିକୁ ବୁଲି ଦେଖିଲୁ– ସେଠାରେ ବିଭିନ୍ନ ଶତାବ୍ଦୀର ବହୁ ୟୁରୋପୀୟ ପେଣ୍ଟିଂ ସହିତ ଅନେକ ଭାରତୀୟ (ମୋଗଲ୍, ରାଜସ୍ଥାନୀ, କଙ୍ଗ୍ରା ଇତ୍ୟାଦି) ଶୈଳୀର ପେଣ୍ଟିଂ ପ୍ରଦର୍ଶିତ ହେଉଛି। ଏସବୁ ବୁଲି ଦେଖିବା ଭିତରେ ଆମେ ସଂପୂର୍ଣ୍ଣ କ୍ଳାନ୍ତ ହୋଇପଡ଼ିଥାଉ।

ୟେଲ୍ ଦର୍ଶନ ପର୍ବକୁ ସେଇଠି ଶେଷକଲୁ। ଗାଇଡ୍‌ଙ୍କୁ ବିଶେଷ ଧନ୍ୟବାଦ ଦେଇ ଆମେ ବାପ ଝିଅ ଘରକୁ ଫେରିଲୁ। ମନରେ କିନ୍ତୁ ତଥାପି ଅତୃପ୍ତି ରହିଗଲା। ହାର୍ଭାର୍ଡ, ୟେଲ୍ ପ୍ରଭୃତି ଆମେରିକାନ୍ ବିଶ୍ୱବିଦ୍ୟାଳୟ ପରିପ୍ରେକ୍ଷୀରେ ମୋ ନିଜ ଜନ୍ମଭୂମି ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କର ଛବି ତୁଳନାତ୍ମକ ଭାବେ ମନକୁ ଆସୁଥାଏ ଓ ମନରେ ଅବସାଦ ଜନ୍ମୁଥାଏ। ସେ ଅବସାଦକୁ ଦମନ କରିବା ସହଜ ନଥିଲା ମୋ ପାଇଁ।

## ବହୁ ଆକାଂକ୍ଷିତ ସ୍ୱପ୍ନ ସଫଳ ହେଲା– ମାର୍କ ଟ୍ୱେନ୍ ଓ ହାରିଏଟ୍ ବିଚର୍ ଷ୍ଟୋଙ୍କ ବାସଗୃହ ସଂଗ୍ରହାଳୟ ଭ୍ରମଣ

ଜାମାତା ମହେଶଙ୍କ ଘରଠାରୁ ଅଳ୍ପ ଦୂରରେ ଅଛି ଆମେରିକାର ଦୁଇ ବିଖ୍ୟାତ ସାହିତ୍ୟିକଙ୍କ ଜନ୍ମସ୍ଥାନ। ଏ ଦୁଇ ସଂଗ୍ରହାଳୟ ଆମେରିକା ଲୋକଙ୍କ ଦୁଇ ସାରସ୍ୱତ ପୀଠ। ସେ ଦୁହେଁ ହେଲେ– ଆମେରିକାର ଫକୀରମୋହନ ଅର୍ଥାତ୍ ଆଧୁନିକ ଆମେରିକାନ୍ ଗଳ୍ପ-ସାହିତ୍ୟର ଆଦିପୁରୁଷ ଏବଂ ୱିଟ୍ ଓ ହ୍ୟୁମରର ଖଣି ବୋଲାଉଥିବା ମାର୍କ ଟ୍ୱେନ୍ ଓ 'ଅଙ୍କଲ୍ ଟମ୍‌ସ୍ କାବିନ୍'ର ଲେଖିକା ବିଚର୍ ଷ୍ଟୋ। ଏ ଦୁଇ ସାରସ୍ୱତ ବ୍ୟକ୍ତିଦ୍ୱୟଙ୍କ ବାସଗୃହ ବର୍ତ୍ତମାନ ଦୁଇଟି ଜାତୀୟ ସଂଗ୍ରହାଳୟରେ ପରିଣତ ହୋଇଛି। ଏ ସଂଗ୍ରହାଳୟ ଦୁଇଟି ପରସ୍ପରର ଅତି ପାଖାପାଖି।

ତା ୧୨ ଅଗଷ୍ଟ ୧୯୯୩। ଆଜି ମୋର ଓ ନିରୁପମା ଉଭୟଙ୍କ ଜୀବନର ବହୁ ଆକାଂକ୍ଷିତ ସ୍ୱପ୍ନ ସାର୍ଥକ ହେଲା। ସକାଳୁ ସୁଲୁମା ମତେ, ନିରୁପମା ଓ ଆମର ଦୁଇ ନାତି

ଅମୃତ ଓ ମନୀଶଙ୍କୁ ପ୍ରସ୍ତୁତ ହେବାପାଇଁ ଆଗୁଆ ଖବର ଦେଲା । କହିଲା, "ନନା ମାର୍କଟ୍ୱେନ୍‌ଙ୍କ ଘର ଦେଖିବ ପରା– ଶୀଘ୍ର ବାହରିପଡ । ତା'ରି ପାଖ ଘର ହାରିଏଟ ବିଚର୍ ଷ୍ଟୋଙ୍କର– ଏକା ଥରେ ଦୁଇ ସାହିତ୍ୟିକଙ୍କ ଘର ଦେଖିଆସିବ ।" ଆମେ ଅବିଳମ୍ବେ ବାହରିପଡିଲୁ । ସୁଲୁମା କାର୍ ଡ୍ରାଇଭ୍ କଲା । ନେଇଗଲା ହାର୍ଟଫୋର୍ଡ ସହର ନିକଟସ୍ଥ ଏକ ଛୋଟ ସବ୍‌ର୍ବ ଅଂଚଳକୁ । ସେଇଠି ଅବସ୍ଥିତ ଆମର ବହୁ ଆକାଂକ୍ଷିତ ଦୁଇ ବିଶ୍ୱବିଖ୍ୟାତ ଆମେରିକାନ୍ ସାହିତ୍ୟିକଙ୍କ ବାସଗୃହ । ଏ ବାସଗୃହ ଦୁଇଟି ବର୍ତ୍ତମାନ ଆମେରିକାର ପ୍ରଧାନ ସାରସ୍ୱତ ତୀର୍ଥ । ହଜାର ହଜାର ଦର୍ଶକ ପ୍ରତିବର୍ଷ ଏ ସାରସ୍ୱତ ତୀର୍ଥ ଦର୍ଶନ ପାଇଁ ସାରା ବିଶ୍ୱରୁ ଏଠିକି ଆସନ୍ତି । ଆମେ ପହଞ୍ଚିଲା ବେଳକୁ ଏକ ବଡ ଦଳ ଦର୍ଶକ ଟିକେଟ୍ କାଉଣ୍ଟର୍ ସାମ୍‌ନାରେ ଧାଡି ବାନ୍ଧି ଠିଆହେଇଥାନ୍ତି । ଆମେ ସେମାନଙ୍କ ସହିତ ସାମିଲ ହେଲୁ । ଟିକେଟ୍ କାଟି ସାରିଲା ପରେ ଦର୍ଶକମାନଙ୍କୁ ଦଳଭୁକ୍ତ କରିଦିଆଗଲା । ଜଣେ ଜଣେ ଗାଇଡ୍ ଗୋଟିଏ ଗୋଟିଏ ଦଳର ନେତୃତ୍ୱ ନେଲେ । ଆମକୁ ପ୍ରଥମେ ମାର୍କଟ୍ୱେନ୍‌ଙ୍କ ବାସଗୃହ ଭିତର ବୁଲେଇ ଦେଖେଇବାକୁ ନେଇଗଲେ ।

ମାର୍କଟ୍ୱେନ୍ (୧୮୩୫-୧୯୧୦)ଙ୍କ ମୂଳ ନାମ ହେଲା ସାମୁଏଲ କ୍ଲିମେନ୍ସ । ସେ ସପରିବାର ଏ ଘରେ ରହୁଥିଲେ ୧୮୬୦ରୁ ୧୮୯୦ ପର୍ଯ୍ୟନ୍ତ । ସ୍ଥାନଟିକୁ ସେତେବେଳେ କୁହାଯାଉଥିଲା, "ନୁକ୍ ଫାର୍ମ" । ସେତେବେଳେ ଏ ଫାର୍ମ ୧୪୦ ଏକରର ଏକ ଚାଷ କ୍ଷେତ ଥିଲା । ଏହାକୁ ୧୮୫୩ରେ ଜନ୍ ହୁକର୍ ଓ ଫ୍ରାନ୍ସିସ୍ ଜିଲେଟ୍ ନାମକ ଶଳାଭିଣୋଇ ଦ୍ୱୟ ସାଙ୍ଗହୋଇ କିଣିଥିଲେ । ଫାର୍ମର ଅବସ୍ଥିତି ମନୋରମ ଓ ବିଶାଳ କନେକ୍ଟିକଟ୍ ନଦୀର ତଟରେ ଥିବାରୁ ଏହା ଲେଖକ ମାର୍କଟ୍ୱେନ୍‌ଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ୧୮୬୦ରେ ଟ୍ୱେନ୍ ଫାର୍ମର ମାଲିକମାନଙ୍କ ସାଙ୍ଗରେ ମିଶି ଏଇ ଫାର୍ମ ଘରେ ରହିଲେ । ଏ ଘରଟି ଥିଲା ୧୯ ବଖରା ବିଶିଷ୍ଟ ଏକ ବିଶାଳ ତ୍ରିତଳ ଗୃହ । ଘରଟି ଆମୂଳଚୂଳ କାଠରେ ତିଆରି । ଟ୍ୱେନ୍ ସପରିବାର ଏ ଘରେ ଅନେକ ବର୍ଷ ବାସକରିଥିଲେ । ପରେ ଅବସ୍ଥା ଚକ୍ରରେ ଘରଟିକୁ ବିକ୍ରୀ କରିଦେବାକୁ ବାଧ୍ୟ ହୋଇଥିଲେ । ଏହାକୁ ଅନ୍ୟ କେହି ଜଣେ ବ୍ୟକ୍ତି କିଣି ନେଇଥିଲେ । ପରେ ଘରଟି ପୁଣି ବିକ୍ରୀ ହୋଇ ଅନ୍ୟ ଜଣେ ବ୍ୟକ୍ତିଙ୍କ ହାତକୁ ଗଲା । ଏହିପରି ବାରମ୍ବାର କିଣାବିକା ପରେ ଘରଟିର ସ୍ମୃତି ଜନମାନସରୁ ପ୍ରାୟ ଲିଭି-ଯାଇଥାଏ । ସେ ଏକ କରୁଣ କାହାଣୀ । ସେ ବିଷୟ ପରେ ଗାଇଡ୍ ଆମକୁ ସବିଶେଷ ସୂଚନା ଦେବାକୁ କହିଲେ । ପହିଲେ ମ୍ୟୁଜିୟମ୍ ବୁଲା ଆରମ୍ଭ ହେଲା ।

ତଳୁ ଉପର ଯାଏ ୧୯ଟି କୋଠରି ବୁଲି ବୁଲି ଦେଖିଲୁ । ପ୍ରତ୍ୟେକ କୋଠରୀରେ ଟ୍ୱେନ୍ ପରିବାର ଦ୍ୱାରା ୧୮୬୦ରୁ ୧୮୯୦ ଭିତରେ ବ୍ୟବହୃତ ସମସ୍ତ ଆସବାବ୍ (ଫର୍ଣ୍ଣିଚର୍), ଲୁଗାପଟା, ବହିପତ୍ର ପୁସ୍ତକାଗାର, ଟାଇପରାଇଟର୍, ଟେଲିଫୋନ୍, ରୋଷେଇ-ଘରେ ବ୍ୟବହୃତ ଚୁଲି ଚୁଲା ବାସନକୁସନ, ଖାଦ୍ୟପଦାର୍ଥ, ବଗିଚା କାମ ପାଇଁ ଦରକାରି

କୋଡି କୋଦାଳ, ହାତକାମ (ହାଣ୍ଡିକ୍ରାଫ୍ଟ) ସରଂଜାମ, ଇତ୍ୟାଦି ନାନା ରକମ ଛୋଟ ବଡ ଯନ୍ତ୍ରପାତି ଠାରୁ ଆରମ୍ଭକରି ଚାକରବାକରଙ୍କ ଚଳଣି ଜାଗା ଓ ସେମାନଙ୍କ ବ୍ୟବହୃତ ନାନା ଲୁଗାପଟା ଇତ୍ୟାଦି କ୍ଷୁଦ୍ରାତିକ୍ଷୁଦ୍ର ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ ଯଥାସ୍ଥାନରେ ଯଥା ବ୍ୟବହାର୍ଯ୍ୟ ଅବସ୍ଥାରେ ହିଁ ପ୍ରଦର୍ଶିତ ହେଉଥିବା ଦେଖିଲୁ । ସେଗୁଡିକ ଏପରି ଜୀବନ୍ତ ଭାବେ 'ପ୍ରଦର୍ଶିତ' କରାଯାଇଥିବାର ଦେଖି ମନେହେଲା– ସତେକି ମାର୍କ ଟ୍ୱେନ୍ ବିଞ୍ଚିଚନ୍ତି ଓ ଏ ଘରେ ତଥାପି ଚଳପ୍ରଚଳ ହେଉଚନ୍ତି– କେବଳ ଆମେ ପହଞ୍ଚିଲା ବେଳକୁ ସେ ଓ ତାଙ୍କ ପରିବାର ସାମୟିକ ଅନୁପସ୍ଥିତ ରହିଚନ୍ତି !

ତଳ ମହଲାରୁ ତିନିମହଲା ଉପରର ସମସ୍ତ ବଖରାରେ ପ୍ରଦର୍ଶିତ ସେ ସବୁ ସାମଗ୍ରୀ ପ୍ରାୟ ୪୫ ମିନିଟ୍ ଧରି ବୁଲିବୁଲି ଆଖି ପୂରେଇ ଦେଖୁଥିବା ଭିତରେ ଗାଇଡ ଆମକୁ ମାର୍କ ଟ୍ୱେନ୍‌ଙ୍କ ସଂପର୍କରେ ବହୁ ଅନ୍ତରଙ୍ଗ ତଥ୍ୟ ପରିବେଷଣ କରିଚାଲିଥାନ୍ତି । ସେ କହୁଥାନ୍ତି, ''ଆପଣମାନେ ଜାଣନ୍ତି ସେ ଜଣେ ମହା ହ୍ୟୁମ୍‌ରସ୍ ଲୋକ ଥିଲେ । ପୁଣି ହ୍ୟୁମର୍ ସହିତ ସେ ମଧ୍ୟ ଜଣେ ଶକ୍ତିଶାଳୀ ବକ୍ତା ଭାବେ ବିଶ୍ୱବ୍ୟାପୀ ସୁଖ୍ୟାତି ଅର୍ଜିଥିଲେ । ବହିବିକ୍ରୀରୁ ତାଙ୍କର ଉପାର୍ଜନ ଯେତେ ହେଉଥିଲା ତା'ଠାରୁ ଢେର୍ ବେଶୀ ଅର୍ଥ ଉପାର୍ଜନ ହେଉଥିଲା ବକ୍ତୃତାରୁ । ତାଙ୍କ ବକ୍ତବ୍ୟ ଶୁଣିବାକୁ ହଜାର ହଜାର ଶ୍ରୋତା ଟିକେଟ୍ କିଣି ସଭାଗୃହରେ ଉପସ୍ଥିତ ହେଉଥିଲେ । ତାଙ୍କର ସର୍ବାଧିକ ଆଦର ୟୁରୋପରେ– ତେଣୁ ବାରମ୍ବାର ସେ ନିମନ୍ତ୍ରଣ ପାଉଥିଲେ ୟୁରୋପରୁ । ତେବେ ସ୍ୱଭାବରେ ହାସ୍ୟରସିକ ଥିଲେ ବି ସେ ମଧ୍ୟ ଖୁବ୍ ବଦ୍‌ରାଗୀ ପ୍ରକୃତିର ଥିଲେ । ତାଙ୍କୁ ଅନିଦ୍ରା ରୋଗ ଘାରୁଥାଏ ଦିନ ପରେ ଦିନ । ଚିଡିଚିଡା ହେଇ ଥରେ ଥରେ ସେ ନିଜର ଲୁଗାପଟା ଫିଙ୍ଗିଦିଅନ୍ତି ଝରକା ବାହାରକୁ । ଏ ସବୁ ଭିତରେ ତାଙ୍କର ପରମ ପତିବ୍ରତା ସହନଶୀଳା ପତ୍ନୀ ତାଙ୍କୁ ବରାବର ଶାନ୍ତ କରାଇ-ଥାନ୍ତି ଓ ତାଙ୍କ ଲେଖକୀୟ ଜୀବନକୁ ସଜାଗ ରଖୁଥାନ୍ତି ।

''ମାର୍କ ଟ୍ୱେନ୍ ଜଣେ ଦୁଃଖୀ ଲୋକ । ତାଙ୍କର ଏକାଧିକ ସନ୍ତାନ ରୋଗରେ ପଡି ମରିଚନ୍ତି ଏଇ ଘରେ । ସେ ଦୁଃଖରେ ଟ୍ୱେନ୍ ଭାଙ୍ଗିପଡୁଥିଲେ ବାରମ୍ବାର । ''ତାଙ୍କ ସମୟରେ ଦାସତ୍ୱପ୍ରଥା ବଳବତ୍ତର ଥିଲା । କିନ୍ତୁ ମାର୍କଟ୍ୱେନ୍ ନିଦ୍ରାବିହୀନତା ଯୋଗୁ ରାତି ଅଧରେ ବିଲିୟାର୍ଡ ଖେଳିବାକୁ ପାର୍ଟନର୍ ବାଛିଥିଲେ ତାଙ୍କର ବଟ୍‌ଲର୍ ଜଣେ କ୍ରୀତଦାସ ସହିତ ।'' (ସେଇ ବିଲିୟାର୍ଡ ଟେବ୍‌ଲକୁ ତିନିମହଲା ଉପରେ ଆମେ ଦେଖିବାକୁ ପାଇଲୁ ଅବିକଳ ସେଇ ଅବସ୍ଥାରେ– ସତେକି ଖେଳ ତଥାପି ଚାଲିଚି) ।

ଟ୍ୱେନ୍‌ଙ୍କ ଭୋଜନଗୃହ, ଡାଇନିଂ ଟେବ୍‌ଲ ଚେୟାର୍ ଇତ୍ୟାଦି ସହିତ କଟ୍‌ଲେରି ସରଞ୍ଜାମ ଗୁଡିକ ଖାଦ୍ୟ ସର୍ଭିସ୍ ପୂର୍ବର ପ୍ରସ୍ତୁତି ଅବସ୍ଥାରେ ସଜଡା ହୋଇ ରଖାଯାଇଥିବା ଦେଖିଲୁ । କାନ୍ଥରେ ଟଙ୍ଗାଯାଇଥାଏ ଅନେକ ଗୁଡିଏ ଛବି– ସେଥିରୁ ଗୋଟିଏ ହେଲା ଏକ ବିଲେଇର ଛବି । ଗାଇଡ୍ କହିଲେ, ''ମାର୍କଟ୍ୱେନ୍ ନିଜ ପରିବାର ସହିତ ଖାଇ-

ବସିଲାବେଳେ ନାତିନାତୁଣୀଙ୍କ ସାଙ୍ଗେ ହସ-କୌତୁକ ଜମାନ୍ତି । ବହୁତ ମଜା ମଜା କଥା ପଡେ । ପ୍ରତିଟି ମଜା କଥା ଆରମ୍ଭ ହୁଏ ଏଇ ବିଲେଇର ଛବିରୁ । ଗଳ୍ପ କଥନ ସମୟରେ ପରିବାର ସହିତ ଶ୍ରୋତା ଭାବେ ଯୋଗଦିଅନ୍ତି ତାଙ୍କ ଘରର କ୍ରୀତଦାସଦାସୀମାନେ ।''

ଟ୍ୱେନଙ୍କ ପାରିବାରିକତାର ଅନ୍ୟତମ ପ୍ରମାଣ ହେଲା– ଏ ଘରେ ତାଙ୍କ ଶାଶୁଙ୍କ ସ୍ଥାନ । ଶାଶୁ ଏକ ବଡ କୋଠରୀରେ ରହୁଥିଲେ । ସେ କୋଠରୀ ବୁଲି ଦେଖିଲୁ । ସେଠି ସେ ସମୟରେ ବ୍ୟବହୃତ ଯାବତୀୟ ଆସବାବ ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ସାଜ ସରଞ୍ଜାମ ସେଇଭଳି ଅବସ୍ଥାରେ ପ୍ରଦର୍ଶିତ ହେବାର ଦେଖିଲୁ ।

ମାର୍କଟ୍ୱେନଙ୍କ ଏଇ ଘରଟିର ଦୁର୍ଦ୍ଦଶା ବିଷୟରେ ଗାଇଡ୍ ଆମକୁ ସୂଚନା ଦେଲେ, ''ଏଇ ଘରଟିକୁ ବିକିଦେବାକୁ ସେ ବାଧ୍ୟହୋଇଥିଲେ ଜୀବନର ଶେଷ ସମୟ ପୂର୍ବରୁ । ଘରଟିକୁ ଗୋଟିଏ ଇନସ୍ୟୁରାନ୍ସ କମ୍ପାନୀ କିଣିନେଇଥିଲା । ପରେ ପରେ ଅନେକ ବର୍ଷ ପର୍ଯ୍ୟନ୍ତ ଏ ଘର ବିଭିନ୍ନ ଲୋକଙ୍କ ହାତକୁ ଚାଲିଯାଇଥିଲା । କିନ୍ତୁ ଆଜି ସେ ଗୃହର ପୁନରୁଦ୍ଧାର କରାଯାଇପାରିଚି । ଏ ଗୃହରେ ଯାହା କିଛି ଆସବାବ, ବହିପତ୍ର, ଚିତ୍ରପଟ, ଆର୍ଟ ଓ ମୂଲ୍ୟବାନ୍ ସାମଗ୍ରୀରେ ଭରପୂର୍ ହୋଇଥିବା ଆମେ ଦେଖୁଥିଲୁ ସେ ସବୁକୁ ପୁଣି ବିଭିନ୍ନ ସ୍ଥାନରୁ ଅକ୍ଷତ ଅବସ୍ଥାରେ ଗୋଟିଗୋଟି କରି ପୁନରୁଦ୍ଧାର କରାଯାଇ ପାରିଚି ବୋଲି ଗାଇଡ୍‌ଙ୍କଠାରୁ ଶୁଣି ଆମେ ଆଶ୍ଚର୍ଯ୍ୟ ହୋଇଗଲୁ । ଏ ଅସଂଭବ କିପରି ସଂଭବ ହେଲା ? ପଚାଶ ବର୍ଷରୁ ବେଶୀ ସମୟ ଧରି ଏଣେତେଣେ ବିକ୍ରିବଟା ହେଇସାରିଥିବା ଏସବୁ ଜିନିଷ ପୁଣି ଏଇ ଘରକୁ କେମିତି ଫେରିଲା ?

ଗାଇଡ ତା' ସୂତ୍ର ବତାଇଲେ, ''ଆମେ ସ୍ଥାନୀୟଲୋକେ ଦିନେ ସଂକଳ୍ପବଦ୍ଧ ହେଲୁ ମାର୍କଟ୍ୱେନ୍‌ଙ୍କ ସ୍ମୃତି ଉଦ୍ଧାର ପାଇଁ ଏଇ ମୂଳ ଫାର୍ମରେ ପୁଣି ଥରେ ସେଇ ପୁରୁଣା ଘରେ ଗୋଟିଏ ସ୍ମାରକ ମ୍ୟୁଜିୟମ୍ ପ୍ରତିଷ୍ଠା କରିବାକୁ । ସେଥିପାଇଁ ଗୋଟିଏ ଟ୍ରଷ୍ଟ ଗଢାଗଲା । ଟ୍ରଷ୍ଟ ନିଜ ଧନରେ ଏ ମ୍ୟୁଜିୟମ୍ ପ୍ରତିଷ୍ଠା କରିଚନ୍ତି– ସେଥିପାଇଁ ସରକାରି ସାହାଯ୍ୟ ମୋଟେ ନିଆଯାଇନାହିଁ । ଆମେରିକାର ଏହା ଗୋଟିଏ ବଡ ତାତ୍ପର୍ଯ୍ୟ– ଏ ଦେଶର ଲୋକ ଏତେ ଦୂର ଇତିହାସ ସଚେତନ ଯେ· କୋଉଠୁ ଖଣ୍ଡେ ସଂଗ୍ରହଯୋଗ୍ୟ କାଗଜ ଟୁକୁରା ପାଇଗଲେ ସେମାନେ ତାକୁ ଯତ୍ନର ସହିତ ସାଇତି ରଖନ୍ତି– ସେ କାଗଜ ଟୁକୁରାଟି ଯଥା ସମୟରେ କଥା କହେ, ସଂଗ୍ରହାଳୟକୁ ଫେରିଆସେ ଓ ଇତିହାସକୁ ପୁନର୍ଜ୍ଜୀବୀତ କରେ । ଏ ସବୁ ଉଦ୍ୟମ ପଛରେ ଏକ ସଚେତନ ଜନସମାଜ ସର୍ବଦା ଜାଗ୍ରତ ରହିଚି ଏ ଦେଶରେ । ଜାତୀୟ ସ୍ମୃତିକୁ ବଞ୍ଚେଇରଖିବା ଗୋଟିଏ ସଭ୍ୟ ଜାତିର କର୍ତ୍ତବ୍ୟ– 'ଟ୍ରଷ୍ଟ'ର ଅର୍ଥ ଏଇଆ । ଏ ଦେଶର ଦୁଇଜଣ ବିଶିଷ୍ଟ ସାହିତ୍ୟିକ– ମାର୍କ ଟ୍ୱେନ୍ ଓ ହାରିଏଟ୍ ବିଚର୍ ଷ୍ଟୋଙ୍କ ସ୍ମୃତି ରକ୍ଷା ପାଇଁ ଏକ ପ୍ରଚଣ୍ଡ ଉଦ୍ୟମ ଆରମ୍ଭକଲା ଏ ଟ୍ରଷ୍ଟ । ସାରା ବିଶ୍ୱରେ ଗଣମାଧ୍ୟମ ଜରିଆରେ ନିବେଦନ କରାଗଲା– ଏ ଦୁଇଜଣ ବିଶିଷ୍ଟ ଆମେରିକାନ୍

ସାହିତ୍ୟିକଙ୍କ ବ୍ୟବହୃତ ଯାହା କିଛି ଦ୍ରବ୍ୟ– ଛୋଟ କାଗଜ ଟୁକୁରା ଠାରୁ ବଡ ଫର୍ଣ୍ଣିଚର ବା ଯନ୍ତ୍ରପାତି ପର୍ଯ୍ୟନ୍ତ ଯାହା ପାଖରେ ଅଛି ଆମ ମ୍ୟୁଜିୟମ୍‌କୁ ଦୟାକରି ଫେରାଇଦିଅନ୍ତୁ । ଦରକାର ପଡିଲେ ସେଥିପାଇଁ କିଞ୍ଚିତ୍ ମୂଲ୍ୟ ମଧ୍ୟ ଦିଆଯାଇପାରିବ । ଆମର ସେ ନିବେଦନ ବୃଥା ଯାଇ ନାହିଁ । ଏଇ ତିନି ମହଲା ଘରର ତଳୁ ଉପର ଯାକେ ୧୯ଟି କୋଠରୀରେ ଯେତେ ସବୁ ଏକଜିବିଟ୍ ଦେଖୁଚନ୍ତି ସେସବୁ ସେଇ ନିବେଦନର ପରିଣତି ।''

ଏଇ ମ୍ୟୁଜିୟମ୍ ବୁଲିବା ସମୟରେ ଗାଇଡ୍ ଆମକୁ ମାର୍କଟ୍ୱେନ୍‌ଙ୍କ ବ୍ୟକ୍ତିଗତ ଜୀବନ ସଂପର୍କରେ ଅନେକ ଖବର ଶୁଣେଇଲେ । କହିଲେ, ''ଟ୍ୱେନ୍‌ଙ୍କ ଆର୍ଥିକ ଦୁରବସ୍ଥାର ପରିଣତି ହେଲା ସେ ଶେଷରେ ଦେବାଳିଆ ହୋଇଗଲେ । ତାର କାରଣ– ଗୋଟିଏ ବହୁମୂଲ୍ୟ ମୁଦ୍ରଣ ଯନ୍ତ୍ର (ପ୍ରିଣ୍ଟିଂପ୍ରେସ୍) ପ୍ରତିଷ୍ଠା ପାଇଁ ସେ ନିଜର ସମସ୍ତ ସଂପତ୍ତିକୁ ବନ୍ଧା-ପକେଇ କରଜ କଲେ । କିନ୍ତୁ ପରିଶେଷରେ ଏଇ ମୁଦ୍ରଣଯନ୍ତ୍ର ତାଙ୍କୁ ଠକିଦେଲା । ଯାବତୀୟ ଚେଷ୍ଟା ସତ୍ତ୍ୱେ ତାହା ଅଚଳ ହୋଇ ପଡିରହିଲା । ଟ୍ୱେନ୍‌ଙ୍କ ସ୍ୱପ୍ନ ଧୂଳିସାତ୍ ହେଇଗଲା । ଶେଷରେ ଘରଦ୍ୱାର ବିକ୍ରୀହେଇଗଲା । ନିଃସ୍ୱ ଅବସ୍ଥାରେ ସେ ଅନ୍ୟ ଏକ ସହରକୁ ଚାଲିଗଲେ ।'' (ଏ କଥା ଶୁଣିଲାବେଳେ ମୋର ମନେପଡିଲା ଆମ ଫକୀରମୋହନଙ୍କ ପ୍ରିଣ୍ଟିଂ ପ୍ରେସ୍ ନିଶା ଓ ତାଙ୍କ ହଟହଟା । ଫକୀରମୋହନ ମଧ୍ୟ ମାର୍କଟ୍ୱେନ୍‌ଙ୍କ ସମସାମୟିକ ଓ ଉଭୟ ଥିଲେ ହାସ୍ୟପ୍ରିୟ । ହାୟ ! କି ଅପୂର୍ବ ସାମଞ୍ଜସ୍ୟ !)

ମ୍ୟୁଜିୟମ୍ ବୁଲିବା ଭିତରେ ଲକ୍ଷ୍ୟକରୁଥିଲି ସେ ଘରେ ଅନେକ ସ୍ଥାନରେ କେତେ ପ୍ରକାର ଇଲେକଟ୍ରିକ୍ ଯନ୍ତ୍ରପାତି (ଗ୍ୟାଜେଟ୍ସ) ବିକ୍ଷିପ୍ତ ଅବସ୍ଥାରେ ରଖାଯାଇଚି । ଶୁଣିଲି ମାର୍କଟ୍ୱେନ୍ ଥିଲେ ଜଣେ ଉଦ୍ଭାବକ । ସେ ବୈଦ୍ୟୁତିକ ଯନ୍ତ୍ରପାତି ସାଙ୍ଗରେ ନିବିଡ ଭାବେ ଜଡିତ ହୋଇପଡୁଥିଲେ । ଗୋଟିଏ ସ୍ୱତନ୍ତ୍ର ବଖରାରେ ଦେଖିଲୁ କାନ୍ଥରୁ ଝୁଲୁଥାଏ ଗୋଟିଏ ସେକାଳର ପୁରୁଣା ଟେଲିଫୋନ୍ ରିସିଭର୍ । ଏଇଟି କଂପାନୀ ଟେଲିଫୋନ୍ ହେଲେ ବି ଏହା ସହିତ ଟ୍ୱେନ୍‌ଙ୍କ ନିଜସ୍ୱ କୌଶଳ ପ୍ରୟୋଗର ପ୍ରମାଣ ମଧ୍ୟ ସେ କ୍ୟାବିନ୍ ଭିତରେ ଦେଖିବାକୁ ପାଇଲୁ । ଗୁଡିଏ ଏକ୍‌ଷ୍ଟେନ୍‌ସନ୍ ଲାଇନ୍ ଏ ରୁମ୍‌ରୁ ସେ ରୁମ୍‌କୁ ନିଜେ ଗୃହକର୍ତ୍ତା ନିଜ ବୁଦ୍ଧି ଓ କୌଶଳ ପ୍ରୟୋଗଦ୍ୱାରା କରାଇବାର ପ୍ରମାଣ ପାଇଲୁ ।

ଟ୍ୱେନ୍ କଳ ତିଆରି ଜିନିଷ ଅପେକ୍ଷା ହସ୍ତଶିଳ୍ପକୁ ଅଧିକ ପସନ୍ଦ କରୁଥିଲେ । ସାରା ଗୃହରେ ଅନେକଗୁଡିଏ ବାଦ୍ୟଯନ୍ତ୍ର ରହିଥିବା ଦେଖିଲୁ ।

ପୁଣି ଦେଖିଲୁ– ଗୋଟିଏ ଡ୍ରୟିଂରୁମ୍ (ଆମେରିକାରେ ଲିଭିଂରୁମ୍) ଚଉକି ଉପରେ ଘୋଡିହେଲା ଚଦର ଖଣ୍ଡେ ବିପର୍ଯ୍ୟସ୍ତ ଅବସ୍ଥାରେ ପଡିରହିଚି । ଦେଖିଲେ ଲାଗିଲା ସତେକି ଚଦରଟାକୁ ଦେହ ଉପରୁ କାଢିପକେଇ ମାର୍କଟ୍ୱେନ୍ ସେଇ ମାତ୍ର ବାହାରିଯାଇଚନ୍ତି ରୁମ୍ ବାହାରକୁ । ଗୋଟିଏ ଜାଗାରେ ଦେଖିଲୁ ଓଭର୍ କୋଟ୍‌ଟିଏ ଝୁଲୁଚି ହାଙ୍ଗରରୁ– ତା' ପାଖରେ ଟ୍ୱେନ୍‌ଙ୍କ ଆରାମ କରିବା କାଉଚ୍ ।

ଏଇଠି ଅଟକିଗଲି ଟିକିଏ ବେଳ । ମନେପଡିଲା ମୋର ଗୋଟିଏ ଗପ– ''ଚଳନ୍ତି ଠାକୁର'' । ଏ ଗପ ଲେଖାହୋଇଥିଲା କେତେବର୍ଷ ପୂର୍ବେ । ଗପଟି ସଂକଳିତ ହୋଇଥିଲା ୧୯୯୧ରେ, ପ୍ରକାଶିତ ହୋଇଥିଲା ସେଇ ଶୀର୍ଷକରେ ଏକ ଗଳ୍ପ ପୁସ୍ତକରେ । ସେ ଗପର ନାୟକ ହେଲା– ପାଞ୍ଚବର୍ଷର ବାଳକ ମିସ୍ଟୁନ୍ । ଏ ବାଳକର ଜନ୍ମ ଆମେରିକାର କନେକ୍ଟିକଟ୍‌ରେ । ସେ ତାର ପିତାମାତାଙ୍କ ସହିତ ଥରେ ଏଇ ମାର୍କଟ୍ୱେନ୍ ମ୍ୟୁଜିୟମ୍ ବୁଲିବାକୁ ଆସିଥିଲା । ସେତେବେଳେ ତାକୁ ବୟସ ହୋଇଥିଲା ଦୁଇ ବା ତିନ । ବାପାମାଙ୍କ ହାତ ଧରି ଚାଲୁଚାଲୁ ଜନ-ଗହଳି ଭିତରେ ପିଲାଟି ଅକସ୍ମାତ୍ ହଜିଯାଇଥିଲା । ବାପମା ଓ ଅନ୍ୟମାନେ ପିଲାକୁ ତିନି ମହଲାର ମ୍ୟୁଜିୟମ୍ ଭିତରେ ଖୋଜି ଖୋଜି ନୟାନ୍ତ ହେଲେ । ପିଲାକୁ ନପାଇ ମ୍ୟୁଜିୟମ୍ କର୍ତ୍ତୃପକ୍ଷ ଶେଷରେ ପୁଲିସ୍‌ର ସାହାଯ୍ୟ ଲୋଡିଲେ । ପୁଲିସ୍ ବି ଚାରିଆଡ ଖୋଜି ଖୋଜି ବ୍ୟର୍ଥ ହେଲା । ଏଇ ସମୟରେ ମିସ୍ଟୁନ୍‌ର ମା' (ଭାରତୀୟ) ବିକଳ ହୋଇ ବଡପାଟିରେ ବାହୁନି ବାହୁନି ମାର୍କଟ୍ୱେନ୍‌ଙ୍କ ନାଁ ଧରି ପ୍ରାର୍ଥନାକଲେ ହଜିଲା ପୁଅକୁ ତାଙ୍କର ଖୋଜି ଆଣିବା ଲାଗି । ମା'ର ବାହୁନାରେ ମିସ୍ଟୁନ୍‌ର ନିଦ ଭାଙ୍ଗିଗଲା । ନିଦ ମଳମଳ ଆଖିରେ ଗୋଟାଏ କଳାରଙ୍ଗର ଓଭରକୋଟ୍ ଆଡେଇ ସେ ଉଠିପଡି କାନ୍ଦିଲା । ସମସ୍ତେ ଅବାକ୍ ହୋଇ ଦେଖିଲେ ପିଲାଟି ଏତେବେଳଯାଏଁ ମାର୍କଟ୍ୱେନ୍‌ଙ୍କ ଓଭର୍‌କୋଟ୍ ତଳେ ତାଙ୍କ କାଉଚ୍ ଉପରେ ନିଘୋଡ ନିଦରେ ଶୋଇପଡିଥିଲା, ଅଥଚ ତାକୁ ଏତେ ବେଳ ଧରି ଖୋଜାଖୋଜି କରି ପୁଲିସ୍ ସମେତ ଏତେ ଲୋକ ପାଉନଥିଲେ କେଜାଣି କେମିତି !

ଏଇ ଗପଟି ମନେପଡିଯିବାରୁ ମୁଁ ମୋ ଝିଅ ସୁଲୁକୁ ଚାହିଁ ଆଖିମାରିଲି । କହିଲି, ''ଏ ମିସ୍ଟୁନ୍ କିଏ ଜାଣୁ ତ– ସେ ଅନ୍ୟ କେହି ନୁହଁ– ଆମର ଏଇ ନାତି ଟୋକା ଅମୃତ । ତୁ ମତେ କହିନଥିଲୁ ଥରେ ଅମୃତ କେମିତି ହଜିଯାଇଥିଲା ଏଇ ମାର୍କଟ୍ୱେନ୍ ମ୍ୟୁଜିୟମ୍‌ରେ ? ସେତେବେଳେ ତାକୁ ଦୁଇ କି ଅଢେଇ ବର୍ଷ ହୋଇଥିଲା । ସେଇ ଘଟଣାଟାକୁ ନେଇ ମୁଁ ଲେଖିଚି ସେ ଗପ– ''ଚଳନ୍ତିଠାକୁର'' । ଆଉ ଏଇଲେ ଆଖିରେ ଦେଖୁଚି ମୁଁ ଆମେରିକାର ସେଇ ଅମର କଥାକାରଙ୍କ ବ୍ୟବହୃତ ସେଇ କାଉଚ ସେଇ ଓଭର୍‌କୋଟ୍ ! ଆଃ, କି ସୌଭାଗ୍ୟ !''

(ଏଠାରେ ଉଲ୍ଲେଖନୀୟ– ଆମେ ଏଥରର ଚାରିମାସିଆ ଆମେରିକା ଭ୍ରମଣ ପରେ ୧୯୯୩ ଅକ୍ଟୋବରରେ ଭାରତ ଫେରିଥିଲୁ । ତିନିମାସ ପରେ, ୧୯୯୪ ଜାନୁଆରିରେ କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାର ଫଳ ଘୋଷଣା ହେଲା । ମୋର କ୍ଷୁଦ୍ରଗଳ୍ପ ସଂକଳନ ''ଚଳନ୍ତିଠାକୁର'' ପୁରସ୍କୃତ ହୋଇଥିଲା । ବହିର ପ୍ରକାଶକ : 'ଗ୍ରନ୍ଥମନ୍ଦିର', ଯେ ଏଇ ବହି ବି ପ୍ରକାଶ କରିଉଚନ୍ତି ।)

ମ୍ୟୁଜିୟମ୍ ବୁଲା ଆଗେଇବା ଭିତରେ ଆହୁରି କେତେକ କୌତୂହଳ ଉଦ୍ରେକକାରୀ

ଏକ୍‌ଜିବିଟ୍ ଉପରେ ଆଖି ପଡିଲା । ଠାଏ ଦେଖିଲୁ ଗୋଟିଏ ଚିତ୍ରପଟ ବା ''ୱାଲ୍‌ପ୍ଲାକ୍'' ଉପରେ ଅଙ୍କାଯାଇଚି ଆମ ଭାରତର ତାଜମହଲର ସୁନ୍ଦର ଛବିଟିଏ । ତାକୁ ଘେରି ରହିଥାଏ ଅନେକ ମୋଗଲ ବାଦଶାହଙ୍କ ମୁକୁଟମଣ୍ଡିତ ମସ୍ତକର ବର୍ଣ୍ଣାଢ୍ୟ ପୋଷାକ ମଣ୍ଡିତ ଛବି । ଜାଣିଥିଲି– ମାର୍କଟ୍ୱେନ୍ ଥିଲେ ଜଣେ ପ୍ରଗାଢ ଭାରତପ୍ରେମୀ ବ୍ୟକ୍ତି । ସେ ଭାରତର ପ୍ରଶଂସକ ଥିଲେ । ଭାରତକୁ ସେ କହିଥିଲେ ମାନବ ସଭ୍ୟତାର ପ୍ରସୂତି ଗୃହ !

ଏହା ପରେ ଦେଖିଲୁ ଗୋଟିଏ କାନ୍ଥରୁ ଝୁଲୁଥାଏ ଗୋଟିଏ ସୁନ୍ଦରୀ ଫୁଲବିକାଳୀ ଝିଅର ପେଣ୍ଟିଂ । ଏ ପେଣ୍ଟିଂଟି ଥିଲା ବିଖ୍ୟାତ ଚିତ୍ରକାର ରୁଡଲଫ୍ ଏପ୍ (Rudolf Epp)ଙ୍କର । ମ୍ୟୁଜିୟମ୍‌ର ଅନ୍ୟ ଏକ ଅଂଶରେ ଦେଖିବାକୁ ପାଇଲୁ ମାର୍କଟ୍ୱେନ୍‌ଙ୍କ ଲାଇବ୍ରେରୀ । ବହି ଥାକ ମାନଙ୍କରେ ସଜାହୋଇଥାଏ ଅସଂଖ୍ୟ ପୁସ୍ତକ । ଠାଏ ଦେଖିଲୁ ଭାରତରୁ ଆମଦାନୀ ଗୋଟିଏ ହାତ ତିଆରି ତାଳପତ୍ର ବିଚଣା । ଏଇଟି ଥିଲା ପିଲାଙ୍କ ନର୍ସରିରେ ସଜ୍ଜିତ କେତେକ ଖେଳଣା ଭିତରେ ।

ମାର୍କଟ୍ୱେନ୍‌ଙ୍କ ଜୀବଜନ୍ତୁ ପ୍ରୀତି ବିଷୟରେ ଜାଣିଲୁ– ତାଙ୍କ ଘରେ ପୋଷାହେଇଥିଲେ ଚାରିଟି କୁକୁର ଓ ଏଗାରଟି ବିଲେଇ । ତାଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ ହେଲା– ତାଙ୍କ ଆଖିର ଧୂସର (ଗ୍ରେ) ରଙ୍ଗ ଓ ମୁଣ୍ଡବାଳ ସହିତ ମ୍ୟାଚ୍‌କରି ସେ ଗ୍ରେ ରଙ୍ଗର ସୁଟ୍ ପିନ୍ଧିବାକୁ ଭଲପାଉଥିଲେ ।

ଟ୍ୱେନ୍‌ଙ୍କ ବ୍ୟବହୃତ ଏକ ପୁରୁଣା ଟାଇପ୍‌ରାଇଟର୍ ଠାଏ ପ୍ରଦର୍ଶିତ ହେବା ଦେଖିଲୁ । ଗାଇଡ୍ କହିଲେ, ''ପରିଣତ ବୟସରେ ଲେଖକ ଆର୍ଥରାଇଟିସ୍ ରୋଗରେ ପୀଡିତ ହେଲା ପରେ ଏଇ ଟାଇପ୍‌ରାଇଟର୍‌ଟିରେ ଲେଖିବା ଆରମ୍ଭ କରିଥିଲେ ।''

ମାର୍କଟ୍ୱେନ୍ ମ୍ୟୁଜିୟମ୍‌ରେ ଆହୁରି ଅନେକ ଦର୍ଶନୀୟ ଜିନିଷ ଥିଲା ଯାହା ସେଇ ବିଶ୍ୱ-ବିଖ୍ୟାତ ଲେଖକଙ୍କ ବ୍ୟକ୍ତି ଜୀବନର ଅନେକ ଅକୁହା ଦୁଃଖ ସବୁରି ଅଲକ୍ଷ୍ୟରେ ପ୍ରକାଶ କରୁଥିଲା । ଗୋଟାଏ ଜାଗାରେ ଦେଖିଲି– ତିନୋଟି ସୁନ୍ଦରୀ ଛୋଟ ଝିଅଙ୍କ ଛବି । ତଳେ ଲେଖାଯାଇଥାଏ ସେମାନଙ୍କ ନାମ– ଜେନ୍, ସୁଜେନ ଆଉ କ୍ଲାରା । ଗାଇଡ୍ ପରିଚୟ କରାଇଦେଲେ– ଏ ତିନିହେଁ ଲେଖକଙ୍କ ତିନି କନ୍ୟା ।

ମୁଁ ସଚେତେନ ହେଲି– ମୋର ତିନି କନ୍ୟା ପ୍ରଜେଶ (ବୁଲବୁଲ), ନିବେଦିତା (ସୁଲୁ) ଆଉ ସବାସାନ ଜୁଲିକୁ ନେଇ । ପରେ ଗାଇଡ୍ ଶୁଣେଇଲେ ଲେଖକଙ୍କ ଜୀବନର ସେଇ ମର୍ମନ୍ତୁଦ ଘଟଣା । କହିଲେ, ''କିନ୍ତୁ ବିଚାରି ସୁଜେନ୍ ମାତ୍ର ଚବିଶ୍‌ବର୍ଷ ବୟସରେ ମେନିଞ୍ଜାଇଟିସ୍ ରୋଗରେ ପୀଡିତ ହୋଇ ଏଇ ଘରେ ମୃତ୍ୟୁ ବରଣ କରିଥିଲେ । ସେଇ ଘଟଣା ପରେ ପରେ ସେ ଘୋର ବିମର୍ଷ ହୋଇପଡିଲେ । ଦୁର୍ଭାଗ୍ୟ ମଧ୍ୟ ଖୁବ୍ ଶୀଘ୍ର ଚାରିଆଡୁ ଘୋଟିଆସିଲା । ସେ ଦେବାଳିଆ (ବ୍ୟାଙ୍କ୍‌ରପ୍ଟ) ଘୋଷିତହେଲେ ୧୮୯୧ରେ । ଏଇ ଘରଟି ମଧ୍ୟ ନିଲାମ ହେଇଗଲା ।

ଶେଷକଥା : ମାର୍କଟ୍ୱେନ୍‌ଙ୍କ ଜନ୍ମବର୍ଷ (୧୮୩୫) ଆମେରିକା ଆକାଶରେ ଲଂଜାତାରା– ହ୍ୟାଲିଜ୍ କମେଟ୍ (Halley's Comet)ର ଆବିର୍ଭାବ ଘଟିଥିଲା । ତାଙ୍କର ମୃତ୍ୟୁ ମଧ୍ୟ ଘଟିଥିଲା ପଞ୍ଚସ୍ତରୀ ବର୍ଷ ପରେ, ୧୯୧୦ରେ, ହ୍ୟାଲିଜ୍ କମେଟର ପୁନରାବିର୍ଭାବ ସହିତ ।

ମାର୍କଟ୍ୱେନ୍ ଥିଲେ ଜଣେ ଭାରତପ୍ରେମୀ ଆମେରିକାନ୍ ଲେଖକ । ସେ ଭାରତକୁ କିପରି ଭଲ ପାଉଥିଲେ ଏବଂ ମର୍ଯ୍ୟାଦା ଦେଉଥିଲେ ତାହା ତାଙ୍କର ଉଦ୍ଧୃତ ଉଦ୍‌ଘୋଷଣାରୁ ସୁସ୍ପଷ୍ଟ– "India is the cradle of the human race, the birth place of human speech, the mother of history, the grand mother of legend and the great grand mother of tradition !"

ମାର୍କଟ୍ୱେନ୍‌ଙ୍କ ଘର ପାଖକୁ ଲାଗି ବିଖ୍ୟାତ ଆମେରିକାନ୍ ଔପନ୍ୟାସିକା ହାରିଏଟ୍ ବିଚର୍ ଷ୍ଟୋଙ୍କ ଘର । ମଝିରେ ଗୋଟାଏ ବଡ ପଡିଆ ବ୍ୟବଧାନ । ଷ୍ଟୋଙ୍କ "ଟମ୍‌କକାଙ୍କ କୁଟୀର" ଉପନ୍ୟାସର ଜଣେ ଆବାଲ୍ୟ ଉପାସିକା ଥିଲେ ନିରୁପମା । ସେ ଏଇ ପବିତ୍ର ସ୍ମୃତି-ମନ୍ଦିର ଦେଖିବାକୁ ମୂଳରୁ ଅତ୍ୟନ୍ତ ବ୍ୟଗ୍ରଥିଲେ । ସେଦିନ ଷ୍ଟୋଙ୍କ ବୃହତ୍ ବାସଗୃହଟିର ସର୍ବାଙ୍ଗ ବୁଲି ଦେଖିଥିଲୁ । କିନ୍ତୁ ମୁଁ ସେତେବେଳକୁ ଏତେ କ୍ଳାନ୍ତ ହୋଇଯାଇଥିଲି ଯେ ଏ ମ୍ୟୁଜିୟମ୍‌ର ଟିକିନିଖି ବିଷୟରେ ନୋଟ୍ କରିବାକୁ ମୋ ଦେହରେ ଆଉ ଶକ୍ତି ନଥିଲା । କେବଳ ଏତିକି ଜାଣିଲି ଯେ ଷ୍ଟୋଙ୍କ ପିତା ଥିଲେ ଜଣେ ନିଷ୍ଠାପର ପାଦ୍ରୀ । ଊନବିଂଶ ଶତାବ୍ଦୀର ଧାର୍ମିକ ଓ କଠୋର ନୈତିକ ପାରିବାରିକ ଶୃଂଖଳା ଭିତରେ ହାରିଏଟ୍ ଓ ତାଙ୍କର ଭାଇ ଭଉଣୀମାନେ ପ୍ରତିପାଳିତ୍ ହୋଇଥିଲେ । ଏଇ ଘରେ ମଧ୍ୟ କେତେକ କ୍ରୀତଦାସଦାସୀ ଷ୍ଟୋ ପରିବାରର ସେବାରେ ନିଯୁକ୍ତ ଥିଲେ । ସେଇ ପାରମ୍ପରିକ ସାମାଜିକ ପରିବେଶ ଓ ସଂସ୍କୃତି ଭିତରେ ବଢିଉଠିଥିବା ଝିଅ ହାରିଏଟ୍ ନିଶ୍ଚୟ ଏକ ଭିନ୍ନ ସଂସ୍କାରର ଆତ୍ମା, ଯେ ତତ୍‌କାଳୀନ ଆମେରିକାର କ୍ରୀତଦାସ ପ୍ରଥା ଭଳି ଏକ ଜଘନ୍ୟ ସାମାଜିକପ୍ରଥା ବିରୁଦ୍ଧରେ ନିଜର କଲମ ଚଳାଇବାକୁ ସାହସକରିପାରିଥିଲେ । ସେ ଆତ୍ମାର ଛାପ ସେ ସ୍ମୃତିମନ୍ଦିରର କୋଣ ଅନୁକୋଣରେ ପ୍ରଦର୍ଶିତ ପ୍ରତିଟି ପଦାର୍ଥ ଉପରେ ଜଡିତ ହୋଇ ରହିଥିବା ଅନୁଭବ ହେଲା ।

## ନ୍ୟୁୟର୍କ ଭ୍ରମଣ– (ତା ୨୬, ୨୭ ଜୁଲାଇ ୧୯୯୩)–

ଛବିଶ ତାରିଖ ସକାଳୁ ଆମେ ଗ୍ଲାସଟନ୍‌ବରିରୁ ବାହାରିଲୁ ନ୍ୟୁୟର୍କ ଅଭିମୁଖେ । ପ୍ରାୟ ତିନିଘଣ୍ଟାର ଡ୍ରାଇଭ୍ । ମହେଶ ଗାଡି ଚଳେଇଲେ । ଯାତ୍ରୀ ହେଲୁ ଆମେ ପାଞ୍ଚଜଣ– ସୁଲୁ, ଅମୃତ, ମନୀଶ, ନିରୁପମା ଓ ମୁଁ । ଏ ଦେଶର କାର୍ ବାଉଁଆ ଚାଲେ, ଅର୍ଥାତ୍ କାର୍‌ର ଷ୍ଟିଅରିଂ ଗାଡିର ବାଁପଟେ– ଡାହାଣ ପାଖକୁ ଯାତ୍ରୀର ସିଟ୍ । ସିନିୟର୍‌ଟି ଭିତ୍ତିରେ ମତେ ଏଇ ସିଟ୍‌ଟି ମିଳିଥାଏ– ଅନ୍ୟମାନେ ପଛ ସିଟ୍‌ରେ । ମହେଶ ବହୁବର୍ଷ ହେଲା ଆମେରିକାର

ଏ ଅଂଚଳରେ ରହିଆସିଲେଣି– ତେଣୁ ସେ ନ୍ୟୁୟର୍କ ଯିବା ରାସ୍ତା ସହିତ ଢେର୍ ପରିଚିତ । କିନ୍ତୁ କ'ଣ ହେଲା କେଜାଣି ଆଜି ସେ ବାରମ୍ବାର ରାସ୍ତା ହୁଡ଼ିଲେ । ତେଣୁ ତାଙ୍କୁ ବାଟ ଦେଖେଇବା ପାଇଁ ଦରକାର ପଡ଼ିଲା ବାରମ୍ବାର ମ୍ୟାପ୍ ଦେଖିବା । ମ୍ୟାପ୍ ପଢ଼ିବାରେ ସୁବିଧା ଲାଗି ସୁଲୁକୁ ଆସିବାକୁ ପଡ଼ିଲା ସାମ୍ନା ସିଟ୍‌କୁ ଓ ମୁଁ ଗଲି ପଛକୁ ।

ଗ୍ଲାସ୍‌ଟନ୍‌ବରି ଘରୁ ବାହାରିଲୁ ସକାଳ ଆଠରେ । କନେକ୍ଟିକଟ୍ ରାଜଧାନୀ ସହର ହାର୍ଟଫୋର୍ଡ ପାରି ହେଇ ଧଇଲୁ Highway-I-95 । ଏ ଦେଶର ହାଇୱେ ଗୁଡ଼ିକ ସମୁଦାୟ ଦେଶକୁ ଅକ୍ଷାଂଶ ଦ୍ରାଘିମା ପରି ନିର୍ଦ୍ଦିଷ୍ଟ ବ୍ୟବଧାନରେ ଛେଦନ କରିଥାନ୍ତି । ତେଣୁ ଅନେକ ସମୟରେ ଏଇ ହାଇୱେ ଗୁଡ଼ିକର ନମ୍ବର ଦ୍ୱାରା ସ୍ଥାନର ଭୌଗୋଳିକ ବିବରଣୀ ମାନଚିତ୍ର ଅପେକ୍ଷା ରୋଡ୍‌ମ୍ୟାପ୍‌ରୁ ଅଧିକ ସହଜ ହୁଏ । ଏ ମ୍ୟାପ୍ ନିଜ ଘର କମ୍ପ୍ୟୁଟର୍‌ରୁ ଅନ୍‌ଲୋଡ୍ କରିହୁଏ । ରୋଡମ୍ୟାପ୍‌ରୁ I-95 ହାଇୱେର ସ୍ଥିତି ପରୀକ୍ଷା କରିବାକୁ ଦେଖିବାକୁ ମ୍ୟାପ୍‌ଟା କିଛି ସମୟ ପାଇଁ ସୁଲୁଠୁଁ ମାଗିନେଇ ଦେଖିଲି– ଏ ହାଇୱେ ସମଗ୍ର ପୂର୍ବ-ଉପକୂଳ ସହିତ ସମାନ୍ତର ଭାବେ ଲମ୍ବିଯାଇଚି ଏକବାରେ ଉତ୍ତର ସୀମାନ୍ତ ସହର ବଫଲୋରୁ ଦକ୍ଷିଣ ସୀମାର ଫ୍ଲରିଡା ଦେଇ ମାୟାମି ଯାକେ । ଫ୍ଲରିଡା ଆମେ ଗତମାସରେ ଦେଖିଆସିଥିଲୁ; କିନ୍ତୁ ନାଏଗ୍ରା ଦର୍ଶନ ସଂଭବ ହୋଇନଥାଏ ସେଯାକେ । ମନରେ ଗୋଟାଏ ବଡ ଇଚ୍ଛା ରହିଯାଇଥିଲା ନାଏଗ୍ରା ଦେଖିବା ପାଇଁ । ତାହା ଅବଶ୍ୟ ଏଇଥର ଆମେରିକା ଭ୍ରମଣରେ ଚରିତାର୍ଥ ହେବାର ସଂଭାବନା ଦିଶୁନଥାଏ । ଜାଣିଲି ସେଥିପାଇଁ ମତେ ପୁଣି ଥରେ ନିଶ୍ଚୟ ଆମେରିକା ଭ୍ରମଣରେ ଆସିବାକୁ ହିଁ ହେବ । ଈଶ୍ୱରଙ୍କ ଦୟାରୁ ସେଇ ଅପୂରଣୀୟ ଆକାଂକ୍ଷା ପୂରଣ ହୋଇପାରିଥିଲା ଯଥା ସମୟରେ । କେବଳ ନାଏଗ୍ରା ନୁହେଁ, ଆମେରିକାର ଆହୁରି ଅନେକ ଦର୍ଶନୀୟ ସ୍ଥାନ ସ୍ୱଚକ୍ଷୁରେ ଦେଖିବାର ସୁଯୋଗ ଭଗବାନ୍ ଯୁଟେଇଦେଇଥିଲେ । ସେ ସବୁ ଯଥାସମୟରେ ଉଲ୍ଲେଖ କରିବି ।

ସେ ଯାହାହେଉ ଏଥର ନ୍ୟୁୟର୍କ ଯାତ୍ରା ପାଇଁ ମୁଁ ପରମ ଆଗ୍ରହ ସହିତ ନିଜକୁ ପ୍ରସ୍ତୁତ କରି ରଖିଥାଏ ।

ପ୍ରାୟ ଦୁଇ ଅଢେଇ ଘଣ୍ଟା କ୍ରମାଗତ ଡ୍ରାଇଭ୍ ମଝିରେ ମହେଶ କହିଲେ, ''ନନା ! ଆଗକୁ ଆସୁଚି ହଡ୍‌ସନ୍ ନଦୀ । ଆମେ ବର୍ତ୍ତମାନ ହଡ୍‌ସନ୍ ପାରିହେବା । ଦେଖନ୍ତୁ କି ବିଶାଳ ନଦୀ ହଡ୍‌ସନ୍ ! ନଦୀ ଆରପାରିରେ ମ୍ୟାନ୍‌ହାଟାନ୍ । ଏ ନଦୀ ଉପରେ ସ୍ଥାନେ ସ୍ଥାନେ ବହୁତ ଗୁଡ଼ିଏ ବ୍ରିଜ୍ । ଦେଖୁଚନ୍ତି ତ– ସବୁଠୁ ବଡ ଜର୍ଜ ୱାସିଂଟନ୍ ବ୍ରିଜ୍ । ପୁଣି ଶୁଣିଥିବେ ଲିଙ୍କନ୍ ଟନେଲ୍ ନାଁ ! ତାହାକୁ କହନ୍ତି ନ୍ୟୁୟର୍କର ଜୁଗ୍ୟୁଲାର୍ ଭେନ୍– ମାନେ ବେଁ ଶିରା– ଏଇଟା କଟିଗଲେ ନ୍ୟୁୟର୍କ ମଲା ଜାଣନ୍ତୁ । ସେଥିପାଇଁ ଆତଙ୍କବାଦୀଙ୍କ ଆଖି ଏଇ ଟନେଲ୍ ଉପରେ । ଗଲା ଫେବୃଆରିରେ ଇସ୍‌ଲାମିକ୍ ଆତଙ୍କବାଦୀମାନେ ଯା' ଉପରେ ଚଢଉର ଯୋଜନା କରିଥିଲେ– ତେବେ ଧରାପଡିଗଲେ ୱର୍ଲଡ୍ ଟ୍ରେଡ୍ ସେଣ୍ଟର୍‌ରେ ବୋମା ବିସ୍ଫୋରଣ ବେଳେ ।''

"ଆମେ କ'ଣ ଲିଙ୍କନ୍ ଟନେଲ୍ ଭିତରେ ଯିବା ?"– ପଚାରିଲା ସୁଲୁ ।

"ନା", ମହେଶ ଜବାବ୍ ଦେଲେ, "ରୋଡ୍ ମ୍ୟାପ୍‌ରେ ଦେଖ ପ୍ରଥମେ କ୍ୱିନସ୍ ବରୋ ବ୍ରିଜ୍‌ର ଲୋକେସନ୍ । ବ୍ରିଜ୍ ଆରପାଖେ ପଶିବା ବ୍ରଙ୍କସ୍‌କୁ । ତା'ପରେ ଖୋଜିବା ମ୍ୟାନ୍‌ହାଟାନ୍‌କୁ ରାସ୍ତା । ସେଠି ଆମର ଆଜିକାର ମୂଳ ଲକ୍ଷ୍ୟ– ୟୁ.ଏନ୍. ବିଲଡିଂସ୍..."

କିଛି ସମୟ ପରେ ମହେଶ ଗାଡି ଅଟକେଇଲେ ଗୋଟିଏ ଟୋଲଗେଟ୍ ପାଖରେ । ଟୋଲ୍ ପେମେଣ୍ଟ୍ ପରେ ଆମେ ଆଗେଇଲୁ ଗୋଟିଏ ବିଶାଳ ସେତୁ ଆଡକୁ । ସେଇ ବିଶାଳ ସେତୁଟାର ରୂପ ଅତ୍ୟନ୍ତ ଭୟାବହ ମନେହେଲା ।

ଏ ଦେଶରେ ରାସ୍ତାଘାଟ ମତେ ସବୁଠୁ ବେଶୀ ବିସ୍ମିତକରେ । ବିମୂଢ଼ ଦୃଷ୍ଟିରେ ବ୍ରିଜ୍‌ଟାର ବିସ୍ତୃତି ଓ ନିର୍ମାଣ ଶୈଳୀକୁ କିଛି ସମୟ ଚାହିଁ ପଚାରିଲି ମହେଶଙ୍କୁ, ଏ ବ୍ରିଜ୍‌ର ନାଁ କ'ଣ ?

"ଏଇଟା କ୍ୱିନ୍‌ସ୍ ବରୋ ବ୍ରିଜ୍ । ଏ ଦେଶରେ ଏମିତି ଗଣ୍ଡାଗଣ୍ଡା ମଲ୍‌ଟିଷ୍ଟୋରିଡ୍-ବ୍ରିଜ୍ ଅଛି । ଦେଖନ୍ତୁ ଆମ ମୁଣ୍ଡ ଉପରେ ଆଉ ଆମ ତଳ ରାସ୍ତାରେ ବ୍ରିଜ୍ ଉପରେ କେମିତି ପିମ୍ପୁଡି ଧାର ଲାଗିଲା ପରି ହଜାର ହଜାର କାର ଟ୍ରକ୍ ଏକା ସାଙ୍ଗେ ବ୍ରିଜ୍ ପାରିହଉଚନ୍ତି !" ମହେଶ ଖୁବ୍ ସାବଧାନରେ କାର୍ ଡ୍ରାଇଭ୍ କରୁଥାନ୍ତି । କାହିଁକି କେଜାଣି ଟ୍ରାଫିକ୍‌ର ଗତି ଖୁବ୍ ମନ୍ଥର ହୋଇଯାଇଥାଏ । ତଳେ ହଡସନ୍ ନଦୀ ଭିତରକୁ ଚାହିଁଲି । ନଈ ଭିତରେ ବଡବଡ ଜାହାଜମାନ ଚାଲିଥାଏ । ସେ ଦୃଶ୍ୟ ଦେଖି ମନେହେଲା ହଡ୍‌ସନ୍ ଗୋଟିଏ ନଦୀ ନୁହେଁ– ଆଟଲାଣ୍ଟିକ୍ ମହାସାଗରର ଗୋଟାଏ ଲେଗୁନ୍ ନିଶ୍ଚୟ– ସମ୍ଭବତଃ ନଦୀ ମୁହାଣଟା ଅତି ନିକଟରେ । ଅନେକବର୍ଷ ତଳେ, ୧୯୫୬ରେ, ଷ୍ଟିମର୍‌ରେ ଗଙ୍ଗା ପାରିହେଇ ଯାଇଥିଲି ଆସାମରେ ଚାକିରି କରିବାକୁ । ସେତେବେଳେ ଗଙ୍ଗାନଦୀ ଉପରେ ରେଳ ପୋଲ ତିଆରି ହେଇନଥାଏ । ଉତ୍ତରବଙ୍ଗର ମନିହାରି ଘାଟ ଓ ସକ୍ରିଗଲି ଘାଟ ମଝିରେ ଗଙ୍ଗାର ବିସ୍ତୃତି ଦେଖି ସ୍ତବ୍ଧ ହୋଇଥିଲି । ଆଜି ହଡସନ୍ ନଦୀକୁ ଦେଖି ମୋର ସେଇ ମାନସିକ ଅବସ୍ଥାର ପୁନରାବୃତ୍ତି ହେଲା । ମନେମନେ ଗଙ୍ଗାଙ୍କ ସ୍ତବ ଗାନ କଲି... "ଦେବୀ ସୁରେଶ୍ୱରୀ ଭଗବତୀ ଗଙ୍ଗେ / ତ୍ରିଭୁବନ ତାରିଣୀ ତରଳ ତରଙ୍ଗେ / ଶଙ୍କର ମୌଳି ବିହାରିଣୀ ବିମଳେ / ମମ ମତିରସ୍ତୁ ତବ ପଦ କମଳେ ।"

ସମୟ– ଏଗାର ପାଖାପାଖି । ଖରା ବଢିଗଲାଣି ଖୁବ୍ । କାର୍ ବାହାରେ ପ୍ରବଳ ଉତ୍ତାପ– ତାପମାତ୍ରା ଶହେ ଡିଗ୍ରୀ ଫାରେନ୍‌ହାଇଟ୍ । କାର୍ ଭିତରେ ଏୟାର୍‌କଣ୍ଡିସନ୍‌ର ଚାଲୁଥିଲେ ବି ପିଲାମାନେ ଅସ୍ଥିର ହେଇପଡୁଥାନ୍ତି । ପ୍ରାୟ ବାରଟା ସୁଦ୍ଧା ଆମେ ନଦୀ ପାରିହେଇ ବ୍ରଙ୍କସ୍‌ରେ ପହଞ୍ଚିଗଲୁ– ଏହା ପରେ ଯିବାକୁ ହେବ ମ୍ୟାନ୍‌ହାଟାନ୍ । ସବା ପ୍ରଥମେ ଜାତିସଂଘ କାର୍ଯ୍ୟାଳୟକୁ ରାସ୍ତା ଖୋଜା ଆରମ୍ଭ ହେଲା । ନ୍ୟୁୟର୍କର ରାସ୍ତାରେ ପ୍ରବଳ ଟ୍ରାଫିକ୍ ଭିଡ । ମଝିରେ ମଝିରେ ଟ୍ରାଫିକ୍ ଜାମ୍ ହଉଥାଏ । ଶହଶହ କାର୍ ପଛକୁ ପଛ ଅଟକିରହୁଥାଏ ଜାମ୍ ଖୋଲାସା ହବାଯାକେ । ସବା ସାନ ନାତି ମନୀଶ ବ୍ୟସ୍ତହୋଇ ଚିଲାଉଥାଏ ।

## ଜାତିସଂଘର ସଦର କାର୍ଯ୍ୟାଳୟ ପରିଦର୍ଶନ (U.N. H.Q. Buildings)–

ମ୍ୟାନ୍‌ହାଟନ୍‌ରେ ପହଞ୍ଚି ପ୍ରଥମେ ଦେଖିବାକୁ ଗଲୁ ଜାତିସଂଘ ମୁଖ୍ୟକାର୍ଯ୍ୟାଳୟ– ଯାହା ଦେଖିବାକୁ ଜୀବନ-ବ୍ୟାପି ସ୍ୱପ୍ନ ଦେଖୁଥିଲି– ଆଜି ସେ ସ୍ୱପ୍ନ ସାକାର ହେବାକୁ ଯାଉଚି ଜାଣି ମନ ଉଚ୍ଛନ୍ନ ହେଉଥାଏ । କାହିଁକି କେଜାଣି କଲେଜ ପଢ଼ିବା ବୟସରୁ ମୋ' ମନରେ ଏକ ସୁପ୍ତ ଅଭିଳାଷ ଜାଗ୍ରତ ହେଇଥିଲା । ଅଭିଳାଷଟି ନିଶ୍ଚୟ ହାସ୍ୟାସ୍ପଦ । ତେବେ ମୋର ସେ ଅଭିଳାଷଟିକୁ ଏଠାରେ ପ୍ରକାଶ କରିଦେବା ଉଚିତ୍ ହେବ । ମୋର ବରାବର ମନହୁଏ– ଜାତିସଂଘର ସାଧାରଣ ଅଧିବେଶନରେ ଭାଗନେଇ ମୁଁ ସେଠାରେ ଅନର୍ଗଳ ବକ୍ତୃତା ଦେଉଚି ! ତେବେ ବାମନର ଚନ୍ଦ୍ରକୁ ହାତ ବଢ଼ାଇଲା ଭଳି ତାହା ଥିଲା ମୋ ପାଇଁ ଏକ ଦିବା ସ୍ୱପ୍ନ ମାତ୍ର । କିନ୍ତୁ ସେଇ ଦିବାସ୍ୱପ୍ନ ଆଜି କିଞ୍ଚିତ୍‌ମାତ୍ରାରେ ରୂପାୟିତ ହେବାକୁ ଯାଉଚି ଭଳି ମତେ ଲାଗୁଥାଏ ।

ଜାତିସଂଘର ମୁଖ୍ୟକାର୍ଯାଳୟ ବହୁ ଦୂରରୁ ସ୍ପଷ୍ଟ ଦିଶୁଥାଏ । ଦିଗ୍‌ବଳୟରେ ଯୋଡାଏ ବିରାଟ ଆକାରର ବହୁତଳ ପ୍ରାସାଦ ପାଖାପାଖି ଠିଆହେବା ଦେଖିଲାବେଳୁ ମହେଶ ଚିହ୍ନେଇଦେଲେ, ''ଦେଖନ୍ତୁ– ସେଠି ୟୁ.ଏନ୍ ବିଲ୍‌ଡିଙ୍ଗସ୍ ! ଏ ପାଖଟା ହେଲା ୟୁ.ଏନ୍ ସେକ୍ରେଟେରି ଜେନେରାଲ୍‌ଙ୍କ ଅଫିସ୍ ବା ସେକ୍ରେଟେରିଏଟ୍ । ଆରପାଖଟା ଜାତିସଂଘ ସାଧାରଣ ଆସେମ୍ଲି ।'' ସେଇ ବିଲଡିଂ ଦିଗରେ ସେ ଡ୍ରାଇଭ୍ କରୁଥାନ୍ତି । ଆମେ ଯାଉଥାଉ ଏକ ନଦୀ କୂଳ ରାସ୍ତାରେ । ସୁଲୁ ରୋଡ୍‌ମ୍ୟାପ୍‌କୁ ଦେଖି କହିଲା, ''ଏ ନଈର ନାମ ଇଷ୍ଟ ।''– ଇଷ୍ଟ୍ ଏକ ପ୍ରକାଣ୍ଡ ସୁନାବ୍ୟା ନଦୀ । ଆମେରିକାର ଅଧିକାଂଶ ବଡ ବଡ ନଦୀରେ ବର୍ଷ ତମାମ୍ ପାଣି ଭରପୂର । ଏଗୁଡିକ ବରଫାବୃତ ପର୍ବତମାନଙ୍କରୁ ବାହାରି ଥା'ନ୍ତି । ଅନେକ ସମୟରେ ଏଇ ଜଳପୂର୍ଣ୍ଣ ନଦୀ ଶଯ୍ୟାକୁ ଦେଖି ମୋର ମନେପଡେ ଆମ ଓଡିଶାର ମହାନଦୀ, କାଠଯୋଡିଭଳି ବର୍ଷର ଆଠ ନ'ମାସ ଶୁଖିଲା ପଡିଥିବା ନଈମାନଙ୍କର ଦୁରବସ୍ଥା । ଯୋଉ ଦେଶରେ ନଦୀମାନଙ୍କରେ ମଧୁର ଜଳ ଏତେ ପ୍ରଚୁର ସେ ଦେଶ ଧନାଢ୍ୟ ନହେବ ତ ଆଉ କିଏ ହେବ ? ଆମେରିକାର ଧନାଢ୍ୟତା ପଛରେ ରହିଚି ଈଶ୍ୱରଙ୍କର ଏଇ ଆଶୀର୍ବାଦ– ସୁନାବ୍ୟା ନଦୀମାନଙ୍କର ଅବଦାନ । ୟୁ.ଏନ୍ ବିଲ୍‌ଡିଂ ଦୁଇଟି ସେଇ ଇଷ୍ଟନଦୀ କୂଳରେ ଅବସ୍ଥିତ ।

କିଛି ବାଟ ଅଗ୍ରସର ହେବା ପରେ ଦେଖିଲୁ ରାସ୍ତାରେ ପୁଲିସ୍ ଗାଡିମାନଙ୍କର ବିଶେଷ ପଇଁତରା ଚାଲିଚି । କ୍ୟାଉଁ କ୍ୟାଉଁ ସାଇରେନ୍ ଶବ୍ଦରେ କାନ ଅତଡି ପଡୁଥାଏ । ମଝିରେ ମଝିରେ ବହୁ ଜାଗାରେ ପୁଲିସ୍ ରାସ୍ତାକୁ ଅବରୋଧ କରୁଥାଏ ଓ ମୁଖ୍ୟ ରାସ୍ତା ଛାଡି ପାଖ ରାସ୍ତାରେ ଆଗକୁ ଯିବାକୁ ନିର୍ଦ୍ଦେଶ ଦେଉଥାଏ । ପୁଲିସ୍‌ର ନିର୍ଦ୍ଦେଶ ଅନୁସାରେ ମହେଶ ଗାଡି ଚଳାଉଥାନ୍ତି । ଆମ ଆଗରେ ପଛରେ ବହୁତ ଗାଡି ଧିମେଇ ଧିମେଇ ଚାଲିଥାଏ ।

''ବୋଧହୁଏ କିଛି ବଡଧରଣର ପଲିଟିକାଲ୍ ଡିମନ୍‌ଷ୍ଟ୍ରେସନ୍ ଚାଲିଚି ଆଜି ୟୁ.ଏନ୍ ଜେନେରାଲ୍ ଆସେମ୍ବଲି ଆଗରେ ।''– ମହେଶ ସତର୍କ କରାଇଦେଲେ ଆମକୁ ।

''ପଲିଟିକାଲ୍ ଡିମନ୍‌ଷ୍ଟ୍ରେସନ୍ ?''– ମୁଁ ବୁଝି ପାରିଲି ନାହିଁ । ମୋର ଧାରଣା ସେ ପର୍ଯ୍ୟନ୍ତ ରହିଥାଏ ଯେ ରେଲରୋକୋ, ଚକାଜାମ ବା ଦେଶବନ୍ଦ ଇତ୍ୟାଦି ଆନ୍ଦୋଳନ କେବଳ ହୁଏ ଆମ ଭାରତରେ– ଆମେରିକାରେ ସେସବୁ ହୁଏନା । ତେବେ କ'ଣ ସେ ରୋଗ ଏଠିକି ବି ବ୍ୟାପିଲାଣି ? ଦୃଶ୍ୟଟା ଦେଖିବାକୁ ଅପେକ୍ଷା କଲି ।

କିଛି ସମୟ ପରେ କଥାଟା ବୁଝାପଡିଗଲା । ଜାତିସଂଘ ଅଫିସ୍ ସାମ୍ନାରେ ଗୋଟାଏ ଖୋଲା ଜାଗାରେ ବହୁସଂଖ୍ୟାରେ ଭାରତୀୟଲୋକଙ୍କ ଚେହେରାର ମଣିଷ ଜମିଯାଇଥାନ୍ତି– ପ୍ରାୟ ଚାରି ବା ପାଞ୍ଚଶହ । ସେମାନେ ମାଇକ୍‌ରେ ଗରମାଗରମ ସ୍ଲୋଗାନ୍ ଦେଉଥାନ୍ତି । ସେମାନଙ୍କ ହାତର ପ୍ଲାକାର୍ଡରୁ ଜଣାଗଲା ସେମାନେ ଥିଲେ ଶ୍ରୀଲଙ୍କାର ତାମିଲ୍ ବିଦ୍ରୋହୀ ବା ଏଲ୍.ଟି.ଟି.ଇ ସମର୍ଥକ । କାହିଁ ଶ୍ରୀଲଙ୍କା କାହିଁ ନ୍ୟୁୟର୍କ ! ଏତେ ଦୂରରୁ ଏତେ ସଂଖ୍ୟାରେ ଏଲ୍.ଟି.ଟି.ଇ ସମର୍ଥକ କେମିତି ଏଠିକି ଆସି ସେମାନଙ୍କର ରାଜନୈତିକ ଏଜେଣ୍ଡା ଚଳେଇଚନ୍ତି ବୁଝିନପାରି ଆଶ୍ଚର୍ଯ୍ୟ ହେଲି । ସେମାନଙ୍କ ଭିତରେ ବହୁ ନାରୀ ଓ ସାନ ସାନ ପିଲା ମଧ୍ୟ ଥା'ନ୍ତି । ସେମାନଙ୍କ ନେତା ପ୍ରଭାକରନ୍‌ଙ୍କ ବଡବଡ ଛବି ପୋଷ୍ଟର୍ ଆକାରରେ ସ୍ଥାନେ ସ୍ଥାନେ ପ୍ରଦର୍ଶିତ ହେଉଥାଏ ।

ପ୍ରଭାକରନଙ୍କ ପୋଷ୍ଟର୍‌ରେ ଥାଏ– ସେ ଗୋଟାଏ ବାଘଛୁଆକୁ କାନ୍ଧରେ ବସେଇ ବୀର ଦର୍ପରେ ଠିଆହେଇଥାନ୍ତି । ସେତେବେଳକୁ ରାଜୀବ ଗାନ୍ଧିଙ୍କ ହତ୍ୟା ଘଟଣା ଘଟିବା ଚାରିବର୍ଷ ଅତୀତ ହୋଇଥାଏ । ସେଇ ଭିତରେ ଏଲ.ଟି.ଟି.ଇର ପ୍ରତାପ ସାରା ବିଶ୍ୱକୁ ବ୍ୟାପିସାରିଥାଏ ଓ ସେମାନଙ୍କର ଆତଙ୍କବାଦୀ କାର୍ଯ୍ୟକଳାପ ପ୍ରତି ଆମେରିକା କ୍ରମଶଃ ସଜାଗ ହେଉଥାଏ । ବୋଧହୁଏ ସେଇ ଭୟରେ ଜାତିସଂଘ ବିଲଡିଂକୁ ଆମେରିକାର ପୁଲିସ୍ ଏପରି କଡ଼ାକଡି ଜଗିବା ବନ୍ଦୋବସ୍ତ କରିଥାଏ ବୋଲି ବୁଝିପାରିଲି ।

ପୁଲିସ୍‌ର ନିର୍ଦ୍ଦେଶ ଅନୁଯାୟୀ ଆମେ ଏକ ନିରାପଦ ରାସ୍ତାରେ ଧୀରେଧୀରେ ଆଗେଇଲୁ । ଶେଷରେ ଆମ ଗାଡି ଅଟକିଲା ଜାତିସଂଘ ମୁଖ୍ୟଦପ୍ତରର ସାମ୍ନା ପାର୍କିଂ ପ୍ଲେସ୍‌ରେ । ଗାଡିରୁ ବାହାରି ମୁଁ ଚାରିଆଡକୁ ଆଖି ବୁଲେଇ ଦେଖିଲି । ଅଦୂରରେ ଶତାଧିକ ପତାକା ସ୍ତମ୍ଭ ଉପରେ ବିଭିନ୍ନ ଦେଶର ଜାତୀୟପତାକା ଫର୍‌ଫର୍ ହେଇ ଉଡୁଥିବା ଲକ୍ଷ୍ୟକଲି । ସେ ଦୃଶ୍ୟ ଆଖିକୁ ଆକର୍ଷଣ କଲା ମାତ୍ରେ ଆମେ ସମସ୍ତେ ଖୋଜିପକେଇଲୁ ଆମ ଭାରତର ଜାତୀୟପତାକା କାହିଁ କୋଉଠି ! ଟିକେ ଅନୁସନ୍ଧାନ ପରେ ଆଖିରେ ପଡିଲା ସେ ଦୃଶ୍ୟ । କାହିଁକି କେଜାଣି ଛାତି ଭିତରଟା ପୂରିଉଠିଲା ଓ ଆଖି ଛଳଛଳ ହେଇଗଲା । ଦୁଇ ହାତ ଯୋଡି ମୁଁ ପତାକାକୁ ନମସ୍କାର କଲି । ସେତିକିବେଳୁ ଏକ ମହାନ୍ ଐତିହାସିକ ଚେତନାର ପ୍ଲାବନ ମତେ ଘାରିବାକୁ ଆରମ୍ଭକଲା ।

## ୟୁଏନ୍ ହେଡ୍‌କ୍ୱାଟର୍ସର ପ୍ରବେଶପଥରେ ପ୍ରଥମେ ନରକଦର୍ଶନ !–

ମହାଭାରତରେ ପଢ଼ିଥିଲି– ସ୍ୱର୍ଗାରୋହଣ ପଥରେ ଧର୍ମରାଜ ଯୁଧିଷ୍ଠିରଙ୍କୁ ପ୍ରଥମେ ନରକ ଦର୍ଶନ କରିବାକୁ ପଡିଥିଲା । ସେହିପରି ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଳୟଙ୍କରୀ ଧ୍ୱଂସାବଶେଷ ଭିତରୁ ବଞ୍ଚିରହିଥିବା ଅବଶିଷ୍ଟ ମାନବଜାତିର ପରିକଳ୍ପିତ ଏଇ ଭୂ-ସ୍ୱର୍ଗ ବା ସାମ୍ୟ-ମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱର ସ୍ୱର୍ଗ ରୂପେ ପରିକଳ୍ପିତ ଏକ ମହାନ୍ ଅନୁଷ୍ଠାନ ଜାତିସଂଘର ମୁଖ୍ୟ କାର୍ଯ୍ୟାଳୟ ପରିଦର୍ଶନରେ ଆସୁଥିବା ଦର୍ଶକ ମାନଙ୍କ ପାଇଁ ସବା ପ୍ରଥମେ ନରକଦର୍ଶନର ବ୍ୟବସ୍ଥା ଖଞ୍ଜାଯାଇଥିଲା । ଏଇ ନରକ ପାରି ହେବା ପରେ ଯାଇ ଦର୍ଶକ ଜାତିସଂଘର ସାଧାରଣ ଆସେମ୍ବଲି ଗୃହ ଭିତରକୁ ପ୍ରବେଶ କରିବାକୁ ଯୋଗ୍ୟତା ହାସଲକରେ ।

ସେଦିନ ଆମ ଭଳି ଦର୍ଶକମାନଙ୍କ ପାଇଁ ଉଦ୍ଦିଷ୍ଟ ଏକ କାଉଣ୍ଟର୍‌ରୁ ଟିକେଟ୍ କିଣି ପଶିଲୁ ପ୍ରଥମେ ସେଇ ନରକ ଭିତରକୁ । ଏଇ ନରକ ଦର୍ଶନ ଆମ ପାଇଁ ଥିଲା ଏକ ମହାର୍ଘ ଅଭିଜ୍ଞତା ସାରା ଜୀବନ ପାଇଁ । ଏ ନରକର ଦୃଶ୍ୟ ଦେଖି ଆମେ ସମସ୍ତେ ଭୟଙ୍କର ଭାବରେ ବିଚଳିତ ହୋଇପଡିଲୁ । ଯାହା ଦେଖିଲୁ ତାହା ଅବର୍ଣ୍ଣନୀୟ । ତଥାପି, ଜଣେ ଲେଖକ ଭାବେ ସେଇ ହୃଦୟବିଦାରକ ଦୃଶ୍ୟର କିଞ୍ଚିତ୍ ସୂଚନା ମୁଁ ମୋ' ଡାଏରିରେ ଲିପିବଦ୍ଧ କରିଥିଲି ସେଦିନ । ତା'ର କିୟଦଂଶ ଏହିପରି–

"ଆମକୁ ପ୍ରଥମେ ସିକ୍ୟୁରିଟି ଚେକିଂ କାରାଯିବା ଲାଗି ଉଦ୍ଦିଷ୍ଟ ଏକ ସ୍ଥାନରେ ଧାଡିବାନ୍ଧି ଠିଆକରାଗଲା । ସେଦିନ ଆମ ବ୍ୟତୀତ ଆହୁରି ଅନେକ ପରିଦର୍ଶକ ଥିଲେ । ସେମାନେ ପୃଥିବୀର ବିଭନ୍ନ ଦେଶରୁ ଆସିଥିଲେ । ବିଧିବଦ୍ଧ ଭାବେ ସିକ୍ୟୁରିଟି ଚେକିଂ ଅନ୍ତେ ଆମେ ସମସ୍ତେ ଗୋଟିଏ ଟିକେଟ୍ ବୁକିଂ କାଉଣ୍ଟର୍ ଆଗରେ ଧାଡିବାନ୍ଧିଲୁ । ଉପଯୁକ୍ତ ମୂଲ୍ୟର ଟିକେଟ୍ ଖରିଦ୍ କଲୁ– ଟିକେଟ୍‌ର ମୂଲ୍ୟ ଥିଲା ପ୍ରତି ବୟସ୍କଙ୍କ ପାଇଁ ସାଢେ ଛ' ଡଲାର, ଶିଶୁ କିଶୋରଙ୍କ ପାଇଁ ସାଢେ ତିନି ଓ ବରିଷ୍ଠ ନାଗରିକଙ୍କ ପାଇଁ ସାଢେଚାରି ଡଲାର ।

ଜଣେ ସୁନ୍ଦରୀ ଯୁବତୀ ଆମକୁ ୟୁଏନ୍ ଜେନେରାଲ୍ ଆସେମ୍ବଲି ବୁଲେଇ ଦେଖେଇବାକୁ ନିଯୁକ୍ତ ହୋଇଥିଲେ । ସେ ନିଜର ପରିଚୟ ଦେଇ କହିଲେ ତାଙ୍କ ନାମ ଏଲିଜାବେଥ୍ । ସେ ଥିଲେ ସ୍ଥାନୀୟ ନ୍ୟୁୟର୍କ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗରେ ସ୍ନାତକୋତ୍ତର ଶ୍ରେଣୀର ଛାତ୍ରୀ । ଗ୍ରୀଷ୍ମଛୁଟିରେ ଏଠାକାର କଲେଜ ଛାତ୍ରଛାତ୍ରୀମାନେ ଏହିପରି ସାମୟିକ ଗାଇଡ୍ ଭାବେ ଏଠାରେ ନିଯୁକ୍ତି ପାଇଥାନ୍ତି । ଏଥିରେ ସେମାନେ ଯାହା କିଛି ଉପାର୍ଜନ କରନ୍ତି ସେଥିରେ ସେମାନଙ୍କର ପାଠପଢା ଖର୍ଚ୍ଚ କିଛିମାତ୍ରାରେ ଲାଘବ ହୋଇଥାଏ ।

ଏଲିଜାବେଥ୍ ଆମକୁ ସାଥିରେ ଧରି ଚାଲିଲେ ପ୍ରଥମେ ଏକ ବନ୍ଦ ଘରର କବାଟ ପାଖକୁ । ଏଇଠି ଦର୍ଶକମାନଙ୍କୁ ଏକତ୍ରିତ କରି ଏଲିଜାବେଥ୍ ଆମକୁ ଏକ ସଂକ୍ଷିପ୍ତ ଭାଷଣ

ଦେଲେ ଜାତିସଂଘ ଗଠନର ଇତିହାସ ଉପରେ । ପରେ ପରେ ତାଙ୍କ ସ୍ୱର ଅତ୍ୟନ୍ତ ନାଟକୀୟ ଭାବେ ବଦଳିଗଲା । ସେଇ ନାଟକୀୟ ସ୍ୱରରେ ସେ ଦର୍ଶକମାନଙ୍କୁ ଆଗୁଆ ସତର୍କବାଣୀ ଶୁଣେଇଦେଲେ, ''ମୁଁ ଜାଣେ ଏ ପ୍ରଦର୍ଶନୀ ଦେଖିଲାବେଳେ ଅନେକ ମାତୃ-ହୃଦୟା ନାରୀ ଭୋ ଭୋ କରି କାନ୍ଦିଉଠନ୍ତି । ଅନେକ ବୟସ୍କ ଭଦ୍ରଲୋକ ଭାବପ୍ରବଣ ଅବସ୍ଥାରେ ଚିତ୍କାର କରି ଗାଳି ଗୁଲଜ ମଧ୍ୟ କରନ୍ତି । ସେପରି ଘଟିବା ଅତ୍ୟନ୍ତ ସ୍ୱାଭାବିକ । ତଥାପି ଆଶା କରୁଚି ଆପଣମାନେ ଧୈର୍ଯ୍ୟ ସହକାରେ ଏ ପ୍ରଦର୍ଶନୀ ମଣ୍ଡପରେ ପ୍ରଦର୍ଶିତ ସାମଗ୍ରୀଗୁଡ଼ିକୁ ଦେଖିବେ ଏବଂ ଏଥିରୁ ଯାହା ଶିକ୍ଷାକଲେ ସେଇ ବାର୍ତ୍ତାର ପ୍ରଚାର ପ୍ରସାର କରିବାରେ ଜାତିସଂଘକୁ ସାହାଯ୍ୟ କରିବେ ।''

କବାଟ ଖୋଲାଗଲା । ଆମେ ସମସ୍ତେ– ଆମ ଦଳରେ ପ୍ରାୟ ତିରିଶ ଜଣ ବିଭିନ୍ନ ବୟସର ଦର୍ଶକ, ପ୍ରଦର୍ଶନୀ-ଗୃହ ଭିତରକୁ ପ୍ରବେଶକଲୁ । ଖୁବ୍ ଅଳ୍ପ ସମୟ ଭିତରେ ଏଲିଜାବେଥ୍‌ଙ୍କ ସତର୍କବାଣୀକୁ ଭୁଲିଯାଇ ହଲ୍ ଭିତରେ କିଏ ଜଣେ ଚିତ୍କାର କରିଉଠିଲେ– "O Lord Jesus Christ ! No, this is impossible. I am having a heart-attack. Can't take anymore !"

ଏଲିଜାବେଥ୍ ଧାଇଁଆସିଲେ । ତତ୍‌କ୍ଷଣାତ୍ ବୃଦ୍ଧ ଭଦ୍ରବ୍ୟକ୍ତିଙ୍କୁ ହଲ୍ ବାହାରକୁ ନେଇ-ନିଆଗଲା । ତାଙ୍କ ସହିତ ବାହାରିଗଲେ ଅନ୍ୟ ଜଣେ ବୟସ୍କା ମହିଳା– ବୋଧହୁଏ ବୃଦ୍ଧଙ୍କ ସଂପର୍କୀୟା । ସେମାନେ ଆସିଥିଲେ କୌଣସି ୟୁରୋପୀୟ ଦେଶରୁ ।

ମୁଁ ଚିନ୍ତିତ ହେଲି ନିରୁପମାଙ୍କୁ ନେଇ । ସେ ବି ଜଣେ ଅତ୍ୟନ୍ତ ଭାବପ୍ରବଣା ମହିଳା । ଦେଖିଲି ନିରୁପମା ଦୂରରେ ଠାଏ ଠିଆହେଇ ରୁମାଲ୍‌ରେ ଆଖି ପୋଛୁଚନ୍ତି । ସେ ଯୋଉଠି ଠିଆହେଇଥିଲେ ସେଠି ତାଙ୍କ ଆଖି ଆଗରେ ଥାଏ କେତେଟା ବଡ ବଡ ଗ୍ଲାସ୍‌କେଶ୍ । ମୁଁ ସେଠିକି ଚାଲିଲି ତାଙ୍କୁ କିଛିଟା ସାନ୍ତ୍ୱନା ଦେବାପାଇଁ । ଗ୍ଲାସ୍‌କେଶ୍ ଭିତରକୁ ଅନାଇ ଦେଖିଲି– ସେ ସାମଗ୍ରୀଗୁଡ଼ିକ ଥିଲା ଜାପାନର କୁନିକୁନି ପିଲାଙ୍କର କେତେଗୁଡ଼ିଏ ପୋଡା ଦରପୋଡା ପୋଷାକ ଆଉ ଖେଳନା । ଗ୍ଲାସ୍‌କେଶ୍ ତଳେ ଲେଖାଯାଇଥାଏ– ''ହିରୋସୀମା : ୧୯୪୫ ଅଗଷ୍ଟ ଛ' ତାରିଖ ସକାଳ ଛ' ! ଏହିଦିନ ଜାପାନର ସୂର୍ଯ୍ୟ ପୂର୍ବରୁ ଉଦୟ ହେବା ସହିତ ଦେଖାଦେଲା ଅନ୍ୟଏକ ସମାନ ତେଜୀୟାନ୍ ସୂର୍ଯ୍ୟ ଉଦୟ-ହେଲା ଜାପାନର ପଶ୍ଚିମ ଦିଗ୍‌ବଳୟରେ । ଚାହୁଁ ଚାହୁଁ ମାଡିଆସିଲା ନାହିଁନଥିବା ତାତି । ସେଇ ତାତିରେ ଶୋଇବା ଅବସ୍ଥାରେ ପୋଡି ପାଉଁଶ ହେଇଗଲେ ସମସ୍ତେ । ବୋମା ପଡିଥିବା ଜାଗାର ଦଶମାଇଲ୍ ଦୂର ଏକ ସ୍ଥାନର ପାଉଁଶ ଗଦାରୁ ପରେ ଏ ସବୁ ସାମଗ୍ରୀ କେତୋଟିକୁ ଉଦ୍ଧାର କରାଯାଇଚି ।''

ସଂଗ୍ରହାଳୟଟି ଥିଲା ବେଶ୍ ବଡ । ସେଥିରେ ହିରୋସୀମା ଓ ନାଗାସାକିର ପରମାଣୁ ବୋମା ବିଧ୍ୱସ୍ତ ସ୍ଥାନମାନଙ୍କରୁ ସଂଗୃହିତ କେତେକ ସାମଗ୍ରୀ ପ୍ରଦର୍ଶିତ ହେଉଥିଲା । ଏ

ସାମଗ୍ରୀ ଗୁଡିକ ଏତେ ଶକ୍ତିଶାଳୀ ସ୍ମୃତି ଉଦ୍ରେକ କରୁଥିଲା ଯେ ସେଥିରେ କଠୋରତମ ହୃଦୟ ମଣିଷର ହୃଦୟ ମଧ୍ୟ ବିଗଳିତ ହେବ ହିଁ ହେବ ।

ସାରା ପ୍ରଦର୍ଶନୀକୁ ବୁଲିବୁଲି ମୁଁ ଦେଖିଚାଲଲି । ଜଣେ ବିଜ୍ଞାନଛାତ୍ରଭାବେ ମୋର କୌତୂହଳ ନିଶ୍ଚୟ ରହିଥିଲା ପରମାଣୁ ବୋମାର କ୍ଷୟକାରୀ ଶକ୍ତିର ଏକ ସ୍ଥୂଳ ଆକଳନ । ବୁଲୁ ବୁଲୁ ଦେଖିଲି ଏକ ଅତ୍ୟନ୍ତ ବିସ୍ମୟକର ଦୃଶ୍ୟ । ଗୋଟିଏ ଜାଗାରେ ପ୍ରଦର୍ଶିତ ହେଉଥାଏ ମଦର ମେରିଙ୍କ ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତି– ଗ୍ରାନାଇଟ୍ ପଥରର । ପାଖକୁ ଯାଇ ଦେଖିଲି – ପ୍ରତିମୂର୍ତ୍ତିଟିର ପଛପଟ ତରଳିଯାଇଚି– ଅବିକଳ ମହମବତୀଟିଏ ଜଳିଲାବେଳେ ସେଥିରୁ ପିଗିଳି ପଡିଥିବା ତରଳ ମହମପରି । କିନ୍ତୁ ଅଦ୍ଭୁତ ବ୍ୟାପାରଟା ଥିଲା– ସେଇ ତାପମାତ୍ରାରେ ପ୍ରତିକୃତିର ସାମ୍ନା ପାଖଟା ଥିଲା ସଂପୂର୍ଣ ସୁରକ୍ଷିତ, ସଂପୂର୍ଣ୍ଣ ଅକ୍ଷତ ଓ ଅବିକୃତ ! ଏ ପ୍ରତିମୂର୍ତ୍ତିର ସାମ୍ନାପଟର ପ୍ରତିକୃତିଟି ଥିଲା ମଦର ମେରୀ ତାଙ୍କ ବକ୍ଷରେ ଜଡାଇଧରିଥାନ୍ତି ଏକ ଦୁଗ୍ଧପୋଷ୍ୟ ଶିଶୁକୁ– ଶିଶୁ ଯୀଶୁଙ୍କୁ । ପ୍ରତିମୂର୍ତ୍ତିର ପାଦଦେଶରେ ଏକ ପୋଷ୍ଟରରେ ଲେଖାଥିଲା– ହିରୋସୀମା ପରମାଣୁ ବୋମା ବିସ୍ଫୋରଣ ସ୍ଥାନର ଦଶ ମାଇଲ୍ ଦୂରରୁ ଉଦ୍ଧୃତ ।

ପରମାଣୁ ବୋମା ବିସ୍ଫୋରଣରୁ ନିର୍ଗତ ତାପମାତ୍ରାରେ ଲୁହା ପ୍ରଭୃତି ଧାତୁ ତରଳି-ଯାଏ । ପୁଣି ସେ ତାପମାତ୍ରାରେ ଘଟଣାସ୍ଥଳର ଦଶମାଇଲ୍ ଦୂରରେ ଥାଇ ମଧ୍ୟ ଗ୍ରାନାଇଟ୍ ପଥର ତରଳି ଯାଇପାରେ ଏହା ମଧ୍ୟ ସଂଭବ । କିନ୍ତୁ ବିସ୍ମୟକର ହେଲା– ଲୁହାପଥରକୁ ତରଳେଇ ଦେଇପାରୁଥିବା ଏଇ ଭୟଙ୍କର ଉତ୍ତାପ ଗ୍ରାନାଇଟ୍ ପ୍ରତିମୂର୍ତ୍ତିଟିର ପଛପଟକୁ ତରଳେଇ ପାରିଥିଲେ ସୁଦ୍ଧା ସାମ୍ନା ପାଖକୁ କାହିଁକି ଛାଡିଦେଲା ? କ'ଣ ମଦରମେରି ଓ ତାଙ୍କ କୋଳର ଶିଶୁ ଯୀଶୁଙ୍କୁ ଦେଖି ଡରିଗଲା ? ଏ ନିଶ୍ଚୟ ଥିଲା ଏକ ବିସ୍ମୟ ମୋ ପାଇଁ ଓ ଦଳର ଅନ୍ୟମାନଙ୍କ ପାଇଁ ।

– ଏହି ବିସ୍ମୟ ଭିତରେ ସଂଗ୍ରହାଳୟ ବୁଲା ଶେଷହେଲା ।

ଏଲିଜାବେଥ୍ ଆମକୁ କହିଲେ, ''ଏବେ ଚାଲନ୍ତୁ ବାହାରକୁ । ଯିବା ସିକ୍ୟୁରିଟି କାଉନ୍‌ସିଲ୍ ଚେମ୍ବର୍ ଦେଖିବାକୁ । ତା' ପୂର୍ବରୁ ଏଇ ଝରକା ପାଖକୁ ଟିକେ ଆସନ୍ତୁ ସମସ୍ତେ ।''

ଆମେ ଝରକା ପାଖକୁ ଗଲୁ । ''ଏଇ ଦେଖନ୍ତୁ – ଝରକା ତଳେ ଦିଶୁଚି ସେଇ ଛୋଟ ମ୍ୟାପ୍ଲ ଗଛଟି । ଦେଖୁଛନ୍ତି ତ ? କେତେ ଚୁନିଚୁନି ଲାଲ୍ ପତ୍ରରେ ଭରିଯାଇଚି ଗଛଟା ! ଆଃ କି ସୁନ୍ଦର ସତେ ! ଏ ମ୍ୟାପ୍ଲ ଗଛଟି କ'ଣ ଜାଣନ୍ତି ? ଏ ଗଛଟି ପଠେଇଥିଲେ ଜାପାନ ସରକାର ଯୁଦ୍ଧର ବହୁବର୍ଷ ପରେ ଏଇ ୟୁ.ଏନ୍.ଓ ବିଲ୍ଡିଙ୍ଗସ୍‌ର ବଗିଚାରେ ରୋପଣ ଲାଗି । ଏଇଟି ଜାପାନର ଶାନ୍ତିବାର୍ତ୍ତା– ଜାତିସଂଘକୁ ।''

## ସିକ୍ୟୁରିଟି କାଉନସିଲ୍ ଗୃହ ପରିଦର୍ଶନ

ପରେ ପରେ ଆମେ ଏସ୍କାଲେଟର୍ ଧରି ଉଠିଲୁ କୌଣସି ଏକ ମହଲାକୁ । ଏ ଏକ ବହୁତଳ ବିଶିଷ୍ଟ ପ୍ରାସାଦ । ସେଇ ମହଲାରେ ଥାଏ ସିକ୍ୟୁରିଟି କାଉନସିଲ୍ ଅଧିବେଶନ ଗୃହ । ସିକ୍ୟୁରିଟି କାଉନ୍‌ସିଲ୍ ଚାମ୍ବର୍‌ଟି ଏକ ବିଶାଳ ହଲ୍ । ଏଲିଜାବେଥ୍ ଆମକୁ ଡାକିନେଲେ ଦର୍ଶକ ଗ୍ୟାଲେରିକୁ । ସିନେମାହଲ୍‌ରେ ବାଲ୍‌କୋନିରେ ବସି ତଳକୁ ଚାହିଁ ସିନେମା ଦେଖିଲା ପରି ଆମେ ଗ୍ୟାଲେରିର ଚେୟାର୍‌ରେ ବସି ତଳକୁ ଲକ୍ଷ୍ୟକଲୁ । ତଳେ, ହଲ୍ ମଝିରେ ପଡିଥାଏ ଗୋଟିଏ ମସ୍ତବଡ ଘୋଡାନାଲ ଆକୃତିର ଟେବ୍‌ଲ୍ ବା ଡେସ୍କ୍ । ତାକୁ ଘେରି ଦୁଇଟି ବୃତ୍ତ ସୃଷ୍ଟିକରିଥାଏ ନିର୍ଦ୍ଦିଷ୍ଟ ସଂଖ୍ୟାର ଚେୟାର୍ ମାନ ।

ପ୍ରଥମ ବୃତ୍ତର ଚେୟାର୍‌ଗୁଡିକ ନିର୍ଦ୍ଦିଷ୍ଟ ହୋଇଥାଏ କାଉନ୍‌ସିଲ୍‌ର କାର୍ଯ୍ୟକାରୀ ସଭ୍ୟ-ମାନଙ୍କ ପାଇଁ । ସେଥିରୁ ଗୋଟିଏ ଥାଏ ଜାତିସଙ୍ଘର ସଭାପତିଙ୍କ ପାଇଁ । ତା'ପାଖ ଚେୟାର୍ ନିର୍ଦ୍ଦିଷ୍ଟ କରାଯାଇଥାଏ ତତ୍‌କାଳୀନ ଜାତିସଂଘ ସେକ୍ରେଟେରି ଜେନେରାଲ୍ ଶ୍ରୀ ବ୍ୟୁଟ୍ରୋସ୍ ଘାଲିଙ୍କ ପାଇଁ । ଏହା ବ୍ୟତୀତ କାଉନ୍‌ସିଲ୍‌ର ଛ'ଜଣ ସ୍ଥାୟୀ ସଭ୍ୟଙ୍କ ଚେୟାର୍ ମଧ୍ୟ ରହିଥାଏ ସେଇ ଭିତର ବୃତ୍ତରେ । ବାହାର ବୃତ୍ତରେ ଥାଏ କୋଡିଏଟି ଚେୟାର୍ । ଏଗୁଡିକ ଉଦ୍ଦିଷ୍ଟ– ବିଭିନ୍ନ ଦେଶରୁ ମନୋନୀତ ସଭ୍ୟଙ୍କ ପାଇଁ ।

ଦର୍ଶକ ଗ୍ୟାଲେରିରୁ ଦେଖିଲୁ ସିକ୍ୟୁରିଟି କାଉନ୍‌ସିଲ୍ ମଞ୍ଚର ପଛପଟର ସାରା କାନ୍ଥଟି ଉଜଳିଉଠୁଚି ଅପୂର୍ବ ଏକ ବିଶାଳ ବର୍ଣ୍ଣାଢ୍ୟ ପେଣ୍ଟିଂରେ । ଗାଇଡ୍ ଏଲିଜାବେଥ୍ କହିଲେ– ଏ ପେଣ୍ଟିଂଟି ନରୱେର ଜଣେ ପ୍ରସିଦ୍ଧ କଳାକାରଙ୍କ ଅବଦାନ ଜାତିସଂଘକୁ । ଏ ଛବିର ବିଷୟବସ୍ତୁ ହେଲା– ସମଗ୍ର ବିଶ୍ୱର ବିଭିନ୍ନ ସଭ୍ୟତା ଓ ମାନବ ସଂସ୍କୃତିଗୁଡିକର କ୍ରମ-ବିକାଶର କଥା । ଦୂରରୁ ଦର୍ଶକ ଗ୍ୟାଲେରିରେ ଥାଇ ସେଇ ବିଶାଳ ଚିତ୍ରପଟକୁ କିଛି ସମୟ ନିରୀକ୍ଷଣ କଲା ପରେ ଆମେ ଚାଲିଲୁ ବିଲ୍‌ଡିଙ୍ଗ୍‌ର ଅନ୍ୟ ଏକ ଅଂଶରେ ବସୁଥିବା ଜାତିସଂଘର ଅର୍ଥନୈତିକ କାଉନ୍‌ସିଲ୍ ଗୃହର ଅଭ୍ୟନ୍ତର ବୁଲି ଦେଖିବାକୁ । ଏଠାରେ ଜାତିସଂଘର 'ଇକନମିକ୍ କାଉନ୍‌ସିଲ୍' ଓ 'ଫାଇନାନ୍‌ସିଆଲ୍ ଟ୍ରଷ୍ଟ'ର ଅଧିବେଶନ ବସେ ।

## ଜାତିସଂଘ ସାଧାରଣ ଅଧିବେଶନ ଗୃହର ଅଭ୍ୟନ୍ତରରେ କିଛି ସମୟ–

ଶେଷରେ ଆମେ ଚାଲିଲୁ ଜାତିସଂଘର ସାଧାରଣ ଅଧିବେଶନ ଗୃହ ଦେଖିବାକୁ । ଏଇଠି ଚାଲେ ଜାତିସଙ୍ଘର ସମସ୍ତ ସଭ୍ୟଦେଶମାନଙ୍କର ପ୍ରତିନିଧିସଭା ବର୍ଷର ନିର୍ଦ୍ଦିଷ୍ଟ ସମୟରେ । ବାସ୍ତବରେ ଏକ ଦର୍ଶନୀୟ ସ୍ଥାନ । ଏକ ତୀର୍ଥଭ୍ରମଣର ଅନୁଭବ ହେଲା ମୋ ପାଇଁ– ଏ ଗୃହରେ ପାଦଦେବା ମାତ୍ରେ । ମନରେ ବହୁଦିନୁ ଅବଦମିତ ସ୍ୱପ୍ନ ଜାଗ୍ରତ ହୋଇଉଠିଲା । ଗ୍ୟାଲେରିରୁ ସଭାକକ୍ଷକୁ ଝୁଙ୍କିପଡି ବହୁ ସମୟ ନୀରବରେ ଅନାଇ ରହିଲି ।

ମନେମନେ ଜଗତର ମଙ୍ଗଳ ଓ ବିଶ୍ୱଶାନ୍ତି ପାଇଁ ଭାରତୀୟ ଋଷିମାନେ ବୈଦିକଯୁଗରୁ ଯେଉଁସବୁ ଶାନ୍ତିମନ୍ତ୍ର ଉଚ୍ଚାରଣ କରିଯାଇଥିଲେ ସେସବୁର ପଂକ୍ତି କେତୋଟି ସ୍ମରଣ କଲି, ''ଓଁ ବସୁଧୈବ କୁଟୁମ୍ବକଂ... ଓଁ ମାତା ଚ ପାର୍ବତୀ ଦେବୀ ପିତା ଦେବ ମହେଶ୍ୱରଃ / ମାନବାଃ ବାନ୍ଧବାଃ ସର୍ବେ ସ୍ୱଦେଶ ଭୁବନ ତ୍ରୟଂ... ଓଁ ଈଶାବାସ୍ୟ ଇଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍ / ତେନ ତ୍ୟକ୍ତେନ ଭୁଂଜିଥାଃ / ମା ଗୃଧଃ କଶ୍ୱଚିତ୍ ଧନଂ... ଓଁ ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁଃ ନିରାମୟାଃ / ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା' କଶ୍ଚିତ୍ ଦୁଃଖଭାଗ ଭବେତ୍... ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।''

ମନ ଭିତରଟା ଶାନ୍ତିରେ ପରିତୃପ୍ତ ହୋଇଗଲା । କିଛି ସମୟ ପରେ ଏଲିଜାବେଥ୍ କହିଲେ, ''ଆଜି ଆପଣମାନେ ଦେଖିବାରୁ ବଞ୍ଚିତ ହେଲେ ଏ ମହାନ୍ ଅନୁଷ୍ଠାନର ଅନ୍ୟ-ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ– ସେକ୍ରେଟେରି ଜେନେରାଲ୍‌ଙ୍କ ବିଶାଳ ସେକ୍ରେଟେରିଏଟ୍ ଗୃହର ଅଭ୍ୟନ୍ତର– ତା'ର କାରଣ ଆଜି ଛୁଟିଦିନ । ସେକ୍ରେଟେରିଏଟ୍‌ର ସମସ୍ତ ଦପ୍ତର ବନ୍ଦ ରହିଚି– ନଚେତ୍ ମୁଁ ଏହା ପରେ ଆପଣମାନଙ୍କୁ ସେଠାକୁ ବୁଲେଇ ନେଇଥାନ୍ତି । ସେଥିପାଇଁ ଦୁଃଖିତ । ଏଥର ଚାଲନ୍ତୁ ବେସ୍‌ମେଣ୍ଟ୍‌କୁ ଓହ୍ଲେଇବା । ସେଠି ଆପଣ ପାଇବେ କାଫେଟାରିଆ । ମନହେଲେ କିଛି କଫି ଓ ସ୍ନାକ୍ସ ନେଇପାରନ୍ତି ।

ଏସ୍‌କାଲେଟ୍‌ର୍‌ରେ ବେସ୍‌ମେଣ୍ଟକୁ ଓହ୍ଲାଇ ଆସିଲୁ । ସେଠି ଦେଖିଲୁ ଅନେକଗୁଡ଼ିଏ ସୁସଜ୍ଜିତ ଦୋକାନ । କାଫେଟାରିଆ ବ୍ୟତୀତ ଅନେକ ଦୋକାନରେ ବିକ୍ରୀ ହେଉଥାଏ ଆର୍ଟସ୍ କ୍ରାଫଟ୍‌ସ୍ ଓ ପୋଷାକ ଇତ୍ୟାଦି ଅନେକ ସାଜସରଞ୍ଜାମ । ସେସବୁ ଦୋକାନ ଉପରେ ଆଖି ବୁଲେଇ ଦେଖିଲି ପୃଥିବୀର ବିଭିନ୍ନ ଦେଶର ଲୋକ ଦୋକାନ ଖୋଲି ନିଜ ନିଜ ଦେଶର ସାଂସ୍କୃତିକ ପ୍ରତୀକ ଭଳି ଦ୍ରବ୍ୟ ସବୁ ବିକ୍ରୀ କରୁଚନ୍ତି । ତା' ଭିତରେ ଭାରତୀୟ ଦୋକାନ ଅଛି କି ନାହିଁ ଜାଣିବାକୁ ଆଖି ବୁଲୋଉ ବୁଲୋଉ ନଜର ପଡ଼ିଲା ଜଣେ ଦୋକାନଦାର ଉପରେ । ଲୋକଟି ଦିଶୁଥାଏ ଆମ ଭାରତୀୟ ପରି । ପାଖକୁ ଯାଇ ପଚାରି ବୁଝିଲି ସେ ଶ୍ରୀଲଙ୍କାର ଲୋକ । ଏଇ ଜାତିସଙ୍ଘ ଅଫିସ୍‌ରେ ବହୁବର୍ଷ ଚାକିରି କଲା-ପରେ ସଦ୍ୟ ଅବସର ନେଇଚନ୍ତି । ଦୋକାନଟି ତାଙ୍କ ପତ୍ନୀଙ୍କର– ବର୍ତ୍ତମାନ ଏଇ ଦୋକାନଟିକୁ ଚଳାଉଚନ୍ତି ଭଦ୍ରଲୋକ । ଦୋକାନରେ ଥାଏ ଶ୍ରୀଲଙ୍କାର ନାରୀମାନଙ୍କର ପୋଷାକ ପରିଧାନ ବ୍ୟତୀତ ଅନ୍ୟାନ୍ୟ ହସ୍ତଶିଳ୍ପ ସାମଗ୍ରୀ । ଶୁଣିଲି, ତାଙ୍କ ପତ୍ନୀ ଜାତିସଙ୍ଘର ''ଓ୍ୱିମେନ୍‌ସ୍ ଲିଗ୍‌ର''ର ଜଣେ ସଭ୍ୟା ।

ପିଲାମାନଙ୍କୁ ଖୁବ୍ ଭୋକହଉଥାଏ । ଗୋଟିଏ କ୍ୟାଫେଟାରିଆ ଭିତରକୁ ପଶିଲୁ । ସେଇଠି ଶେଷହେଲା ଆମର ଜାତିସଙ୍ଘ ପରିଦର୍ଶନ । ହାତରେ ବହୁତ ସମୟ ତଥାପି ଥାଏ । ମହେଶ ପ୍ରସ୍ତାବ କଲେ, ''ଚାଲନ୍ତୁ, ନ୍ୟୁୟର୍କର ପ୍ରସିଦ୍ଧ କାଥଲିକ୍ ଚର୍ଚ୍ଚ ସେଣ୍ଟ୍ ପ୍ୟାଟ୍ରିକ୍ ଚର୍ଚ୍ଚ ଦେଖି ଆସିବା ।''

## ସେଣ୍ଟ୍ ପ୍ୟାଟ୍ରିକ୍ କାଥେଡ୍ରାଲ୍, ନ୍ୟୁୟର୍କ (ତା ୨୬ ଜୁଲାଇ, ୧୯୯୩)–

ନ୍ୟୁୟର୍କର ସେଣ୍ଟ୍ ପ୍ୟାଟ୍ରିକ୍ କାଥେଡ୍ରାଲ୍ ରୋମାନ୍ କାଥିଲିକ୍ ସଂପ୍ରଦାୟର ଏକ ବିଶାଳ ଚର୍ଚ୍ଚ । କଳାତ୍ମକ ସ୍ଥାପତ୍ୟ ଦୃଷ୍ଟିରୁ ଏହାର ସ୍ୱାତନ୍ତ୍ୟ ମଧ୍ୟ-ଯୁଗୀୟ ୟୁରୋପୀୟ କାଥେଡ୍ରାଲ୍ ଗୁଡିକର ସମକକ୍ଷ । କଲେଜଛାତ୍ର ବୟସରେ କଟକର ଗୋଟିଏ ଦି'ଟି ଚର୍ଚ୍ଚ ଭିତରକୁ ଯାଇଥିଲି । ରୋମାନ୍ କାଥଲିକ୍ ଚର୍ଚ୍ଚମାନଙ୍କରେ ମଦର୍ ମେରିଙ୍କ ମୂର୍ତ୍ତିଟିଏ ବ୍ୟତୀତ ଯୀଶୁଖ୍ରୀଷ୍ଟ ଓ କ୍ରସ୍– ଏଇ ତିନିଟି ମୂର୍ତ୍ତି ରହିଥିବା ଲକ୍ଷ୍ୟ କରିଥିଲି । କିନ୍ତୁ ପ୍ରୋଟେଷ୍ଟାଣ୍ଟ୍ ଚର୍ଚ୍ଚରେ କେବଳ କ୍ରସ୍ ବ୍ୟତୀତ ଅନ୍ୟ କିଛି ହେଲେ ଦେବଦେବୀ ବା ସନ୍ଥମାନଙ୍କ ପ୍ରତିକୃତି ରଖାଯିବା ନିଷେଧ ବୋଲି ମତେ ମୋ' ଖ୍ରୀଷ୍ଟିୟାନ୍ ସାଙ୍ଗମାନେ କହନ୍ତି । ତାର କାରଣ ପରେ ପଢିଲି ଖ୍ରୀଷ୍ଟଧର୍ମର ଇତିହାସରୁ । ଏହି ନିଷେଧର ଆଦ୍ୟ ପ୍ରବର୍ତ୍ତକ ଥିଲେ ଖ୍ରୀଷ୍ଟଧର୍ମର ସଂସ୍କାରକ ମାର୍ଟିନ୍ ଲୁଥର୍ ।

ତେବେ କିଛିବର୍ଷ ତଳେ ପ୍ରସିଦ୍ଧ ଗ୍ରୀକ୍ ସାହିତ୍ୟିକ କାଜାଣ୍ଟ୍‌ଜାକିସ୍‌ଙ୍କ ପ୍ରଣୀତ ଏକ ଚମତ୍କାର ଜୀବନୀ ପୁସ୍ତକ 'ସେଣ୍ଟ୍ ଫ୍ରାନ୍ସିସ୍' ପଢିଥିଲି । ସେଥିରୁ ଅବଗତ ହୋଇଥିଲି ଯେ ଦ୍ୱାଦଶ ଖ୍ରୀଷ୍ଟାବ୍ଦରେ, ସେଣ୍ଟ୍ ଫ୍ରାନ୍ସିସ୍‌ଙ୍କ ସମୟରେ, ରୋମାନ୍ କାଥିଲିକ୍ ଚର୍ଚ୍ଚ ମାନଙ୍କରେ ମୂର୍ତ୍ତିପୂଜାର ପ୍ରଚଳନ ଥିଲା । ଚର୍ଚ୍ଚରେ ହିନ୍ଦୁମନ୍ଦିର ପରି ପୂଜାର୍ଚ୍ଚନା କରାଯାଉଥିଲା । ଠାକୁରଙ୍କୁ ଧୂପ ଦୀପ ନୈବେଦ୍ୟ ଅର୍ପଣ କରାଯାଉଥିଲା । କାଜାଣ୍ଟ୍ ଜାକିସ୍ ସେ ବହିରେ ଲେଖିଛନ୍ତି କିଶୋର ଫ୍ରାନ୍ସିସ୍‌ଙ୍କ ମା' ପୁଅର ଆଡବାୟାପଣିଆକୁ ଲକ୍ଷ୍ୟ କରି ତାକୁ ବାଟକୁ ଆଣିବାକୁ ଚର୍ଚ୍ଚରେ ପୂଜା କରାଇଥିଲେ ଓ ପୁଅ ପାଇଁ ପାଦୁକ / ପ୍ରସାଦ ଆଣିଥିଲେ । ସେ ପାଦୁକରେ ଥିଲା କିଛି 'ବାସିଲ୍' ପତ୍ର ମଧ୍ୟ । ବାସିଲ୍ କହିଲେ ଆମେ ବୁଝୁ ତୁଳସୀ । ତା'ମାନେ ସେଣ୍ଟ୍ ଫ୍ରାନ୍ସିସ୍‌ଙ୍କ ସମୟରେ (ଦ୍ୱାଦଶ ଶତାବ୍ଦୀରେ) ଚର୍ଚ୍ଚରେ ପୂଜାବିଧି ସହିତ ହିନ୍ଦୁ ପୂଜାବିଧିର କେତେକ ସାମଞ୍ଜସ୍ୟ ରହିଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଏ ସାମଞ୍ଜସ୍ୟକୁ ଅସ୍ୱୀକାର କରାଯାଇ ଦୁଇଧର୍ମ ଭିତରେ ପାର୍ଥକ୍ୟକୁ ଅତ୍ୟଧିକ ଗୁରୁତ୍ୱ ଦେବା ଫଳରେ ଧାର୍ମିକ ବିବାଦ ସୃଷ୍ଟିକରିବାରେ ସମର୍ଥ ହୋଇଥିଲେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ପ୍ରଚାରକବର୍ଗ ।

ତେବେ ଚର୍ଚ୍ଚରେ ମୂର୍ତ୍ତିପୂଜା ଚଳେନା କି ତା' ଭିତରେ ଧୂପଦୀପ ଦ୍ୱାରା ଠାକୁର ପୂଜା ହୁଏନା– ମୋର ଏଇ ଧାରଣା ସଂପୂର୍ଣ୍ଣ ଅବାନ୍ତର ପ୍ରମାଣିତ ହେଲା ସେଦିନ ସନ୍ଧ୍ୟାରେ । ସେହି କାଥେଡ୍ରାଲ୍ ଭିରରକୁ ଯାଇ ଦେଖିଲି– ସେଇ ବିଶାଳ ପ୍ରାର୍ଥନାଗୃହର ଚାରିକାନ୍ଥର କଡେକଡେ ବାଇବେଲ୍ ବର୍ଣ୍ଣିତ ବହୁ ସନ୍ଥମାନଙ୍କର ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତିମାନ ସ୍ଥାପିତ ହୋଇଚନ୍ତି ଏବଂ ପ୍ରତି ପ୍ରତିମୂର୍ତ୍ତିଙ୍କ ପାଦପାଖରେ ଧାଡି ଧାଡି ହେଇ ମହମବତି ପ୍ରଜ୍ୱଳିତ ହେଇଚି । ତା' ସହିତ ଗୋଛା ଗୋଛା ଜଳନ୍ତା ଅଗରବତୀ ବତୀଦାନୀମାନଙ୍କରେ ଖୋଷାଯାଇ ସ୍ୱର୍ଗୀୟ ମହକରେ ସମଗ୍ର କାଥେଡ୍ରାଲ୍‌ର ବାତାବରଣ ପବିତ୍ର ସୁବାସରେ ମହକି ଉଠୁଚି ।

ସେଇ ପବିତ୍ର ବାତାବରଣ ଭିତରେ ପ୍ରବେଶ କରିବା ମାତ୍ରେ ମୋର ଭାବାନ୍ତର

ଘଟିଲା । ଚର୍ଚ୍ଚର କାର୍ପେଟେଡ୍ ଫ୍ଲୋର୍ ଉପରେ ବସିପଡିଲି ଓ ଧ୍ୟାନମଗ୍ନ ହୋଇଗଲି । ଆଜି ମୋର ଆରାଧ୍ୟା ଦେବୀ ଥିଲେ ମାତା ମେରୀ । ଶିଶୁ ଯୀଶୁଙ୍କୁ କୋଳରେ ଧରିଥିବା ମାଡୋନାଙ୍କ ପ୍ରତିମୂର୍ତ୍ତିକୁ ମନରେ ଧ୍ୟାନ କରୁ କରୁ କେତେ ସମୟ ବିତିଗଲା । ମହେଶ ମତେ ଡାକିଲେ । ମୋ ହାତକୁ ଗୋଟିଏ କ୍ୟାଣ୍ଡଲ୍ କପ୍ ଓ କିଛି ଅଗରବତୀ ଧରେଇଦେଇ କହିଲେ– ଏଠାର ବିଧି ଅନୁସାରେ ସନ୍ଥମାନଙ୍କୁ ପାଦାର୍ଘ୍ୟ ଅର୍ପଣ କରାଯାଏ । ଚାଲନ୍ତୁ ସମସ୍ତେ ମିଳିମିଶି ଧୂପଦୀପ ଦେବା ସନ୍ଥମାନଙ୍କ ପାଦରେ ।

ପାଦାର୍ଘ୍ୟ ଅର୍ପଣ ପରେ ମୁଁ ଜାଣିବାକୁ ଚାହିଁଲି ଏ ପ୍ରସିଦ୍ଧ କାଥେଡ୍ରାଲ୍‌ରେ କୌଣସି ନାରୀ ସନ୍ଥ ବା ଦେବୀ ଦେବତାଙ୍କ ପୂଜା ହୁଏନା ନାହିଁ । ଜଣେ ପ୍ରିଷ୍ଟ୍‌ଙ୍କୁ ପାଖରେ ପାଇ ମୁଁ ତାଙ୍କୁ ମୋ ମନକଥା ପଚାରିଲି । ସେ ମତେ ସନ୍ଦେହରେ କିଛି ସମୟ ଚାହିଁଲେ । ଯେତେବେଳେ ସେ ଜାଣିଲେ ମୁଁ ଜଣେ ଭାରତୀୟ ହିନ୍ଦୁ ତାଙ୍କ ମୁହଁରେ ହସ ଫୁଟିଉଠିଲା । ସେ ବୁଝିପାରିଲେ ମୋ ମନକଥା ।

ମୋ ହାତ ଧରି ସେ ମତେ ଡାକିନେଲେ ପଲ୍‌ପିଟ୍ ପାଖକୁ । ପଲ୍‌ପିଟ୍‌ର ମଧ୍ୟ-ଭାଗରେ ଉଜ୍ଜ୍ୱଳ ଆଲୋକରେ ଆଲୋକିତ ହେଉଥିବା ଏକ ବିଶାଳ କ୍ରୁଶର ଠିକ୍ ପଛପଟକୁ ଆଙ୍ଗୁଠିରେ ଦେଖାଇ କହିଲେ, ‘‘ହେଇ ଦେଖନ୍ତୁ ସେଠି– ମଦର୍ ମେରିଙ୍କ ସେଇ ବିଶାଳ ଷ୍ଟାଚ୍ୟୁ ! ଏ ହେଉଚନ୍ତି ଗ୍ୱାଡାଲୁପ୍ ଠାକୁରାଣୀ– ଦେଖିଲେ ?’’

ପଲ୍‌ପିଟ୍‌ର ପଛପଟର ଝାପ୍‌ସା ଆଲୋକିତ ଏକ ସ୍ଥାନରେ ଦେଖିପାରିଲି ମଦର ମେରିଙ୍କ ସେଇ ବିରାଟ ପ୍ରତିମୂର୍ତ୍ତିଟିକୁ । ତାଙ୍କ କୋଳରେ ଶିଶୁ ଯୀଶୁ ! ପୁଣି ମଦରଙ୍କ ଗ୍ୱାଡାଲୁପ୍ ନାମ ସହିତ ମୁଁ ପରିଚିତ ଥିଲି । ମେକ୍ସିକୋରେ ଗ୍ୱାଡାଲୁପଙ୍କୁ ସ୍ଥାନୀୟ ଲୋକେ ପୂଜା କରନ୍ତି ଅବିକଳ ହିନ୍ଦୁରୀତିରେ ବୋଲି ରିଡର୍ସ ଡାଇଜେଷ୍ଟରୁ ଅନେକ ବର୍ଷ ତଳେ ପଢିଥିଲି । ସେ ହେଉଚନ୍ତି ସେଠାର ଠାକୁରାଣୀ– ଖୁବ୍ ପ୍ରତ୍ୟକ୍ଷ ଦେବୀ । ମତେ ଲାଗିଲା ବୋଧହୁଏ ଧ୍ୟାନରେ ମୁଁ ଯୋଉ ମେରୀ ମୂର୍ତ୍ତିଙ୍କୁ ଦେଖିଥିଲି ସେ ହଉଚନ୍ତି ଏଇ ଗ୍ୱାଡାଲୁପ୍, ଯାହାଙ୍କୁ ରଖାଯାଇଚି ଏଠି ସବୁରି ଦୃଷ୍ଟି ଅନ୍ତରାଳରେ । ବିହ୍ୱଳିତ ହୋଇପଡିଲି । ସେଇ ବିହ୍ୱଳକଣ୍ଠରେ ପାଦ୍ରୀଙ୍କୁ ପଚାରିଲି, ‘‘ଫାଦର୍ ! ଗ୍ୱଡାଲୁପ୍‌ଙ୍କୁ କାହିଁକି ସବୁରି ଦୃଷ୍ଟି ଅଗୋଚରରେ ଏମିତି ଅନ୍ଧାରରେ ଏଠି ଲୁଚେଇ ରଖାଯାଇଚି ?’’

ପ୍ରିଷ୍ଟ୍‌ଙ୍କ ସ୍ୱର ଶୁଣାଗଲା– ସତେକି ସେ ବ୍ୟକ୍ତିଗତ ଭାବେ ଅନୁତପ୍ତ– ‘‘ଦିନେ ମଦର୍ ଏ ଚର୍ଚ୍ଚରେ ଥିଲେ ସବୁରି ସମ୍ମୁଖରେ । ସେ ଥିଲେ ଅଗ୍ରବନ୍ଦ୍ୟ । କିନ୍ତୁ ଆଜି ସେ ଅବସ୍ଥା ବଦଳିଯାଇଚି– ସେଥିପାଇଁ ମୂର୍ତ୍ତିଟିକୁ ପଛପଟକୁ ଘୁଞ୍ଚାଯାଇଚି । ସେ ଏକ ଲମ୍ବା-କାହାଣି– ଇତିହାସର ବିଷୟ । ଚାଲନ୍ତୁ...’’

ସେଣ୍ଟ୍ ପ୍ୟାଟ୍ରିକ୍ ଚର୍ଚ୍ଚରୁ ବିଦାୟନେଲୁ । ଆଜି ରାତିରେ ଆମର ରହଣି ପାଇଁ ବ୍ୟବସ୍ଥା କରିଥାନ୍ତି ମହେଶ ତାଙ୍କର ଜଣେ ଆତ୍ମୀୟ ରାଜା ପଣ୍ଡାଙ୍କ ଘରେ । ସେ ବାରିପଦାର ଲୋକ–

ନ୍ୟୁୟର୍କରେ ଏକ ଭାରତୀୟ ହୀରା ବ୍ୟବସାୟୀଙ୍କ ଫାର୍ମରେ ସେ ବର୍ତ୍ତମାନ କାମକରନ୍ତି । ତାଙ୍କ ବସାଘର ହଡ୍‌ସନ୍ ନଦୀ ଆରପାରି ସହର କ୍ୱିନ୍‌ସ୍‌ରେ । ଆମକୁ ପୁଣି ଫେରିବାକୁ ହେବ ସକାଳର ସେଇ କ୍ୱିନ୍‌ସ୍‌ବରୋ ସେତୁ ବାଟେ ତାଙ୍କ ବସାଘରକୁ । ବିଶାଳ ନ୍ୟୁୟର୍କ ସହରରେ ରାତିରେ ବାଟ ଖୋଜିବା କାଠିକରପାଠ । ଅନେକବାର ବାଟବଣା ହେଇ ଶେଷରେ ଶ୍ରାନ୍ତ-କ୍ଲାନ୍ତ ଅବସ୍ଥାରେ ଆମେ ପହଞ୍ଚିଲୁ ଶ୍ରୀମାନ୍ ରାଜା ପଣ୍ଡାଙ୍କ ଘରେ । ସେଇ ବାଟବଣା ବେଳେ ଥରେ ଆମ କାର୍ ପଶିଯାଇଥିଲା ନ୍ୟୁୟର୍କର କୌଣସି ଏକ ସ୍ଲମ୍‌ଏରିଆ ଭିତରକୁ । ନ୍ୟୁୟର୍କର ଏ ସହର ତଳି ଜାଗା ସବୁ ଅତି ମାରାତ୍ମକ ସ୍ଥାନ ବୋଲି ଶୁଣିଥିଲୁ ସେ ସଂପର୍କରେ ଅନେକ କାହାଣୀ । ପୁଣି ରାତିରେ ଏ ଜାଗାରେ ଚୋର ଡକାୟତ ଲୁଟେରାମାନଙ୍କର ଆଡ୍‌ଡା ବନେ ବୋଲି ଅନେକ ବନ୍ଧୁ ସେମାନଙ୍କ ଅଭିଜ୍ଞତାରୁ କହିବା ଶୁଣିଥିଲି ମୁଁ । ସେ ଯାହାହେଉ ସେପରି କିଛି ଦୁର୍ଯୋଗ ଘଟିନଥିଲା ଆମ ଭାଗ୍ୟକୁ ସେ ସନ୍ଧ୍ୟାରେ । ବରଂ ଗୋଟିଏ କଳାଲୋକଙ୍କ ବସ୍ତି ଭିତରକୁ ଆମ କାର୍ ପଶିଯିବା ପରେ ମହେଶ ହତାଶ ହୋଇ ଗାଡି ଅଟକେଇଥିଲେ । ଦେଖିଲୁ ଦଳଦଳ କଳାଲୋକ ବସିଚନ୍ତି ଘରପିଣ୍ଡାରେ– ଅବିକଳ ଆମ ଗାଁମାନଙ୍କରେ ସନ୍ଧ୍ୟା ବେଳେ ଦାଣ୍ଡପିଣ୍ଡାରେ ବସି ବୁଢାବୁଢା ଲୋକେ ଗପସପରେ ମଜଗୁଲ୍ ରହିଲାଭଳି ସେ ଦୃଶ୍ୟ ।

ଟିକେ ଆଶ୍ୱସ୍ତ ଲାଗିଲା– ସେଇ କଳାଲୋକଙ୍କ ସାଙ୍ଗେ କଥାହେଲା ପରେ । ସେମାନେ ଆମକୁ ଫେରିବା ବାଟ ଦେଖେଇଦେଲେ । ଖୁବ୍ ମେଳାପି ମଧ୍ୟ ମନେହେଲେ କଥାବର୍ତ୍ତାରୁ । ଏଇ ବସ୍ତିରେ ଦେଖିଲୁ– ରାସ୍ତା ଉପରେ ନଳାପାଣି (ସ୍ୟୁଅରେଜ୍ ମଇଳାପାଣି) ବୋହି ଚାଲିଥାଏ ଠିକ୍ ଆମ କଟକର ଗଳିରାସ୍ତା ବୁଡେଇ ନଳାପାଣି ଚାଲିଲା ପରି ! ନ୍ୟୁୟର୍କ ଦର୍ଶନର ପ୍ରଥମଦିନ ସରିଲା ସେଇଭଳି– ଏକ ଦଫାରେ ସଦର ଆଉ ମଫସଲ ଦେଖାନ୍ତିରେ ।

## ନ୍ୟୁୟର୍କ ଭ୍ରମଣ (ଦ୍ୱିତୀୟ ଦିନ) (ତା ୨୭, ଜୁଲାଇ,୧୯୯୩)

ସକାଳ ଦଶଟାରେ ଶ୍ରୀ ରାଜା ପଣ୍ଡାଙ୍କ ଘର ଛାଡିଲୁ । ଭୀଷଣ ଖରା । ଠିକ୍ ଭୁବନେଶ୍ୱରରେ ମେ' ମାସ ଦି'ପହରରେ ଟାଣ ଖରାଭଳି ତାତି ଘର ବାହାରେ । ପହଞ୍ଚିଲୁ ସମୁଦ୍ର ଉପକୂଳ ନ୍ୟୁୟର୍କ ହାର୍‌ବର୍‌ରେ । ସେଠି ଫେରିଘାଟରେ ଅପେକ୍ଷା କରିଥାଏ ଗୋଟିଏ ଷ୍ଟିମର୍ । ଟିକେଟ୍ କାଟି ସେଥିରେ ଏଲିସ୍ ଆଇଲାଣ୍ଡକୁ ଯିବାକୁ ହୁଏ । ସେଇ ଏଲିସ୍ ସନ୍ନିକଟ ଅନ୍ୟଏକ ଦ୍ୱୀପର ନାମ 'ଲିବର୍ଟି ଆଇଲାଣ୍ଡ' । ଏହାରି ଉପରେ ଦ୍ୱୀପ ଅବସ୍ଥିତ ବିଶ୍ୱ-ବିଖ୍ୟାତ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଯାହା ସଂପର୍କରେ ବହୁ ସାହିତ୍ୟ ପଢାଯାଇଥାଏ ଅତୀତରେ । ଆମେରିକା ଭ୍ରମଣରେ ଆସିଲେ ନ୍ୟୁୟର୍କର ଏଇ ବିଶିଷ୍ଟ ଲ୍ୟାଣ୍ଡମାର୍କ ଦର୍ଶନୀୟ ସ୍ଥାନ ଦେଖିବା ଜୀବନର ଗୋଟିଏ ବଡ ସୁଯୋଗ । ଲମ୍ବା ଧାଡି ଲାଗିଥାଏ ଟିକେଟ୍ ଘର ସାମ୍‌ନାରେ । ଆମେ ସେ ଘର ପାଖକୁ ଗଲୁ ।

ଏଇ ଟିକେଟ୍ ଘରର ଗୋଟିଏ ସ୍ୱତନ୍ତ୍ର ଇତିହାସ ଅଛି ଯାହା ଆମେରିକାର ଉପନିବେଶବାଦ-ଯୁଗର ମୂଳ ଇତିହାସ ବୋଲି କୁହାଯାଏ । ଚାରିଆଡକୁ ଆଖି ବୁଲେଇ ଦେଖିଲି– ଟିକେଟ୍‌ଘରଟି ଗୋଟିଏ ଅର୍ଦ୍ଧବୃତ୍ତାକାର ଇଟା-କାନ୍ଥ ଓ ଖପରଲି ଟାଇଲ୍ ଛୁଆଣି ନୁଆଁଣିଆ ଚାଳି ଘରର ମଝାମଝି ଜାଗାରେ ଅବସ୍ଥିତ । ଖପରଲି ଘରଟି ଦିଶୁଥାଏ କୋଉ ପୁରୁଣା ଯୁଗର ଭଳି ! ନ୍ୟୁୟର୍କ ଭଳି ଏକ ସ୍କାଇସ୍କ୍ରେପର୍ ଭରପୂର୍ ମେଟ୍ରୋପଲିସ୍ ଭିତରେ ଏଭଳି ଗୋଟାଏ ପୁରୁଣାକାଳିଆ ଟାଇଲ୍ ଛପରଘର ଦେଖି ବିସ୍ମିତ ହେଲି । ଅନୁସନ୍ଧାନକରି ବୁଝିଲି– କଲମ୍ବସଙ୍କ ଆମେରିକା ଆବିଷ୍କାର ପରେ ପରେ ଉପନିବେଶବାଦୀମାନଙ୍କର ପ୍ରଥମ ଆଗମନ ସମୟରୁ ଏ ଘରଟି ଏଠି ରହିଚି– ତା'ମାନେ ଷୋଡଶ ବା ସପ୍ତଦଶ ଶତାବ୍ଦୀର ନିଶ୍ଚୟ ! ଏତେ ପୁରୁଣା ଘରଟିଏ ଦେଖି ଆଗ୍ରହ ବଢ଼ିଲା । ମହେଶ ଧାଡିରେ ଠିଆହେଇ ଆମ ପାଇଁ ଷ୍ଟିମର୍‌ରେ ଟିକେଟ୍ କାଟିବା ଅବସରରେ ମୁଁ ଟିକିଏ ବୁଲିଆସିଲି ଚାରିଆଡ ।

ଟିକେଟ୍ ଘର ହତା ବାହାରେ ଦେଖିଲି ଗୋଟାଏ ପଥରଘର । କାନ୍ଥରେ ଲେଖା-ହେଇଚି– "Castle Clinton" । ସେ କ୍ଲିଣ୍ଟନ୍ ନିଶ୍ଚୟ ଏବର ପ୍ରେସିଡେଣ୍ଟ୍ କ୍ଲିଣ୍ଟନ୍ ନୁହନ୍ତି । ସେ ଯାହାହେଉ, ଏଇ ଦୁର୍ଗ ଅର୍ଥାତ୍ ଛୋଟ ପଥର ଘର ସାମ୍ନା ବଗିଚାରେ ଗୋଟିଏ ବିରାଟ ବ୍ରୋଞ୍ଜ ମୂର୍ତ୍ତି ଦେଖିଲି ! ମୂର୍ତ୍ତିଟାର ଉଚ୍ଚତା ପ୍ରାୟ ବାର / ଚଉଦ ଫୁଟ । ଯୋଉ ପିଣ୍ଡି ଉପରେ ସେ କଳାକୃତିଟିକୁ ସ୍ଥାପନ କରାଯାଇଥାଏ ସେଇଟି ବି ବେଶ୍ ଉଚ୍ଚ ଓ ତାର ଆକୃତି ଏକ ବୋଇତ ପରି । କଳା କୃତିଟିକୁ ନିରୀକ୍ଷଣ କଲି ।

ବ୍ରୋଞ୍ଜ ପ୍ରତିମୂର୍ତ୍ତିଟିର ଚାରିପାଖେ ବୁଲି ବୁଲି ଦେଖିଲି । ପ୍ରତିମୂର୍ତ୍ତିରେ ରୂପାୟିତ ହୋଇଥାନ୍ତି ଚାରିଜଣ ପୁରୁଷ, ଜଣେ ନାରୀ ଓ ଗୋଟିଏ ଅବୋଧ ବାଳୁତ ଶିଶୁ । ଜଣେ ପୁରୁଷ ବୋଇତ କଡପଟେ ଆଣ୍ଠୁମାଡି ତଳର ପାଣିକୁ ଝୁଙ୍କିପଡି ବ୍ୟାକୁଳଦୃଷ୍ଟିରେ ଲକ୍ଷ୍ୟ କରୁଥାଏ । ଅନ୍ୟ ଜଣେ ପୁରୁଷ ଚରିତ୍ର ଉର୍ଦ୍ଧ୍ୱମୁଖ ହୋଇ ଆକାଶକୁ ଅନେଇଥାଏ– ସତେକି ସେ ପ୍ରାର୍ଥନାରତ ରହିଥାଏ ବୋଇତ କୂଳରେ ପହଞ୍ଚିବା ପୂର୍ବରୁ । ଅନ୍ୟ ଦୁଇଜଣ ପୁରୁଷ ଚରିତ୍ର ସେଇଭଳି ବିଭିନ୍ନ ମୁଦ୍ରାରେ ନିଜନିଜର ଆଶଙ୍କିତ ଆନନ୍ଦ ଜନିତ ମନୋଭାବ ପ୍ରକାଶ କରୁଥାନ୍ତି । ନାରୀ ଚରିତ୍ରଟି ଦିଶୁଥାଏ ସବୁଠୁ ବେଶୀ ଅନିଶ୍ଚିତ ଓ ଦୟନୀୟ । ସେ ହୋଇପଡିଥାଏ ଭୟାର୍ତ୍ତ । କେବଳ ତା' କାନ୍ଧରେ ନିଘୋଡ ନିଦରେ ଶୋଇପଡିଥିବା ଶିଶୁଟିର ମୁହଁରେ ଫୁଟିଉଠୁଥାଏ ଏକ ସ୍ୱର୍ଗୀୟ ନିରୀହତା ଓ ଟିକିଏ ସ୍ମିତହାସ– ସତେକି ସେ ସ୍ୱପ୍ନ ଦେଖୁଥାଏ ଏକ ଅନିର୍ବଚନୀୟ ସୁଖକର ଓ ସମସ୍ତ ସଂଭାବନାମୟ ଏକ ଭବିଷ୍ୟତ୍‌ର ।

ପୁରୁଷ ଚରିତ୍ରମାନଙ୍କର ବେଶ ପୋଷାକରୁ ଜାଣିହେଲା– ସେମାନେ ଭିନ୍ନ ଭିନ୍ନ ଦେଶର ଭିନ୍ନ ଭିନ୍ନ ଧର୍ମାବଲମ୍ବୀ ଲୋକ । ଜଣକର ମୁଣ୍ଡରେ ସାହେବୀ ହ୍ୟାଟ୍ ତ ଅନ୍ୟଜଣକ ମୁଣ୍ଡରେ ଥାଏ ଏକ ଡେଙ୍ଗା ମୁସଲମାନୀ ଟୋପି । ନିଶ୍ଚିତ ଭାବେ ସେଇ ବିଭିନ୍ନ ଦିଗଦେଶାଗତ ବିଭିନ୍ନ ସଂସ୍କୃତି ଓ ଧର୍ମବିଶ୍ୱାସୀ ଲୋକମାନେ ଏଇ ଜାହାଜଟିରେ

ସବାର ହୋଇ ଏକ ନୂଆ ଦେଶର ସନ୍ଧାନରେ ଅଥଳ ଦରିଆ ପାରିହେଇ ଆସିଥାନ୍ତି ଓ ବହୁ ଦିନ ଧରି ଏକ ଅଜଣା ସମୁଦ୍ରରେ ବୋଇତ ବାହି ଆସିଲା ପରେ ପହଞ୍ଚି ଯାଇଥାନ୍ତି ଶେଷରେ ଏଇଠି ! ବ୍ରଂଜ ମୂର୍ତ୍ତିର ତଳେ ଖୋଦେଇ ହେଇଥାଏ–

"The Immigrants : Dedicated to the people of all nations who entered America through Castle Garden. In memory of Samuel Rudin 1896-1975, whose parents arrived in America in 1883. !"

## ବିଶ୍ୱ-ସୈନିକ ସ୍ମାରକୀ ମନୁମେଣ୍ଟ୍ (Soldier Universal)–

କ୍ଲିଣ୍ଟନ୍ ଗାର୍ଡେନରେ ଆହୁରି ଅନେକ ଦର୍ଶନୀୟ ସ୍ଥାପତ୍ୟ ବୁଲି ଦେଖିଲୁ । ସେ ଭିତରେ ମୁଖ୍ୟ ହେଲା କୋରିଆ ଯୁଦ୍ଧର ସ୍ମାରକୀ ଷ୍ଟାଚ୍ୟୁ– ''ସୋଲ୍‌ଜର୍ ୟୁନିଭର୍ସାଲ୍'' । ଏ ସ୍ଥାପତ୍ୟର ବିଷୟବସ୍ତୁ ହେଲା ୧୯୫୦ରେ କୋରିଆ ଯୁଦ୍ଧରେ ଯେଉଁ ସବୁ ଦେଶ ଏକ ଆନ୍ତର୍ଜାତିକ ସେନାବାହିନୀରେ ଯୋଗଦେଇ ଆତ୍ମବଳି ଦେଇଥିଲେ ସେଇ ସହଯୋଗର ସ୍ମାରକୀ ସ୍ୱରୂପ ସ୍ଥାପତ୍ୟଟି ନିର୍ମିତ ଓ ନ୍ୟୁୟର୍କ ହାର୍‌ବୋର୍‌ର ସେଇ କ୍ଲିଟନ୍ ଗାର୍ଡେନ୍‌ରେ ଅବସ୍ଥାପିତ । ଏଥିରେ ଶାନ୍ତିବାହିନୀରେ ସହଯୋଗୀ ଦେଶମାନଙ୍କର ନାମାଙ୍କନ ସହିତ ସେସବୁ ଦେଶର ସେନାବାହିନୀର ପ୍ରତ୍ୟେକ ଶହୀଦ ସୈନିକଙ୍କ ନାମ ଉତ୍‌କୀର୍ଣ୍ଣ କରାଯାଇଛି ।

ଏଥିରେ ଲିପିବଦ୍ଧ ବିଭିନ୍ନ ଦେଶର ନାମ ଭିତରେ ଭାରତର ନାମ ଥିବା ଦେଖି ଖୁସି ଲାଗିଲା । କିନ୍ତୁ ଅନ୍ୟ ଦେଶମାନଙ୍କର ହଜାର ହଜାର ଶହୀଦ ସୈନିକମାନଙ୍କ ଭିତରେ ଭାରତର କୌଣସି ଜଣେ ବି ଶହୀଦ ସୈନିକର ନାମ ଉଲ୍ଲେଖ ନଥିବା ଦେଖି ଆଶ୍ଚର୍ଯ୍ୟ ହେଲି । ଏହା କ'ଣ ସମ୍ଭବ– କୋରିଆ ଯୁଦ୍ଧରେ ଭାରତର ଶାନ୍ତିବାହିନୀର ଜଣେ ବି ସୈନିକ ରକ୍ତଦେଇ ଶହୀଦ ହୋଇନାହାନ୍ତି ?

ଏଇ ଐତିହାସିକ ସ୍ଥାପତ୍ୟର ସ୍ରଷ୍ଟା ହେଲେ ଶିଳ୍ପୀ ଜନ୍ ଏରିକସନ୍ ।

## ଦ୍ୱିତୀୟ ବିଶ୍ୱଯୁଦ୍ଧର ସ୍ମୃତି-ସ୍ଥଳ

ନ୍ୟୁୟର୍କ ହାର୍‌ବୋର୍‌ର ଅନ୍ୟତମ ଦର୍ଶନୀୟ ସ୍ଥାନ ହେଲା ଦ୍ୱିତୀୟ ବିଶ୍ୱଯୁଦ୍ଧର ସ୍ମୃତି-ସ୍ଥଳ । ଏଠି ଗୋଟିଏ ବଡ କ୍ୟାମ୍ପସ୍ ଭିତରେ ଗ୍ରାନାଇଟ୍ ପଥରରେ ନିର୍ମିତ ଗୋଟିଏ ବିରାଟ କାନ୍ଥଭଳି ଫଳକ ସିମେଣ୍ଟ୍ ବେସ୍ ଉପରେ ଦଣ୍ଡାୟମାନ ଅବସ୍ଥାରେ ଦେଖିବାକୁ ପାଇଲୁ । ସେଇ ଫଳକଗୁଡିକ ଉପରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ (୧୯୪୧-୪୫) ଯୋଗ-ଦେଇ ହଜାର ହଜାର ସଂଖ୍ୟାରେ ଶହୀଦ୍ ହୋଇଥିବା ଆମେରିକାର ସ୍ଥଳ, ଜଳ ଓ ଆକାଶବାହିନୀର ଅଫିସର୍ ଓ ସୈନିକମାନଙ୍କର ନାମ ଖୋଦେଇ ହେଇଥିବା ଦେଖିଲୁ । ଏହାର ନିର୍ମାତା ସ୍ଥପତିଙ୍କ ନାମ ଆଲ୍‌ବିନୋ ମୋନକା (Albino Monca) ।

## ପ୍ରସିଦ୍ଧ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଦ୍ୱୀପକୁ ଯାତ୍ରା

ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଦେଖିବା ପାଇଁ ଷ୍ଟିମର୍ ଟିକେଟ୍ କିଣାସରିଥାଏ । ଆମେମାନେ ଷ୍ଟିମର୍ ଘାଟକୁ ଗଲୁ ଓ ଅପେକ୍ଷାରତ ଷ୍ଟିମର୍ ଉପରକୁ ଉଠିଲୁ । ଷ୍ଟିମର୍‌ଟି ବେଶ୍ ବଡ– ପ୍ରାୟ ହଜାରେ ଯାତ୍ରୀଙ୍କ ବସିବାପାଇଁ ସେଥିରେ ଥାଏ ତଳ ଉପର ହେଇ ଦୁଇଟି କି ତିନୋଟି ଡେକ୍ । ଡେକ୍ ଗୁଡିକରେ ଡିଲକ୍ସ ଲକ୍‌ଜୁରି ଯାତ୍ରୀବାହୀ ବସ୍ ପରି ବସିବା ବ୍ୟବସ୍ଥା କରାଯାଇଥାଏ । ଆମେ ସବା ଉପର ଡେକ୍‌କୁ ଉଠି ଛଅଟି ଚଉକିରେ ବସିଗଲୁ । ଆଖି ବୁଲେଇ ଦେଖିଲି ଆମ ଚାରିପାଖେ ଶତାଧିକ ନାରୀ ପୁରୁଷ ଓ ଶିଶୁ ଟୁରିଷ୍ଟ୍ ଭରି-ହେଇଗଲେଣି । ସେମାନେ ବିଭିନ୍ନ ଦେଶର ନାଗରିକ– ବିଭିନ୍ନ ଭାଷାରେ କଥାବାର୍ତ୍ତା ହେଉଥାନ୍ତି । ସେମାନଙ୍କ ଭିତରେ କେତୋଟି ଭାରତୀୟ ପରିବାରର ଉପସ୍ଥିତି ଲକ୍ଷ୍ୟକଲି । ଜଣେ ଦି'ଜଣ ଲୋକଙ୍କ ମୁହଁ ଦୂରରୁ ମନେହେଲା ଚିହ୍ନା ଚିହ୍ନା– କିନ୍ତୁ ବାର୍ତ୍ତାଳାପର ସୁଯୋଗ ନଥାଏ ସେତେବେଳେ । ଯେ ଯାହା ଜାଗା ଧରି ଆରାମରେ ବସିଯିବା ପାଇଁ ତତ୍ପର ଥା'ନ୍ତି ସମସ୍ତେ ।

କିଛି ସମୟ ପରେ ହର୍ଣ୍ଣ ବାଜିଲା । ଷ୍ଟିମର୍‌ଟି କ୍ରମେ କ୍ରମେ କୂଳ ଛାଡି ସମୁଦ୍ର ଭିତରକୁ ଚାଲିଲା । ନ୍ୟୁୟର୍କ ହାର୍‌ବୌର୍ ଏକ ବିସ୍ତୀର୍ଣ୍ଣ ଜଳଭାଗ । ପୂର୍ବ ଦିଗ୍‌ବଳୟରେ, ସମୁଦ୍ର ଭିତରେ, ଦିଶୁଥାଏ ଗୋଟଏ ମସ୍ତବଡ ଲମ୍ବାବ୍ରିଜ୍– ଏ ବ୍ରିଜ୍‌ଟା ସମ୍ଭବତଃ ନ୍ୟୁୟର୍କ ବନ୍ଦରକୁ ଜାହାଜମାନଙ୍କର ପ୍ରବେଶ ଦ୍ୱାର । ଏହାକୁ ତଳୁ ଉପରକୁ ଟେକି ବଡ ବଡ ଜାହାଜମାନଙ୍କୁ ବନ୍ଦର ଭିତରକୁ ପ୍ରବେଶ ଓ ପ୍ରସ୍ଥାନର ନିୟନ୍ତ୍ରଣ କରାଯାଏ । ବ୍ରିଜ୍‌ର ସେପାଖେ ଦିଶୁଥାଏ ବସ୍ତୀର୍ଣ୍ଣ ଜଳଧି– ଆଟଲାଣ୍ଟିକ୍ ମହାସାଗର । ସେଇ ପାଖେ ରହିଥାଏ ୟୁରୋପ, ଆଫ୍ରିକା ଏବଂ ଆମ ଭାରତ ସମେତ ସମଗ୍ର ଏସିଆର ଭୂ-ଭାଗ । ସେଇ ପାଖରୁ ଆସିଥିଲେ କଲମ୍ବସ୍ ପାଞ୍ଚଶହ ବର୍ଷ ତଳେ ଭାରତକୁ ଜଳପଥ ସନ୍ଧାନରେ, ଆଉ ଆବିଷ୍କାର କରିଥିଲେ ଅନ୍ୟ ଏକ ଭାରତ ଯାହା ଆଜି ଆମେରିକା ନାମରେ ପରିଚିତ । ମୁଁ କିଛି ସମୟ ପାଇଁ ବିମୋହିତ ଅବସ୍ଥାରେ ସେଇ ଦିଗକୁ ଅନାଇ ରହିଲି । ଏଇ ଭିତରେ ଆମ ଷ୍ଟିମର୍ ଗତି କରି ଚାଲିଥାଏ ହାର୍‌ବୌର୍ ଭିତରେ ଅନେକ ଦୂର ।

ଆଗକୁ ଚାହିଁଲି । ଦୂର ଦିଗ୍‌ବଳୟରେ ଅସ୍ପଷ୍ଟ ଭାବେ ଦୃଶ୍ୟମାନ ହେଉଥାଏ ଏକ ଦ୍ୱୀପ । ସେଇ ଦ୍ୱୀପଟି ସମ୍ଭବତଃ ଆମର ଗନ୍ତବ୍ୟସ୍ଥଳ– "ବେଡ୍‌ଲୋସ" ଦ୍ୱୀପ ଯାହାକୁ କିଛି ବର୍ଷ ପୂର୍ବେ ଫ୍ରାନ୍ସରୁ ଆନୀତ ସେଇ ବିଶ୍ୱବିଖ୍ୟାତ ପ୍ରତିମୂର୍ତ୍ତିଟିର ପ୍ରତିଷ୍ଠା ପରେ, ପୁନର୍ନାମିତ କରାଯାଇଥିଲା– "ଲିବର୍ଟି ଏନଲାଇଟେନିଂ" ଦ୍ୱୀପ ନାମରେ । ଅଧୁନା ଏଇ ଦ୍ୱୀପକୁ କୁହାଯାଉଚି କେବଳ ଲିବର୍ଟି ଦ୍ୱୀପ ।

ଆମେରିକା ଦର୍ଶନାର୍ଥୀ ଜଣେ ଭ୍ରମଣକାରୀ ପାଇଁ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଯାତ୍ରା-

ବାସ୍ତବରେ ଏକ ତୀର୍ଥଯାତ୍ରା ପରି । ଅବଶ୍ୟ ମୋ ପରି ଜଣେ ଭାରତୀୟ ପାଇଁ ଅମେରିକାରେ କୌଣସି ଧାର୍ମିକ ତୀର୍ଥକ୍ଷେତ୍ର ନାହିଁ; କିନ୍ତୁ ଆଧୁନିକ କାଳରେ କୌଣସି ଦେଶର ଐତିହାସିକତାର ସ୍ମୃତି ଜାଗ୍ରତ କରିପାରୁଥିବା ଏକ ପ୍ରାଚୀନ ମନୁମେଣ୍ଟ୍ ମଧ୍ୟ ଏକ ଧାର୍ମିକ ତୀର୍ଥଠାରୁ କିଛି କମ୍ ଭାବଉଦ୍ରେକକାରୀ କ୍ଷେତ୍ର ନୁହେଁ । ତେଣୁ ମୁଁ ଆମେରିକାର ଆଧୁନିକ ଇତିହାସ ସହିତ ଜଡିତ ଏଇ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଭଳି କେତେକ ସ୍ଥାନ ଦର୍ଶନକୁ ତୀର୍ଥଦର୍ଶନର ମର୍ଯ୍ୟାଦା ଦେଇଥାଏ । ଏ ଦେଶକୁ ଭ୍ରମଣରେ ପୂର୍ବରୁ ଆସି ମୁଁ ସେପରି ବହୁ ସ୍ମରଣୀୟ ଐତିହାସିକ ତୀର୍ଥ ଦର୍ଶନ କରିଥିଲି । ଆଜି ସେଇ ଅନୁସନ୍ଧିତ୍ସୁ ମନ ନେଇ ବାହାରିଥିଲି ଲିବର୍ଟି ଦ୍ୱୀପରେ ଅଧିଷ୍ଠିତା ''ଲିବର୍ଟାସ୍'' ଦେବୀଙ୍କ ଦର୍ଶନ ପାଇଁ । ଏଠାରେ ସ୍ମରଣୀୟ– ''ଲିବର୍ଟାସ୍'' ହେଉଛନ୍ତି ରୋମାନ୍ ପୁରାଣ ବର୍ଣ୍ଣିତ 'ମୁକ୍ତିଦେବୀ' ଯାହାଙ୍କୁ ଏକଦା ପ୍ରାଚୀନ ରୋମ୍‌ରେ ଦେବୀ ରୂପେ ମନ୍ଦିରରେ ପ୍ରତିଷ୍ଠା କରାଯାଇ ପୂଜାର୍ଚ୍ଚନା କରାଯାଉଥିଲା ।

ଷ୍ଟାଚ୍ୟୁ ଅଫ୍ ଲିବର୍ଟି ବାସ୍ତବରେ ସେଇ ମୁକ୍ତିଦେବୀଙ୍କର ଏକ ପ୍ରତିକୃତି । ଏହାର ଇତିହାସ ମଧ୍ୟ ଏକାନ୍ତ ରୋମାଞ୍ଚକର । ଊନବିଂଶ ଶତାବ୍ଦୀର ଜଣେ ବିଖ୍ୟାତ ଫରାସୀ ମୂର୍ତ୍ତିକାର (ସ୍କଲ୍‌ପ୍ଟର୍) ଫେଡ୍ରିକ୍ ଅଗଷ୍ଟା ବାର୍ଥୋଲଡି (Frederic Auguste Barthold) ଏଇ ମୂର୍ତ୍ତିଟି ନିର୍ମାଣ କରିବାର ସଂକଳ୍ପ ଗ୍ରହଣ କରିଥିଲେ । ବ୍ରିଟିଶ୍ ଉପନିବେଶବାଦ ବିରୁଦ୍ଧରେ ଆମେରିକାର ସ୍ୱାଧୀନତା ସଂଗ୍ରାମ ସମଗ୍ର ବିଶ୍ୱରେ ଚହଳ ପକାଇସାରିଥାଏ । ଆମେରିକାର ସ୍ୱାଧୀନତାର ମୂଳମନ୍ତ୍ର ଥିଲା ''ମୁକ୍ତି'' ବା ''ଫ୍ରିଡମ୍'' ଯାହା ସେମାନେ ହାସଲ କରିପାରିଥିଲେ ୧୭୭୬ରେ; ଅର୍ଥାତ୍ ଫରାସୀ ବିପ୍ଳବ (୧୭୮୯-୧୭୯୯)ର ତେରବର୍ଷ ପୂର୍ବରୁ । ଫରାସୀ ବିପ୍ଳବର ପୂର୍ବ-ସୂରୀଭାବେ ଆମେରିକାର ସ୍ୱାଧୀନତା ସଂଗ୍ରାମକୁ ବିଚାରକଲେ ମନେହେବ ଆମେରିକାହିଁ ଯଥାର୍ଥରେ ପାଶ୍ଚାତ୍ୟ ଚିନ୍ତାଧାରରେ ସର୍ବ-ପ୍ରାଧାନ୍ୟ ଲାଭକରିଥିବା ମୁକ୍ତିମନ୍ତ୍ର 'ଲିବର୍ଟି' ପରିକଳ୍ପନାର ଆଦ୍ୟ-ଗୁରୁ । ସ୍ୱାଧୀନତାପ୍ରେମୀ ଆମେରିକାବାସୀଙ୍କ ପ୍ରତି ଫରାସୀ ଜନସାଧାରଣଙ୍କ ସ୍ନେହ ସୌହାର୍ଦ୍ଦ୍ୟ ଓ ସମ୍ମାନବୋଧକୁ ରୂପାୟିତ କରିବା ଉଦ୍ଦେଶ୍ୟରେ ୧୮୮୬ ଖ୍ରୀଷ୍ଟାବ୍ଦରେ ସେ ଦେଶର ଜଣେ ବିଖ୍ୟାତ ଶିଳ୍ପୀ ଫେଡ୍ରିକ୍ ବାର୍ଥଲୋଡିଙ୍କୁ ଫରାସୀ ସରକାର ସେଇ ଅମୂଲ୍ୟ ମାନବିକ ମୂଲ୍ୟବୋଧ ମୁକ୍ତି ବା 'ଫ୍ରିଡମ୍'ର ଏକ ପ୍ରତିମୂର୍ତ୍ତି ନିର୍ମାଣ ଦାୟିତ୍ୱ ଅର୍ପଣ କରିଥିଲେ । ଯଥା ସମୟରେ ପ୍ରତିମୂର୍ତ୍ତିଟି ନିର୍ମିତ ହୋଇଥିଲା । କିନ୍ତୁ ଏହା ଉଭୟ ଆକାରରେ ଓ ଓଜନରେ ଏତେ ବିଶାଳ ଏବଂ ଅଣାୟତ୍ତ ହୋଇପଡିଥିଲା ଯେ ଏହାକୁ ପୂର୍ଣ୍ଣାଙ୍ଗ ଭାବେ ଜାହାଜରେ ତିନି ହଜାର ମାଇଲ୍ ଆଟ୍‌ଲାଣ୍ଟିକ୍ ମହାସାଗର ପାରି କରାଇ ଆମେରିକାକୁ ସ୍ଥାନାନ୍ତର ସଂଭବ ହୋଇନଥିଲା । ତେଣୁ ଏହାକୁ ବିଭିନ୍ନ ଅଂଶରେ ବିଭକ୍ତ କରି ରପ୍ତାନୀ କରାଯାଇଥିଲା ଏବଂ ନ୍ୟୁୟର୍କ ହାର୍‌ବୌର୍ ଭିତରେ ଏକ କ୍ଷୁଦ୍ର ଦ୍ୱୀପରେ ଅଂଶଗୁଡିକୁ ଏକତ୍ର କରାଯାଇ ସମ୍ପୂର୍ଣ୍ଣ ପ୍ରତିମୂର୍ତ୍ତିଟିକୁ ପ୍ରତିଷ୍ଠା କରାଯାଇଥିଲା ।

## ଷ୍ଟାଚ୍ୟୁ ଅଫ୍ ଲିବର୍ଟିର ରୂପରେଖ ଓ କଳାତ୍ମକ ମର୍ମ

ଲିବର୍ଟି ପ୍ରତିମୂର୍ତ୍ତିର ବିଷୟବସ୍ତୁ ହେଲା– ସେ ଜଣେ ଦେବୀ ଯେ ନିଜର ଡାହାଣ ହାତରେ ଧରିଛନ୍ତି ଏକ ପ୍ରଜ୍ଜ୍ୱଳିତ ମଶାଲ ଯାହା ପ୍ରତୀକିତ କରେ ମୁକ୍ତିର । ଏହାଙ୍କ ମୁଣ୍ଡରେ ଅଛି ଏକ ସାତକୋଣିଆ ମୁକୁଟ । ମୁକୁଟର ସାତଟି କୋଣ ସମଗ୍ର ପୃଥିବୀର ସପ୍ତ-ମହାଦେଶ ଓ ମହାସାଗରର ପ୍ରତୀକ । ମୂର୍ତ୍ତିର ବାମ ହାତରେ ଅଛି ଏକ ଫଳକ । ଫଳକ ଉପରେ ଉତ୍‌କୀର୍ଣ୍ଣ ହୋଇଛି ଆମେରିକାର ସ୍ୱାଧୀନତା ଦିବସର ତାରିଖ : (July-IV–MDCCL) OCTVT, ଅର୍ଥାତ୍ ଜୁଲାଇ ୪, ୧୭୭୬ । ବେଶ-ପୋଷାକରୁ ମୁକ୍ତିଦେବୀ ଦିଶନ୍ତି ଜଣେ ପ୍ରାଚୀନ ରୋମାନ୍ ରମଣୀ ପରି । ଏହାଙ୍କ ପାଦ ତଳେ ଏକ ଛିନ୍ନ-ଶୃଂଖଳ । ଏଇ ଶୃଂଖଳକୁ ନିଜର ଦୁଇ ଅନୁବନ୍ଧିତ ପଦରୁ ଛିଣ୍ଡାଇପକାଇ ମୁକ୍ତିଦେବୀ ସମଗ୍ର ବିଶ୍ୱର ଅବଦମିତ ଜନସମାଜକୁ ମୁକ୍ତିମନ୍ତ୍ରରେ ଉଦ୍‌ବୁଦ୍ଧ କରିବାକୁ ସମୁଦ୍ରଗର୍ଭରୁ ସ୍ୱୟଂ ଆବିର୍ଭୂତା ହୋଇଛନ୍ତି ।

ଏହି ମୂର୍ତ୍ତିର ଉଚ୍ଚତା ୧୫୨ ଫୁଟ, ଓଜନ ଅକଳ୍ପନୀୟ ୨୨୫ ମେଟ୍ରିକ୍ ଟନ୍ । ଯେଉଁ ପୀଠ ବା ପେଡେଷ୍ଟାଲ୍ ଉପରେ ମୂର୍ତ୍ତିଟି ପ୍ରତିଷ୍ଠା ପାଇଛି ସେଇ ପୀଠର ଉଚ୍ଚତା ସମୁଦ୍ର ପତ୍ତନରୁ ୧୫୪ ଫୁଟ୍ । ଏହି ପୀଠଟି ମଧ୍ୟ ଏକ ପ୍ରତୀକ । ବାହ୍ୟ ଗଠନରୁ ଜଣାଯାଏ ପୀଠଟି କୌଣସି ସାଧାରଣ ମଣ୍ଡପ ବା ବେଦୀ ପରି ଚତୁର୍ଭୁଜାକାର ନୁହେଁ– ଏହା ଏକ ବହୁକୋଣୀ ବେଦିକା । କୋଣ ସଂଖ୍ୟା ଏଗାର ।

ଏହି ଅତିକାୟ ବିଶାଳ ମୂର୍ତ୍ତିଟିର ନିର୍ମାଣ କୌଶଳ ସଂପର୍କରେ କୁହାଯାଏ– ଏହାର ଶରୀର ଗଠନରେ ବ୍ୟବହୃତ ହୋଇଚି– ଏକ ଲୌହ ଛାଞ୍ଚ ଉପରେ ପିଟାଯାଇଥିବା ତିନିଶହ ଖଣ୍ଡ ତମ୍ବା ଫଳକ– ସେହି କାରଣରୁ ମୂର୍ତ୍ତିଟିର ଓଜନ ଏତେ ବେଶୀ (୨୨୫ ମେଟ୍ରିକ୍ ଟନ୍) ।

ଏହି ବହୁ ବିଶାଳ ଓ ଅଦ୍ୱିତୀୟ ମୂର୍ତ୍ତିଟିର ପ୍ରତିଷ୍ଠା ପୂର୍ବରୁ ଏହାର ନିର୍ମାଣ କାର୍ଯ୍ୟରେ ଏକାକୀ ଫ୍ରାନ୍ସର ଅବଦାନ ପରିବର୍ତ୍ତେ ଆମେରିକାବାସୀଙ୍କର କିଛି ସହଯୋଗର ମଧ୍ୟ କାମନା କରାଯାଇଥିଲା । ତେଣୁ ନ୍ୟୁୟର୍କର ଏକ ପାର୍କ ଆଗରେ ପ୍ରସ୍ତାବିତ ମୁକ୍ତିଦେବୀଙ୍କ ମସାଲ୍ ଧାରଣୀ ଡାହାଣ ହାତଟିକୁ କେବଳ ପ୍ରଦର୍ଶିତ କରାଯାଇ ଆମେରିକାବାସୀଙ୍କ ପକ୍ଷରୁ କିଯତ୍ ଆର୍ଥିକ ଅବଦାନ ପାଇଁ ବିଜ୍ଞାପନ ଜାରି କରାଯାଇଥିଲା । ଏହି ପାଣ୍ଠି ସଂଗଠନର ନେତୃତ୍ୱ ନେଇଥିଲେ ତତ୍‌କାଳୀନ ଜଣେ ବିଶିଷ୍ଟ ଆମେରିକାନ୍ ପ୍ରକାଶକ ଜୋସେଫ୍ ପୁଲିଜର୍ (Joseph Pulitzer) । ଏହା ଫଳରେ ସେ କାଳର ଆମେରିକାର ଅନ୍ୟୂନ ଲକ୍ଷେ କୋଡିଏ ହଜାର ନାଗରିକ ଲିବର୍ଟି-ମୂର୍ତ୍ତି ଗଠନ ଦିଗରେ ଯତ୍‌ସାମାନ୍ୟ ଆର୍ଥିକ ସହାୟତା ପ୍ରଦାନ ପାଇଁ ଆଗଭର ହୋଇଥିଲେ । ନ୍ୟୁୟର୍କ ହାରବୋର୍‌ର ବେଡ୍‌ଲୋସ୍ ଦ୍ୱୀପରେ ଏହାର ପ୍ରତିଷ୍ଠାପର୍ବ ଏକ ଜାତୀୟ ଅନୁଷ୍ଠାନ ରୂପେ ପାଳିତ ହୋଇଥିଲା । ଆମେରିକାର

ତତ୍‌କାଳୀନ ପ୍ରେସିଡେଣ୍ଟ ଏହାକୁ ଆନୁଷ୍ଠାନିକ ଭାବେ ତା ୨୮ ଅକ୍ଟୋବର ୧୮୮୬ରେ ପ୍ରତିଷ୍ଠା କରିଥିଲେ ।

ଆମ ଷ୍ଟିମର୍ ଯଥା ସମୟରେ ବେଡ୍‌ଲୋସ୍ ବା ଲିବର୍ଟୀ ଦ୍ୱୀପରେ ଲାଗିଲା । ଯାତ୍ରୀମାନେ ସମସ୍ତେ ଅତ୍ୟନ୍ତ ଉଦ୍‌ଗ୍ରୀବ ଭାବେ ଷ୍ଟିମରରୁ ଓହ୍ଲେଇପଡି ଧାଇଁଲେ କୂଳକୁ । କୂଳରୁ କିଛି ଦୂରରେ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ପୀଠ ଅବସ୍ଥିତ । ଏ ପୀଠ ଉପରକୁ ଯିବାକୁ ହେଲେ ଧାଡିରେ ଠିଆହେଇ ଟିକେଟ୍ କିଣିବାକୁ ପଡେ ଦର୍ଶକମାନଙ୍କୁ । ଆମେ ଟିକେଟ୍ କିଣିଲୁ । କିନ୍ତୁ ଶୁଣିବାକୁ ପାଇଲୁ ଏଇ ପୀଠର ଗୋଟିଏ ନିର୍ଦ୍ଦିଷ୍ଟ ଉଚ୍ଚତା ଯାଏଁ ଆରୋହଣ କରିବାକୁ ଅନୁମତି ମିଳିପାରିବ– ତା' ଉପରକୁ ନୁହେଁ ।

ଏହାର କାରଣ ଥିଲା– ସେଇ ବର୍ଷ ଫେବୃଆରି ମାସରେ ନ୍ୟୁୟର୍କର ଆଖିଦୃଷ୍ଟିଆ ସେଇ "ଟ୍ୱିନ୍-ଟାୱାର୍" ବା "ୱାର୍ଲଡ୍-ଟ୍ରେଡ୍-ସେଣ୍ଟର୍" ଉପରେ ଇସ୍‌ଲାମିକ୍ ଆତଙ୍କବାଦୀ ଆକ୍ରମଣ ପରେ ଆମେରିକାର ଏଇ ସମ୍ମାନଜନକ ରାଷ୍ଟ୍ରୀୟ ପ୍ରତୀକ ଉପରେ ଆକ୍ରମଣର ଆଶଙ୍କା ଦେଖାଯାଇଥିଲା । ତେଣୁ ଦର୍ଶକମାନଙ୍କ ପ୍ରତି କଠୋର କଟକଣା ଜାରି ଆରମ୍ଭ ହୋଇଯାଇଥିଲା ଆମେରିକାର ସବୁ ଗୁରୁତ୍ୱପୂର୍ଣ୍ଣ ଦର୍ଶନୀୟ ସ୍ଥାନରେ ।. ତା ଫଳରେ ଏଠାରେ ମଧ୍ୟ କଟକଣା ଜାରିକରାଯାଇ ଦର୍ଶକମାନଙ୍କୁ ଷ୍ଟାଚ୍ୟୁ ଅଫ୍ ଲିବର୍ଟିଠାରୁ ଦୂରରେ ରଖାଯିବାର ସୁରକ୍ଷା ବ୍ୟବସ୍ଥା ଜାରିକରାଯାଇଥାଏ କିଛି ଦିନ ଆଗରୁ ।

ଆମେ ପେଡେଷ୍ଟାଲ୍ ଉପର ପର୍ଯ୍ୟନ୍ତ ଏକ ସ୍ପାଇରାଲ୍ ସିଡିରେ ଚଢିଲୁ । ସେଇ ଉଚ୍ଚତାରୁ ଆମେରିକାର ଭୂଭାଗ ଓ ଚତୁଃପାର୍ଶ୍ୱର ବିସ୍ତୃତ ସାମୁଦ୍ରିକ ଶୋଭା ଉପଭୋଗକରି ତଳକୁ ଓହ୍ଲାଇ ଆସିଲୁ ।

ସମଗ୍ର ଦ୍ୱୀପଟି ଅବଶ୍ୟ ବିଶେଷ ବଡ ନୁହେଁ । ଆମେରିକାର ଅନ୍ୟତମ ଏକ ନ୍ୟାସନାଲ୍ ପାର୍କ ହୋଇଥିବାରୁ ଏହାକୁ ଅତ୍ୟନ୍ତ ଯତ୍ନର ସହିତ ଆମେରିକା ସରକାର ସଂରକ୍ଷିତ କରିଥିବା ଲକ୍ଷ୍ୟକଲି । ପାର୍କରେ ବୁଲୁବୁଲୁ ମନେହେଲା ଏହା ଯେପରି ଆମ ଭାରତର ମୁମ୍ବାଇ ନିକଟବର୍ତ୍ତୀ ଏଲିଫାଣ୍ଟା ଦ୍ୱୀପ ଭଳି ଏକ ଛୋଟ ଦ୍ୱୀପ; କିନ୍ତୁ ଆନ୍ତର୍ଜାତିକ ଟୁରିଷ୍ଟ୍ ମାନଚିତ୍ରରେ ଏହାର ସ୍ଥାନ ଅତି ଉଚ୍ଚରେ ।

ପ୍ରାୟ ଦୁଇଘଣ୍ଟା ପର୍ଯ୍ୟନ୍ତ ବୁଲାବୁଲି କଲା ପରେ ଷ୍ଟିମର୍ ହର୍ଣ୍ଣ ଶୁଣିପାରି ଆମେ ଫେରିଆସିଲୁ ସମୁଦ୍ରକୂଳକୁ । ଷ୍ଟିମରରେ ଯେ ଯାହା ଜାଗାରେ ବସିଗଲୁ । ଷ୍ଟିମର୍ କୂଳ ଛାଡିଲା । ପର୍ବତଶିଖରରେ ଠିଆହୋଇ ମୁକ୍ତିର ମଶାଲ୍ ଦେଖାଇ ଆମକୁ ବିଦାୟଦେଲେ ମୁକ୍ତିଦେବୀ ସେଦିନ । ଏକ ତୀର୍ଥ-ଦର୍ଶନ ପରି ଆତ୍ମ-ସନ୍ତୋଷରେ ପ୍ରାଣ ଭରିଉଠୁଥାଏ ମୋ ।

ଫେରନ୍ତି ବାଟରେ ଆମ ଷ୍ଟିମର୍ ନ୍ୟୁୟର୍କ ହାର୍‌ବୋର୍‌ର ଅନ୍ୟ ଏକ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଦ୍ୱୀପରେ କିଛି ସମୟ ପାଇଁ ଲଙ୍ଗର୍ ପକାଇଥିଲା । ଦ୍ୱୀପର ନାଁ– ଏଲିସ୍ ଆଇଲାଣ୍ଡ୍ ।

**ଏମ୍ପାୟାର୍ ଷ୍ଟେଟ୍ ବିଲ୍ଡିଂ (The Empire State Building) ଭ୍ରମଣ**

ନ୍ୟୁୟର୍କ ଭ୍ରମଣରେ ଆସୁଥିବା ବିଦେଶୀ ଭ୍ରମଣକାରୀଙ୍କ ପାଇଁ ଏ ସହରର କେତେକ ଅବଶ୍ୟ ଦର୍ଶନୀୟ ସ୍ଥାନ ରହିଚି । ସେ ଭିତରେ ଏମ୍ପାୟାର୍ ଷ୍ଟେଟ୍ ବିଲଡିଂ ଓ ବିଶ୍ୱ ବାଣିଜ୍ୟ କେନ୍ଦ୍ର (ୱଲର୍ଡ ଟ୍ରେଡ୍‌ସ ସେଣ୍ଟର)ର ''ଟ୍ୱିନ୍ ଟାୱାର୍'' ପ୍ରମୁଖ । କିନ୍ତୁ ସେ ବର୍ଷ ଫେବୃଆରି ମାସରେ ବିଶ୍ୱ-ବାଣିଜ୍ୟ ସଂସ୍ଥାର ତଳମହଲାରେ ଘଟିଯାଇଥିବା ବୋମା ବିସ୍ଫୋରଣ କାଣ୍ଡ ପରେ ଏ ବିଲଡିଂ ଭିତରକୁ ଭ୍ରମଣକାରୀଙ୍କ ପ୍ରବେଶ ଉପରେ କେତେକ କଟକଣା ଜାରି ହୋଇଥିବା ଶୁଣି ଆମେ ବାହାରିଲୁ ହାର୍‌ବୋର୍ ନିକଟ ଅନ୍ୟତମ ବିଖ୍ୟାତ ସ୍କାଇ ସ୍କ୍ରେପର୍ ଏମ୍ପାୟାର୍ ଷ୍ଟେଟ୍ ବିଲଡିଂ ବୁଲି ଦେଖିବାକୁ ।

ଉଚ୍ଚତା ଦୃଷ୍ଟିରୁ ଏମ୍ପାୟାର୍ ଷ୍ଟେଟ୍ ବିଲଡିଂ ବିଶ୍ୱ-ବାଣିଜ୍ୟ ସଂସ୍ଥାଠାରୁ କମ୍ ଥିଲେ ବି ଆଧୁନିକ ବୈଜ୍ଞାନିକ ଓ ବୈଷୟିକ ଯୁଗର ଏହା ଏକ ଅସମାନ୍ୟ ସ୍ଥାପତ୍ୟ ଶିଳ୍ପର ନିଦର୍ଶନ ! ଏଥିରେ ଅଛି ସର୍ବମୋଟ ୧୦୨ ମହଲା । ପ୍ରତି ମହଲାରେ ସହସ୍ର କୋଠରୀ ଆଉ ଏ କୋଠରୀଗୁଡ଼ିକ ସରକାରୀ ବେସରକାରୀ ଅଫିସ୍ ଏବଂ ଦୋକାନ ବଜାରରେ ଭରପୂର ଓ ସଦାବେଳେ ଜନଗହଳି ପୂର୍ଣ୍ଣ । ବିଲଡିଂର ବିଭନ୍ନ ସ୍ଥାନରେ ବଡବଡ ଲିଫ୍ଟ ବା ଏସ୍‌କାଲେଟର୍ ସଦାବେଳେ କାର୍ଯ୍ୟରତ । ଅମେ ଗୋଟିଏ ଲିଫ୍ଟ ନେଇ ଉଠିଲୁ ସବା ଉପର ମହଲାକୁ ଯାଇ ସମଗ୍ର ନ୍ୟୁୟର୍କ ସହରର ଚତୁଃର୍ପାଶ୍ୱ ଉପରେ ଆଖି ବୁଲେଇ କିଛି ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିବାକୁ । କିନ୍ତୁ ଜାଣିବାକୁ ପାଇଲୁ– ଲିଫ୍ଟ କେବଳ ୮୬ ମହଲା ଉପର ପର୍ଯ୍ୟନ୍ତ ଉଠିବାକୁ ଅନୁମତି ମିଳିବ– ତା' ଉପରକୁ ନୁହେଁ । ଲିଫ୍ଟର ସୁଇଚ୍ ଚିପି ଆମେ ସିଧା ଚାଲିଲୁ ସେଇ ୮୬ ମହଲାକୁ । ଆମ ସହିତ ମଧ୍ୟ ଥିଲେ ଆହୁରି କେତେଜଣ ବିଦେଶୀ ପର୍ଯ୍ୟଟକ ।

ଛୟାଅଶୀ ମହଲା ଉପରେ ଏକ ପ୍ରଶସ୍ତ ବାଲକୋନି ଭଳି ଲାଣ୍ଡିଂରେ ଆମେ ଲିଫଟ୍‌ରୁ ବାହାରିପଡିଲୁ । ଦେଖିଲୁ ଲାଣ୍ଡିଂକୁ ଲାଗି ଏକ ଖୋଲା ବାରଣ୍ଡା । ସେ ବାରଣ୍ଡାର ଗୋଟିଏ ପାଖରେ ବଡ ବଡ କାଚ ଝରକା । ସେଇ ଝରକାରୁ ଚାହିଁ ଦେଖିଲୁ ଅଦୂରରେ ଦୃଶ୍ୟମାନ ଏକ ମହାଜାଗତିକ ଛବି– ଆଟ୍‌ଲାଣ୍ଟିକ୍ ମହାସାଗରର ପରିବ୍ୟାପ୍ତି ସହିତ ଆକାଶ ଓ ଭୂ-ଭାଗର ମିଳନ ବିନ୍ଦୁରେ ନ୍ୟୁୟର୍କ । ସହରର ଦୃଶ୍ୟରେ ଏକ ବିଶ୍ୱ-ଦର୍ଶନର ଉପଲବ୍ଧି ସ୍ୱତଃ ଜାତ ହେଲା ମୋ ମନରେ । କିଛି ସମୟ ପାଇଁ ସେଇ ଉପଲବ୍ଧି ଭିତରେ ବୁଡିରହି ଦୃଶ୍ୟଟିକୁ ଉପଲବ୍ଧି କଲି । ପରେପରେ ସେଇ ବାରଣ୍ଡାରେ ଆଗକୁ ଆଗକୁ ଯାଇ ବିଭିନ୍ନ ସ୍ଥାନରୁ ଝରକା ସେପାଖ ସେଇ ରହସ୍ୟମୟ ବିଶ୍ୱର ପର୍ଯ୍ୟବେକ୍ଷଣ କରିବାକୁ ଇଚ୍ଛା ହେଲା । ବହୁ ସମୟ ପର୍ଯ୍ୟନ୍ତ ଆମେ ସେଦିନ ସାରା ୮୬ ମହଲାକୁ ପରିକ୍ରମା କରିଥିବା ସେଇ ସୁଦୀର୍ଘ ବାରଣ୍ଡା ବା କରିଡର୍‌ରେ ବୁଲିବୁଲି ଚତୁଃପାର୍ଶ୍ୱର ଦୃଶ୍ୟଗୁଡ଼ିକୁ ଦେଖିବାରେ ମଜ୍‌ଗୁଲ୍ ରହିଲୁ ।

ସମୟ ଅତିବାହିତ ହେଉଥାଏ ଓ ଲଞ୍ଚ ସମୟ ଡେରି ହେଉଥାଏ । ପିଲାମାନେ

ଅସ୍ଥିର ହେଲେଣି । ସୁଲୁମା ଚେତେଇଦେଲା– ଚାଲ ଫେରିବା, ପିଲାଙ୍କୁ ଭୋକଲାଗିଲାଣି ।

ଏମ୍ପାୟାର୍ ଷ୍ଟେଟ୍ ବିଲଡିଂରୁ ବିଶ୍ୱବାଣିଜ୍ୟ କେନ୍ଦ୍ରର ସେଇ ଟାୱାର ଦୁଇଟି ସ୍ପଷ୍ଟ ଦେଖାଯାଉଥାଏ । କିନ୍ତୁ ସେଠିକି ଯିବା ସମ୍ଭବ ନଥିଲା– ଜାଣିଥିଲୁ । ଭାବିଲି ପରଥରକୁ ହୁଏତ ନ୍ୟୁୟର୍କ ଆସିଲେ ବିଶ୍ୱ ବାଣିଜ୍ୟ କେନ୍ଦ୍ରର ୧୦୮ (?) ମହଲା ଉଚ୍ଚକୁ ଯାଇ ଆମେ ପୁଣି ଥରେ ସେଇ ବିଶ୍ୱଦର୍ଶନର ମହନୀୟ ଅନୁଭବର ପୁନରାବୃତ୍ତି କରାଇ ପାରିବି । କିନ୍ତୁ ସେ ସୁଯୋଗ ଆଉ ଜୀବନରେ କେବେବି ଘଟିବାର ନଥିଲା । ୨୦୦୧ ସେପ୍ଟେମ୍ବର ଏଗାର ତାରିଖ ସେ ସୁଯୋଗକୁ ଏକେବାରେ ମୂଳପୋଛ କରିଦେଲା ।

ସନ୍ଧ୍ୟା ପୂର୍ବରୁ ନ୍ୟୁୟର୍କ ଛାଡି ଗ୍ଲାସ୍‌ଟନ୍‌ବରିକୁ ଫେରିବା ପ୍ରୋଗ୍ରାମ୍ । ମହେଶ ତତ୍ପର କରୁଥାନ୍ତି ଆମକୁ । କହୁଥାନ୍ତି, ‘‘ଆପଣମାନେ ନ୍ୟୁୟର୍କ ବୁଲିବାକୁ ଆସିଲେ । କିନ୍ତୁ ଏ ସହରକୁ ଦୁଇଟା ଦିନ ବୁଲି କେହି କଦାପି ପୂରା ଧାରଣା କରିପାରିବନାହିଁ ଏ ବିସ୍ମୟକର ସହରର ପ୍ରକୃତ ଚରିତ୍ର ସଂପର୍କରେ । ଚାଲନ୍ତୁ, ଘରବାହୁଡା ଆଗରୁ ଅନ୍ତତଃ ଥରେ ଏ ସହରର ଗୋଟିଏ ଦି’ଟା ନାମୀ ଜାଗା ଦେଖିନେବେ । ଖବରକାଗଜରେ ନିଶ୍ଚୟ ପଢୁଥିବେ ବରାବର– ଟାଇମ୍ ସ୍କୋୟାର୍, ୱାଲ୍‌ଷ୍ଟ୍ରିଟ୍, ବ୍ରଡ୍‌ୱେ ଥିଏଟର, ରକ୍‌ଫେଲାର୍ ସେଣ୍ଟର୍ ଇତ୍ୟାଦି ଜାଗାଗୁଡିକର । ଚାଲନ୍ତୁ ସେଇ ବାଟେ ଆମେ ଡ୍ରାଇଭ୍‌କରି ଆଖି ପକାଇ ନେବା ସେସବୁ ଜାଗାଗୁଡାକ ଉପରେ ବାହାରୁ ବାହାରୁ ଅନ୍ତତଃ ।’’

ମୁଁ ପଚାରିଲି, ‘‘ମୋର ଦେଖିବାକୁ ଇଚ୍ଛା ଗ୍ରିନ୍‌ୱିଚ୍ ଭିଲେଜ୍– ସେଇଟା କୋଉଠି ? ସେଠି ପରା ଆମେରିକାର ବଡ ବଡ ସାହିତ୍ୟିକ ଆର୍ଟିଷ୍ଟମାନେ ରହୁଚନ୍ତି ? ସେଠିକି ଯାଇ ହୁଅନ୍ତା ନାହିଁ ?’’

ମହେଶ ହାତ ଘଡିକୁ ଚାହିଁଲେ । ମୁଣ୍ଡ ହଲାଇ କହିଲେ, ‘‘ସମୟ ନାହିଁ ଆଜି ହାତରେ । କାଲି ଅଫିସ୍ । ରାତିରେ ନ୍ୟୁୟର୍କରେ ବାଟ ବଣା ହେବା ଅସମ୍ଭବ ନୁହେଁ । ସେ ରହିଲା ଆର ଥରକୁ ।’’

କାର୍ ଚାଲିଲା ପ୍ରଥମେ ଟାଇମ୍ ସ୍କୋୟାର୍ ଦିଗରେ । ସେଠୁ ବ୍ରଡ୍‌ୱେ ଥିଏଟର୍ ଇତ୍ୟାଦି ବାଟ ଦେଇ ଆମେ ଫେରିଲୁ ପୁଣି ଆମ ଜାଗା କନେକ୍ଟିକଟ୍‌ର ଗ୍ଲାସ୍‌ଟନ୍‌ବରିକୁ । ବାଟରେ ଅନେକବାର ବାଟ ହୁଡିଲେ ବି ତାହା ଥିଲା ନ୍ୟୁୟର୍କର ଅନ୍ୟ କେତୋଟି ପ୍ରମୁଖ ଅଂଚଳ ଦର୍ଶନପାଇଁ ଆମର ସୁଯୋଗ । ଗୋଟାଏ ଜାଗାରେ ନଜରକୁ ଆସିଲା– ସହରର ଏକ ଅଞ୍ଚଳ ଯୋଉଠି କାନ୍ଥଗୁଡାକ ଉପରେ ଲେଖାଯାଇଥାଏ ଅବର୍ଜ୍ୟା ଭାଷାରେ ସଚିତ୍ର ଗ୍ରାଫିତି ସବୁ । ସେସବୁରୁ ମନେହେଲା ସେ ଅଞ୍ଚଳଟା ନ୍ୟୁୟର୍କର ସ୍ଲମ୍ ଯୋଉଠି ଥାଏ ଗୁଣ୍ଡା ବଦ୍‌ମାସ୍ ଓ ମଫିଆମାନଙ୍କର ମୁଖ୍ୟ ଆଡ୍ଡା ଜାଗାଘର । ଜାଗାଟା ଦିଶୁଥାଏ ଅବିକଳ କଲିକତାର କୌଣସି ସହରତଳି ଜାଗା ପରି । ସେଠି ଭଙ୍ଗାଦଦରା ସାଇବସ୍ତି ଭଳି ଜାଗା-ଗୁଡାକରେ ଜନ ଜୀବନ ଦିଶୁଥାଏ ଦାରିଦ୍ର୍ୟର ଗନ୍ତାଘର ପରି ଅତ୍ୟନ୍ତ ଅସୁରକ୍ଷିତ ଆଉ

ବିକଳ । ପିଲାମାନେ ରାସ୍ତାରେ ବୁଲୁଥାନ୍ତି ଛିଣ୍ଡା ଲେଙ୍କେଡା ପିନ୍ଧି । ଦଳଦଳ ଲୋକ ବସିଥାନ୍ତି ସ୍ଥାନେସ୍ଥାନେ ରାସ୍ତା କଡରେ ବେଞ୍ଚ୍ ଉପରେ ବା ଗଛମୂଳେ । ତାସ୍ ଖେଳ ଚାଲିଥାଏ । ଅବିକଳ ଆମ ଭାରତୀୟ ସହର ତଳି ପରି ସେ ଦୃଶ୍ୟ ।

''ଏ ଦେଶରେ ଦାରିଦ୍ର୍ୟ କିଛି କମ୍ ନୁହେଁ ନନା !'' ମହେଶ ଚେତେଇଦେଲେ, ''ଏ ଦେଶରେ ଦାରିଦ୍ର୍ୟର ମାତ୍ରା ଶୁଣିଲେ ବିଶ୍ୱାସ ହେବନାହିଁ। ସାତ ବର୍ଷ ତଳେ, ୧୯୮୬ରେ ଦାରିଦ୍ର୍ୟର ମାତ୍ରା ଥିଲା ୧୪.୬ ଶତାଂଶ । ଆମେରିକାର ୨୦ ଶତାଂଶ ପିଲା ଦରିଦ୍ର ପରିବାରରେ ଜନ୍ମ । ଶୁଣିଲେ ଆଶ୍ଚର୍ଯ୍ୟ ଲାଗିପାରେ– ଦେଶର ପ୍ରତି ଦଶରେ ତିନି ଘରର ମୁରବି ହେଲେ ପୁରୁଷବିହୀନ ଗୋରା ସ୍ତ୍ରୀଲୋକମାନେ, ଆଉ ପାଞ୍ଚରୁ ବେଶୀ ଘରର ମୁରବି ହେଲେ ଏକା ଏକା ଘର ଚଳାଉଥିବା କଳା ସ୍ତ୍ରୀଲୋକମାନେ । ଏ ସମସ୍ତେ ଦାରିଦ୍ର୍ୟର ସୀମାରେଖା ତଳେ । ସାରା ଦେଶରେ ତିନି ନିୟୁତ ଲୋକଙ୍କର ଘରଦ୍ୱାର ନାହିଁ– ସେମାନେ ରହନ୍ତି ରାସ୍ତା ଉପରେ । ଏକା ଏଇ ନ୍ୟୁୟର୍କ ସହରରେ ଅଛନ୍ତି ପ୍ରାୟ ୩୦ ହଜାର ବେଘର ଯାଯାବର ଲୋକେ...''

ଆମେ ନ୍ୟୁୟର୍କ ଭିତରେ ବହୁ ସମୟ ବାଟବଣା ହେଇ, ଏ ରାସ୍ତା ସେ ଗଳି ହେଇ ବୁଲିବୁଲି ମ୍ୟାନ୍‌ହାଟାନ୍ ଭିତରେ ଇତସ୍ତତଃ ଢେର୍ ସମୟ ବାଟ ଭୁଲି ଶେଷରେ ମାଡିସନ୍ ଆଭେନ୍ୟୁର ୩୮ ନମ୍ବର ଷ୍ଟ୍ରୀଟ୍ ଜଙ୍କସନ୍‌କୁ ରାସ୍ତା ଠାବକଲୁ । ସେଠୁ ରୁଜ୍‌ଭେଲ୍ଟ ଡ୍ରାଇଭ୍‌ରେ କିଛି ବାଟ ଯାଇ କ୍ୱିନ୍‌ସ୍ ବରୋ ବ୍ରିଜ୍‌ରେ ହଡସନ୍ ପାରିହେଲୁ । ପରେ ପରେ ହାଇୱେ ମିଳିଗଲା– ଇଣ୍ଟର୍ ଷ୍ଟେଟ୍ ହାଇୱେ ନଂ ୯୫ ! ସନ୍ଧ୍ୟା ଗଡିଯାଇଥାଏ । ଭାଗ୍ୟକୁ ଖରାଦିନେ ଏ ଦେଶରେ ସୂର୍ଯ୍ୟ ଅସ୍ତ ଯା'ନ୍ତି ଡେରିରେ । ସନ୍ଧ୍ୟାର ଗୋଧୂଳି ଲାଗିରହେ ରାତି ନଅ ଦଶ ପର୍ଯ୍ୟନ୍ତ । ସେଦିନ ରାତି ବାର ସୁଦ୍ଧା ଆମ ଗାଡି ପଶିଲା ଗ୍ଲାସଟନ୍‌ବରିର ନିପ୍‌ଜିକ୍ ରୋଡ୍ ଘର ଡ୍ରାଇଭ୍-ୱେରେ । ପିଲାମାନେ ନିଘୋଡ ନିଦରେ ଶୋଇପଡିଥାନ୍ତି ଗାଡି ଭିତରେ ।

## ଆଟ୍‌ଲାଣ୍ଟା ସହର ପରିକ୍ରମା (ସି.ଏନ୍.ଏନ୍ କେନ୍ଦ୍ର ଦର୍ଶନ)

କନେକ୍ଟିକଟ୍‌ରୁ ତା. ୨୭ ଅଗଷ୍ଟ ୧୯୯୩ରେ ଆମେ ସ୍ୱାମୀ-ସ୍ତ୍ରୀ ଦୁହେଁ ପ୍ଲେନ୍‌ରେ ହାର୍ଟଫୋର୍ଡରୁ ଆଟ୍‌ଲାଣ୍ଟା ଫେରିଲୁ । ଆଟ୍‌ଲାଣ୍ଟା ଏୟାର୍‌ପୋର୍ଟରେ ବଡ ଝିଅ ଜ୍ୱାଇଁ ବୁଲବୁଲ, ପ୍ରବୀର ଓ ନାତି ପ୍ରତୀକ ଆମ ପାଇଁ ଅପେକ୍ଷା କରିଥାନ୍ତି । ଏୟାର୍‌ପୋର୍ଟରୁ ଆମେ ସିଧା ଚାଲିଲୁ ଆଟ୍‌ଲାଣ୍ଟାର ବିଖ୍ୟାତ ସି.ଏନ୍.ଏନ୍ ଟି.ଭି. ସେଣ୍ଟର୍ ଦେଖିବାକୁ । ଏ ଟି.ଭି. ସେଣ୍ଟର୍‌ର ମାଲିକ ଟେଡ୍ ଟର୍‌ନର୍ (Ted Turner) ଆମେରିକାର ଜଣେ ବିଖ୍ୟାତ ମୁଭି ଷ୍ଟାର । ତାଙ୍କ ପତ୍ନୀ ଅଭିନେତ୍ରୀ ଜେନ୍ ଫଣ୍ଡା (Jane Fonda) ମଧ୍ୟ ସେଇ ଭଳି ଉଚ୍ଚକୋଟୀର ମୁଭି ଷ୍ଟାର ଓ ସେଲିବ୍ରିଟି । ତେବେ ଟେଡ୍ ଟର୍ନର ସେଇ କେତେବର୍ଷ ହେବ ସିନେମା ଜଗତ୍‌ରୁ ବିଦାୟନେଇ ଇଲେକ୍‌ଟ୍ରୋନିକ୍ ମେଡିଆ ପରିଚାଳନା ଓ ନିର୍ଦ୍ଦେଶନାରେ

ନିଜକୁ ନିୟୋଜିତ କରିଥାନ୍ତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସି.ଏନ୍.ଏନ୍ (CNN) ସମ୍ବାଦ ପରିବେଷଣ ସଂସ୍ଥା ସେତେବେଳକୁ ବିଶ୍ୱବ୍ୟାପୀ ହଇଚଇ ସୃଷ୍ଟିକରୁଥାଏ– ବିଶେଷକରି ୧୯୯୧ର ଇରାକ୍ ଯୁଦ୍ଧକ୍ଷେତ୍ରରେ ଘଟୁଥିବା ଯୁଦ୍ଧବିଭୀଷିକାର ଆଖିଦେଖା ଘଟଣାଗୁଡ଼ିକର ଦୃଶ୍ୟାବଳୀର ଛବି ତାଙ୍କ ଟିଭି ଚାନେଲ୍‌ରେ ପ୍ରକାଶ ଓ ପ୍ରଚାର ମାଧ୍ୟମରେ । ଏହାର ଜନାଦୃତି ସେତେବେଳେ ଆମେରିକାର ଅନ୍ୟ କେତେକ ବିଖ୍ୟାତ ନ୍ୟାସ୍‌ନାଲ୍ ଟି.ଭି. ଚାନେଲ୍ ଓ ବି.ବି.ସିର ସମ୍ବାଦ ପରିବେଷଣ ଦକ୍ଷତାର ସମକକ୍ଷ ହୋଇସାରିଥାଏ । ସି.ଏନ୍.ଏନ୍ ସଂସ୍ଥାର ମୁଖ୍ୟ ପ୍ରସାର-କେନ୍ଦ୍ର ଆଟ୍‌ଲାଣ୍ଟାରେ ବୋଲି ପୂର୍ବରୁ ଶୁଣିଥାଏ । ଆମେ ଚାଲିଲୁ ସେଦିନ ସେଇ ସି.ଏନ୍.ଏନ୍ ସେଣ୍ଟର୍ ବୁଲି ଦେଖିବାକୁ ।

ଆଟ୍‌ଲାଣ୍ଟାର ଏଇ CNN ସେଣ୍ଟର୍ ବାସ୍ତବିକ୍ ଏକ ଦର୍ଶନୀୟ ସ୍ଥାନ । ଏହାର ନିଜସ୍ୱ ତେର ମହଲାର ବିଲଡିଂର ଅଷ୍ଟମ ମହଲାରେ ଥାଏ ମୁଖ୍ୟ ରେକର୍ଡିଂ ଓ ବ୍ରଡ୍‌କାଷ୍ଟିଂ ଷ୍ଟୁଡିଓ । ଆଠମହଲା ଉପରକୁ ଏସ୍‌କାଲେଟର୍‌ରେ ଉଠିଲା ପରେ ଦେଖିଲୁ ଏକ ବିଶାଳ କାଚ ଘେରା ହଲ୍ ଭିତରେ ଶତାଧିକ ଟେକ୍‌ନିକାଲ୍ ବ୍ୟକ୍ତି ବିଶେଷ ମୁଣ୍ଡରେ ହେଡଫୋନ୍ ଲଗାଇ କମ୍ପ୍ୟୁଟର୍ ସାମ୍ନାରେ ବସିଚନ୍ତି ଓ ମନ-ଧ୍ୟାନ ଦେଇ ନିଜ ନିଜ କାମରେ ଲାଗିଛନ୍ତି । ସେଠି ସାରା ଫ୍ଲୋର୍ ସ୍ପେସ୍‌କୁ ଦଖଲକରିଥିବା ଷ୍ଟୁଡିଓ ଭିତରେ ଚାଲିଥିବା ବିଭିନ୍ନ କାର୍ଯ୍ୟକ୍ରମକୁ ସେଇ ମୋଟାକାଚର କାନ୍ଥ ବାହାର ପାଖୁ ଲକ୍ଷ୍ୟ କଲୁ ଅନେକ ସମୟ । ଖବରନେଇ ଜାଣିଲୁ CNN ର ବିଶ୍ୱବ୍ୟାପି ରହିଛି ଷାଠିଏଟି ଦେଶରେ ସଂବାଦ ଟ୍ରାନ୍ସମିସନ୍ କେନ୍ଦ୍ର । ସେସବୁ ସଂସ୍ଥାରେ କର୍ମ ନିଯୁକ୍ତ କର୍ମଚାରୀ ସଂଖ୍ୟା ସେତେବେଳେ ଥିଲା– ୬,୭୦୦ । ବର୍ତ୍ତମାନ ଆଟ୍‌ଲାଣ୍ଟାର ଏଇ କେନ୍ଦ୍ରରେ କର୍ମ ନିଯୁକ୍ତି ପାଇଛନ୍ତି– ୨,୭୦୦ ଦକ୍ଷତା ସଂପନ୍ନ ବ୍ୟକ୍ତି ।

କିଛି ସମୟ ସେଇ ଆଠମହଲା ଉପରେ ବିତାଇ ସାରି ଆମେ ଓହ୍ଲେଇ ଆସିଲୁ ବେସ୍-ମେଣ୍ଟକୁ । ସେଠି ଦେଖିଲୁ ଏକ ବିରାଟ ମାର୍କେଟ ଚାଲିଚି । ସେଥିରେ ହରେକ ରକମ ଜିନିଷ ବିକ୍ରୀ ଚାଲିଥାଏ– କିନ୍ତୁ ଅଧିକାଂଶ ଦୋକାନଦାର ଭାରତୀୟ ଲୋକ ! ପଚାରିବୁଝିଲି ଦୋକାନର ମାଲିକ ଓ ସେଲ୍‌ସ୍‌ମେନ୍ ହେଲେ ଗୁଜରାଟର ଲୋକ । ଗୋଟିଏ ଛୋଟିଆ ଦୋକାନରେ ବିକ୍ରୀ ପାଇଁ ରଖାଯାଇଥାଏ– ଚେନାଚୁର୍ ମିକଶ୍ଚର୍ ଆଉ ପେଡା ଇତ୍ୟାଦି । ଦୋକାନରୁ କିଛି ମିକଶ୍ଚର୍ କିଣିବା ଆଳରେ ଦୋକାନଦାର ସାଙ୍ଗେ ଆଳାପ କରୁଁକରୁ ଖବର ନେଲି ସେ ଗୁଜରାଟର ଲୋକ । ଏକା ସେ ନୁହେଁ, CNN ଟାୱାର୍ ବେସ୍‌ମେଣ୍ଟରେ ଯେତେ ଦୋକାନ ଅଛି ପ୍ରାୟ ସବୁ ହେଲେ ତାର ଗାଁ ବା ଇଲାକାର ଲୋକ । ସେଇ ପୁଣି ଖବର ଦେଲା ତାଙ୍କ ପୂର୍ବପୁରୁଷ ଭାରତରୁ ଏ ସହରରକୁ ଆସିଲେଣି ୧୯୩୦ ରୁ ! ବର୍ତ୍ତମାନ ଆଟ୍‌ଲାଣ୍ଟା ସହରରେ ବାସକରୁଥିବା ଭାରତୀୟ ଲୋକଙ୍କ ଭିତରେ ଏକା ଗୁଜରାଟି ପରିବାର ଅଛନ୍ତି ବାର ହଜାର । ଆଶ୍ଚର୍ଯ୍ୟ ହେଲି । ତେବେ ମନେପଡିଲା ବହୁ ଦିନ ତଳେ ପଢିଥିବା ଖଣ୍ଡେ ବହି– ଭିକ୍ଷୁ ଚମନ୍‌ଲାଲ୍‌ଙ୍କ "ହିନ୍ଦୁ ଆମେରିକା" ।

କଲମ୍ବସ୍ ୧୪୯୨ରେ ଭାରତକୁ ବାଟ ଭୁଲି ପହଞ୍ଚିଥିଲେ ଏଇ ଆମେରିକା ଉପକୂଳର କୌଣସି ଦ୍ୱୀପରେ । ସେଠାର ଲୋକମାନଙ୍କ ଚେହେରା ଦେଖି ସେ ଭାବିଥିଲେ ଭାରତରେ ପହଞ୍ଚିଗଲେ । ତେଣୁ ସେଠାକା ଅଧିବାସୀଙ୍କୁ ସେ ନାଁ ଦେଇଥିଲେ ''ଇଣ୍ଡିଆନ୍'' । ସେଇ ନାଁଟା ଠାକିଯାଇଥିଲା ଦୁଇ ଆମେରିକା ମହାଦେଶ ସମେତ ଏ ଅଂଚଳର ସମସ୍ତ ଦ୍ୱୀପପୁଞ୍ଜର ଅଧିବାସୀଙ୍କ ଚେହେରା ଉପରେ । କିନ୍ତୁ କଲମ୍ବସ୍ ପ୍ରକୃତ ଇଣ୍ଡିଆନ୍ ଲୋକଙ୍କ ଚେହେରା ଦେଖିନଥିଲେ । ସେମାନେ ଯେ ଅତୀତରେ ବାରହଜାର ମାଇଲ୍ ପ୍ରଶାନ୍ତ ମହାସାଗରକୁ ଛୋଟ ଛୋଟ ଡଙ୍ଗାରେ ପାରିହେଇ ପ୍ରଥମେ ପେରୁରେ ଓ ପରେ ମେକ୍ସିକୋରେ ପହଞ୍ଚି ଦୁଇ ଆମେରିକା ମହାଦେଶର ମଧ୍ୟଭାଗରେ ମାୟା (ମୟ) ଆଜ୍‌ଟେକ (ଆସ୍ତିକ) ଓ ଇନ୍‌କା (ଇନ୍ ଅର୍ଥାତ ସୂର୍ଯ୍ୟବଂଶୀ) ନାମକ ତିନିତିନୋଟି ସଭ୍ୟତା ସ୍ଥାପନ କରିଥିଲେ ଓ ସେ ସଭ୍ୟତା ତିନୋଟିକୁ କଲମ୍ବସ୍‌ଙ୍କ ଉତ୍ତରାଧିକାରୀ ହର୍ଣ୍ଣାଣ୍ଡୋ କର୍ଟେଜଙ୍କ ଭଳି କଳା-ପାହାଡମାନେ ସମୂଳେ ଧ୍ୱଂସ କରିଦେଇଥିଲେ– ଏ ସଂବାଦ ନଥିଲା ଆଜିର ଏଇ ଦୋକାନଦାର ଭାରତୀୟଟି କାହିଁକି, ଏଠାକାର ଅଧିକାଂଶ ବଡବଡ ଡାକ୍ତର ଇଂଜିନିୟର୍ ପ୍ରଫେସର୍‌ଙ୍କ ଭଳି ହାଇଫାଇ ଭାରତୀୟ ଏନ୍.ଆର୍.ଆଇ ଙ୍କ ପାଖରେ ।

ଲୋକଟିର ଦୋକାନରୁ କିଛି ମିକ୍ସଚର ଓ ଡ୍ରାଇଫୁଡ୍ କିଣି ଆମେ ବିଦାୟ ନେଲୁ ।

ବିଦାୟ ପୂର୍ବରୁ ଲୋକଟି ଆମକୁ କହିଲା– ଆଟ୍‌ଲାଣ୍ଟା ବୁଲିବାକୁ ଆସିଚନ୍ତି ତ– ନିଶ୍ଚୟ ଦେଖନ୍ତୁ ଏ ସହରର ଏକ ଅଦ୍ଭୁତ ଜାଗା ''ଅଣ୍ଡର୍ ଗ୍ରାଉଣ୍ଡ୍ ମାର୍କେଟ୍'' । ଆମେ ଚାଲିଲୁ ସିଧା ସେଇଠିକି ।

## ଆଟ୍‌ଲାଣ୍ଟାର ଅଣ୍ଡର୍‌ଗ୍ରାଉଣ୍ଡ୍ ମାର୍କେଟ୍–

ଆଟ୍‌ଲାଣ୍ଟାର ଏଇ ଅଣ୍ଡର୍‌ଗ୍ରାଉଣ୍ଡ ମାର୍କେଟ୍ ସତରେ ଏକ ଆଶ୍ଚର୍ଯ୍ୟଜନକ ସ୍ଥାନ । ଏଠିକି ଆସିବାକୁ ହେଲେ ରାସ୍ତା ଉପର ସ୍ତରରୁ ବେଶ୍ କିଛି ଗଭୀର ମାଟି ତଳକୁ ଓହ୍ଲାଇ ଆସିବାକୁ ପଡେ । ମାଟିତଳେ ଏକ ଆଶ୍ଚର୍ଯ୍ୟଜନକ ଜନଜୀବନର ଦୃଶ୍ୟ ଦେଖି ଦର୍ଶକ ନିଶ୍ଚୟ ମନେକରିବ– ଏ ଜାଗା ଆମେରିକା ନୁହେଁ; ହୁଏତ ଆଫ୍ରିକା କି ଭାରତର କୌଣସି ସ୍ଥାନ । ଏଠି କଳାଲୋକମାନେ ବହୁସଂଖ୍ୟାରେ ଆତଯାତ ହୁଅନ୍ତି– ତାଙ୍କ ତଳକୁ ଭାରତୀୟ । ଗୋରା ଲୋକଙ୍କ ଚେହେରା ବିରଳ । ହାଟ ବସିଲା ଭଳି ଦୋକାନ ବଜାରରେ ହାଉଯାଉ ହେଉଥାନ୍ତି ଲୋକ । କଟକର କଚେରି ଛକରେ, ରାସ୍ତାକଡରେ ବୁଲା-ବେପାରିମାନେ ନିଜନିଜ ପସରା ମେଲେଇ ବସିଲା ଭଳି ବସିଥାନ୍ତି । ଅନେକ ଜାଗାରେ ମୋଟାମୋଟୀ କଳା ସ୍ତ୍ରୀଲୋକମାନେ ବସିଥାନ୍ତି । ସେମାନେ ହେଲେ ଏଠାକାର ଜ୍ୟୋତିଷ ବା ଭାଗ୍ୟ-ଗଣକ । ସେମାନଙ୍କୁ ଘେରି ବହୁ ସ୍ତ୍ରୀ-ପୁରୁଷ ଶିଶୁ ଚାରିପଟେ ବସିଥାନ୍ତି । ସେମାନେ ଅପେକ୍ଷା କରିଥାନ୍ତି ତାଙ୍କ ପାଳି ଆସିଲେ ହାତ, କପାଳ ବା କୋଷ୍ଠୀ ଦେଖାଇ ନିଜନିଜ

ଭାଗ୍ୟ ଓ ଭବିଷ୍ୟତ୍ ବିଷୟରେ ଆଗୁଆ ଖବର ଶୁଣିନେବାକୁ । ଗୋଟାଏ ଗୋଟାଏ ସ୍ଥାନରେ ରାସ୍ତାକଡରେ ବସିଥାନ୍ତି "ଟାରୋ" ବିଦ୍ୟା ବିଶାରଦମାନେ । ଏମାନେ ରଖିଥାନ୍ତି ପୋଷା-ଶୁଆ ଯେ ଗରାଖଙ୍କ ପାଇଁ ଟାରୋକାର୍ଡ ଉଠାନ୍ତି । ଗୋଟିଏ ଗୋଟିଏ ଜାଗାରେ ଜମା-ହେଇଥାଏ ଚେରମୂଳି ଇତ୍ୟାଦି । କଳାଲୋକମାନେ ଏ ସବୁ ଦୋକାନ ଚଳାନ୍ତି । ସେମାନେ ଆଫ୍ରିକାନ୍ ମେଡିସିନ୍ ମେନ୍ । ଆଫ୍ରିକାରେ ପ୍ରଚଳିତ ଔଷଧୀୟ ବ୍ୟବସ୍ଥାର ଗରାଖଙ୍କ ସଂଖ୍ୟା ଏ ଦେଶରେ କିଛି କମ୍ ନୁହେଁ । ସେମାନେ ଗୁଣିଗାରେଡି, ତନ୍ତ୍ରମନ୍ତ୍ରର ବେଶ୍ ଭଲ ବ୍ୟବସାୟ ମଧ୍ୟ ଚଳାନ୍ତି ଏଇ ଅଣ୍ଡରଗ୍ରାଉଣ୍ଡ ମାର୍କେଟ୍‌ରେ ।

ଆଟ୍‌ଲାଣ୍ଟାରେ କଳାଲୋକଙ୍କ ସଂଖ୍ୟାଗରିଷ୍ଠତା ଓ ପ୍ରାଧାନ୍ୟର ଗୋଟିଏ ଐତିହାସିକ କାରଣ ଅଛି । ୧୮୬୦ରେ ଘଟିଥିବା ଆମେରିକାନ୍ ସିଭିଲ୍‌ଓ୍ୱାର୍‌ର କେନ୍ଦ୍ରସ୍ଥଳ ଥିଲା ଏଇ ଆଟ୍‌ଲାଣ୍ଟା । ଦକ୍ଷିଣର ଜର୍ଜିଆ ରାଜ୍ୟର ରାଜଧାନୀ ଏଇ ଆଟ୍‌ଲାଣ୍ଟା ଥିଲା ସର୍ବାଧିକ କ୍ରୀତଦାସ ବ୍ୟବସାୟର ପେଣ୍ଠ ସହର । ଏଇଠି ସିଭିଲ୍ ଓ୍ୱାର୍‌ର ମୁଣ୍ଡିମରିଥିଲା । ମୁକ୍ତି ପାଇଲା ପରେ କ୍ରୀତଦାସମାନେ ଏ ସହର ଛାଡି ପଳାଇଯିବା ପରିବର୍ତ୍ତେ ଏଇଠାରେ ନିଜନିଜର ସ୍ୱାଧୀନ ଜୀବିକା ଅର୍ଜନ ପାଇଁ ରହିଯାଇଥିଲେ ବହୁ ସଂଖ୍ୟାରେ– ସେଇ ଦିନୁ କଳାଲୋକଙ୍କ ଗଡ ହୋଇ ରହିଯାଇଚି ଏ ସହର । ତେଣୁ ସ୍ଥାନୀୟ ବାସିନ୍ଦାଙ୍କ ଭିତରେ କଳାଲୋକଙ୍କୁ ଏଠି ଦେଖିବାକୁ ମିଳେ ବହୁ ସଂଖ୍ୟାରେ ।

ଏଠାରେ ଉଲ୍ଲେଖଯୋଗ୍ୟ– ଆମେରିକାର ସିଭିଲ୍ ଓ୍ୱାର୍ ବିଷୟବସ୍ତୁ ଆଧାରିତ ପ୍ରସିଦ୍ଧ ଉପନ୍ୟାସ "ଗନ୍ ଓ୍ୱିଥ୍ ଦ' ଓ୍ୱିଣ୍ଡ୍" (୧୯୩୬)ର ମୁଖ୍ୟ ପଟ୍ଟଭୂମି ହେଲା ଆଟ୍‌ଲାଣ୍ଟା । ଏହା ଉପରେ ନିର୍ମିତ ଚଳଚ୍ଚିତ୍ର ମଧ୍ୟ ଖୁବ୍ ପ୍ରସିଦ୍ଧ । ଏ ଚଳଚ୍ଚିତ୍ର ମୁଁ ଦେଖିଥିଲି ଅନେକ ବର୍ଷ ତଳେ ରେଭେନ୍ସା କଲେଜରେ ପଢିଲାବେଳେ । ଏ ଉପନ୍ୟାସର ଲେଖିକା ମାର୍ଗାରେଟ୍ ମିଚେଲ୍ ଆମେରିକାର ଜଣେ ସର୍ବବନ୍ଦନୀୟା ଲେଖିକା । ତାଙ୍କର ସୁଖ୍ୟାତି ଏବେ ମଧ୍ୟ ଲୋକମୁଖରୁ ବାରମ୍ବାର ଶୁଣିଚି । ହେଲେ ଏଇ ଲେଖିକାଙ୍କର କଲମ କାହିଁକି ଯେ ସେ ବହିଟି ଲେଖିସାରିବା ପରେ ନୀରବ ହେଇଗଲା ତାର ଉତ୍ତର ପାଇପାରିନାହିଁ ଏପର୍ଯ୍ୟନ୍ତ କାହାରି ପାଖରୁ ।

## ଓ୍ୱାର୍ଲଡ୍ ଫାର୍ମରର୍ସ ମାର୍କେଟ (World Farmers' Market)

ଆଟ୍‌ଲାଣ୍ଟାର ଅନ୍ୟତମ ଦର୍ଶନୀୟ ସ୍ଥାନ ହେଲା ଏଠାର 'ଓ୍ୱାର୍ଲଡ୍ ଫାର୍ମର୍ସ୍ ମାର୍କେଟ୍' । ଏ ଗୋଟିଏ ବିଚିତ୍ର ସ୍ଥାନ । ଏଠାରେ ଶହଶହ ଏକର ଜମି ଉପରେ ଖୁନ୍ଦିହେଇ ରହିଥାଏ ବିଭିନ୍ନ ଦେଶରୁ ଆମଦାନୀ କରାଯାଉଥିବା ପନିପରିବା, ଫଳମୂଳ ଇତ୍ୟାଦିର ବଡ ଛୋଟ ବହୁ ଦୋକାନ ଯୋଉଠି ପନିପରିବା, ଫଳମୂଳ ଓ ମାଛ ମାଂସ ଅଣ୍ଡା ଇତ୍ୟାଦି ଯାବତୀୟ କୃଷିଜାତ ସାମଗ୍ରୀ ବର୍ଷ ତମାମ ବିକ୍ରୀପାଇଁ ମହଜୁତ୍ ରହିଥାଏ । ଏ ମାର୍କେଟ୍ ଭିତରକୁ

ପଶି ଆମେ ବହୁ ସମୟ ପର୍ଯ୍ୟନ୍ତ ବୁଲିବୁଲି ଦେଖିଲୁ । ପୃଥିବୀର ପ୍ରତ୍ୟେକ ଭୌଗୋଳିକ ଅଞ୍ଚଳର, ଅଧିକାଂଶ ଦେଶର ଏକବାରେ ନିଜସ୍ୱରୀତିରେ ଉତ୍ପାଦିତ ପନିପରିବା ଫଳମୂଳ ସମେତ ବହୁ ବନ୍ୟଜାତ ଉଦ୍ଭିଦର ଚେର ଛେଲି ତଥା ଫଳମୂଳ ଏ ହାଟରେ ବିକ୍ରୀ ହେବା ପାଇଁ ମହଜୁଦ୍ ରହିଚି ଜାଣି ଆମର କୌତୂହଳ ବଢ଼ିଲା । ବଜାର ବୁଲିବୁଲି ଆମେ ପ୍ରଥମେ ଗଲୁ ପ୍ରାଚ୍ୟ ଦେଶମାନଙ୍କର ପରିବା ମାର୍କେଟ୍ ବୁଲି ଦେଖିବାକୁ । ସେଠି ଭାରତ, ବର୍ମା, ଥାଇଲ୍ୟାଣ୍ଡ, ଜାପାନ, ଚୀନ ସମେତ ଅଷ୍ଟ୍ରେଲିୟା ନ୍ୟୁଜିଲାଣ୍ଡ ଇତ୍ୟାଦି ସବୁ ଦେଶର ବାଗବଗିଚା ଓ ବନ୍ୟ ଉପଜାତ ଅସଂଖ୍ୟ ପ୍ରକାର ଫଳମୂଳ ପନିପରିବା, ଏପରିକି ବହୁ ଅଚିହ୍ନା କୋଳି ଜାତୀୟ ଫଳମୂଳ ବିକ୍ରୀ ଉଦ୍ଦେଶ୍ୟରେ ପ୍ରଦର୍ଶିତ ହେଉଥିବା ଦେଖିଲୁ । ଗୋଟିଏ ଜାଗାରେ ପଶିଲୁ ଏକ ଭାରତୀୟ ଷ୍ଟୋର୍‌ରେ । ସେଠି ଦେଖିଲୁ– ଆଳୁ ପିଆଜ ଭେଣ୍ଡି ପୋଟଳ ଇତ୍ୟାଦି ଛଡା ଦୁଷ୍ପ୍ରାପ୍ୟ ସଜନା-ଛୁଇଁ, ଓଲୁଅ, ଶଙ୍ଖସାରୁ, ମାଣସାରୁ, ପଦ୍ମନାଡ, ସିଙ୍ଗଡା, କଳମ ଶାଗ ଇତ୍ୟାଦି ଅନେକ ଗାଉଁଲି ଭାରତୀୟ ପନିପରିବା ଶୀତତାପ ନିୟନ୍ତ୍ରିତ ସୁନ୍ଦର ସୁନ୍ଦର ଗ୍ଲାସ୍‌କେଶ ଭିତରେ ସଜାହୋଇ ରହିଚି । ବହୁସଂଖ୍ୟାରେ ଭାରତୀୟ ସ୍ତ୍ରୀ-ପୁରୁଷ ଦୋକାନ ଭିତରେ ଭିଡ ଜମେଇଥାନ୍ତି ।

ଗୋଟିଏ ପରିବା ଟ୍ରେ ଭିତରେ ଦେଖିଲୁ ସେଥିରେ ସଜାହେଇ ରଖାଯାଇଚି ଝୁମ୍ପୁଡି ! ଝୁମ୍ପୁଡି ଏକ ଦୁର୍ଲଭ ପରିବା ଏଠି ଆମେରିକାରେ କାହିଁକି ଭାରତରେ ମଧ୍ୟ । ସେଇଭଳି ସେ ଦୋକାନର ଫଳ ସେକ୍‌ସନ୍‌ରେ ଦେଖିଲି ଆମ୍ବ ପଣସ ସପୁରୀ ପିଜୁଳି ଜାମୁରୋଲ୍ ଗୋଲାପ୍‌ଜାମୁ ଲିଚୁ ସପେଟା ଆଦି ବାଡିବଗିଚାର ସାଧାରଣ ଫଳ ବ୍ୟତୀତ ଅନେକ ପ୍ରକାର ଦୁର୍ଲଭ ଜଙ୍ଗଲି ଫଳ ଏବଂ କୋଳି ଗଦାହେଇଚି । ଠାଏ ରଖାଯାଇଥାଏ ଭଇଁଚି-କୋଳି, ନଅରଙ୍କୋଳି, ବେତକୋଳି ! ପେନ୍ଥା ପେନ୍ଥା ସଦ୍ୟ ପାଚିଲା ବେତ କୋଳି ଦେଖି ପାଟିରୁ ନାଳ ବୋହିଆସିଲା । ପିଲାଦିନେ ଖରାଦିନ ଦି'ପହରେ ବେତ କୋଳି ତୋଳିବାକୁ ଆମେ ଯାଉଥିଲୁ ଗାଁ ମୁଣ୍ଡ ଶ୍ମଶାନ ପାଖ ନିରୋଳା ଜଙ୍ଗଲ ଭିତରକୁ । ବେତ କୋଳି ଏ ଦେଶରେ କିଏ ଖାଉଚି ? କିଏ କିଣିବ ସେପରି ଜଙ୍ଗଲି କୋଳି ଏ ଦେଶରେ ! ତଥାପି ୱର୍ଲଡ୍ ଫାର୍ମର୍ସ ମାର୍କେଟରେ ଏଇଭଳି ଏକାନ୍ତ ବିରଳ ଦୁର୍ଲଭ ବାଡିବଗିଚା ଓ ବନ୍ୟଜାତ ସାମଗ୍ରୀ ଦେଖି ମୁଗ୍ଧ ବିସ୍ମିତ ହେଲୁ ।

ୱର୍ଲଡ୍ ଫାର୍ମର୍ସ ମାର୍କେଟ ଆମେରିକାର ଏକ ବଟାନିକାଲ୍ ଏଗ୍ରିକଲ୍‌ଚରାଲ୍ ଏକ୍‌ଜିବିସନ୍ ଭଳି । ଏଠାରେ ସାରା ବିଶ୍ୱର କୃଷିଜାତ ପ୍ରାୟ ସମସ୍ତ ଉତ୍ପାଦ ମିଳେ । ପ୍ରତ୍ୟେକ କୃଷିଜାତ ସାମଗ୍ରୀ ଯେହେତୁ ନିର୍ଦ୍ଦିଷ୍ଟ ସମୟ ପରେ ନଷ୍ଟ ହେଇଯିବା ସ୍ୱାଭାବିକ ତେଣୁ ସେଗୁଡିକୁ ପଚିଯିବାର ଢେର୍ ପୂର୍ବରୁ ବଜାରରୁ ହଟାଇନିଆଯାଏ । ଏଭଳି ନିତ୍ୟ ପଚମାନ ବିପଣିକୁ ନେଇ ବ୍ୟବସାୟ କରାଯିବା ନିଶ୍ଚୟ ଲାଭଦାୟକ ନୁହେଁ । ଏ ବ୍ୟବସାୟରେ କିପରି ଲାଭ କରାଯାଏ ତା'ର ଅର୍ଥନୀତି ମୋ'ପାଇଁ ଦୁର୍ବୋଧ୍ୟ ।

ସେଦିନ ଓ୍ୱର୍ଲଡ୍ ଫାର୍ମର୍ସ ମାର୍କେଟରୁ ଆମେ କିଛି ପନିପରିବା ଓ ଫଳମୂଳ କିଣିଲୁ । ସେସବୁ ଭିତରେ ଥିଲା ମୋ ପାଇଁ କିଛି ଗୋଟା ପାନପତ୍ର ଓ ପ୍ରବୀର କିଣିଲେ ତାଙ୍କର ପ୍ରିୟ ଜିନିଷ– ଜିଅନ୍ତା ମାଗୁର ମାଛ । ଏଠି ମାଛ ମାର୍କେଟରେ ମାଛମାନଙ୍କୁ ସ୍ୱତନ୍ତ୍ର କାଚ ଜଳାଶୟରେ ଜିଅନ୍ତା ରଖାଯାଇଥାଏ, ଗରାଖ ନିଜ ରୁଚି ଅନୁସାରେ ଜିଅନ୍ତା ମାଛକୁ ସେଇ ଜଳାଶୟ ଭିତରୁ ବାଛନ୍ତି ।

## କୋକାକୋଲା (COCACOLA) ବଟଲିଂ ପ୍ଲାଣ୍ଟ୍

ଆଟ୍‌ଲାଣ୍ଟା ସହରରେ କୋକାକୋଲା କଂପାନୀର ପ୍ରଧାନ ବଟଲିଂ ପ୍ଲାଣ୍ଟ୍ ଅବସ୍ଥିତ ଜାଣି ସେଠାକୁ ଗଲୁ । ଶୁଣିଲୁ– ଏଇ· ସହରରେ ପ୍ରାୟ ଷାଠିଏ ସତୁରୀ ବର୍ଷ ତଳେ ଜନ୍ମନେଇଥିଲା ପୃଥିବୀରେ ଏକାନ୍ତ ଲୋକପ୍ରିୟତା ହାସଲ କରିଥିବା ସେଇ ଆମେରିକା ମାର୍କାମରା ଶୀତଳ ପାନୀୟ କୋକାକୋଲା । ଏହାର ଉଦ୍‌ଭାବକ ଜଣେ ସାଧାରଣ ଲୋକ ଯେ ଏହାର ଫର୍ମୁଲା ନିଜେ ଉଦ୍ଭାବନ କରିଥିଲେ । ଏ ଫର୍ମୁଲା ବ୍ୟବହାର କରି ଉକ୍ତ ବ୍ୟକ୍ତି ଯେଉଁ ପାନୀୟ ସୃଷ୍ଟି କରିଥିଲେ ତାହା ବଜାରରେ କ୍ରମଶଃ ଖୁବ୍ ଲୋକପ୍ରିୟତା ହାସଲ କରିପାରିଥିଲା । କିନ୍ତୁ ଉକ୍ତ ବ୍ୟକ୍ତି ତାଙ୍କ ନିଜ ସୃଷ୍ଟ ପାନୀୟର ବ୍ୟବସାୟ ଚଳାଇ ପାରିଲେ ନାହିଁ । ତେଣୁ ସେ ତାଙ୍କ ଉଦ୍ଭାବିତ ପାନୀୟଟିର ଗୁପ୍ତ ଫର୍ମୁଲାଟିକୁ ଗୋଟିଏ କଂପାନିକୁ ବିକ୍ରୀ କରିଦେଇଥିଲେ– ମାତ୍ର ଗୋଟିଏ ଡଲାର୍ ବିନିମୟରେ ! କିନ୍ତୁ ସେଇ ଏକ ଡଲାର ମୂଲ୍ୟରେ ଖରିଦ୍ କରାଯାଇଥିବା ପାନୀୟଟି ଖୁବ୍ ଅଳ୍ପଦିନ ଭିତରେ ବିଶ୍ୱବିଖ୍ୟାତ କୋକୋକୋଲା ନାଁରେ ଲୋକପ୍ରିୟତା ହାସଲ କରିବାକୁ ଲାଗିଲା ଓ କଂପାନୀ ମାଲିକଙ୍କ ଉପରେ ଲକ୍ଷ୍ମୀ ସଦୟ ହେଲେ । ଆଜି କୋକାକୋଲା ଏକ ବିଶ୍ୱ-ବିଖ୍ୟାତ ପାନୀୟଭାବେ ପୃଥିବୀର ସମସ୍ତ ଦେଶରେ ଅଭୂତପୂର୍ବ ଲୋକପ୍ରିୟତା ହାସଲ କରିସାରିଚି ।

ଆଟ୍‌ଲାଣ୍ଟା ସହରରେ କୋକୋକୋଲା ବଟଲିଂ ପ୍ଲାଣ୍ଟ୍ ଅବଶ୍ୟ ଦର୍ଶନୀୟ । ଆମେ ସେଠି ପହଞ୍ଚିବା ପରେ ପରେ ପ୍ଲାଣ୍ଟ୍‌ର ରିସେପ୍‌ସନିଷ୍ଟ୍ ଆମକୁ ସାଦରେ ପାଛୋଟି ନେଲେ ଓ କମ୍ପାନୀ ସୋ'ରୁମ୍‌ରେ ବସେଇଲେ । ଏଠାରେ ଅତିଥିମାନଙ୍କୁ ଚର୍ଚ୍ଚା କରିବାପାଇଁ କମ୍ପାନୀ ତରଫରୁ ମାଗଣାରେ ସଦ୍ୟ ପ୍ରସ୍ତୁତ କୋକ୍ ଅର୍ପଣ କରାଯାଏ । ଅତିଥିମାନଙ୍କୁ ଚର୍ଚ୍ଚା ପୂର୍ବରୁ ପ୍ରଥମେ ସେମାନଙ୍କ ନ୍ୟାସ୍‌ନାଲିଟିର ପରିଚୟ ମଗାଯାଏ । ନ୍ୟାସ୍‌ନାଲିଟି ଅନୁଯାୟୀ ଅତିଥି-ମାନଙ୍କୁ ଅନୁରୋଧ କରାଯାଏ ନିଜେ ନିଜର ତୃଷା ମେଣ୍ଟାଇବା ପାଇଁ ସେମାନେ ନିଜ କଣ୍ଟ୍ରି-ବ୍ରାଣ୍ଡ୍ କୋକ୍ ବଟଲିଂ ପ୍ଲାଣ୍ଟ୍‌ର ଫାଉଣ୍ଟେନ୍‌ମାନଙ୍କରୁ ସଂଗ୍ରହ କରିନେବାକୁ ।

ଆମ ସହିତ ଅନ୍ୟ ଦେଶର କେତେକ ପର୍ଯ୍ୟଟକ ମଧ୍ୟ ଥିଲେ । ରିସେପ୍‌ସନିଷ୍ଟଙ୍କ ପରାମର୍ଶ ଅନୁସାରେ ଆମ ଚାଲିଲୁ ସାମ୍ନାରେ କାର୍ଯ୍ୟରତ ବଟଲିଂ ପ୍ଲାଣ୍ଟ୍ ପାଖକୁ । ସେଠି

ଷ୍ଟାଣ୍ଡ ଉପରେ ସଜାଯାଇ ରଖାଯାଇଥାଏ ଥାକଥାକ ୟୁଜ୍ ଆଣ୍ଡ୍ ଥ୍ରୋ ପ୍ଲାଷ୍ଟିକ୍ ଗ୍ଲାସ୍ ସବୁ । ସେ ଥାକରୁ ଗୋଟିଏ ଗୋଟିଏ ଗ୍ଲାସ୍ ନେଇ ଆମେ ଠିଆହେଲୁ ଚକ୍ରାକାରରେ ଘୂର୍ଣ୍ଣାୟମାନ ଏକ କନ୍‌ଭେୟର୍ ବେଲ୍ଟ ପାଖରେ । ସେଇ ବେଲ୍ଟରେ ଖାଲି ବୋତଲ ମାନ ଲୋଡ୍‌ହେଇ କାରଖାନା ଭିତରୁ ଆସୁଥାଏ ବଟଲିଂ ପ୍ଲାଣ୍ଟ ପାଖକୁ । ସେଠାରେ ପ୍ଲାଣ୍ଟର ଫାଉଣ୍ଟେନ୍‌ମାନଙ୍କରୁ ହାଇପ୍ରେସରରେ କୋକ୍ ଲୋଡ୍ କରାଯାଏ ଖାଲି ବୋତଲ ଭିତରେ ଓ ବୋତଲଗୁଡ଼ିକୁ ସେଇଠି ସିଲ୍ କରିଦିଆଯାଏ ଠିପିଦେଇ । ଲୋଡେଡ୍ ବୋତଲଗୁଡ଼ିକ ସେଇ କନ୍‌ଭେୟର୍ ବେଲ୍ଟରେ ସବାର ହେଇ ଫେରିଯାନ୍ତି କାରଖାନା ଭିତରକୁ । ସେମାନଙ୍କ ସ୍ଥାନରେ ପୁଣି ଦଫାଏ ନୂଆ ଖାଲି ବୋତଲ ପହଞ୍ଚିଯାଏ ଫାଉଣ୍ଟେନ୍ ମୁହଁଗୁଡ଼ିକ ତଳେ । ଏହିପରି ଚକ୍ରାକାରରେ ଯାନ୍ତ୍ରିକ ଉପାୟରେ ହଜାର ହଜାର ଖାଲି ବୋତଲ ଅଳ୍ପ ସମୟ ଅନ୍ତରାଳରେ ବଟଲିଂ କରାଯାଏ । ପୁଣି ଏ ପ୍ଲାଣ୍ଟର ବିଭିନ୍ନ ସେକ୍‌ସନ୍‌ରେ ବିଭିନ୍ନ ଦେଶର ଲୋକଙ୍କ ରୁଚିକୁ ଚାହିଁ ନିର୍ଦ୍ଦିଷ୍ଟ ଫ୍ଲେଭର୍ ଯୁକ୍ତ କୋକ୍ ଲୋଡ୍ କରାଯିବା ପାଇଁ ମଧ୍ୟ ବ୍ୟବସ୍ଥା କରା-ଯାଇଥାଏ । ପ୍ରତ୍ୟେକ ଦେଶ ପାଇଁ ସ୍ୱତନ୍ତ୍ର ଭାବେ କୋକ୍ ବୋତଲ ସବୁ ହଜାର ହଜାର ସଂଖ୍ୟାରେ ଏଇ ପ୍ଲାଣ୍ଟରେ ଖୁବ୍ ଅଳ୍ପ ସମୟରେ ବଟଲିଂ କରାଯାଇ ଥାଏ ଏବଂ ସେଗୁଡ଼ିକୁ ସେସବୁ ଦେଶକୁ ଜାହାଜରେ ରପ୍ତାନି ହୁଏ ।

ଆମ ଦଳର ପାଞ୍ଚଜଣଯାକ ପ୍ରତ୍ୟେକେ ଗୋଟିଏ ଗୋଟିଏ ଗ୍ଲାସ୍ ଧରି ଆମ ଭାରତପାଇଁ ଉଦ୍ଦିଷ୍ଟ କୋକ୍‌ଫାଉଣ୍ଟେନ୍ ଖୋଜିବାକୁ ବାହାରିଲୁ । କିନ୍ତୁ ବଟଲିଂପ୍ଲାଣ୍ଟର ଚାରିପାଖରେ ବୁଲିବୁଲି ଇଣ୍ଡିଆ ପାଇଁ ବଟଲିଂ କରାଯାଉଥିବା ଫାଉଣ୍ଟେନ୍‌ଟିକୁ ଖୋଜି ଆଦୌ ଠାବ କରିପାରିଲୁ ନାହିଁ । କିନ୍ତୁ ଦେଖିଲୁ ଭାରତ ବ୍ୟତୀତ ପୃଥିବୀର ଆଉ ସବୁ ଦେଶର ନାମ ଲେଖାଯାଇଥାଏ ଫାଉଣ୍ଟେନ୍ ଗୁଡ଼ିକର ଉପ୍ସ ଉପରେ– ଏପରିକି ଚୀନ୍ ପାଇଁ ଉଦ୍ଦିଷ୍ଟ କୋକ ଫାଉଣ୍ଟେନ୍‌ଟିଏ ମଧ୍ୟ ରହିଥିବା ଦେଖିଲୁ । କିନ୍ତୁ ଭାରତ ବାଦ୍ ପଡ଼ିଥାଏ କେଜାଣି କାହିଁକି ଦେଶମାନଙ୍କ ତାଲିକାରୁ ବୁଝିନପାରି ପାଖରେ ଅପେକ୍ଷାରତ ରିସେପ୍‌ସନିଷ୍ଟଙ୍କୁ ପଚାରିଲୁ ତା'ର କାରଣ ।

ରିସେପ୍‌ସନିଷ୍ଟ୍ ହସିଦେଇ କହିଲେ, "ଆପଣଙ୍କ କଣ୍ଟ୍ରିର ସରକାର ପରା ବ୍ୟାନ୍ କରିଦେଇଚନ୍ତି କୋକାକୋଲାକୁ ? ଆପଣଙ୍କ ଦେଶର ସରକାରର ଜଣେ ତତ୍‌କାଳୀନ ମନ୍ତ୍ରୀ ଜର୍ଜଫର୍ଣ୍ଣାଡେସ୍ କୋକାକୋଲା କଂପାନୀକୁ ଇଣ୍ଡିଆରୁ ବହିଷ୍କାର କରିଚନ୍ତି– ଜାଣିଥିବେ ?

ପ୍ରବୀରଙ୍କ ମୁହଁକୁ ଚାହିଁଲି– ଦେଖିଲି ସେ ହସୁଚନ୍ତି । ସେ ଜଣେ ଏନ୍.ଆର୍.ଆଇ ଇଂଜିନିୟର୍ ଆମେରିକାର । ଷାଠିଏ ସତୁରୀ ଦଶକରେ ଭାରତରେ ଇଂଜିନିୟରିଂ ଡିଗ୍ରୀ ପାଇବା ପରେ ଚାକିରି ନପାଇ ଭାରତରୁ ବହୁ ସଂଖ୍ୟାରେ ଯୁବ ଇଂଜିନିୟରମାନେ ଆମେରିକା ପଳାଇଆସୁଥିଲେ । ପ୍ରବୀର ସେ ସମୟର ଯୁବ ଇଂଜିନିୟର୍ । ଭାରତର ରାଜନୈତିକ ବ୍ୟବସ୍ଥାରେ ସମାଜବାଦ ନାଁରେ ଯେଉଁ ସରକାରି ଅର୍ଥନୈତିକ ମନୋପଲି

ନେହେରୁଙ୍କ ସମୟରୁ ସୃଷ୍ଟି ହେଇଥିଲା ତାର ଚୂଡାନ୍ତ ପରିଣତି ଘଟିଥିଲା ସତୁରୀଦଶକରେ ମୋରାରଜୀ ଦେଶାଇଙ୍କ ଜନତା ସରକାର ସମୟରେ । ସେତେବେଳେ ବାଣିଜ୍ୟ ମନ୍ତ୍ରୀ ଥିଲେ ଜର୍ଜ ଫର୍ଣ୍ଣାଡେସ୍ । ସେ ଜଣେ ସଚ୍ଚା ସମାଜବାଦୀ ନେତା । ତେଣୁ ତାଙ୍କରି ଉଦ୍ୟମରେ ପୁଞ୍ଜିବାଦର ଗନ୍ତାଘର ଆମେରିକାର ବଡ ବଡ ଆନ୍ତର୍ଜାତିକ କଂପାନୀମାନଙ୍କୁ ଭାରତରେ ବାଣିଜ୍ୟିକ ସୁବିଧା ସୁଯୋଗରୁ ବଂଚିତ କରାଯାଇଥିଲା । କୋକାକୋଲା ସେଇ ବାଣିଜ୍ୟ ନୀତିର ପ୍ରଥମ ଶିକାର ହେବା ଅତ୍ୟନ୍ତ ସ୍ୱାଭାବିକ ଥିଲା ସେତେବେଳେ ।

ଆମେ ତଥାପି କୋକୋକୋଲା ପିଇବା ଲୋଭ ସମ୍ବରଣ କରିପାରିନଥିଲୁ–ବିଶେଷତଃ ଅମୃତ ମନୀଶ୍ ଅଡିବସିଲେ– ସେମାନେ କୋକ୍ ପିଇବେ । ବାଧ୍ୟହୋଇ ସମସ୍ତେ ହାତ ବଢେଇଲୁ ଗୋଟାଏ ଗୋଟାଏ ଫାଉଣ୍ଟେନ୍ ଆଗରେ । ତତ୍‌କ୍ଷଣାତ୍ ଏକ ବିଚିତ୍ର ଘଟଣା ଲକ୍ଷ୍ୟ କରି ମୁଁ ଚମତ୍କୃତ ହେଲି । ମୋ ଗ୍ଲାସ୍ ଭିତରକୁ ଶୂନ୍ୟରୁ ଲମ୍ବା ସାପଟାଏ ଖସିପଡିଲା ଭଳି କଣଟାଏ ଗଳିପଡିଲା ! ଚମକିଯାଇ ଦେଖିଲି– ଗ୍ଲାସ୍‌ଟା କୋକ୍‌ରେ ଭରପୂର ହେଇଯାଇଚି । ଏତେ ଉଚ୍ଚରୁ ଗ୍ଲାସ୍‌ଭରା କୋକ୍ ଖସିପଡିବା ସତ୍ତ୍ୱେ ବୁନ୍ଦାଏ ବି କୋକ୍ ଛିଟିକିପଡିଲାନାହିଁ କିପରି ସେଇ ଟେକ୍‌ନିକ୍‌ଟା ମୋ ପାଇଁ ଏଯାକେ ଦୁର୍ବୋଧ୍ୟ ।

ରିସେପ୍‌ସନିଷ୍ଟ୍ ପଛରୁ ଆମ ପ୍ରତି ଲକ୍ଷ୍ୟ ରଖିଥାନ୍ତି । ଚାରିବର୍ଷର ନାତି ପ୍ରତୀକ ଗ୍ଲାସେ କୋକ୍ ପିଇଦେଲାପରେ ଚାହୁଁଥାଏ ଆଉ ଗ୍ଲାସେ ପିଇବାକୁ; କିନ୍ତୁ ତା' ମା' ତାକୁ ବାରଣ କରୁଥାଏ । ସେତିକିବେଳେ ରିସେପ୍‌ସନିଷ୍ଟ୍‌ଙ୍କ ସ୍ୱର ଶୁଣାଗଲା– ଅତିଥିମାନେ ଦୟାକରି ମନ ଇଚ୍ଛା କୋକ୍ ପିଅନ୍ତୁ– ଯେତେ ପିଇପାରିବେ ପିଅନ୍ତୁ– ଏଠି ବିନାମୂଲ୍ୟରେ ଆମେ ଅତିଥି ଚର୍ଚ୍ଚା କରୁ । ଆପଣମାନେ ନିଜ ଦେଶର ବ୍ରାଣ୍ଡ୍ ବ୍ୟତୀତ ଅନ୍ୟ ଦେଶ ପାଇଁ ଉଦ୍ଦିଷ୍ଟ କୋକ୍ ମଧ୍ୟ ପିଇ ଦେଖନ୍ତୁ ସେସବୁ ଦେଶର ଲୋକମାନେ କେଉଁ ଫ୍ଲେଭର୍ ପସନ୍ଦ କରନ୍ତି । ସଂକୋଚ କରନ୍ତୁ ନାହିଁ । ଯେତେଇଚ୍ଛା ସେତେ ପିଅନ୍ତୁ । ପରିସ୍ରା ଲାଗିଲେ ଏଇ ପାଖରେ ଟଏଲେଟ୍ ରହିଚି । ପରିସ୍ରା ଯା'ନ୍ତୁ ଓ ବେପରୁଆ କୋକ ପିଅନ୍ତୁ ।

ଆମେ ସେଦିନ କୋକ୍ ଫାଉଣ୍ଟେନ୍ ଚାରିପାଖେ ବୁଲି ବୁଲି ଭିନ୍ନ ଭିନ୍ନ ଦେଶର କୋକର ସ୍ୱାଦର ମଜା ଉଠେଇଲୁ । ବୁଲବୁଲ କହିଲା– ନନା, ମେକ୍ସିକୋ କୋକ୍ ଚାଖିଲଣି ? ଇହି, କି ଭୟଙ୍କର ରାଗ ! ଏଗୁଡାକ କୋକ୍ ନାଁ ଲଙ୍କମାରିଚ ପାଣି ମ ! ପ୍ରବୀର କହିଲେ– ଚାଇନିଜ୍ ଫାଉଣ୍ଟେନ୍‌କୁ ଯାଅ । ମନେହଉଚି ଚୁଙ୍ଗୁଡି ଶୁଖୁଆ ଧୁଆ ପାଣି କିଛି ମିଶିଚି କି କ'ଣ !

ସେ ଦିନଟା ରହିଗଲା ଅବିସ୍ମରଣୀୟ ହୋଇ ମୋ' ପାଇଁ ।

ଆଟ୍‌ଲାଣ୍ଟାରେ ସାରା ଦିନଟା କଟିଗଲା । ଆମେ ଚାଟାନୁଗା ଫେରିଲୁ । ଟିକେ ଡେରି ରାତିରେ ହିକ୍‌ସନ୍ ଘରେ ପହଞ୍ଚିଲୁ ।

## ନିଖୋଜ ସମୁଦ୍ର (Lost Sea)

ଆମର ଭାରତ ଫେରିବାର ଦିନ ପାଖେଇ ଆସୁଥାଏ। ପ୍ରବୀର ଓ ବୁଲବୁଲ କିନ୍ତୁ ଆମକୁ ଆମେରିକା ବୁଲେଇବାକୁ ଚାହୁଁଥାନ୍ତି ଆହୁରି ଆହୁରି। ଏକ ଶୁକ୍ରବାର ସନ୍ଧ୍ୟାରେ ଝିଅ ମନଖୁସିରେ ଅଫିସ୍‌ରୁ ଫେରିଲା। ତା' ମୁହଁରେ ହସ ଦେଖି ଜାଣିଲୁ– ଚାକିରି ଠିକ୍‌ଠାକ୍ ରହିଚି। ପ୍ରତି ସପ୍ତାହାନ୍ତ ଏଇ ଶୁକ୍ରବାର ସେତେବେଳେ ଆମେରିକାରେ ଚାକିରିଆଙ୍କ ପାଇଁ ଗୋଟିଏ ଅଗ୍ନିପରୀକ୍ଷାର ଦିନ– ଏ ବିଷୟ ଆଗରୁ କହିଚି। ଏ ଭିତରେ ଆହୁରି ଅନେକ ବଡବଡ କଂପାନୀ ବନ୍ଦହୋଇସାରିଥାଏ ବା କ୍ରମାଗତ ଭାବେ ବଡ ଛୋଟ ସବୁ କଂପାନୀରୁ ବଡବଡ ଚାକିରିଆଙ୍କୁ ଛଟେଇ ଚାଲିଥାଏ। କିନ୍ତୁ ଆମ ଝିଅ ଜୋଇଁମାନେ ଦେଶର ସେପରି ଅର୍ଥନୈତିକ ଦୁର୍ଦ୍ଦିନରେ ସୁଦ୍ଧା ଧୈର୍ଯ୍ୟ ହରାଇ ନଥାନ୍ତି। ଈଶ୍ୱରଙ୍କ କୃପାରୁ ତାଙ୍କ ଚାକିରି ଠିକ୍‌ଠାକ୍ ଚାଲିଥାଏ।

ସେଦିନ ସନ୍ଧ୍ୟାରେ ବୁଲବୁଲ ପ୍ରସ୍ତାବ ଦେଲା, "ନନା ! କାଲି ତମକୁ ଗୋଟାଏ ଅଦ୍ଭୁତ ଜାଗା ଦେଖେଇବାକୁ ନବୁ। ଏଇ ଆମ ଟେନିସୀ ରାଜ୍ୟରେ ଅନେକ ଅଦ୍ଭୁତ ଜାଗା ମାନ ଅଛି । ଓଡିଶାର କୋରାପୁଟ ଜିଲାର ଗୁପ୍ତେଶ୍ୱର ପରି ଏଠି ଗୋଟାଏ ଗୁମ୍ଫା ଅଛି। କିନ୍ତୁ ସେ ଗୁମ୍ଫା ଏମିତି ସେମିତି ନୁହେଁ– ପୂରା ପାତାଳ ଜାଣ। ତା' ତଳେ ଗୋଟାଏ ସମୁଦ୍ର ରହିଚି– କିଟିକିଟି ଅନ୍ଧାର ଭିତରେ ସମୁଦ୍ର ପ୍ରି-ହିଷ୍ଟୋରିକ୍ ଟାଇମ୍‌ସରୁ। ତୁମେ ଓ ମମି ସେ ଟ୍ରିପ୍ ଏନ୍‌ଜୟ କରିବ ନିଶ୍ଚେ। ରେଡି ହୁଅ କାଲି ସକାଳେ ବାହାରିବା।

ପରଦିନ ସକାଳୁ, ଶନିବାର ଛୁଟିଦିନରେ ଆରମ୍ଭ ହେଲା ଯାତ୍ରା । ଚାଟାନୁଗାରୁ ଆମେ ଡ୍ରାଇଭ୍ କଲୁ 'ସ୍ୱିଟ୍ ଓ୍ୱାଟର୍'। ପ୍ରାୟ ଦୁଇ ତିନି ଘଣ୍ଟା ପାହାଡିଆ ରାସ୍ତା ଦେଇ ସକାଳୁ ସକାଳୁ ଡ୍ରାଇଭିଂ, ପୁଣି ଖରାଦିନେ, ଭାରି ବଢିଆ ଲାଗୁଥାଏ। ଟେନିସୀର ପୂର୍ବଘାଟ ପର୍ବତମାଳାକୁ କୁହାଯାଏ ଆପାଲ୍‌ଚିଆନ୍ ମାଉଣ୍ଟେନ୍ ରେଞ୍ଜ। ପୂର୍ବରୁ ଆମେ ଥରେ ଏ ପର୍ବତମାଳା ଭିତରେ ସ୍ମୋକି ମାଉଣ୍ଟେନ୍‌କୁ ଯାଇଚୁ। ସ୍ମୋକି ହେଲା ଏଠାର କୈଳାସ ପର୍ବତ– ହିମାଳୟର। ବର୍ଷ ତମାମ୍ ମେଘମାନେ ସାପପରି ଗୁଡେଇ ତୁଡେଇ ହଉଥାନ୍ତି ନୀଳକଣ୍ଠ ସ୍ମୋକି ମାଉଣ୍ଟେନ୍ ବେକ ଚାରିପଟେ। ସେ ଦୃଶ୍ୟ ଦେଖି ଅଭିଭୂତ ହୋଇଥିଲୁ ସେଥର।

କିନ୍ତୁ ଆଜି ଆମେ ସ୍ୱିଟ୍ ଓ୍ୱାଟର୍ ରାସ୍ତାରେ ଯୋଉ ପାର୍ବତ୍ୟଘାଟି ରାସ୍ତା ଦେଇ ଯାଉଥାଉ ତା' ଉପରୁ ଦିଗନ୍ତ ବିସ୍ତାରୀ ନୀଳ ଉପତ୍ୟକାର ଦୃଶ୍ୟ ଦିଶୁଥାଏ ସତେ ଯେମିତି ସ୍ୱର୍ଗର ନନ୍ଦନକାନନ। ମଝିରେ ମଝିରେ ଯାତ୍ରୀମାନଙ୍କୁ ସେଇ ଲୋଭନୀୟ ଦୃଶ୍ୟ ଦେଖିବାକୁ ଅଧିକ ସୁଯୋଗ ଦେବାକୁ ରାସ୍ତାକଡରେ ଗୋଟିଏ ଗୋଟିଏ ପାର୍କିଂ ଏରିଆ ରାସ୍ତାକଡକୁ ନିର୍ମିତ ହୋଇଥାଏ ଓ ତା' ନିକଟରେ ବିଜ୍ଞାପନ ମରାଯାଇଥାଏ ପର୍ଯ୍ୟଟକଙ୍କ

ଉଦ୍ଦେଶ୍ୟରେ– "use the telescope here for seeing around" । ପାର୍କିଂ ଏରିଆରେ ବହୁତ କାର୍ ଓ ବହୁ ଯାତ୍ରୀଙ୍କ ଗହଳ ଲାଗିଯାଇଥାଏ ।

ଆମେ ବହୁ ଉଚ୍ଚକୁ ପର୍ବତାରୋହଣ କଲାପରେ ଶେଷରେ ପହଞ୍ଚିଲୁ ସ୍ୱିଟ୍ ୱାଟ୍‌ରସ୍‌ରେ । ସ୍ଥାନଟା ଗୋଟିଏ ରମଣୀୟ ପାର୍କପରି । ତା'ରି ଭିତରେ ଥାଏ 'ଲଷ୍ଟ୍ ସି କେ୍‌ଭସ୍' । ପରିଦର୍ଶକଙ୍କ ପାଇଁ ନିର୍ଦ୍ଦିଷ୍ଟ ପାର୍କିଂ ପ୍ଲେସ୍, ରେସ୍ତୁରାଁ, ମ୍ୟୁଜିୟମ୍ ଏବଂ ରିଟାୟାରିଂ ରୁମ୍ ସବୁ । ପ୍ରାୟ ତିନିଘଣ୍ଟାର ଡ୍ରାଇଭିଂ ପରେ ଆମେ କ୍ଳାନ୍ତ ହୋଇପଡିଥାଉ । ରେସ୍ତୁରାଁରେ କପେକପେ ଚା'ପିଇ ସାଷ୍ଟାମ ହେଲା ପରେ ଚାଲିଲୁ "ଲଷ୍ଟ୍ ସି" ମ୍ୟୁଜିୟମ୍ ଦେଖିବାକୁ । ଏଠି ସମୁଦାୟ ବିଷୟଟିକୁ ନେଇ ଗୋଟିଏ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ ଅଧଘଣ୍ଟିଆ ମୁଭି ପିକ୍‌ଚର୍ ଦେଖିବାକୁ ମିଳେ– ତା'ଛଡା ଫଟୋଗ୍ରାଫିକ୍ ଏକ୍‌ଜିବିସନ୍ ମଧ୍ୟ । ସେସବୁରୁ ଆମେ ଲଷ୍ଟ୍ ସି'ର ଭୂ-ତାତ୍ତ୍ୱିକ ତଥ୍ୟ ସମେତ ଏହାର ସାଂପ୍ରତିକ ଇତିହାସ ମଧ୍ୟ ଜାଣିବାକୁ ପାଇଲୁ ।

ଭୂତାତ୍ତ୍ୱିକ ଦୃଷ୍ଟିରୁ 'ଲଷ୍ଟ୍ ସି'କୁ କୁହାଯାଏ କ୍ରେଗ୍‌ହେଡ୍ କେଭର୍ଣ୍ଣ ସିଷ୍ଟମ୍ (Craighead Cavern System) ଅନ୍ତର୍ଗତ ଏକ ପାର୍ବତ୍ୟ ଗହ୍ୱର । ଏହା ଲକ୍ଷାଧିକ ବର୍ଷ ତଳେ "ପ୍ଲିଷ୍ଟୋସିନ୍ ଯୁଗ"ରେ ପୃଥିବୀ ପୃଷ୍ଠରେ ପର୍ବତ ଶୃଂଖଳା ସବୁ ନିର୍ମାଣ ହେବା କାଳରୁ ଏହିପରି ସୃଷ୍ଟିହୋଇଛି । ଏହାର ତାତ୍ପର୍ଯ୍ୟ ହେଲା ଏଇ ଭୂତଳ ଗହ୍ୱର ଗୁଡିକ ସଂକୀର୍ଣ୍ଣ ସୁଡଙ୍ଗ ଦ୍ୱାରା ସଂଯୁକ୍ତ ଏକାଧିକ ଗୁମ୍ଫାର ସମଷ୍ଟି ସୃଷ୍ଟିକରିଥାଏ । ଏ ଗୁମ୍ଫାଗୁଡିକ ବାସ୍ତବରେ ଦୈର୍ଘ୍ୟ, ପ୍ରସ୍ଥ ଏବଂ ଉଚ୍ଚତାରେ ବିଶାଳ ପ୍ରେକ୍ଷାଳୟ ଭଳି । ତେବେ 'ଲଷ୍ଟ୍-ସି'ର ବିଶେଷତ୍ୱ କେବଳ ଏଇ ଗହ୍ୱର ଗୁଡିକ ଯୋଗୁ ନୁହେଁ– ଏହାର ସ୍ୱାତନ୍ତ୍ର୍ୟ ହେଲା ଏଠାରେ ଗୋଟିଏ ଭୂତଳ ହ୍ରଦ ଲୁକ୍କାୟିତ ଭାବେ ହଜାର ହଜାର ବର୍ଷ ଧରି ଅନାବିଷ୍କୃତ ଭାବେ ଲୋକଲୋଚନରୁ ଲୁଚି ରହିଥିଲା । ଏ ହ୍ରଦର ପରିବ୍ୟାପ୍ତି ଏତେ ବିଶାଳ ଯେ ଆଧୁନିକ ବୈଜ୍ଞାନିକ ଯୁଗରେ ମଧ୍ୟ ତାର ବ୍ୟାପ୍ତି ଓ ଗଭୀରତାର ଆକଳନ କରାଯାଇପାରିନାହିଁ । ନିଭୃତ ନିରନ୍ଧ୍ର ଅନ୍ଧକାର ଭିତରେ ଏଇ ସମୁଦ୍ର ପରି ପରିବ୍ୟାପ୍ତ ଗଭୀର କୃଷ୍ଣ ଜଳରାଶି ଭୂତାତ୍ତ୍ୱିକ ଯୁଗରୁ ଏକ ଅତଳ ପାତାଳର ମାୟା ରଚନା କରି ବିଦ୍ୟମାନ ରହିଚି ।

ଏହାର ସାଂପ୍ରତିକ ଇତିହାସ ଆରମ୍ଭ ହୁଏ, ଗୋରାଲୋକମାନେ ଏଠାର ମୂଳ ଅଧିବାସୀ ରେଡ୍ ଇଣ୍ଡିୟାନ୍‌ମାନଙ୍କୁ ଯୁଦ୍ଧରେ ହଟାଇ ଖ୍ରୀଷ୍ଟାବ୍ଦ ୧୮୬୦ ସୁଦ୍ଧା ଟେନିସୀ ଉପତ୍ୟକାରେ ଆସ୍ଥାନ ଜମେଇଲା ପରେ ଜନୈକ ଦୁଃସାହସିକ ଗୋରାଲୋକ ଦୈବାତ୍ ଘୋର ଅରଣ୍ୟ ଭିତରେ ବୁଲୁବୁଲୁ ମାଟି ତଳକୁ ପଡିଥିବା ଏକ ସରୁ ସୁଡଙ୍ଗ ଆବିଷ୍କାର କଲା ଓ ସେଇ ବାଟେ କିଛି ଦୂର ପର୍ଯ୍ୟନ୍ତ ଭୂତଳକୁ ପ୍ରବେଶ କରିବାକୁ ଚେଷ୍ଟା କରିଥିଲା– କିନ୍ତୁ ସଂକୀର୍ଣ୍ଣ ସୁଡଙ୍ଗ ଭିତରେ ବେଶୀ ଦୂର ଯାଇନପାରି ଫେରିଆସି ଖବରଦେଲା । ପରେ ପରେ ଅନ୍ୟମାନେ ସେ ଦିଗରେ ଆଗ୍ରହୀ ହେଲେ ଓ ଗଭୀର ଅନ୍ଧକାରମୟ ସୁଡଙ୍ଗ ଭେଦ

କରି କିଛି ଅଧିକ ଗଭୀରତା ପର୍ଯ୍ୟନ୍ତ ଗତିକଲେ । ସେଠି ହଠାତ୍ ସେମାନେ ଆବିଷ୍କାର କଲେ ଏକ ଅତି ବିଶାଳ କୋଠରୀ ଯାହାକୁ ସେମାନେ ନାମ ଦେଲେ ''କନ୍‌ଫରେନ୍ସ ହଲ୍'' । ଏଇଠି ସେମାନେ ରେଡ୍ ଇଣ୍ଡିୟାନ୍‌ମାନଙ୍କ ବ୍ୟବହୃତ ଅନେକ ନିତ୍ୟବ୍ୟବହୃତ ଜିନିଷପତ୍ର ସମେତ ଅସ୍ତ୍ରଶସ୍ତ୍ରର ସନ୍ଧାନ କଲେ । ସେଥିରୁ ଜଣାଗଲା ଯେ ସେଇ ଭୂତଳ ଗୁମ୍ଫାଗୁଡ଼ିକ ବାସ୍ତବିକ୍ ଆମେରିକାର ଆଦିମ ଆଦିବାସୀଙ୍କ ପାଇଁ ଅଜଣା ନଥିଲା ।

ପରେପରେ ଗୋରା ଲୋକମାନେ ଏଠି ମାଟିତଳ କୋଠରୀ ଗୁଡ଼ିକୁ ସେମାନଙ୍କ ନିଜ କାମରେ ବ୍ୟବହାରକଲେ । ପରେ ଏଇ କୋଠରୀ ଗୁଡ଼ିକୁ ଆମେରିକାର ସିଭିଲ୍ ୱାର୍ ସମୟରେ (୧୮୬୩) ଦକ୍ଷିଣର ଦାସତ୍ୱ ପ୍ରଥା ସପକ୍ଷବାଦୀ ''କନ୍‌ଫେଡ୍‌ରେଟ୍ ଆର୍ମି'' ନିଜ ପକ୍ଷର ଅସ୍ତ୍ରାଗାର ରୂପେ ବ୍ୟବହାର କରିବାର ପ୍ରମାଣ ମିଳେ ।

କିନ୍ତୁ "ଲଷ୍ଟ୍ ସି'' ରହିଥାଏ ତଥାପି ଅନାବିଷ୍କୃତ । ୧୯୦୫ରେ ଜଣେ ତେରବର୍ଷର ଆମେରିକାନ୍ ବାଳକ– ବେନ୍ ସ୍ୟାଣ୍ଡସ୍– ଦୁର୍ଭେଦ୍ୟ ଗୁମ୍ଫା କାନ୍ଥର ଗୋଟିଏ ସଂକୀର୍ଣ୍ଣ ଗଳି ବାଟରେ ସାହସ କରି ଭିତରକୁ ପଶିଲା । ନିରନ୍ଧ୍ର ଅନ୍ଧାର ଭିତରେ ଦରାଣ୍ଡି ଦରାଣ୍ଡି ସେ ଦୁଃସାହସୀ ବାଳକ ଧୀରେଧୀରେ ଅବତରଣ କରି ଲାଗିଲା ତଳକୁ ତଳକୁ । ପ୍ରାୟ ତିନିଶହ ଫୁଟ୍ ତଳେ ତାର ଗତିପଥ ଅବରୁଦ୍ଧ କଲା ଏକ ଜଳାଶୟ । ପିଲାଟି ତା ହାତରେ ଧରିଥିବା ଗୋଟିଏ ଛୋଟ ଟର୍ଚ୍ଚ ଲାଇଟ୍ ଜଳାଇଲା । କିନ୍ତୁ ଅନ୍ଧାରର ଘନତ୍ୱକୁ ଭେଦ କରିବା ତ ଦୂରର କଥା; ବରଂ ସେଇ ଅଲୋକ ଟିକକୁ ଆଁ କରି କିଏ ଯେମିତି ପୂରା ଗିଳିଦେଲା । ପିଲାଟି ଧୈର୍ଯ୍ୟ ନହରାଇ ପାଦତଳ ଓଦା ମାଟିରୁ କିଛି ଉଠେଇନେଇ ସେଥିରୁ କେତୋଟି ମାଟି ଗୁଳା ତିଆରିକଲା । ସେଇ ଗୁଳାଗୁଡ଼ିକୁ ଅଦୃଶ୍ୟ ଅନ୍ଧାର ଭିତରେ ଲୁଚିଥିବା ହ୍ରଦର ପାଣି ଉପରକୁ ଗୋଟିଏ ପରେ ଗୋଟିଏ କରି ଯେତେଦୂର ଫିଙ୍ଗିବା ସମ୍ଭବ ଫିଙ୍ଗିଲା । କିନ୍ତୁ ଯେତେଦୂରଯାକେ ଫିଙ୍ଗିଲେ ବି ମାଟି ବାଟୁଳି ଗୁଡ଼ିକ କେବଳ ଗୁଳଗାଳ ଶବ୍ଦକରି ପାଣିର ପଡ଼ିବା ଛଡା ଆଉ କିଛି ପ୍ରକାର ଶବ୍ଦ ଶୁଭିଲା ନାହିଁ ।

ତାର ଅର୍ଥ ପିଲାଟିର ହୃଦୟଙ୍ଗମ ହେଲା– ଆଗରେ ବାଟ ବନ୍ଦକରିଚି ଯୋଉ ଜଳଭାଗ ତାହା ଛୋଟ ପୋଖରୀଟିଏ ନୁହଁ– ଆହୁରି ବଡ– ଢେର୍ ବଡ– କେତେବଡ କେଜାଣି ! ଏଇ ଖବର ବାହାର ଜଗତକୁ ଦେବା ପାଇଁ ପିଲାଟି କିଟ୍‌କିଟ୍ ଅନ୍ଧାର ଭିତରେ ବାଟ ଦରାଣ୍ଡି ଦରାଣ୍ଡି ବହୁ କଷ୍ଟରେ ବାହାରି ଆସି ପାରିଥିଲା ମୁକ୍ତ ଆକାଶ ତଳକୁ କୌଣସି ପ୍ରକାରେ । ଏହା ନିଶ୍ଚିତ ଯେ ପିଲାଟିର ଭାଗ୍ୟ ଭଲ ଥିଲା; କାରଣ ସେ ତା ଫେରିବା ବାଟଟା ପରମ ସୌଭାଗ୍ୟବଶତଃ ଠିକ୍‌ଠିକ୍ ଖୋଜି ପାଇପାରିଥିଲା । ନଚେତ୍ ସେ ଗୁମ୍ଫାର ସହସ୍ର ଶାଖା ପ୍ରଶାଖା ଭିତରେ ଯଦି ଥରଟିଏ ବି ବାଟ ହୁଡ଼ିଥାନ୍ତା ତେବେ ସେ ଯେ କୁଆଡେନାଇଁ କୁଆଡେ ହଜି ନିରୁଦ୍ଦିଷ୍ଟ ହୋଇଯାଇଥାନ୍ତା କେହି ଜାଣିପାରିନଥାନ୍ତେ ।

ପୂର୍ବରୁ ଏ ଗୁମ୍ଫାରେ ବାଟ ହଜାଇ ବହୁ ଦୁଃସାହସୀ ଲୋକ ପରେ ପରେ ମରଣ ମୁଖରେ ପଡିଥିବାର ନଜିର ରହିଚି । ଏପରିକି ବଣୁଆ ପଶୁମାନେ ମଧ୍ୟ ଏଇ ଇନ୍ଦ୍ରଜାଲ ପରି ଗହ୍ୱର ଭିତରକୁ ଭୁଲରେ ପଶି ଆସିଲା ପରେ ବାଟନପାଇ ମରିଥିବାର ଦୃଷ୍ଟାନ୍ତ ରହିଚି । ଲଷ୍ଟ ସି ମୁଭିରେ ଆମେ ଦେଖିଥିଲୁ ଏପରି ଗୋଟିଏ ଘଟଣା । ୧୯୩୯ରେ କେତେକ ଭୂତତ୍ତ୍ୱବିତ୍ ଏଇ ଲଷ୍ଟ ସି ଗୁମ୍ଫା ଭିତରେ ବିଭିନ୍ନ ଅଂଚଳ ଘୂରିବୁଲିବା ବେଳେ ଆବିଷ୍କାର କରିଥିଲେ ଏକ ଆଶ୍ଚର୍ଯ୍ୟଜନକ ଘଟଣାର ପ୍ରମାଣ । ଗୁମ୍ଫା ମୁହଁଠାରୁ ବହୁତ ଦୂର ଏକ ସୁଡଙ୍ଗ ଭିତରେ ସେମାନେ ଆବିଷ୍କାର କରିଥିଲେ ଏକ ଜାଗୁଆରର କଂକାଳ ହାଡ । ସେ ସମୟରେ ପୃଥିବୀପୃଷ୍ଠର ଏଇ ଦୁର୍ଦ୍ଧର୍ଷ ଜାନୁଆର୍‌ମାନଙ୍କୁ କୁହାଯାଉଥିଲା– ସାବର୍‌ଟୁଥ୍ ଟାଇଗର୍ସ ! ସେମାନଙ୍କର ଦାନ୍ତ ଥିଲା ଛୁରାଭଳି । ଡାଇନୋସୋର୍‌ଙ୍କ ଯୁଗ ସରିଯିବା ପରେ ଏଇ ସାବର୍‌ଟୁଥ୍ ଟାଇଗର୍ ବା ଜାଗୁଆର୍‌ମାନେ ପୃଥିବୀର ପ୍ରାଣୀ ଜଗତ୍‌କୁ ଆତଙ୍କିତ କରି ରଖିଥିଲେ ହଜାର ହଜାର ବର୍ଷ । ସେଇଭଳି ଏକ ଭୟଙ୍କର ଜାଗୁଆର୍‌ର ଅସ୍ଥି ଆବିଷ୍କାର କରି ସେମାନେ ସେ ଜନ୍ତୁର ପାହୁଲ (ପାଦଚିହ୍ନ) ଖୋଜି ବୁଲିଲେ ଲଷ୍ଟସିର୍ ବହୁ ଶାଖାରେ ବିଭକ୍ତ ଅନ୍ଧକାରମୟ ସୁଡଙ୍ଗ ମାନଙ୍କର ଜାଲ ଭିତରେ । ବହୁ ଅନୁସନ୍ଧାନ ପରେ ଜାଗୁଆର୍‌ର ପାହୁଲ ଚିହ୍ନ ଆବିଷ୍କୃତ ହେଲା । ସେଥିରୁ ସ୍ପଷ୍ଟ ହୋଇଥିଲା ଯେ ଜନ୍ତୁଟି କୌଣସି କାରଣରୁ ଗୁମ୍ଫା ଭିତରକୁ ପଶି ଆସିଲା ପରେ ଫେରିବା ବାଟ ଭୁଲି ଏଣେତେଣେ ବହୁ ଦୂର ଭିତରକୁ ପଶି ବାଟ ଖୋଜିଥିଲା– ଶେଷରେ ମରି ପଡିଥିଲା । ସେଇ ଜାଗୁଆର୍‌ଟିର ଅସ୍ଥି ବର୍ତ୍ତମାନ ନ୍ୟୁୟର୍କର ନାଚ୍ୟୁରାଲ୍ ହିଷ୍ଟ୍ରି ମ୍ୟୁଜିୟମ୍‌ରେ ପ୍ରଦର୍ଶିତ ହେଉଛି ଓ ତାର ପାଦଚିହ୍ନର ପ୍ଲାଷ୍ଟର୍ ଅଫ୍ ପାରିସ୍ ଛାଞ୍ଚ ଆମେ ଲଷ୍ଟ ସି ମ୍ୟୁଜିୟମ୍‌ରୁ ମଧ୍ୟ ଦେଖିଲୁ ।

## ଗୁହା ଅଭ୍ୟନ୍ତରକୁ ପ୍ରବେଶ

ମ୍ୟୁଜିୟମ୍ ଭିତରେ ବୁଲିବୁଲି 'ଲଷ୍ଟ ସି'ର ଭୂତାତ୍ତ୍ୱିକ ଇତିହାସ ସଂପର୍କରେ ପ୍ରାରମ୍ଭିକ ଧାରଣା କିଛି ସଂଗ୍ରହ କଲା ପରେ ଆମ ଗାଇଡ୍ ଆମ ଦଳକୁ ଅଲଗା କରି ଠାଏ ଠିଆ-ହେବାକୁ କହିଲେ । ଗାଇଡ୍‌ଙ୍କୁ ଘେରି ଆମେ ଠିଆହେଲୁ ଗୋଟାଏ ଜାଗାରେ । ଏତେବେଳକେ ସାମ୍‌ନାସାମ୍‌ନି ଦେଖିବାର ସୁଯୋଗ ମିଳିଲା ଲୋକଟିକୁ । ବୟସ ଦୃଷ୍ଟିରୁ ଲୋକଟି ମନେ-ହେଉଥାଏ ପଚିଶ କି ତିରିଶ– ବୋଧହୁଏ ସ୍ଥାନୀୟ ଲୋକ । ଦକ୍ଷିଣିଆ ଆମେରିକାନ୍ ଲୋକଙ୍କ ଇଂଲିସ୍ ଉଚ୍ଚାରଣରେ ବେଶ୍ ମଜାମଜା କଥା କହି ଟୁରିଷ୍ଟ୍‌ମାନଙ୍କ ମନୋରଂଜନ ପାଇଁ ଚେଷ୍ଟା କରିବା ଭିତରେ ହଠାତ୍ ଲୋକଟି ଚମକେଇ ଦେଲା ସମସ୍ତଙ୍କୁ– "Well ! Any one of you here has a heart problem or claustrophebia ? Please stand out" (ଆପଣମାନଙ୍କ ଭିତରୁ କାହାରି ହୃଦ୍‌ରୋଗ ଅଛି କି କିଂବା ଜାକସାର ଜାଗରେ ରୁନ୍ଧିହେଲା ଭଳି ଅନୁଭବ ହୁଏକି ? ତା'ହେଲେ ଦୟାକରି ବାହାରିଯାନ୍ତୁ ।"

କିଛି ସମୟ ପାଇଁ ସମସ୍ତେ ଚୁପ୍ ହେଇଗଲେ । ପରେ ଜଣଜଣ କରି ସମସ୍ତେ ମୁଣ୍ଡ ହଲେଇ ମନାକରିବାରୁ ଲୋକଟି ପୁଣି ପଚାରିଲା, ''ଏଠି କେହି ଅଛନ୍ତି ଯାହାଙ୍କର ଭୟ ଥାଏ ଅନ୍ଧାରକୁ? ଆପଣମାନଙ୍କୁ ଅନ୍ତତଃ ଦୁଇତିନିଘଣ୍ଟା ପର୍ଯ୍ୟନ୍ତ ଏଠି ଗୁମ୍ଫା ଭିତରର ଘୋର ଅନ୍ଧାର ଭିତରେ ଚଳପ୍ରଚଳ ହେବାକୁ ପଡିବ । ଖାଲି ଅନ୍ଧାର ନୁହେଁ– ନିସ୍ତବ୍ଧତା ବି । ସେ ନିସ୍ତବ୍ଧତା ଏମିତି ସେମିତି ନୁହେଁ– ମୁଣ୍ଡ ଝାଇଁମାରିଯିବ ଅଭ୍ୟାସ ନଥିଲେ ।''...

ଆମ ଦଳରେ ଥିଲେ କେତେଜଣ ବୟସ୍କ ବୃଦ୍ଧ ବୃଦ୍ଧା । ଜଣେ ବିଦେଶିନୀ ଯୁବତୀ ଟୁରିଷ୍ଟ୍ ତା' କାଖରେ ଉଡିଆଣି ଛୁଆଟିଏ ଜାକିଧରି ମଧ୍ୟ ଠିଆହେଇଥାଏ ଆମ ଦଳରେ । ଧନ୍ୟ କହିବ ତା' ସାହସକୁ । ଗାଇଡ୍‌ଙ୍କ ପ୍ରଶ୍ନ ଶୁଣି ଆମେ ନିରୁତ୍ତର ରହିବାରୁ ଆରମ୍ଭ ହେଲା ଏଥର 'ଲଷ୍ଟ୍-ସି' ଅଭିଯାନ । ''ତାହେଲେ ଯିବା''– କହି ଗାଇଡ୍ ଡଗଡଗ ହେଇ ଚାଲିବା ଆରମ୍ଭ କରିଦେଲେ । ଆମେ ଚାଲିଲୁ ତାଙ୍କ ପଛରେ ।

ପ୍ରଥମେ ଓହ୍ଲେଇବାକୁ ହେଲା ଅନେକ ଗୁଡିଏ ପାହାଚ– ଏକ ଉଚ୍ଚାଜାଗାରୁ ତଳକୁ । ପହଞ୍ଚିଲୁ ଲଷ୍ଟ୍ ସି ଗୁମ୍ଫା ମୁହଁ ପାଖାପାଖି ଏକ ଖୋଲା ପଡିଆରେ । ଜାଗାଟା ଦେଖି ମନେହେଲା ଖଣ୍ଡଗିରିର ହାତୀ ଗୁମ୍ଫା ସାମ୍ନା ସେଇ ଖୋଲା ଜାଗାଟି ଭଳି । ସେଠି ଦେଖିଲୁ ଗୋଟିଏ ବଡ ଶିରୀଷ ଗଛ ଭଳି ପୁରୁଣା ଗଛ । ସେ ଗଛକୁ ଦେଖେଇ ଗାଇଡ୍ କହିଲେ, ''ଏ ଗମ୍ ଟ୍ରି ଟି ହେଲା ବାସ୍ତବିକ୍ ଆମେରିକା ଇତିହାସର ଗୋଟାଏ ଅତି ସ୍ପର୍ଶକାତର ସମୟର ସାକ୍ଷୀ । ଆପଣମାନେ ଜାଣିଥିବେ ୧୮୬୦ର ସିଭିଲ୍ ଓ୍ୱାର୍ ସମୟରେ ଏ ଦେଶର ଦକ୍ଷିଣ ଓ ଉତ୍ତର ଭିତରେ ଭୟଙ୍କର ସିଭିଲ୍ ଓ୍ୱାର୍ ହେଇଥିଲା–କ୍ରୀତଦାସ ପ୍ରଥାର ଉଚ୍ଛେଦକୁ କେନ୍ଦ୍ର କରି । ସେଇ ସମୟର ଘଟଣା ଏ– । ଦକ୍ଷିଣର କନ୍‌ଫେଡ୍‌ରେଟ୍ ଆର୍ମିର ଏଠି ଗୋଟାଏ ଗୋଳାବାରୁଦ ନିର୍ମାଣ କାରଖାନା ଥିଲା । ଏ ଅଂଚଳରେ ଗୋଳା ବାରୁଦ ତିଆରି ପାଇଁ ପ୍ରଚୁର ସଲ୍ଟପିଟର୍ ମିନ୍‌ରାଲ୍ ମିଳେ । କନ୍‌ଫେଡରେଟ୍ ଆର୍ମିର ଗୋଳା ବାରୁଦ କାରଖାନା ସେଇ ସଲଟ୍‌ପିଟ୍‌ର ଉପରେ ନିର୍ଭର କରିଥାଏ । ଏ ଖବର ଶୁଣି ୟୁନିୟନ୍ ପକ୍ଷର ଜଣେ ଗୁପ୍ତଚର ଏଠି ପହଞ୍ଚିଲା । ସେ ବିଚରା ଧରାପଡିଗଲା । ତାକୁ ଏଇ ଗଛତଳେ କନ୍‌ଫେଡ୍‌ରେଟ୍ ଆର୍ମି ହତ୍ୟା କରିଥିଲା । ୧୮୬୩ର ସେ ଘଟଣା– ଚାଲନ୍ତୁ ଦେଖିବେ ଗୁମ୍ଫା ଭିତରେ ଠାଏ ପଥର ଉପରେ ଏଇ ସଂଖ୍ୟାଟି ଅଙ୍ଗାରରେ ଲେଖାଯାଇଚି । ଏ ଲେଖାଟା ଯେ ସେଇ ସମୟର ତାହା ପ୍ରମାଣିତ ହୋଇଛି କାର୍ବନ୍ ଡେଟିଂରୁ ।''

ଏତିକି କହି ଗାଇଡ୍ ଚାଲିଲେ ଆଗକୁ । କିଛି ସମୟ ପରେ ଆମେ ପହଞ୍ଚିଲୁ ଗୁମ୍ଫା-ମୁହଁରେ । ଗୁମ୍ଫା ମୁହଁରେ ମୁଖଶାଳା ଭଳି ଗୁମ୍ଫାର ଏକ ବିରାଟ ଆଁ (ୟନିଂ) । ମୁଣ୍ଡ ଉପରେ ପଥର ଛାତ । ସେ ଜାଗାକୁ ଦେଖେଇ ଗାଇଡ୍ କହିଲେ, ''ଏଇଟା ମୁନ୍‌ସାଇନ୍ ଏରିଆ । ଏ ଜାଗାକୁ ଆମେରିକାର ଆଦିବାସୀମାନେ ତାଙ୍କ ସମୟରେ ବ୍ୟବହାର କରୁଥିଲେ । ବୋଧହୁଏ ଏଇ ଜାଗାଟା ଥିଲା ସେମାନଙ୍କର ମଦ ପିଇ ନାଚ ଗୀତ ଫୁର୍ତ୍ତି କରିବା ଜାଗା ।

ଏଇ ଦେଖନ୍ତୁ ସେ ବେଳର କେତେକ ମଦ ତିଆରି ସାଜସରଞ୍ଜାମ । ସେଗୁଡ଼ିକୁ ସଂରକ୍ଷିତ କରି ରଖାଯାଇଚି ଆମେରିକାନ ମ୍ୟୁଜିୟମ୍ ସଂସ୍ଥା ପକ୍ଷରୁ । ଏଥର ଚାଲନ୍ତୁ ଭିତରକୁ । ୟା'ପରେ ଆରମ୍ଭ ହେବ ଅତ୍ୟନ୍ତ କଠିନ ଯାତ୍ରା । ମନେରଖନ୍ତୁ– ଏ ଏକ ସୁଡ଼ଙ୍ଗ ଯାହା ଭିତରେ ମୁଣ୍ଡ ଟେକି ଚାଲିବା ଅସମ୍ଭବ । ମୁଣ୍ଡ ନୁଆଁଇ ନୁଆଇଁ ଆଗେଇବାକୁ ହବ ଅନ୍ତତଃ ଏକ ମାଇଲ୍ ଗଡାଣିଆ ଆବ୍‌ଡା ଖାବ୍‌ଡା ସରୁ ପାଦଚଲା ବାଟରେ ତିନିଶହ ଫୁଟ ତଳ ପର୍ଯ୍ୟନ୍ତ– ସେଇଠି ପାଇବେ– 'ଲଷ୍ଟ୍ ସି' ।''

ଗାଇଡ୍ ମୁଣ୍ଡ ନୁଆଁଇ ଚାଲିଲେ ଆଗକୁ– ତାଙ୍କ ପଛେ ପଛେ ଧାଡ଼ିବାନ୍ଧି ଆମେ । କିଛି ସମୟ ପରେ ଶୁଣାଗଲା ଢୁ ଢା ଶବ୍ଦ । ପରେ ପରେ ବିକଳ ଚିତ୍କାର– ଓଃ ଆଃ । କାହାକାହାର ମୁଣ୍ଡ ନିଶ୍ଚୟ ପିଟିହେଲା ନୁଆଁଣିଆ ଗୁମ୍ଫା ଛାତରେ । ଧୀରେ ଧୀରେ ଅନ୍ଧାରର ମାତ୍ରା ବଢିଲା । ତେବେ ଗୁମ୍ଫା ଭିତରେ ପାଦତଳ ରାସ୍ତା ଦିଶିବା ପାଇଁ ଆଲୋକ ବ୍ୟବସ୍ଥା କରାଯାଇଥିଲା ସଂସ୍ଥା ପକ୍ଷରୁ । ଗୁମ୍ଫା କାନ୍ଥରେ ଫୁଟ୍-ଲାଇଟ୍ ଭଳି ଇଲେକ୍‌ଟ୍ରିକ୍ ଲାଇଟ୍ ବ୍ୟବସ୍ଥା କରାଯାଇଥାଏ ଅବଶ୍ୟ । କିନ୍ତୁ ଅନ୍ଧାରର ସାନ୍ଦ୍ରତା କ୍ରମଶଃ ଅଧିକରୁ ଅଧିକ ବଢି ବଢି ଚାଲିଲା । ସେ ଅନ୍ଧାର ଏକ ଭିନ୍ନ ଧରଣର ଅନ୍ଧାର– ତାର ସତେକି ଆଲୋକକୁ ଶୋଷିନେବା ଭଳି କ୍ଷମତା ଥାଏ ! କେହି ଜଣେ କୋଉଠୁ ଚିତ୍କାରକଲେ– Oh ! Are we entering a black hole here ?

ଏଥର ଆରମ୍ଭହେଲା– ଶୀତ । ଗୁମ୍ଫାର ଗଭୀରତା ବଢିବା ସହିତ ତାଳଦେଇ ତାପମାତ୍ରା କମି କମି ଚାଲିଲା । ଦେହ ଶୀତେଇଉଠିଲା । ମୋ ଆଗରେ ଥା'ନ୍ତି ପ୍ରବୀର । ମୋ ପଛରେ ନିରୁପମା । ଆମ ମଝିରେ ପ୍ରତୀକ– ପାଞ୍ଚବର୍ଷର ପିଲା । ବୁଲବୁଲ ଆମ ଦଳର ଭ୍ୟାନ୍‌ଗାର୍ଡ ଭଳି ଜଗିଥାଏ ଆମକୁ ପଛପଟୁ । ତା' ପଛକୁ ଆହୁରି ଅନେକ ପର୍ଯ୍ୟଟକ । ଏମିତି ଧାଡିରେ ଚାଲିଥାଉ ଆମେ ଅନ୍ଧକାରର ଅଭିଯାତ୍ରୀ ଦଳ ଲଷ୍ଟ୍ ସି ଅଭିଯାନରେ ସେଦିନ । ଆମ ପାଦର ଗତିରୁ ମନେହେଉଥାଏ ଆମେ ଓହ୍ଲେଇ ଯାଉଚୁ ଏକ ଢାଲୁରାସ୍ତାରେ ଅତଳ ପାତାଳ ଆଡକୁ ।

କିଛି ବାଟ ସେମିତି ନଇଁନଇଁ ଗଳିଗଳି ଚାଲିବା ଭିତରେ ମଝିରେ ମଝିରେ ଆସୁଥାଏ ପ୍ରତିବନ୍ଧକ ଭିନ୍ନ ଭିନ୍ନ ପ୍ରକାରର । ଗୋଟାଏ ଗୋଟାଏ ଜାଗାରେ ବାଟ ପୂରା ବନ୍ଦ ହେଇଗଲା ପରି ମନେହଉଥାଏ । ସେ ଜାଗାରେ ଆଗକୁ ଯିବାକୁ ହେଲେ ଗୋଟିଏ ସରୁ ଫାଟ ଭିତରେ ହିଁ ପଶିବାକୁ ପଡେ । ଗାଇଡ୍ ଟୋକାଟି ଆମ ଆଗେ ଆଗେ ଚାଲୁଚାଲୁ କେତେବେଳେ ପଶିଯାଇ ସାରିଥାଏ ସେ ଫାଟ ବାଟେ । ଆରପାଖୁ ତା' ଡାକ ଶୁଭିଲା– Creep in like a lizard now– if you cant then please stay back and wait here !

ବାସ୍ତବିକ୍ ଏକ ବଡ ପରୀକ୍ଷା ଦେବାକୁ ଥିଲା ସେ ଜାଗାରେ ଆମ ଦଳର କେତେକ ମୋଟା ଲୋକଙ୍କ ପାଇଁ । କିନ୍ତୁ ଆଶ୍ଚର୍ଯ୍ୟ କଥା– ସେ ପ୍ରତିବନ୍ଧକ ପାରିହେଇଗଲେ ଆମ

ଦଳର ସମସ୍ତେ କେମିତି କେଜାଣି । ଆରପାଖେ ମୁଣ୍ଡ ଗଣତିରୁ ଜଣାପଡିଲା ଦଳର ସମସ୍ତେ ଚାଲିଆସିପାରିଚନ୍ତି– ନିଜ ଛାତିରେ ଛୁଆକୁ ଜାକି ଧରିଥିବା ସେଇ ଭଦ୍ରମହିଳାଙ୍କ ସମେତ ! ଆଶ୍ଚର୍ଯ୍ୟର ବିଷୟ ସେଇ ନିସ୍ତବ୍ଧ ନିବିଡ ଅନ୍ଧକାର ଏବଂ ବାଟଯାକ ଏତେ ସବୁ ବିପଦଜନକ ପରିସ୍ଥିତି ସତ୍ତ୍ୱେ ସେଇ ପିଲାଟି କେବଳ ଥରଟିଏ ମାତ୍ର ଚିହିରି ଉଠିବା ପରେ କେମିତି କେଜାଣି ଶାନ୍ତହୋଇଯାଇଥିଲା । ଏହା ପରେ ତାର ସ୍ୱର ଆଉ ଶୁଭିନଥିଲା ଆମର ଯାତ୍ରା ଆରମ୍ଭରୁ ଶେଷ ଭିତରେ !

ପାତାଳ ଅବରୋହଣ ଯାତ୍ରା ଆମର ପୁଣି ଆରମ୍ଭ ହେଇଗଲା । ଦଳର ନାୟକ ଗାଇଡ ଆମକୁ ବରାବର ସତର୍କକରି ଚାଲିଥାନ୍ତି ପ୍ରତି ପଦେପଦେ । ମଝିରେ ଥରେ ଆମକୁ ଅଟକେଇ ଦେଇ ପଚାରିଲେ, ''ଶୁଣୁଚନ୍ତି ତ ! କାନଦେଇ ଶୁଣନ୍ତୁ । ଗୋଟାଏ ଘୁଘୁ ଶବ୍ଦ ଶୁଣାଯାଉଚି କାନ୍ଥ ଆରପଟୁ ! ଶୁଣି ପାରୁଚନ୍ତି ? ଏ ଶବ୍ଦ ଆସୁଚି କୋଉଠୁ ଜାଣନ୍ତି ?''

ସମସ୍ତେ ଅନ୍ଦାଜ୍ ଲଗେଇଲେ ସେଇ ମେଘ ଗମ୍ଭୀର ଘୁଘୁନାଦର ଉତ୍ପତ୍ତିସ୍ଥଳଟାକୁ ଠଉର କରିବାରେ । କିନ୍ତୁ କିଛି ସ୍ଥିର କରିନପାରିବାରୁ ସମସ୍ତେ ଅପେକ୍ଷା କଲେ ଗାଇଡ୍ କ'ଣ କହୁଚନ୍ତି ଜାଣିବାକୁ । ଏହାପରେ ହସି ହସି ଗାଇଡ୍ ଅନ୍ଧାର ଭିତରେ ଅଦୃଶ୍ୟ ସୁଡଙ୍ଗର ଗୋଟାଏ କାନ୍ଥ ଉପରେ ହାତରେ ଧରିଥିବା ଟର୍ଚ୍ଚ ଲାଇଟଟିକୁ ଫୋକସ୍ କଲେ । କହିଲେ, ''ଏଇଠି– ଏ ପାଣିଧାରଟାକୁ ଦେଖୁଚନ୍ତି ତ କାନ୍ଥରେ ? ଏଠି କାନ୍ଥରେ କୋଉଠି ଟିକେ ଫାଟ ରହିଚି । ସେଇ ଫାଟବାଟେ ପାଣି ଝରୁଚି– ଏ କାନ୍ଥର ଠିକ୍ ଆରପାଖେ ଏକ ପ୍ରବହମାନ ନଦୀ ସ୍ରୋତର ଶବ୍ଦ ଏ ! କଳ୍ପନା କରନ୍ତୁ– ଆମେ ବର୍ତ୍ତମାନ ଚାଲିଚୁ ଭୂ-ଗର୍ଭରେ ପ୍ରବାହିତ ଏକ ଚିରସ୍ରୋତା ନଦୀର ଗର୍ଭ ଭିତରେ । କେମିତି ଲାଗୁଚି ଶୁଣିବାକୁ କଥାଟା ?''

ଗୋଟାଏ ଗୁଞ୍ଜରଣ ଖେଳିଗଲା ଆମ ଦଳ ଭିତରେ । କେହି କେହ ଁଚିହିରିଉଠିଲେ ଭୟରେ । ପୁଣି ଜଣେ କିଏ ବି ଠୋଠୋ ହସି ପଚାରିଲେ ଗାଇଡକୁ, ''ୱେଲ୍ ମିଃ. ଗାଇଡ୍ ! ଯଦି ହଠାତ୍ ଏ ଗୁମ୍ଫା କାନ୍ଥଟା ବର୍ତ୍ତମାନ ଏଇଠି ଉଇ ଫାଟ ପାଖରେ ଭୁଷୁଡି ପଡେ– ତେବେ ?''

''ତେବେ ତ ସ୍ୱର୍ଗପ୍ରାପ୍ତି !'' ଯୁବ ଗାଇଡ୍ ଜଣକ ଗମ୍ଭୀର ଭାବେ ପ୍ରଶ୍ନର ଉତ୍ତର ଦେଉ ଦେଉ କହିଲେ, ''ଯଦି ଭୟଲାଗୁଚି ତେବେ ଦୟାକରି ମନେପକାନ୍ତୁ– ୧୯୦୫ ମସିହାରେ ସେଇ ତେରବର୍ଷର ବାଳକ ବେନ ସାଣ୍ଡସର୍ ଦୁଃସାହସିକ ଅଭିଯାନ କଥା । ଏତେ ଟିକେ ପିଲା କୋଉ ସାହସରେ ସେଦିନ ଏକା ଏକା ହାତରେ ଟର୍ଚ୍ଚଟିଏ କେବଳ ଧରି ପଶି ଆସି ପାରିଥିଲା ଏ ମୃତ୍ୟୁଲୋକକୁ, ଆଉ ଆବିଷ୍କାର କରିପାରିଥିଲା ଏକ ନିଖୋଜ ସମୁଦ୍ର ସଇତାନ୍‌ର ଘର ପରି ଏ ନିରନ୍ଧ୍ର ଅନ୍ଧାର ଭିତରେ !''

ଏଇ ଭଳି କଥା ଭିତରେ ସମସ୍ତେ ଚାଲିଥାନ୍ତି ଆଗକୁ ଆଗକୁ । କିଛି ସମୟ ପରେ ଏକ ଚମତ୍କାର ଘଟଣା ଘଟିଲା । ଆମେ ସେତେବେଳକୁ ଗୁମ୍ଫା ଭିତରେ ଟିକିଏ ପ୍ରଶସ୍ତ ଜାଗାରେ ପହଞ୍ଚିଗଲୁଣି । ଗାଇଡ୍ ପରାମର୍ଶ ଦେଲେ, "ଚାଲନ୍ତୁ, ଅଳ୍ପ ସମୟ ପାଇଁ ଏଠି ଟିକେ ବସିପଡିବା– ଆରାମ କରିବା । ତା'ପରେ ପୁଣି ବାହାରିବା ଗନ୍ତବ୍ୟ ପଥରେ । ଆମେ ବସିପଡିଲୁ ଥକ୍କାମରା ହେଇ ତଳ ପଥର ଚଟାଣ ଉପରେ ।

ହଠାତ୍ କ'ଣ ହେଲା କେଜାଣି– ଫ୍ଲଟ୍‌ଲାଇଟ୍ ଗୁଡାକ ଥପ୍‌କିନା ଲିଭିଗଲା । ଗାଇଡ୍ ବଡପାଟିରେ ଆମକୁ ସତର୍କ କରିଦେଲ, "ଇଲେକ୍‌ଟ୍ରିକ୍ ଫେଲ୍ୟୁଅର୍ । ଡରନ୍ତୁ ନାହିଁ । ଚୁପ୍‌ଚାପ୍ ବସି ରହନ୍ତୁ । ହଲ୍‌ଚଲ୍ ହୁଅନ୍ତୁ ନାହିଁ କେହି । କଥାବାର୍ତ୍ତା ବି କରନ୍ତୁ ନାହିଁ । ମୁଁ ଟିକେ ଯାଉଚିଭାରି । ଏଠି ଖୁବ୍. ପାଖରେ ଗୋଟାଏ ଫୋନ୍ ଲାଇନ୍ ଅଛି । ଫୋନ୍ ପାଇଲେ ସେମାନେ ସାଙ୍ଗେ ସାଙ୍ଗେ ଲାଇଟ୍‌ର ବନ୍ଦୋବସ୍ତ କରିଦେବେ । ଚିନ୍ତା କରନ୍ତୁ ନାହିଁ । ଆପଣମାନେ ଶାନ୍ତ ରହନ୍ତୁ । ମୋର ଅନୁରୋଧ ଆଖିବୁଜି ଟିକେ ପ୍ରାର୍ଥନା କରନ୍ତୁ– ତା'ରି ଭିତରେ କାନ ଡେରି ଶୁଣନ୍ତୁ । ଏଠି ଅନ୍ଧାର ବି କଥା କହେ । ଶୁଣୁଥାନ୍ତୁ । ମୁଁ ଆସୁଚି..." ପରେ ପରେ ଲୋକଟା ଆମକୁ ଏକା ଛାଡିଦେଇ କୁଆଡେ ଉଭାନ୍ ହେଇଗଲା ।

ଗୋଟାଏ କୋକୁଆ ଭୟ ଗ୍ରାସକରିଗଲା ସମସ୍ତଙ୍କୁ । ସମସ୍ତେ ମୂକ ପାଲଟିଯାଇଚନ୍ତି ସତେକି । କାହାରି ପାଟିରୁ ଉଁ କି ଚୁଁ ଶୁଣାଗଲା ନାହିଁ ଅନେକ ସମୟ । ଗହ୍ୱର ଭିତରଟା ଏକ ସତ ସତ ବ୍ଲାକ୍-ହୋଲ୍ ପାଲଟିଗଲା ଯେମିତିକି ।

ସେଇ ବ୍ଲାକ୍‌ହୋଲ୍ ଭିତରେ ମୋର ପ୍ରଥମ ଅନୁଭବ ହେଲା– ଅନ୍ଧାର ବାସ୍ତବିକ୍ ଏକ ଶୂନ୍ୟତା ନୁହେଁ– ତାହା ଏକ ପଦାର୍ଥ ଯାହାକୁ ଛୁଇଁହୁଏ । ପୁଣି ମନେହେଲା ଅନ୍ଧାର, ବିଶେଷତଃ ନିସ୍ତବ୍ଧ ଅନ୍ଧାରର ନିଜସ୍ୱ ଭାଷା ଥାଏ ଯାହାକୁ କାନ ଡେରିଲେ ଶୁଣିହୁଏ । ମୁଁ ସେ ଭାଷାକୁ କାନ ଡେରିଲି । ଖୁବ୍ ଅଳ୍ପ ସମୟ ପରେ ମତେ ଶୁଣାଗଲା ଏକ ଝିଁଝିଁ ଶବ୍ଦ । ପ୍ରଥମେ ସେ ଝିଁଝିଁ ଶବ୍ଦ ଶୁଣାଗଲା ପିଲାଦିନେ ରାତି ଅଧରେ ଆମ ଗାଁରେ ଥିବା ବେଳେ ଯୋଉ ନିଶାଗର୍ଜନ ଶୁଣିଥିଲି ଠିକ୍ ତା'ରି ପରି । କିନ୍ତୁ ପରେ ପରେ ସେ ଶବ୍ଦ ଶୁଣାଗଲା ଆଉ ପ୍ରକାରେ– ଅବିକଳ ଓଁକାର ଧ୍ୱନି ପରି । ସେ ଧ୍ୱନି ଶୁଣାଯାଉଥାଏ ବାହାର ଜଗତ୍‌ରୁ ନୁହେଁ– ମୋ' ଭିତରୁ, ଏକେବାରେ ମୋ' ଅନ୍ତର ଭିତରୁ । ଆଃ, କି ମଧୁର ସେ ଧ୍ୱନି ।' ମୁଁ ଜାଣିଥିଲି ଅବଶ୍ୟ ସେ ଥିଲା କେଉଁ ପ୍ରକାରର ଶବ୍ଦ– ତାକୁ କୁହାଯାଏ ଅନାହତ ନାଦ ଯୋଗଶାସ୍ତ୍ରରେ । ଏ ଅନାହତ ନାଦ ମୋର ସଂପୂର୍ଣ୍ଣ ଅପରିଚିତ ନଥିଲା– ତେଣୁ ମୁଁ ମଜ୍ଜିଗଲି ସେଇ ମଧୁର ମନୋମୁଗ୍ଧକର ଆତ୍ମାର ସଙ୍ଗୀତକୁ ପ୍ରାଣଭରି ଶୁଣିବାରେ । ତା' ଭିତରେ କେତେ ସମୟ ବିତିଯାଇଥିଲା ମୋର ଆଦୌ ଖିଆଲ ରହିଲା ନାହିଁ ।

କେତେ ସମୟ ପରେ ଗହ୍ୱର ଭିତରେ କଥାବାର୍ତ୍ତା ଶବ୍ଦରେ ଧ୍ୟାନ ଭାଙ୍ଗିଗଲା । ଆଖି ଖୋଲି ଦେଖିଲି– ଗୋଟିଏ ପେଟ୍ରୋମାକ୍ସ ଆଲୁଅ ଧରି କେହି ଜଣେ ବ୍ୟକ୍ତି ଧାଇଁଆସୁଚନ୍ତି ।

ଆମେ ବସିଥିବା ଜାଗାରେ ପେଟ୍ରୋମାକ୍ସଟାକୁ ରଖିଦେଇ ସେ ବ୍ୟକ୍ତି ଅତ୍ୟନ୍ତ ବିନୟ ସହକାରେ କହିଲେ, "Very sorry for the trouble. But this is only a part of our entertainment program. Hope, mean while, you all must have enjoyed the enlightening music of darkness inside this pre-historic Craighead Cavern. Thank you and let's then move ahead"–

ସେ ଥିଲା ଏକ ନାଟକ । ପରେ ପରେ ଇଲେକ୍‌ଟ୍ରିକ୍ ଲାଇନ୍ ଆସିଗଲା । ଫୁଟ୍‌ଲାଇଟ୍ ଗୁଡିକ ପୁଣି ଜଳିଉଠିଲା । ଆମ ମୂଳ ଗାଇଡ୍‌ଙ୍କ ପୁନରାବିର୍ଭାବ ହେଲା । ହସ ହସ ହୋଇ ସେ ଆମ ଦଳକୁ ସ୍ୱାଗତ କଲେ । ପରେ ପରେ ଯାତ୍ରା ପୁଣି ଆଗେଇଲା ।

## କନ୍‌ଫରେନ୍ସ ରୁମ୍ ! (ସଭାଗୃହ)

ପୁଣି କିଛି ବାଟ୍ ଭୂତଳ ଗିରି ସଂକଟ ପରି ସଂକୀର୍ଣ୍ଣ ପଥରେ ଯିବାକୁ ହେଲା । ହଠାତ୍ ଗାଇଡ୍ ଘୋଷଣା କଲେ, ''ଆମେ ବର୍ତ୍ତମାନ ପ୍ରବେଶ କରିବାକୁ ଯାଉଚେ ଏକ କନ୍‌ଫରେନ୍ସ ହଲ୍‌ରେ । ନା– ଆଶ୍ଚର୍ଯ୍ୟ ହୁଅନ୍ତୁ ନାହିଁ– ଆଗରେ ଯୋଉ ଜାଗାଟା ଆସୁଚି ତା' ନାଁ କନ୍‌ଫରେନ୍ସ ହଲ୍ । ଆମେ ବିଶ୍ୱାସ କରିପାରିଲୁ ନାହିଁ । ମାଟି ତଳେ ପୁଣି ଗୋଟାଏ କନ୍‌ଫରେନ୍ସ ହଲ୍ କ'ଣ ?

କିନ୍ତୁ ପ୍ରକୃତରେ ଗାଇଡ୍ ସତ କହୁଥିଲେ । ହଠାତ୍ ନିଶ୍ୱାସର ଗତି ବଦଳିଗଲା ପରି ଅନୁଭବ ହେଲା । ଆମ ଚାରିପଟରେ ସଂକୀର୍ଣ୍ଣ ସୁଡଙ୍ଗ କାନ୍ଥଗୁଡ଼ାକ ହଠାତ୍ ମେଲିଗଲା ଚାରିପଟକୁ ଯେମିତି । ପରେ ପରେ ଗୋଟିଏ ବିରାଟ ସିନେମା ହଲ୍ ଭଳି ଲମ୍ୱାଚଉଡା ଆଉ ଉଚ୍ଚକାନ୍ଥ ଓ ଛାତ ଥିବା ପ୍ରେକ୍ଷାଳୟ ଗୃହ ଭିତରେ ଆମେ ନିଜକୁ ଆବିଷ୍କାର କଲୁ । ଭୂଗର୍ଭରେ ଏଭଳି ଏକ ଆଧୁନିକ ଢାଞ୍ଚାର ସଭାଗୃହ କିଏ କାହିଁକି ନିର୍ମାଣ କରିଥିଲା ଏଠି ପାତାଳପୁର ଭଳି ଜାଗାରେ ? ଚିନ୍ତା କରିହେଉନଥାଏ ରହସ୍ୟଟା । ଗାଇଡ୍ ବୁଝେଉଥାନ୍ତି–

''ଏ ଏକ ଭୂତାତ୍ତ୍ୱିକ ଯୁଗର ଷ୍ଟ୍ରକ୍‌ଚର୍ । ଏ ଜାଗାକୁ ଆମେରିକାର ଆଦିବାସୀମାନେ ବହୁ ପୂର୍ବରୁ ଆବିଷ୍କାର କରିଥିଲେ । ଉପନିବେଶବାଦୀମାନେ ଆଦିବାସୀଙ୍କୁ ଯୁଦ୍ଧରେ ପରାସ୍ତ କରି ଏ ଜାଗା ଦଖଲ ନେବା ପରେ ଦେଖିଲେ– ଏଇଟା ଥିଲା ଆଦିବାସୀଙ୍କ ଅସଲ ଦୁର୍ଗ । ସେମାନଙ୍କର ମିଲିଟାରି ହେଡ୍ କ୍ୱାର୍ଟର୍ସ ସମ୍ଭବତଃ ଏଇଠି ଥିଲା । ଏଇଠୁ ଆଦିବାସୀଙ୍କ ବହୁ ପରିମାଣର ଅସ୍ତ୍ରଶସ୍ତ୍ର, ପୋଷାକ, ମସ୍କେଟ୍, ମୋକାସିନ୍ (ଜୋତା) ଇତ୍ୟାଦି ସାଜସରଞ୍ଜାମ ଜବତକରାଯାଇଚି । ସେସବୁ ଏଇଲେ ଦେଖିବେ ନ୍ୟୁୟର୍କର ନାଚ୍ୟୁରାଲ୍ ମ୍ୟୁଜିୟମ୍‌ରେ । ପରେ ଆମେରିକାନ୍ ଗୋରାଲୋକମାନେ ଏ ଜାଗାକୁ ବ୍ୟବହାର କଲେ ନିଜ ପାଇଁ । ଜଣେ ବିଚକ୍ଷଣ ଆମେରିକାନ୍ ଡାକ୍ତର ଏ ପ୍ରାକୃତିକ ଶୀତତାପ ନିୟନ୍ତ୍ରିତ ସ୍ଥାନକୁ ବ୍ୟବହାର

କରିଥିଲେ କିଛିବର୍ଷ ଏକ ଯକ୍ଷ୍ମା-ନିବାସ (ସାନାଟୋରିୟମ୍) ଭାବରେ। କିନ୍ତୁ ବିସ୍ମୟର କାରଣ ହେଲା– ଏଭଳି ଏକ ଆଧୁନିକ ପ୍ରେକ୍ଷାଳୟ ଭଳି ଫ୍ଲ୍ୟେଲ୍ ପ୍ଲାନ୍‌ଡ୍ ବିରାଟ କୋଠରୀ ଭୂଗର୍ଭର ଏପରି ଦୁର୍ଗମ ସ୍ଥାନରେ ମୂଳରୁ ନିର୍ମିତ ହେଲା କିପରି ଓ କାହିଁକି, କି ଉଦ୍ଦେଶ୍ୟରେ ? କେବଳ ଏଇ ଗୋଟିକ ବୋଲି ନୁହେଁ– ଚାଲନ୍ତୁ ଆଗକୁ– ଦେଖିବେ ଏ କେଭର୍ଣ୍ଣ ସିଷ୍ଟମ୍‌ର ଜାଗା ଜାଗାରେ ବାଟଯାକ ଏମିତି ଆହୁରି ଅନେକ ବଡବଡ ପ୍ରେକ୍ଷାଳୟ ରହିଚି। ଏଗୁଡିକ କେଉଁ ଉଦ୍ଦେଶ୍ୟରେ ପ୍ରକୃତି ତିଆରି କରିଥିଲା– ଏ ଏକ ପ୍ରଶ୍ନ ଯାହାର ଉତ୍ତର ନାହିଁ ମୋ ପାଖରେ। ଚାଲନ୍ତୁ ଏଥର।''

ଆମେ ଆଗେଇ ଚାଲିଲୁ। ସଂକୀର୍ଣ୍ଣ ସୁଡଙ୍ଗ ଭିତରେ ପୁଣି ଗଳିଗଳି କିଛି ବାଟ ଗଲା ପରେ ହଠାତ୍ ସୁଡଙ୍ଗ ମେଲିଗଲା ପୁଣି ଏକ ବିରାଟ ପ୍ରକୋଷ୍ଠ ଭିତରକୁ। ଏହିପରି ସୁଡଙ୍ଗ ପରେ ପ୍ରକୋଷ୍ଠ ଓ ପ୍ରକୋଷ୍ଠ ଉତ୍ତାରେ ସୁଡଙ୍ଗ ପାରିହେଇ ଆମେ କ୍ରମାଗତ ଅବତରଣ କରୁଥାଉ ଭୂଗର୍ଭ ଭିତରକୁ। ଅନ୍ଧାରର ଘନତା ବଢିବଢି ଚାଲିଥାଏ। ମନେହେଉଥାଏ ଆମ ନିଃଶ୍ୱାସରେ ବି ପୁଳପୁଳା ଅନ୍ଧାର ଶୋଷିହେଇଯାଉଥାଏ ଛାତି ଭିତରକୁ। ଅସ୍ୱସ୍ତିକର ନିଶ୍ଚୟ– କିନ୍ତୁ ଗୋଟାଏ ରୋମାଞ୍ଚକର ଅନୁଭବ ସେ ଯାହା ଜୀବନରେ କ୍ୱଚିତ୍ ଅନୁଭୂତ ହୁଏ। ମନେହେଲା– ଆମ ଦଳର ସମସ୍ତେ ସେଇ ରୋମାଞ୍ଚକର ଅନୁଭବରେ ମଜଗୁଲ୍ ଥା'ନ୍ତି ନିଶ୍ଚୟ– ଏପରିକି ସେଇ ଦଶ ଏଗାରମାସର ଦୁଧଖିଆ ଉତିଆଣୀ ଛୁଆ ପର୍ଯ୍ୟନ୍ତ। ପିଲାଟା ମା' କୋଳରେ ଅଦ୍‌ଭୂତ ଭାବେ ଶାନ୍ତ ରହିଥାଏ।

## ଶେଷରେ ପହଞ୍ଚିଲୁ ଲକ୍ଷ୍ୟସ୍ଥଳ ନିଖୋଜ ସମୁଦ୍ର ତଟରେ–

ହଠାତ୍ ଆମର ଗତିପଥ ରୁଦ୍ଧ ହୋଇଗଲା। ଆଉ ଆଗକୁ ଚଲାବାଟ ଦିଶୁନଥାଏ। ସାମନାରେ ଏକ ବିସ୍ତୀର୍ଣ୍ଣ କଳାରଙ୍ଗର ପରଦା ଟଣାଯାଇଥାଏ ଯେମିତି। ସେଇ କଳା-ରଙ୍ଗର ପରଦା ପ୍ରକୃତରେ ଅନ୍ଧକାର ସହିତ ଏକାକାର ହୋଇଥିବା ଏକ ବିଶାଳ ଜଳଭାଗ। ଆମେ ପହଞ୍ଚି ଯାଇ ସାରିଥାଉ ଲଷ୍ଟ୍-ସି-କୂଳରେ !

ଲଷ୍ଟ୍-ସି ବା ପୃଥିବୀପୃଷ୍ଠରୁ ଏକଦା ନିଖୋଜ ହୋଇଯାଇଥିବା ଏକ ସମୁଦ୍ରକୁ ଆମେ ଶେଷରେ ଠାବ କଲୁ ସେଠି ! ସମୁଦ୍ର କୂଳ ପର୍ଯ୍ୟନ୍ତ ଗଲୁ। ତୋଫା ଇଲେକ୍‌ଟ୍ରିକ୍ ବଲବ୍ ସବୁ ସ୍ଥାନେ ସ୍ଥାନେ ଜଳୁଥାଏ। ଜାଗାଟା ସଂପୂର୍ଣ୍ଣ ଆଲୋକିତ। ଆମ ପୂର୍ବ ବ୍ୟାଚ୍‌ରେ ଆସିଥିବା ଟୁରିଷ୍ଟ୍ ଦଳ ବେଳାଭୂମି ବାଲିରେ ଚାଲବୁଲ୍ କରୁଥାନ୍ତି। ପିଲାମାନେ ଓଦାବାଲିରେ ଖେଳୁଥାନ୍ତି। ଏଠି ବାଲିର ରଙ୍ଗ ଭୂପୃଷ୍ଠର ସମୁଦ୍ର ବେଳାଭୂମିର ବାଲି ପରି। ମାଟି ଉପର ସମୁଦ୍ର ଓ ମାଟି ତଳର ସମୁଦ୍ର ଭିତରେ କିଛି ତାରତମ୍ୟ ହଠାତ୍ ଆଖିରେ ପଡିଲା ନାହିଁ।

କିନ୍ତୁ ଅଳ୍ପ ସମୟ ପରେ ଜଣାପଡିଗଲା ଲଷ୍ଟ୍-ସିର ବୈଶିଷ୍ଟ୍ୟ। ଟିକିଏ ବେଳ ଜାଗାଟା ସାଙ୍ଗେ ପରିଚିତ ହେଇଯିବା ପରେ ପରେ ନାନା ବୈଚିତ୍ର୍ୟ ଦୃଶ୍ୟମାନ ହେବାକୁ ଲାଗିଲା।

ପ୍ରଥମେ ଲକ୍ଷ୍ୟ କରି ହେଲା– ଏ ସମୁଦ୍ରରେ ଲହଡି ନାହିଁ। ମୋ ଜୀବନରେ ନିସ୍ତରଙ୍ଗ ସମୁଦ୍ର ଦର୍ଶନ ଏଇ ପ୍ରଥମ ! ପୁଣି ଉପରକୁ ଚାହିଁ ଦେଖିଲି– ମୁଣ୍ଡ-ଉପରେ ଆକାଶ ନାହିଁ। ଆକାଶ ବିହୀନ ସମୁଦ୍ର ଯେ ସମ୍ଭବ ତାହା ଥିଲା ମୋର କଳ୍ପନା ବହିର୍ଭୂତ। ଆକାଶ ବଦଳରେ ଲାଷ୍ଟ-ସିରେ ଥାଏ ଗ୍ରାନାଇଟ୍ ଛାତ! ଏକ ବିଶାଳ ଗ୍ରାନାଇଟ୍ ପଥରର ଛତା ଏଠି ଆକାଶକୁ ବିସ୍ଥାପିତ କରିଥାଏ। ମତେ ଲାଗିଲା– ତାହାହିଁ ପ୍ରକୃତରେ ପାତାଳପୁରର ଏକ ଅଂଶ। ପୁରାଣରେ ପଢିଥିଲି– ପାତାଳପୁରକୁ ବାଟ ସମୁଦ୍ର ତଳେ। ବୋଧହୁଏ ଏଇ ଲାଷ୍ଟ୍-ସି ବାଟେ ଅର୍ଜୁନ ଅଶ୍ୱମେଧଯଜ୍ଞ ପୂର୍ବରୁ ପ୍ରବେଶ କରିଥିଲେ ପାତାଳକୁ ଓ ସେଠାରେ ନାଗରାଜଙ୍କ କନ୍ୟା ଉଲୁପିଙ୍କୁ ବିବାହ କରିଥିଲେ !

ଏଥର ଲାଷ୍ଟ୍-ସି ଆଡକୁ ଅନାଇଦେଖିଲି– ତା' ଭିତରେ ଡଙ୍ଗା ଚାଲୁଚି! ଡଙ୍ଗାରେ ବସିଚନ୍ତି ଯାତ୍ରୀ। ଡଙ୍ଗା କିନ୍ତୁ ସମୁଦ୍ରର ସେପାରି ଆଡକୁ ଯାଉନାହିଁ। ଅଳ୍ପ ଦୂର ଗଲା ପରେ ଫେରିଆସୁଚି କୂଳକୁ। ଏଠି ସେପାରି କହିଲେ କିଛି ନାହିଁ ବୋଲି ଶୁଣିଲି। କୁଆଡେ ଲାଷ୍ଟ-ସି ଏ ଯାବତ୍ ସଂପୂର୍ଣ୍ଣଭାବେ ଆବିଷ୍କୃତ ହୋଇପାରିନାହିଁ। ପୁଣି ଏହାର ଗଭୀରତା ମଧ୍ୟ ଏପର୍ଯ୍ୟନ୍ତ ଅନାକଳିତ। ଅଭିଜ୍ଞ ବୁଡାଳିମାନେ ବାରମ୍ବାର ଚେଷ୍ଟାକରି ଏହାର ଗଭୀରତାର ମାନଚିତ୍ର ପୂରା କରିପାରିନାହାନ୍ତି। ସେମାନେ କହନ୍ତି ସ୍ଥାନେ ସ୍ଥାନେ ଲାଷ୍ଟ-ସିର ପାଣି ବାସ୍ତବିକ୍ ଅତଳତଳ ।

ଲାଷ୍ଟ୍-ସିର ଅନ୍ୟ ବିଶେଷତ୍ୱ ହେଲା ଏଠାର ମାଛ। ଏଇ ପ୍ରାଗୈତିହାସିକ ଭୂତଳ ଜଳଧି ଭିତରେ ବହୁ ପ୍ରକାର ଜଳଜୀବ ବାସକରନ୍ତି। ସେମାନଙ୍କର ଆଖି ନଥାଏ– କାରଣ ଅନ୍ଧାରରେ ଆଖି ଅନାବଶ୍ୟକ। ଆଖି ବଦଳରେ ସେମାନଙ୍କର ଥାଏ ଅନ୍ୟପ୍ରକାର ଇନ୍ଦ୍ରିୟ ଯାହା ଜୈବ ବିବର୍ତ୍ତନ ପ୍ରକ୍ରିୟା ଭିତରେ ସେମାନେ ପ୍ରାପ୍ତ ହୋଇଛନ୍ତି। ସେପରି ଏକ ମାଛ ସତରେ କୂଳରେ ପହଁରୁଥିବା ମଧ୍ୟ ଦେଖିଲି। ବେଶ୍ ବଡ ମାଛଟିଏ। ଦେହଟା ଈଷତ୍ ରଙ୍ଗିନ୍। ଏ ଜାତିର ରଙ୍ଗିନ୍ ମାଛକୁ କୁହାଯାଏ ''ରେନ୍‌ବୋ ଟ୍ରାଉଟ୍''। ଏ ଜାତିର ମାଛ ମଧ୍ୟ ଖୁବ୍ ବଡବଡ– ସମଗ୍ର ଉତ୍ତର ଆମେରିକାର ଟ୍ରାଉଟ୍ ଜାତିର ମାଛଙ୍କ ଭିତରେ ସବୁଠୁ ବଡ ଏମାନେ ମିଳନ୍ତି ଏଇ ଲାଷ୍ଟ-ସିରେ ।

ପାଣି ତଳେ ଦିଶୁଥିବା ମାଛଟାକୁ ଲକ୍ଷ୍ୟ କଲି। ତା'ର ଆଖି ନଥାଏ । ଅନ୍ଧ ମାଛଟାକୁ ସହଜରେ ଧରିନେଇ ହବ ଭାବି ତା' ଆଡକୁ ହାତବଢେଇବା ମାତ୍ରେ ବିଦ୍ୟୁତ୍ ବେଗରେ ମାଛଟା ଅଦୃଶ୍ୟ ହେଇଗଲା ପାଣି ତଳେ। ତାର କାରଣ ମତେ ଅଜଣାନଥିଲା। ଏମାନେ ସ୍ୱତନ୍ତ୍ର ସେନ୍‌ସୋରି ଅର୍ଗାନ୍ ମାଧ୍ୟମରେ ଦେଖନ୍ତି ।

କିନ୍ତୁ, ଆମ ଲାଷ୍ଟ୍-ସି ଅଭିଯାନ ସେତିକିରେ ସରିବାର ନଥିଲା। ଅନ୍ୟ ଏକ ଅଦ୍ଭୁତ ଦୃଶ୍ୟ ଅପେକ୍ଷାରତ ଥିଲା ଆମ ପାଇଁ।

ଫେରିବା ସମୟ ହେଇଗଲା । ଗାଇଡ୍ ଆମ ଦଳକୁ ଏକାଠି କଲେ ଓ ଆମେ ଭୂପୃଷ୍ଠକୁ ପୁଣି ଫେରିବା ପାଇଁ ପ୍ରସ୍ତୁତ ହେଲୁ । ଫେରନ୍ତି ରାସ୍ତାଟା କାହିଁକି କେଜାଣି ଟିକେ ଭିନ୍ନ ମନେହେଲା । କିନ୍ତୁ ଗାଇଡ୍‌ଙ୍କ ପିଛା ଧରି ଆମେ ଚାଲିଲୁ । ପୂର୍ବରୁ ଜାଣିଥାଉ ସେ ଜଣେ ମଜାଦାର ଲୋକ । ଅଧବାଟରେ ଆମକୁ ତର୍କେଇଦେଲେ, "O God ! I have missed the track ! What to do now ? Anyone here who could find the correct path for us please ?

ସମସ୍ତେ ସେତେବେଳକୁ ଶ୍ରାନ୍ତ କ୍ଳାନ୍ତ । ଗାଇଡ୍ ମଜାକରୁଚି ଭାବି ଆମେ ପ୍ରଥମେ ବିଶେଷ ଗୁରୁତ୍ୱ ଦେଲୁନାଇଁ ତା' କଥାରେ । କିନ୍ତୁ ଖୁବ୍ ଅଳ୍ପ ସମୟ ପରେ ଜଣାଗଲା ସତରେ ଆମେ ଯୋଉ ରାସ୍ତାରେ ଆସିଥିଲୁ ଫେରନ୍ତି ରାସ୍ତା ତା'ଠାରୁ ଭିନ୍ନ । କିଛି ଲୋକ ଧୈର୍ଯ୍ୟ ହରାଇଲେ । ପଚାରିଲେ– ଏ ରାସ୍ତାରେ ଗଲେ କେତେ ସମୟ ଲାଗିବ ମାଟି ଉପରେ ପହଞ୍ଚିବାକୁ ? ଖୁବ୍ ଚିନ୍ତାଶୀଳ ଗମ୍ଭୀର ଉତ୍ତରଟି ଶୁଣି ସମସ୍ତଙ୍କ ହଲକ ଶୁଖିଆସିଲା । ତା'ମାନେ ଆମେ ଗୋଟାଏ ଗୋଲକ ଧନ୍ଦାରେ ପଡିସାରିଥାଉ । ସେ ଯାହାହେଉ ସେଇ ତଥାକଥିତ ଗୋଲକଧନ୍ଦାଟି ମୋ ପାଇଁ ଥିଲା ଅନ୍ୟଏକ ଆବିଷ୍କାରର ପନ୍ଥା ।

ପ୍ରାୟ ଅଧାରାସ୍ତା ସୁଡଙ୍ଗ ଭିତରେ ଗଳିଗଳି ଲେପଟେଇ ଲେପଟେଇ ବହୁକଷ୍ଟରେ ପାରହେଲା ପରେ ପଡିଲା ଏକ ବଡ ଗୁମ୍ଫା । ଗାଇଡ୍ ଟର୍ଚ୍ଚଲାଇଟ୍ ଜଳାଇ ଆମକୁ ବାଟ କଢଉଥାନ୍ତି । ହଠାତ୍ ତାଙ୍କ ଟର୍ଚ୍ଚରୁ ନିର୍ଗତ ଆଲୋକ କେନ୍ଦ୍ରୀଭୂତ ହେଲା ଏକ ଅଦ୍ଭୁତ ଦୃଶ୍ୟ ଉପରେ । ଦେଖିଲି– ଗୁମ୍ଫା ମଝିରେ ଦଣ୍ଡାୟମାନ ଏକ ବିଶାଳ ଶିବଲିଙ୍ଗ ! ତାଙ୍କ ଚାରିପଟେ ଭାରତର ଶିବମନ୍ଦିରରେ ପ୍ରତିଷ୍ଠିତ ଗଣପତି, କାର୍ତ୍ତିକ, ପାର୍ବତୀ ଓ ନନ୍ଦୀଙ୍କ ସ୍ମାରକୀ ଆକୃତି ! ବିସ୍ମିତ ହେଲି । ମୋର ଭାରତୀୟ ଚେତନା ମତେ ଉଚ୍ଚାଟିତ କଲା ମଧ୍ୟ । କିନ୍ତୁ ମନୋଭାବ ପ୍ରକାଶ ନକରି ସେଇ ଅନ୍ଧକାରାଚ୍ଛନ୍ନ ଗିରି ଗହ୍ୱର ଚତୁର୍ଦ୍ଦିଗରେ ଆଖି ବୁଲେଇ ଚାଲିଲି ।

ଗାଇଡ୍‌ଙ୍କ କଥା କାନରେ ପଡୁଥାଏ, ''ଏଗୁଡିକ ଷ୍ଟାଲାଗ୍‌ମାଇଟ୍ ଫର୍ମେସନ୍‌ସ୍ । ଏ ଆକୃତି ସବୁ ହଜାର ହଜାର ବର୍ଷଧରି କ୍ରମଶଃ ଆକାରରେ ବଢିବଢି ଚାଲିଚି । ଷ୍ଟାଲାଗ୍-ମାଇଟ୍‌ର ଯମଜ ଭାଇହେଲା ଷ୍ଟାଲାଗ୍‌ଟାଇଟ୍ ଫର୍ମେସନ୍‌ସ୍ । ଏମାନେ ସୃଷ୍ଟି ହୁଅନ୍ତି କାଲ୍‌ସିୟମ୍ କାର୍ବୋନେଟ୍ ଡିପୋଜିଟ୍‌ରୁ । ଗୁମ୍ଫାର ଛାତକୁ ଚାହାନ୍ତୁ– ଦେଖନ୍ତୁ ସେ ଉପରେ ମହୁଫେଣା ପରି ଝୁଲୁଚି ଷ୍ଟାଲାଗ୍‌ଟାଇଟ୍ ଫର୍ମେସନ୍ ସ୍ଥାନେ ସ୍ଥାନେ । ସେଥିରୁ ବିନ୍ଦୁ ବିନ୍ଦୁ ହେଇ ପାଣି ଝରେ । ସେ ପାଣିରେ ଥାଏ କାଲ୍‌ସିଅମ୍ ସଲ୍ଟସ୍ ... ଏଗୁଡିକର ଗ୍ରୋଥ୍ ଖୁବ୍ ସ୍ଲୋ– ପାଞ୍ଚ ଶହ ବର୍ଷରେ ଧରନ୍ତୁ ଏକ ବା ଦୁଇମିଲିମିଟର ହାରରେ ଏ ଷ୍ଟ୍ରକ୍‌ଚର୍ ସବୁ ବଢନ୍ତି ।''

''ସେଠିକି ପାଣି ଆସେ କୋଉଠୁ ?'' ଜଣେ ବିଦେଶୀ ଟୁରିଷ୍ଟ୍ ପଚାରିଲେ ଗାଇଡ୍‌ଙ୍କୁ ।

''ଛାତର ଫାଟରୁ ପାଣି ଝରେ । ଆପଣମାନେ ଯୋଉ ପାର୍ବତ୍ୟ ଅଂଚଳକୁ ମାଟି ଉପରେ ଛାଡି ଆସିଚନ୍ତି, ଯୋଉଠିକି ଫେରିବା ଆମେ କିଛି ସମୟ ପରେ ସେଇ ଉପର ସ୍ତରରୁ ପାଣି ଝରେ ଗୁମ୍ଫା ଛାତର ଫାଟବାଟେ । ତେବେ ସେ ଫାଟ ଅତି ସୂକ୍ଷ୍ମ...'', ଗାଇଡ୍ ଟୋକାଟି ଆମକୁ ପଢେଇବସିଲା ସେ କଲେଜରେ ପଢିଥିବା ଭୂତତ୍ତ୍ୱ ବିଜ୍ଞାନର ଥିଓରି ।

ନିରୁପମା ମୋ କାନରେ କହିଲେ, ''ମିଛକଥା । ଏହେଲେ ସ୍ୱୟଂ ଗୁପ୍ତେଶ୍ୱର କୋରାପୁଟର ।''– ''କିମ୍ବା ଅମରନାଥ– ହିମାଳୟର ।'' ହାତଯୋଡି ନମସ୍କାର କଲି ଭଗବାନ୍ ଶିବଙ୍କ ଉଦ୍ଦେଶ୍ୟରେ । ଆମ ସହିତ ମିଶିଲେ ଝିଅଜୋଇଁ ଓ ନାତି ମଧ୍ୟ ।

ଆମକୁ ଲଷ୍ଟ-ସି ବୁଲେଇବାର ଶେଷ ପର୍ଯ୍ୟାୟରେ ଗାଇଡ୍ ଯୁବକଟି ଆମକୁ ଶିବଦର୍ଶନ କରାଇଥିବାରୁ ଖୁବ୍ କୃତଜ୍ଞ ଅନୁଭବ କଲୁ ତା' ପ୍ରତି । ସେତିକିବେଳେ ଗାଇଡ ଟର୍ଚ୍ଚ ଫୋକସ୍ କଲେ– ଆହୁରି ଏକ ଚମତ୍କାରିତା ଉପରେ । କିଞ୍ଚିତ୍ ଭିନ୍ନସ୍ୱରରେ ଗଦଗଦ କଣ୍ଠରେ ଘୋଷଣା କଲେ–

"Look here ! These are the rarest of rare wonders on the earth ! These are known as cave flowers. They grow from out of sheer stones here in the caves of this Lost Sea. Nowhere on earth you may find cave flowers. Scientists call them Anthodites"

(ଲକ୍ଷ୍ୟକରନ୍ତୁ– ଏଗୁଡିକ ସାରା ପୃଥିବୀରେ ବିରଳତମ ବସ୍ତୁ । ଏଗୁଡିକୁ କୁହାଯାଏ ଗୁମ୍ଫା-ଫୁଲ । ନିର୍ଜୀବ ପାଷାଣ ବକ୍ଷରେ ଜୀବନ୍ତ ଫୁଲ ପରି ଏମାନେ କେବଳ ଏଇ ଲଷ୍ଟ୍-ସି ଗୁମ୍ଫାରେ ଫୁଟନ୍ତି । ଅନ୍ୟ କୋଉଠି ଦେଖିବେନାହିଁ ଏ ପ୍ରକାର ବସ୍ତୁ । ଆହୁରି ଦେଖନ୍ତୁ କି ସୂକ୍ଷ୍ମ କାରୁକାର୍ଯ୍ୟ ଏ ସ୍ଫଟିକ ସ୍ୱଚ୍ଛ ଫୁଲଗୁଡିକର ! ବିଜ୍ଞାନଭାଷାରେ ଏ ଶ୍ରେଣୀର କ୍ରିଷ୍ଟାଲ୍‌କୁ କୁହାଯାଏ 'ଆନ୍ଥୋଡାଇଟସ୍' ।)

ଅବାକ୍ ଚାହାଣିରେ ଲକ୍ଷ୍ୟକଲି– ସେଇ ଶିବଲିଙ୍ଗଙ୍କ ଚତୁର୍ପାଶ୍ୱରେ କେତେଗୁଡିଏ ''ଆନ୍ଥୋଡାଇଟ୍ କ୍ରିଷ୍ଟାଲ୍'' ଫୁଲ ଫୁଟିଚି ମଧ୍ୟ– କେହି ଯେମିତି ସେ ସୁନ୍ଦର ଚାରୁକଳା-ସମ୍ପନ୍ନ ବହୁ ସୂକ୍ଷ୍ମ ପାଖୁଡାଯୁକ୍ତ ଧଳା ଧଳା ସ୍ଫଟିକର ଫୁଲଗୁଡିକୁ ଦେବାଳୟର ମୂର୍ତ୍ତିମାନଙ୍କୁ ଅର୍ପଣ କରିଚି ।

ସମୟ ଗଡିଯାଉଥାଏ । ସମସ୍ତେ ଅସ୍ଥିର ହେଉଥାନ୍ତି କିପରି ସେଇ ଇନ୍ଦ୍ରଜାଲ ପରି ପର୍ବତ ଗହ୍ୱରରୁ ଶୀଘ୍ର ମୁକ୍ତି ପାଇଁ ବାହାର ଜଗତ୍‌ର ମୁକ୍ତ ଆକାଶ ଓ ସୂର୍ଯ୍ୟାଲୋକ ଦର୍ଶନ କରିବେ । ଏତେବେଳ ମା' କୋଳରେ ଚୁପ୍‌ଚାପ୍ ପଡିରହିଥିବା ଶିଶୁଟି ବଡପାଟିରେ କାନ୍ଦି ଉଠିଲା । ଗାଇଡ୍ ତରବରହେଇ ଆମକୁ ବାଟ କଢାଇ ଗୁମ୍ଫା ବାହାରେ ପହଞ୍ଚାଇ ଦେଲେ ।

## ସ୍ୱଦେଶ ବାହୁଡା ଏବଂ ହିମାଳୟ ଦର୍ଶନ

ତା. ୨୮ ସେପ୍ଟେମ୍ବର, ୧୯୯୩ । ଆମେରିକା ଭ୍ରମଣର ପ୍ରଥମଭାଗ ଏଇଠି ଶେଷ ହେଲା । ଆଟ୍‌ଲାଣ୍ଟା ବିମାନ ବନ୍ଦରରୁ ସେଦିନ ସନ୍ଧ୍ୟାରେ ମୁଁ ଓ ନିରୁପମା ଲୁଫଥାନ୍ସା ଏୟାରଲାଇନ୍‌ସ୍‌ର ଏକ ପ୍ଲେନ୍‌ରେ ଇଣ୍ଡିଆ ଫେରିଲୁ ।

ଦିଲ୍ଲୀରେ ସାନ ଝିଅ ଜୁଲି ଓ ଜୋଇଁ ଅଭିଜିତ୍‌ଙ୍କ ଘରେ କିଛି ଦିନ ରହଣି ଭିତରେ ଥରେ ବାହାରିଲୁ ହିମାଳୟ ଦର୍ଶନରେ । ଆମେରିକାରେ ଗ୍ରୀଷ୍ମ ଓ ଶରତଋତୁର ସ୍ୱର୍ଗୀୟ ପ୍ରାକୃତିକ ଶୋଭା ଚାରିମାସ ଭୋଗିବା ପରେ ଦିଲ୍ଲୀ ମତେ ଲାଗିଲା ଗୋଟାଏ ମରୁଭୂମି ପରି । ଭୀଷଣ ଗରମ ଆଉ ବୃକ୍ଷବିହୀନ କୋଳାହଳମୟ ଧୂଆଁ ଧୂଳୀର ମହାନଗରୀ ଦିଲ୍ଲୀରେ ଅଳ୍ପ ସମୟ ଭିତରେ ଅଣନିଃଶ୍ୱାସୀ ହୋଇ ସ୍ଥିର କଲୁ ଅନ୍ତତଃ ଦିନକପାଇଁ ହେଲେବି ହିମାଳୟ ଦର୍ଶନ କରିବାକୁ । ହରଦ୍ୱାର ଓ ଋଷିକେଶଗାମୀ ଗୋଟାଏ ଟୁରିଷ୍ଟ୍ ଡିଲକ୍ସବସ୍‌ରେ ଦିନେ ସନ୍ଧ୍ୟାରେ ଆମେ ଚାରିଜଣ ଟିକେଟ୍ କାଟିଲୁ । ଦିଲ୍ଲୀର ଯାତ୍ରୀବାହୀ ବସ୍ ନାଁକୁ ମାତ୍ର ଡିଲକ୍ସ । ସନ୍ଧ୍ୟା ସାତରୁ ରାତି ବାରଯାକେ ସେ ବସ୍ ପ୍ୟାସେଞ୍ଜର ଗୋଟେଇବା ନାଁରେ ଦିଲ୍ଲୀ ଭିତରେ ବୃଥାରେ ପଇଁତରା ମାରି ଲାଗିଲା । ରାତି ଅଧ ପରେ ଦିଲ୍ଲୀ ଛାଡିଲା । ଶୁଣିଲୁ ଏ ବୃଥା ପଇଁତରାର ଉଦ୍ଦେଶ୍ୟ ଥିଲା ଟ୍ୟାକ୍ସ ଠକେଇ । ରାତି ବାର ପରେ ଦିଲ୍ଲୀ ସୀମା ଟପି ଉତ୍ତରପ୍ରଦେଶରେ ପଶିଲେ ରୋଡ୍ ଟ୍ୟାକ୍ସ ଚବିଶ ଘଣ୍ଟା ପାଇଁ ଦେବାକୁହୁଏ; ନଚେତ୍ ଦୁଇଦିନର ଟ୍ୟାକ୍ସ ପଡିଯାଏ । ତେଣୁ ଯାତ୍ରୀମାନଙ୍କୁ ଦିଲ୍ଲୀ ବୁଲେଇବାର ଏ ବୃଥା ଅଭିନୟ । ସେତେବେଳକୁ ସମସ୍ତେ ନୟାନ୍ତ । ଦେଖିଲି– ଦିଲ୍ଲୀ ଭିତରେ ବସ୍ ପଇଁତରାମାରିବା ମଝିରେ ଜଣେ ବିଦେଶୀ ଟୁରିଷ୍ଟ୍ ଉଠିଲେ ।

ଆମେରିକାର ରାସ୍ତାରେ ଲମ୍ବା କାର୍ ଯାତ୍ରାର ଆନନ୍ଦ ଭାରତରେ ଆଶାକରିବା ବୃଥା ଅବଶ୍ୟ । କିନ୍ତୁ ବସ୍ ଭିତରେ ସାରା ରାତି ବିଡିଟାଣୁଥିବା ବସ୍‌ଡ୍ରାଇଭର୍, କଣ୍ଡକ୍ଟର୍ ଓ ହେଲପର୍‌ଙ୍କର ଯାତ୍ରୀମାନଙ୍କ ପ୍ରତି ସେପରି ବେଖାତିର ମନୋଭାବ ଦେଖି ମନେହେଲା– ଆମେ ଭାରତୀୟମାନେ କେବଳ ଗରିବ ଅଶିକ୍ଷିତ ନୋହୁଁ; ଭୟଙ୍କର ଉଦ୍ଧତ ମଧ୍ୟ । ଏ ବସ୍‌ଯାତ୍ରା କାହିଁକି ନେଇଚୁ, କି ଦରକାର ଥିଲା ଆମର ହରଦ୍ୱାର ବାହାରିବା– ଏଇ ଅନୁଶୋଚନା ଭିତରେ ରାତିଯାକ ଘାରିହେଉ ହେଉ ଶେଷରେ ରାତି ପାହି ସିନ୍ଦୂରା ଫାଟିବାର ସୂଚନା ମିଳିଲା । ସେତେବେଳକୁ ବସ୍ ପହଞ୍ଚିଯାଇଥାଏ ହରଦ୍ୱାର ଉପକଣ୍ଠରେ ।

ସେପ୍ଟେମ୍ବର ମାସର ଶେଷସପ୍ତାହ ବେଳକୁ ଉତ୍ତର ଭାରତରେ ଶରତ ଋତୁର ସ୍ପର୍ଶ ବାୟୁ-ମଣ୍ଡଳରୁ ମିଳେ । ହରଦ୍ୱାର ପାଖ ହେବା ମାତ୍ରେ ପବନରେ ହିମାଳୟର ସ୍ନିଗ୍ଧ-ଶୀତଳ ସୁବାସ ଆପେ ଆପେ ଭରିଗଲା ଭଳି ମନେହେଲା । ଉଷାକିରଣର ପ୍ରଥମ ସୁନେଲି ଆଭାରେ ରଞ୍ଜିତ ହିମାଳୟ ପାଦଦେଶର କୁହୁଡିଘେରା ପର୍ବତ ଶୃଂଖଳା ପ୍ରଥମକରି

ଦୃଶ୍ୟମାନ ହେଲା– କାଚ ଝରକା ବାଟେ । ପର୍ବତଗୁଡିକର ପଛପଟୁ ସୂର୍ଯ୍ୟ ଉଦୟ ଘଟୁଥାଏ ଧୀର ମନ୍ଥର ଗତିରେ । ହିମାଳୟରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ନୈସର୍ଗିକ ଶୋଭା ସାରା ପୃଥିବୀରେ ଦୁର୍ଲଭ । ମୁଁ ସେଇ ଦୁର୍ଲଭ ଦୃଶ୍ୟକୁ ତନ୍ମୟ ଦୃଷ୍ଟିରେ ଅନାଇ ରହିଲି । ଗତରାତିର ବିରକ୍ତି ମୁହୂର୍ତ୍ତକେ ମନରୁ ପୋଛିହେଇଗଲା । ତା’ ସହିତ ମଧ୍ୟ ହଜିଗଲା ଆମେରିକା ‘ହାଙ୍ଗୋଭର୍’ । ମନରେ ଚହଟିବାକୁ ଲାଗିଲା ଏଥର ବେଶୀମାତ୍ରାରେ ହିମାଳୟ ଦର୍ଶନ ପାଇଁ ଅବଦମିତ ଆବେଗ ।

ବସ୍ ଅଟକିଲା– ହରଦ୍ୱାରର ବସ୍‌ଷ୍ଟାଣ୍ଡରେ । ଅଟକୁଅଟକୁ କଣ୍ଡକ୍ଟର୍ ଶୁଣେଇ ଦେଲା ପ୍ରୋଗ୍ରାମ୍ । ଜଣାଗଲା– ଏଠି ହରଦ୍ୱାରରେ ଆମ ବସ୍ ମୋଟେ ଦି’ଘଣ୍ଟା ପାଇଁ ଅଟକିବ । ତା’ ଭିତରେ ନିତ୍ୟକର୍ମ ଇତ୍ୟାଦି ସାରି ଆମେ ହରଦ୍ୱାର ଦର୍ଶନ କରିବୁ କିଛି ସମୟ । ପରେ ପରେ ଗାଡି ବାହାରିଯିବ ପାହାଡ଼ ଉପରକୁ– ସିଧା ଋଷିକେଶ । ଋଷିକେଶରେ ତିନିଚାରିଘଣ୍ଟା ବୁଲାବୁଲି ସମୟ । ପରେ ବସ୍ ଫେରିବ ପୁଣି ଏଇଠିକି– ହରଦ୍ୱାରକୁ । ସେତିକିବେଳେ କିଛି ଅଧିକ ସମୟ ମିଳିବ ହରଦ୍ୱାର ବୁଲି ଦେଖିବା ପାଇଁ । ଏକ ଟାଇଟ୍ ପ୍ରୋଗ୍ରାମ୍ । ଏତେ ଟାଇଟ୍ ପ୍ରୋଗ୍ରାମ୍ ଭିତରେ ମଣିଷ କଣ’ ବା ଦେଖିବାକୁ ଆଶାକରନ୍ତା ?

ବସ୍ ଭିତରୁ ଶୀଘ୍ର ବାହାରି ଆସିଲୁ । ହରଦ୍ୱାରର ମୁକ୍ତ ପବନ ଦେହ ମନକୁ ଟିକେ ଉଶ୍ୱାସ କରିଦେଲା । ଆଖି ବୁଲେଇଲି ଚାରିଆଡକୁ । ଜାଗାଟା କାହିଁକି କେଜାଣି ସେତେ ଆକର୍ଷଣୀୟ ମନେହେଲା ନାହିଁ । ଭାରତର ସବୁ ତୀର୍ଥସ୍ଥାନ ପରି ଏଠି ମଧ୍ୟ ବସ୍‌ରୁ ଓହ୍ଲେଉ ଓହ୍ଲେଉ ଘେରିଗଲେ ପଣ୍ଡାମାନେ । ସେମାନଙ୍କ କବଳରୁ ନିଜକୁ ମୁକ୍ତକରିବା କଷ୍ଟକର । କିଛି ଟଙ୍କା ବଣ୍ଟନ ପରେ ନିଜକୁ ମୁକ୍ତ ନକରୁଣୁ ଘେରିଗଲେ ଅନ୍ୟମାନେ । ଛାଟିପିଟିହେଇ ଦଉଡିବା ଛଡା ରକ୍ଷାନଥିଲା ।

ସେଇ ଭିତରେ ହଠାତ୍ ଖୁବ୍ ପାଖରେ ବିଜୁଳି ମାରିଲାପରି ଝକ୍‌କିନା ଦେଖାଗଲା କଣଟାଏ । ସଚେତ ହେଲି । ଦେଖିଲି– ଠିକ୍ ସାମ୍‌ନାରେ– ବୋହିଯାଉଚି ପ୍ରବଳ ବେଗଶାଳୀ ଜଳଧାରା । ସେ ନଦୀ ଯେ ଗଙ୍ଗା ସେଥିରେ ସନ୍ଦେହ ନଥିଲା । କିନ୍ତୁ ନଦୀର ରୂପ ମତେ ସତରେ ଖୁବ୍ ବିସ୍ମିତ କରିଦେଲା । ସତେକି ସେ ନଦୀର ପାଣି ପାଣି ନୁହେଁ– ବିଶୁଦ୍ଧ ତରଳ ରୁପା ବିଦ୍ୟୁତ୍‌ଗତିରେ ଛୁଟି ଚାଲିଚି ।

ମୁଁ ପୂର୍ବରୁ ଗଙ୍ଗାନଦୀର ବିସ୍ତୀର୍ଣ୍ଣ ରୂପ ଦେଖିଚି ଭିନ୍ନ ଭିନ୍ନ ସ୍ଥାନ ଓ ପରିବେଶରେ– କିନ୍ତୁ ସେ ସବୁ ଥିଲା ସମତଳ ଅଞ୍ଚଳରେ । ହରଦ୍ୱାରରେ ଗଙ୍ଗାଦର୍ଶନର ସୌଭାଗ୍ୟ ଏଇ ପ୍ରଥମ । ଆମେ ଗଙ୍ଗା କୂଳକୁ ଗଲୁ । ଏ ଭିତରେ ଆହୁରି ଅନେକ ଯାତ୍ରୀବାହୀ ଗାଡି ବସ୍‌ଷ୍ଟାଣ୍ଡରେ ପହଞ୍ଚି ଯାଇଥାଏ । ଶହଶହ ପର୍ଯ୍ୟଟକ ଠୁଳହୋଇଯାଉଥାନ୍ତି ଗଙ୍ଗାକୂଳରେ । କୋଳାହଳମୟ ହୋଇଉଠୁଥାଏ ସ୍ଥାନଟା । କିନ୍ତୁ ଲକ୍ଷ୍ୟକଲି ଅଧିକାଂଶ ଯାତ୍ରୀ ବୟସ

ନିର୍ବିଶେଷରେ ନଦୀଜଳକୁ ସ୍ପର୍ଶ କରିବାମାତ୍ରେ ଉଚ୍ଚାଟିତ ହୋଇଉଠୁଥାନ୍ତି । ସମସ୍ତେ ହିଷ୍ଟେରିକ୍ ସ୍ୱରରେ ଚିତ୍କାର କରୁଥାନ୍ତି– ଗଙ୍ଗା ଗଙ୍ଗା ଗଙ୍ଗା. . . ଗଙ୍ଗା ମାଈକୀ ଜୟ– ଗଙ୍ଗା ମାଈକୀ ଜୟ. . . । ଅନେକ ଲମ୍ଫମାରିବାକୁ ପ୍ରସ୍ତୁତ ହୋଇଯାଇଥାନ୍ତି ଗଙ୍ଗା ଭିତରକୁ । କିନ୍ତୁ ସେଥିପାଇଁ ବାରଣ ରହିଥାଏ କୂଳଯାକ ପୋତାହୋଇଥିବା ଲୁହା ଖୁଣ୍ଟରୁ ଝୁଲୁଥିବା ମୋଟାମୋଟା ଲୁହାକଡି ଓ ଲୁହାଜାଲି ଯୋଗେ । ସୂଚନା ଦିଆଯାଇଥାଏ – ଏଠି ଗଙ୍ଗାର ସୁଅ ତୀବ୍ର । ଲୁହାକଡି ନମାନି ନଦୀ ଭିତରକୁ ପ୍ରବେଶକଲେ ବିପଦର ସୀମା ନାହିଁ । ତଥାପି ଜୟମା ଗଙ୍ଗା, ହରହର ମହାଦେବ. . . ଡାକଦେଇ ଲୋକେ ଡେଉଁଥାନ୍ତି ପାଣିକୁ ।

ଏ ପ୍ରକାର ଦୃଶ୍ୟ ଓ ଶବ୍ଦ ମୋ ଆଖି କାନ ପାଇଁ ନୂଆ ନୁହେଁ । କିନ୍ତୁ ଆଜି ହରଦ୍ୱାରରେ ମୁଁ ଆଖି କାନରେ ଗଙ୍ଗା ଦର୍ଶନ ପାଇଁ ଆସିନଥିଲି । ଜଣେ ଭାରତୀୟ ଭାବେ ମୁଁ ଜାଣେ ତୀର୍ଥ କ୍ଷେତ୍ରରେ ମଣିଷ ସଂପୂର୍ଣ୍ଣ ଆତ୍ମ-ବିସ୍ମୃତ ନହେବା ପର୍ଯ୍ୟନ୍ତ ତୀର୍ଥରାଜ ନିଜର ଦର୍ଶନ ଦିଅନ୍ତି ନାହିଁ । ସେଥିପାଇଁ ତୀର୍ଥକ୍ଷେତ୍ରରେ ଦର୍ଶକର କର୍ତ୍ତବ୍ୟ ଧ୍ୟାନସ୍ଥ ହେବା । ନଦୀତଟକୁ ଓହ୍ଲାଇପଡିଲି । ଆଞ୍ଜୁଳାରେ ଆଞ୍ଜୁଳାଏ ଗଙ୍ଗାଜଳ ଆଣି ମୁଣ୍ଡ ଉପରେ ଛିଞ୍ଚିହେଲି । ଗୋଟିଏ ସୁବିଧା ସ୍ଥାନ ଦେଖି ଧ୍ୟାନ ପାଇଁ ପଦ୍ମାସନରେ ବସିପଡିଲି । ଆଖି ବୁଜିହେଇଗଲା ଆପେ ଆପେ । ଖୁବ୍ ଅଳ୍ପ ସମୟ ଧ୍ୟାନସ୍ଥ ହେବା ପରେ ଏକ ଅଦ୍ଭୁତ ଶିହରଣ ଅନୁଭବ କଲି ମେରୁଦଣ୍ଡରେ । ପୂର୍ବାନୁଭୂତିରୁ ବୁଝିଥିଲି – ତାହା ଥିଲା କୁଣ୍ଡଳିନୀ ଜାଗରଣର ସୂଚନା । ହଠାତ୍ ଛାତି ଭିତରେ ଅପୂର୍ବ ପୁଲକ ଅନୁଭବ ହେଲା । ଆନନ୍ଦାତିଶଯ୍ୟରୁ ଧ୍ୟାନ ଭାଙ୍ଗିଗଲା । ଏକ ବିମୋହିତ ଦୃଷ୍ଟିରେ ମୁଁ ଆଉଥରେ ଚାରିଆଡକୁ ଆଖି ବୁଲେଇ ଦେଖିଲି । ଦେଖିଲି– ସ୍ଥାନଟି ସଂପୂର୍ଣ୍ଣ ରୂପାନ୍ତରିତ ! ଅଳ୍ପ ସମୟ ପୂର୍ବରୁ ବସ୍‌ରୁ ଓହ୍ଲାଇବା ସମୟରେ ପଣ୍ଡାଙ୍କ ଉତ୍ପାତ, ଚାରିପାଖର ମଇଳା ମଚକା, ବୁଲା କୁକୁର ଗାଈ ଗୋରୁ ଭିକାରୀ– ସମସ୍ତେ ରୂପାନ୍ତରିତ ! ଅଭିଭୂତ ଅବସ୍ଥାରେ ବସି ରହିଲି ।

କେତେ ସମୟ ବସିଲି ଜାଣେନା । ଝିଅ ଜୁଲିମା ମୋ' କାନ୍ଧକୁ ଛୁଇଁଲା । ଶୁଣିଲି– ''ନନା ! ଗାଡି ଛାଡିଦେବ– ଉଠ ।''

ଆମେ ଆମ ବସ୍‌ରେ ଯେ ଯାହା ଜାଗାରେ ଯାଇ ବସିଲୁ । ଗାଡି ଚାଲିବା ଆରମ୍ଭ କଲା । ଏଇ ସମୟରେ କିଏ ଜଣେ ପାଟିକଲା, ''ଆରେ ଆରେ, ସେ ଫରେନ୍ ଟୋକାଟା ରହିଗଲା ରହିଗଲା... ।''

ବିରକ୍ତିଭରା ସ୍ୱରରେ କଣ୍ଡକ୍ଟର୍ ମନ୍ତବ୍ୟ ଦେଲା, ''ରହନେ ଦୋ ଉସ୍ ବନ୍ଦର୍ କୋ. . . ଶାଲେଲୋଗ୍ ୟହାଁ ଘୁମ୍‌ନେକେ ବାସ୍ତେ ନେହିଁ ଆତେ– ଆତେ ହେଁ ଦୁସ୍‌ରା ମତଲବ୍ ମନ୍‌ମେ ଛିପାକେ । ୱୋ ଶାଲା ଗାୟପ୍ ହୋ ଗୟାଥା ଜରୁର୍ ୟହିଁ କହିଁ ପର୍

ଗାଂଜା ୟା ବ୍ରାଉନ୍ ସୁଗର୍‌କି ତଲାସି ଲେନେକୋ । ମୁଝେ ମାଲୁମ୍ ହୈ ।''

ତଥାପି ବସ୍ କିଛି ସମୟ ଅଟକି ରହିଲା ସେଇ ବିଦେଶୀ ଯୁବକଟି ଦଉଡି ଦଉଡି ଧଇଁସଇଁ ହେଇ ଆସି ବସ୍‌ରେ ଚଢ଼ିବା ପର୍ଯ୍ୟନ୍ତ । ଟୋକାଟା ସେତେବେଳକୁ ଓଦା ସରସର । ତା' ମୁଣ୍ଡବାଳରୁ ପାଣି ଝରିପଡୁଥାଏ । ପ୍ୟାଣ୍ଟଶାର୍ଟ ଲସରପସର– ନିଶ୍ଚୟ ସେ ଟୋକା ଗଙ୍ଗା ଭିତରକୁ ଡାଇଭ୍‌ଟାଏ ମାରି ଉଠିଆସିଚି– ମନେହେଲା । ଯାତ୍ରୀମାନେ ତାକୁ ଦେଖି ହସିଲେ । କେହି କେହି କହିଲେ– ଆଜି ଶାଲାର ସବୁ ପାପ ନିଶ୍ଚୟ ଧୋଇଧାଇ ବିଲ୍‌କୁଲ୍ ସାଫ୍ ହେଇଗଲା !

ଗାଡି ଚାଲିଲା– ଋଷିକେଶ ଅଭିମୁଖେ । ଋଷିକେଶ ନାମ ଉଚ୍ଚାରଣ ମାତ୍ରେ ପ୍ରାଣରେ ପୁଲକ ଉବୁକି ଉଠିଲା ମୋର । ମନେପଡିଲା– ଦିନେ ଏଇ ଋଷିକେଶର ମୋହର-ଲଗା ଏକ ଚିଠି ମୋ ପ୍ରାଣ ରକ୍ଷାକରିଥିଲା । ମୋର ମାନସଗୁରୁ ସ୍ୱାମୀ ଶିବାନନ୍ଦ ସେଦିନ ଏଇ ଋଷିକେଶରୁ ସେ ଚିଠିରେ ପଠାଇଥିଲେ ତାଙ୍କ ଆଶୀର୍ବାଦ ବିଭୂତି ଯାହା ଠିକ୍ ସମୟରେ ଡାକରେ ଯାଇ ପହଞ୍ଚିପାରିଥିଲା ମୋ ହାତରେ । ଆଜି ସ୍ୱାମିଜୀ ଆଉ ନାହାନ୍ତି ଇହଧାମରେ– କିନ୍ତୁ ସେଇ ନାମଟି ଥିଲା ମୋ ପାଇଁ ଯଥେଷ୍ଟ । ସେଇ ନାମ ସ୍ମରଣ କରି ମୁଁ ଋଷିକେଶକୁ ଯାଉଥାଏ ଆଜି । ମନରେ ଉଦ୍‌ବିଗ୍ନତା ସ୍ୱାଭାବିକ– ଋଷିକେଶ ଆଉ କେତେ ବାଟ !

ବସ୍‌ରେ ହରିଦ୍ୱାରରୁ ଋଷିକେଶ ପ୍ରାୟ ଘଣ୍ଟାକର ବାଟ । ହିମାଳୟର ପ୍ରଥମ ସୁସ୍ପଷ୍ଟ ଅନୁଭବ ମିଳେ ସେଇ ପାର୍ବତ୍ୟ ତୀର୍ଥରେ ବୋଲି ଶୁଣିଥିଲି । ଆମ ବସ୍ ହରିଦ୍ୱାର ଛାଡି ଉତ୍ତରାଭିମୁଖୀ ହେବାମାତ୍ରେ ପାର୍ବତ୍ୟଘାଟି ରାସ୍ତା ଆରମ୍ଭହେଲା । ରାସ୍ତା ଦୁଇପାଖେ ସୁନ୍ଦର ସୁନ୍ଦର ପାହାଡମାଳା । ବୁଦବୁଦିକିଆ ଜଙ୍ଗଲ । ଗଙ୍ଗା ନଦୀକୁ ବାରମ୍ବାର ଅତିକ୍ରମ କରୁଥାଉ ଆମେ ସ୍ଥାନେ ସ୍ଥାନେ । କ୍ରମେ ସୂର୍ଯ୍ୟରଶ୍ମିର ରଙ୍ଗ ବଦଳି ବଦଳି ଚାଲିଥାଏ । ସକାଳର କୁହୁଡି ବହଳରୁ ବହଳତର ହେଉଥାଏ । ପବନରେ ଥଣ୍ଡା ବଢୁଥାଏ । ମଝିରେ ମଝିରେ ପବନରୁ ଆଘ୍ରାଣ କରିହେଉଥାଏ ଜଙ୍ଗଲି ଫୁଲର ସୁବାସ ।

କ୍ରମେ ପାହାଡର ବହୁତ ତଳେ ଦିଶିଲା ଗଙ୍ଗାନଦୀ-ଧାର । ଆମେ ନିଶ୍ଚୟ ବେଶ୍ କିଛି ଉଚ୍ଚ ପର୍ବତ ଉପରକୁ ଉଠିସାରିଥାଉ । ବସ୍ ଅଟକିଗଲା । କଣ୍ଡକ୍ଟର୍‌ର ସ୍ୱର ଶୁଣାଗଲା । ସେ ଯାତ୍ରୀମାନଙ୍କୁ ବସ୍‌ରୁ ଓହ୍ଲେଇ ଏଥର ପଇଦଲ୍‌ରେ ଚାଲିବାକୁ ପରାମର୍ଶ ଦେଲା । ତା' ସହିତ ମଧ୍ୟ ଶୁଣେଇଦେଲା– ଗାଡି ଏଠି ଚାରିଘଣ୍ଟା ଅଟକିବ । ଆପଣମାନେ ନିଜନିଜ ଜିନିଷ ସାଙ୍ଗରେ ନେଇଯାନ୍ତୁ । ଯଦି ଓଜନଦାର ଜିନିଷ କିଛି ଥାଏ ତେବେ ବସ୍‌ରେ ଛାଡିଯାନ୍ତୁ । ବସ୍‌ର ଦରଜାରେ ତାଲା ପଡିବ । ଚୋରି ଭୟନାହିଁ । ନିର୍ଦ୍ୱନ୍ଦ୍ୱରେ ସାମାନ ଛାଡି ଯା'ନ୍ତୁ ।

ଏଇ ସମୟରେ ହରିଦ୍ୱାରରେ ଦେଖିଥିବା ସେଇ ବିଦେଶୀ ଯାତ୍ରୀଟି ବସ୍‌ରୁ ଓହ୍ଲେଇଲା । ସେ କଣ୍ଡକ୍ଟରକୁ ଇସାରାରେ କିଛି କହିବା ଦେଖିଲି । ଯୁବକଟିର ବୟସ ପ୍ରାୟ ପଚିଶ ଛବିଶ । ଶେତା ଗୋରା ରଙ୍ଗ । ମୁହଁ ଲମ୍ବାଳିଆ । ଦୁବଲା ପତଳା ନହକା ଟୋକାଟାଏ– ୟୁରୋପ ବା ଆମେରିକାର କୋଉଠିକାର କେଜାଣି ।

ଗାଡି ଭିତରକୁ ଆଙ୍ଗୁଠି ଦେଖେଇ କଣ୍ଡକ୍ଟରକୁ ଇଂରେଜୀରେ କହିଲା– ତାର ଗୋଟାଏ ସୁଟ୍‌କେଶ୍ ଅଛି ଲଗେଜ୍ କମ୍ପାର୍ଟମେଣ୍ଟରେ । କଣ୍ଡକ୍ଟର ମୁଣ୍ଡ ହଲେଇ ହଁକଲା ଆଉ ସାଙ୍ଗେ ସାଙ୍ଗେ ଚେତେଇଦେଲାବି, ''ଦେଖୋ ! ଖୋ ନଯାନା କହିଁ । ୟାଦ୍ ରଖ୍‌ନା– ୱାପସ୍ ଯାନେକା ଟାଇମ୍ । ନେହିଁ ତୋ' ୟହିଁ ଠଏର୍ ଯାଏଗା. . .

ଆମେ ତରବର ହେଇ ଚାଲିଲୁ ଋଷିକେଶ ବୁଲିବାକୁ । ବାଟରେ ଏକ ବଡ ଫାଟକ ଉପରେ ସ୍ୱାମୀ ଶିବାନନ୍ଦଙ୍କ ଆଶ୍ରମ ନାମ ଫଳକ ଦେଖି ଅଟକିଲି । ଭିତରକୁ ଯିବାକୁ ହାତରେ ସମୟ ନାହିଁ । କଣ୍ଡକ୍ଟର ଘଉଡଉଥାଏ ପଛରୁ । ତା'ର ପ୍ରୋଗ୍ରାମ୍‌ରେ ଶିବାନନ୍ଦ ଆଶ୍ରମ ବୁଲି ଦେଖିବା ନଥାଏ । ତା' ପ୍ରୋଗ୍ରାମ୍‌ରେ ଥାଏ ରାମ୍‌ଜୀ ଲକ୍ଷ୍ମଣ୍‌ଜୀଙ୍କ ମନ୍ଦିର ଦର୍ଶନ ସହିତ ଋଷିକେଶର ଲ୍ୟାଣ୍ଡମାର୍କ ସେଇ ଝୁଲା ପୋଲ ଲକ୍ଷ୍ମଣଝୁଲା ରାମଝୁଲା ଭଳି କେତେଟା ଦର୍ଶନୀୟ ଜାଗା ଦେଖିସାରି ନିର୍ଦ୍ଧାରିତ ସମୟରେ ବସ୍‌କୁ ଫେରାଇ ଆଣିବା । ତେଣୁ ସେ ଆମ ପିଛା ପଡ଼ିଥାଏ ଗାଈ ପଲ ପଛରେ ବାଡିଧରି ଗଉଡ ଟୋକା ହାଁ ହାଁ ଡାକ ମାରି ଘଉଡେଇଲା ଭଳି ।

ଆମ ଦଳକ ଯାଇ ପହଞ୍ଚିଲେ ପ୍ରଥମେ ଲକ୍ଷ୍ମଣଜୀଙ୍କ ମନ୍ଦିରରେ । ନିରୁପମା ଜୁଲି ଅଭିଜିତ୍‌ଙ୍କ ସାଙ୍ଗରେ ମୁଁ ପଶିଲି ମନ୍ଦିର ଭିତରକୁ । ଦେଖିଲି ସେଇ ବିଦେଶୀ ପିଲାଟି ଆମ ସାଙ୍ଗେ ସାଙ୍ଗ ହେଇ ମନ୍ଦିର ଭିତରକୁ ପଶିଯିବାକୁ ଚାହୁଁଥାଏ– କିନ୍ତୁ ପୂଜକ ତାକୁ ବାରଣ କଲା । ତେଣୁ ସେ ବିଚରା ମୁହଁ ଶୁଖେଇ ମୁଖଶାଳାରୁ ବାହାରିଆସିଲା ।

ଦର୍ଶନସାରି ମୁଁ ଆଗ ପଦାକୁ ବାହାରିଆସିଲି । ଦେଖିଲି– ବିଦେଶୀ ପିଲାଟି ଠିଆ-ହେଇଚି ମୁହଁ ଶୁଖେଇ ମନ୍ଦିର ବାହାରେ । ଦୟା ଆସିଲା । ତା' କାନ୍ଧରେ ହାତ ପକେଇଲି । ଏଇ ସମୟରେ ପଛପଟୁ କଣ୍ଡକ୍ଟର ମତେ ଶୁଣେଇ ଡାକ ମାରିଲା, ''ସାହାବ୍ ! ଜେରା ଉସ୍ ବନ୍ଦର୍‌କା ଖୈୟାଲ୍ ରଖିୟେ । କାହାଁ ଭାଗ୍ ନଯାଏ ଯୈସେ. . .''

ମୁଁ ସେ ବିଦେଶୀ ଯୁବକକୁ ସାଙ୍ଗରେ ନେଇ ଚାଲିଲି । ବାଟରେ ତାର ପରିଚୟ ପଚାରି ଜାଣିଲି– ସେ ସ୍ୱିଜର୍‌ଲାଣ୍ଡରୁ ଆସିଚି । ୟୁନିର୍ଭର୍ସିଟି ଛାତ୍ର । ପୋଷ୍ଟ୍ ଗ୍ରାଜୁଏଟ୍ ଶ୍ରେଣୀ ଛାତ୍ର ସୋସିଓଲଜିରେ । ବୟସ ସତେଇଶ ଇତ୍ୟାଦି । କିଛି ସମୟ ମୋ' ପାଖେ ପାଖେ ଚାଲିବା ପରେ ସେ ମୋ' ସାଙ୍ଗ ଛାଡି ଅନ୍ୟଆଡେ ଚାଲିଗଲା ।

ଲକ୍ଷ୍ମଣନାଥଙ୍କ ମନ୍ଦିର କଡକୁ ଗଙ୍ଗାନଦୀ ଉପରେ ବିଖ୍ୟାତ ଲକ୍ଷ୍ମଣ ଝୁଲା ପୋଲ ।

ପୋଲ ଉପରେ ଯାତ୍ରୀମାନେ ଚାଲିଥାନ୍ତି– ନଦୀ ଏପାରିରୁ ସେପାରି । ତା' ଉପରେ ଯାନବାହନ ଯାତାୟାତ ନିଷେଧ । କେବଳ ଯାତ୍ରୀମାନେ ନଈ ପାରିହେଇ ଯାତାୟାତ ସୁବିଧା ପାଇଁ ଗତଶତାବ୍ଦୀରେ ଜନୈକ ବଦାନ୍ୟ ବ୍ୟକ୍ତି ସେ ଝୁଲା ପୋଲଟିକୁ ତିଆରି କରେଇଥିଲେ ।

ମୁଁ ଲକ୍ଷ୍ମଣଙ୍କ ମନ୍ଦିର ପଟୁ ନଦୀ ଆରପାରିକୁ ପୋଲ ଉପରେ ଚାଲିବାକୁ ଲାଗିଲି । ପୋଲଟା ମୋର ପ୍ରତି ପଦକ୍ଷେପରେ ଦୋହଲୁଥାଏ, ତଦ୍ୱାରା ସମାନ୍ୟ ଭୟ ଆସୁଥାଏ ମନରେ । କିନ୍ତୁ ସେଇ ଭୟ ଉଭେଇଗଲା କିଛିବାଟ ଚାଲିଗଲା ପରେ । ପୋଲ ମଝାମଝି ଏକ ଜାଗାରେ ମୁଁ ଠିଆହେଲି । ସେଠି ପୂର୍ବଦିଗରେ ସୂର୍ଯ୍ୟୋଦୟ ପର୍ବ ତଥାପି ଶେଷହୋଇନଥାଏ । ହାତଘଡିକୁ ଚାହିଁଲି– ସମୟ ସକାଳ ସାଢ଼େନଅ । ସକାଳ ସାଢ଼େ-ନଟାରେ ବି ସୂର୍ଯ୍ୟଙ୍କ ଦର୍ଶନ ନହେଉଥିବାର କାରଣ ଅନୁସନ୍ଧାନ କରିବାକୁ ଯାଇ ଦେଖିଲି ସୂର୍ଯ୍ୟ ଲୁକ୍କାୟିତ ଏକ ପର୍ବତ ପଛରେ । ସେ ପର୍ବତଟା ଠିକ୍ ଯୋଡିଏ ନଦୀଧାର ମଝାମଝି ଏକ ଦ୍ୱୀପରେ । ତାର ଦୁଇପାଖର ହିମାଳୟରୁ ପ୍ରବାହିତ ଦୁଇ ନଦୀଧାର ବୋହି ଆସି ପୁଣି ଏକାଠି ହୋଇଥାଏ ଋଷିକେଶରେ ।

ଲକ୍ଷ୍ମଣଝୁଲା ଉପରେ ଠିଆହୋଇ କିଛି ସମୟ ପାଇଁ ସେଇ ପର୍ବତକୁ ଚାହିଁଲି । କିଛି ସମୟ ଚାହିଁଲା ପରେ ହଠାତ୍ ସନ୍ଦେହ ହେଲା– ପର୍ବତଟାର ଶରୀରରେ କମ୍ପନ ଘଟି ଚାଲିଚି ଅନବରତ ! ଏହାର କାରଣ ଅନୁସନ୍ଧାନ ପାଇଁ ଆହୁରି ନିଠେଇ କରି ଚାହିଁଲି । ଦେଖିଲି– ସେ କମ୍ପନର କାରଣ ଅଛି । ପର୍ବତ ପଛ ପଟୁ ସୂର୍ଯ୍ୟକିରଣ ଭେଦ କରୁଚି ପର୍ବତକୁ ଆବୃତ କରିଥିବା ଅରଣ୍ୟର ଉଦ୍ଭିଦ ଆବରଣକୁ । ଯେହେତୁ ସୂର୍ଯ୍ୟ କ୍ରମଶଃ ଦିଗ୍‌ବଳୟର ଊର୍ଦ୍ଧ୍ୱକୁ ଉଠୁଥାନ୍ତି ତାଙ୍କ ରଶ୍ମିଗୁଚ୍ଛ ମଧ୍ୟ ସ୍ଥାନାନ୍ତରିତ ହେଉଥାଏ । ତାହା ହୁଏତ ହୋଇପାରେ କାରଣ ପର୍ବତର ସେପରି କମ୍ପନ ଅନୁଭବର । ମୁଁ ତଥାପି ଆହୁରି କିଛି ସମୟ ସେଇ ପର୍ବତକୁ ଚାହିଁ ରହିଲି । ହଠାତ୍ ମୋ ନିଜ ଶରୀର ମଧ୍ୟ କମ୍ପିବାକୁ ଆରମ୍ଭ କଲା ! ତାର କାରଣ– ସମଗ୍ର ପର୍ବତଟା ସ୍ୱୟଂ ଇତି ମଧ୍ୟରେ ଏକ ବିଶାଳ ଶିବଲିଙ୍ଗକୁ ରୂପାନ୍ତରିତ ହୋଇସାରିଥିଲା ! (ଏଠାରେ କହିରଖେ ଅନେକ ପରେ ଜାଣିଲି ଏଇ ପର୍ବତର ନାମ 'ନୀଳକଣ୍ଠ ପର୍ବତ' । ପୁଣି ଏଇଠାରେ, ଏଇ ଲକ୍ଷ୍ମଣ ଝୁଲା ଉପରେ ଠିଆହୋଇ ସ୍ୱାମୀ ଶିବାନନ୍ଦ ଏଇ ନୀଳକଣ୍ଠ ପର୍ବତରେ ଦର୍ଶନ କରିଥିଲେ ଭଗବାନ୍ ଶିବଙ୍କୁ) ।

ପର୍ବତଟିର ସେପରି ଅଦ୍ଭୁତ ରୂପାନ୍ତର ମତେ ଅଭିଭୂତକଲା । ଆଶ୍ଚର୍ଯ୍ୟ ହେଲି– ଆମେରିକା ଛାଡିବା ଅବ୍ୟବହିତ ପୂର୍ବରୁ ଲଷ୍ଟ-ସିର ଗଭୀର ଅନ୍ଧକାର ଗହ୍ୱର ଭିତରେ ଯେଉଁ ଶିବ ମତେ ଦର୍ଶନ ଦେଇଥିଲେ ଏଠି ହିମାଳୟର ଋଷିକେଶରେ ସେ ପୁଣି

ଦର୍ଶନ ଦେଉନାହାନ୍ତି ତ ! ରୁମ ଟାଙ୍କୁରି ଉଠିଲା । ମୁଁ ମନେମନେ ଜପ ଆରମ୍ଭକଲି– ଓଁ ନମଃ ଶିବାୟ । ଜପ କରୁ କରୁ ମୁଁ ନିଶ୍ଚୟ ଆତ୍ମ-ବିଭୋର ହୋଇପଡ଼ିଲି ।

ସେତିକିବେଳେ ମୋର ଧ୍ୟାନ ଭଙ୍ଗ ହେଲା– କିଏ ଜଣେ ଆସି ମୋ' ପାଖରେ ଠିଆହୋଇଚି । ମୋର ସ୍ଥିର ଅବିଚଳିତ ସ୍ଥିତିକୁ ଅନୁମାନ କରିସାରି ସେ ହୁଏତ ମତେ ଅନୁକରଣ କଲାପରି ପର୍ବତକୁ ଚାହିଁ ରହିଚି ସେମିତି ସ୍ଥିର ଦୃଷ୍ଟିରେ ।

ତାର ଉପସ୍ଥିତି ବିଷୟରେ ସଚେତନ ହେଲାପରେ ମୁହଁ ବୁଲେଇ ଲୋକଟିକୁ ଚାହିଁଲି । ଦେଖିଲି ଏ ସେଇ ସ୍ୱିସ୍ ଯୁବକ ଯାହାକୁ ଆମ ବସ୍ କଣ୍ଡକ୍ଟର ଡାକେ ବନ୍ଦର ନାଁରେ । "I feel a tremendous vibration here...why ?"– ଯୁବକଟିର ମୁହଁ ଲାଲ୍ ଟହଟହ ଦିଶିଗଲାଣି ସେତେବେଳକୁ ଉତ୍ତେଜନା ଆତିଶଯ୍ୟବଶତଃ ନିଶ୍ଚୟ ।

ମୁଁ ତାକୁ ଆପାଦମସ୍ତକ ନିରୀକ୍ଷଣ କଲି । କହିଲି, "Because this place is thoroughly charged with a divine consciousness known as Shiva Consciousness. The Himalayas, according to Indian myth, is the abode of Lord Shiva and his concert mother Parvati."

ପରେ ପରେ ମୁଁ ତାକୁ ରାମାୟଣର ବିଷୟବସ୍ତୁ ଠିକେ ଠିକେ କହିସାରି ବୁଝେଇଲି– ''ରାମାୟଣରେ ବର୍ଣ୍ଣିତ ରାମରାବଣ ଯୁଦ୍ଧ ଅନ୍ତେ ରାକ୍ଷସରାଜ ବ୍ରାହ୍ମଣ ରାବଣଙ୍କୁ ବଧକରି ଶ୍ରୀରାମ ଓ ଲକ୍ଷ୍ମଣ ଲଙ୍କାରୁ ଅଯୋଧ୍ୟା ଫେରିଆସିଥିଲେ । କିନ୍ତୁ ତାଙ୍କୁ ବ୍ରହ୍ମହତ୍ୟା ପାପ ଲାଗିଲା । କୁଳଗୁରୁ ବଶିଷ୍ଠଙ୍କ ଉପଦେଶ ପାଳନକରି ହିମାଳୟର ଏହି ସ୍ଥାନରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଓ ଭାଇ ଲକ୍ଷ୍ମଣ ଦୀର୍ଘକାଳ ଭଗବାନ୍ ଶିବଙ୍କୁ ତପସ୍ୟା କରିଥିଲେ ଓ ରାବଣବଧ ଜନିତ ପାପରୁ ମୁକ୍ତିଲାଭ କରିଥିଲେ । ଏ ସ୍ଥାନର ମାହାତ୍ମ୍ୟର କାରଣ ହେଲା ଭଗବାନ୍ ଶିବ ଏଠାରେ ଆବିର୍ଭୂତ ହୋଇଥିଲେ ଓ ଏବେବି ଆବିର୍ଭୂତ ହୁଅନ୍ତି ବୋଲି ଆମର ସନ୍ଥମାନେ କହନ୍ତି. . .''

"See– I come from the Alps Mountains. The whole world knows the fame of the Alps and the paradise there of the beautiful lakes. I live by the banks of the lake Geneva. But never did I feel such vibrations there as I am passing through now at present ! Is this the vibrations of Lord Shiva you say ?"

ଏଇ ସମୟରେ ବସ୍ କଣ୍ଡକ୍ଟରର ଆବିର୍ଭାବ ଘଟିଲା ଆମ ଆଗରେ । ତା' ସାଥିରେ ନିରୁପମା, ଅଭିଜିତ ଓ ଜୁଲିଙ୍କ ସମେତ ଆମ ବସ୍‌ର ଅନ୍ୟ ସବୁ ଟୁରିଷ୍ଟ୍ ଚାଲିଥାନ୍ତି ।

''ଆୟିୟେ ସାହାବ୍– ନଦୀ କେ ଉସ୍ ପାର୍ ଚଲେଙ୍ଗେ । ବହୁତ ବହୁତ କୁଛ୍ ଦେଖନେ ଲାଏକ ଚିଜ୍ ହାୟ ଉହାଁପର୍ । ଚଲିୟେ– ଟାଇମ୍ ବହୁତ କମ୍ ହାଏ ଅଭି ହମାରେ ହାତ୍‌ମେ । ଚଲିୟେ ତୋ ସହି. . .'' କଣ୍ଡକ୍ଟର ମୋ ହାତ ଧରି ଟାଣିଲା । ବିଦେଶୀ ଲୋକଟିକୁ ହିନ୍ଦିରେ ଶୁଣେଇଲା କି– ''ହୋ ଭୟା ! ବକ୍ତ ଖତମ୍ ହୋ ଗିୟା. . . ଚଲୋ ଚଲୋ..''

ମୁଁ କଣ୍ଡକ୍ଟର ପଛେ ପଛେ ଝୁଲା ଆରପାରିକୁ ଚାଲିବା ପୂର୍ବରୁ ସେ ସୁଇସ୍ ଯୁବକକୁ ବୁଝେଇଦେଲି ଯେ ବର୍ତ୍ତମାନ ଆମକୁ ବ୍ରିଜ୍ ସେପଟକୁ ଯିବାକୁ ହବ । କିନ୍ତୁ ଦେଖିଲି ସେ ଯିବାକୁ ସଂପୂର୍ଣ୍ଣ ନାରାଜ । କଣ୍ଡକ୍ଟର ପୁଣି ତାକୁ ହିନ୍ଦୀ ଓ ଇଂଲିସ୍ ମିଶାଇ ଶୁଣେଇଦେଲା– ସମୟ ଆଉ ନାହିଁ ହାତରେ । ସେ ଯଦି ନଯାଏ ତେବେ ତାକୁ ଛାଡିଦେଇ ସେମାନେ ଚାଲିଯିବାକୁ ବାଧ୍ୟ ହେବେ ।

କିନ୍ତୁ କୌଣସି କଥାରେ ସେ ବିଚଳିତ ହେଲାନାହିଁ । ନୀଳକଣ୍ଠ ପର୍ବତ ଆଡକୁ ମୁହଁକରି ସେ ମତେ ଶୁଣେଇଦେଲା ତାର ଶେଷ ସିଦ୍ଧାନ୍ତ ଯେ ସେ ଆଉ ଫେରିଯିବ ନାହିଁ ଦିଲ୍ଲୀ କ'ଣ ନିଜ ଦେଶକୁ ବି । ସେ ରହିବ ଏଇଠି ହିମାଳୟରେ ବାକିତକ ଜୀବନ । ସେ ତାହାହିଁ କଲା । ଏପରିକି ବସ୍ ପର୍ଯ୍ୟନ୍ତ ଫେରିଯାଇ ସେ ତାର ଲଗେଜ୍ ସଂଗ୍ରହ କରିବାକୁ ବି ପରୱା କଲାନାହିଁ । ଆମେ ତାକୁ ସେଇ ଲକ୍ଷ୍ମଣ ଝୁଲା ଉପରେ ହିଁ ଛାଡି ଚାଲିଆସିଲୁ ।

ଦିଲ୍ଲୀରେ ପନ୍ଦର ଦିନ ରହଣି ଅନ୍ତେ ଆମେ ଅକ୍ଟୋବର ଶେଷ ସପ୍ତାହରେ ପହଞ୍ଚିଲୁ ଭୁବନେଶ୍ୱରେ ।

––

# ଅଧ୍ୟାୟ - ଦୁଇ

# ଦ୍ୱିତୀୟ ଆମେରିକା ଭ୍ରମଣ ଡାଏରୀ – ୧୯୯୭

ଆମେରିକା ଭ୍ରମଣର ଦ୍ୱିତୀୟ ପର୍ଯ୍ୟାୟର ସୁଯୋଗ ଆସିଲା ପୁଣି ଚାରିବର୍ଷ ପରେ । ଏ ଭିତରେ ବହୁ ପରିବର୍ତ୍ତନ ଘଟିସାରିଥାଏ ଦେଶ ଓ ଆନ୍ତର୍ଜାତିକ କ୍ଷେତ୍ରରେ । ୧୯୯୦-୯୧ରେ ଆରମ୍ଭ ହୋଇଥିବା ଜଗତୀକରଣ (Globalzation) ପ୍ରକ୍ରିୟା ବହୁ ବାଟ ଆଗେଇ ଯାଇଥାଏ । ଭାରତର ଅର୍ଥନୈତିକ ସ୍ଥିତି ସୁଦୃଢ ହେବାରେ ଲାଗିଥାଏ । ହେଲେ ଆମେରିକାରେ ହାହାକାର ପଡିଥାଏ– ଭାରତ ଚାଇନା ସବୁ ନେଇଗଲେ, ସବୁ ମାରି-ନେଇଗଲେ ! ସେତେବେଳେ ଆମେରିକା ଲୋକଙ୍କର ସବୁଠୁ ବଡ ସମସ୍ୟା ହେଇଥାଏ ତାଙ୍କ ଦେଶର ବଡ ବଡ କଂପାନୀମାନେ ଆମେରିକାରୁ ପୁଞ୍ଜି ହଟେଇନେଇ ଭାରତ ଓ ଚୀନ୍ ପ୍ରଭୃତି ବିକାଶଶୀଳ ଦେଶମାନଙ୍କରେ ବିନିଯୋଗ କରିବାଯୋଗୁ । ଏହା ଫଳରେ ଆମେରିକାରେ କମ୍ପାନିମାନ ବନ୍ଦହେଇଯାଉଥାଏ ଆଉ ଭାରତରେ ନୂଆ ନୂଆ କଂପାନୀ ଖୋଲାଚାଲିଥାଏ । ଏହାକୁ କୁହାଯାଉଥାଏ outsourcing of capital and services ! ଏ ସମସ୍ୟା ସେତେବେଳକୁ ଉତ୍କଟରୁ ଉତ୍କଟତର ହେବାରେ ଲାଗିଥାଏ ।

ସେଇ ଭିତରେ ଖବର ମିଳିଲା– ମୋ ବଡ ଜୋଇଁ ପ୍ରବୀର ଓ ଝିଅ ପ୍ରଜ୍ଞେଶନନ୍ଦିନୀ ସେମାନଙ୍କର ଚାକିରି ଛାଡିଦେଇ ଆରମ୍ଭକଲେଣି ନିଜର ସ୍ୱାଧୀନ ବ୍ୟବସାୟ । ସେ ଦୁହିଁଙ୍କୁ ମୁଁ ଗତଥର ଦେଖି ଆସିଥିଲି ଟେନିସି– ଚାଟାନୁଗାରେ । ସେତେବେଳେ ସେ ଦୁହେଁ କାମ କରୁଥିଲେ ଗୋଟିଏ ନିର୍ମାଣାଧୀନ ପରମାଣୁ ରିଆକ୍ଟର ପ୍ରୋଜେକ୍ଟରେ, ଦାୟିତ୍ୱପୂର୍ଣ୍ଣ ପୋଷ୍ଟରେ, ବେଶ୍ ଉଚ୍ଚଦରମାର ଇଂଜିନିୟର୍ ପୋଷ୍ଟରେ । ବର୍ତ୍ତମାନ ସେ ଦୁହେଁ ସେ ଚାକିରି କାହିଁକି ଛାଡିଲେ ଆଉ ଆରମ୍ଭ କଲେ ନିଜସ୍ୱ ବ୍ୟବସାୟ– ମତେ ଚିନ୍ତାରେ ପକେଇଲା । ପୁଣି ଶୁଣିଲି– ସେମାନେ ଚାଟାନୁଗା ଛାଡି ଆସି ରହିଲେଣି ବଡ ସହର ନ୍ୟାସ୍‌ଭିଲ୍‌ରେ ।

ନ୍ୟାସ୍‌ଭିଲ୍ ସହର ସହିତ ମୋର ପରିଚୟ ହେଇଥିଲା ଗତଥର ୧୯୯୩ରେ ଆମେରିକା ଭ୍ରମଣ ସମୟରେ । ସେ ବର୍ଷ ଜୁଲାଇ ମାସରେ ସେଠାର ହିନ୍ଦୁମନ୍ଦିରର ରଥଯାତ୍ରା ଉତ୍ସବରେ ଅତିଥି ହୋଇଥିଲି । ମୋ ସହିତ ଥିଲେ ଓଡିଶାର ଅନ୍ୟ ଦୁଇଜଣ ପ୍ରସିଦ୍ଧ ବ୍ୟକ୍ତି– ପ୍ରଫେସର୍ କାହ୍ନୁଚରଣ ମିଶ୍ର ଆଉ ପ୍ରସିଦ୍ଧ କଣ୍ଠଶିଳ୍ପୀ ସୁନନ୍ଦା ପଟ୍ଟନାୟକ । ସେଥର ରଥଯାତ୍ରାରେ ଯୋଗ ଦେବାକୁ ମତେ ଆସିବାକୁ ପଡିଥିଲା– ଚାଟାନୁଗାରୁ ନ୍ୟାସ୍‌ଭିଲ୍,

ପ୍ରାୟ ଦେଢଶହ ମାଇଲ୍ । ସେ ବିଷୟ ପୂର୍ବରୁ କହିସାରିଚି ଏ ବହିରେ, ୧୯୯୩ ଆମେରିକା ଡାଏରି ଅଧ୍ୟାୟରେ । କିନ୍ତୁ ବର୍ତ୍ତମାନ ସେଇ ଝିଅଜୋଇଁ ଚାଟାନୁଗା ଛାଡି ଆସି ରହିଲେଣି ଖୋଦ୍ ନ୍ୟାସ୍‌ଭିଲ୍‌ରେ ଖବର ପାଇ ମୁଁ ଖୁସିହେଲି ନିଶ୍ଚୟ । କିନ୍ତୁ ଏହା ସହିତ ଶୁଣିଲି ମଧ୍ୟ ସେମାନେ ସେ ସହରଠାରୁ ପ୍ରାୟ ପଚାଶ ମାଇଲ୍ ଦୂର ଲୁଇସ୍‌ବର୍ଗ ନାମକ ଅନ୍ୟ-ଏକ ଛୋଟ ସହରରେ ଗୋଟିଏ ବ୍ୟବସାୟିକ ଅନୁଷ୍ଠାନ କିଣିଛନ୍ତି ଓ ଆରମ୍ଭ କରିଛନ୍ତି ନୂଆକରି ବ୍ୟବସାୟିକ ଜୀବନ । ସେମାନଙ୍କର ଏ ନୂଆ ଯୋଜନା ମତେ କେମିତି କେମିତି ଲାଗିଲା । ଭାବିଲି ଏହା ନିଶ୍ଚୟ ଆମେରିକାରେ ଆରମ୍ଭହୋଇଯାଇଥିବା ଆଜିର ଗ୍ଲୋବାଲାଇଜେସନ୍ ଅର୍ଥନୈତିକ ପରିବର୍ତ୍ତନର ପ୍ରଭାବ । ସେ ପ୍ରଭାବରେ ଆମେରିକାର ବଡ ବଡ କଂପାନୀମାନେ ଯୋଉ ରାତାରାତି ଚାକିରି ଛଟେଇ ରୋଗର ଶିକାର ହେଇଥିଲେ ୧୯୯୩ରେ, ଏହା ନିଶ୍ଚୟ ତା'ରି ପରିଣତି । ତେବେ ମୁଁ ଯେତେବେଳେ ଶୁଣିଲି ପ୍ରବୀର ଓ ପ୍ରଜେଶ (ବୁଲବୁଲ) ଚାକିରି ଛାଡି ଆରମ୍ଭ କଲେଣି ନିଜସ୍ୱ ସ୍ୱାଧୀନ ବ୍ୟବସାୟ ମୁଁ ନିରାଶ ନହୋଇ ଆଶାନ୍ୱିତ ହେଲି ଅଧିକ । ଜାଣିଲି ଏଥର ଆମ ଭାରତୀୟ ପିଲାମାନେ ଆଉ ଆମେରିକାରେ ଚାକିରି ଚାକିରି ହେଇ ପରଦୁଆରେ ହାତ ନପାତି ନିଜ ଗୋଡରେ ଠିଆହେବାର ବାଟ ପାଇଗଲେଣି । ପିଲାମାନଙ୍କ ଜୀବନପଥର ଟର୍ଣ୍ଣିଂ ପଏଣ୍ଟରେ ସେମାନଙ୍କ ପାଖେ ଠିଆ ହେବା ଉଚିତ୍ ମନେକରି ମୁଁ ସେଦିନ ଆମ ଦୁଇଜଣଙ୍କ ପାଇଁ ଯୋଡିଏ ପ୍ଲେନ୍ ଟିକେଟ୍ କାଟିଲି । ନିର୍ଦ୍ଦିଷ୍ଟ ଦିନ ଆମେ ଆରମ୍ଭକଲୁ ଆମେରିକା ଯାତ୍ରା– ଦ୍ୱିତୀୟବାର ।

**ଦିଲ୍ଲୀରୁ ଲଣ୍ଡନ–**

ରବିବାର, ତା ୨୨ଜୁନ୍ ୧୯୯୭ । ସକାଳ ସାଢେ ସାତଟାରେ ଆମ ଏୟାର୍‌ଇଣ୍ଡିଆ-ଫ୍ଲାଇଟ୍ ଟେକ୍‌ଅଫ୍ ନେଲା ଦିଲ୍ଲୀର ଇନ୍ଦିରାଗାନ୍ଧି ଆନ୍ତର୍ଜାତିକ ବିମାନ ବନ୍ଦରରୁ । ଆରମ୍ଭ ହେଲା କ୍ରମାଗତ ଦଶଘଣ୍ଟା ପନ୍ଦର ମିନିଟ୍‌ର ଉଡାଣ ।

ସେଇ ରବିବାର ଦିନ ଲଣ୍ଡନରେ ମଧ୍ୟାହ୍ନ ୧୨ ଟା ୪୫, ଅର୍ଥାତ୍ ଆମ ଭାରତୀୟ ସମୟ ସନ୍ଧ୍ୟା ୫ଟା ୪୫ରେ ପ୍ଲେନ୍ ଲ୍ୟାଣ୍ଡିଂ କଲା ହିଥ୍ରୋ ବିମାନ ବନ୍ଦରରେ ।

ପ୍ଲେନ୍‌ର ସବୁ ଯାତ୍ରୀଙ୍କୁ କୁହାଗଲା ନିଜନିଜ ହାଣ୍ଡବ୍ୟାଗ୍ ସହିତ ଓହ୍ଲେଇଯିବାକୁ ଓ ସିଧା-ଟ୍ରାଞ୍ଜିଟ୍ ଲାଉଞ୍ଜକୁ ଚାଲିଯିବାକୁ । ପୁଣି କୁହାଗଲା– ହିଥ୍ରୋ ବିମାନବନ୍ଦର ଛାଡି ଯାତ୍ରୀମାନେ ଅନ୍ୟ କୁଆଡେ ଯାଇ ପାରିବେ ନାହିଁ । ପରବର୍ତ୍ତୀ ଉଡାଣ ଆରମ୍ଭ ଘଣ୍ଟାଏ ପରେ । ଯାତ୍ରୀମାନଙ୍କୁ ପୁଣି ଥରେ କଷ୍ଟମସ୍ ଚେକିଂ କରାଯିବ ପ୍ଲେନ୍‌ରେ ପୁନର୍ପ୍ରବେଶ ପୂର୍ବରୁ । ନିଜନିଜର ପାସ୍‌ପୋର୍ଟ ଭିସା ଇତ୍ୟାଦିକୁ ପ୍ରସ୍ତୁତକରି ଟ୍ରାଞ୍ଜିଟ୍ ପାସ୍ ନେଇ ନିର୍ଦ୍ଦିଷ୍ଟ ଗେଟ୍ ବାଟେ ଲାଉଞ୍ଜକୁ ଚାଲିଯାଆନ୍ତୁ ସମସ୍ତେ ।

ନିର୍ଦ୍ଦେଶ ଅନୁସାରେ ନିରୁପମା ଓ ମୁଁ ଅନ୍ୟ ଯାତ୍ରୀମାନଙ୍କ ଗହଣରେ ଧାଡିବାନ୍ଧି ଚାଲିଲୁ ଟ୍ରାଞ୍ଜିଟ୍ ଲାଉଞ୍ଜର ପ୍ରବେଶ ଗେଟ୍ ଆଡକୁ । ଦେଖିଲି ଆମର ସହଯାତ୍ରୀ ଥିଲେ ସଂଖ୍ୟାରେ ପ୍ରାୟ ତିନି ଶହ । ସେମାନଙ୍କ ଭିତରେ ଅଧିକାଂଶ ଭାରତୀୟଙ୍କ ବ୍ୟତୀତ କିଛି ଗୋରା ବିଦେଶୀଯାତ୍ରୀ ମଧ୍ୟ ଥିଲେ ।

ଟ୍ରାଞ୍ଜିଟ୍-ଲାଉଞ୍ଜରେ ପଶିବା ପୂର୍ବରୁ ଗେଟ୍ ପାଖରେ ଜଗିଥିବା ଏୟାରପୋର୍ଟ କର୍ମଚାରିଣୀ ଜଣେ ଆମ ହାତକୁ ଖଣ୍ଡେ ଖଣ୍ଡେ ନମ୍ବର ଓ ମୋହରଦିଆ କାର୍ଡ ବଢେଇ-ଦେଲେ । କହିଲେ– ଏଇ ହେଲା ଆପଣମାନଙ୍କର ଏଠାର ସାମୟିକ ଭିସା (ପରିଚୟପତ୍ର) । ଏହାକୁ ବରାବର ପାଖରେ ରଖିଥିବେ ଓ ଫେରିବାବେଳେ ଆମକୁ ହସ୍ତାନ୍ତର କରିବେ, ନଚେତ୍ ଆପଣମାନଙ୍କ ପାଇଁ ବହୁ ଅସୁବିଧା ଉପୁଜିବ । ଏ କାଗଜ ପାଖରେ ନଥିଲେ ଧରିନିଆଯିବ ଆପଣମାନେ ଇଂଲଣ୍ଡକୁ ଅନୁପ୍ରବେଶକାରୀ କେହି ଅବାଞ୍ଛିତ ବିଦେଶୀ ବ୍ୟକ୍ତିବିଶେଷ ।

ଯେତେବେଳେ ଖବରକାଗଜରେ ପ୍ରକାଶ ପାଉଥାଏ ଲଣ୍ଡନର ଏୟାରପୋର୍ଟମାନଙ୍କରେ ଭାରତୀୟ ନାଗରିକମାନଙ୍କୁ ବହୁ ଅସୁବିଧା ଭୋଗିବାକୁ ପଡୁଥାଏ । ଇଂଲାଣ୍ଡକୁ ଆଗନ୍ତୁକ ଯାତ୍ରୀମାନଙ୍କୁ, ବିଶେଷତଃ ମହିଳା ଯାତ୍ରୀମାନଙ୍କୁ, ଏୟାରପୋର୍ଟରେ ଯାଞ୍ଚ କରାଯାଉଥାଏ ନିତାନ୍ତ ନିନ୍ଦନୀୟ ଭାବେ । ସ୍ୱାସ୍ଥ୍ୟ ପରୀକ୍ଷା ଆଳରେ ସେମାନଙ୍କର ଏକ୍ସ-ରେ କରାଯାଉଥାଏ, ଉଦ୍ଦେଶ୍ୟ– ସେମାନେ ଗର୍ଭବତୀ କି ନା ଜାଣିବା । ଏହାର କାରଣ– ଇଂଲାଣ୍ଡରେ ନାଗରିକତ୍ୱ ହାସଲ କରିବାକୁ ଲାଳାୟିତ କେତେକ ଭାରତୀୟ ନାରୀ କୁଆଡେ ୟୁରୋପୀୟ ଦଲାଲମାନଙ୍କୁ ସାମୟିକ ଭାବେ ବିବାହକରି ଇଂଲଣ୍ଡ ଓ ବିଭିନ୍ନ ଦେଶକୁ ଯାଇ ସେମାନଙ୍କ ପତ୍ନୀ ଅଧିକାରରେ ନିଜ ଦେଶ ଛାଡି ପଳେଇ ଆସୁଥାନ୍ତି । ଏହି ଅବୈଧ ଇମିଗ୍ରେସନ୍‌କୁ ପଣ୍ଡ କରିଦେବାକୁ ବ୍ରିଟେନ୍‌ର ସରକାରୀ ନିୟମ ଖୁବ୍ କଡାକଡି କରିଦିଆଯାଇଥାଏ । ତା'ଫଳରେ ଭାରତୀୟ ଯାତ୍ରୀମାନେ ବ୍ରିଟେନ୍‌ର ବିଭିନ୍ନ ବିମାନବନ୍ଦର ଦେଇ ଆନ୍ତର୍ଜାତିକ ପର୍ଯ୍ୟଟକଭାବେ ଯାତ୍ରାକରୁଥିବା ବେଳେ ନିର୍ଯ୍ୟାତିତ ହେଉଥାନ୍ତି ।

ଆମେ ଟ୍ରାଞ୍ଜିଟ୍ ଲାଉଞ୍ଜରେ ପଶିଲୁ । ପରେ ପରେ ଗୋଟାଏ ଖୁଆଡରେ ପୂରା-ଯାଇଥିବା ପଶୁମାନଙ୍କ ପରି ଆମକୁ ପ୍ରାୟ ଆବଦ୍ଧ ଅବସ୍ଥାରେ ଘଣ୍ଟାଟିଏ ସମୟ ବିତାଇବାକୁ ପଡିଲା ସେଇ ସଂକୀର୍ଣ୍ଣ ଜାଗାରେ ଯୋଉଠି ତିନିଶହ ପ୍ୟାସେଞ୍ଜରଙ୍କ ପାଇଁ ବସିବାକୁ ବି ଅଭାବ ଥାଏ ଚେୟାରର ।

ନିରୁପମା ପଚାରିଲେ, "କାହିଁ ଗଲାଥର ଆମେ ଫ୍ରାଙ୍କଫର୍ଟ ଏୟାରପୋର୍ଟ ବାଟେ ଆମେରିକା ଯିବାବେଳେ ତ ସେଠି ଏମିତି କଟକଣା ଭୋଗିବାକୁ ପଡିନଥିଲା– ଏଠି କାହିଁକି ଏଭଳି ?"

ହସିଲି– "ଫ୍ରାଙ୍କଫର୍ଟ ହେଲା ଜର୍ମାନୀ ଦେଶର ଆଉ ହିଥ୍ରୋ ହେଲା ଆମର ପୂର୍ବତନ

ସାମ୍ରାଜ୍ଞୀ ମହାରାଣୀ ଏଲିଜାବେଥ୍‌ଙ୍କ ଦେଶ ପରା ! ଆମେ ପ୍ରଜା ଥିଲୁ ସେତେବେଳେ, ଏବେ ଆମେ ଟିକେ ସ୍ୱାଧୀନ ହେଇଗଲୁ ବୋଲି କ'ଣ ଆମ ଦେହର କଳାରଙ୍ଗଟା ଛେଡା ହେଇଗଲା କି ସାମ୍ରାଜ୍ଞୀଙ୍କ ନଜରରେ ? ଭାଗ୍ୟ ଭଲ ତୁମେ ଆଉ ଗର୍ଭବତୀ ହେବାର ବୟସ ସୀମାରେ ନାହଁ, ନଚେତ୍ ତୁମକୁ ସେମାନେ ଡାକନ୍ତେଣି ଏକ୍ସ-ରେ କରାଇ ଯାଞ୍ଚ କରିବାକୁ !''

ମୁହଁ ଲାଲ୍‌ପଡିଗଲା ମୋ ସ୍ତ୍ରୀର । ଆମ ପାଖରେ ଠିଆହେଇଥିବା ଜଣେ ଭାରତୀୟ ଯାତ୍ରୀ ଉପରେପଡି କହିଲେ, "ଜାଣିଲେ– ଏମାନେ ଉପରକୁ ଯେତେ ମାନବବାଦୀ ଆଉ ଗଣତନ୍ତ-ବାଦୀ ଦେଖେଇହେଲେ ବି ଏମାନଙ୍କ ଭିତରଟା ସେଇ ଉପନିବେଶବାଦୀ ରହିଚି ଆଉ ରହିବ ମଧ୍ୟ । ଯା'ଙ୍କୁ ଜବାବ୍ ଦେବ ଏକମାତ୍ର ଇତିହାସ । ରହନ୍ତୁ ଦେଖିବେ– ଏମାନେ କେମିତି ଖୁବ୍ ଶୀଘ୍ର ଭିକାରି ପରି ଭାରତ ପାଖରେ ହାତ ପତେଇ ଠିଆହେବେ ବ୍ୟବସାୟ କରିବାକୁ ଆମ ଦେଶରେ । ବର୍ତ୍ତମାନ ଶୁଣୁଚନ୍ତି ତ ଆମେରିକାରେ କେମିତି ହାଲହୋଳ ପଡିଯାଇଚି– ସେ ଦେଶର ବଡ ବଡ କଂପାନୀମାନେ ଭାରତକୁ ଲକ୍ ଷ୍ଟକ୍ ଆଣ୍ଡ୍ ବ୍ୟାରେଲ୍ ନେଇ ପଳେଇ ଯାଉଚନ୍ତି ବୋଲି ? ଆମର ସେଠି ବଡ ବଡ ଇଣ୍ଡଷ୍ଟ୍ରି ବସେଇ ଲାଭ ଉଠେଇବାକୁ କେମିତି ଆଖିବୁଜା ପୁଞ୍ଜି ଲଗାଣ ଚାଲିଲାଣି ଜାଣୁଥିବେ ତ ! ଦିନ ଆସିବ ଯେତେବେଳେ ଆମର ଟାଟା-ବିର୍ଲା-ଡାଲମିଆଁ ଭଳି ଶିଳ୍ପପତିମାନେ ଏଇ ଇଂଲାଣ୍ଡର ବଡବଡ କାରଖାନା ସବୁକୁ କିଣିନେବେ । ଆହୁରି ନୂଆ ନୂଆ କାରଖାନା ଏଇ ଇଲାଣ୍ଡରେ ପ୍ରତିଷ୍ଠା କରିବେ । ଖାଲି ଏଠି ନୁହେଁ– ସାରା ୟୁରୋପରେ ଖେଦିଯିବେ ଆମ ବ୍ୟବସାୟୀ ଦଳ । ଇତିହାସ କାହାରି ଦର୍ପ ସହେ ନାହିଁ । ଆଜି ଯେ ଅତ୍ୟାଚାରିତ କାଲି ସେ ହେବ ଅତ୍ୟାଚାରୀର ପ୍ରଭୁ । ଏହାକୁ କୁହାଯାଏ Nemesis ! ନେମେସିସ୍‌ର ସମୟ ଆସିଚି ବର୍ତ୍ତମାନ । ଏଇ ହେଲା ଗ୍ଲୋବାଲାଇଜେସନ୍‌ର ଫଳ । ଧନ୍ୟ କହିବ– ଆମ ପୂର୍ବ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଆଉ ତାଙ୍କ ଅର୍ଥମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କ ସାହସକୁ । ସେମାନେ ଯଦି ୧୯୯୦ର W.T.O-Treatyକୁ ଡରିଯାଇଥାନ୍ତେ ତାହେଲେ ଆଜି ମୁକ୍ତ-ବାଣିଜ୍ୟ ନୀତି ଆଳରେ ଭାରତକୁ ପୁଣି ଗୋଟାଏ ଉପନିବେଶ କରିଦେଇ ସାରନ୍ତେଣି ଏ ଧୂର୍ତ୍ତ ପଶ୍ଚିମା ସାମ୍ରାଜ୍ୟବାଦୀମାନେ ।"

ତେବେ ସେଇ ଏକଘଣ୍ଟା ରହଣି ଭିତରେ ଲାଉଞ୍ଜର ବଡ ବଡ କାଚ ଝରକା ବାଟେ ହିଥ୍ରୋ ବିମାନ ବନ୍ଦର ଉପରେ ଆଖି ବୁଲେଇଲି । ଏହା ଏକ ବିରାଟ ଆନ୍ତର୍ଜାତିକ ବିମାନବନ୍ଦର । ପୂର୍ବଥର ଲୁଫ୍‌ଥାହାନ୍‌ସା ବିମାନରେ ଆମେ ଯାତ୍ରା କରିଥିଲୁ ଆମେରିକା । ଲୁଫ୍‌ଥାହାନ୍‌ସା ଜର୍ମାନ୍ ଦେଶର ଏୟାର୍‌ଲାଇନ୍‌ସ୍ । ତେଣୁ ସେଥର ଆମେ ଆମେରିକା ଯିବା ବାଟରେ କେତେଘଣ୍ଟା ପାଇଁ ଅଟକିଥିଲୁ ଫ୍ରାଙ୍କଫର୍ଟ ଏୟାର୍‌ପୋର୍ଟରେ । ଫ୍ରାଙ୍କ୍‌ଫର୍ଟ ନିଶ୍ଚିତରେ ଏକ ବିଶାଳ ଆନ୍ତର୍ଜାତିକ ଏୟାର୍‌ପୋର୍ଟ । କିନ୍ତୁ ହିଥ୍ରୋ ଦେଖିଲା ପରେ ମନେହେଲା ଏ ହୁଏତ ତା'ଠୁ ବହୁତ ବଡ ଏୟାର୍‌ପୋର୍ଟ । ଲାଉଞ୍ଜର ବଡ ବଡ କାଚ

ଝରକା ଆରପଟକୁ ଏୟାର୍‌ପୋର୍ଟ ଭିତରକୁ ଅନାଇ ଦେଖିଲି–ଶହଶହ ପ୍ଲେନ୍ ଆତଯାତ ହେଉଥାନ୍ତି ଆଖି ପାଉନଥିବା ବିଶାଳ ଏୟାର୍‌ପୋର୍ଟ ଏରିଆ ଭିତରେ । ମାଳମାଳ ଚଢ଼େଇ ପରି ବିମାନମାନେ ଆକାଶ ଦିଗରେ ଉଡିଯାଉଥାନ୍ତି ଆଉ ଆକାଶରୁ ଓହ୍ଲାଉଥାନ୍ତି ମଧ୍ୟ ଅନବରତ । ସେଗୁଡିକର ବାହ୍ୟରୂପରୁ ଜଣାପଡିଯାଉଥାଏ କୋଉ ରାଷ୍ଟ୍ରର ପ୍ଲେନ୍ ସେସବୁ ।

ଘଣ୍ଟାଏ ପରେ ଡକରାପଡିଲା ବୋର୍ଡିଂ ପୂର୍ବ ସିକ୍ୟୁରିଟି ଚେକିଂ ପାଇଁ । ଆମ ହାଣ୍ଡବ୍ୟାଗ୍ ସମେତ ବଡି ଚେକିଂ ପୁଣି ଥରେ ରୀତିମତ କରାଗଲା– ଯଦିଚ ଟ୍ରାଞ୍ଜିଟ୍ ଲାଉଞ୍ଜରେ ଆମକୁ ଘଣ୍ଟାଏ କାଳ ବନ୍ଦୀ କରି ରଖାଯାଇଥିଲା ଓ ଏୟାର୍‌ପୋର୍ଟ ବାହାରକୁ ଯିବାର କୌଣସି ସ୍କୁ ନଥିଲା ଆମର । ଏଠି କହିରଖେ– ସେ ସମୟଟା ଆଗାମୀ ୨ / ୧୧ ଆତଙ୍କବାଦୀ ଯୁଗର ଢେର୍ ପୂର୍ବର ସମୟ । ଆମର ତୃତୀୟବାର ଆମେରିକା ଭ୍ରମଣ ୨୦୦୩ବେଳକୁ ଆନ୍ତର୍ଜାତିକ ବିମାନ ଯାତ୍ରାର ସିକ୍ୟୁରିଟି ଚେକିଂ ବ୍ୟବସ୍ଥା ଆହୁରି କେତେ ସାଂଘାତିକ ହେବ ସେ ପର୍ଯ୍ୟନ୍ତ କୌଣସି ଧାରଣା ନଥିଲା ।

## ଲଣ୍ଡନରୁ ନ୍ୟୁୟର୍କ–

ଲଣ୍ଡନରୁ ନ୍ୟୁୟର୍କ– ଟ୍ରାନ୍ସ-ଆଟ୍‌ଲାଣ୍ଟିକ୍‌ଯାତ୍ରା– ପ୍ରାୟ ସାତଘଣ୍ଟାର । ସେଇ ଦିନ ଲୋକାଲ୍ ଟାଇମ୍ ସନ୍ଧ୍ୟା ୫ଟାରେ ଆମେ ନ୍ୟୁୟର୍କର ଜେ.ଏଫ୍.କେ ବିମାନ ବନ୍ଦରରେ ପ୍ଲେନ୍‌ରୁ ଓହ୍ଲେଇଲୁ । ଏହା ପରେ କଷ୍ଟମସ୍ ଚେକିଂ । ସେଠି ଯେ ପୁଣି ଏକ ଯନ୍ତ୍ରଣାଦାୟକ ଚେକିଂ ବ୍ୟବସ୍ଥା ଆମ ପାଇଁ ଅପେକ୍ଷା କରି ରହିଥାଏ ସେଥିପାଇଁ ମୁଁ ଆଦୌ ପ୍ରସ୍ତୁତ ନଥିଲି । ନ୍ୟୁୟର୍କରେ ପ୍ଲେନ୍ ଲାଣ୍ଡିଂ ପୂର୍ବରୁ ଆମ ଭାରତୀୟ ଏୟାର୍ ହୋଷ୍ଟେସ୍ ଯାତ୍ରୀମାନଙ୍କ ହାତକୁ ଖଣ୍ଡେଖଣ୍ଡେ ଫର୍ମ ବଢ଼େଇ ଦେଇ ଯାଇଥାନ୍ତି । ସେ ଫର୍ମରେ ଠାଏ ପୂରଣ କରିବାକୁ ଥାଏ ଗୋଟାଏ ସୂଚନା– ସାଙ୍ଗରେ କେତେ ଡଲାରର ମାଲ ଯାତ୍ରୀ ଜଣକ ନେଉଛନ୍ତି ଭାରତରୁ ଆମେରିକାକୁ । କଷ୍ଟମସ୍ ନିୟମାନୁସାରେ ଯାତ୍ରୀମାନେ ଶହେଡଲାରରୁ ବେଶୀ ମୂଲ୍ୟର ସାମଗ୍ରୀ ସାଙ୍ଗରେ ନେଉଥିଲେ ସେମାନଙ୍କର ଲଗେଜ୍ ଯାଞ୍ଚ କରାଯିବାର ସଂଭାବନା ଥାଏ ବୋଲି ମୁଁ ପୂର୍ବଥରର ଅଭିଜ୍ଞତାରୁ ଜାଣିଥାଏ । ତେଣୁ ମୁଁ ଡିକ୍ଲାରେସନ୍ ଦେଲି– ମୋ ପାଖରେ ଥିବା ସାମଗ୍ରୀଗୁଡିକର ମୂଲ୍ୟ ଆପାତତଃ ପଚାଶ ଡଲାରରୁ ବେଶୀ ନୁହଁ । କିନ୍ତୁ କଷ୍ଟମ୍‌ସ୍ କାଉଣ୍ଟର୍‌ରେ ମତେ ନିର୍ଦ୍ଦେଶ ମିଳିଲା– Go through Red channel ! ରେଡ୍‌ଚାନେଲ୍ ନା ଶୁଣି ମୁଁ ଅତର୍ଚ୍ଛା ହେଇପଡିଲି । ଜାଣିଥିଲି– ସେଠି ପ୍ୟାସେଞ୍ଜର୍‌ମାନଙ୍କ ଲଗେଜ୍ ତ ଲଗେଜ୍ ଦରକାର ହେଲେ ଲଙ୍ଗଳାକରି ଚେକିଂ କରାଯାଏ, ଆଉ ଯଦି ତଥାପି ସେମାନଙ୍କର ସନ୍ଦେହ ନତୁଟେ ତେବେ ସିଧା ଜେଲ୍ ବା ସ୍ୱଦେଶକୁ ଫେରନ୍ତି ରାସ୍ତା ଦେଖ ବୋଲି କୁହାଯାଇପାରେ ।

ଆମେ ତରିତରି ପଶିଲୁ ନାଲିବତି ଦେଖାଉଥିବା ଚାନେଲ୍ ଭିତରକୁ ଲଗେଜ୍ ଟ୍ରଲି ଦୁଇଟାକୁ ଠେଲିଠେଲି । ସେଠି ଆମ ଚାରିଟା ସୁଟ୍‌କେଶରୁ ସବୁତକ ଜିନିଷକୁ କାଢ଼ି ଦିଆଗଲା ବାହାରକୁ । ଚାଲିଲା ତନ୍ନତନ୍ନ ତଲାସି । କିନ୍ତୁ ଘଣ୍ଟାଏ କାଳ ସର୍ଚ୍ଚ ପରେ ଯେତେବେଳେ କିଛି ଧର୍ତ୍ତବ୍ୟ ଦ୍ରବ୍ୟ ନବାହାରିଲା ବା ଜିନିଷଗୁଡ଼ିକର ମୂଲ୍ୟାୟନରୁ କିଛି ଦୁର୍ମୂଲ୍ୟବସ୍ତୁର ସନ୍ଧାନ ନମିଳିଲା ସେତେବେଳେ କୁହାଗଲା କଷ୍ଟମସ୍ ଚେକିଂ ମୂଳ କାଉଣ୍ଟରକୁ ଫେରିଯାଇ କ୍ଲିୟରାନ୍ସ ନେଇ ବାହାରିଯିବାକୁ ।

କଷ୍ଟମସ୍ କ୍ଲିୟରାନ୍ସ କାଉଣ୍ଟରକୁ ଫେରି ଜାଣିଲୁ ଆମକୁ ସେଭଳି ଅଯଥା ହରକତ୍ କରାଯିବାର ଅସଲ କାରଣ । କାଉଣ୍ଟର୍‌ବାବୁ ମତେ ମୋର ସେଇ ପୂର୍ବ ଡିକ୍ଲାରେସନ୍ ଫର୍ମଟାକୁ ଦେଖେଇ ମତେ ପଚାରିଲେ, "Well ! What have you written here in your declaration ?"

"Fifty !"

"How do you write fifty dollars in figure ? Please write again"

"$ 50 = 00" ମୁଁ ଲେଖିଲି । କାଉଣ୍ଟର୍ ପଛରୁ ଏକ ଦୀର୍ଘଶ୍ୱାସ ଶୁଣାଗଲା । ଅଫିସର୍‌ଜଣକ ମତେ ପଚାରିଲେ, "Ah! you write figures like this ? But we read it as five thousand dollars ! That is the reason why you were put in the red channel ! You may go now."

ମୁଁ ଆମ ଜିନିଷପତ୍ର ସଜାଡିଲି । ଚାରିଚାରିଟା ବାକ୍ସର ଜିନିଷ– ସେଗୁଡ଼ାକୁ ନିର୍ଦ୍ଦୟ ଭାବେ ଛତରଛାଉଳ କରି ଖେଳାଇ ମେଲେଇ ଏଣେତେଣେ ଫିଙ୍ଗି ପକେଇ ଥିଲେ କଷ୍ଟମସ୍ ଚେକିଂ ସମୟରେ ତାଙ୍କ ଷ୍ଟାଫ୍‌ମାନେ । ସେଥିରେ ଅବଶ୍ୟ ଆମର କିଛି ଗୋପନୀୟ ଜିନିଷ ତଥାପି ବର୍ତ୍ତିରହିଥାଏ ଯାହା କଷ୍ଟମସ୍ ଚେକିଂ ବାଲାଙ୍କ ଦୃଷ୍ଟିକୁ କେମିତି ନଆସିଥିଲା କେଜାଣି ! ସେଗୁଡ଼ିକ ହେଲା– ତୁଳସୀଗଛର କୁନି ଚାରାଟିଏ, ମୋର ପାନଖିଆ ଅଭ୍ୟାସକୁ ଆମେରିକାରେ ଚାରିମାସ ବଜାୟ ରଖିବାପାଇଁ ସାଙ୍ଗରେ ଆଣିଥିବା କିଛି ଗୋଟାପାନ ପତ୍ର, କେଇଖଣ୍ଡ ଭଙ୍ଗାପାନ ଖିଲ, ଆଉ ମସଲା ମସଲି । ଏସବୁ ଉପରେ ଆହୁରି ଗୁରୁତ୍ୱପୂର୍ଣ୍ଣ ହେଲା– ଆମେରିକାରେ ରହୁଥିବା ଆମର ତିନିତିନୋଟି ନାତି ଆଉ ଝିଅ ଜୋଇଁଙ୍କ ପାଇଁ ବେଶ୍ କିଛି ପରିମାଣର ଘର ତିଆରି ପିଠା ଓ ମିକ୍ସଚର ଆଉ ମିଠାର ପ୍ୟାକେଟ୍ କେତେଟା ! କଷ୍ଟମସ୍ ନିୟମାନୁସାରେ ଏସବୁ ଜିନିଷ ପ୍ଲେନ୍‌ରେ ଆଣିବା ନିଷେଧ । ତଥାପି ଆମେ ଗୋଟାଏ ରିସ୍କ ନେଉଥାଉ ଜାଣିଶୁଣି, କାରଣ ଏତେ ବର୍ଷ ପରେ ପୁଣିଥରେ ଆମେରିକା ଯାଉଥାଉ ଯେତେବେଳେ ଖାଲି ହାତରେ କେମିତି ବା ଯାଇଥାନ୍ତୁ ପିଲାମାନଙ୍କୁ ଦେଖିବାକୁ ? କିନ୍ତୁ ଆଶ୍ଚର୍ଯ୍ୟ କଥା– ରେଡ୍‌ଚାନେଲ୍‌ରେ ଯାବତ୍

କଠୋର ନିର୍ଦ୍ଦୟ ଧରଣର କଷ୍ଟମସ୍ ଚେକିଂ ସତ୍ତ୍ୱେ ଦଣ୍ଡା-ମାର୍କା ଆମେରିକାନ୍ କଷ୍ଟମସ୍ ଚେକିଂବାଲାଏ କାହିଁକି କେଜାଣି ସେ ସବୁ ଜିନିଷକୁ ଦେଖି ମଧ୍ୟ ନଦେଖିଲା ଭଳି ବାକ୍ସ ଚାରିଟାର ଜିନିଷଗୁଡାକୁ ଖାଲି ଖେଳେଇ ମେଲେଇ ଫିଙ୍ଗା ଫୋପଡା କରିବା ଛଡା ଆଉ କିଛି କଲେନାହିଁ ଭଗବାନଙ୍କ କୃପାରୁ ।

କଷ୍ଟମସ୍ ଚେକିଂରୁ ପଦାକୁ ବାହାରିବା ପରେ ଆମେ ଖୋଜିବସିଲୁ ଜୋଇଁ ମହେଶଙ୍କୁ । ସେ ଆମକୁ ପାଛୋଟି ନବାକୁ ଆସିବାର ଥାଏ । ତାଙ୍କ ଘର କନେକ୍ଟିକଟ୍‌ର ଗ୍ଲାସ୍‌ଟନ୍‌ବରି ସହରରୁ ନ୍ୟୁୟର୍କ– ପ୍ରାୟ ଦେଢଶହ ମାଇଲ୍ ଡ୍ରାଇଭ୍ । କେଜାଣି କେତେବେଳେ ଧରି ସେ ଆମକୁ ଅପେକ୍ଷା କରି ବସିଥିବେ କୋଉଠି କେଜାଣି ! କଷ୍ଟମସ୍ କ୍ଲିୟରାନ୍ସରେ ନିଶ୍ଚୟ ଘଣ୍ଟାକରୁ ବେଶୀ ସମୟ ଡେରି ହେଇଗଲାଣି । ଆମର ଆଶଙ୍କାଥାଏ କାଳେ ସେ ଆମକୁ ଏତେବେଳ ଧରି ଖୋଜିଖୋଜି ନପାଇବାରୁ ଯଦି ଭାବିଥିବେ ଆମେ ପ୍ଲେନ୍ ମିସ୍ କରିଚୁ, ତେବେ କି ଅବସ୍ଥା ହବ ଆମର ଏଠି ରାତିରେ ଏ ନ୍ୟୁୟର୍କ ଭଳି ଅଜଣା ଆମେରିକାନ୍ ସହରରେ କିଏ ଜାଣେ ! ନ୍ୟୁୟର୍କ ଆମେରିକାର ଏକ ବିପଜ୍ଜନକ ସହର ବୋଲି ଅନେକ ବୃତ୍ତାନ୍ତ ଶୁଣିଥାଉ ଭୁକ୍ତଭୋଗିଙ୍କ ମୁହଁରୁ ।

ମନରେ ଅନେକ ଦୁଃଶ୍ଚିନ୍ତା ନେଇ ନିରୁପମା ଓ ମୁଁ ଶେଷରେ ବାହାରିଲୁ ଏୟାର୍‌ପୋର୍ଟ ବାହାରକୁ । ବାହାରେ ସ୍ୱଚ୍ଛ ଦିବାଲୋକ ଦେଖି ମନରେ ସାହସ ଆସିଲା । ଜୁନ୍‌ମାସରେ ଏ ଦେଶରେ ସୂର୍ଯ୍ୟାସ୍ତ ହୁଏ ବହୁତ ଡେରିରେ । ବାହାରେ ଆଖି ବୁଲେଇ ବୁଲେଇ ମହେଶଙ୍କୁ ଖୋଜି ବୁଲୁ ବୁଲୁ ଶେଷରେ ତାଙ୍କୁ ଠାଏ ଭେଟିଲୁ । ସେ ବହୁ ବେଳୁ ଆସି ଅପେକ୍ଷା କରୁଥାନ୍ତି ଆମକୁ ଓ ଆମେ ଏୟାରପୋର୍ଟରୁ କାହିଁକି ବାହାରିପାରୁନାହୁଁ ସେଇ ଆଶଙ୍କାରେ ବିଭିନ୍ନ ସ୍ଥାନକୁ ଟେଲିଫୋନ୍ କରୁଥାନ୍ତି ଆମ ଫ୍ଲାଇଟ୍ ନମ୍ବର ପ୍ଲେନ୍‌ର ପ୍ୟାସେଞ୍ଜର୍ ତାଲିକାରେ ଆମ ନାଁ ଖୋଜାଖୋଜି ଉଦ୍ଦେଶ୍ୟରେ । ଯାହାହେଉ ଶେଷରେ ଆମକୁ ଦେଖି ସେ ଖୁବ୍ ଆଶ୍ୱସ୍ତ ହେଲେ– ଆମେବି ଆଶଙ୍କା ମୁକ୍ତ ହେଲୁ । ଏହାପରେ ମହେଶଙ୍କ କାର୍‌ରେ ଆମର ଲଗେଜ୍ ଲୋଡିଂ କରାଗଲା ଓ ପରେ ଘରମୁହାଁ ଡ୍ରାଇଭ୍ ।

ସନ୍ଧ୍ୟା ପୂର୍ବରୁ ଆମେ ପହଞ୍ଚିଗଲୁ ଆମର ପୂର୍ବପରିଚିତ ସେଇ ନିପ୍‌ଜିକ୍ ରୋଡ୍‌ର ୮୦୫ ନମ୍ବର ଘର ଠିକଣାରେ । ଚାରିଆଡକୁ ଆଖିବୁଲେଇ ଦେଖିନେଲି ଚାରିବର୍ଷ ତଳେ ୧୯୯୩ରେ ଦେଖିଯାଇଥିବା ଗଛଲତାମାନେ ଯେ ଯେମିତି ଥିଲେ ଠିକ୍ ସେମିତି ରହିଛନ୍ତି, ଆଉ ପରିବେଶରେ ସେମିତି କୌଣସି ଆଖିଦୃଷ୍ଟିଆ ପରିବର୍ତ୍ତନ ଘଟିନାହିଁ । ଘରର ହତାରେ ସେବର୍ଷ ଦେଖିଯାଇଥିବା ଚମ୍ପା ଓ ମନ୍ଦାର ପ୍ରଭୃତି ଗଛଗୁଡିକ ଠିକ୍ ସେମିତି ଅଛନ୍ତି ଓ ସେବର୍ଷ ଗ୍ରୀଷ୍ମଋତୁରେ ସେଥିରେ ଫୁଟିଥିବା ଫୁଲମାନେ ଏବର୍ଷ ଗ୍ରୀଷ୍ମଋତୁରେ ବି ଫୁଟିଚନ୍ତି । ଘର ସାମ୍ନା ଓକ୍ ମ୍ୟାପଲ୍ ପାଇନ୍ ଜଙ୍ଗଲଟା ବି ସେମିତି ଅଛି ।

ଗାଡି ଗ୍ୟାରେଜରେ ରହିବା ପରେ ଆମେ ଓହ୍ଲେଇଲୁ । ସୁଲୁମାର ହସକୁରା ଡାକ ଶୁଭିଲା, "ନନା ମମି ଆସିଗଲ !''

ଚାରିଆଡକୁ ଆଖି ବୁଲେଇ ଖୋଜିଲି– ଅମୃତ ଆଉ ମନୀଶ କାହାନ୍ତି ? ସେମାନଙ୍କୁ ନଦେଖି ଝିଅକୁ ପଚାରିଲି । ଶୁଣିଲି ଦୁହେଁ ନିଣ୍ଟେଣ୍ଡୋ ଖେଳରେ ମାତିଚନ୍ତି । ନିଣ୍ଟେଣ୍ଡୋ ପିଲାଙ୍କ ପାଇଁ ଉଦ୍ଭାବିତ ଏକ ଜାପାନୀ ଇଲେକ୍‌ଟ୍ରୋନିକ୍ ଖେଳ ଯାହା ସେତେବେଳେ ଆମେରିକାର ପିଲାମାନଙ୍କୁ ବାଇକରିଥାଏ । ସେମାନେ ଥରେ ସେ ଖେଳର ପାଲରେ ପଡିଗଲେ ଆଉ ନଛାଡନ୍ତି । ଆମର ନାତି ଟୋକା ଦି'ଟା ପଡିଚନ୍ତି ସେଇ ନିଶାରେ ।

ସୁଲୁର ବାରବାର ତଲବ ପାଇ ପିଲା ଦୁଇଟିଙ୍କ ଦର୍ଶନ ମିଳିଲା ଶେଷରେ । କାହିଁକି କେଜାଣି ସେ ଦୁହେଁ ଆମକୁ ଟିକେ ଟିକେ ବାରୁଥାନ୍ତି । ତାର କାରଣ ମଧ୍ୟ ଥିଲା । ଚାରି ଚାରି ବର୍ଷ କୌଣସି ସିଧାସଳଖ ସଂପର୍କ ନଥିବା ଲୋକଙ୍କୁ ଅବା ସେମାନେ କେମିତି ଭରସା କରି ପାଖକୁ ଆସନ୍ତେ ? କିନ୍ତୁ ଖୁବ୍ ଶୀଘ୍ର ବରଫ ତରଳିଗଲା । ରକ୍ତର ଆକର୍ଷଣ ପୁଣି ଉଷୁମ କରିଦେଲା ଆମର ଦୈହିକ ପାର୍ଥକ୍ୟକୁ । ପ୍ରଥମେ ମନୀଶ ଆସି ପଶିଗଲା ତା' ଆଈର ଆଲିଙ୍ଗନର ଦୃଢ-ବନ୍ଧନ ଭିତରେ– ପରେ ପରେ ଅମୃତ । ଆମେ ପରସ୍ପରକୁ ଭେଟୁଥିଲୁ ସେତେବେଳେ– ଦୀର୍ଘ ଚାରିବର୍ଷ ପରେ ।

ଏ ଭିତରେ ଛୋଟଛୋଟ ପିଲା ଦୁଇଟି ବେଶ୍ ବଡ ବଡ ଓ ଆଖିଦୃଷିଆ ହେଇ-ଯାଇଥାନ୍ତି । ବଡ ନାତି ଅମୃତ ସତେବେଳକୁ ବାର ତେରବର୍ଷର, ଆଉ ମନୀଶ ଛ'ସାତ । ଲକ୍ଷ୍ୟକଲି ସେ ଦୁହେଁ ମଧ୍ୟ ଏଇ ଚାରିବର୍ଷ ଭିତରେ ଆମେରିକାର ପାଣିପବନରେ ବନି-ଗଲେଣି ବେଶ୍ କିଛି ଆମେରିକାନ୍ ଆଉ ଅନେକଟା India shy ! ଇଣ୍ଡିଆ ବା ଭାରତର ନାଁ ପଡିଲେ ଆମେରିକାରେ ଜନ୍ମିତ ବା ପ୍ରତିପାଳିତ ଆମ ପ୍ରବାସୀଭାରତୀୟ ଅର୍ଥାତ୍ ଏନ.ଆର.ଆଇ ପରିବାରର ଦ୍ୱିତୀୟ ପୀଢିର ସନ୍ତାନମାନଙ୍କ ଲାଜରାପଣିଆ ଓ ସେମାନଙ୍କ ଢଙ୍ଗଢାଙ୍ଗ ମତେ ବେଶ୍ ଦିଶିଯାଇଥିଲା ଗଲାଥର ଆମେରିକା ଭ୍ରମଣ ସମୟରୁ । ପୁଣି ଖୁବ୍ ଅଳ୍ପଦିନ ତଳେ ଏଠିକା ପ୍ରବାସୀ ଓଡିଆ ମହଲରେ ଘଟିଯାଇଥାଏ ଏପରି ଏକ ଦୁଃଖଦ ଘଟଣା ଯାହାକୁ ନେଇ ଆମଭଳି ଭାରତୀୟ ବାପ ମା'ଙ୍କ ଦୁଃଶ୍ଚିନ୍ତା ଖୁବ୍ ବଢିଯାଇଥାଏ । ସେଥିପାଇଁ ଆମେ ଆମ ନାତି ତିନୋଟିଙ୍କ ଭବିଷ୍ୟତ୍ ବିଷୟରେ ଯଥେଷ୍ଟ ଆଶଙ୍କିତ ହେଉଥାଉ ବି ।

ଘଟଣାଟା ହେଲା– ଅଳ୍ପ ଦିନ ତଳେ ଏଠାକାର ଜଣେ ପ୍ରତିଷ୍ଠିତ ଏନ୍.ଆର୍.ଆଇ ଓଡିଆ ଡାକ୍ତର ତାଙ୍କର ଆମେରିକାରେ ଜନ୍ମିତ କନ୍ୟାର ବିବାହକୁ ନେଇ ପଡିଯାଇଥିଲେ ଏକ ଗଭୀର ସମସ୍ୟାରେ । କନ୍ୟାଟି ଡାକ୍ତରି ପରୀକ୍ଷାରେ କୃତିତ୍ୱର ସହିତ ପାଶ୍ କରି-ସାରିଥାଏ । ତାର ବିବାହ ବୟସ ହୋଇଯାଇଥିଲେ ବି ଆମେରିକାରେ ତା' ମନଲାଖି

ବରପାତ୍ରଟିଏ ମିଳୁନଥାଏ । କନ୍ୟାର ମନଲାଖି ଯୋଗ୍ୟ ବରପାତ୍ର ନା ଆମେରିକାନ୍ ନା ଭାରତୀୟ କୌଣସି ମହଲରେ ନମିଳିବା ହେତୁ କନ୍ୟାଟି ଶେଷରେ ତା' ବାପା ମା'ଙ୍କୁ କହିଲା– ମୋ ପାଇଁ ଇଣ୍ଡିଆରେ ବରପାତ୍ର ଖୋଜ– ମୁଁ ଏଠାକା ଆମେରିକାନ୍ ଗୋରା କି କଳା ପିଲାଙ୍କୁ ପସନ୍ଦ କରିପାରୁନାହିଁ । ସେମାନଙ୍କୁ ବାହାହେଇ ମୁଁ ସୁଖରେ ରହିପାରିବି ନାଇଁ ।

ଝିଅର ମନକଥା ଜାଣିଲାପରେ ଚାଲିଲା ବରପାତ୍ର ଅନୁସନ୍ଧାନ ଭାରତରେ । ମା' ବାପା ଘନଘନ ଭାରତ ଆସିଲେ, ଉପଯୁକ୍ତ ପାତ୍ର ଅନ୍ୱେଷଣରେ ବିଭିନ୍ନ ସ୍ଥାନ ବୁଲାବୁଲି କରି ଅନେକ ଗୁଡିଏ ସଂଭାବିତ ପ୍ରସ୍ତାବ ପାଇଲେ । ସବୁ ପ୍ରସ୍ତାବ ଭିତରୁ ଶେଷରେ ଗୋଟିଏ ପାତ୍ର ପସନ୍ଦକୁ ଆସିଲା । ପିଲାଟି ଉଚ୍ଚକୁଳ ସଂଭୂତ, ସୁନ୍ଦର ଚେହେରାର ଆଉ ଓଡିଶାର ଏକ ପ୍ରତିଷ୍ଠିତ ମେଡିକାଲ୍ କଲେଜରୁ ସଦ୍ୟ ପାସ୍‌କରିଥିବା ଗୋଲ୍ଡମେଡାଲିଷ୍ଟ୍ ଏମ୍.ବି.ବି.ଏସ୍. ଡିଗ୍ରୀ ପ୍ରାପ୍ତ ଯୁବକ । ଏ ଖବର ଝିଅକୁ ଜଣାଇଦେବା ପରେ ପୁଅଝିଅଙ୍କ ଦେଖାସାକ୍ଷାତ୍ ମିଳାମିଶା ପାଇଁ ସମସ୍ତ ବ୍ୟବସ୍ଥା କରିଦିଆଗଲା । ଝିଅ ଏକାଧିକବାର ଓଡିଶା ଆସିଲା ଆଉ ପୁଅ ସହିତ ମିଳାମିଶା କଲା ଓ ସେମାନଙ୍କର ସଂପର୍କ କ୍ରମଶଃ ଘନିଷ୍ଠତର ହେବାକୁ ଲାଗିଲା । ବେଶ୍ କିଛି ସମୟ ବ୍ୟବଧାନରେ ଆସିଲା ବିବାହ ପ୍ରସ୍ତାବ ପୁଅ ପକ୍ଷରୁ । ବିବାହ ଦିନ ତାରିଖ ତିଥି ଲଗ୍ନ ଇତ୍ୟାଦି ଯଥାରୀତି ସ୍ଥିରକରାଗଲା ଏବଂ ଶେଷରେ ପୁରୀର ଶ୍ରୀଜଗନ୍ନାଥ ଧାମରେ ବୈଦିକରୀତିରେ ବହୁଆଡମ୍ବର ସହକାରେ ଶୁଭବିବାହ କାର୍ଯ୍ୟ ସଂପନ୍ନ ହେଲା ।

କିନ୍ତୁ ଦୁର୍ଭାଗ୍ୟର କଥା ସେ ଶୁଭ ପରିଣୟର ଆୟୁ ଥିଲା ମାତ୍ର ଚାରିଟି ଦିନ । ବିବାହର ଚତୁର୍ଥ ଦିନ ଅର୍ଥାତ୍ ଚଉଠୀ ରାତି ନପାହୁଣୁ ହଠାତ୍ କନ୍ୟାର ଟେଲିଫୋନ୍ ଶୁଣିବାକୁ ପାଇଲେ ବାପା ମା'– Dad and Mom listen– this marriage has failed– I have decided for divorce !

ଏ ଘଟଣା ଘଟିଯାଇଥିଲା ଆମର ଏଥରର ଆମେରିକା ଭ୍ରମଣର ଅବ୍ୟବହିତ ପୂର୍ବରୁ । ଏ ସଂବାଦ ଆମେରିକା ଏନ୍.ଆର୍.ଆଇ ମହଲରେ ଚହଳ ପକେଇ ଦେଇଥାଏ । ଯୋଉ ପ୍ରବାସୀ ଓଡିଆମାନେ ଆମେରିକାରେ ଦୀର୍ଘବର୍ଷ ରହିସାରିଥାନ୍ତି ଆଉ ସେମାନଙ୍କର ପୁଅଝିଅ ବିବାହ ଉପଯୋଗୀ ବୟସର ହୋଇସାରିଥାନ୍ତି ସେମାନଙ୍କ ପାଇଁ ଏ ଘଟଣାଟା ବିଶେଷ ଚିନ୍ତାର କାରଣ ହେବା ସ୍ୱାଭାବିକ । କେବଳ ସେମାନେ ନୁହନ୍ତି, ଭାରତରେ ରହୁଥିବା ସେମାନଙ୍କ ପରିବାରର ଲୋକଙ୍କ ପାଇଁ ମଧ୍ୟ ସେ ଘଟଣା ଏକ ବିଶେଷ ଦୁଶ୍ଚିନ୍ତାର କାରଣ ହୋଇ ଉଭାହୋଇଥାଏ ।

ସେ ଦୁର୍ଘଟଣା ଆମକୁ ବି ଚିନ୍ତାରେ ପକାଇଦେଇଥାଏ । ଆମର ତିନିଟି ନାତି ସେତେବେଳେ ବଢୁଥାନ୍ତି ଆମେରିକାରେ । ସେମାନଙ୍କ ଭବିଷ୍ୟତ ଚିନ୍ତା ଆମ ମନକୁ ଆକ୍ରାନ୍ତ କରିବା ସ୍ୱାଭାବିକ । ଉପରୋକ୍ତ ଦୁର୍ଘଟଣାର ବିଶେଷ ତର୍ଜମାରୁ ଜଣାପଡିଥାଏ– ଆମେରିକାରେ ବର୍ତ୍ତମାନ ବସବାସ କରୁଥିବା ପ୍ରବାସୀ ଭାରତୀୟ ତଥା ଓଡିଆମାନଙ୍କ

ଦ୍ୱିତୀୟ ପୀଢ଼ିର ମୁଖ୍ୟ ସମସ୍ୟାଟି ଥିଲା– Cultural alienation– ଅର୍ଥାତ୍ ଦ୍ୱିତୀୟ-ପୀଢ଼ିର ଭାରତୀୟ ଏନ୍.ଆର୍.ଆଇ ପିଲାମାନେ ସେମାନଙ୍କର ମୂଳ ଭାରତୀୟ ସଂସ୍କୃତି ତଥା ସାମାଜିକ ମୂଲ୍ୟବୋଧ ଠାରୁ ପୂରାପୂରି ନହେଲେ ବି ବହୁ ପରିମାଣରେ ବିଛିନ୍ନ ହୋଇ ଯିବାକୁ ବାଧ୍ୟ ହୁଅନ୍ତି । ସେମାନଙ୍କର ଧର୍ମବିଶ୍ୱାସ ତଥା ନୈତିକ ମୂଲ୍ୟବୋଧ ବହୁମାତ୍ରାରେ ପରିବର୍ତ୍ତିତ ହୋଇଯାଇଥାଏ ସେମାନଙ୍କର ପାଶ୍ଚାତ୍ୟ ଶିକ୍ଷା ଓ ସାମାଜିକ ଚଳଣିର ପ୍ରଭାବ ଯୋଗୁ । ସେଭଳି ପରିସ୍ଥିତିରେ ଦ୍ୱିତୀୟପୀଢ଼ିର ପ୍ରବାସୀ ଭାରତୀୟ ବଂଶୋଦ୍ଭବମାନଙ୍କୁ ଆଉ ଭାରତୀୟ ପରମ୍ପରାରେ ବିଚାରକରି ବାନ୍ଧିରଖିବା ଆଦୌ ସଂଭବ ନୁହେଁ । ସେ ଏକ ବଡ ଦୁଶ୍ଚିନ୍ତାର କାରଣ ପାଲଟିଥାଏ ସେମାନଙ୍କର ବାପ ମା' ସମେତ ଆମଭଳି ଭାରତରେ ରହୁଥିବା ଅଜା ଆଈ ଜେଜେବାପା ଜେଜେମା ସମସ୍ତଙ୍କର ।

ଏ ସବୁ କଥାକୁ ନେଇ ମୁଁ ପରବର୍ତ୍ତୀ ସମୟରେ ଗୋଟିଏ ଭ୍ରମଣ ଉପନ୍ୟାସ ଲେଖିଥିଲି । ସେ ଉପନ୍ୟାସର ନାମ "ତୃଷ୍ଣା– ଏକ ଅନାବିଷ୍କୃତ ଆମେରିକା'' । ଏ ବହିଟି ୧୯୯୯ରେ କଟକର ପ୍ରକାଶକ ଗ୍ରନ୍ଥମନ୍ଦିରଙ୍କ ଦ୍ୱାରା ପ୍ରକାଶିତ ହୋଇଛି । ସେଥିରେ ଆମର ଏଥରର– ୧୯୯୭ର– ଆମେରିକା ଭ୍ରମଣର ଏକ ଡାଏରି ବା ଟିକିନିଖି ବର୍ଣ୍ଣନା ରହିଚି । ଏ ବହିଟି ବିଶେଷ ଜନାଦୃତି ଲାଭକରିସାରିଚି । ତେଣୁ ଏଠାରେ ବର୍ତ୍ତମାନ ସେ ସବୁ ବିଷୟରେ ଆଉ ଅଧିକ ଉଲ୍ଲେଖ ନକରି ମୁଁ କେବଳ ଏଥରର ଆମେରିକା ଭ୍ରମଣର କେତେକ ବିଶେଷ ବିଷୟର ତର୍ଜମା କରିବି । ସେଇସବୁ ବିଶେଷ ବିଷୟ ଭିତରୁ କେତେକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟର ପୁନଃ-ତର୍ଜମା ଏ ବହିରେ ଏକାନ୍ତ ଆବଶ୍ୟକ ମନେକରୁଚି ।

## ୱାଡସ୍‌ୱର୍ଥ ଆର୍ଟ-ମ୍ୟୁଜିୟମ୍ ପରିଦର୍ଶନ–

୧୪ ଜୁଲାଇ ୧୯୯୭– ସକାଳେ ବ୍ରେକ୍‌ଫାଷ୍ଟ ପରେ ପରେ ସୁଲୁମା କହିଲା, "ନନା, ମମି, ଚାଲ ଆଜି ମୁଁ ତୁମକୁ ଏଠାକାର ଗୋଟାଏ ବଡ ଆର୍ଟ ମ୍ୟୁଜିୟମ୍ ବୁଲେଇ ଦେଖେଇବି । ଆମେ ସାଙ୍ଗେ ସାଙ୍ଗେ ପ୍ରସ୍ତୁତ ହେଇଗଲୁ । ସୁଲୁ ତା' କାର୍ ବାହାରକଲା । ଆମେ ତିନିହେଁ ବାହାରିଲୁ ହାର୍ଟଫୋର୍ଡର ବିଖ୍ୟାତ କଳା ସଂଗ୍ରହାଳୟ ୱାଡସ୍‌ୱର୍ଥ ଆର୍ଟସ୍ ମ୍ୟୁଜିୟମ୍ ଅଭିମୁଖେ ।

ଗ୍ଲାସ୍‌ଟନ୍‌ବରି ଛାଡି ଆମେ ଚାଲିଲୁ ହାର୍ଟଫୋର୍ଡ ସହର ରାସ୍ତାରେ । ପ୍ରାୟ ଘଣ୍ଟାଏ ପରେ ପଶିଲୁ ହାର୍ଟଫୋର୍ଡ ସହରାଞ୍ଚଳରେ । ଏ ସହର ସହିତ ମୋର ପୂର୍ବ ପରିଚୟ ଥାଏ । ଗତଥର ୧୯୯୩ରେ ଆମେ ବହୁବାର ଏ ରାସ୍ତାରେ ଡ୍ରାଇଭ୍‌କରି ହାର୍ଟଫୋର୍ଡ ସହରକୁ ଆସୁଥିଲୁ । ଏ ସହରର ବଡ ଆକର୍ଷଣୀୟ ସ୍ଥାନଟା ଥିଲା ମୋ' ପାଇଁ ଏଠାକା ଇଣ୍ଡିୟାନ୍ ଷ୍ଟୋର୍ । ସେଠି ବହୁ ଭାରତୀୟ ଲୋକଙ୍କ ସଙ୍ଗେ ଦେଖାସାକ୍ଷାତ୍ ହୁଏ ଓ ଭାରତର ହାଲି ରାଜନୈତିକ ଘଟଣା ସଂପର୍କରେ ନୂଆ ନୂଆ ଖବର ମିଳେ । ତେବେ ମୋ' ପାଇଁ ଏକ

ଅଲଗା ଆକର୍ଷଣ ଥିଲା ଏ ଷ୍ଟୋର୍‌ର– ଏଠି ଗୋଟା ପାନ, ଗୁଆ ଓ ଗୋପାଳ ଜର୍ଦ୍ଦା ଇତ୍ୟାଦି ମିଳେ । ସେତେବେଳେ ମୁଁ ଭାରି ପାନୁଆ ଥିଲି– ଅଛି ବି ।

ପ୍ରାୟ ଘଣ୍ଟାଏ ଡ୍ରାଇଭ୍ ପରେ ଗୋଟାଏ ଜାଗାରେ କାର୍ ଅଟକେଇଲା ସୁଲୁମା ଆଉ କହିଲା, "ନନା ! ଆମେ ପହଞ୍ଚିଗଲୁ । ଏ ବିଲଡିଂଟା ହେଲା ୱାଡସ୍‌ୱର୍ଥ ଆଥେନିୟମ୍; ମାନେ ଏ ସହରର ସବୁଠୁ ବଡ ଆର୍ଟ-ମ୍ୟୁଜିୟମ୍ । ସମସ୍ତେ ଓହ୍ଲାଇପଡ । ମୁଁ କାର୍ ପାର୍କିଂ କରି ଆସୁଚି ।''

ଆମେମାନେ କାର୍‌ରୁ ଓହ୍ଲାଇଲୁ । ଆଖି ବୁଲେଇ ଦେଖିଲି– ଏକ ମସ୍ତବଡ ଗଛଲତା ଭରା ହତା ଭିତରେ ଗୋଟାଏ ଲମ୍ବା ଚଉଡା ବିଲଡିଂ– ବେଶ୍ ପୁରୁଣା କୋଠା ଭଳି ଦିଶୁଥିବା ଏକ ଦୋ'ମହଲା ଧଳାରଙ୍ଗର ବିଲ୍ଡିଂ । ତା' ଉପରେ ବଡବଡ ଅକ୍ଷରର ସାଇନ୍‌ବୋର୍ଡ– Wadsworth Athenium 1860 ।

ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା ନାଁଟାକୁ ଦେଖି । ଏ କ'ଣ ସେଇ ପ୍ରସିଦ୍ଧ ଇଂରେଜୀ କବି ୱର୍ଡସ୍‌ୱର୍ଥ– ଦ୍ୱନ୍ଦ୍ୱରେ ପଡିଲି । ପୁଣି ନାଁ ପାଖକୁ ସେ 'ଆଥେନିୟମ୍' ବା ଆର୍ଟ ମ୍ୟୁଜିୟମ୍‌ର ପ୍ରତିଷ୍ଠା ବର୍ଷଟି ଲେଖାଥିଲା– ୧୮୬୦ । ସଂଖ୍ୟାଟାକୁ ଦେଖି ଆହୁରି ଆଶ୍ଚର୍ଯ୍ୟ ହେଲି । ୧୮୬୦ ! ମନେପଡିଲା ଓଡିଶାରେ ଯୋଉ ସମୟରେ ୧୮୬୬ରେ ନଅଙ୍କ ଦୁର୍ଭିକ୍ଷ ପଡିଥିଲା ଆଉ ଲୋକେ ପୋକମାଛି ପରି ମରୁଥିଲେ ସେଇ ସମୟରେ ପ୍ରତିଷ୍ଠା ପାଇଚି ଏ କଳା-ମ୍ୟୁଜିୟମ୍ ଏଠି ଆମେରିକାରେ । ତେଣେ ଇଂରେଜୀ ସାମ୍ରାଜ୍ୟ ଅଧୀନରେ ଯେତେବେଳେ ଓଡିଶାରେ ଇଂରେଜୀଙ୍କ କୁଶାସନକୁ ନେଇ ଚାଲିଥାଏ ହାହାକାର, ସେଇ ସମୟରେ ଏଣେ ପୃଥିବୀର ଏପଟେ ସେଇ ଇଂରେଜୀମାନେ ତାଙ୍କର ଅନ୍ୟତମ ସାମ୍ରାଜ୍ୟ ଆମେରିକାରେ ନିର୍ମାଣ କରୁଥାନ୍ତି ଗୋଟାଏ ଚାରୁକଳା ମ୍ୟୁଜିୟମ୍ ! ପୁଣି ଏ ସଂଗ୍ରହାଳୟର ନାମ ଦିଆ-ହେଇଚି ୱର୍ଡସ୍‌ୱର୍ଥ ? ଏ କ'ଣ ସେଇ ବିଖ୍ୟାତ ଇଂରେଜୀ କବି ୱର୍ଡସ୍‌ୱର୍ଥ ନା ଅନ୍ୟ କିଏ ?

ଗାଡି ପାର୍କ କରି ସୁଲୁମା ଫେରିବା ଯାଏ ମୁଁ ସେଇ ଦ୍ୱନ୍ଦ୍ୱରେ ଆଉଟୁପାଉଟୁ ହେଲି । ସୁଲୁ ଆମ ତିନିଜଣଙ୍କ ପାଇଁ ପ୍ରବେଶିକା ଟିକେଟ୍ କିଣି ଆଣିଥାଏ । ଆମେ ଚାଲିଲୁ ମ୍ୟୁଜିୟମ୍ ଭିତରକୁ । ଟିକେଟ୍ ସାଙ୍ଗରେ ନେଇ ମ୍ୟୁଜିୟମ୍ ବୁଲି ଦେଖିବା ପାଇଁ ଗୋଟାଏ ଗାଇଡ୍ ବହି ବି ସେ ଆଣିଥାଏ । ସେଇ ବହି ଅନୁସାରେ ଆମେ ଚାଲିଲୁ "ଆଫ୍ରୋ-ଆମେରିକାନ୍ ହିଷ୍ଟ୍ରି" ସେକ୍‌ସନ୍ ଦିଗରେ । ମନରେ ପୁଣି ଏକ ପ୍ରଶ୍ନ ଉଠୁଥାଏ– ଆମେରିକାର କନେକ୍ଟିକଟ୍ ଭଳି ଏକ ଅଗ୍ରଗାମୀ ରାଜ୍ୟ, ପୁଣି ଯାହାର ଅଫିସିଆଲ୍ ନାମ ହେଲା କନ୍‌ଷ୍ଟିଟ୍ୟୁସନ୍ ଷ୍ଟେଟ୍– ସେଭଳି ଗୋଟାଏ ଶ୍ୱେତାଙ୍ଗ ପ୍ରଧାନ ରାଜ୍ୟରେ ୧୮୬୦ ମସିହାରେ ପ୍ରତିଷ୍ଠିତ ଏକ ଚାରୁକଳା ସଂଗ୍ରହାଳୟର ପ୍ରଥମ ପ୍ରବେଶ ଦ୍ୱାରଟା କାହିଁକି ଖୋଲିଚି ? ସେମାନଙ୍କ ଦେଶର ଇତିହାସର ସବୁଠୁ ଘୃଣ୍ୟ ଅଧ୍ୟାୟ ଆଫ୍ରିକାନ୍ କ୍ରୀତଦାସମାନଙ୍କ ଇତିହାସ ଉପରେ ପୁନର୍ବାର ଦର୍ଶକର ଦୃଷ୍ଟିପାତକୁ ଏମାନେ କାହିଁକି ଏମିତି ଗୁରୁତ୍ୱ

ଦେବାକୁ ପ୍ରଶ୍ରୟ ଦେଉଚନ୍ତି ଏ ମ୍ୟୁଜିୟମ୍‌ରେ ? କଥାଟା ମତେ ମୂଳରୁ ପକେଇଦେଲା ସନ୍ଦେହରେ । ଗାଇଡ୍ ବହି ଖୋଲି ଦେଖିଲି– ସେ ସଂପର୍କରେ କିଛି ସଫେଇ ଦେଖିବାକୁ ପାଇଲି ନାହିଁ । କେବଳ ନଜରରେ ପଡିଲା ଠାଏ ଲେଖାହେଇଚି– "This is the new annexation. This section is added up very recently. It is on Afro-American History over the past two centuries."

ତା ମାନେ ଏମାନେ ନିଶ୍ଚୟ ଜାଣିଶୁଣି ଏ ବିଭାଗଟାକୁ ନୂଆକରି ଖୋଲିଥାନ୍ତି ଯୋଉଥିରେ ହୁଏତ ଦେଖିବାକୁ ମିଳିବ ଦୁଇଶହ ବର୍ଷ ତଳର ଏ ଦେଶର କଳାଙ୍କ ନିଗ୍ରୋ-କ୍ରୀତଦାସଙ୍କ ନିର୍ଯ୍ୟାତନାର ଇତିହାସ ଯାହା ସଂପର୍କରେ କିଛି କିଛି ଧାରଣା ଆମେ ଭାରତୀୟମାନଙ୍କର ଥାଏ ଆମ ପିଲାଦିନର ପଠିତ "ଟମ୍‌କକାଙ୍କ କୁଟୀର'' ଉପନ୍ୟାସ ବା ଏବର ଲେଖକ ଆଲେକ୍ସ ହ୍ୟାଲିଙ୍କ "ଦ' ରୁଟ୍'' ଭଳି ବିଖ୍ୟାତ ସାହିତ୍ୟ ପୁସ୍ତକରେ ଆମେ ପଢିଥିବା ଆମେରିକାର କ୍ରୀତଦାସମାନଙ୍କର କରୁଣ ଜୀବନ କାହଣୀର କିଛି ତାତ୍ପର୍ଯ୍ୟ-ପୂର୍ଣ୍ଣ ଚିତ୍ର ! କିନ୍ତୁ କାହିଁକି ? ନିଜ ଗୁମର ନିଜେ ଫିଟେଇବାକୁ ଏ ଆମେରିକାନ୍ ଗୋରା ଲୋକେ ବର୍ତ୍ତମାନ କାହିଁକି ଏତେ ତତ୍ପର ? କ'ଣ ମତଲବ ରହିଚି ଯା' ପଛରେ ? ଏଇ ସନ୍ଦେହ ପ୍ରଗାଢରୁ ପ୍ରଗାଢତର ହେବାକୁ ଲାଗିଲା । ଉତ୍କଣ୍ଠା ଚାପିନପାରି ମୁଁ ତରବର ହେଇ ଗ୍ୟାଲେରି ଭିତରକୁ ଚାଲିଲି ।

ସେ ଏକ ବିଶାଳ ଗ୍ୟାଲେରି ଯାହା ଭିତରେ ଶତାଧିକ ପେଣ୍ଟିଂ ଡିସ୍‌ପ୍ଲେ ହୋଇଥାଏ । ସେସବୁର ବିଷୟବସ୍ତୁ ହେଲା ସେଇ ଗୋଟିଏ– ଆମେରିକାରେ ଗୋରା ଲୋକମାନଙ୍କର ଅତ୍ୟାଚାର କଳା ଲୋକଙ୍କ ଉପରେ ! ଗୋଟାକ ପରେ ଗୋଟାଏ– ସେଇ ଘଟଣା ଆଧାରିତ ପେଣ୍ଟିଂ– ଆମେରିକାରେ କ୍ରୀତଦାସ ମାନଙ୍କ କରୁଣ ନିର୍ଯ୍ୟାତନାର ଇତିହାସ । ସବୁଠୁ ବିସ୍ମୟକର– ସେ ପେଣ୍ଟିଂ ଭିତରେ ଅଧିକାଂଶ ଥାଏ କଳା ଲୋକଙ୍କ ନିଜ ହାତ ଅଙ୍କା ଛବି । ତେଣୁ ପେଣ୍ଟିଂଗୁଡିକ ଅଧିକ ବିଶ୍ୱାସଯୋଗ୍ୟ ମନେହେଉଥାଏ ।

ସେଭଳି ଶତାଧିକ ଛବି ଭିତରୁ ଦୁଇଟି ସଂପର୍କରେ ମୁଁ ମୋ ଟିପାଖାତାରେ ଲେଖିଥିଲି । ଏ ଦୁଇଟି ହେଲା ଦୁଇଜଣ କୃଷ୍ଣକାୟ ବ୍ୟକ୍ତିତ୍ୱଙ୍କର ପୂର୍ଣ୍ଣାବୟବ ଛବି । ଏ ଦୁଇଜଣ ହେଉଛନ୍ତି ଦୁଇ କୃଷ୍ଣକାୟ ମହିଳା ଯେଉଁମାନେ ଆମେରିକାନ୍ ଗୃହଯୁଦ୍ଧ ସମୟରେ ଏ ବିଶାଳ ଦେଶର ଦାକ୍ଷିଣାତ୍ୟପ୍ରଦେଶ ମାନଙ୍କର କ୍ରୀତଦାସମାନଙ୍କୁ ଗୋରା ମାଲିକମାନଙ୍କ କବଳରୁ ଛଡାଇନେଇ ଗୁପ୍ତରେ ନିରାପଦ ଉତ୍ତରାଂଚଳ ରାଜ୍ୟମାନଙ୍କୁ ଚାଲାଣ କରିବାରେ ଅଶେଷ ସାହସିକତା ପ୍ରଦର୍ଶନ କରିଥିଲେ ।

ସେମାନଙ୍କ ଭିତରେ ପ୍ରଥମ ମହିଳାଜଣକ ହେଲେ ସୋଜର୍ଣ୍ଣ ଟ୍ରୁଥ୍ (୧୭୯୭-୧୮୮୩)– ଏଇ ଡେଙ୍ଗୀ, ତନୁପାତଳୀ, ସାଧାସିଧା ପୋଷାକ ପରିହିତା ନିରକ୍ଷରା କୃଷ୍ଣକାୟ ମହିଳା କୌଣସି ସ୍କୁଲ୍‌ରେ ଅଧ୍ୟୟନ ନକରିଥିଲେ ମଧ୍ୟ ଅଦ୍ଭୁତ ବାକ୍‌ଶକ୍ତିର

ଅଧିକାରିଣୀ ଥିଲେ । ତାଙ୍କର ବଚନ ଥିଲା ରହସ୍ୟମୟ ଏବଂ କାବ୍ୟିକ ଅଭିବ୍ୟକ୍ତିରେ ଭରପୂର । ସେ ନିଜେ ଥିଲେ ଜଣେ ପୂର୍ବତନ କ୍ରୀତଦାସ ।

ଅନ୍ୟ ମହିଳା ଜଣକ ହେଲେ ହାରିଏଟ୍ ଟୁବ୍‌ମ୍ୟାନ୍ (୧୮୨୩-୧୯୧୩) । ସେ ଜଣେ ଦୁଃସାହସୀ ସଦ୍ୟ ମୁକ୍ତ କୃଷ୍ଣକାୟ କ୍ରୀତଦାସ ଯେ ପରବର୍ତ୍ତୀ ସମୟରେ ରେଳରୋଡ୍ ୟୁନିୟନ୍‌ର ନେତ୍ରୀ ଭାବେ ଶହ ଶହ ପଳାୟମାନ କ୍ରୀତଦାସଙ୍କୁ ବାଟ କଢାଇ ଦେଶର ଉତ୍ତରାଞ୍ଚଳ ଏବଂ କାନାଡାକୁ ରେଳରେ ଚାଲାଣ କରିଥିଲେ । ବୃତ୍ତିରେ ନର୍ସ, ପ୍ରବୃତ୍ତିରେ ମୁକ୍ତିବାହିନୀର ଗୁପ୍ତଚର ଏବଂ ଅଗ୍ରଦୂତ (ସ୍କାଉଟ୍)ଙ୍କର ସ୍ଲୋଗାନ୍ ଥିଲା "ମୋ ରେଳଗାଡି କେବେ ବି ରେଳପଟିରୁ ଖସିପଡି ନାହିଁ କି ମୋ ଗାଡିର ଜଣେ ବି ଯାତ୍ରୀ ନିଖୋଜ ହୋଇଯାଇନାହିଁ ।"

Sojourn Truth (1797-1883) was a former slave who combined her anti-slavery endeavours with advocacy of the country's newborn feminist movement. Tall lanky, simply dressed, spoke in an unlearned but captivating dialect and stated her thoughts with mystical religiosity : "I sell the shadow to support the substance."

Harriet Tubman (1823-1913) Leader of Union Rail Road and Union spy called the Moses of her people. Tubman rescued hundreds from bondage. Her slogan was, "I never ran my train off the track and I never lost a passenger." The underground railroad was a network of antislavery supporters who guided runaway slaves to remote safety havens in and through the South, to the North and Canada where they could live without fear of recapture"

ଏହିପରି ଶତାଧିକ ପ୍ରଭାବଶାଳୀ ଛବିଗୁଡିକୁ ଆଖି ପୂରେଇ ଦେଖୁଦେଖୁ ମଧ୍ୟାହ୍ନ ସୂର୍ଯ୍ୟ ବହୁ ତଳକୁ ଖସି ଯାଇ ସାରିଥାଏ । ସୁଲୁମା କହିଲା, "ନନା, ଆମେ ତ ଏଇ ଗୋଟିଏ ଗ୍ୟାଲେରିରେ ଦିନର ସବୁତକ ସମୟ ବିତେଇଦେଲେ– ଆଉ ଅନ୍ୟ ସେକ୍‌ସନ୍‌-ଗୁଡାକୁ କେତେବେଳେ ଦେଖିବା ? ଏଠି ପରା ଏମିତି ଆହୁରି ବହୁତ ବହୁତ ଗ୍ୟାଲେରି ଅଛି ? ଆଜି କ'ଣ ସବୁଆଡ ବୁଲିପାରିବା ?"

ଆଫ୍ରୋ-ଆମେରିକାନ୍ ବିଭାଗର ପ୍ରସ୍ଥାନଦ୍ୱାର ବାଟେ ସଂଗ୍ରହାଳୟର ଏକ ଅଳିନ୍ଦକୁ ବାହାରି ଆସିଥାଉ । ଭିତରେ ଅଳିନ୍ଦ ପରେ ଅଳିନ୍ଦ ! ଚାରିଆଡକୁ ଆଖି ବୁଲେଇ ଜାଣିଲି– ଏ ମ୍ୟୁଜିୟମ୍‌କୁ ଏକା ଦିନକେ ବୁଲି କେହି ଦର୍ଶକ କଦାପି ଦେଖି ପାରନ୍ତା ନାହିଁ ନିଶ୍ଚୟ । ତେଣୁ ଆମେ ସ୍ଥିରକଲୁ ଆଜି ଯେତିକିଟା ଗ୍ୟାଲେରି ଦେଖିହେବ ସେତିକି ବୁଲି ଦେଖିସାରି ଆମେ ସନ୍ଧ୍ୟାପୂର୍ବରୁ ଘରକୁ ଫେରିଯିବା– ଯଦି ସଂଭବ ହୁଏ ତେବେ ଆଉ ଦିନେ ଆସିବା ।

ଅପରାହ୍ଣର ବାକି ସମୟ ଆମେ ସଂଗ୍ରହାଳୟ ଭିତରେ ବୁଲିବୁଲି ଅନେକ ଗୁଡ଼ିଏ ସେକ୍ସନ୍ ଦେଖିଲୁ । ବହୁ ଚମତ୍କାର କଳା ସାମଗ୍ରୀରେ ଭରପୂର ୱାର୍ଡସୱର୍ଥ ଆଥେନିୟମ୍ । କିନ୍ତୁ ମୋ ପାଇଁ ମନେରଖିବା ଭଳି ଥିଲା ସେଇ ପ୍ରଥମ ଗ୍ୟାଲେରି– ଆମେରିକାର କଳା ଲୋକଙ୍କ ପାଇଁ ଉତ୍ସର୍ଗୀକୃତ ଆଫ୍ରୋ-ଆମେରିକାନ୍ ଇତିହାସର ଆର୍ଟ ଗ୍ୟାଲେରିଟା ।

ଫେରିବା ବାଟରେ ମୁଁ ମୋ ଝିଅ ନିବେଦିତା (ସୁଲୁ)କୁ ଶୁଣାଇଥିଲି, "ମତେ ଲାଗୁଚି ଏଇଠୁ ଆରମ୍ଭ ହେଲା ଜାଣ– ଏ ଦେଶର ଅନ୍ୟ-ଏକ ଐତିହାସିକ ଭୂମିକା । ଏମାନେ ବର୍ତ୍ତମାନ ନିଜ ଦୋଷକୁ ଆଉ ଲୁଚାଇବାକୁ ଉଚିତ୍ ମନେକରୁନାହାନ୍ତି । ଆରମ୍ଭ ହେଇଚି ଏମାନଙ୍କର ଆତ୍ମନିରୀକ୍ଷଣ– ଏଇଟା ହେଲା confession chapter– ଯା'ପରେ ଦେଖିବ ଏମାନେ ଖୁବ୍ ଶୀଘ୍ର ନିଜର ଐତିହାସିକ ଭୁଲ୍‌କୁ ସୁଧାରିବେ, ପାପର ପ୍ରାୟଶ୍ଚିତ୍ତ କରିବେ, ଯେପରି ରୋମାନ୍‌ମାନେ ସେମାନଙ୍କ ସାମ୍ରାଜ୍ୟବାଦୀ ଅହଂକାରରୁ ଖ୍ରୀଷ୍ଟିୟାନ୍‌ମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର ପରେ ନିଜେ ଖ୍ରୀଷ୍ଟିୟାନ୍ ଧର୍ମ ଗ୍ରହଣକରିନେଇଥିଲେ ଷଷ୍ଠ ଖ୍ରୀଷ୍ଟାବ୍ଦରେ । ସେହିପରି ଦେଖିବ– ଏଇ ଗୋରା ଆମେରିକାନ୍‌ମାନେ ଦିନେ ଜଣେ କଳାଲୋକକୁ ଭୋଟଦେଇ ଜିତେଇବେ ଆଉ ତାକୁ ବସେଇବେ ହ୍ୱାଇଟ୍ ହାଉସ୍‌ରେ– ପ୍ରେସିଡେଣ୍ଟ୍ ପଦବୀରେ ।"

(ଏ ଥିଲା ମୋର ୧୯୯୭ର ଭବିଷ୍ୟତବାଣୀ ଯାହା ଫଳିଗଲା ୨୦୦୮ରେ) ।

## ଆମେରିକାର ଆଦିବାସୀଙ୍କ ଇଷ୍ଟଦେବ ଶ୍ରୀଜଗନ୍ନାଥ !–

– ତା ୧୯ ଜୁଲାଇ, ୧୯୯୭ । ଗ୍ଲାସ୍‌ଟନ୍‌ବରି, କନେକ୍ଟିକଟ୍ ।

ଆଜି ରବିବାର– ଛୁଟିଦିନ । ସୁଲୁମା ମନେ ପକେଇ ଦେଲା, "ନନା ମମି ! ଆଦିବାସୀ ମେଳା ଦେଖିବାକୁ ଯିବା ପରା– ବାହାର ।"

ମନେପଡିଗଲା ଆଜି ଆମର ଦେଖିବାକୁ ଯିବା କଥା ଗଭୀର ଅରଣ୍ୟ ଭିତରେ ଚାଲିଥିବା ଆଦିବାସୀମାନଙ୍କର ଏକ ବାର୍ଷିକ ମେଳା ଦେଖିବାକୁ ଯିବା କଥା । ମୁଁ ସାଙ୍ଗେ ସାଙ୍ଗେ ପ୍ରସ୍ତୁତ ହେଇଗଲି । ସକାଳ ନ ସୁଁଦ୍ଧା ଆମେ ବାହାରିଲୁ । ଆଜି ଆମ ଦଳରେ ଆମେ ଥିଲୁ ପାଞ୍ଚଜଣ– ଆମର ଦୁଇ ନାତି ଅମୃତ ଓ ମନୀଶ ବି ଚାଲିଲେ ଆମ ସାଙ୍ଗରେ । ସୁଲୁମା ତା' କାର୍ ଷ୍ଟାର୍ଟ କଲା ଆଉ କହିଲା– ୱାସିଂଟନ୍ ପ୍ରାୟ ତିନିଘଣ୍ଟାର ଡ୍ରାଇଭ୍ ।

ୱାସିଂଟନ୍? ନିରୁପମା ବୁଝିନଥିଲେ ସେ ଯାକେ ଆମେ କୋଉ ୱାସିଂଟନ ବାହାରିଚୁ । ୱାସିଂଟନ ନାଁ ଶୁଣି ସେ ଭାବିଲେ ବୋଧହୁଏ ଝିଅ ଆମକୁ ଏ ଦେଶର ରାଜଧାନୀ ସହର ୱାସିଂଟନ୍ (ଡି.ସି.) ବୁଲେଇବାକୁ ନଉଚି ।

ସୁଲୁ ହସିଲା । କହିଲା– "ନାଇଁ ମ– ସେ ୱାସିଂଟନ୍ ନୁହଁ । ସେ ତ ଆମଘରଠୁ ଛ'ଶହ ମାଇଲ । ଆମେ ପରା ଯାଉଚେ ଗୋଟାଏ ନିପଟ ମଫସଲ ଅଂଚଳର ଗାଁକୁ–

ଏଠୁ ପ୍ରାୟ ଦେଢଶହ ମାଇଲ୍ ଦୂର । ସେଇଟା ଆମର ଏଇ କନେକ୍ଟିକଟ୍ ଷ୍ଟେଟ୍‌ର ଦକ୍ଷିଣ ପଶ୍ଚିମକୁ । ସେ ଜାଗାର ଠିକଣା ହେଲା ୩୮, କର୍ଟିସ୍ ରୋଡ, ଓ୍ୱାସିଂଟନ୍ । ପୂର୍ବଦିନ ଟିଭିରେ ଦେଖୋଉଥିଲା ସେଠି ଚାଲିଚି ଦୁଇ ଆମେରିକା ମହାଦେଶରୁ ଆସି ଏକାଠି ହେଇଥିବା ଆମେରିକାନ୍ ଇଣ୍ଡିୟାନ୍‌ମାନେ ଏଠାକାର ଆଦିବାସୀମାନଙ୍କର ଗୋଟାଏ ବିରାଟ ମେଳା । ସେ ମେଳା ପ୍ରତିବର୍ଷ ଗ୍ରୀଷ୍ମଋତୁରେ ସେଠି ବସେ । ମେଳାରେ ଏକ ପ୍ରଦର୍ଶନୀ ହୁଏ– ସେମାନଙ୍କର ହାଣ୍ଡିକ୍ରାଫ୍ଟ ଆଉ ତାଙ୍କ କଲ୍‌ଚର୍‌ର ବହୁ ଲୋକାଲ୍ ଆର୍ଟ କ୍ରାଫ୍ଟ । ସବୁଠୁ ବଡକଥା– ସେଠି ପନ୍ଦରଦିନ ଯାକେ ଚାଲେ ଆମେରିକାର ବିଭିନ୍ନ ପ୍ରଦେଶ ଓ ଅଂଚଳର ସଂଗୀତଜ୍ଞଙ୍କ ଭିତରେ ସଂଗୀତ ପ୍ରତିଯୋଗିତା । ନନା, ତୁମେ ତୁମ କରଂଜିଆ ଡାଏରି ବହିରେ ଆମ ଓଡିଶାର ମୟୂରଭଂଜ ଜିଲାର ଆଦିବାସୀଙ୍କ କଥା ଲେଖିଚ । ତୁମେ ଲେଖିଚ ଆଦିବାସୀଙ୍କ ମ୍ୟାଜିକ୍– ତନ୍ତ୍ର ମନ୍ତ୍ର ଗୁଣିଗାରେଡି କଥା । ଜାଣିଚ ନା – ଏଠିକା ଆଦିବାସୀମାନେ ବି ଠିକ୍ ସେମିତି ମ୍ୟାଜିକ୍ ଜାଣନ୍ତି । ସେମାନେ ତନ୍ତ୍ର କରି ଏମିତି ହଟଚମଟ ସୃଷ୍ଟି କରନ୍ତି ଯେ ଏଠିକା ଗୋରା ଲୋକେ ତାଙ୍କୁ ଡରନ୍ତି । ଚାଲ ଦେଖିବା ମେଳାରେ ସେମିତି କିଛି ମ୍ୟାଜିକ୍ ପ୍ରଦର୍ଶନୀ ହେଉଥିବ ହୁଏତ ।”

ପ୍ରାୟ ଦେଢଘଣ୍ଟାର ବାଟ; କିନ୍ତୁ ସେଦିନ ଆମ ପାଇଁ ଦି'ଗୁଣ ହେଇଗଲା– ହାଇଓ୍ୱେରେ ଥରକୁ ଥର ବାଟ ହୁଡି ପୁଣି ରୋଡ-ମ୍ୟାପ୍‌ରୁ ବାଟ ଖୋଜି ଖୋଜି କର୍ଟିସ୍ ରୋଡ୍ ଧରିଲାବେଳକୁ । ଜୁଲାଇମାସର ଖରା ଅବଶ୍ୟ ଆମକୁ ବାଧିଲା ନାଇଁ, କାରଣ ଗାଡି ଭିତରଟା ଥାଏ ଶୀତତାପ ନିୟନ୍ତ୍ରିତ– ପୁଣି ରାସ୍ତା ଦୁଇପାଖେ ଗଭୀର ଜଙ୍ଗଲ । ବଡବଡ ପାଇନ୍ ଗଛର ଏ ଜଂଗଲ ସବୁ ଭାରି ସୁନ୍ଦର ଛାଇଛାଇଆ ଜାଗା ଯାହା ଭିତରେ ଗୋଟିଏ ଦୁଇ ସିଆର ସରୁ ରାସ୍ତା ଲମ୍ବିଯାଇଥାଏ ଆହୁରି ଗଭୀର ଅରଣ୍ୟ ଦିଗରେ । ଦେଖିଲି– ସେ ସରୁ ଗାଉଁଲି ରାସ୍ତାରେ ଚାଲିଥାଏ ଧାଡିଧାଡି ଛୋଟବଡ କାର୍ ଓ ପିକ୍‌ଅପ୍ ବସ୍ ସବୁ ।

“ଦେଖୁଚ ନନା, ଦେଖୁଚ କେତେ ଗାଡି ? କେତେ ଲୋକ ଯାଉଚନ୍ତି ମେଳାକୁ ଦେଖୁଚଟି ! ଏଇଟା ଏ ଦେଶର ଆଦିବାସୀଙ୍କର ଗୋଟାଏ ବଡ ମେଳା । ସେମାନେ ତ ଆସୁଚନ୍ତି, ତାଙ୍କ ଛଡା ଅନ୍ୟମାନେ– ଗୋରା ଆମେରିକାନ୍ ଭିଜିଟର୍ସ କିଛି କମ୍ ଆସନ୍ତି ନାଇଁ । ଚାଲ ଦେଖିବ”– ପାହାଡିଆ ଘାଟି ରାସ୍ତାରେ ଧୀରେ ଧୀରେ ଗାଡି ଚଲୋଉ ଚଲୋଉ ଗପିଚାଲିଥାଏ ଝିଅ ।

ଏ ଭିତରେ ଆମେ ଆସି ପହଞ୍ଚିଯାଇଥାଉ ଗୋଟିଏ ଜାଗାରେ ଯୋଉଠୁ ଆଉ ଆଗକୁ ନଯିବାକୁ ବାରଣ କରାଯାଇଥାଏ । କାର୍ ଅଟକେଇଲା ସୁଲୁମା । ସେଠି ପୁଲିସ୍ ଆମକୁ ନିର୍ଦ୍ଦେଶ ଦେଲା ଗୋଟିଏ ସ୍କୁଲ୍ ହତା ଭିତରକୁ ଯିବାକୁ– ସେଇଠି ବ୍ୟବସ୍ଥା ହେଇଥାଏ ଗାଡି ପାର୍କିଂ ପାଇଁ ।

ସ୍କୁଲ୍ ହତା ଭିତରକୁ ମୋଡ ବୁଲିବାବେଳେ ଆଖିରେ ପଡିଲା ଗୋଟାଏ ବଡ

ସାଇନ୍-ବୋର୍ଡ । ସେଥିରେ ଲେଖାଥାଏ– ୱାସିଂଟନ୍ କାଉଣ୍ଟି ପ୍ରାଇମେରି ସ୍କୁଲ୍ । ଆମେ କାର୍‌ରୁ ଓହ୍ଲେଇଲୁ ସ୍କୁଲ୍ ହତା ଭିତରେ । ସେଠି ଆହୁରି ବହୁତ କାର୍ ପାର୍କ କରାଯାଇଥାଏ ପୂର୍ବରୁ । ପୁଣି ଦେଖିଲୁ ହତା ଭିତରେ ଅନ୍ୟ ଏକ ଜାଗାରେ ରହିଥାଏ କେତେଟା ଛୋଟଛୋଟ ବସ୍ ଆଉ ସବା ସାମ୍‌ନା ବସ୍‌ରେ ଲୋକେ ଚଢୁଥାନ୍ତି– ଗୋଟିଏ ଲମ୍ବା-କ୍ୟୁ । – ଆମେ ଯାଇ ଠିଆହେଲୁ ସେ କ୍ୟୁରେ । ଗୋଟାକ ପରେ ଗୋଟାଏ ବସ୍ ଲୋଡ୍ ହେଉଥାଏ ଆଉ ଷ୍ଟାଣ୍ଡରୁ ବାହାରିଯାଉଥାଏ । ତା ଜାଗା ପୂରଣ କରୁଥାଏ ପଛରେ ଅପେକ୍ଷାରତ ବସ୍ ।

ପଚାରି ବୁଝିଲୁ ମେଳା ଜାଗାକୁ ନିଜ ନିଜ ଗାଡି ମଟର୍‌ରେ ଯିବା ମନା– ସେଥିପାଇଁ ନିର୍ଦ୍ଦିଷ୍ଟ ବସ୍‌ମାନଙ୍କରେ ହିଁ ଯିବାକୁ ହେବ ମେଳା ସ୍ଥଳକୁ । ବସ୍‌ଗୁଡାକ ଏଠାକାର American Indian Archaeological Institute (AIAI) ଅନୁଷ୍ଠାନର କର୍ତ୍ତୃପକ୍ଷଙ୍କର ସେବା ପାଇଁ ଉଦ୍ଦିଷ୍ଟ । ପ୍ରାୟ ଅଧ-ଘଣ୍ଟାଏ ଅପେକ୍ଷା କଲା ପରେ ଆମ ପାଳି ପଡିଲା । ଆମେ ସାଙ୍ଗେ ସାଙ୍ଗେ ପଶିଗଲୁ ବସ୍ ଭିତରକୁ । ଦେଖିଲି– ବସ୍‌ଟିର କ୍ୟାପାସିଟି ବେଶୀ ନୁହଁ– ମାତ୍ର କୋଡିଏଜଣ ପ୍ୟାସେଞ୍ଜର୍ ବସିବା ପାଇଁ ବ୍ୟବସ୍ଥା । ସିଟ୍ ଗୁଡାକ ଖୁବ୍ ପ୍ରଶସ୍ତ ଆଉ ବେଶ୍ ଆରାମଦାୟକ ମନେହେଲା ଚେହେରାରୁ । ସିଟ୍ ଗୋଟାଏ ଗୋଟାଏ ଧରିନେଇ ଆମେ ପାଞ୍ଚଜଣ ବସିଲୁ ଯେ ଯାହା ଜାଗାରେ ।

ଏଥର ଚାରିଆଡକୁ ଆଖି ବୁଲେଇଲି । ଦେଖିଲି ବସ୍ ଡ୍ରାଇଭର୍ ଜଣେ ମଧ୍ୟ-ବୟସ୍କା ମହିଳା । ଏ ଦେଶରେ ସ୍ତ୍ରୀଲୋକମାନେ ଛୋଟ ବଡ ସବୁ ପ୍ରକାର ବସ୍ ଡ୍ରାଇଭ୍ କରନ୍ତି– ଏପରିକି ଦୂରଗାମୀ ଲାଇନ୍ ବସ୍ ମଧ୍ୟ । ତେବେ ଏ ବସ୍‌ର ଡ୍ରାଇଭର୍ ମହିଳାଙ୍କ ଚେହେରା ଦେଖି ମୁଁ ସନ୍ଦେହରେ ପଡିଲି । ଭଲକରି ଅନାଇ ନିଶ୍ଚିତ ହେଲି ସେ ଜଣେ ଗୋରା ବା କଳା ଲୋକ ନୁହନ୍ତି; ବରଂ କୁହାଯିବ ଶ୍ୟାମଳ– ପ୍ରାୟ ଆମ ଭାରତୀୟଙ୍କ ପରି ଦେହର ରଙ୍ଗ । ଦିଶୁଥାନ୍ତି ବି ଅନେକଟା ଭାରତୀୟ ଭଳି । କଳାକଳା ଆଖିଡୋଳା । କଳା ମୁଣ୍ଡବାଳ । ନାକ ଚେପେଟା ନୁହେଁ– ଆମରି ନାକ ଭଳି ।

‘‘ଭାରତୀୟ ?’’– ଝିଅକୁ ଓଡିଆରେ ପଚାରିଲି ।

‘‘ଲୋହିତ– ଆଖି ଠାରରେ ଉତ୍ତର ଦେଲା ସୁଲୁମା । ବୁଝିଲି ଏଇ ହେଲେ ଲୋହିତ ଭାରତୀୟ ବା ରେଡ୍-ଇଣ୍ଡିୟାନ୍ ।

ବସ୍ ଚାଲିଲା । ସରୁ ବଣୁଆ ରାସ୍ତା । ରାସ୍ତା କଡର ବୁଦା ଓ ଗଛଗୁଡାକର ଡାଳ ମଝିରେ ମଝିରେ ପିଚିହେଇଯାଉଥାଏ ବସ୍ ଝରକାରେ । ସନ୍ଦେହ ଆସୁଥାଏ ମନରେ ଏମାନେ କ’ଣ ରହନ୍ତି ଏତେ ଭିତ୍‌ରେ, ସଭ୍ୟତାଠାରୁ ଦୂରରେ, ଏତେ ଭିତର ଜଙ୍ଗଲରେ ? ଶୁଣିଥିଲି, ଏଠାକାର ଆଦିବାସୀମାନେ ରହନ୍ତି ଚେରୋକି ବା ରିଜର୍ଭ ଅଂଚଳମାନଙ୍କରେ । ଚେରୋକିରେ ଆମେରିକା ସରକାରଙ୍କ ନିୟମ କାନୁନ୍ ଲାଗୁହୁଏନା । ନିଜର ପାରମ୍ପରିକ ସାମାଜିକ ରୀତି-ନୀତିରେ ଚଳନ୍ତି ଏମାନେ । ତା’ଉପରେ ଆମେରିକା ପ୍ରଶାସନର ହସ୍ତକ୍ଷେପ ନିଷେଧ ।

କିଛି ସମୟ ପରେ ବସ୍ ପଶିଲା ଆମର ଆଜିର ଗନ୍ତବ୍ୟସ୍ଥଳ ବା AIAI (ଆମେରିକାନ ଇଣ୍ଡିୟାନ୍ ଆର୍କିଓଲଜିକାଲ୍ ଇଷ୍ଟିଚ୍ୟୁଟ୍) ହତା ଭିତରକୁ । ହତା ଭିତରେ ଟୁରିଷ୍ଟ୍ଙ୍କ ଭିଡ । ଅଧିକାଂଶ ଦିଶୁଥାନ୍ତି ଗୋରା ଆମେରିକାନଙ୍କ ପରି ଚେହେରାର ।

''ଏଠି ଏତେ ଭିଡ ?– ଆଶ୍ଚର୍ଯ୍ୟ ହେଲି । ଏ ଗୋରାମାନେ ଏଠି କ'ଣ ବା କାହାକୁ ଦେଖିବାକୁ ବ୍ୟାକୁଳ ?''

''ହଁ ନନା– ଏମାନେ ବୋଧେ ଆସିଚନ୍ତି କଟେଜ୍ ଇଣ୍ଡଷ୍ଟ୍ରି ଏକ୍ଜିବିସନ୍ ଦେଖିବାକୁ ଓ ଜିନିଷପତ୍ର କିଣିବାକୁ । ତା'ଛଡା ଏଇ ଗ୍ରୀଷ୍ମଋତୁରେ ପ୍ରତିବର୍ଷ ଏଇ ଜାଗାରେ ବଡିଆ ଗୀତନାଚ ହୁଏ ଶୁଣିଚି । ମୁଁ ତ ଆସିନଥିଲି କେବେ. . . ଚାଲ ଯିବା ଭିତରକୁ । ସୁଲୁମା ଚାଲିଲା ଗୋଟାଏ ଆଡେ ଯୁଆଡକୁ ଲୋକ ଚାଲିଥାନ୍ତି– ଆମେ ଅନୁସରଣ କଲୁ ତାକୁ ।

ଆଗକୁ ଆଗକୁ ଗହଳି ବଢୁଥାଏ । ଆମେ ଯାଇ ପହଞ୍ଚିଲୁ ଟିକେଟ୍ କାଉଣ୍ଟର୍ ଆଗରେ ଲମ୍ବିଥିବା କ୍ୟୁ ପଛରେ । ଆମ ଆଗରେ ବହୁତ ଲୋକ । ଅପେକ୍ଷା କରିବାକୁ ହେଲା କିଛି ସମୟ । ଟିକେଟ୍ କଟା ସରିଲା । ସୁଲୁ କହିଲା– "ନନା ! ଆମେ ଆଗ ଯିବା ମ୍ୟୁଜିୟମ୍ ଭିତରକୁ । ସମୟ ଗଡିଗଲାଣି ଅନେକ– କାଳେ ମ୍ୟୁଜିୟମ୍ ବନ୍ଦହେଇଯିବ– ତେଣୁ ଆଗ ପଶିବା ତା' ଭିତରକୁ, ପରେ ମେଳା ବୁଲା–''

ଆମେ ଚାଲିଲୁ ସଂଗ୍ରହାଳୟ ଦିଗରେ । ଆମ ସାମ୍ନାରେ ଚାଲୁଥାନ୍ତି ବହୁତ ଟୁରିଷ୍ଟ– ବିଭିନ୍ନ ଦେଶର ଲୋକ, ନାରୀ ପୁରୁଷ, ପିଲାଛୁଆ ସମସ୍ତେ । ଅଟକିଲୁ ମ୍ୟୁଜିୟମ୍ର ପ୍ରବେଶ ଦ୍ୱାର ଆଗରେ । ସେଠି ଟିକେଟ୍ ଦେଖାଇବା ପରେ ଏକ ବଡ ହଲ୍ ଭିତରକୁ ପଶିବାକୁ ଅନୁମତି ମିଳିଲା । ଭିତରକୁ ପାଦ ବଢେଇବା ମାତ୍ରେ ହଠାତ୍ ଗୋଟାଏ ଅଦ୍ଭୁତ ପରିବର୍ତ୍ତନ ଅନୁଭବ ହେଲା– ଯେମିତିକି ଏକ ସଂପୂର୍ଣ୍ଣ ଭିନ୍ନ ଜଗତ ଭିତରକୁ କିଏ ମତେ ଠେଲିଦେଲା । ସେ ଜଗତରେ ଆଧୁନିକ ଆମେରିକା ବୋଲି ଯାହାକୁ ଏ ପର୍ଯ୍ୟନ୍ତ ଜାଣିଥିଲି ସେ ଆମେରିକା ପୂରାପୂରି ଉଭେଇଗଲା । ତା' ଜାଗାରେ ଯେଉଁ ଆମେରିକା ଉଭା-ହେଲା ତାହା ନିଶ୍ଚୟ ଭିନ୍ନ ଏକ ଆମେରିକା ଯାହାର ଇତିହାସ ମତେ ଜଣାନଥିଲା ।

ସଂଗ୍ରହାଳୟଟି ସଂପୂର୍ଣ୍ଣ ଭାବେ ଶୀତତାପ ନିୟନ୍ତ୍ରିତ । ପ୍ରଥମ ପ୍ରସ୍ତଟି ମନେହେଲା ତାହା ଏକ କୁଟୀର ଶିଳ୍ପ ପ୍ରଦର୍ଶନୀ । ନାନା ଜାତିର କୁଟୀର ଶିଳ୍ପ ସାମଗ୍ରୀର ଷ୍ଟଲ୍ ମାନ । ସେ ଭିତରେ ଥାଏ ଫର୍ ବା ପଶୁଲୋମର ପୋଷାକ, ପକ୍ଷୀପରର ଟୋପି, କାଠ ପଥର ଖୋଦେଇ ବାସନ କୁସନ– ବାଉଁଶରୁ ତିଆରି ଡାଲା କୁଲା ଚାଙ୍ଗୁଡି ଓଗେର । ବହୁ ଆକାର ପ୍ରକାରର ବାଦ୍ୟଯନ୍ତ୍ର । ସେସବୁ ଭିତରେ ପ୍ରଧାନହେଲା– ସପ୍ତସ୍ୱରୀ ବଂଶୀ । ବଂଶୀଗୁଡାକ ଦେଖିବାକୁ ମାଉଥ୍ ଅର୍ଗାନ ପରି । ସାତଟି ସ୍ୱର ପାଇଁ ବିଭିନ୍ନ ଲମ୍ବର ସାତୋଟି ସ୍ୱରର ବଂଶୀ ଏକାଠି ଯୋଡାହେଇଥାଏ ସେଥିରେ । ପ୍ରାୟ ଚାଖଣ୍ଡେ ଚାଖଣ୍ଡେ ଲମ୍ବର ଛୋଟ ଛୋଟ ବାଉଁଶ ନଳୀର ପାଖାପାଖି ସଂଯୋଗରୁ ତିଆରି ହେଇଥାଏ ଏ ସପ୍ତସ୍ୱରୀ ।

ସେ ଭିତରେ ଗୋଟିଏ ସଂପୂର୍ଣ୍ଣ ନୂଆ ଜିନିଷ ପଡିଲା ଆଖିରେ । ତା' ନାଁ– 'ଦ' ରେନ୍ ରଡ' । ଏହା ଗୋଟାଏ ଚାରି ପାଞ୍ଚ ଫୁଟ୍ ଲମ୍ବ ଓ ତିନି ଚାରି ଇଞ୍ଚ ମୋଟା ପୋଲା ବାଉଁଶ ଯାହାକୁ ଓଲଟପାଲଟ କରି କାନରେ ଦେଲେ ଶୁଣାଯାଏ ଅରଣ୍ୟରେ ବର୍ଷା ବେଳେ ଟପ୍ ଟପ୍ ଟପ୍ ହୋଇ ଝରିପଡୁଥିବା ବର୍ଷା ଜଳର ବିଚିତ୍ର ଓ ଅତ୍ୟନ୍ତ ମନୋରମ ସଂଗୀତର ସ୍ୱର ।

ପରେ ଚାଲିଲୁ ଆହୁରି ଭିତରକୁ । ଭିତରେ ଅନ୍ୟ ଏକ ସେକସନ୍ । ସେ ସେକସନ୍କୁ ପ୍ରବେଶ ପାଇଁ ପାରିହେବାକୁ ପଡେ ଅନ୍ୟ ଏକ ପ୍ରବେଶଦ୍ୱାର । କବାଟ ପାରି ହେବା ମାତ୍ରେ ସବା ପ୍ରଥମେ ମୋ ଆଖିକୁ ଆକର୍ଷଣ କଲା ଏକ ଅଦ୍ଭୁତ, ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଦୃଶ୍ୟ । ସେ ଦୃଶ୍ୟ ସଂପୂର୍ଣ୍ଣ ଅବିଶ୍ୱାସ୍ୟ ମଧ୍ୟ ମୋ ପାଇଁ । ଆମେରିକାରେ ବର୍ତ୍ତମାନ କେତେକ ବଡ ବଡ ସହରରେ ହିନ୍ଦୁ ମନ୍ଦିରମାନଙ୍କରେ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଚାଲିଚି । କିଛି ବର୍ଷ ଆଗରୁ ଜଣେ ଭାରତୀୟ ଭକ୍ତ ପ୍ରଭୁପାଦ ଆମେରିକା ମହାଦେଶରେ ଜଗନ୍ନାଥଙ୍କୁ ପରିଚିତ କରାଇଥିଲେ ବୋଲି କୁହାଯାଏ ଇସ୍କନ୍ ସମାଜ ପ୍ରତିଷ୍ଠା ମାଧ୍ୟମରେ । କିନ୍ତୁ ତାର ବହୁ ବହୁ ଶତାବ୍ଦୀ ବା ସହସ୍ରାବ୍ଦୀ ପୂର୍ବରୁ ଏ ଦେଶର ମାଟିରେ ଜନ୍ମିତ ଆଦିବାସୀମାନେ ମଧ୍ୟ ଜଗନ୍ନାଥଙ୍କୁ ଯେ ନିଜର ଇଷ୍ଟଦେବ ଭାବେ ପୂଜା କରି ଆସୁଛନ୍ତି ତାହା ଥିଲା ମୋର କଳ୍ପନାତୀତ । ମୂର୍ତ୍ତିଟି ନିକଟକୁ ଯାଇ ଦେଖିଲି– ତାହା ଥିଲା ଶ୍ରୀଜଗନ୍ନାଥଙ୍କର ଅବିକଳ ପ୍ରତିରୂପ ଏକ ଦାରୁ ମୂର୍ତ୍ତି । ପୁଣି ସେ ମୂର୍ତ୍ତିର ପାଦତଳେ ଲେଖାଥିଲା ସ୍ପଷ୍ଟ ଇଂରେଜୀ ଅକ୍ଷରରେ, "The House God" ଅର୍ଥାତ୍ ଗୃହ-ଦେବତା ବା ଇଷ୍ଟଦେବ !

ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଜଗନ୍ନାଥଙ୍କୁ ଏ ଦେଶର ଆଦିବାସୀ ବି ଇଷ୍ଟଦେବ କରିଛନ୍ତି ! ଏହା କିପରି ସଂଭବ ? ଅବଶ୍ୟ ୧୯୯୩ରେ ପ୍ରଥମ ଆମେରିକା ଭ୍ରମଣ ବେଳେ ମୁଁ ଜଣେ ଲୋହିତ ଭାରତୀୟଙ୍କୁ ଭେଟିଥିଲି ନ୍ୟାସ୍‌ଭିଲ୍‌ରେ ସେ ବର୍ଷ ରଥଯାତ୍ରା ଉତ୍ସବରେ । ସେ ଥିଲେ ଆମ ସଭାର ଭିଡିଓ ଚିତ୍ର ଉତ୍ତୋଳନ ଦାୟିତ୍ୱରେ ଥିବା ଭିଡିଓଗ୍ରାଫର୍ । ସେଇ ମତେ ସେତେବେଳେ କହିଥିଲେ ଯେ ସେମାନଙ୍କ ବସତି ବା "ଚେରୋକି"ରେ ଏପରି କାଠ ଖୋଦେଇ ମୂର୍ତ୍ତି ମାନ ପ୍ରତିଷ୍ଠା କରାଯାଇଥାଏ ଗାଁ ମୁଣ୍ଡରେ ଗୋଟିଏ ଗୋଟିଏ ଖୁଣ୍ଟ ବା "ଟୋଟେମ୍ ପୋଲ" ଆକାରରେ । କିନ୍ତୁ ଏଭଳି ମୂର୍ତ୍ତିକୁ ଯେ ସେମାନେ ଇଷ୍ଟଦେବ ବା ଗୃହଦେବତା ଭାବେ ଘରେ ଘରେ ପୂଜା କରନ୍ତି ସେ କଥା ମୋ ପାଇଁ ସଂପୂର୍ଣ୍ଣ ନୂଆ ।

ନିରୁପମା ଓ ସୁଲୁମାକୁ ଡାକି ମୁଁ ସେ ମୂର୍ତ୍ତିଟି ଦେଖେଇଲି । ସମସ୍ତେ ଚମକିପଡିଲେ । କହିଲେ– "ଆରେ, ଏ ତ ଆମ ଠାକୁର– ଖୋଦ ଜଗନ୍ନାଥ ! ଏଠିକି ଆସିଲେ କେମିତି ?" ଆମେ ସମସ୍ତେ ହାତ ଯୋଡି କିଛି ସମୟ ସେଇ ମୂର୍ତ୍ତିଟି ଆଗରେ ଠିଆହୋଇରହିଲୁ । ସେ ଦୃଶ୍ୟ ଅନ୍ୟ ଟୁରିଷ୍ଟମାନଙ୍କୁ କେମିତି ଲାଗୁଥିବ ସେଥିପାଇଁ ଆମର

ଖାତିର ନଥାଏ ଆଦୌ। କେତେଜଣ ବିଦେଶୀ ଦର୍ଶକ ମଧ୍ୟ ଆମ ସହିତ ସାମିଲ ହେଇଗଲେ। ଏକ ମହାଭାବ ବା ବିଶ୍ୱଚେତନା କ୍ରମଶଃ ଆମ ସମସ୍ତଙ୍କୁ ଆଚ୍ଛନ୍ନ କରିପକାଇଲା। ତା'ରି ଭିତରେ ବୁଡ଼ିରହି ସେଦିନ ଆମେ ସେଇ ଆଦିବାସୀ ସଂଗ୍ରହାଳୟ ପରିକ୍ରମା କଲୁ।

ଲୋହିତ ଭାରତୀୟମାନଙ୍କର ସେଇ ସଂଗ୍ରହାଳୟରେ ଅବଶ୍ୟ ଆମ ପରି ଭାରତୀୟଙ୍କ ପାଇଁ ଆଉ ଅଧିକ ବିସ୍ମୟକର କଳା ବା କାରୁକାର୍ଯ୍ୟର ସାମଗ୍ରୀ ନଥାଏ। ସେମାନଙ୍କର ଗାଁମାନଙ୍କରେ ଏବେବି ଯୋଉ ନଡ଼ା ଛପର କୁଡ଼ିଆଘର ଓ ଶଗଡ ଟାଟ ଆକାରର ଅଧା ଗୋଲେଇ ସୁଡଙ୍ଗ ଆକୃତିର ତମ୍ବୁ ପରି ଘର, ସେମାନଙ୍କର ଦୈନନ୍ଦିନ ବ୍ୟବହାର୍ଯ୍ୟ ପୋଡ଼ା ମାଟିର ହାଣ୍ଡିକୁଣ୍ଡେଇ, ମାଠିଆ, କୁଲା ଡାଲା, କୁରାଢ଼ି କଟୁରୀ ଶିଳ ଚକି, ଚୁଲି ଶିକା ଢିଙ୍କି ପାହାରୁଣି ସବୁତ ଏବେ ବି ଆମ ଓଡ଼ିଶାର ଗାଁଗଣ୍ଡାରେ ନିତି ଦେଖା ଜିନିଷ। ସେସବୁ ବାହାରେ ଏମାନଙ୍କ ସଂସ୍କୃତିର ଅନ୍ୟତମ ବୈଶିଷ୍ଟ୍ୟ ହେଲା ପ୍ରକୃତି ଉପାସନା ଯାହା ମଧ୍ୟ ମେଳଖାଇଯାଏ ଆମ ଭାରତୀୟ ସଂସ୍କୃତି ସହିତ ପୂରାପୂରି। ବାହ୍ୟ ପ୍ରକୃତି ସହିତ ଏମାନଙ୍କର ନିବିଡ଼ ସଂପର୍କର ପ୍ରମାଣ ଉପାଦନ ବହୁ ମାତ୍ରାରେ ପ୍ରଦର୍ଶିତ ହେଉଥାଏ ଏ ସଂଗ୍ରହାଳୟରେ। ଏମାନେ ନଦୀ ହ୍ରଦ ପର୍ବତ ଅରଣ୍ୟ ଆକାଶ ଇତ୍ୟାଦିକୁ ଚେତନଶୀଳ ମନେକରନ୍ତି, ଦୈବୀଶକ୍ତିର ଆଧାର ଜ୍ଞାନରେ ପୂଜା କରନ୍ତି। ଏମାନେ ମଧ୍ୟ ପିତୃପୁରୁଷଙ୍କୁ ପରଲୋକରେ ଥିବା ଜ୍ଞାତି ଜ୍ଞାନରେ ପୂଜା କରନ୍ତି। ଝଡବାତ୍ୟା ମେଘ ବିଜୁଳି ବଜ୍ର, ସୂର୍ଯ୍ୟ ଚନ୍ଦ୍ର ତାରା ଓ ମେଘମାନଙ୍କୁ ଚେତନଶୀଳ ଦୈବୀ ଶକ୍ତି ଭାବେ ଗ୍ରହଣ କରନ୍ତି। ସେମାନଙ୍କୁ ନେଇ ଚିତ୍ର ଆଙ୍କନ୍ତି, କବିତା ଲେଖନ୍ତି। ଏମାନଙ୍କ ସୃଷ୍ଟିତତ୍ତ୍ୱର ଅନେକ ସାମଞ୍ଜସ୍ୟ ଦେଖାଯାଏ ଆମ ଭାରତୀୟ ସୃଷ୍ଟି-ତତ୍ତ୍ୱ ସହିତ। ସେ ସମ୍ବନ୍ଧରେ ବହୁ ଚମତ୍କାର ଛବି ଓ ସାହିତ୍ୟ ମଧ୍ୟ ଅଛି ଏମାନଙ୍କର। ସବା ଉପରେ– ଏମାନଙ୍କ ଚେହେରାର ବହୁ ସାମଞ୍ଜସ ଆମ ଭାରତୀୟଙ୍କ ସହିତ, ବିଶେଷକରି ଓଡ଼ିଆଙ୍କ ସହିତ ଲକ୍ଷ୍ୟ କରି ବିସ୍ମିତହେଲି। ମନେପଡ଼ିଲା The Hindu America by Bhikhyu Chaman Lalଙ୍କ ପୁସ୍ତକ। ଚମନଲାଲ୍‌ଙ୍କ ଥେସିସ୍ ତା'ହେଲେ କ'ଣ ସତ ? ମେକ୍ସିକୋର ମାୟା, ଆଜ୍‌ଟେକ୍ ଓ ପେରୁର ଇନ୍‌କା ସଭ୍ୟତାର ଲୋକେ କ'ଣ ତେବେ ସତରେ ଆମରି ଭାରତୀୟ ବଂଶୋଦ୍ଭବ ?

କାନରେ ପଡ଼ିଲା ଝିଅର ଡାକ, ''ନନା ! ଦୁଇଟା ବାଜିବ। ଲଞ୍ଚ ଖାଇସାରି ମେଳା ଭିତରେ ବାକି ଅନେକ ଜାଗା ବୁଲି ଦେଖିବାକୁ ଅଛି ଆମକୁ।''

ସମୟର ସୀମିତତା ଦୃଷ୍ଟିରୁ ମ୍ୟୁଜିୟମ୍ ବୁଲା ସେଇଠି ଶେଷ କଲୁ। ଲଞ୍ଚ ପାଇଁ ନିରୁପମା ଘରୁ ଡ୍ରାଇ ଲଞ୍ଚ୍ ଓ କୋକ୍ ସମେତ ସାଜସରଞ୍ଜାମ ନେଇଆସିଥିଲେ। ପାର୍କ ଭିତରେ ଗୋଟାଏ ଛାଇଛାଇଆ ଜାଗାରେ ଗଛମୂଳେ ବସିଲୁ ଓ ଖିଆପିଆ କଲୁ।

କାନରେ ପଡୁଥାଏ ବେଶ୍ ଦୂର ବଣ ଆଡୁ ଏକାଧିକ ଡ୍ରମ୍ ବାଦ୍ୟର ଗୁମ୍ ଗୁମ୍ ନାଦ, ତା' ସାଙ୍ଗକୁ ବଂଶୀର ସ୍ୱର। ଲୋକେ ଛୁଟିଥାନ୍ତି ସେ ଦିଗକୁ। ଲଞ୍ଚ ଶୀଘ୍ର ସାରିଦେଇ ଆମେ

ଚଟାପଟ ବାହାରିପଡିଲୁ । ପାଇନ୍ ବଣ ଭିତରେ ଏକ ସରୁ ପାଦଚଲା ରାସ୍ତାରେ ଆମକୁ ବେଶ୍ କିଛି ବାଟ ଚାଲିବାକୁ ପଡିଲା ସଂଗୀତ ଜାଗାରେ ପହଞ୍ଚିବାକୁ । ବଣ ଭିତରକୁ ଯେତେ ଯେତେ ପଶୁଥାଉ ସୂର୍ଯ୍ୟକିରଣ ସେତେ ସେତେ ମଳିନ ପଡିଯାଉଥିବା ବୁଝିପାରି ମୁଁ ଚାହିଁଲି ମୁଣ୍ଡ ଉପରକୁ । ଦେଖିଲି ଆକାଶରେ ସୂର୍ଯ୍ୟ ନାହାନ୍ତି– ତାଙ୍କ ସ୍ଥାନରେ ଚନ୍ଦ୍ର– ଅବିକଳ ପୂର୍ଣ୍ଣମୀ ରାତିର ନିଶାର୍ଦ୍ଧର ଚନ୍ଦ୍ର ! ଦିନ ଦି'ପହରଟା ଏମିତି କେମିତି ବଦଳିଗଲା ଏକ ଜ୍ୟୋସ୍ନାସିକ୍ତ ରାତିକୁ ! ଗୁମ ଟାଙ୍କୁରିଉଠୁଥାଏ ସେ ଅଦ୍ଭୁତ ପରିବର୍ତ୍ତନକୁ ଲକ୍ଷ୍ୟ କଲା ପରେ ।

ପାଇନ୍ ଅରଣ୍ୟର ମାଧୁର୍ଯ୍ୟ ବାସ୍ତବିକ୍ ଏଇପରି । ଦିନ ଦି'ପହରକୁ ଜହ୍ନରାତି କରିଦିଏ ଏ ନଭଶ୍ଚୁମ୍ବୀ ପାଇନ୍ ଗଛ ସବୁ ଏଠାକାର ପ୍ରାଚୀନ ଜଙ୍ଗଲ ଇଲାକାରେ । ଏ ବଣରୁ ଗଛ କଟାଯାଏନା– କେବଳ ସଫା କରାଯାଏ ଯାହା ।

ଜଙ୍ଗଲ ଭିତର ଆଡକୁ ଲକ୍ଷ୍ୟ କଲି । ଗଛ ଗୁଡାକର ଗଣ୍ଡି ଗମ୍ବୁଜାକାର ଓ ପୁରୁଣା ତାଳ ନଡିଆ ଗଛ ଭଳି ଶାଖା-ପ୍ରଶାଖା ବିହୀନ ଭାବେ ପ୍ରାୟ ତିରିଶ ଚାଳିଶ ଫୁଟ୍ ଉଚ୍ଚ ପର୍ଯ୍ୟନ୍ତ ବଢିଥାନ୍ତି । ସବା ଉପରେ ଛତା ଭଳି ମେଲିଥାଏ ଡାଳପତ୍ର । ପାଇନ୍ ପତ୍ରର ଆକୃତି ଛୁଞ୍ଚପରି ସରୁ ସରୁ ଆଉ ଗ୍ରୀଷ୍ମଋତୁରେ ପତ୍ରଗୁଡିକ ଖୁବ୍ ଗହଳ ଏବଂ ଗାଢ ସବୁଜ ବା ଶ୍ୟାମଳ ବର୍ଣ୍ଣ ଧାରଣକରେ । ସେଇ କାରଣରୁ ଗ୍ରୀଷ୍ମଋତୁର ମଧ୍ୟାହ୍ନ ସୂର୍ଯ୍ୟ ମଧ୍ୟ ତିରିଶ ଚାଳିଶ ଫୁଟ୍ ଉଚ୍ଚ ସାନ୍ଦ୍ର ପାଇନ୍ ଅରଣ୍ୟର ଚନ୍ଦ୍ରାତପ ତଳ ଛାଇଛାଇଆ ବଣ ଭିତରେ ଦିଶେ ବୈଶାଖ ମାସର ପୂର୍ଣ୍ଣମୀ ତିଥିର ନୀଳ ଚନ୍ଦ୍ର ପରି ।

ପରିବେଶର ସେ ଅପୂର୍ବ ଦୃଶ୍ୟ ଓ ମନୋରମ ଅନୁଭବ ମୋ' ଅନ୍ତର ଭିତରେ ଭାବାନ୍ତର ସୃଷ୍ଟିକରୁଥାଏ । ସେ ଭାବାନ୍ତରକୁ ସମୃଦ୍ଧ କରୁଥାଏ ଦୂରରୁ ଭାସିଆସୁଥିବା ବଂଶୀ-ସ୍ୱନ । ସମଗ୍ର ପରିବେଶର ରୂପାନ୍ତର ଘଟୁଥାଏ ଏକ ଭାଗବତୀ ଚେତନାରେ– ଲାଗୁଥାଏ କୁଂଜବନ ପରି ।

କୁଂଜବନରେ ବାଜୁଥିବା ବଂଶୀ ସ୍ୱନର ଉତ୍ସଟିକୁ ଶେଷରେ ଆବିଷ୍କାର କଲୁ ଆମେ । ସେତେବେଳକୁ ଜାଗାଟା ଭରପୂର୍ ହେଇଯାଇଥାଏ ଦର୍ଶକଙ୍କ ମେଳରେ । ସମସ୍ତେ ଚୁପ୍‌ଚାପ୍ ବସିପଡିଥାନ୍ତି । ସବୁରି ମନକର୍ଣ୍ଣ ବଂଶୀସ୍ୱନ ଦିଗରେ । ଦେଖିଲି ଦର୍ଶକମାନେ ଅଧିକାଂଶ ଗୋରାଲୋକ– ନାରୀ ପୁରୁଷ ଓ ଶିଶୁ । ତା' ଭିତରେ ଲକ୍ଷ୍ୟକରିହେଉଥାଏ ଆମପରି କେତୋଟି ପ୍ରବାସୀ ଭାରତୀୟ ପରିବାରଙ୍କୁ । ଦର୍ଶକମାନେ ବସିଥାନ୍ତି ଠା-ଠା ଏଠି-ସେଠି ବିଛେଇ ହେଇ ପଡିଥିବା ଜଙ୍ଗଲୀ ଶୁଖିଲା ପାଇନ୍‌ଗଛର ଗଣ୍ଡି କେତୋଟି ଉପରେ । ତେବେ ଅଧିକାଂଶ ବସିଥାନ୍ତି ତଳେ । ପାଇନ ବଣର ତଳ ବର୍ଷ ବର୍ଷ ଧରି ଜମିଥିବା ଶୁଖିଲା ପାଇନ୍ ପତ୍ରରେ ବହଳ କାର୍ପେଟ ପରି ପରିଷ୍କାର ଓ ବେଶ୍ ନରମ ।

ସେତିକିବେଳେ ଆଖିରେ ପଡିଲା ଏକ ସଂପୂର୍ଣ୍ଣ ଆଶ୍ଚର୍ଯ୍ୟଜନକ ଦୃଶ୍ୟ । ଦର୍ଶକଙ୍କ ଗହଣରେ ଚକାପକାଇ ବସିଥାନ୍ତି ଜଣେ ଅତି ସୁନ୍ଦରୀ ସ୍ତ୍ରୀଲୋକ । ସେ ବସିଥାନ୍ତି ଆଖି ବୁଜି

ଏକ ଧ୍ୟାନରେ– ବଂଶୀସ୍ୱରକୁ କାନ ଡେରି । ତାଙ୍କ ଚେହେରା ଆଉ ବେଶ ପୋଷାକରୁ ମନେହେଉଥାନ୍ତି ସେ କେହିଜଣେ ଭାରତୀୟ ମହିଳା । ପୁଣି ପିନ୍ଧିଥାନ୍ତି ବି କୁମ୍ଭପକା ସମ୍ବଲପୁରୀ ହଳଦିଆ ସିଲ୍‌କ ଖଣ୍ଡୁଆ ପାଟ ଶାଢି ଭଳି କୌଣସି ପୋଷାକ । ତାଙ୍କ ଦେହର ରଙ୍ଗ ଚମ୍ପାଫୁଲ ପରି । ତା' ସହିତ ହଳଦିଆ ସିଲ୍‌କ ଶାଢି ଆହୁରି ଭ୍ରମ ସୃଷ୍ଟିକଲା ମୋ ମନରେ । ଭଦ୍ରମହିଳା ଓଡିଆଣୀ କି ? ନିଶ୍ଚିତ ହେବାକୁ ଆହୁରି ପାଖକୁ ଯାଇ ଲକ୍ଷ୍ୟ କଲି ମହିଳା ଜଣଙ୍କୁ । ତାଙ୍କ ମୁହଁରୁ ଅଧେ ଲୁଚିଯାଇଥାଏ ମୁଣ୍ଡ ଉପରୁ ଅଣ୍ଟା ତଳ ପର୍ଯ୍ୟନ୍ତ ଲମ୍ବି ଆସିଥିବା ସିଧା ସିଧା କଳାକୃଷ୍ଣ ଗହନ କେଶରାଶିରେ । ତାଙ୍କ ବସିବା ଢଙ୍ଗରେ ଓଡିଶୀ-ନୃତ୍ୟ ଭଙ୍ଗି ମଧ୍ୟ ଲକ୍ଷ୍ୟ କରିପାରିଲି । ଆଖିକୁ ଅବିଶ୍ୱାସ କରି ପାରିଲି ନାହିଁ । ଦେହ ଟାଙ୍କୁରି ଉଠିଲା । ନିରୁପମାଙ୍କ କାନରେ କହିଲି– "ସେ ଭଦ୍ରମହିଳାଙ୍କୁ ଦେଖୁଚ– ହେଇ ସେଠି ହଳଦିଆ ଶାଢି... ଅବିକଳ ଆମ ସଂଯୁକ୍ତା ପାଣିଗ୍ରାହୀଙ୍କ ପରି ଦିଶୁନାହାନ୍ତି ?"

ମହିଳାଜଣକ ଆଡକୁ ଥରେ ଅନାଇଦେଇ ନିରୁପମା ମୁହଁ ବୁଲେଇ ବିସ୍ମୟ ବିସ୍ଫାରିତ ଆଖିରେ ଚାହିଁଲେ ମତେ । କିନ୍ତୁ ସେତେବେଳକୁ ଆମେ ଆମର ଭୁଲ୍ ବୁଝିସାରିଥାଉ– କାରଣ ବିଶ୍ୱ-ପ୍ରସିଦ୍ଧ ଓଡିଶୀ ନୃତ୍ୟାଂଗନା ସଂଯୁକ୍ତା ପାଣିଗ୍ରାହୀ ସେତେବେଳକୁ ଆଉ ଇହଧାମରେ ନଥାନ୍ତି । ପ୍ରାୟ ତିନିସପ୍ତାହ ତଳେ ଆମେ ତାଙ୍କର ଅକାଳ ବିୟୋଗର ସଂବାଦ ପାଇଥିଲୁ ଏଇ ଆମେରିକା ରହଣି ଆରମ୍ଭରେ । ସଂଯୁକ୍ତା ମୋ ମଝିଆଁ ଜୋଇଁ ମହେଶଙ୍କ ଝିଆରୀ ।

କିଛି ସମୟ ସେଇ ବିଭ୍ରାନ୍ତି ଭିତରେ ବୁଡିରହି ଇତଃସ୍ତତଃ ହେବା ଭିତରେ ଆମେ ଆମ ଜାଗା ବାଛିନେଇଥାଉ ଖଣ୍ଡେ କାଠଗଡ ଉପରେ । ଏଥର ମନଧ୍ୟାନ ଗଲା ସଂଗୀତ ଆସର ଆଡକୁ । ଦେଖିଲି– ବଂଶୀବାଦକ ହେଲେ ଲୋହିତ-ଭାରତୀୟ ତରୁଣ ଦୁଇଜଣ । ସେମାନେ ତାଙ୍କ ଆଦିବାସୀ ପାରମ୍ପରିକ ସେଇ ସାତସୁରିଆ ବଂଶୀ ବଜାଉଥାନ୍ତି, ଯୋଉ ପ୍ରକାର ବଂଶୀ ଦେଖିଥିଲୁ ଆମେ ଟିକେ ଆଗରୁ ମ୍ୟୁଜିୟମ୍‌ରେ ପ୍ରଦର୍ଶିତ ସାମଗ୍ରୀ ଗୁଡିକ ଭିତରେ ।

ତରୁଣ ଦୁହେଁ ଯୋଡିଏ ଅଲଗା ଅଲଗା ବଂଶୀ ବଜାଉଥାନ୍ତି । ସେମାନଙ୍କ ସହିତ ସଂଗତ କରୁଥାନ୍ତି ଅନ୍ୟ ଦୁଇଜଣ– ଜଣକ ହାତରେ ଗୋଟିଏ ଗିଟାର, ଅନ୍ୟଜଣକ ତାଳ ଦେଉଥାଏ ଡ୍ରମ୍‌ରେ । ଡ୍ରମ୍ ବୋଇଲେ ଭୂଇଁ ଉପରେ ରଖାଯାଇଥିବା ଆମ ଓଡିଶାର ଆଦିବାସୀଙ୍କ ଢେମସା ବାଦ୍ୟ ପରି ଚମଡା ଛୁଆଣି ଏକ ବିଶାଳ ବାଦ୍ୟ । ଚାରିଜଣଯାକ ବାଦକ ଦିଶୁଥାନ୍ତି ଚାରିଭାଇ ପରି– ଏକା ପ୍ରକାର ପୋଷାକ– ଧଳା ଫୁଲପ୍ୟାଣ୍ଟ ଧଳା ଶାର୍ଟ ଉପରେ ବାଦାମୀ ରଙ୍ଗର ଜ୍ୟାକେଟ୍ ।

ସେମାନେ ଯେଉଁ ସ୍ୱର ବଂଶୀରେ ବଜାଉଥା'ନ୍ତି ସେ ବିଷୟରେ ଜଣେ ବ୍ୟକ୍ତି ପ୍ରାକ୍-ସୂଚନା ଦେଇ କହୁଥାନ୍ତି– ଏ ହେଉଚି ଆଣ୍ଡିଜ୍ ପର୍ବତ ଅଞ୍ଚଳର ବନପକ୍ଷୀଙ୍କ ସ୍ୱର– ଏ

ହେଲା ଚିଲିର, ଏ ହେଲା ପେରୁର, ଏ ହେଲା ବଲିଭିଆର ଆଉ ଏ ହେଲା କଲମ୍ବିଆର ଚଢେଇଙ୍କ ଗୀତ । ତଦନୁଯାୟୀ ବଂଶୀର ସ୍ୱର ବଦଳୁଥାଏ— ତା' ସହିତ ଗୀଟାରର ସଙ୍ଗୀତ ଓ ଡ୍ରମ୍‌ବାଦ୍ୟର ନାଦ । ପକ୍ଷୀ କଣ୍ଠ ସ୍ୱରର ଅନୁକରଣରେ ବାଜୁଥିବା ବଂଶୀର ସ୍ୱର ମଝିରେ ମଝିରେ ବଦଳିଯାଉଥାଏ— କେତେବେଳେ ମୋଟା ପର୍ଦ୍ଦାର ଫାପ୍‌ସା ଫାପ୍‌ସା ସ୍ୱର ତ କେତେବେଳେ ଏକେବାରେ ସରୁ କୋଇଲିର ପଞ୍ଚମ ତାନ ।

ଆମେ ତନ୍ମୟ ହେଇ ଶୁଣୁଥାଉ ସେ ଅପୂର୍ବ ପ୍ରାକୃତିକ ସ୍ୱର ସମନ୍ୱୟରୁ ସୃଷ୍ଟ-ନୈସର୍ଗିକ ସଂଗୀତର ସିମ୍ଫୋନି ଗୁଡିକୁ । କେତେ ସମୟ କେଜାଣି ବିତିଗଲାଣି ଏ ଭିତରେ । ଧ୍ୟାନ ଭଙ୍ଗହେଲା କାନପାଖେ ମୋ ଝିଅ ସୁଲୁମାର ଫିସଫିସ୍‌ରେ, "ନନା, ପାଞ୍ଚଟା ବାଜିଲାଣି— ଆମକୁ ଏଇଲେ ଡ୍ରାଇଭ୍ କରିବାକୁ ହବ ଦୁଇଶହ ମାଇଲ୍ ଘରକୁ ।"

ବାଧ୍ୟହେଇ ଉଠିଲୁ ସମସ୍ତେ । ହଠାତ୍ ମନେପଡିଲା— ସେଇ ସମ୍ବଲପୁରୀ ଖଣ୍ଡୁଆ ପରିହିତା ମହିଳା ଶ୍ରୋତାଙ୍କ କଥା । ଦର୍ଶକ ଗହଣରେ ସେ ସେମିତି ବସିଥାନ୍ତି ସେଇଠି ଏକ ଜାଗାରେ ଆଖି ବୁଜି ଧ୍ୟାନମଗ୍ନ ଅବସ୍ଥାରେ । ବିସ୍ମିତ ହେଲି— ନିଶ୍ଚୟ କେହି ଜଣେ ସାଧିକା ହୋଇଥିବେ ଏ ନାରୀ, ନଚେତ୍ ଶରୀରର ଏ ନିଶ୍ଚଳତା ତ ଆଦୌ ସମ୍ଭବ ନୁହେଁ ଜଣେ ସାଧାରଣ ସ୍ତ୍ରୀଲୋକ ପକ୍ଷରେ ।

କୁଞ୍ଜବନର ସଂଗୀତ ଆସର ଛାଡି ବାହାରକୁ ବାହାରି ଆସିଲୁ ଆମେ । ସୁଲୁମା କହିଲା, "ଫେରିବାପୂର୍ବରୁ ଏମାନଙ୍କର ହାଟ ଭିତରେ ଟିକେ ବୁଲିଦେଇ ଯିବା— ଚାଲ ।"

ଏଠାକାର ଆଦିବାସୀଙ୍କ ହାଟ ଆମ ଓଡିଶାର ଆଦିବାସୀଙ୍କ ହାଟ ପରି ଅନେକଟା । ସେମିତି ଅସ୍ଥାୟୀ ଦୋକାନ ସବୁ । ଅଧିକାଂଶ ଦୋକାନରେ ଝୁଲୁଥାଏ ଫର୍‌ପୋଷାକ, ମାଳି ଇତ୍ୟାଦି । ସେଥିରେ ମୁଖ୍ୟତଃ ଧଳା ଓ ବାଦାମୀରଙ୍ଗର ଭାଲୁ, ରେକୁନ୍ ଇତ୍ୟାଦି ପଶୁଚମଡାରେ ତିଆରି ଜ୍ୟାକେଟ୍ ଓ ନାନା ଜାତିର ରଙ୍ଗିନ୍ ପକ୍ଷୀପରର ପୋଷାକ ଓ ଟୋପି ପ୍ରଭୃତି । ପଶୁ ଶିଙ୍ଗ ହାଡରୁ ତିଆରି ହାତବାଡି, ମାଳି, ବୋତାମ ସମେତ ଘର ସଜେଇବା ପାଇଁ ନାନାପ୍ରକାର ସୌଖୀନ୍ ଜିନିଷ ସହିତ ବହୁପ୍ରକାର ହାତକାମ, କ୍ରାଫ୍ଟ ଜିନିଷ ଇତ୍ୟାଦି ।

ଗୋଟାଏ ଦୋକାନ ଆଗରେ ଠିଆହେଇ ଭିତରକୁ ଆଖି ବୁଲେଇଲି । ଦୋକାନଦାର ଜଣେ ମଧ୍ୟ-ବୟସ୍କ ଲୋହିତ-ଭାରତୀୟ— ମୋ' ମୁହଁକୁ କିଛି ସମୟ ଚାହିଁରହିଲେ । ପଚାରିଲେ— Are you from India ? ମୋ' ଉତ୍ତର ଶୁଣି ଆଗ୍ରହ ସହକାରେ ଆମକୁ ସଙ୍ଖୋଳିଲେ । ଦୋକାନ ସାମ୍ନା ବେଞ୍ଚରେ ବସିଥାନ୍ତି ଆଉ ଦି'ଜଣ ଲୋକ— ସେମାନେ ବି ସେଇ ଆମେରିକାନ୍ ଇଣ୍ଡିୟାନ୍ ପୁରୁଷ ଲୋକ । କିନ୍ତୁ ସେମାନଙ୍କ ଚେହେରା ଦେଖିଲେ କେହି ଭାବିବ ନାହିଁ ଏମାନେ ଆମ ଭାରତର ଲୋକ ନୁହନ୍ତି । ଆତ୍ମୀୟତା ସୃଷ୍ଟିକରିବା ପାଇଁ କହିଲି—ଆପଣମାନେ ବି ତ ଆମ ପରି ଦିଶୁଚନ୍ତି ଚେହେରାରେ । କହିପାରିବେ ଆପଣମାନଙ୍କୁ

କାହିଁକି ନାଁ ଦିଆଯାଇଚି ଆମେରିକାନ୍ ଇଣ୍ଡିୟାନ୍‌ସ୍ ?

ସେମାନଙ୍କ ଭିତରୁ ଜଣେ ଉତ୍ତର ଦେଲେ, "You are real Indians, we are but your shadows.This mischief is done by Columbus who gave us this dogcollar ! He was searching a sea route to India, but landed here in our land and named us Indians.We have been wearing this collar since 1492."– (ତମେମାନେ ହେଲ ଖାଣ୍ଟି ଭାରତୀୟ ଲୋକ, ଆମେ ହେଲୁ ତମ ଛାଇ ! ଏ ବଦ୍‌ମାସି ହେଲା ସେଇ କଲମ୍ବସ୍‌ର । କଲମ୍ବସ୍ ସମୁଦ୍ରଯାତ୍ରା କରି ଇଣ୍ଡିଆକୁ ବାଟ ଖୋଜୁଥିଲା; କିନ୍ତୁ ଆସି ପହଞ୍ଚିଗଲା ଏଠି ଆମେରିକାରେ ୧୪୯୨ରେ । ତା'ରି ପରଠୁଁ ତ ଆମେ ପିନ୍ଧିଚୁ ନାମର ଏ କୁକୁର ପଟିଟାକୁ) ।"

ସେମାନଙ୍କର ଐତିହାସିକ କ୍ରୋଧ କଲମ୍ବସ୍‌ଙ୍କ ଉପରେ ବହୁକାଳର, ଆଉ ସେ କ୍ରୋଧାଗ୍ନି ଜଳିଚାଲିଚି ପାଞ୍ଚଶହବର୍ଷ ଧରି । ୧୪୯୨ରେ କଲମ୍ବସ୍‌ଙ୍କ ପାଲଟଣା ବୋଇତ ତିନିଟା ଆମେରିକା ଉପକୂଳରେ ଲାଗିବା ପରେ ତାଙ୍କ ତୁଣ୍ଡରୁ ବାହାରି ଥିବା କୁହାଟ– ଇଣ୍ଡିଆ ! ଇଣ୍ଡିଆ ! ହେଇଟି ତ ଇଣ୍ଡିଆରେ ପହଞ୍ଚିଚୁ ଆମେ ! କଲମ୍ବସ୍ ତାଙ୍କ ସ୍ୱପ୍ନର ଭାରତକୁ ସାମୁଦ୍ରିକ ଜଳପଥ ଖୋଜିବାକୁ ଆସି ଶେଷରେ ପହଞ୍ଚିଯାଇଥିଲେ ଏକ ଅଜଣା ମହାଦେଶର ଉପକୂଳର କୌଣସି ଏକ ଦ୍ୱୀପରେ ଯାହାର ଲୋକମାନଙ୍କ ଚେହେରା ଦେଖି ସେ ତାଙ୍କ ଆବିଷ୍କୃତ ଭୂଖଣ୍ଡର ନାଁ ଦେଇଥିଲେ, "ଇଣ୍ଡିଆ" । କଲମ୍ବସଙ୍କ ମୁହଁରୁ ବାହାରିଥିବା ଶବ୍ଦଟା ଗତ ପାଞ୍ଚଶହ ବର୍ଷ ଧରି ଲାଖି ରହିଯାଇଚି ଏଇ ବିଶାଳ ମହାଦେଶ ଦ୍ୱୟର ଅଧିବାସୀଙ୍କ ସମେତ ଆଖ ପାଖ ସମସ୍ତ ଦ୍ୱୀପପୁଞ୍ଜର ମାନବ ଗୋଷ୍ଠୀ ଉପରେ !

କିଛି ସମୟ କଲମ୍ବସଙ୍କୁ ନେଇ ଗପ ଜମିଲା ଆମ ଦୁଇ ପ୍ରକାର ଭାରତୀୟଙ୍କ ଭିତରେ । ପରେ ପରେ କଥାର ମୋଡ ବୁଲାଇ ମୁଁ ପଚାରିଲି, "ଆଚ୍ଛା ବନ୍ଧୁ, ତମେମାନେ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ କୁଣ୍ଠିତ ହେବ ନାହିଁ ନିଶ୍ଚୟ । ତମ ନିଜ ଭାଷାରେ ଲିଖିତ କିଛି ସାହିତ୍ୟ (ଲିଟରେଚର୍) ଅଛିକି ? ଯଦି ଅଛି କୋଉଠି ମିଳିବ ? ଏଠି ଏ ହାଟ ଭିତରେ ଗୋଟିଏ ବି ବହି ଦୋକାନ ତ କୋଉଠି ଦେଖାଯାଉନି. . ."

"ବହୁତ ଲିଟରେଚର୍ ଅଛି ଆମର"– ଉତ୍ତର ମିଳିଲା, "ବହୁ ଉଚ୍ଚଶିକ୍ଷିତ ପଣ୍ଡିତ ଜ୍ଞାନୀଲୋକ ଅଛନ୍ତି ଆମର । ଆମେରିକା, କ୍ୟାନେଡା, ୟୁରୋପର ପ୍ରସିଦ୍ଧ ୟୁନିଭର୍ସିଟିମାନଙ୍କରୁ ଡକ୍ଟରେଟ୍ ଡିଗ୍ରୀ ପାଇଥିବା ବଡ ବଡ ପ୍ରଫେସର୍ ଅଛନ୍ତି ଆମ ନିଜ ଲୋକେ । ସେମାନେ କଳା, ସାହିତ୍ୟ, ବିଜ୍ଞାନ ଦର୍ଶନ ଇତ୍ୟାଦିରେ ବହୁ ଗବେଷଣାମୂଳକ ବହି ଲେଖିଛନ୍ତି । ତମେ ମେକ୍ସିକୋର ମାୟା ଆଜ୍‌ଟେକ୍ ଇତ୍ୟାଦି ସଭ୍ୟତା କଥା ଶୁଣିଥିବ ନିଶ୍ଚେ ? ସେ ସବୁ ଉପରେ ବହୁ ଗବେଷଣା କରିଚନ୍ତି ଆମ ଲୋକେ । ବହିଦୋକାନ ଖୋଜୁଚ– ଯାଅ ସେ ମ୍ୟୁଜିୟମ୍ ପାଖକୁ– ସେଠି ଦେଖିବି ବଡ ବଡ ବହି ଦୋକାନ ।"

ସେ ଖବର ପାଇ ଆମେ ବାହାରିଲୁ ପୁଣିଥରେ ମ୍ୟୁଜିୟମ୍ ପାଖରେ ବହିଦୋକାନ ଖୋଜିବାକୁ । ବିଦାୟ ପୂର୍ବରୁ ମୁଁ ସେ ଲୋହିତ ଭାରତୀୟଙ୍କୁ ମୋ ମନକଥା ଖୋଲି ପଚାରିଲି– "ବନ୍ଧୁ, କିଛି ମନେ କରିବ ନାଇଁ, ମୋର ଆଉ ଗୋଟାଏ ପ୍ରଶ୍ନ ରହିଗଲା ।''– ସ୍ୱରରେ ଯଥାର୍ଥ ଜିଜ୍ଞାସା ସହିତ ପ୍ରକାଶ କଲି ମୋ ମନକଥା, "ଶୁଣିଚି ଆମେରିକାନ୍ ଇଣ୍ଡିୟାନ୍‌ମାନେ ୱିଚ୍‌କ୍ରାଫ୍ଟ ଜାଣନ୍ତି । କୌଣସି ଜଣେ ୱିଚ୍‌ଙ୍କୁ ମୁଁ ଭେଟିପାରିବି କି ଏ ମେଳାରେ ?''

ମୋ ଥାଥାମାମା ଉଚ୍ଚାରଣର ଅର୍ଥ ନିଶ୍ଚୟ ଠିକ୍ ବୁଝିନେଲା ଲୋକଟି । କହିଲା– ୱିଚ୍ ଖୋଜୁଚ ? ହେଇ ଦେଖ ସେଠି– ସେ ଆମର ଜଣେ ପୁରୁଖା ୱିଚ୍ ବୁଢୀ ଏ ଅଂଚଳର ।''

ଦୋକାନ ଭିତରକୁ ଭଲକରି ଅନାଇଲି ଏଥର । ଦେଖିଲି ଜଣେ ବୁଢୀଲୋକ ଅଲଗା ହେଇ ବସିଚନ୍ତି ନିରୋଳା ଜାଗାରେ ଚେୟାର୍ ଖଣ୍ଡକ ଉପରେ । ତାଙ୍କ ପରିଧାନ ଲୋହିତ ଭାରତୀୟଙ୍କ ସ୍ୱତନ୍ତ୍ର ଧରଣର ପୋଷାକ ପରି ବେକରୁ ପାଦ ପର୍ଯ୍ୟନ୍ତ ଲମ୍ବା ଆଉ ଢିଲା । ମୁହଁରେ ବୟସର ଛାପ । ଭୂରୁ ଦୁଇଟା ସୁସ୍ପଷ୍ଟ ଓ କପାଳ ପ୍ରଶସ୍ତ । ବାଳ ପାଚିଯାଇଥାଏ, ମୁହଁରେ ବୟସର ରେଖା ପଡିଗଲାଣି ଅନେକ । ଦୁଇ ଓଠ ମଝିରେ ଖଣ୍ଡେ ଜଳନ୍ତା ସିଗାରେଟ୍ ଗୁଞ୍ଜିଦେଇ ସେ ବସିଥାନ୍ତି ଗୋଟାଏ ଢଙ୍ଗରେ ଯାହାକୁ ଦେଖିଲେ ମନେହେବ ସେ ଏଠି ଥାଇ ମଧ୍ୟ ନାହାନ୍ତି ବି ।

''ମୁଁ ଏ ଭଦ୍ରମହିଳାଙ୍କ ସାଙ୍ଗେ କଥା ହେଇପାରିବି ?''– ପଚାରିଲି ଦୋକାନ ସାମ୍ନାରେ ବସିଥିବା ସେଇ ଲୋହିତ ଭାରତୀୟଙ୍କୁ ।

''ନା– ଏଇଟା ଠିକ୍ ସମୟ ନୁହେଁ ବୋଧହୁଏ– ବୁଢୀ ବର୍ତ୍ତମାନ ଏଠି ନାହାନ୍ତି । ସେ କୋଉଠି ଥିବେ ଏଇଲେ କିଏ ଜାଣେ ! ୱିଚ୍‌ମାନେ ଆଷ୍ଟ୍ରାଲ୍ ଫ୍ଲାଇଟ୍ କରନ୍ତି । ପରେ ଆସନ୍ତୁ ଯଦି କଥାବାର୍ତ୍ତା କରିବେ. . .''

ମୋର ଆଉ ଗୋଟାଏ ପ୍ରଶ୍ନ ରହିଗଲା– ଭଦ୍ରଲୋକଙ୍କୁ ମନଖୋଲି ପଚାରିଲି, "ଆଚ୍ଛା, ଟିକେ ପୂର୍ବରୁ ସେଠି ବଣ ଭିତରେ ମ୍ୟୁଜିକ୍ ଜାଗାରେ ଜଣେ ସୁନ୍ଦରୀ ନାରୀଙ୍କୁ ଦେଖିଥିଲି– ସେ ଦିଶୁଥାନ୍ତି ଠିକ୍ ଆମ ଭାରତର ଜଣେ ବିଖ୍ୟାତ ନର୍ତ୍ତକୀଙ୍କ ପରି– ସେ କିଏ କହିପାରିବେ ? ତାଙ୍କ ବସିବା ଠାଣି ଅବିକଳ ଏଇ ୱିଚ୍ ବୁଢୀଙ୍କ ପରି; କିନ୍ତୁ ସେ ଜଣେ ପଚିଶ ତିରିଶ ବର୍ଷ ବୟସର ନାରୀ ହେବେ ନିଶ୍ଚୟ...''

ମୋ ପ୍ରଶ୍ନ ଶୁଣି ଲୋହିତଭାରତୀୟ ଲୋକଟି ଟିକେ ହସି କହିଲେ, "ହେଇଥାଇପାରେ ଆମର ଏ ୱିଚ୍ ବୁଢୀ ଇଚ୍ଛାକଲେ ଷୋଳବର୍ଷର ଯୁବତୀ ପାଲଟିଯାଇପାରନ୍ତି, ଏପରିକି ପଶୁ ପକ୍ଷୀ ବି ପାଲଟିଯାଇପାରନ୍ତି. . . ଏଇ ବୁଢୀ ଯେ ସେଠି ସଂଗୀତ ଆସରରେ ବସିନଥିବେ କିଏ କହିବ !''

ହାଟ ବୁଲିବା ସେଇଠି ସାରି ଆମେ ପୁଣି ଫେରିଗଲୁ ମ୍ୟୁଜିୟମ୍ ପାଖକୁ । ସେଠି ଦେଖିଲୁ କେତେଗୁଡିଏ ବହିଦୋକାନ ଅଛି ଯାହାକୁ ଆମେ ସକାଳେ ଭୁଲ୍‌ରେ ଛାଡିଯାଇଥିଲୁ ।

ସେ ଦୋକାନ ଗୁଡିକରେ ଥାକଥାକ ବହି ଭର୍ତ୍ତିହେଇଥାଏ– ସବୁ ଗୁଡିକ ଇଂରେଜୀ ଭାଷାରେ । ବେଶ୍ ବଡ ବଡ ମୋଟା ମୋଟା ସୁଦୃଶ୍ୟ ବନ୍ଧେଇ ବହି ସେ ସବୁ । ଆଧୁନିକ ପ୍ରିଣ୍ଟିଂ ଟେକ୍‌ନୋଲଜିର ପ୍ରୋଡକ୍‌ସନ୍ ଓ ବେଶ୍ ମୂଲ୍ୟବାନ୍ ବହି ମଧ୍ୟ । ଥାକରୁ କେତେଖଣ୍ଡ ବହି କାଢିଲି । ଦେଖିଲି-ସେସବୁର ଲେଖକ ହେଲେ– ଆମେରିକାନ୍ ଇଣ୍ଡିୟାନ୍ ନାମର ଲେଖକ । ଦୁଇ ଖଣ୍ଡି ବହି ବାଛିଲି କିଣିବା ପାଇଁ । ସେ ଭିତରୁ ଖଣ୍ଡେ ହେଲା– "The Witch of Going Snake and other Stories, *by Robert Coneley*" ଓ "The Primal Mind *by Jamake Highwater* ।"

ଏ ଦୁଇଖଣ୍ଡ ବହିର ଲେଖକ ହେଲେ ଦୁଇ ଉଚ୍ଚ ଶିକ୍ଷିତ ଆମେରିକାନ୍ ଇଣ୍ଡିୟାନ୍ ସ୍କଲାର୍ । ପ୍ରଥମଟି ଏକ ଗଳ୍ପ ସଂକଳନ, ଆଉ ଦ୍ୱିତୀୟଟି ଆମେରିକାର ଆଦିବାସୀଙ୍କ ସ୍ୱତନ୍ତ୍ର କଳାଦୃଷ୍ଟି ଓ ବିଚାର, ସାହିତ୍ୟ ଓ ଦର୍ଶନର କେତେକ ତାତ୍ତ୍ୱିକ ସମାଲୋଚନା ପ୍ରବନ୍ଧର ସମାହାର । ଅତ୍ୟନ୍ତ ମୂଲ୍ୟବାନ୍ ଏ ବହି ଦୁଇଟିକୁ ପଢି ମୁଁ ମାୟା ସଭ୍ୟତା ସଂପର୍କରେ ବହୁ ଅନ୍ତର୍ଦୃଷ୍ଟି ଲାଭକରିପାରିଚି ।

ଆମର ଫେରନ୍ତି ଯାତ୍ରା ଶେଷହେଲା ଖୁବ୍ ସୁରୁଖୁରୁରେ । ଝିଅ ବାଟ ହୁଡିନଥିଲା ଆଉ ସକାଳେ ୱାସିଂଟନ୍‌କୁ ବାଟ ଖୋଜି ବାରମ୍ବାର ଭୁଲ୍‌ରାସ୍ତାରେ ଡ୍ରାଇଭିଂ କଲା ପରି । ଗ୍ଲାସ୍‌ଟନ୍‌ବରିରେ ପହଞ୍ଚିଲୁ ରାତି ଆଠଟା ବେଳକୁ ।

## ନାଏଗ୍ରା ଭ୍ରମଣ–

ତା ୧୭ ଅଗଷ୍ଟ, ୧୯୯୭ । କ୍ୟାଣ୍ଟନ୍‌ରୁ ହାଇୱେ ନମ୍ବର ୭୭ ଏବଂ ପରେ ହାଇୱେ ନମ୍ବର ୯୦ ଧରି, ଈରିହ୍ରଦ କୂଳେ କୂଳେ ଉତ୍ତରପୂର୍ବ ଦିଗକୁ ଡ୍ରାଇଭ୍ କରୁଥାନ୍ତି ମହେଶ । ସୁଲୁ ରୋଡ୍‌ମ୍ୟାପ ଧରି ବସିଥାଏ ମହେଶଙ୍କ ଡାହାଣ ପଟେ ସାମ୍ନା ପ୍ୟାସେଞ୍ଜର୍ ସିଟ୍‌ରେ । ନିରୁପମା ଆଉ ମୁଁ ପଛ ସିଟ୍‌ରେ । ଆମ ସାଥିରେ ଆମର ଦୁଇ ନାତି ଅମୃତ, ମନୀଶ । ଖରାଦିନ ସରିସରି ଆସୁଥାଏ । ରାସ୍ତାକଡରେ ଆକାଶଛୁଆଁ ଘଞ୍ଚ ପାଇନ୍ ଜଙ୍ଗଲ । ବଣର ଗଛପତ୍ର ଚିକ୍ ଚିକ୍ କରୁଥାନ୍ତି ଖରାରେ । ଏ ଦେଶର ଶରତଋତୁ ବା ପତ୍ରଝଡା ଋତୁ ଅର୍ଥାତ୍ 'ଫଲ୍‌ର' ଆହୁରି ଅନେକ ଆଗକୁ । କିନ୍ତୁ ପ୍ରକୃତିର ରୂପରୁ ଆଉ ସୂର୍ଯ୍ୟର ନରମି ଆସୁଥିବା ଆଲୁଅର ତେଜରୁ ଆଖିରେ ଭାସିଯାଉଥାଏ ଓଡିଶାର ଗାଁଗଣ୍ଡାରେ ଆଶ୍ୱିନମାସର ଖରା ପରି ରଙ୍ଗ ଚତୁର୍ଦ୍ଦିଗରେ ।

''ଏ ବର୍ଷ ଦଶହରା କେବେ କି ?''– ପଚାରିଲି ପାଖରେ ବସି ପିଲାଙ୍କ ସଙ୍ଗେ ଗେଲ ହେଉଥିବା ନିରୁପମାଙ୍କୁ ।

''ଅକ୍ଟୋବର... ଆହୁରି ଦି'ମାସ ଅଛି ଆଗକୁ ପରା''– ନିରୁପମା ଓଲଟି ପଚାରିଲେ, ''ଅଶିଣ ମାସର ଖରା ବଣପାହାଡ ଉପରେ ନାଚୁଚି କେମିତି ଦେଖି

ମନେପଡିଯାଉଚି କି ଦୁର୍ଗାପୂଜା ?''

''କିନ୍ତୁ, ଏଠି ଅଶିଣ ମାସକୁ ଦେବୀ ବିଜେ କରନ୍ତି ନାହିଁ ଏ ଦେଶକୁ । ତାଙ୍କ ବାପଘର ହିମାଳୟ ତ ଏଠୁ ଦଶହଜାର ମାଇଲ୍ ଦୂର''– ମୁଁ ଥଟ୍ଟା କଲା ପରି ମୋ କୋଳରେ ବସିଥିବା ସାନ ନାତି ମନୀଶକୁ ଅନେଇଲି ।

"But we observe Halloween here in our country'' –ଆମ ଓଡିଆ କଥାବାର୍ତ୍ତାରୁ ଠିକ୍ ଅନୁମାନ କଲା ଆଠ ବର୍ଷର ନାତି ମନୀଶ– ଆମେ କ'ଣ କଥାବାର୍ତ୍ତା ହଉଚୁ । ସେ ଓଡିଆ ବୁଝେ– କିନ୍ତୁ କହିବାକୁ ଲାଜକରେ । ଇଂଲିସ୍‌ରେ ଯାହା କହିଲା ତା' ଅର୍ଥ ହେଲା– "ଏଠି ଆମେ ହାଲୋଡ୍ୱିନ୍ ପର୍ବ ପାଳୁ ।''

ସେ ଆହୁରି ଖବର ନେଇ କହିଲା– 'ଜାଣିଚ, ହାଲୋଡ୍ୱିନ୍ ରାତିରେ ଆମର ଏଠି ଡେଭିଲ୍ (ସଇତାନ୍) ବାହାରେ । ଘର ଘର ବୁଲି ରାତିରେ ଡେଭିଲ୍ ଲୋକଙ୍କ ଘର କବାଟ ବାଡାଏ । ଘରବାଲାଙ୍କୁ ଡରାଏ । ସ୍ତ୍ରୀଲୋକମାନେ ଡେଭିଲ୍‌କୁ ଖୁସି କରିବାକୁ ଚକୋଲେଟ୍ ଆଉ ସ୍ୱିଟସ୍ ପ୍ରେଜେଣ୍ଟସ୍ ଦେଇ ବିଦାକରନ୍ତି । ତୁମେ ଯଦି ରହିଯାଆନ୍ତ ଆମ ଘରେ ଆଉ ଦି'ମାସ ତେବେ ଦେଖନ୍ତ ମୁଁ କେମିତି ଡେଭିଲ୍‌ର ମୁଖା ଆଉ ପୋଷାକ ପିନ୍ଧି ସନ୍ଧ୍ୟାବେଳେ ବାହାରନ୍ତି । ଘରଘର ବୁଲି କେତେ ଚକୋଲେଟ୍ ଆଦାୟ କରନ୍ତି– ଆମେ ଖାଆନ୍ତେ । ଅଜା, ରହିବଟି ଏଥର ହାଲୋଡ୍ୱିନ୍‌କୁ ?

ହାଲୋଡ୍ୱିନ୍ ଏ ଦେଶର ଗୋଟିଏ ବଡ ସାମାଜିକ ପର୍ବ । ଗଲାଥର ଆମେରିକା ବୁଲି ଆସି ଦେଖିଚି ମୁଁ ହାଲୋଡ୍ୱିନ୍ ପର୍ବ ବେଳର ସେ ଦୃଶ୍ୟ । ଇଣ୍ଟରନେଟ୍‌ରୁ ଦେଖିଥିଲି– ହାଲୋଡ୍ୱିନ୍ ହେଉଚି ୟୁରୋପର ମୂଳ ଅଧିବାସୀ ସେଲଟିକ୍‌ସ୍‌ମାନଙ୍କର ଗୋଟାଏ ବଡ-ପର୍ବ । ସେଲଟିକସ୍‌ମାନେ ଥିଲେ ଠିକ୍ ଭାରତୀୟଙ୍କ ପରି ପ୍ରକୃତି ପୂଜକ । ସେମାନେ ପିତୃପୁରୁଷଙ୍କୁ ପୂଜାକରୁଥିଲେ, ମୂର୍ତ୍ତି ପୂଜା କରୁଥିଲେ । ପାହାଡ ପର୍ବତ ନଦୀ ଆକାଶକୁ ଦେବତା ଜ୍ଞାନରେ ପୂଜା କରୁଥିଲେ । ସେ ଭାଷା ଅନେକଟା ସଂସ୍କୃତ ପରି । ସେ ଭାଷା ଏପର୍ଯ୍ୟନ୍ତ ବଞ୍ଚିଚି ଆୟରଲ୍ୟାଣ୍ଡ, ସ୍କଟଲ୍ୟାଣ୍ଡ ଓ ୟୁରୋପର ଅନ୍ୟ କେତେକ ଅଞ୍ଚଳରେ । ଆଉ ସେମାନଙ୍କ ସାହିତ୍ୟ ଥିଲା ମୌଖିକ– ଠିକ୍ ବୈଦିକ ଆର୍ଯ୍ୟମାନଙ୍କ ପରି । ସେମାନଙ୍କର କୌଣସି ଲିଖିତ ଗ୍ରନ୍ଥ ନଥିଲା, ସବୁ ମୌଖିକ । ୟୁରୋପର ପ୍ରମୁଖଅଂଶ ଥିଲା ସେମାନଙ୍କର ଶାସନାଧୀନ ରାଜ୍ୟ । ସେମାନେ ହାଲୋଡ୍ୱିନ୍ ପର୍ବ ପାଳୁଥିଲେ । ଠିକ୍ ଏଇ ପରଂପରା ମଧ୍ୟ ଏପାଖେ ଆଟଲାଣ୍ଟିକ୍ ଆରପାରିର ଆମେରିକା ମହାଦେଶର ମୂଳ ଅଧିବାସୀମାନଙ୍କ ଭିତରେ ପ୍ରଚଳିତ ଥିଲା । ଏବେ ମଧ୍ୟ ଆମେରିକାର ମୂଳ ଅଧିବାସୀ ବା ଲୋହିତ ଭାରତୀୟ ଲୋକଙ୍କର ହାଲୋଡ୍ୱିନ୍ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପର୍ବ । ଏ ପର୍ବର ମୂଳତତ୍ୱ ହେଲା ଏଇ ଶରତଋତୁରେ ପିତୃଲୋକରୁ ପ୍ରେତାତ୍ମା ରୂପରେ ପୂର୍ବପୁରୁଷମାନେ ମର୍ତ୍ତ୍ୟଲୋକକୁ ଆସନ୍ତି । ସେମାନଙ୍କୁ ସ୍ୱାଗତ କରିବାକୁ ଏ ପର୍ବ ପାଳନ୍ତି ଅଦିବାସୀମାନେ

ଏସବୁ ଦେଶରେ । ୟୁରୋପୀୟମାନେ କଲମ୍ବସ୍‌ଙ୍କର ଆମେରିକା ଆବିଷ୍କାର ପରେ ଏ ଭୂଖଣ୍ଡକୁ ଅଧିକାରକରି ଆଦିବାସୀମାନଙ୍କୁ ବିତାଡିତ କଲେ ବଣଜଙ୍ଗଲକୁ । ତଥାପି ସେମାନେ ଆଦିବାସୀମାନଙ୍କର ଅନେକ ପରମ୍ପରାକୁ ନିଜ ଧର୍ମ ଓ ସଂସ୍କୃତି ସହିତ ମିଶାଇ କେତେକ ପର୍ବ-ପର୍ବାଣି ପାଳନ କରିଆସୁଚନ୍ତି– ସେ ଭିତରେ ହାଲୋଓ୍ୱିନ୍ ଅନ୍ୟତମ ।

୧୯୯୩ରେ ଏଇ ହାଲୋଓ୍ୱିନ୍ ପର୍ବ ପାଳନର ବ୍ୟବସ୍ଥାକୁ ମୁଁ ଲକ୍ଷ୍ୟ କରିଥିଲି ଏଠି କନେକ୍ଟିକଟ୍‌ରେ ଝିଅ ଜୋଇଁଙ୍କ ଘରେ ରହୁଥିବା ସମୟରେ । ପର୍ବର କିଛିଦିନ ପୂର୍ବରୁ ଦେଖିଛି ଏଠାକାର ଗ୍ରୋସେରି ଷ୍ଟୋର୍ ଓ ଦୋକାନମାନଙ୍କ ଆଗରେ ଜମାହେଇଥାଏ ଗୁଡାଏ କଖାରୁ– ଅତି ବଡ ବଡ ବୋଇତି କଖାରୁ । ଗୋଟାଏ ଗୋଟାଏ କଖାରୁର ଆକାର ବଡ ବେତାଟାଏ କି ଟୋକେଇଟାଏ ପରି । ଏଡେ ଏଡେ ବଡ କଖାରୁ ମୁଁ କେବେ ଦେଖିନଥିଲି ପୂର୍ବରୁ । କ'ଣ ପାଇଁ ଦୋକାନ ଆଗରେ ଗଦାହେଇଚି ଏକଜିବିସନ୍ କଲା ଭଳି ଏତେ ଏତେ ବଡ କଖାରୁ ବୋଲି ପଚାରିଲି ଝିଅକୁ । ସେ କହିଲା– ଆଗକୁ ପରା ଆସୁଚି ହାଲୋଓ୍ୱିନ୍ ! ଦେଖିବ– ଏଇ କଖାରୁ ସବୁକୁ କୋରି, ଖୋଳ କରି ଓ ଖୋଳ ଗୁଡାକ ଉପରେ ଛୋଟଛୋଟ କଣା କରି ଗୋଟାଏ ଗୋଟାଏ ଭୟଙ୍କର ମୁଖା ଭଳି ଚିତ୍ର କରାଯାଇଥିବ । କଖାରୁ ଖୋଳ (ତୁମ୍ବା) ଭିତରେ ଗୋଟାଏ ଗୋଟାଏ କ୍ୟାଣ୍ଡେଲ୍ ବା ଇଲେକ୍‌ଟ୍ରିକ୍ ବଲବ୍ ଜଳାଇ ଟାଙ୍ଗିଦିଆଯିବ ଘର ସାମନା ଝରକା ଉପରେ । କଣାଗୁଡାକ ଭିତରୁ ଆଲୁଅ ଜୁଳୁଜୁଳୁ ହେଇ ପଦାକୁ ଦିଶୁଥିବ ଗୋଟାଏ ଭୟଙ୍କର ମଣିଷର ମୁହଁ ପରି । ଏଇଆକୁ ସେମାନେ କହନ୍ତି ସଇତାନ୍ ବା ଡେଭିଲ୍‌ର ରୂପ ।

ହାଲୋଓ୍ୱିନ୍ ସନ୍ଧ୍ୟାଟା ଏ ଦେଶର ପିଲାମାନଙ୍କ ପାଇଁ ଗୋଟିଏ ବଡ ଆନନ୍ଦର ଦିନ । ସେଥର ଦେଖିଥିଲି ଆମର ଦୁଇ ନାତି ବେଶପଟା ହଉଥାନ୍ତି ହାଲୋଓ୍ୱିନ୍ ସନ୍ଧ୍ୟାର ଅଭିଯାନ ପାଇଁ । ବେଶ ହେଇ ବାହାରିଲେ ସେ ଦୁହେଁ ଯୋଡାଏ ସଇତାନ ଭଳି ଡ୍ରେସିଂରୁମ୍‌ରୁ । ଦେଖିଲେ ଚମକିଯିବ ମଣିଷ ନିଶ୍ଚୟ ସେମାନଙ୍କର ସେ ରୂପକୁ ଦେଖି । ମୁହଁରେ ଅସୁରର ମୁଖା, ଆଉ ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ଲମ୍ବା କଳା ପୋଷାକ । ପୋଷାକ ଉପରେ ଚିତ୍ର କରାଯାଇଥାଏ ମଣିଷ ମୁଣ୍ଡ ଖପୁରି ଆଉ ଦି'ଖଣ୍ଡ ହାଡର ଛବି ।

ସୁଲୁ କହିଲା, "ଏମାନେ ଏଇଲେ ଯିବେ ସାଇରେ କବାଟ ବାଡେଇ ଟଫି ଆଦାୟ କରିବାକୁ ଘରକୁ ଘର । ଦେଖିବ କେତେ ଟଫି ନେଇ ଫେରିବେ... ଏ ହେଲା ଏଠାକା ହାଲୋଓ୍ୱିନ୍ ।"

ସେସବୁ ଘଟଣା ଦେଖି ମତେ ଲାଗିଲା ଆମ ଭାରତରେ ଆମେ ଦୀପାବଳିକୁ ଯୋଉ ବଡବଡୁଆଙ୍କୁ ଡାକୁ ବୋଧହୁଏ ଏ ପର୍ବ ସେଇପରି । ଦୀପାବଳୀ ସନ୍ଧ୍ୟାରେ ଆମେ ଘର ଦାଣ୍ଡରେ ଦୀପ ଜଳୋଉ । କାଉଁରିଆ କାଠି ଜଳେଇ ଦୀପାବଳୀର କିଟିକିଟି ଅମାବାସ୍ୟା ରାତିକୁ ଆଲୋକିତ କରୁ । କାର୍ତ୍ତିକ ମାସର କୃଷ୍ଣପକ୍ଷ ବା ପିତୃପୁରୁଷଙ୍କ ତର୍ପଣ ପକ୍ଷରେ

ପୃଥିବୀ ଭ୍ରମଣରେ ଆସିଥିବା ପିତୃପୁରୁଷଙ୍କୁ ଅମାବାସ୍ୟା ସନ୍ଧ୍ୟାରେ ମହାଳୟା ଶ୍ରାଦ୍ଧ ଅନ୍ତେ ମର୍ତ୍ତ୍ୟଲୋକରୁ ବିଦାୟ ଦେବା ହେଲା ଏ ପର୍ବର ଉଦ୍ଦେଶ୍ୟ । ସେଥିପାଇଁ କାଉଁରିଆ କାଠି ଜଳାଇ ସେମାନଙ୍କ ପଥକୁ ଆଲୋକିତ କରିବା ପାଇଁ ଗୀତ ବୋଲାଯାଏ– "ବଡବଡୁଆ ହେ, ଅନ୍ଧାରରେ ଆସି ଆଲୁଅରେ ଯାଅ ।"

ସେବର୍ଷ ଦୁଇମାସ ଧରି ମୋର ଏଇ ଛୋଟଛୋଟ ନାତି ଦୁଇଟିଙ୍କୁ ପାଖେପାଖେ ରଖି ପୁରାଣ ଗପ ଶୁଣେଇବା ସାଙ୍ଗକୁ ସନ୍ଧ୍ୟାରେ ଭିଡିଓରେ ରାମାୟଣ ମହାଭାରତ ମୁଭି ଦେଖେଇବା ଥିଲା ମୋର ଗୋଟିଏ ପ୍ରଧାନ କାମ । କିନ୍ତୁ ଏଥର ଆମେରିକା ଭ୍ରମଣ ପଛରେ ମୋର ଥାଏ ଅନ୍ୟ ଏକ ଲକ୍ଷ୍ୟ । ଲକ୍ଷ୍ୟଟା ହେଲା– ମୋର ଏଇ ନାତି ଦୁଇଟିଙ୍କ ଭଳି ଏଠାକାର ଦ୍ୱିତୀୟ ପୀଢ଼ିର ପ୍ରବାସୀ ଓଡିଆ ପିଲାଙ୍କ ସାମାଜିକ ସମସ୍ୟା ଆକଳନ କରିବା । ତା' ସାଙ୍ଗେ ସାଙ୍ଗେ ଆମେରିକାରେ ଜନ୍ମିତ ମୋ ନିଜ ନାତିନାତୁଣୀଙ୍କ ମନରେ ଆତ୍ମବିଶ୍ୱାସ ବଢେଇବା ପାଇଁ ସେମାନଙ୍କ ବୁନିୟାଦିର ମୂଲ୍ୟବୋଧ ବିଷୟରେ ସେମାନଙ୍କୁ ଟିକେ ଅଧିକ ସଚେତନ କରାଇବା ।

ସେଇ ଲକ୍ଷ୍ୟରେ ନାତି ଦୁଇଟିଙ୍କୁ ଗଲା ଦୁଇମାସ ଭିତରେ ମୁଁ ଭାରତବର୍ଷର ଇତିହାସ, ଭୂଗୋଳ, ବୈଦିକ ପରମ୍ପରାରେ ନୈତିକ ଓ ମାନବିକ ମୂଲ୍ୟବୋଧକୁ ନେଇ ଗପ ଶୁଣାଉଥାଏ । ଯେତେବେଳେ ଟିକିଏ ଫୁର୍‌ସତ୍ ମିଳିଲା ଆମେ ଫେରିଯାଉ ସେଇ ବିଷୟ ଚର୍ଚ୍ଚାକୁ ।

ନାଏଗ୍ରା ଯିବା ରାସ୍ତାରେ ନାତି ଦୁହିଁଙ୍କ ସାଥିରେ ସେମିତି ଗପସପ କରୁ କରୁ ପ୍ରାୟ ଛ' ଘଣ୍ଟା ବିତିଗଲାଣି କେତେବେଳେ ଜାଣିହଉନଥାଏ । ହଠାତ୍ ଡ୍ରାଇଭିଂ ସିଟ୍‌ରୁ ମହେଶ ଘୋଷଣାକଲେ, "ହେଇଟି ! ଗର୍ଜନ ଶୁଣୁଚଟି ସମସ୍ତେ ? ଆସିଗଲା ନାଏଗ୍ରା !"

ଗାଡି ଭିତରେ କଥାବର୍ତ୍ତା ସବୁ ଧଡ୍‌କିନା ବନ୍ଦହେଇଗଲା । କାର ଇଂଜିନ୍‌ର ଗୁଁଗୁଁ ଯାନ୍ତ୍ରିକ ଶବ୍ଦ ବଳୟକୁ ଭାଙ୍ଗି ଗୋଟାଏ ଭିନ୍ନପ୍ରକାର ଘୁ ଘୁ ଶବ୍ଦ ବାଜିଲା କାନରେ । ଖୁବ୍ ଶୀଘ୍ର ସେ ଘୁ ଘୁ ବଢି ବଢି ଏକ ଭୀମ ଗର୍ଜନରେ ପରିଣତ ହୋଇଗଲା ।

"ଆମେ ବର୍ତ୍ତମାନ ବୁଫାଲୋ (Buffalo) ସହର ସୀମାରେ ପହଞ୍ଚି ସାରିଲେଣି । ଏଇଲେ ଖୋଜିବାକୁ ପଡିବ ନାଏଗ୍ରା ଫଲସ୍‌କୁ ରାସ୍ତା. . ."– ମହେଶ କାର୍‌ର ବେଗ ଧୀମେଇଲେ ।

କିଛି ସମୟ ମ୍ୟାପ୍ ଅଣ୍ଡାଳି ରାସ୍ତା ଖୋଜିବାରେ ଧନ୍ଦିହେଲେ ସୁଲୁ ଓ ମହେଶ । ବାରମ୍ବାର ରାସ୍ତା ଖୋଜିବାକୁ ମାନଚିତ୍ର ଅଣ୍ଡାଳିବା ସତ୍ତ୍ୱେ ତଥାପି କେଇବାର ବାଟବଣା ହେଇ ମହେଶ କହିଲେ– ଧେତ୍ ! ଯେତେଥର ଆସିଲେ ବି ଏମିତି ବାଟ ବଣା ହୁଏ ମୁଁ ଏ ସହରରେ କାହିଁକି କେଜାଣି !

– ହଠାତ୍ ଅମୃତ ପାଟିକଲା, "ସ୍ମୋକ୍ ସ୍ମୋକ୍ ସ୍ମୋକ୍ !"

ଦିଗ୍‌ବଳୟରେ ମୋଟା ବହଳିଆ ଧଳା କୁହୁଡି ଉଠୁଥାଏ ଆକାଶକୁ । ସେଇ କୁହୁଡିକୁ ଅନାଇ ଆମେ ଶେଷରେ ଠାବକଲୁ ନାଏଗ୍ରା ଜଳପ୍ରପାତର ଇଲାକାଟାକୁ । ମହେଶ ମଧ୍ୟ ବାଟପାଇସାରିଥାନ୍ତି । ଗୋଟାଏ ଦିଗରେ ଡ୍ରାଇଭ୍ କଲା ପରେ ଶେଷରେ ପହଞ୍ଚିଲୁ ନାଏଗ୍ରା ଜଳପ୍ରପାତ ଅଞ୍ଚଳର ଉପକଣ୍ଠରେ । ଦେଖିଲି ଶହଶହ କାର୍ ପିମ୍ପୁଡି ଧାଡି ପରି ଆସ୍ତେ ଆସ୍ତେ ଗଡୁଚନ୍ତି ରାସ୍ତାରେ ଗୋଟାଏ ଦିଗରେ । ଆମେ ଧଇଲୁ ସେମାନଙ୍କ ପିଛା । ଶେଷରେ କାର୍ ପାର୍କିଂ ଏରିଆଟାଏ ଆଖିରେ ପଡିଲା । କାର୍ ରଖିଲେ ମହେଶ । ଶହଶହ ଟୁରିଷ୍ଟ– ଛୁଆ ପିଲା ବୁଢା ବୁଢୀ– ଏସିଆନ୍ ଆଫ୍ରିକାନ୍ ୟୁରୋପୀୟାନ୍ ଆମେରିକାନ୍ ଚେହେରାର ଲୋକଙ୍କୁ ଦେଖି ମନେହେଲା ପୃଥିବୀଯାକର ଟୁରିଷ୍ଟ ସତେକି ଅଜାଡି ହେଇ ପଡିଚନ୍ତି ଏକାସାଙ୍ଗେ– ନାଏଗ୍ରାରେ !

ଗାଡିରୁ ବାହାରିବା ପରେ ମହେଶ କହିଲେ– ଦେଖୁଚନ୍ତି ଭିଡ ? ବର୍ତ୍ତମାନ ଟିକେଟ୍ କାଉଣ୍ଟର୍ ଆଗରେ ଧାଡି ଲଗେଇବାକୁ ପଡିବ । ଆମେ ଚାଲିଲୁ କାଉଣ୍ଟର୍ ପାଖକୁ । ଅନେକ ଗୁଡାଏ ଟିକେଟ୍ କାଉଣ୍ଟର୍ ସ୍ତମ୍ଭେ ପ୍ରତି ଝରକା ଆଗରେ ଲମ୍ବିଯାଇଥାଏ ଲମ୍ବା ଲମ୍ବା କ୍ୟୁ । ମହେଶ ଆମ ସମସ୍ତଙ୍କ ପାଇଁ ଟିକେଟ୍ ଆଣିବାକୁ ଗୋଟାଏ କ୍ୟୁରେ ଠିଆହେଲେ । ଆମେ କଡେଇ ରହି ଅପେକ୍ଷା କଲୁ ।

ନାଏଗ୍ରା ବର୍ଷର ଗ୍ରୀଷ୍ମଋତୁର ଆରମ୍ଭରୁ ଶେଷ– ମୋଟେ ତିନିଚାରୋଟି ମାସ ମାତ୍ର ଦର୍ଶକମାନଙ୍କ ପାଇଁ ଖୋଲାରହେ– ଶରତ ଓ ଶୀତଋତୁରେ ବନ୍ଦହୋଇଯାଏ, କାରଣ ଜଳପ୍ରପାତର ଜଳରାଶି ବରଫ ପାଲଟିବାକୁ ଆରମ୍ଭ କଲା ପରେ ପ୍ରପାତର ଜଳପ୍ରବାହ ଆପେ ଆପେ ବନ୍ଦହୋଇଯାଏ । ସେଇ କାରଣରୁ ଗ୍ରୀଷ୍ମଋତୁରେହିଁ ଟୁରିଷ୍ଟ୍‌ମାନେ ନାଏଗ୍ରାକୁ ବେଶୀ ସଂଖ୍ୟାରେ ଆସନ୍ତି । ସାରା ପୃଥିବୀର ସବୁ ଦେଶରୁ ଆସୁଥିବା ଟୁରିଷ୍ଟଙ୍କ ଭିଡ ଲାଗେ ଏଠି ଏଇ ସମୟରେ ।

ବହୁତ ସମୟ ଅପେକ୍ଷା କଲା ପରେ ଟିକେଟ୍ କାଉଣ୍ଟରରୁ ଆମ ପାଞ୍ଚଜଣଙ୍କ ପାଇଁ ଟିକେଟ୍ କିଣିଲେ ମହେଶ । ଏହାପରେ ସେ କହିଲେ– ଚାଲନ୍ତୁ ଏସ୍‌କାଲେଟର୍ (ଲିଫ୍ଟ) ପାଖକୁ । ଆମେ ଚାଲିଲୁ ଏସ୍‌କାଲେଟର୍ ପାଖକୁ । ଏସ୍‌କାଲେଟରରୁ ବାହାରି ଆମେ ପଶିଲୁ ଏକ ଅତିବଡ ଫୁଲ ବଗିଚା ଭିତରେ । ଏଇଟା ନାଏଗ୍ରା ନଦୀ କୂଳର ଅନେକ ଗୁଡିଏ ପାର୍କ ଅଂଚଳ ଭିତରୁ ଗୋଟିଏ । ପାର୍କ ଭିତର ଦେଇ ଲମ୍ବିଥିବା ଗୋଟାଏ ପାଦଚଲା ପେଭ୍‌ମେଣ୍ଟ୍ ରାସ୍ତାରେ ଚାଲିଥାନ୍ତି ଧାଡିଧାଡି ଟୁରିଷ୍ଟ୍– ଆମେ ସାମିଲ ହୋଇଗଲୁ ସେମାନଙ୍କ ସହିତ । ଅନେକ ବାଟ ଚାଲିବା ପରେ ବି ଜଳପ୍ରପାତର ପାଖ ମାଡିବା ସୁଯୋଗ ମିଳିପାରୁନଥାଏ ଦେଖି ବ୍ୟସ୍ତ ଲାଗିଲା ମତେ । ମହେଶଙ୍କୁ ପଚାରିଲି– କାହିଁ ହୋ ! କୁଆଡେ ଗଲା ତମ ନାଏଗ୍ରା !

ମହେଶ ହସିଲେ । କହିଲେ– ଆପଣ ତ ନାଏଗ୍ରା ପ୍ରପାତ ପାଖରେ ! ଚାଲନ୍ତୁ ଯିବା ଆଉ ଟିକେ ଆଗକୁ । ଆମେ ଚାଲିଲୁ ଆଗକୁ ଆଗକୁ । ହଠାତ୍ ଗୋଟାଏ କାନଫଟା ଗର୍ଜନ ଶୁଣି ମୋ ଛାତି ଦୁଲୁକି ଉଠିଲା । ସେଇ ଗର୍ଜନରୁ ମନେହେଲା ଆମେ ନିଶ୍ଚୟ ପହଞ୍ଚିଗଲୁଣି ନାଏଗ୍ରା ଫଲ୍‌ସ୍‌ର ଅତି ପାଖରେ । କିନ୍ତୁ ସେ ପର୍ଯ୍ୟନ୍ତ ସୁଦ୍ଧା ଶବ୍ଦର ଉତ୍ସ ଥାଏ ଆମ ଦୃଷ୍ଟିରୁ ଅଦୃଶ୍ୟ ।

ପାର୍କର ଚଲାପଥ ଧାରେ ଧାରେ ଫୁଲ ବଗିଚା ଲମ୍ବିଥାଏ ମାଇଲ୍ ମାଇଲ୍ । ପଟାଳି ପଟାଳି ହରରଙ୍ଗି ସିଜ୍‌ନାଲ୍ ଫ୍ଲାୱାର୍ସ ଆଉ ଗୋଲାପ ବଗିଚା । ସବୁଜ ଲନ୍ ମଝିରେ ମଝିରେ ପାଣିର ଅସଂଖ୍ୟ ଫୁଆରା ବା ଫାଉଣ୍ଟେନ୍‌ସ୍ । କିନ୍ତୁ ସେ ସବୁ ଦୃଶ୍ୟ ଉପରେ ଆଖି ଲାଖି ରହିବାକୁ ଇଚ୍ଛୁକ ନଥାଏ ବେଶୀ ସମୟ । ଚାରିଆଡକୁ ଚାହିଁ ମୁଁ ମନେମନେ ଖୋଜୁଥାଏ– କାହିଁ– ନାଏଗ୍ରା କାହିଁ ?

ମୁଁ ଏଥର ଧୈର୍ଯ୍ୟ ହରାଇ ବଡପାଟିରେ ପଚାରିଲି ମହେଶଙ୍କୁ, "Where is your Niagra-falls ? Surely we are not in a maze !"

ଝିଅ ସୁଲୁମା ମୋ' ବ୍ୟାକୁଳତା ବୁଝିପାରୁଥାଏ ନିଶ୍ଚୟ । ମୋ ପ୍ରଶ୍ନର ଉତ୍ତର ଦେଲା ସେ । କିନ୍ତୁ ସେ ଉତ୍ତର ମତେ ଆହୁରି ନିରାଶ କରିଦେଲା ।

"ନନା ! ଆମର ଏ ପଟୁ ନାଏଗ୍ରାର ହର୍ଷ-ସୁ-ଫଲ୍ ଦେଖା ଯିବ ନାହିଁ,"– ମୁହଁ ଶୁଖେଇ ଝିଅ ଶୁଣେଇଲା ତା' କାରଣ ମଧ୍ୟ । କହିଲା– "ଆମେ ଅଛେ ବର୍ତ୍ତମାନ ୟୁନାଇଟେଡ୍ ଷ୍ଟେଟ୍‌ସ୍‌ରେ । ଆମର ଏ ପାଖୁ ନାଏଗ୍ରାର ସମଗ୍ର ରୂପ ଦେଖାଯାଏନା । ତୁମେ ଯୋଉ ହର୍ଷ-ସୁ ନାଏଗ୍ରା କଥା ଶୁଣ ସେଇଟା କାନାଡା ପଟରୁହିଁ ଦେଖାଯାଏ । ଆମେ ଏଇଲେ ଅଛେ ୟୁଏସ୍ଏରେ ଆମପଟ ଆମେରିକାରେ । ଏ ଯୋଉ ନଈଟା ଦେଖୁଚ ସାମନାରେ ତା' ନାଁ ନାଏଗ୍ରା ରିଭର୍ । ଏ ରିଭର୍ ଉପରେ ହେଇ ସେଠି ଗୋଟାଏ ବ୍ରିଜ୍ ଦେଖୁଚ ! ସେଇ ବ୍ରିଜ୍ ଆର ପାଖେ କାନାଡା । ଆମେ ବ୍ରିଜ୍ ସେପାଖକୁ ଯାଇପାରିବା ନାହିଁ– କାରଣ ବ୍ରିଜ୍‌ର ମଝିରେହିଁ ଦୁଇ କଣ୍ଟ୍ରିର ବାଉଣ୍ଡେରି ଲାଇନ୍ । ସେ ବାଉଣ୍ଡେରି ପାରିହେବାକୁ ଦରକାର ଆମର ଭିସା କାନାଡା ପାଇଁ । ଆମେ ତ ଭିସା କରିନେ– ତେଣୁ ଆମେ ଆମର ଏଇ ୟୁଏସ୍ଏ ପଟରେ ରହି ଆଜି ନାଏଗ୍ରା ଦର୍ଶନ କରିବା ।"

ମନଟା ଏକବାରେ ମରିଗଲା ମୋର । ତା' ମାନେ ନାଏଗ୍ରାରେ ଥାଇ ବି ଆମେ ନାଏଗ୍ରା ୱାଟର୍ ଫଲ୍‌ସ୍ ଦେଖିବାରୁ ବଞ୍ଚିତ ! ପଚାରିଲି– "ତା'ହେଲେ କ୍ୟାନେଡାକୁ ଆମେ କେମିତି ପାଇବୁ ଭିସା ? ଆମର ତ ଭିସା ୟୁ.ଏସ୍‌କୁ କେବଳ ?" ବ୍ୟାକୁଳ ଭାବେ ଚାହିଁରହିଲି ଟିକିଏ ଦୂରରେ ଦିଶୁଥିବା ନାଏଗ୍ରା ନଈ ଆଡକୁ । ନଈଟା ବେଶ୍ ଚଉଡା ଆଉ ଗହୀରିଆ ମଧ୍ୟ । ତା' ଉପରେ ବେଶ୍ ଏକ ଲମ୍ବା ପୋଲ । ସେ ପୋଲ ପାରି ନହେଲେ କୁଆଡେ ନାଏଗ୍ରା ଫଲ୍‌ସ୍ ପୂରାଟା ଦେଖି ହବ ନାଇଁ ! ମତେ ଭାରି ହତାଶ ଲାଗିଲା ।

ବିଶ୍ୱବିଖ୍ୟାତ ନାଏଗ୍ରା-ଫଲ୍‌ସ୍ ସଂପର୍କରେ ଜୀବନ ସାରା କେତେ କଥା ଶୁଣିନଥିଲି– କେତେ ପଢ଼ିନଥିଲି ! ମନେପଡିଲା ମୋ ସାଙ୍ଗ କୃଷ୍ଣପ୍ରସାଦ ମିଶ୍ରର ସେଇ ବିଖ୍ୟାତଗପ "ନାଏଗ୍ରା ଓ ଦେବଯାନୀ" । କୃଷ୍ଣ ସେତେବେଳେ କାନାଡାର ଟରୋଣ୍ଟୋ ବିଶ୍ୱବିଦ୍ୟାଳୟରେ ଦର୍ଶନ ବିଭାଗରେ ରିସର୍ଚ୍ଚ କରୁଥାଏ ଯେତେବେଳେ ନାଏଗ୍ରା ବୁଲିବାକୁ ଆସି ତାର ମୋହିନୀ ରୂପ ଅନ୍ତରାଳରେ ସେ ଦେଖିବାକୁ ପାଇଥିଲା ପୌରାଣିକ କଚ-ଦେବଯାନୀ ଗଳ୍ପର ନାୟିକା ଦେବଯାନୀକୁ । ସେତେବେଳେ ବନ୍ଧୁ କୃଷ୍ଣପ୍ରସାଦର ସେଇ ନାଏଗ୍ରା ଓ ଦେବଯାନୀ ଗଳ୍ପଟା ଖୁବ୍ ଆଦୃତ ହେଉଥାଏ ପାଠକ ମହଲରେ । ବର୍ତ୍ତମାନ ବନ୍ଧୁ ଯାଇ ରହିଲାଣି ସ୍ୱର୍ଗରେ । ତେବେ କୃଷ୍ଣର ସେ ଗପଟା ପଢ଼ିବା ଦିନୁ ମୋ ମନରେ ଗୋଟାଏ ସ୍ୱପ୍ନ ଜାଗିଥିଲା ନାଏଗ୍ରାକୁ ନେଇ । ଭାବିଥିଲି ମୁଁ ଯଦି ନାଏଗ୍ରା ଯାଏ ତେବେ ନାଏଗ୍ରାକୁ ନେଇ ମୁଁ ବି ଲେଖିବି ଗପ ନୁହେଁ– ଗୋଟାଏ ପୂର୍ଣ୍ଣାଙ୍ଗ ଉପନ୍ୟାସ । କିନ୍ତୁ ହାୟ ! ଏତେ କଷ୍ଟ କରି ନାଏଗ୍ରା ନଦୀ ଧାର ପର୍ଯ୍ୟନ୍ତ ଆସି ପାହି ଛୁଇଁଲାପରେ ବି ମୁଁ ଦେଖିପାରୁନାହିଁ ନଏଗ୍ରାର ସେଇ ଜଗନ୍ମୋହିନୀ ରୂପଟିକୁ ଯାହାକୁ ନେଇ ମୁଁ ସ୍ୱପ୍ନ ଦେଖୁଥିଲି ଏତେ କାଳ !

ମୋ ବ୍ୟସ୍ତତା ଦେଖି ମତେ ପ୍ରବୋଧନା ଦେଲେ ଜୋଇଁ ମହେଶ । କହିଲେ, "ବ୍ୟସ୍ତ ହୁଅନ୍ତୁ ନାଇଁ ନନା ! ଆମେ ଏ ନାଏଗ୍ରା ନଦୀରେ ଷ୍ଟିମର୍ ରାଇଡ୍ ନେଇ ଯିବା ନାଏଗ୍ରା ଫଲ୍‌ସ୍ ପାଖାପାଖି ଯୋଉଠୁ ଆପଣ ଦେଖିବେ ଫଲ୍‌ସ୍‌ର ସ୍ୱରୂପ । ଆସନ୍ତୁ ସମସ୍ତେ ମୋ ସାଙ୍ଗରେ ।'' ପରେ ପରେ ହସିହସି କହିଲେ ସେ, "ଆମ ଆମେରିକା ସରକାରକୁ ଆପଣ କ'ଣ ଭାବିଚନ୍ତି କି ? ଏ କ'ଣ ସହଜେ ହାର ମାନିବା ଦେଶ ? ଏତେ ସହଜରେ ବାଟ ଛାଡିଦବ କାନାଡାକୁ ଟୁରିଜିମ୍ ବ୍ୟବସାୟରେ ଏକଚାଟିଆ କାରବାର ପାଇଁ ? ଆମେରିକା ପକ୍ଷରୁ ନଈ ଉପରେ ଗୋଟାଏ ପ୍ରକାଣ୍ଡ କାଣ୍ଟିଲିଭର୍ ଆର୍ଚ ତିଆରି କରାଯାଇଚି । ସେ ଆର୍ଚ ଉପରେ ଠିଆହେଲେ ଆପଣ ଦେଖିପାରିବେ ୱାଟର୍ ଫଲସ୍– ପୂରାଟାକୁ । ତା'ଛଡା ଏଠି ଗୋଟାଏ ଦ୍ୱୀପାଞ୍ଚଳ ଅଛି– ଟୁରିଷ୍ଟମାନଙ୍କ ସୁବିଧା ପାଇଁ ସେ ଦ୍ୱୀପାଂଚଳକୁ ଏ ଭିତରେ ଡେଭଲପ୍ କାରାଯାଇସାରିଚି । ସେଠି ଆଉ ଗୋଟାଏ ନୂଆ ପାର୍କ କରାଯାଇଚି । ସେ ପାର୍କର ନାଁ "ଗୋଟ୍ ଆଇଲ୍ୟାଣ୍ଡ''– Goat Island (ଛାଗଦ୍ୱୀପ) । ସେ ଜାଗାଟା ପୂରା ଫଲ୍‌ସ୍ କଡକୁ ଲାଗିଚି । ଦର୍ଶକ ସେଠି ନାଏଗ୍ରା ପ୍ରପାତର ପାଣିକୁ ନିଜ ହାତରେ ଛୁଇଁପାରିବେ । ସେଠି ଠିଆହେଲେ ଆପଣ ତଳକୁ ଚାହିଁଲେ ଦେଖିବେ କେମିତି ଦୁଇଶହ ଫୁଟ ତଳ ନାଏଗ୍ରା ନଦୀ ଭିତରକୁ ପ୍ରପାତର ପାଣି ପଡୁଚି । ତା'ଛଡା ଆମେ ପ୍ରପାତର ତଳ ଲେଭଲ୍‌କୁ ଯାଇ ମଧ୍ୟ ଦେଖିବା ମୁଣ୍ଡ ଉପର ଆକାଶରୁ ପ୍ରପାତର ଜଳରାଶି ଅନବରତ ଖସୁଥିବାର ସେ ଅପୂର୍ବ ଦୃଶ୍ୟ । ସେ ସବୁ ହେଲା କାଲିର ପ୍ରୋଗ୍ରାମ । ଆଜି ତ ସନ୍ଧ୍ୟା ହେଇଗଲାଣି । ଏଇଲେ ଚାଲନ୍ତୁ ଆମେ ଆଗ ଯିବା ଆମ ସାଇଡ୍‌ରୁ ଦେଖିବା "ଆମେରିକାନ୍ ଫଲ୍" । ସେଠି ଅଛି ଦୁଇଟା ବଡ ବଡ ପ୍ରପାତ ।"

ମହେଶ ବୁଝେଇ ଚାଲିଥାନ୍ତି ଆଉ ଆମେ ତାଙ୍କ ପଛେ ପଛେ ଧାଉଁଥାଉ ପ୍ରପାତର ନିକଟତମ ଦୃଶ୍ୟମାନ ଅଂଚଳ ସନ୍ଧାନରେ ।

ପଶ୍ଚିମ ଦିଗ୍‌ବଳୟରୁ ଅସ୍ତଗାମୀ ସୂର୍ଯ୍ୟରଶ୍ମିର ସୁଅ ଛୁଟିଥାଏ କାନାଡାର ସୁନୀଳ ଆକାଶରୁ । ସେଇ ରଶ୍ମିର ଇନ୍ଦ୍ରଜାଲ ପ୍ରଥମଥର ପାଇଁ ଆଖିରେ ପଡିଲା କିଛି ବାଟ ଆଗେଇ ଯିବା ପରେ । ହଠାତ୍ ଦେଖାଗଲା ପ୍ରପାତ ଉପରୁ ଉଠୁଥିବା ଧୂସର ରଙ୍ଗର ଘନ କୁହୁଡି ଭିତରୁ ଆବିର୍ଭୂତ ହେଲା ଏକ ପ୍ରକାଣ୍ଡ ଇନ୍ଦ୍ରଧନୁ ! ପରେ ପରେ ଦୃଶ୍ୟମାନ ହେଲା ସହସ୍ର ସଂଖ୍ୟାର ଇନ୍ଦ୍ରଧନୁ । ମାଇଲ୍ ମାଇଲ୍ ବ୍ୟାପି କ୍ଷେତ୍ର ଉପରେ ଇନ୍ଦ୍ରଧନୁମାନଙ୍କର ଆବିର୍ଭାବ ଏକ ନୈସର୍ଗିକ ବିସ୍ମୟ ସୃଷ୍ଟିକଲା ମୋ ମନରେ ।

"ଆସନ୍ତୁ, ପ୍ରଥମେ ଯିବା ଆର୍କ ଉପରକୁ । ସେଠି ଠିଆହେଲେ ନାଏଗ୍ରାର ଦୃଶ୍ୟ ଦେଖିହେବ । ପରେ ଯିବା ଆମେ ଷ୍ଟିମର୍ ଘାଟକୁ– ଏସ୍‌କାଲେଟର୍ ନେଇ । ଏଠି ନଦୀ-ପତ୍ତନ ଯାଇ ବହୁତ ତଳେ । ସେଠି ଷ୍ଟିମର୍ ଘାଟରେ ଷ୍ଟିମର୍ ରାଇଡ୍ ପାଇଁ ବ୍ୟବସ୍ଥା ଅଛି । ଷ୍ଟିମର୍‌ରେ ବସି ଆମେ ଯାଇପାରିବା ସିଧା ହର୍ଷ-ସୁ ଫଲ୍‌ର ପାଖ ଯାକେ । ଆସନ୍ତୁ ମୋ ସାଙ୍ଗେ । ବାଟ କଢେଇ ଆଗକୁ ଚାଲିଲେ ମହେଶ ।

## ଅର୍ଦ୍ଧସେତୁ ଉପରୁ ନାଏଗ୍ରା ଜଳପ୍ରପାତର ଅଭୂତପୂର୍ବ ଦୃଶ୍ୟ

ନାଏଗ୍ରା ନଦୀ ଉପରେ ନିର୍ମିତ ଏକ ଅର୍ଦ୍ଧସେତୁ (Arch) ଉପରକୁ ଯିବାକୁ ଆମେ ପୁଣି ଥରେ ଏସ୍‌କାଲେଟର୍‌ରେ ସବାର ହେଲୁ । ସେ ଅର୍ଦ୍ଧସେତୁଟି ନାଏଗ୍ରା ନଦୀର ଠିକ୍ ଅଧାରେ ଆନ୍ତର୍ଜାତିକ ସୀମା ପର୍ଯ୍ୟନ୍ତ ଲମ୍ବିଥାଏ– ପ୍ରାୟ ପାଞ୍ଚଶହ ଫୁଟ ନଈ ଭିତରକୁ । ଏ ଏକ କାଣ୍ଟିଲିଭର୍ ଆର୍ଚ୍ଚ ଯାହା ଦିଶୁଥାଏ ଗୋଟାଏ ପ୍ରସାରିତ "ଜାଇଗାଣ୍ଟିକ୍ ଆର୍ମ" ଭଳି; ସତେକି ହନୁମାନଜୀ ଆମେରିକାରେ ଠିଆହେଇ ବାହୁ ବିସ୍ତାର କରିଥାନ୍ତି ନଈ ମଝି ପର୍ଯ୍ୟନ୍ତ କାନାଡା ଆଡକୁ । ଆମେ ଶତାଧିକ ଦର୍ଶକ ସେଇ ହନୁମାନଜୀଙ୍କ ପ୍ରସାରିତ ବାହୁ ଉପରେ ସବାର ହେଇ ଅନେଇ ରହିଥାଉ ୟୁ.ଏସ୍.ଏ ପଟକୁ ଯୋଉଠି ଦୃଶ୍ୟମାନ ହେଉଥାଏ ପ୍ରାୟ ଅଧମାଇଲ ଲମ୍ବ ଘୋଡାନାଲ ଆକୃତିର ନାଏଗ୍ରା ଜଳ ପ୍ରପାତର ସ୍ୱରୂପ ।

ଟୁରିଷ୍ଟମାନଙ୍କୁ ଯୁକ୍ତରାଷ୍ଟ୍ର ଆମେରିକା ପଟୁ ପୂରା ନାଏଗ୍ରା ଜଳପ୍ରପାତର ଏଇ ନୈସର୍ଗିକ ଦୃଶ୍ୟପଟ ପ୍ରଦର୍ଶନ ପାଇଁ ଏଇ ଅଭୁତ ଖମ୍ବବିହୀନ ଅର୍ଦ୍ଧସେତୁ ନିର୍ମାଣ ନିଶ୍ଚିତ ଭାବେ ଏକ ଅତ୍ୟାଧୁନିକ ଇଂଜିନିୟରିଂ ବିସ୍ମୟ । ପର୍ଯ୍ୟଟନ ବ୍ୟବସାୟକୁ କେତେ ଗୁରୁତ୍ୱ ଦିଏ ଆମେରିକା ଏ ସେତୁଟି ହେଲା ତାର ଏକ ପ୍ରମାଣ । ଏ ସେତୁଟି ନିର୍ମିତ ନହୋଇଥିଲେ ବିଶ୍ୱର ସବୁ ପ୍ରାନ୍ତରୁ ନାଏଗ୍ରା ଭ୍ରମଣରେ ପ୍ରତିବର୍ଷ ନିୟୁତ ନିୟୁତ ସଂଖ୍ୟାରେ ଆସୁଥିବା ପର୍ଯ୍ୟଟକମାନେ ଆମେରିକା ନଆସି ନିଶ୍ଚୟ କ୍ୟାନେଡାକୁହିଁ ଗନ୍ତବ୍ୟସ୍ଥଳ ରୂପେ ବରଣ କରିଥାନ୍ତେ । ଏଇ ପ୍ରସଙ୍ଗକୁ ଦୃଷ୍ଟିରେ ରଖି ଯୁକ୍ତରାଷ୍ଟ୍ର ଆମେରିକା ତାର ପର୍ଯ୍ୟଟନ ଶିଳ୍ପର

ସମୃଦ୍ଧି ଲକ୍ଷ୍ୟରେ ନାଏଗ୍ରାକୁ ଟୁରିଜମ୍‌ର ଏକ ପ୍ରମୁଖ କେନ୍ଦ୍ରବିନ୍ଦୁ ରୂପେ ଗଢିତୋଳିଚାଲିଚି ବର୍ଷପରେ ବର୍ଷ ନୂଆ ନୂଆ ବ୍ୟବସ୍ଥାର ଉଦ୍ଭାବନ ମାଧ୍ୟମରେ ।

ସେ ଯାହାହେଉ, ସେଇ ଅର୍ଦ୍ଧସେତୁ ଉପରେ ପହଞ୍ଚିବା ପରମୁହୂର୍ତ୍ତରେହିଁ ହଠାତ୍ ଏକ ଅଭୂତପୂର୍ବ ଭାବାନ୍ତର ଘଟିଗଲା ମୋର । ମୋର ବାକ୍‌ଶକ୍ତି ପୂରାପୂରି ଉଭେଇଗଲା । ମୋ ଆଖି ଆଗରେ ମୁହୁର୍ମୁହୁଃ ରୂପ ବଦଳେଇ ନର୍ତ୍ତନଶୀଳ ମହାପ୍ରକୃତିର ବିଶ୍ୱରୂପ ମତେ ସଂପୂର୍ଣ୍ଣ ସ୍ତବ୍ଧ କରିଦେଲା । ଅସ୍ତଗାମୀ ସୂର୍ଯ୍ୟଙ୍କର ସ୍ୱର୍ଣ୍ଣିମ କିରଣରେ ପ୍ରତିଭାତ ନାଏଗ୍ରାର ସମଗ୍ର ଶରୀରକୁ ରଂଜିତ କରୁଥିବା ସହସ୍ର ଇନ୍ଦ୍ରଧନୁ ମାନେ ପାଲଟିଗଲେ ଅସଂଖ୍ୟ ରଂଗୀନ ପଟ୍ଟବସ୍ତ୍ରରେ ଯାହା ନର୍ତ୍ତନଶୀଳ ପ୍ରକୃତିମାତାର ଶରୀରକୁ ମୁହୂର୍ତ୍ତେମାତ୍ର ମଣ୍ଡନ କରୁନକରୁଣୁ ସ୍ୱତଃ ପରିବର୍ତ୍ତିତ ହେଇଯାଉଥାଏ ଅନ୍ୟ ଏକ ବୈଚିତ୍ର୍ୟମୟ ଆଭରଣରେ । ଏଭଳି ଦୃଶ୍ୟ ମୁଁ ଥରେ କେବଳ ଲକ୍ଷ୍ୟକରିଥିଲି ହିମାଳୟର ଆଠହଜାର ଫୁଟ୍ ଉଚ୍ଚତାରୁ ସେ ବର୍ଷ ଶିମିଲା ଭ୍ରମଣ ସମୟରେଏକ ଅକ୍ଟୋବର ମାସର ସନ୍ଧ୍ୟାକାଳରେ । ସେ ଦୃଶ୍ୟ ମୁଁ ବର୍ଣ୍ଣନା କରିଚି ମୋର ୍ୱ.୍ୱ ଲେଖାରେ ଯେଉଁଠି ହିମାଳୟର ସେଇ ଅଭିଭୂତକାରୀ ସନ୍ଧ୍ୟାକୁ ମୁଁ ତୁଳନା କରିଥିଲି ବ୍ୟାସଙ୍କ ରଚିତ ମହାଭାରତର ସଭାପର୍ବରେ କପଟପାଶାରେ ପରାସ୍ତ ନିରସ୍ତ ପାଣ୍ଡବମାନଙ୍କ ସମ୍ମୁଖରେ ଭରା ରାଜସଭାରେ ବିବସ୍ତ୍ର କରାଯାଉଥିବା ନିଃସହାୟ ମହାରାଣୀ ଦ୍ରୌପଦୀଙ୍କ 'ହେ କୃଷ୍ଣ' ଆର୍ତ୍ତନାଦର ପରିଣତି ସ୍ୱରୂପ ତାଙ୍କ ଶରୀରକୁ ମୁହୂର୍ତ୍ତକ ପାଇଁ ନିର୍ମୋକତାର ଲଜ୍ୟାରୁ ରକ୍ଷା କରିବା ଲକ୍ଷ୍ୟରେ ଶୂନ୍ୟରୁ ଅନବରତ ଖସିଆସୁଥିବା ବହୁରଙ୍ଗୀ ଶାଢ଼ୀମାନଙ୍କର ଅନ୍ତହୀନ ଧାରା ପ୍ରବାହର ଉପମା ସାଥିରେ । କିନ୍ତୁ ନାଏଗ୍ରାରେ ଆଜି ସନ୍ଧ୍ୟାରେ ନର୍ତ୍ତନଶୀଳ ମହାପ୍ରକୃତିମାତାଙ୍କର ସ୍ୱରୂପକୁ ମୁଁ କଦାପି ତୁଳନା କରିବି ନାହିଁ ମହାଭାରତର ସେଇ ମହାନାୟିକା ମହାରାଣୀ ଦ୍ରୌପଦୀଙ୍କ ସହିତ । ନାଏଗ୍ରାରେ ଆଜି ସନ୍ଧ୍ୟାରେ ମୁଁ ଯେଉଁ ବିସ୍ମୟକର ଦୃଶ୍ୟ ଦେଖୁଥିଲି ତାହା ନିଶ୍ଚୟ କୌଣସି ପାର୍ଥିବ ରୂପ ନୁହେଁ ।

ଏ ପର୍ଯ୍ୟନ୍ତ ମୋ କାନ ପରଦା ନାଏଗ୍ରା ଜଳପ୍ରପାତର ଯେଉଁ ବଜ୍ର ଗର୍ଜନ ଶୁଣି ଶୁଣି ତାବ୍‌ଦା ଧରିଯାଇଥିଲା ହଠାତ୍ ସେଇ କାନ ଭିତରେ ଏକ ରୋମାଞ୍ଚକର ଓଁକାର ନାଦର ବୀଜମନ୍ତ୍ର ଯେପରି କିଏ ବପନ କରିଦେଲା । ସର୍ବାଙ୍ଗ ଶିହରି ଉଠିଲା । ଅନ୍ତରରେ ସ୍ୱତଃ ଗୁଞ୍ଜରଣ ସୃଷ୍ଟିହେଲା–

"ଓଁ ଧ୍ୟାୟେନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଳ୍ପୋଜ୍ୱଳାଙ୍ଗଂ ପରଶୁମୃଗବରାଭୀତି ହସ୍ତଂ ପ୍ରସନ୍ନଂ
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈ ବ୍ୟାଘ୍ରକୃତିଂ ବସାନଂ
ବିଶ୍ୱାଦ୍ୟଂ ବିଶ୍ୱବୀଜଂ ନିଖିଳ ଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରଂ ।"

ତତ୍‌କ୍ଷଣାତ୍ ସେଇ ଗୁଞ୍ଜରଣର ପ୍ରତିଦାନରେ ସମଗ୍ର ଦୃଶ୍ୟପଟ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ବିଶାଳ ନାଏଗ୍ରା ପ୍ରପାତ ଉପରେ ଏଯାବତ୍ ସୃଷ୍ଟ ଅସଂଖ୍ୟ ଜଳକଣାର

ଧୂମମଣ୍ଡଳ ଉପରେ ନାଚୁଥିବା ଇନ୍ଦ୍ରଧନୁମାନଙ୍କର ଆବରଣ ଅନ୍ତରାଳରୁ ଦୃଶ୍ୟମାନ ହେଲା ଏକ ମହିମ୍ନ ରୂପ ଯାହାଙ୍କୁ ଚିହ୍ନିବା ମୋ ଭଳି ଭାରତୀୟ ପକ୍ଷେ ଥିଲା ଅତ୍ୟନ୍ତ ସ୍ୱାଭାବିକ । ସେ ଥିଲେ ଜଣେ ଭାରତୀୟର ଚିର ଆରାଧ୍ୟ ଦେବଦେବ ମହାଦେବ ଗଙ୍ଗାଧରଙ୍କ ସ୍ୱରୂପ । ନାଏଗ୍ରା ଜଳପ୍ରପାତର ଗଗନ-ବିସ୍ତାରୀ ଧୂମମଣ୍ଡଳ ଅନ୍ତରାଳରୁ ସ୍ୱୟଂ ବ୍ୟୋମକେଶଙ୍କ ଆବିର୍ଭାବ ମତେ ଆହୁରି ବିସ୍ମିତ ବିମୋହିତ ଓ ପୁଲକିତ କରିବାକୁ ଲାଗିଲା ଯେତେବେଳେ ସ୍ପଷ୍ଟ ଦୃଶ୍ୟମାନ ହେଲା ଧୂର୍ଜଟୀଙ୍କ ଜଟା ଜାଲ ଉପରକୁ ସ୍ୱର୍ଗରୁ ଅବତରଣ କରୁଥିବା ଦେବୀ ଗଙ୍ଗାଙ୍କର ସ୍ୱରୂପ । ଏତେବେଳ ପର୍ଯନ୍ତ ନାଏଗ୍ରାର ସେଇ ଦିବ୍ୟ ରୂପର ବର୍ଣ୍ଣନା ନିମିତ୍ତ ମୁଁ ଏକ ଉପମାର ସନ୍ଧାନରେ ଥିଲି– ତାହା ମତେ ସ୍ୱତଃ ପ୍ରାପ୍ତହେଲା ।

ନାଏଗ୍ରା ନିଶ୍ଚିତ ଭାବେ ଏକ ପାର୍ଥିବ ଜଳପ୍ରପାତ ବା ଜଳଧାରା ନୁହନ୍ତି– ସେ ହେଉଛନ୍ତି ସ୍ୱୟଂ ଗଙ୍ଗାଦେବୀ ଯାହାଙ୍କୁ ମହାଭାରତୀୟ ରାଜର୍ଷି ଭଗୀରଥ ହଜାର ହଜାର ବର୍ଷ ପ୍ରାର୍ଥନା କରି ସ୍ୱର୍ଗରୁ ଧରାବତରଣ କରାଇଥିଲେ । ଗଙ୍ଗା କେବଳ ହିମାଳୟରେ ଅବତରଣ କରିନଥିଲେ, ସେ ଧରାବତରଣ କରିଥିଲେ । ତେଣୁ ତାଙ୍କର ଅନନ୍ତ ସଂଖ୍ୟକ ଶାଖା ପ୍ରଶାଖା ସମଗ୍ର ବିଶ୍ୱର ବିଭିନ୍ନ ଅଂଶବିଶେଷ ଉପରେ ମଧ୍ୟ ନିପତିତ ହୋଇଥିବା ନିଶ୍ଚିତ । ନିଃସନ୍ଦେହରେ କୁହାଯାଇ ପାରିବ ନାଏଗ୍ରା– ସେଇ ବିଶ୍ୱଜନନୀ ଗଙ୍ଗାଦେବୀଙ୍କର ଏକ ପ୍ରମୁଖ ଶାଖା ବିଶେଷ ।

ଏହାପରେ ମୋ ପାଇଁ ନାଏଗ୍ରା ଆଉ ଯୁକ୍ତରାଷ୍ଟ୍ର ଆମେରିକା ବା କ୍ୟାନାଡାର ସୀମା ଅନ୍ତବର୍ତ୍ତୀ ଜଳବିବାଦରୁ ଉତ୍ପନ୍ନ ଏକ ଟୁରିଜିମ୍ ବ୍ୟବସାୟର ବିବାଦୀୟ ଭୂମି ହୋଇ ରହିଲା ନାହିଁ– ଏହା ପରିଣତ ହୋଇଯାଇଥାଏ ଏକ ତୀର୍ଥସ୍ଥଳରେ । କେବଳ ହିମାଳୟର କୈଳାସ, ମାନସରୋବର ବା ହିମାଳୟର ଅନ୍ୟ ସମସ୍ତ ପ୍ରମୁଖ ତୀର୍ଥସ୍ଥଳ ବଦ୍ରିନାଥ, କେଦାରନାଥ, ଅମରନାଥ ପ୍ରଭୃତି ନୁହନ୍ତି, ମୋ ପାଇଁ ନାଏଗ୍ରା ମଧ୍ୟ ଏକ ମହାନ୍ ତୀର୍ଥ ପାଲଟିଯିବାପରେ ମୁଁ ଏ ଯାବତ୍ ବିଂଶଶତାବ୍ଦୀର ସମଗ୍ର ପାଶ୍ଚାତ୍ୟ ସଭ୍ୟତାର କେନ୍ଦ୍ରଭୂମି ଆମେରିକାକୁ ଯେଉଁ ଦୃଷ୍ଟିରେ ଦେଖୁଥିଲି ସେଥିରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପରିବର୍ତ୍ତନ ଅନୁଭବ କଲି ।

ପୂର୍ବଥର ୧୯୯୩ରେ ମୋର ପ୍ରଥମ ଆମେରିକା ଭ୍ରମଣ ବେଳେ ଏ ମହାନ୍ ଦେଶର ବହୁ ଅଞ୍ଚଳ ଓ ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେବା ସତ୍ତ୍ୱେ କୌଣସି ଗୋଟିଏ ସ୍ଥାନରେ ବି ମୁଁ ଏପରି କୌଣସି ପବିତ୍ର ଶିହରଣ ଅନୁଭବ କରିନଥିଲି ଯାହା ମୋତେ ଦେଇଥାନ୍ତା ଜଣେ ଭାରତୀୟ ତୀର୍ଥପର୍ଯ୍ୟଟକର ସ୍ୱର୍ଗୀୟ ଅନୁଭବ ଯାହାକୁ ଆମେ କହୁ ତୀର୍ଥ ପ୍ରଭାବ । ଭାରତୀୟ ଋଷି ମୁନି ସିଦ୍ଧ ସାଧକମାନେ ଯୁଗଯୁଗ ଧରି ଏଇ ସବୁ ସ୍ଥାନରେ ଐଶ୍ୱରୀୟ ଉପଲବ୍ଧି କରିପାରନ୍ତି ବୋଲି ଏହାକୁ ସେମାନେ ତୀର୍ଥସ୍ଥାନ ବୋଲି ନାମିତ କରନ୍ତି । ସେପରି ସ୍ଥାନ ଯେ ପୃଥିବୀର ଅନ୍ୟ କୌଣସି ଅଂଶରେ ନାହିଁ ବା ନଥିବ ଏପରି କିଛି କଥା ନାହିଁ । କିନ୍ତୁ ଏଯାବତ୍ ପାଶ୍ଚାତ୍ୟ ଦେଶମାନଙ୍କ ଭ୍ରମଣରେ ଆସିଥିବା

କୌଣସି ବିଶିଷ୍ଟ ଆଧୁନିକ ପର୍ଯ୍ୟଟକଙ୍କ ଲେଖାରେ ମୁଁ ସେପରି କୌଣସି ଉଲ୍ଲେଖ ବା ଆଭାସ ପାଇପାରିନାହିଁ । ତା' ଫଳରେ ମୋର ଏଯାବତ୍ ଧାରଣା ଥିଲା ଯେ ଆମେରିକା ସମେତ ଯେକୌଣସି ପାଶ୍ଚାତ୍ୟ ଦେଶରେ ଯାହା କିଛି ଦର୍ଶନୀୟ ତାହା କେବଳ ସେସବୁ ଦେଶର ବିଜ୍ଞାନ ଓ ବୈଷୟିକ ପରାକାଷ୍ଠା ବିଶେଷ । ନଭଶ୍ଚୁମ୍ବୀ କୋଠାବାଡ (Sky-scrapers), ଆନ୍ତର୍ଜାତିକ ମର୍ଯ୍ୟାଦା ସଂପନ୍ନ ହୋଟେଲ, ଖାଦ୍ୟପେୟର ପ୍ରାଚୁର୍ଯ୍ୟ, କିମ୍ବା ଏସବୁ ଦେଶର ରାତ୍ରିକାଳୀନ ନଗ୍ନ ଜୀବନର ଦୃଶ୍ୟ ସମ୍ବଳିତ ନାଇଟ୍ କ୍ଲବ୍ସ୍, ଜୁଆଖେଳର ଆଡ୍ଡାସ୍ଥଳୀ ଇତ୍ୟାଦି ପରିଦର୍ଶନ ଭିତରେହିଁ ସୀମିତରହେ ପର୍ଯ୍ୟଟକର ଆମେରିକା ଭ୍ରମଣ ।

କିନ୍ତୁ ତୀର୍ଥ... ଟୁରିଜିମ୍ ମ୍ୟାପ୍‌ମାନଙ୍କରେ ଆମେରିକାର ତୀର୍ଥସ୍ଥାନର କୌଣସି ଉଲ୍ଲେଖ ଥାଏ କ୍ୱଚିତ୍ । ହଁ– ପର୍ଯ୍ୟଟକମାନେ ଏସବୁ ଦେଶର ଅତୀବ ରମଣୀୟ ପ୍ରାକୃତିକ ସୌନ୍ଦର୍ଯ୍ୟମୟ କେତେକ ନ୍ୟାସ୍‌ନାଲ୍ ପାର୍କ ବା ବିଶେଷ ସ୍ଥାନ ପରିଦର୍ଶନରେ ଆସନ୍ତି । କିନ୍ତୁ ସେମାନେ ସେସବୁ ସ୍ଥାନର କେବଳ ପ୍ରାକୃତିକ ବୈଚିତ୍ର୍ୟମୟ ରୂପ ଦେଖି ବିମୋହିତ ହେଲେବି ସେଠାରେ ଲୁକ୍କାୟିତ ତୀର୍ଥଭୂମିର ଅନୁଭବ କ୍ୱଚିତ୍ ପର୍ଯଟକଙ୍କ ଭ୍ରମଣବୃତ୍ତାନ୍ତରୁ ଉପଲବ୍ଧ ହୋଇଥାଏ ।

କିନ୍ତୁ ଆଜି ସନ୍ଧ୍ୟାର ନାଏଗ୍ରା ଦର୍ଶନ ମତେ ସର୍ବ ପ୍ରଥମ ଦେଖାରେହିଁ ମୋ ଅନ୍ତରରେ ଜାଗ୍ରତ କରିଦେଲା ସେଇ ଦୁର୍ଲଭ୍ ଉପଲବ୍ଧି ଟିକକ । ନାଏଗ୍ରାରେ ହିଁ ମୋର ପ୍ରତ୍ୟକ୍ଷ ଉପଲବ୍ଧି ହେଲା ପୃଥିବୀ ପୃଷ୍ଠରେ ବିରାଜମାନ କୌଣସି ଦୈବୀ ଉପସ୍ଥିତିର– ସେ ଦୈବୀ ଉପସ୍ଥିତି ନିଶ୍ଚୟ ବ୍ୟୋମକେଶ ଶିବ ଗଙ୍ଗାଧରଙ୍କର ।

"ନନା !" ଝିଅର ଡାକରେ ଧ୍ୟାନ ଭାଙ୍ଗିଗଲା । "ଚାଲ ଯିବା– ମହେଶ ଡାକୁଚନ୍ତି ଷ୍ଟିମର୍ ଘାଟକୁ ଯିବାକୁ । ସେଠି ବୋଟ୍ ରାଇଡ୍ ନେଇ ଯିବା ନାଏଗ୍ରା ନଦୀ ଭିତରେ ସିଧା ୱାଟର୍ ଫଲ୍‌ସ୍‌ର ପାଖାପାଖି ଜାଗାକୁ । ସେଠି ଦେଖିବ– ତମ ଆଖି ସାମନାରେ ନାଏଗ୍ରା ଜଳପ୍ରପାତର ଅଦ୍ଭୁତ ରୂପ ।"

## ନଦୀଗର୍ଭରୁ ନାଏଗ୍ରାର ଅଦ୍ଭୁତ ରୂପ ଦର୍ଶନ–

ଅର୍ଦ୍ଧସେତୁ ଉପରୁ ଷ୍ଟିମର୍ ଘାଟଟା ଦିଶୁଥାଏ ବହୁତ ତଳେ– ପ୍ରାୟ ପାତାଳରେ ! ସେଠିକି ଯିବାକୁ ହେଲେ ଗୋଟିଏ ୱିଞ୍ଚ୍ ସାହାଯ୍ୟରେ ପ୍ରାୟ ଦୁଇଶହ ଫୁଟ୍ ତଳକୁ ଓହ୍ଲେଇବା ଦରକାର । ନଦୀକୂଳର ଷ୍ଟିମର୍ ଘାଟରେ କେତେଗୁଡିଏ ଯାତ୍ରବାହୀ ଷ୍ଟିମର୍ ଅପେକ୍ଷାରତ ଥାଏ । ଆମେ ଗୋଟିଏ ଷ୍ଟିମର୍‌ର ଡେକ୍ ଉପରକୁ ଉଠିଲୁ । ସେଥିରେ ଆହୁରି କେତେଜଣ ପର୍ଯ୍ୟଟକ ଥିଲେ । ଯାତ୍ରୀମାନେ ନିଜନିଜ ସିଟ୍ ବେଲଟ୍ ଅଣ୍ଟାରେ ଭିଡି ବସିପଡିବାକୁ ନିର୍ଦ୍ଦେଶ ମିଳିଲା । ଆମେ ଯେ ଯାହା ସିଟରେ ବସିଲୁ । ଷ୍ଟିମର୍ ହର୍ଣ୍ଣ ଦେଲା ଆଉ ଘୁଞ୍ଚିଲା । ଷ୍ଟିମର୍‌ର ଗତିପଥକୁ ଲକ୍ଷ୍ୟକରି ଦେଖିଲି– ନଦୀ ସ୍ରୋତର ପ୍ରତିକୂଳରେ ଆମେ ଗତି

କରୁଚୁ ସିଧା ଜଳପ୍ରପାତ ଦିଗରେ । ପ୍ରାୟ ଅଧମାଇଲ୍ ଉଜାଣି ଉଠିବା ଭିତରେ ଆମେ ଆଗଉଥାଉ ଆମେରିକାନ୍ ଫଲ୍‌ସ୍ (ଯୁକ୍ତରାଷ୍ଟ୍ର ପଟର ନାଏଗ୍ରା ଫଲ୍‌ସ୍) ତଳେ ତଳେ କ୍ୟାନାଡା ପଟର ମୁଖ୍ୟ ପ୍ରପାତ ଆଡକୁ । ବର୍ତ୍ତମାନ ସମୁଦାୟ ନାଏଗ୍ରା ପ୍ରପାତର ଘୋଡାନାଲ ଆକୃତିଟ (Horse Shoe Shape) ସଂପୂର୍ଣ୍ଣ ଦୃଶ୍ୟମାନ ହେଲା । ତଳେ ନାଏଗ୍ରା ନଦୀର ଅଗାଧ ଜଳରାଶି, ମୁଣ୍ଡ ଉପରେ ଅନନ୍ତ ଆକାଶ ଆଉ ଗୋଟିଏ କଡରେ ପଶ୍ଚିମ ଦିଗ୍‌ବଳୟରେ ଅସ୍ତଗାମୀ ସୂର୍ଯ୍ୟଙ୍କର ଅସ୍ତରଙ୍ଗର ସମସ୍ତ ସମ୍ଭାର ପୃଷ୍ଠଭୂମିରେ ନାଏଗ୍ରା ଜଳପ୍ରପାତ ଉପରେ ନର୍ତ୍ତନରତ କୋଟି ଇନ୍ଦ୍ରଧନୁର ଇନ୍ଦ୍ରଜାଲ ! ଆଉ ଠିକ୍ ସେତିକିବେଳେ ଲକ୍ଷ୍ୟ କଲି– ପୂର୍ବ ଦିଗ୍‌ବଳୟରୁ ଉଦୟ ହେଉଥାଏ ଗୋଟାଏ ବିରାଟ ସୁନାଥାଳୀ ଭଳି ଚନ୍ଦ୍ର । ନିରୁପମା କହିଲେ, "ଦେଖ ଜହ୍ନଉଁଉଚି– ଆଜି ପରା ଚତୁର୍ଦ୍ଦଶୀ-ତିଥି. . ."

ନଦୀଗର୍ଭରେ ଥାଉ– ଆମ ମୁଣ୍ଡ ଉପରୁ ପ୍ରାୟ ଦୁଇଶହ ଫୁଟ ଉଚ୍ଚତାରୁ, ଏକ, ମାଇଲରୁ ଊର୍ଦ୍ଧ୍ୱ ଏକ ଅର୍ଦ୍ଧଚନ୍ଦ୍ରାକୃତି ସମତଳ ଉପତ୍ୟକାରୁ ନାଏଗ୍ରା ଅନବରତ ଅଜାଡି ଚାଲିଥାଏ ଅଜସ୍ର ଜଳରାଶି ସିଧା ଏକ ପ୍ରକାଣ୍ଡକାୟ କୁଣ୍ଡ ଭିତରକୁ । ସେଇ ହେଉଚି ନାଏଗ୍ରା ଜଳପ୍ରପାତର ଉତ୍ପତ୍ତିସ୍ଥଳ– ଯେଉଁଠାରୁ ଜାତ ସେଇ ମହାଭୈରବ ନାଦ ମାଇଲ ମାଇଲ୍ ଦୂର ପର୍ଯ୍ୟନ୍ତ ଗଗନ ପବନକୁ ପ୍ରକମ୍ପିତ କରେ । ଏଇଠାରୁ ନାଏଗ୍ରା ନଦୀ ପ୍ରବାହିତ ହୁଏ ନିମ୍ନଭୂମିରେ ଅବସ୍ଥିତ ଏକ ପ୍ରକାଣ୍ଡ ହ୍ରଦ ଭିତରକୁ । ଏ ହ୍ରଦର ନାମ– "ଅଣ୍ଟେରିଓ" । "ଇରି" ଏବଂ "ଅଣ୍ଟେରିଓ"– ଯୁକ୍ତରାଷ୍ଟ୍ର ଆମେରିକାର ଉତ୍ତର ଦିଗରେ କ୍ୟାନେଡା ମଧ୍ୟବର୍ତ୍ତୀ ଆନ୍ତର୍ଜାତିକ ଭୌଗୋଳିକ ସୀମାରେ ଅବସ୍ଥିତ ଏ ଦୁଇ ବିଶାଳ ହ୍ରଦକୁ ପରସ୍ପର ସହିତ ସଂଯୁକ୍ତ କରୁଥିବା ନଦୀର ନାମ ହେଲା ନାଏଗ୍ରା ।

ନାଏଗ୍ରା ଜଳପ୍ରପାତର ମୁଖ୍ୟ କୁଣ୍ଡ ଭିତରକୁ ମୋଟର ଲଞ୍ଚରେ ଆଗେଇବା ବିପଜ୍ଜନକ । ପ୍ରବଳ ପବନ ବୋହୁଥାଏ, ଆଉ ଜଳପ୍ରପାତରୁ ନିରନ୍ତର ଛିଟିକିପଡୁଥିବା ପାଣିର ଫୁତ୍‌କାରରେ ଯାତ୍ରୀମାନଙ୍କ ପୋଷାକ ଓଦା ହୋଇନଯିବା ପାଇଁ ମୂଳରୁ ଆମମାନଙ୍କୁ ଗୋଟିଏ ଲେଖାଁଏ ନୀଳରଙ୍ଗର ପଲିଥିନ୍ ପୋଷାକ ଦିଆଯାଇଥାଏ ପିନ୍ଧିବାକୁ । ସେ ପୋଷାକ ସତ୍ତ୍ୱେ ଆମେ ସେତେବେଳକୁ ଅଧାଅଧି ଓଦା ହେଇ ସାରିଲୁଣି ଜାଣି ଆମର ଆଉ ପରବାଏ ନଥାଏ ପାଣି ପବନକୁ । ଆମ ଦଳର ଛୋଟ ପିଲା ଅମୃତ ମନୀଶ ଦୁହେଁ ସେ ପାଣିମାଡକୁ ଖୁବ୍ ଉପଭୋଗ କରୁଥାନ୍ତି । କିରିକିରି ହେଇ ହସି ଗଡୁଥାନ୍ତି ପିଲା ଦି'ଟା, ଆଉ ଲଞ୍ଚ୍ ଧାରରେ ତଳକୁ ଓହଳିପଡି ନଈପାଣିକୁ ଛୁଇଁବାକୁ ହରଦମ୍ ଚେଷ୍ଟାରତ ହେବା ଦେଖି ନିରୁପମା ବ୍ୟସ୍ତ ହେଇପଡିଲେ । ନାତି ଦୁଇଟାଙ୍କୁ ଅକ୍ତିଆର କରିବା ଲକ୍ଷ୍ୟରେ ସେମାନଙ୍କୁ ଦୁଇହାତରେ ଜାବୁଡିଧରି ବରାବର ପାଟିକରୁଥାନ୍ତି– ଚାଲ ଚାଲ ଫେରିଯିବା ଚାଲ– ଫେରିଯିବା ଚାଲ ।

କେତେ ସମୟ ପରେ ଲଞ୍ଚ ଦିଗ ମୋଡିଲା ପଛକୁ । କେତକ ଯାତ୍ରୀ ଲଞ୍ଚ ପାଇଲଟ୍‌କୁ ଉସ୍‌କୋଉଥାନ୍ତି– ନା ନା, ଚାଲ ଚାଲ ଆହୁରି ଆଗକୁ ଚାଲ– କୁଣ୍ଡ ଭିତରକୁ ଚାଲ । କିନ୍ତୁ ଲଞ୍ଚ୍ ପାଇଲଟ୍ ସ୍ପଷ୍ଟ ଶୁଣାଇଦେଲା, "It is forbidden to cross the bottle neck. For the safety of passengers the boat must have to turn back from here Sir !"

କେହି ଜଣେ ବିଦେଶୀ ଟୁରିଷ୍ଟ୍ ନାଏଗ୍ରା ଜଳପ୍ରପାତର ଇତିହାସ ଆଉଡେ଼ାଉଥାନ୍ତି ବଡପାଟିରେ– "ତିନିଶହ ବର୍ଷ ତଳେ ଏ ଜାଗା ଥିଲା ଇଣ୍ଡିୟାନମାନଙ୍କର ଦଖଲରେ । ସେମାନେ ସେତେବେଳେ କ'ଣ ସ୍ୱପ୍ନରେ ବି ଭାବିଥିବେ ଆଜି ତିନିଶହ ବର୍ଷ ଭିତରେ ନାଏଗ୍ରାର ଏ ଯୋଉ ରୂପ ଦେଖୁଚନ୍ତି ତାର ସଂଭାବନା ! ସେତେବେଳେ ଏ ଅଞ୍ଚଳଟାକୁ ହ୍ୱାଇଟ୍ ଲୋକେ ଜାଣିଥିଲେ ଏଠି ଇଣ୍ଡିୟାନମାନେ ବଢିଆ ବଢିଆ ଧଳାଭାଲୁ ଛାଲ ଓ ଫର୍ ବିକ୍ରିବଟା କରନ୍ତି ବୋଲି । ଯଦି ଆମର ଜଣେ ଫ୍ରେଞ୍ଚ-ଏକ୍ସପ୍ଲୋରର୍– ତାଙ୍କ ନାମ ଜାଁ ନିକୋଲ୍– ୧୬୩୪ରେ ୱିସ୍‌କନ୍‌ସିନ୍‌ର 'ଗ୍ରିନ୍-ବେ'ରୁ ଖଣ୍ଡେ ଆହୁଲାମରା ଡଙ୍ଗାରେ ବସି ସାହସ କରି ଏଇ ସୁନାବ୍ୟା ପଞ୍ଚହ୍ରଦ ଅଞ୍ଚଳଟିକୁ ଆବିଷ୍କାର କରିନଥାନ୍ତେ, ତେବେ ଆମେରିକା ଆଜିର ଆମେରିକା ହେଇ ବିଶ୍ୱର ସର୍ବଶ୍ରେଷ୍ଠ ଧନାଢ୍ୟ ଦେଶ ଭାବେ ମ୍ୟାପ୍‌ରେ ସ୍ଥାନ ପାଇପାରିନଥାନ୍ତା– ଏହା ଏଯାବତ୍ ସେଇ ବଣୁଆ ଇଣ୍ଡିୟାନ୍ ଲୋକଙ୍କ ଭାଲୁଛାଲ ବ୍ୟବସାୟ କେନ୍ଦ୍ର ହୋଇ ରହିଯାଇଥାନ୍ତା । ଆପଣମାନେ ଯୁକ୍ତରାଷ୍ଟ୍ର ଆମେରିକାର ଇତିହାସ ଭୁଲିଯିବେଣି । ସେଥିପାଇଁ କହୁଚି– ଦିନେ ଆମ ଫରାସୀ ଲୋକେ ଆମେରିକାର ଏଇ ଅଞ୍ଚଳଟାକୁ ଇଣ୍ଡିୟାନ୍‌ଙ୍କ କବଳରୁ ମୁକ୍ତକରି ଏକ ସଭ୍ୟଦେଶରେ ପରିଣତ କରିଥିଲେ । ୧୭୫୪ରେ ଫ୍ରେଞ୍ଚ ଇଣ୍ଡିୟାନ୍ ୱାର୍ ନହୁଏ କି ଏ ଅଞ୍ଚଳଟା ଆମ ୟୁରୋପୀୟଙ୍କ ଅଧିକାରକୁ ନଆସେ । କିନ୍ତୁ କ'ଣ ହେଲା– ଆମେ ଫ୍ରେଞ୍ଚ-ଲୋକ ରକ୍ତ ଦେଇ ଏ ଅଂଚଳକୁ ଦେଶୀଲୋକଙ୍କ ଅକ୍ତିଆରରୁ ମୁକ୍ତକଲୁ– କିନ୍ତୁ ଫାଏଦା ନେଲେ କିଏ ?– ବିଶ୍ୱାସଘାତକ ଇଂଲିଶ୍ ଲୋକେ ! ସେମାନେ ଆମ ଫ୍ରେଞ୍ଚଲୋକଙ୍କୁ ଚିତାକାଟି କ୍ୟାନାଡାପଟକୁ ତଡିଦେଇ ମାଡିବସିଲେ ଯୁକ୍ତରାଷ୍ଟ୍ର ବୋଲାଉଥିବା ଏଇ ବିଶାଳ ଭୂଖଣ୍ଡକୁ । ପୁଣି ଏବେ ଆମକୁ କ୍ୟାନାଡାରୁ ମୂଳୋତ୍ପାଟନ କରି ଚାଲିଛନ୍ତି ବିଧିବଦ୍ଧ ଭାବେ । କିନ୍ତୁ ଆପଣମାନେ ଜାଣିରଖନ୍ତୁ ଆମେ ଫରାସୀମାନେହିଁ ପ୍ରକୃତ ମାଲିକ ଥିଲୁ ପଞ୍ଚହ୍ରଦ ଇଲାକା ସମେତ ଏଇ ନାଏଗ୍ରା ଜଳପ୍ରପାତର । ଏ ସବୁ ଅଂଚଳ ଥିଲା ଆମର, ଆମ ଫ୍ରେଞ୍ଚ ଲୋକଙ୍କର । ଧନ୍ୟ କହିବ ବ୍ରିଟିଶ୍ ଲୋକଙ୍କ ଡିପ୍ଲୋମାସିକୁ– ଡିପ୍ଲୋମାସି ତ ନୁହେଁ କୁହାଯାଉ ଟ୍ରେଚେରୀ !"
(ପଞ୍ଚହ୍ରଦ : ଲେକ୍ ସୁପିରିୟର୍, ମିଚିଗାନ୍, ହ୍ୟୁରନ୍, ଇରି ଓ ଅଣ୍ଟାରିଓକୁ ଆମେରିକାର ପଞ୍ଚହ୍ରଦ କୁହାଯାଏ ।)

ଲଞ୍ଚ କୂଳରେ ଲାଗିଲା । ସମସ୍ତେ ଓହ୍ଲେଇଲୁ । ଓଦା ପଲିଥିନ୍ ଆପ୍ରନ୍ ଗୁଡାକ ଦେହରୁ ଓହ୍ଲେଇପକେଇ ଷ୍ଟୋର୍‌ରେ ଡିପୋଜିଟ୍ କଲୁ । ବୋଟ ଭଡା ଆପ୍ରନ୍ ଭଡା ପ୍ରଭୃତି ଚୁକ୍ତି ହୋଇସାରିଥାଏ ପୂର୍ବରୁ । ଆମେ ଚାଲିଲୁ ଓ୍ୱିଞ୍ଚ୍ ପାଖକୁ, ଆଉ ନଦୀ ପତ୍ତନରୁ ଦୁଇଶହ ଫୁଟ ଉଚ୍ଚ ଅର୍ଦ୍ଧସେତୁ ଉପରେ ପୁଣି ପହଞ୍ଚିଗଲୁ ।

"ରାତି ନଅରେ ଆରମ୍ଭ ହେବ ଲାଇଟ୍ ପ୍ଲେ– ଆମେ ଅପେକ୍ଷା କରିବା ଏଇଠି ଏଇ ବ୍ରିଜ୍ ଉପରେ । ଲେଜର୍ ବିମ୍ ସାହାଯ୍ୟରେ ନାଏଗ୍ରା ପ୍ରପାତକୁ ସେମାନେ ହରରଙ୍ଗୀ ଆଲୁଅରେ କେମିତି ସଜେଇବେ ଦେଖିବା କଥା ନନା ! ଦେଖ କେତେ କେତେ ଟୁରିଷ୍ଟ ବେଢିଗଲେଣି ବ୍ରିଜ୍‌ଟାକୁ । ଆଉ ଟିକକେ ସୋରିଷ ପକେଇବାକୁ ବି ଜାଗା ଟିକିଏ ମିଳିବ ନାଇଁ ଏଠି ।'' ଝିଅ ସୁଲୁମା ଖବର ଦେଲା ଆଗତୁରା– ରାତି ନ' ବାଜିଲା । ନଦୀ ଆରପାରି କ୍ୟାନାଡା ପଟରୁ ହଠାତ୍ ଗୋଛାଏ ରଙ୍ଗୀନ୍ ଆଲୋକ ରେଖା (ଲେଜର୍ ବିମ୍) ଲମ୍ବି ଆସିଲା । ନଦୀ ଏପାରିର ଆମେରିକାନ୍ ଫଲ୍‌ସ୍ ଉପରେ ସେ ଆଲୋକ ଏକ ବିଚିତ୍ର ପ୍ରଭାବ ସୃଷ୍ଟିକଲା । ଲେଜର୍ ବିମ୍‌ଗୁଡିକ ଜଳପ୍ରପାତରୁ ଖସିପଡୁଥିବା ପ୍ରତିଟି ଜଳସ୍ତମ୍ଭକୁ ବିଭିନ୍ନ ରଙ୍ଗରେ ରଂଜିତ କରିଚାଲିଲା । ମନେହେଲା ଯେମିତି ନଦୀ ଆରପାରିରେ ବସିଥିବା କେହି ଜଣେ ଚିତ୍ରକର ଲମ୍ବା ଲମ୍ବା ତୂଳୀ ସାହାଯ୍ୟରେ ନଦୀ ଏପାରିରେ ଆକାଶରୁ ଅନବରତ ଖସିପଡୁଥିବା ଜଳସ୍ତମ୍ଭ ଗୁଡିକୁ ବିଭିନ୍ନ ରଙ୍ଗରେ ରଂଜିତ କରିଚାଲିଥାଏ । ଆଲୋକ ବର୍ଣ୍ଣାଳୀର ସାତଟି ରଙ୍ଗ ସହସ୍ର ରଙ୍ଗରେ ବିଭାଜିତ ହୋଇ ଏକ ସ୍ୱର୍ଗୀୟ ପ୍ରଭାବ ସୃଷ୍ଟି ହେଉଥାଏ । ଆଖି ପିଛୁଳାକେ ଦର୍ଶକର ସମସ୍ତ ବାସ୍ତବତାବୋଧ କୁଆଡେ ହଜିଗଲା । ସମଗ୍ର ଅଞ୍ଚଳ ପାଲଟିଗଲା ଏକ ଇନ୍ଦ୍ରଭୁବନ ।

ସେଇ ଦୁର୍ଲଭ ମନୋହର ଶୋଭାକୁ ପ୍ରାଣଭରି ଦେଖିବା ଭିତରେ ମୁଁ ଅନୁଭବ କରୁଥାଏ ଉଭୟ ପ୍ରକୃତି ଓ ମନୁଷ୍ୟର ସହଯୋଗରୁ ଉଦ୍‌ଭବ ଏକ ଅଭିନବ ସୃଷ୍ଟିର ସଂଭାବନା ଓ ତାର ଅନ୍ତର୍ନିହିତ ତାତ୍ପର୍ଯ୍ୟକୁ । ଭାରତର ପ୍ରାଚୀନ ଦାର୍ଶନିକ କପିଳ ମୁନିଙ୍କ ସାଂଖ୍ୟଯୋଗ ଦର୍ଶନରେ ପଢିଥିବା ତତ୍ତ୍ୱଗୁଡିକ ମନେପଡିଗଲା । ସେ ଦର୍ଶନ ଅନୁସାରେ ବିଶ୍ୱବ୍ରହ୍ମାଣ୍ଡର ପ୍ରକାଶ ସଂଭବ ହୋଇଛି ଏକ ପ୍ରକୃତି ଓ ବହୁ ପୁରୁଷଙ୍କ ସହଯୋଗ ବା ସଂଗମରୁ । ସେଇ ତତ୍ତ୍ୱର ଚୂଡାନ୍ତ ପରିପ୍ରକାଶ ପାଇଁ ସତେକି ଏଇ ନାଏଗ୍ରା ଜଳ-ପ୍ରପାତଟିକୁ ବିଶ୍ୱମାତା ରଚନା କରିଛନ୍ତି ଆମେରିକା ମହାଦେଶର ପଟ୍ଟଭୂମିରେ ।

ଢେର୍ ରାତିରେ, ଗଭୀର ଅନିଚ୍ଛା ସତ୍ତ୍ୱେ ଆମକୁ ପ୍ରପାତ ଅଞ୍ଚଳ ଛାଡିବାକୁ ପଡିଲା । ତେବେ ଆମର ନାଏଗ୍ରା ଦର୍ଶନ ଯେ ଏଯାଏଁ କେବଳ ଅଧା ହୋଇଥିଲା ତାହା ଜଣାଗଲା ପରଦିନ ଏଇ ବିଚିତ୍ର ସ୍ଥାନର ମହିମାକୁ ପୁନର୍ବାର ଅନ୍ୟ ଏକ ଦୃଶ୍ୟବିନ୍ଦୁରୁ ପର୍ଯ୍ୟବେକ୍ଷଣ କରିବା ପରେ ।

ରାତିଟା ଆମର ବିତିଲା ପୂର୍ବପରିଚିତ ଜଣେ ପ୍ରବାସୀ ଆମେରିକୀୟ ଓଡିଆ

ଭଦ୍ରବ୍ୟକ୍ତିଙ୍କ ଘରେ । ତାଙ୍କ ନାମ ଶ୍ରୀ ମିହିର ରଥ । ସେ ଓ ତାଙ୍କ ପତ୍ନୀ ରୀନା– ମହେଶ ଓ ସୁଲୁଙ୍କର ଅନ୍ତରଙ୍ଗ । ସେମାନେ କେତେବର୍ଷ ହେବ ଏଇ ନାଏଗ୍ରା ନିକଟ ବୁଫାଲୋ ସହରରରେ ବସବାସ କରିଆସୁଥାନ୍ତି । ଆମେ ତାଙ୍କରି ଘରେ ରାତିକ ପାଇଁ ଅତିଥି ହେଲୁ ।

ନିରୁପମା ରୀନାଙ୍କୁ ଦେଖୁ ଦେଖୁ ଚିହ୍ନିପାରିଲେ । ସେ ହେଉଛନ୍ତି ସମାଜ ସଂପାଦକ ଶ୍ରୀ ରାଧାନାଥ ରଥଙ୍କ ସାନଭାଇ ବିଶ୍ୱନାଥ ରଥଙ୍କ ନାତୁଣୀ । ତେଣେ ମିହିରଙ୍କ ପାରିବାରିକ ପରିଚୟ ମଧ୍ୟ ମିଳିଗଲା । ସେ ହେଲେ ବଷ୍ଟନ୍‌ର ଶ୍ରୀ ନିତ୍ୟାନନ୍ଦ ମିଶ୍ରଙ୍କ ଶାଳକ । ନିତ୍ୟାନନ୍ଦଙ୍କ ଘର କଟକ । ତାଙ୍କ ବାପା ଭାବଗ୍ରାହୀ ମିଶ୍ର (ଆଇ.ଏ.ଏସ୍) ମୋ ଶଶୁର ସ୍ୱର୍ଗତ ନନ୍ଦକିଶୋର ରଥଙ୍କ ବନ୍ଧୁ । ନିତ୍ୟାନନ୍ଦ ଓ ତାଙ୍କ ସାନ ଭାଇ ସତ୍ୟବ୍ରତ ଦୁହେଁ ଦୁଇ ପ୍ରବାସୀ ଭାରତୀୟ ଓଡିଆ ଯୋଉମାନେ ଆମେରିକାର ଓଡିଆ ସମାଜର (ଓସା) ଦୁଇ ସକ୍ରିୟ ସଭ୍ୟ । ଏ ଦୁଇଭାଇଙ୍କୁ ମୁଁ ଗତଥର (୧୯୯୩)ରେ ଆମେରିକା ଭ୍ରମଣ ସମୟରେ ଓସା ମିଟିଂରେ ପ୍ରଥମେ ଭେଟିଥିଲି ଓ ସେମାନଙ୍କ ପାରିବାରିକ ସଂପର୍କ ମାଧ୍ୟମରେ ଆହୁରି ବହୁ ବିଶିଷ୍ଟ ପ୍ରବାସୀ ଓଡିଆଙ୍କ ପରିଚୟ ଲାଭକରିଥିଲି ।

ସେଇ ପାରିବାରିକତା ଆଉ ଆମେରିକାର ଓଡିଆମାନଙ୍କର ସାମାଜିକ ବନ୍ଧନର ନିବିଡତା ଭିତରେ ରାତିଟି ଖୁବ୍ ଶୀଘ୍ର ପାହିଗଲା । ଝରକା ପରଦା ଆଡେଇଦେବାକ୍ଷଣି କାକରଭିଜା ଓକ୍ ଗଛର ବଣ ଉପର ଉଜ୍ଜ୍ୱଳ ପୂର୍ବାକାଶ ମତେ ସବା ପ୍ରଥମେ ସଂଖୋଳିଲା । ସେଇ ଦିଗଟି ଥିଲା ସୂର୍ଯ୍ୟ ଉଦୟର ଦିଗ– ପୂର୍ବଦିଗ । ପୂର୍ବଦିଗର ଚେତନା ପୁନର୍ବାର ଜାଗ୍ରତ କଲା ମନରେ ଏକ ଅନୁଚିନ୍ତା– ମୁଁ ସେଇ ପୂର୍ବଦିଗରୁ ଉଡି ଚାଲିଆସିଚି ଅନେକ ପଶ୍ଚିମକୁ । ମନେପଡିଲା ଭୁବନେଶ୍ୱରରେ ଆମ ଶହୀଦନଗରର ସକାଳ । ସକାଳ ହେଲେ ଆଖି ଫିଟେଇଁ ଝରକା ବାହାରକୁ ଚାହିଁଲେ ପ୍ରଥମେ ଆଖିରେ ପଡେ ଆମ ହତା ଫାଟକ ପାଖର ସେଇ ଗଙ୍ଗଶିଉଳି ଗଛଟି ଯାହା ମୂଳରେ ଗଦାହେଇଯାଇଥାଏ ରାତିପାହାନ୍ତାରେ ଗଛରୁ ଝରିପଡିଥିବା ଅସଂଖ୍ୟ ଫୁଲ । ତା' ପାଖରେ ଥାଏ ଗୋଟାଏ କାମିନୀ ଗଛ– ଆଷାଢମାସରେ ଏ ଗଛଟା କାମିନୀ ଫୁଲରେ ଲଦିହେଇ ଦେଖାଯାଏ ଗୋଟିଏ ତାରାଭରା ନୀଳଆକାଶ ଭଳି । ଗଙ୍ଗଶିଉଳି ଆଉ କାମିନୀ ଫୁଲ ମାନଙ୍କର ମିଶ୍ରିତ ମହକରେ ସମସ୍ତ ଅଂଚଳ ମହକୁଥାଏ । ଠିକ୍ ସେତିକିବେଳେ କାନରେ ପଡେ– ଆମ ଶହୀଦନଗରର ଗ୍ରାମ-ଦେବତୀ ଖଣ୍ଡୁଆଳୀ ଠାକୁରାଣୀଙ୍କ ମନ୍ଦିର ଆଡୁ ସକାଳ ଆଳତୀ ବେଳର ଘଣ୍ଟଘଣ୍ଟା ଆଉ ଶଂଖନାଦ ! ନାକରେ ବି ଆପେ ଆପେ ବାଜିଗଲା– ଆଳତୀ ଧୂପର ବାସ୍ନା । ଆଃ– ମନଟା ଘରମୁହାଁ ହେଇଗଲା । ଆଶ୍ଚର୍ଯ୍ୟ ହୋଇ ଭାବିଲି– ମୁଁ ବର୍ତ୍ତମାନ କୋଉଠି ଅଛି ?

ମୁଁ ସେତେବେଳେ ଅବଶ୍ୟ ଥାଏ ଯୁକ୍ତରାଷ୍ଟ୍ର ଓ କ୍ୟାନାଡା ସୀମାବର୍ତ୍ତୀ ବୁଫାଲୋ (ନାଏଗ୍ରା) ସହରରେ ଯାହାର ଅକ୍ଷାଂଶ ଓ ଦ୍ରାଘିମାକୁ ରୋଡ୍‌ମ୍ୟାପ୍‌ରୁ ଲକ୍ଷ୍ୟକରିଥାଏ ପୂର୍ବରୁ– ତାହା ହେଲା ଯଥାକ୍ରମେ ୪୩° (ଉତ୍ତର) ଓ ୭୯° (ପଶ୍ଚିମ) । ଆମ ଘର ଭୁବନେଶ୍ୱରର

ଅକ୍ଷାଂଶ ହେଲା ୨୦.୧୫$^{0}$ (ଉ) ଓ ଦ୍ରାଘିମା ୮୫.୫୨$^{0}$ (ପୂ) । ଏହାର ଅର୍ଥ ମୋର ସ୍ଥିତି ବର୍ତ୍ତମାନ ଉତ୍ତର ଗୋଲାର୍ଦ୍ଧର ଅନେକ ବେଶୀ ପଶ୍ଚିମରେ ଯୋଉଠି ବର୍ତ୍ତମାନ ମୁଁ ପୂର୍ବଦିଗକୁ ଅନାଇ ଲକ୍ଷ୍ୟକରୁଥାଏ ଆଜି ତା ୧୮ ଅଗଷ୍ଟ, ୧୯୯୭ ସକାଳର ସୂର୍ଯ୍ୟଙ୍କୁ ।

କିଛି ସମୟ ପରେ ଓକ୍‌ବଣ ଉପରୁ ସୂର୍ଯ୍ୟ ଦେଖାଗଲେ । ଅମେରିକାର ବିଭିନ୍ନ ସ୍ଥାନ ଭ୍ରମଣ ସମୟରେ ସେଠାର ସକାଳର ସୂର୍ଯ୍ୟୋଦୟକୁ ଲକ୍ଷ୍ୟ କରିବା ମୋର ଏକ ସଉକ । ନାଏଗ୍ରା ଅଂଚଳର ସେଇ ପ୍ରାତଃକାଳୀନ ସୂର୍ଯ୍ୟ ଦର୍ଶନ ମୋ ମନକୁ ପବିତ୍ର କରିଦେଲା । ଜୀବନରେ ନାଏଗ୍ରାଦର୍ଶନ ଭଳି ଏଠାର ସକାଳର ସୂର୍ଯ୍ୟଙ୍କର ଦର୍ଶନ ପାଇଁ ମତେ ଯେ ଏପରି ଏକ ସୁଯୋଗ କେବେ ବି ମିଳିପାରେ ତାହା ଥିଲା ମୋର ସ୍ୱପ୍ନାତୀତ ।

"ନନା ! ଆମେ ପରା ଆଜି ନାଏଗ୍ରାର ଶେଷଦର୍ଶନ କରି ଘରକୁ ଫେରିଯିବା– ଉଠ, ଗାଧୁଆପାଧୁଆ କରି ଶୀଘ୍ର ରେଡିହେଇଯାଅ । ଆମେ ସହଳ ସହଳ ବାହାରିଯିବା. . .'' ଝିଅର ଡାକରାରେ ସମୟ ସଚେତନତା ଫେରିଆସିଲା ।

## ଛାଗଦ୍ୱୀପରୁ ନାଏଗ୍ରା ଦର୍ଶନ : ଏକ ଅଭୂତପୂର୍ବ ଦୃଶ୍ୟ

– ତା ୧୮ ଅଗଷ୍ଟ ୧୯୯୭ ।

ଶ୍ରୀ ରଥଙ୍କ ପରିବାରଠାରୁ ବିଦାୟ ନେଇ ସକାଳ ଦଶଟା ସୁଦ୍ଧା ଆମେ ଆମ କାର୍‌ରେ ବସିଲୁ ଫେରନ୍ତି ଯାତ୍ରାପାଇଁ । ମହେଶ କହିଲେ– ଆମେ କିନ୍ତୁ ନାଏଗ୍ରା ବୁଲା ପୂରା କରିନୁ ନନା ! ଆମେ ଏ ପର୍ଯ୍ୟନ୍ତ ପୁରୀ ଜଗନ୍ନାଥଙ୍କ ମନ୍ଦିରର ବେଢା ପରିକ୍ରମା କରିଚେ ସିନା, କିନ୍ତୁ ଠାକୁର ଦର୍ଶନ ବାକିଅଛି ।

ଯଥାର୍ଥରେ ଆମ ପାଇଁ ସେଦିନ ନାଏଗ୍ରା ଦର୍ଶନ ଥିଲା ନାଏଗ୍ରାର ଆତ୍ମା ଦର୍ଶନ । କିଛି ସମୟର ଡ୍ରାଇଭ୍ ପରେ ଆମେ ପୁଣି ପହଞ୍ଚିଲୁ ନାଏଗ୍ରାରେ । କିନ୍ତୁ ମହେଶ ଆମକୁ ବାଟ କଢେଇ ନେଲେ ଅନ୍ୟ ଏକ ମାର୍ଗରେ । ସେଇଟି ହେଲା– Goat Island ଅର୍ଥାତ୍ "ଛାଗଦ୍ୱୀପ''କୁ ରାସ୍ତା ।

''ଏ ଛାଗଦ୍ୱୀପଟି କ'ଣ ?'' ମହେଶ ଆମକୁ ବୁଝେଇ ବୁଝେଇ ବାଟ କଢୋଉ-ଥା'ନ୍ତି, ''ନନା, ଆପଣ ଜାଣନ୍ତି ୟୁ.ଏସ୍.ଏ ହେଲା ଗୋଟାଏ ଦେଶ ଯେ ଅନ୍ୟ କୌଣସି ଦେଶର ଆଧିପତ୍ୟକୁ ସହଜରେ ମାନିନିଏନା । ଅତୀତରେ ଆମେରିକା ମହାଦେଶ ଉପରେ ରାଜନୈତିକ କ୍ଷମତା ଜାହିର କରିବା ପାଇଁ ୟୁରୋପୀୟ ଦେଶମାନେ ପରସ୍ପର ସହିତ ବହୁ ଯୁଦ୍ଧ କରିସାରିଥିଲେ । ଆମେରିକାର ଭୂଭାଗକୁ ରେଡ୍‌ଇଣ୍ଡିୟାନ୍‌ମାନଙ୍କଠାରୁ ଖଣ୍ଡଖଣ୍ଡ କରି ଛଡେଇନେଇ ନିଜନିଜ ଅକ୍ତିଆରକୁ ନେଇଯିବା ପରେ ମୁଣ୍ଡ ଟେକିଲା ସୀମା ନିର୍ଦ୍ଧାରଣ କନ୍ଦଳ । ସେ କନ୍ଦଳର ମୁଖ୍ୟ ହେଲେ– ଇଂରେଜ ଓ ଫରାସୀ । ସେତେବେଳେ ଇଂରେଜମାନେ ନିୟନ୍ତ୍ରଣ କରୁଥିଲେ ଆଜିର ଏଇ ୟୁ.ଏସ୍.ଏ ବୋଲାଉଥିବା ଅଂଶକୁ, ଆଉ

ଫରାସୀମାନେ ନିଜ ଅଧୀନରେ ରଖିଥିଲେ କ୍ୟାନାଡାର ବିଶାଳ ଭୂଭାଗକୁ । ବାରମ୍ବାର କନ୍ଦଳ ପରେ ଶେଷରେ ସୀମା ନିର୍ଦ୍ଧାରଣ ହେଲା । ସେଇ ସୀମା ନିର୍ଦ୍ଧାରଣ ରେଖା ନାଏଗ୍ରା ନଦୀକୁ ଦୁଇଭାଗରେ ବିଭକ୍ତ କରିଚି– ନଦୀର ଉତ୍ତର ଅଂଶଟା କ୍ୟାନଡାର ଆଉ ଦକ୍ଷିଣଟା ୟୁ.ଏସ୍.ଏ.ର । ନାଏଗ୍ରା ଫଲ୍‌ସ୍ ବି ବିଭକ୍ତ ହେଲା ଦୁଇଭାଗରେ । କାଲି ସନ୍ଧ୍ୟାରେ ଆମେ ନାଏଗ୍ରାର ଯୋଉ ଅଂଶଟାକୁ ଲେଜର୍ ବିମ୍‌ରେ ଆଲୋକିତ ହେବା ଦେଖିଥିଲେ ସେଇ ଅଂଶର ନାମ American falls । କିନ୍ତୁ ସମଗ୍ର ଜଳପ୍ରପାତକୁ ଦେଖିବାପାଇଁ ହେଲେ ଟୁରିଷ୍ଟମାନଙ୍କୁ କ୍ୟାନାଡାକୁ ଯିବା ନିହାତି ଦରକାର । ଆପଣ ଜାଣନ୍ତି– ନାଏଗ୍ରା ହେଲା ଏ ଦୁଇ ଦେଶ ୟୁ.ଏସ୍.ଏ ଓ କ୍ୟାନେଡାର ଟୁରିଜମ୍ ବ୍ୟବସାୟର ଭାତହାଣ୍ଡି । କୋଟି କୋଟି ଟୁରିଷ୍ଟ ଏଠିକି ପ୍ରତିବର୍ଷ ଆସନ୍ତି ନାଏଗ୍ରା ଦେଖିବାକୁ । ତେଣୁ ଏ ଦୁଇ ଦେଶ ଭିତରେ ନାଏଗ୍ରାର ଟୁରିଜିମ୍ ବ୍ୟବସାୟକୁ ନେଇ ବହୁ କାଳରୁ ଲାଗିରହିଚି ପ୍ରତିଯୋଗିତା । କିନ୍ତୁ ଭୌଗୋଳିକ କାରଣରୁ କ୍ୟାନାଡା ହିଁ ସବୁଠୁ ବେଶୀ ସୁବିଧାଜନକ ସ୍ଥିତିରେ ଟୁରିଷ୍ଟମାନଙ୍କୁ ଆକର୍ଷଣ କରିପାରେ– କାରଣ କାନାଡା ପଟୁ ହିଁ ନାଏଗ୍ରା ଜଳପ୍ରପାତ ପୂରାଟା ଦେଖାଯାଏ । ୟୁ.ଏସ୍.ଏ ପଟେ ନାଏଗ୍ରାର ଗୋଟାଏ ଛୋଟିଆ ଅଂଶ– ମୋଟେ ଦିତିନିଟା ପ୍ରପାତ ଦେଖାଯାଏ । ତେଣୁ ୟୁ.ଏସ୍.ଏର ମୁଣ୍ଡବ୍ୟଥା କେମିତି ଟୁରିଷ୍ଟମାନଙ୍କୁ ଟାଣିବ ନିଜ ଆଡକୁ ।

ଏଇ କିଛି ବର୍ଷ ଭିତରେ କାନାଡାକୁ ପ୍ରତିଯୋଗିତାରେ ପଛକୁ ପକେଇଦେବାକୁ ଏକ ବିଶାଳ ପ୍ରୋଜେକ୍ଟ ଚୁପ୍‌ଚାପ୍ ଆରମ୍ଭ କରିଦେଇଥିଲା ଆମେରିକା ସରକାର । କ'ଣ କରିଚନ୍ତି ସେମାନେ ସେଠି ଚାଲନ୍ତୁ ଦେଖିବେ ନିଜ ଆଖିରେ ।''

କିଛି ବାଟ ଚାଲିବା ପରେ ଆମେ ପହଞ୍ଚିଲୁ ଗୋଟିଏ ନଈକୂଳରେ । ଦେଖିଲୁ ନଈଟା ଗୋଟାଏ ନୁହଁ– ତାର ବହୁତ ଗୁଡାଏ ଶାଖା ପ୍ରାଶାଖା ସିଆର୍ ସିଆର୍ ହେଇ ବୋହିଯାଉଥାଏ । ଦୁଇ ସିଆର୍ ମଝିରେ ଗୋଟିଏ ଗୋଟିଏ ଦ୍ୱୀପାଞ୍ଚଳ । ପ୍ରତି ଧାର ପାଣିର ସୁଅ ଖୁବ୍ ତୀବ୍ର ମନେହେଉଥାଏ । କିନ୍ତୁ ନଈ ଧାର ଗୁଡାକ ଜମାରୁ ଗହୀରା ନୁହଁନ୍ତି– ପରିଷ୍କାର ପାଣିର ପଥୁରିଆ ଚଟାଣ ସବୁ ସ୍ପଷ୍ଟ ଦିଶୁଥାଏ– କୋଉଠି ଆଣ୍ଠୁଏ ପାଣିତ କୋଉଠି ଅଣ୍ଟାଏ ଭଳି । ସାରା ଅଂଚଳଟା ଯାକକୁ ବ୍ୟାପି ଅସଂଖ୍ୟ ଜଳଧାରା ତୀବ୍ରବେଗରେ ଛୁଟିଚାଲିଥାଏ ଆଗକୁ ପ୍ରପାତ ଅଭିମୁଖେ । ସେଇ ନଦୀଧାର ସମୂହକୁ ଦେଖେଇ ମହେଶ କହିଲେ– ''ଏଇ ହେଲା ନାଏଗ୍ରା ନଦୀ । ଆଉ ଏଇ ଯୋଉ ସରୁ ସରୁ ଜଳଧାର ଗୁଡାକୁ ଏଠି ଜାଲ ଭଳି ବିଛେଇ ହେଇଚନ୍ତି ମାଟି ଉପରେ ସେସବୁ ଟିକେ ବାଟ ପରେ ଅଜାଡି ହେଇ ପଡିବେ ରସାତଳକୁ! ତାରି ନାଁ ନାଏଗ୍ରା ଫଲ୍‌ସ୍ ।''

ଆମେ ସେତେବେଳେ ଗୋଟିଏ ନଈଧାର ପାରିହବାକୁ ପହଞ୍ଚିଥାଉ ଗୋଟିଏ କାଠ ପୋଲ ଉପରେ । ପୋଲ ପାରିହେବା ବେଳେ ମୁଁ ତଳକୁ ଅନାଇ ଦେଖିଲି– ନଦୀର ତୀବ୍ର ଜଳସ୍ରୋତ ତରଳ ରୂପା ଭଳି ବୋହିଚାଲିଥାଏ ଏକ ପଥୁରିଆ ଚଟାଣ ଉପରେ । ସୂର୍ଯ୍ୟ-

କିରଣରେ ଝଲଝଲ କରୁଥିବା ଜଳରାଶିକୁ ଦେଖିଲାକ୍ଷଣି ମନେହେଲା ସତେକି ହିମାଳୟର ଋଷିକେଶଠାରେ ଲକ୍ଷ୍ମଣ ଝୋଲା ପୋଲ ଉପରେ ଥାଇ ଗଙ୍ଗାନଦୀକୁ ଭେଟୁଚି ଆଉଥରେ ଏଠି ଆମେରିକାରେ। ପୋଲ ତଳ ପାଣି ଭିତରକୁ ଚାହିଁଲି। ଅବିକଳ ଲକ୍ଷ୍ମଣଝୋଲା ରୋପ୍‌ୱେ ତଳପାଣିରେ ମାଛମାନେ ଖେଳିଲା ପରି ଏଠିବି ବଡବଡ ମାଛ ସବୁ ସୁଅକାଟି ଛୁଟୁଥାନ୍ତି ନଦୀର ଉପର ମୁଣ୍ଡ ଦିଗରେ। ସେମାନେ ଏତେ ପାଖରେ ପହଁରୁଥାନ୍ତି ଯେ ସେମାନଙ୍କ ଆଖିରେ ଆଖି ମିଳେଇ ଚାହିଁ ହେଉଥାଏ। ମନେପଡିଲା ଋଷିକେଶର ଲକ୍ଷ୍ମଣ ଝୋଲା ପୋଲ ଉପରେ ଠିଆହେଇ ମୁଠାଏ ଖଇ ପୋଲ ତଳକୁ ଛାଟି ଦେଲା ପରେ ଯେମିତି କୁଆଡୁ ନାଇଁ କୁଆଡୁ ମାଡି ଆସୁଥାନ୍ତି ପଲପଲ ମାଛ ଆଉ ଭାସିଯାଉଥିବା ଲିଆଗୁଡାକୁ ମୁହୂର୍ତ୍ତକେ ଝାମ୍ପିନେଇ ପୁଣି ଅଦୃଶ୍ୟ ହେଇଯାଉଥାନ୍ତି– ଏଠିବି ମାଛମାନଙ୍କୁ କେହି କେହି ଟୁରିଷ୍ଟ ସେମିତି ଖୁଆଉଥାନ୍ତି ଫିସ୍‌ଫୁଡ୍।

ଆହୁରି ଲକ୍ଷ୍ୟକଲି– ନଈ ସୁଅରେ ଭାସିଯାଉଥାଏ ବଡବଡ କାଠ ଗଣ୍ଡିମାନ। ସେଗୁଡାକ କୋଉଠୁ ଆସୁଚି ବୋଲି ଅନୁସନ୍ଧାନ କରିବା ପରେ ବୁଝିଲି– ଏସବୁ କାଠ ଭାସିଆସେ ନାଏଗ୍ରା ନଦୀର ଉପରମୁଣ୍ଡର ଇରି ହ୍ରଦର ଜଳ ପ୍ଲାବନ ସମୟରେ ହ୍ରଦକୂଳର ପ୍ରାଚୀନ ଅରଣ୍ୟ ଭିତରୁ। ନାଏଗ୍ରା ନଦୀର ଉତ୍ପତ୍ତିସ୍ଥଳ ହେଲା ଇରି ହ୍ରଦ ଓ ଏହାର ଜଳ ନିଷ୍କାସିତ ହୁଏ ଅନ୍ୟ ଏକ ବିଶାଳ ହ୍ରଦ ଲେକ୍ ଅଣ୍ଟାରିଓ ଭିତରକୁ। ପ୍ରତିବର୍ଷ ବସନ୍ତ ଋତୁରେ ବରଫ ତରଳିବା ବେଳେ ନଦୀରେ ଆସୁଥିବା ପ୍ରବଳ ବନ୍ୟାରେ ଅରଣ୍ୟର ବହୁ ବଡବଡ ପାଇନ୍ ଓ ଅନ୍ୟାନ୍ୟ ଗଛ ମାନ ଉପୁଡିପଡେ। ସେଇସବୁ ଉପୁଡା ଗଛ ଗୁଡାକ ନାଏଗ୍ରା ନଦୀରେ ଭାସିଆସେ ଜଳପ୍ରପାତ ଅଭିମୁଖେ। କିନ୍ତୁ ସେସବୁକୁ ପ୍ରପାତ ଅଞ୍ଚଳକୁ ପଶି ଜଳସ୍ରୋତକୁ ବିପର୍ଯ୍ୟସ୍ତ କରିବାକୁ ଦିଆନଯିବାର ସମସ୍ତ ବନ୍ଦୋବସ୍ତ କରାଯାଇଥାଏ ପାର୍କ ପରିଚାଳନା କର୍ତ୍ତୃପକ୍ଷରଙ୍କ ଦ୍ୱାରା ।

ଆମେ ଗୋଟାକ ପରେ ଗୋଟାଏ କରି ଏକାଧିକ ନଦୀ ଧାର ପାରିହେଇ ଶେଷରେ ପହଞ୍ଚିଲୁ ଏକ ମନୋରମ ଆରଣ୍ୟକ ଦ୍ୱୀପାଂଚଳରେ। ଏଇ ଦ୍ୱୀପାଂଚଳର ନାଁ ଛାଗଦ୍ୱୀପ (Goat Island)। ଚାରିଆଡକୁ ଅନାଇଲି। ଅତୁଳନୀୟ ଶୋଭାବନ୍ତ ସେଇ ପ୍ରାକୃତିକ ଦୃଶ୍ୟ ହିମାଳୟର କୌଣସି ଏକ ସ୍ଥାନପରି ମତେ ବୋଧହେଲା। କିଛି ବାଟ ଆଗେଇବା ପରେ କାନରେ ପଡିଲା ଜଳପ୍ରପାତର ଗର୍ଜନ। ଆମେ ଆହୁରି ଆଗକୁ ଆଗକୁ ଚାଲିଲୁ। ଶେଷରେ ହାବୁଡିଲୁ ଅଣ୍ଟାଏ ଉଚ୍ଚର ଏକ ସିମେଣ୍ଟ କଂକ୍ରିଟ୍ କାନ୍ଥ ପାଖରେ। କାନ୍ଥ ଆରପାଖେ ରସାତଳ ପରି ଗଭୀର ଗର୍ତ୍ତ। କାନ୍ଥର ଗୋଟାଏ ପ୍ରାନ୍ତ କିନ୍ତୁ ଛୁଉଁଥାଏ ନାଏଗ୍ରା ପ୍ରପାତର ଏକ ଅଂଶକୁ !

ସେତିକିବେଳେ ମୋର ଦୁଇନାତି ଅମୃତ ଓ ମନୀଶ ଚିତ୍କାର କରିଉଠିଲେ, "ଅଜା ! ଲୁକ୍ ଲୁକ୍ ଲୁକ୍ ! We are right on the Horse Shoe Falls ! You can

touch Niagra Falls with your fingers here"– କହୁକହୁ ଗୋଟାଏ ପିଲା ଉହୁଁକି ଉଠିଲା ସାମ୍ନାର ଅଧାକାନ୍ଥି ଉପରକୁ ଆଉ କାନ୍ଥକଡକୁ ଲାଗି ବୋହିଯାଉଥବା ପାଣିଧାରକୁ ଆଙ୍ଗୁଠି ବଢେଇ ଛୁଇଁଦେବା ମାତ୍ରେ କିରିକିରି ହେଇ ହସିଉଠି କହିଲା, "Look ! I touch the great Niagra Falls with my fingers, Aja !"

ପିଲା ଦୁଇଟାଙ୍କୁ ବାଉଣ୍ଡେରି କାନ୍ଥ ପାଖରୁ ଦୂରକୁ ଟାଣିନେଲେ ମହେଶ। ପରେପରେ ଆମ ସମସ୍ତଙ୍କୁ ସତର୍କ କରିଦେଲେ– ସମସ୍ତେ ସାବଧାନ! ଏ କାନ୍ଥ ଉପରକୁ ଉହୁଙ୍କା ଉହୁଙ୍କି ସଂପୂର୍ଣ୍ଣ ନିଷେଧ ! ଏଠି ଦେଖୁଚନ୍ତିତ ସେ ବଡ ସାଇନ୍‌ବୋର୍ଡଟା ? ଆରପଟେ ନାଏଗ୍ରା 'ଫଲ୍‌ସ୍‌ର ବେସିନ୍। ଏଇ ହେଲା ଗୋଟେ ଆଇଲ୍ୟାଣ୍ଡର ସୀମା। ଏଇ ଜାଗାରୁ ୟୁଏସ୍ ପଟୁ ପୂରା ନାଏଗ୍ରା 'ଫଲ୍‌ସ୍‌ର ହର୍ଷସୁ ଆକୃତିକୁ ଦେଖିହୁଏ। ଏ ଜାଗାର ସବୁଠୁ ବଡ ଆକର୍ଷଣ– ଆପଣ ଏଠି ସିଧା ନାଏଗ୍ରା ଫଲ୍‌ସ୍‌କୁ ଏଠି ହାତ ବଢେଇ ଛୁଇଁପାରିବେ। କିନ୍ତୁ ସାବଧାନ୍ ! କାନ୍ଥ ଆରପାଖେ ଯମାଳୟ ! ତଳକୁ ଖସିଲେ ସିଧା ଯାଇ ପଡିବ ନାଏଗ୍ରା ବେସିନ୍ ଭିତରେ !"

ଆମେ ଯୋଉ ଜାଗାରେ ଠିଆହେଇଥାଉ ସେଠୁ ଅର୍ଦ୍ଧଚନ୍ଦ୍ରାକୃତି ସମଗ୍ର ନାଏଗ୍ରା ଫଲ୍‌ସ୍‌ଟି ସଂପୂର୍ଣ୍ଣ ଦେଖିହେଉଥାଏ। ହଠାତ୍ ମୋ ଆଖିରେ ପଡିଲା– ନାଏଗ୍ରା ୱାଟର୍ ଫଲ୍‌ସ୍‌ର ଗୋଟାଏ ସରୁ ଧାର ପାଣି କାନ୍ଥ ଉପରକୁ ଉଛୁଳିଉଠିଲା ଆଉ ଆମ ପଟକୁ ଛିଟିକି ଆସିଲା। ଏହାପରେ ନାଏଗ୍ରାକୁ ସ୍ପର୍ଶ କରିବାର ଲୋଭ ସଂବରଣ କରିପାରିଲି ନାହିଁ। କାନ୍ଥ ଉପରକୁ ହାତ ବଢେଇ, ସେପାଖେ ନିଜ ଅସ୍ତିତ୍ୱକୁ, ପଂଜୁରି ଆବଦ୍ଧ ସିଂହ ପରି ବଜ୍ର ନିର୍ଘୋଷରେ ଜାହିର କରୁଥିବା ନାଏଗ୍ରା ଜଳପ୍ରପାତରୁ ଆଂଜୁଳାଏ ପାଣି ତୋଳିଆଣିଲି ଆଉ ଗଙ୍ଗାଦେବୀଙ୍କ ଆରାଧାନା ମନ୍ତ୍ର ଉଚ୍ଚାରଣ କଲି – "ଓଁ ଦେବୀ ସୁରେଶ୍ୱରୀ ଭଗବତୀ ଗଙ୍ଗେ / ତ୍ରିଭୁବନ ତାରିଣୀ ତରଳ ତରଙ୍ଗେ / ଶଙ୍କର ମୌଳୀ ବିହାରିଣୀ ବିମଳେ / ମମ ମତିରସ୍ତୁଂ ତବ ପର୍ଦ କମଳେ" । –ଏହା ପରେ ଆଂଜୁଳିର ଜଳକୁ ପ୍ରପାତ ଉପରୁ ତଳକୁ ଧୀରେଧୀରେ ଛାଡିବା ସମୟରେ ତଳକୁ ଚାହିଁ ଦେଖିଲି– ମୋର ଆଂଜୁଳିର ଜଳଧାରା ପ୍ରାୟ ଦୁଇଶହ ଫୁଟ ତଳେ ବୋହିଯାଉଥିବା ନାଏଗ୍ରା ନଦୀ ବକ୍ଷରେ ଲୀନହେଇଗଲା। ଏଇ ହେଲା ଗୋଟ ଆଇଲ୍ୟାଣ୍ଡର ବିଶେଷତ୍ୱ। ଏଠି ପ୍ରତ୍ୟକ୍ଷ ଅନୁଭବ ଦ୍ୱାରା ଦର୍ଶକ ଯେଉଁ ଅନୁଭୂତି ଅର୍ଜନ କରିବାର ସୁବିଧା ଆମେରିକା ସରକାର ଯୋଗାଇ ଦେଇ ପାରିଚି ତାହା କ୍ୟାନେଡା ପଟରେ ଏଯାବତ୍ ସଂଭବ ହୋଇନାହିଁ।

ଶହଶହ ଦର୍ଶକ ଏଇ ଭିତରେ ସେ ସ୍ଥାନରେ ପହଞ୍ଚି ଯାଇଥାନ୍ତି। ସ୍ଥାନଟା କୋଳାହଳମୟ ହୋଇଉଠିଲା। ସାରା ପୃଥିବୀର ବିଭିନ୍ନ ଦେଶରୁ ଆଗତ ଟୁରିଷ୍ଟମାନଙ୍କ ସଂଖ୍ୟାରେ ଧୀରେଧୀରେ ଗୋଟା ଆଇଲ୍ୟାଣ୍ଡକୁ ମୁଖରିତ କରି ଲାଗିଲା ।

## ପ୍ରପାତର ନିମ୍ନଦେଶରୁ ନାଏଗ୍ରାର ବ୍ୟୋମକେଶ ରୂପ–

''ନନା! ଏଥର ଚାଲନ୍ତୁ ଯିବା ଆଉ ଏକ ଜାଗାକୁ ।''– ମହେଶଙ୍କ ଡାକ କାନରେ ବାଜିଲା– ଏଥର ଯିବା ପ୍ରପାତ ତଳକୁ । ସେଠୁ ଦୁଇଶହ ଫୁଟ ଉପରକୁ ଅନାଇଲେ ଦେଖିହେବ ନାଏଗ୍ରା ଫଲ୍ସ୍‌ର ଏକ ନୂଆ ରୂପ ଯାହା ଉପରୁ ଆମେ ଦେଖିପାରୁନା । ଏଇ ହେଲା ଗୋଟ୍-ଆଇଲ୍ୟାଣ୍ଡ୍‌ର ବିଶେଷ ଆକର୍ଷଣ ଯାହା କ୍ୟାନାଡା ପଟେ ଟୁରିଷ୍ଟମାନେ ଦେଖିବାରୁ ବଞ୍ଚିତ । ଏଇ କାରଣରୁ ୟୁଏସ୍ ସରକାର କୋଟିକୋଟି ଡଲାର ଇନ୍‌ଭେଷ୍ଟ୍ କରି ଏ ଦ୍ୱୀପାଞ୍ଚଳଟିକୁ ଡେଭ୍‌ଲପ୍ କରେଇଚି ନାଏଗ୍ରା ଫଲ୍ସ୍ ଟୁରିଜମ୍‌ର କମର୍ସିଆଲ୍ ପ୍ରମୋସନ୍ ପାଇଁ । ଚାଲନ୍ତୁ ତେବେ ।'' – ମହେଶଙ୍କୁ ଅନୁସରଣ କରି ଆମେ ଚାଲିଲୁ ।

ଛାଗଦ୍ୱୀପର ଯେଉଁ ଅଂଶ ଉପରେ ଆମେ ସେତେବେଳେ ଚାଲୁଥାଉ ସେ ଅଂଶଟି ଗୋଟାଏ ପାର୍କ ଏରିଆ । ଏକ ବିସ୍ତୀର୍ଣ୍ଣ କ୍ଷେତ୍ର ଉପରେ ପଶାପାଲି ପରି ବିଛେଇହେଇ ପଡିଥାଏ ଏକ ଚମତ୍କାର ସବୁଜ ଲଅନ୍ ଉପରେ ବର୍ଣ୍ଣାଢ୍ୟ ସିଜ୍‌ନାଲ୍ ଫ୍ଲାଓ୍ୱାରସ୍‌ର ରଙ୍ଗ ବୈଚିତ୍ର୍ୟ । ପାର୍କର ବିଶେଷ ଆକର୍ଷଣ କିନ୍ତୁ ତା' ଭିତରେ ଏକ ଜ୍ୟାମିତିକ କ୍ଷେତ୍ର । ଏ କ୍ଷେତ୍ରରେ ଦର୍ଶନୀୟ ହୋଇଥାଏ ବହୁ ଜାତି-ପ୍ରଜାତି ରଙ୍ଗ, ଆକାର ଓ ପ୍ରକାରର ଏକ ଆଶ୍ଚର୍ଯ୍ୟଜନକ ଗୋଲାପ ବଗିଚା । ଗୋଟିଏ ଜାତିର ଗୋଲାପ ଗଛରେ ଦେଖିଲି ବଡବଡ ଗୋଲାପ ଫଳ ! ସେ ଫଳର ରଙ୍ଗ ଓ ଆକୃତି ପାଚିଲା ଡାଳିମ୍ବ ଭଳି । ଗୋଲାପ ଗଛରେ ଫଳ ଫଳିବା ମୁଁ କୋଉଠି କେବେ ଦେଖିନଥିଲି ।

ପାର୍କରେ କିଛି ସମୟ କଟେଇ ଆମେ ବାହାରିଲୁ ଆଜିର ନାଏଗ୍ରାଦର୍ଶନର ଚୂଡାନ୍ତ ପର୍ଯ୍ୟାୟ ସଂପୂର୍ଣ୍ଣ କରିବା ଲକ୍ଷ୍ୟରେ । ମହେଶ ଆମକୁ ନେଇ ପହଞ୍ଚେଇଦେଲେ ଗୋଟ ଆଇଲ୍ୟାଣ୍ଡ୍‌ର ଅନ୍ୟ ଏକ ଅଂଶରେ । ସେଠି ପୂର୍ବରୁ ଜମିଯାଇଥିବା ଏକ ବିରାଟ ଜନସମାଗମକୁ ଲକ୍ଷ୍ୟକରି ଆଶ୍ଚର୍ଯ୍ୟ ହେଲି । ମହେଶ କହିଲେ– "ନନା, ମମି ! ଆପଣ ମାନେ ଏଠିକି ନଆସିଥିଲେ ଆପଣମାନଙ୍କ ନାଏଗ୍ରା ଭିଜିଟ୍ ଇନ୍‌କଂପ୍ଲିଟ୍ ରହିଯାଇଥାନ୍ତା । ଦେଖନ୍ତୁ କେତେ ଲୋକ ଜମିଚନ୍ତି– ଏମାନେ ସାରା ପୃଥିବୀର ନାଗରିକ, ସବୁ କଣ୍ଟ୍ରିର ଲୋକ । ଆପଣମାନେ ଏଇଠି ଅପେକ୍ଷା କରିଥାନ୍ତୁ– ମୁଁ ଆପଣମାନଙ୍କ ପାଇଁ ଟିକେଟ୍ ନେଇ ଆସୁଚି । କିନ୍ତୁ ମୁଁ ଆପଣମାନଙ୍କ ସାଙ୍ଗେ ଯୋଗଦେଇପାରୁନି ।"

ପ୍ରାୟ ଅଧଘଣ୍ଟାଏ ପରେ ଆମ ଛ'ଜଣଙ୍କ ପାଇଁ ପାଞ୍ଚଟି ଟିକେଟ୍ ଧରି ଫେରିଲେ ସେ । ତାଙ୍କ ନିଜ ପାଇଁ ଟିକେଟ୍ ଆଣିନଥିଲେ । ବୁଝିଲି– ସ୍ୱାସ୍ଥ୍ୟ କାରଣରୁ ତାଙ୍କୁ ବାରଣ କରାଯାଇଥାଏ କୌଣସି ରିସ୍କ୍ ନନେବାକୁ ।

ଛାଗଦ୍ୱୀପରେ ନାଏଗ୍ରା ପ୍ରପାତର ତଳକୁ ଓହ୍ଲେଇବା ସତରେ ଥିଲା ଏକ ବିପଜ୍ଜନକ ପଦକ୍ଷେପ । କିନ୍ତୁ ସେ ବିପଦ ବରଣ କରିବା ଥିଲା ଜଣେ ସଚ୍ଚା ଟୁରିଷ୍ଟ ପାଇଁ ଏକ ଅତ୍ୟନ୍ତ ଶିକ୍ଷଣୀୟ ଅଭିଜ୍ଞତା ।

ପରେ ପରେ ଆମକୁ କୁହାଗଲା ନିକଟସ୍ଥ ଏକ ଡ୍ରେସ୍‌ରୁମ୍‌କୁ ଯିବାକୁ । ସେଠି ଆମ ପ୍ରତ୍ୟେକଙ୍କୁ ଦିଆଗଲା ଆମ୍ବର କଲର୍‌ର ୱାଟର୍ ପ୍ରୁଫ୍ କୋର୍ଟ, ଟୋପି ଆଉ ହଳେ କାନ୍‌ଭାସ୍ ଜୋତା । ଏପରି ରଙ୍ଗର ପୋଷାକ ପିନ୍ଧି ଦର୍ଶକ ନାଏଗ୍ରାପ୍ରପାତ ତଳକୁ ଯିବାର କାରଣ କ'ଣ ବୋଲି ପଚାରିବାରୁ କେହି କେହି କହିଲେ– ପାଣିସୁଅରେ ବୁଡିଯାଉଥିବା ଲୋକର ପତ୍ତା ଲଗେଇବା ଏଇ ରଙ୍ଗଟା ଦ୍ୱାରା ସହଜ, ସେଇ କାରଣରୁ ଏପରି ରଙ୍ଗର ୱାଟରପ୍ରୁଫ୍ ସୁଟ୍ ଏଠି ସମସ୍ତଙ୍କୁ ପିନ୍ଧିବାକୁ ଦିଆଯାଏ । ଆମେ ଡ୍ରେସ୍ ପିନ୍ଧି ରୁମ୍ ଭିତରୁ ବାହାରିଲୁ ଓ ଗୋଟାଏ ଲମ୍ବା ଧାଡି ବାନ୍ଧି ଆଗେଇଲୁ ।

ଆମକୁ ନିଆଗଲା ଏକ ଲିଫ୍ଟ ବା ୱିଞ୍ଚ୍‌ରୁମ୍‌ର ପ୍ରବେଶ ଦ୍ୱାର ପାଖକୁ । ସେଠି ବ୍ୟାଚ୍ ବ୍ୟାଚ୍ ହେଇ ଟୁରିଷ୍ଟ ୱିଞ୍ଚ୍ ରୁମ୍‌କୁ ପଶୁଥାନ୍ତି । ଗୋଟାଏ ବ୍ୟାଚ୍ ଟୁରିଷ୍ଟଙ୍କୁ ନେଇ ୱିଞ୍ଚ୍ ତଳକୁ ଯାଉଥାଏ । ଆଉ କିଛି ସମୟ ପରେ ୱିଞ୍ଚ୍ ଉଠିଆସୁଥାଏ କୌଣସି ଅଜ୍ଞାତ ଗଭୀରତା ଭିତରୁ । ସେଥିରୁ ଓହ୍ଲେଇ ଆସୁଥାନ୍ତି ସଂପୂର୍ଣ୍ଣ ଓଦା ଜୁଡୁବୁଡୁ ଆମ୍ବର୍ ରଙ୍ଗର ସୁଟ୍ ପିନ୍ଧା ଗୁଡିଏ ଲୋକ । ସେମାନଙ୍କର ଚେହେରା ଦେଖି ମନରେ ସନ୍ଦେହ ଆସୁଥାଏ– ଏ ଲୋକମାନେ ଏମିତି ଓଦା ସରସର ହେଇଚନ୍ତି କାହିଁକି ? ପୁଣି ଅଧିକାଂଶଙ୍କ ଆଖି ଦିଶୁଥାଏ ଭୂତ ଦେଖିଲା ଭଳି ଆଉ କାନ୍ଦୁରା କାନ୍ଦୁରା । ସେମାନେ ଆମ ପୂର୍ବରୁ ଯାଇଥିଲେ ୱିଞ୍ଚ୍‌ରେ ନାଏଗ୍ରା ଜଳପ୍ରପାତର ତଳ ପର୍ଯ୍ୟନ୍ତ ଓ ସେଠାରୁ କୌଣସି ଅଭୂତପୂର୍ବ ଅଭିଜ୍ଞତା ନେଇ ଫେରୁଥାନ୍ତି ଉପରକୁ ନିଶ୍ଚୟ ।

ବହୁ ସମୟ ଅପେକ୍ଷା ପରେ ଆମ ପାଳି ପଡ଼ିଲା । ୱିଞ୍ଚ୍‌ର ଦରୱାଜା ଖୋଲିଲା ଓ ଆମ ଦଳକୁ ଟୁରିଷ୍ଟ୍ ୱିଞ୍ଚ୍ ଭିତରକୁ ପ୍ରବେଶ କରିବାକୁ ଅନୁମତି ମିଳିଲା । ଆମେ ଭିତରକୁ ପ୍ରବେଶ କରିବା ମାତ୍ରେ ୱିଞ୍ଚ୍ କବାଟ ବନ୍ଦହେଇଗଲା । ପରେ ପରେ ମନେହେଲା ହୁଏତ କୌଣସି ଅତ୍ୟନ୍ତ ଗଭୀରତା ଦିଗରେ ୱିଞ୍ଚ୍ ଖସି ଖସି ଚାଲିଚି ତଳକୁ ତଳକୁ ! ଅନେକ ସମୟ ସେହିପରି ଅବତରଣ କଲା ପରେ ୱିଞ୍ଚ୍‌ର ଗତି ସ୍ଥିର ହେଲା । କବାଟ ଖୋଲିଗଲା । ୱିଞ୍ଚ୍ ବାହାରକୁ ବାହାରିଆସିଲୁ ସମସ୍ତେ । ପଦାକୁ ବାହାରିବା ମାତ୍ରେ ହଠାତ୍ ଏକ କାନଫଟା ଶବ୍ଦରେ ଛାତି ଥରିଗଲା । କିନ୍ତୁ ଆଖି ଆଗରେ ସେତେବେଳେ ଉଭା ହେଇଥାଏ ଏକ ନୂଆ ଦୁନିଆ ଯୋଉଠି ଚତୁର୍ଦ୍ଦିଗରେ ଭରିରହିଥାଏ ଗାଢ଼ କୁହୁଡି, ଆଉ ସେଇ କୁହୁଡି ଉପରେ ହଜାର ହଜାର ସଂଖ୍ୟକ ଇନ୍ଦ୍ରଧନୁର ପ୍ରତିଫଳନ !

ସେଇ କୁହୁଡି ଭିତରେ ଆମର ସ୍ଥାନ ନିରୂପଣ କରି ଦେଖିଲି– ଆମେ ଯୋଉଠି ଠିଆହେଇଥାଉ ସେଇଟା ହୁଏତ ଏକ ନଦୀର ଅତଡି । ପାଦତଳକୁ ଅନାଇଲେ ଦିଶୁଥାଏ ଗଭୀର ଜଳକୁଣ୍ଡ– ହୁଏତ ପ୍ରପାତର ମୁଖ୍ୟ ବେସିନ୍– ଯାହାର ଅତଳ ଜଳରାଶିରେ ଚାଲିଥାଏ ସମୁଦ୍ର ମନ୍ଥନ ! ସେଇ ମନ୍ଥନ ଭିତରୁ ମୁଣ୍ଡ ଟେକୁଥାନ୍ତି ଗର୍ଜନରତ ଉତ୍‌ଫଣ ବିଷଧର ସର୍ପମାନେ ଆଉ ସେମାନେ ଆମ ପାଦତଳର ତୀଖ ଅତଡି ଉପରକୁ ଉହୁଙ୍କି ଉଠି–

ମାରୁଥାନ୍ତି ଚୋଟ ପରେ ଚୋଟ । ସେଥିରୁ ଗଜଗଜ ହେଇ ବିଷ ଓଗାଳି ହେଲା ପରି ଫେଣ ଉଦ୍ଗୀରଣ ହୋଇ ଚାଲିଥାଏ କ୍ରମାଗତ ।

ସେଇ ଦୃଶ୍ୟ ସମ୍ମୁଖରେ ଜଣେ ତଟସ୍ଥ ଦର୍ଶକ ପରି ମୁଁ କେତେ ସମୟ ଠିଆ-ହେଇଥିବି ଜାଣେନା । ତା'ରି ଭିତରେ ଶୁଣିପାରିଲି କାହାର ସତର୍କବାଣୀ, "ଯେଉଁମାନଙ୍କର ହାର୍ଟ ପ୍ରବଲେମ୍ ବା ସେପରି କିଛି ସମସ୍ୟା ରହିଚି ସେମାନେ ଏଇଠି ଅପେକ୍ଷା କରିବେ, ଅନ୍ୟମାନେ ଚାଲନ୍ତୁ ଆଗକୁ । ଆମକୁ ବର୍ତ୍ତମାନ ଓହ୍ଲାଇବାକୁ ହେବ ନାଏଗ୍ରା ଫଲ୍ସ୍‌ର ବଟମ୍‌ମୋଷ୍ଟ୍ ଲେଭଲ୍‌କୁ । ସାବଧାନ ! କାଠ ସିଢ଼ିରେ ତଳକୁ ଓହ୍ଲାଇବାରେ ବିପଦ ଅଛି – ଏକରେ ସିଢ଼ି ପାହାଚ ଖସଡା– ଲାଗିଚି ସିଉଳି, ଗୋଡ ଖସିଯାଇପାରେ, ଦୁଇରେ ଏଠି ୱାଟର୍ ଫଲ୍ସ୍‌ର ପାଣିର ବେଗ ଅତ୍ୟନ୍ତ ଶକ୍ତିଶାଳୀ । ପାଣି ମାଡରେ ସିଢ଼ି ଉପରୁ ଆପଣ ହୁଏତ ଖସିପଡିପାରନ୍ତି ତଳକୁ– ତଳକୁ ମାନେ ନାଏଗ୍ରା ଫଲ୍ସ୍‌ର ବେସିନ୍ ଭିତରକୁ ! ତେଣୁ ହୁସିଆର୍. . . । ବାଡାକୁ ଧରନ୍ତୁ, ଓହ୍ଲାନ୍ତୁ ସମସ୍ତେ ସିଢ଼ି ପାଖକୁ ।" ସେ ଥିଲା ଆମ ଦଳ ପାଇଁ ନିଯୁକ୍ତ ଜଣେ ଯୁବ ଗାଇଡ୍‌ଙ୍କ ନିର୍ଦ୍ଦେଶ ଆମ ଦଳ ପ୍ରତି ।

ଏହା ପରେ ଆଗେ ଆଗେ ଗାଇଡ୍ ଆଉ ତାଙ୍କ ପଛେ ପଛେ ଆମର ସେଇ ଗ୍ରୁପ୍‌ଟି ଗଭୀର ଆଶଙ୍କା ଓ ସତର୍କତା ଭିତରେ ଆସ୍ତେ ଆସ୍ତେ ପାଦ ବଢେଇଲୁ ଏକ ଶିଉଳିଲଗା ଖସଡା କାଠ ସିଢ଼ିର ପ୍ରଥମ ପାହାଚ ଉପରକୁ । ଗାଇଡ୍‌ଙ୍କର ସତର୍କବାଣୀ ଶୁଣାଗଲା ପୁନର୍ବାର– "Donot miss your foot hold on the slippery steps !"

ଆମେ ଓହ୍ଲେଇଲୁ ସିଢ଼ିବାଡାକୁ ପ୍ରାଣପଣେ ଜାବୁଡି ଧରିଧରି ନାଏଗ୍ରା ନଦୀର ଜଳ ପତନ ପର୍ଯ୍ୟନ୍ତ ଅନେକ ଗୁଡାଏ ପାହାଚ । ମନେହେଉଥାଏ ସତେକି ଗାଇଡ ଆମକୁ ନଉଚି ନାଏଗ୍ରା ୱାଟର୍ ଫଲ୍ସ୍ ତଳେ ଭଉଁରି କାଟୁଥିବା ଗଣ୍ଡ ମଝିରେ ବୁଡେଇ ମାରିବାକୁ !

ଜଳ ପତନରେ ପହଞ୍ଚିବା ପରେ ଦେଖାଗଲା ସେଠି ଲାଗିଚି ଆଉ ଏକ ଲମ୍ବା ସିଢ଼ି । ଗାଇଡ୍‌ଙ୍କ ନିର୍ଦ୍ଦେଶ ମିଳିଲା– ବର୍ତ୍ତମାନ ଦ୍ୱିତୀୟ ସିଢ଼ିକୁ ଯାଅ ସମସ୍ତେ । ଏଇ ସିଢ଼ିରେ ଆମକୁ ଯିବାକୁ ହେବ ୱାଟର୍ ଫଲ୍ସ୍‌ର ଅନ୍ଧେଲା ତଳକୁ । ସେଇ ଅନ୍ଧେଲା ତଳ ଜାଗା ସଂପୂର୍ଣ୍ଣ ନିରାପଦ । ସେଇ ଜାଗାରୁହିଁ ଆପଣମାନେ ଦେଖିବାକୁ ପାଇବେ ନାଏଗ୍ରା ଫଲ୍ସ୍‌ର ସ୍ୱରୂପ !

ଏହାପରେ ଆରମ୍ଭ ହେଲା ଆମ ପାଇଁ ଆଉ ଏକ ପର୍ଯ୍ୟାୟ ଅଭିଯାନ । ସମସ୍ତେ ପ୍ରସ୍ତୁତ ହୋଇଗଲୁ । ପବନ ଓ ପାଣି ମାଡକୁ ସଂଭାଳି ପୁଣି ଗୋଟାଏ ଖସଡା କାଠ ସିଢ଼ିରେ ପାହାଚ ପାହାଚ କରି ଉପରକୁ ଚଢ଼ିବା ଦରକାର ଥାଏ ଆମର । ଆମ ଦଳରେ ଥା'ନ୍ତି ପ୍ରାୟ କୋଡିଏଜଣ ଦର୍ଶକ– ବିଭିନ୍ନ ଦେଶର ବିଭିନ୍ନ ଭାଷାଭାଷୀ ଲୋକ ସେମାନେ । ସେମାନଙ୍କ ଭିତରେ ଥା'ନ୍ତି ଉଭୟ ନାରୀ ପୁରୁଷ ଓ ଅନେକ ଛୋଟ ପିଲା ମଧ୍ୟ ।

ସେଠି ସିଢ଼ି ଚଢ଼ିବା ଦରକାର ଥାଏ ଉପରମୁହାଁ । ଥାକଥାକ ହେଇ ଅନେକ ପାହାଚ ଚଢ଼ିଲା ପରେ ଆସୁଥାଏ ଗୋଟାଏ ଗୋଟାଏ ଲ୍ୟାଣ୍ଡିଂ ଏରିଆ । ସେଠି ଟିକେ ଅଟକିରହି

ନିଃଶ୍ୱାସ ମାରିବାକୁ ଦିଆଯାଏ ଦର୍ଶକଙ୍କୁ । ଭୟଙ୍କର ପବନ ଓ ପାଣିମାଡରେ ଆକତା-ମାକତା ସିଢି ଚଢାଳିର ଦରକାର ପଡେ ଅଳ୍ପ ସମୟର ବିଶ୍ରାମ । ଆମେ ସେ ଲ୍ୟାଣ୍ଡିଂରେ ଟିକିଏ ବେଳ ଅଟକି ରହି ପୁଣି ସିଢି ଚଢୁଥାଉ ।

କିନ୍ତୁ ଜଣାପଡୁଥାଏ, ଯେତେ ଯେତେ ଉପରକୁ ଉଠୁଥାଏ ପବନର ବେଗ ସେତିକି ସେତିକି ବଢିବଢି ଚାଲିଥାଏ । ଶେଷରେ ପବନର ବେଗ ପରିଣତ ହେଲା ପ୍ରବଳ ତୋଫାନ୍‌ରେ । ପ୍ରପାତରୁ ଉଛୁଳି ପଡୁଥିବା ପାଣି ଛିଟିକା ଚଟକଣା ଭଳି ବାଜୁଥାଏ ଦିହ ମୁହଁରେ । ଆଖି ଉପରେ ପାଣି ମାଡ ଯୋଗୁ ପୂରା ଆଖି ଫିଟେଇ ଚାହିଁ ହେଉନଥାଏ । ଏଣେ ପ୍ରପାତର ଭୈରବ ରଡି ପରି ନାଦରେ ଆଉ କାହା କଥା ମଧ୍ୟ ଶୁଣାଯାଉନଥାଏ । ଅନ୍ଧ, ମୂକ ଓ ବଧିର ପାଲଟି ସିଢିର ଗୋଟାଏ ଗୋଟାଏ ପାହାଚ ଚଢି ଆମ ଦଳ ଆଗଉଥାଏ କୌଣସି ପ୍ରକାରେ । ଦେହକୁ ଘୋଡେଇ ରଖିଥିବା ୱାଟର୍ ପ୍ରୁଫ୍ ପୋଷାକଟା ସେତେବେଳକୁ ପୂରା ଓଦା । ତେବେ ସେ ପୋଷାକ ଓ କାନ୍‌ଭାସ୍ ଜୋତା ଯୋଗୁ ପାଣି ପବନ ମାଡରୁ କିଛିଟା ଆତ୍ମରକ୍ଷା ସମ୍ଭବ ହେଉଥାଏ ଅବଶ୍ୟ ।

ହଠାତ୍ କାନରେ ପଡିଲା– "ଅମୃତ ! ତୁ କୋଉଠି ? ତୁ କୋଉଠି ?"

ଚମକିପଡିଲି । ଅମୃତ ମୋ ନାତି ।

ସେ ଡାକ ଥିଲା ନିରୁପମାଙ୍କର । ପିଲାମାନଙ୍କୁ ଧରି ସେ ଆସୁଥାନ୍ତି ମୋ ପଛ ପାହାଚରେ । ମୁହଁ ଉପରୁ ବୋହିପଡୁଥିବା ପାଣିଧାରଗୁଡାକୁ ପୋଛି ପକେଇ ପଛକୁ ବୁଲିପଡି ଦେଖିଲି- ଏଗାର ବର୍ଷର ନାତି ସେମାନଙ୍କ ଦଳରେ ନାହିଁ । ହାଲୁକା ଶୁଖିଗଲା ମୋର । ପିଲାଟା ଗଲା କୁଆଡେ ! ... ହେ ଭଗବାନ୍ !

ଟିକେ ପରେ ଶୁଣାଗଲା ଅମୃତର ଅଣନିଃଶ୍ୱାସୀ ଡାକ– Aja Aja look look– there is no sky over our heads ! The waters are pouring through a very big crack in the heavens above ! – (ଅଜା ଅଜା, ଦେଖ ଦେଖ, ଆମ ମୁଣ୍ଡ ଉପରେ ଆକାଶଟା ନାହିଁ – ଗୋଟାଏ ମସ୍ତବଡ ଫାଟ ବାଟେ ପାଣିଗୁଡାକ ଖସିପଡୁଚି ସିଧା ସ୍ୱର୍ଗରୁ ! ଦେଖୁଚଟି ?)

ଦେଖିଲି ପିଲାଟା କେତେବେଳେ ଆଇ ଆଉ ତା' ମମିର ହାତରୁ ଖସି ପଳେଇ ଯାଇଚି ସିଢିର ଅନେକ ପାହାଚ ଉପରକୁ । ସେଇଠି ଠିଆହେଇ ଏକ ଲୟରେ ଅନାଇ ଥାଏ ସେ ତା' ମୁଣ୍ଡ ଉପରକୁ । ସେତିକିବେଳେ ଶୁଣାଗଲା ଗାଇଡ୍‌ଙ୍କ ନିର୍ଦ୍ଦେଶ, "All of you please look up and behold the strange sight. Yes, as this child sees it, the vast waters of Niagra may be pouring down from the heavens above !"

ସମସ୍ତେ ଅଟକିଗଲେ । ଯେ ଯୋଉ ପାହାଚରେ ଥିଲେ ଅଟକି ରହି ବେକ ଭାଙ୍ଗି

ଉପରକୁ ଅନାଇଲେ । ହଠାତ୍ ଏକ ସମ୍ମିଳିତ ସ୍ୱର ଶୁଣାଗଲା– "Yes ! Yes ! The child is right, the child is right !"

ମତେ ଜଣାଗଲା ହୁଏତ ଏଇ ଅଦ୍ଭୁତ ଦୃଶ୍ୟ ଦେଖି ହିମାଳୟରେ ଧ୍ୟାନରତ ପ୍ରାଚୀନ ଋଷି ଦିନେ କଳ୍ପନାଚକ୍ଷୁରେ ଦେଖିଥିଲେ ସେଇ ଅଭାବନୀୟ ଦୃଶ୍ୟ– ବାମନ ଅବତାରରେ ଭଗବାନ୍ ବିଷ୍ଣୁ ତାଙ୍କର ତୃତୀୟ ପାଦରେ ସମଗ୍ର ଆକାଶକୁ ଆଚ୍ଛନ୍ନ କରିବା ସମୟରେ ପାଦ ଆଙ୍ଗୁଳିର ନଖ ଆଘାତରେ ଆକାଶ ବିଦୀର୍ଣ୍ଣ ହେବା ସହିତ ତାଙ୍କ ନଖକୋଣରେ ସେ ଯାଏଁ ଲୁକ୍କାୟିତ ଗଙ୍ଗାଦେବୀ ଝରିଆସିଥିଲେ ମର୍ତ୍ତ୍ୟ ଲୋକକୁ! ଏ ତ ଅବିକଳ ସେଇ ଦୃଶ୍ୟ !

କିଛି ସମୟ ସେହି ଅଭିଭୂତ ଅବସ୍ଥାରେ ସ୍ଥାଣୁ ପାଲଟିବା ପରେ କାନରେ ପଡ଼ିଲା ଗାଇଡ଼ଙ୍କ ନିର୍ଦ୍ଦେଶ : "Now let's advance" । ଲାଇନ୍ ଆଗେଇବାକୁ ଆରମ୍ଭ କଲା । ଶିଉଳିଲଗା ସିଢ଼ି-ପାହାଚରେ ଧୀରେ ଧୀରେ ଉଠି ଆମେ ସମସ୍ତେ ଶେଷରେ ନିରାପଦରେ ପହଞ୍ଚିଲୁ ଡ୍ରେସ୍ ରୁମ୍ ସାମ୍ନାରେ । ଓଦା ଡ୍ରେସ୍‌ରେ ଉପରକୁ ଉଠି ଦେହରୁ ଓଦା ସରସର ପୋଷାକକୁ କାଢ଼ି ଡିପୋଜିଟ୍ କଲୁ ଷ୍ଟୋର୍‌ରେ ।

ଆମର ନାଏଗ୍ରା ଦର୍ଶନ ସମାପ୍ତ ହେଲା ସେଦିନ ସେଇ ଗଙ୍ଗା ଓ ଗଙ୍ଗାଧରଙ୍କ ଦର୍ଶନରେ । ସେଦିନ ଅପରାହ୍ନରେ ଆମେ ବୁଫାଲୋ ସହରରୁ ଡ୍ରାଇଭ୍ କଲୁ ଘରମୁହାଁ ।

ଗ୍ଲାସ୍‌ଟନ୍‌ବରିରେ ପହଞ୍ଚିବାବେଳକୁ ରାତି ଗୋଟାଏ ।

## ହାର୍ଟଫୋର୍ଡରୁ ନ୍ୟାସ୍‌ଭିଲ୍

ତା ୩୦ ଅଗଷ୍ଟ ୧୯୯୭–

କନେକ୍ଟିକଟ୍ ରାଜ୍ୟରେ ମଝିଆଁ ଝିଅ ଜୋଇଁ ସୁଲୁ ମହେଶଙ୍କ ଗ୍ଲାସଟନ୍‌ବରି ଘରେ ୨୨ଜୁନ୍‌ରୁ ଆଜି ପର୍ଯ୍ୟନ୍ତ ପ୍ରାୟ ଆଠ ନ' ସପ୍ତାହ ରହି ଆମେରିକାର ଏଇ ଉତ୍ତରାଂଚଳର ଅନେକ ଦର୍ଶନୀୟ ସ୍ଥାନ ଦେଖାସରିଲା । ସମୟ ଆସିଲା ସ୍ଥାନାନ୍ତର ପାଇଁ । ନ୍ୟାସ୍‌ଭିଲ୍‌ରୁ ବଡ଼ଝିଅ ବୁଲବୁଲ ବାରମ୍ବାର ଫୋନ୍ କରୁଥାଏ– ନନା ମମି, ତମେମାନେ ସୁଲୁ ଘରେ ଦୁଇମାସ ରହିବାକୁ କହି ନ'ସପ୍ତାହ ରହିସାରିଲଣି ବୋଲି ଜାଣୁଚଟି ! ତମେ ତ ଆସିଚ ମୋଟେ ଚାରିମାସ ପାଇଁ ଆମେରିକା ବୁଲିବାକୁ, ଆଉ ସେଥିରୁ ଏକା ସୁଲୁ ଘରେ ଗଲାଣି ଦୁଇମାସରୁ ସପ୍ତାହେ ବେଶୀ– ମୋ' ଭାଗରେ ରହିଲା ତେବେ କେତେ? ମୁଁ ଯଦି ତମର ବଡ଼ଝିଅ ତେବେ ମୋ ଭାଗଟା ବଡ଼ ନହେଇ ଓଲଟି କମିବାଟାକୁ କ'ଣ ଠିକ୍ ବୋଲି ଭାବୁଚ ?

ଦୁଇ ଭଉଣୀଙ୍କ ଭିତରେ ଏମିତି ଟଣାଓଟରା ଭାବ ଚାଲିଆସିଥାଏ ପିଲାଦିନୁ । ସେ ଦୁହିଁଙ୍କ ବୟସର ପାର୍ଥକ୍ୟ ମୋଟେ ଦେଢ଼ବର୍ଷ । ସେଥିପାଇଁ ସେମାନେ ବେଶ୍ ସାଙ୍ଗ ହେଲେ ବି ମଝିରେ ମଝିରେ ଟଣାଓଟରା ଚାଲେ ତାଙ୍କ ଭିତରେ ଏମିତି ଛୋଟଛୋଟ କଥାରେ ।

ଆମ ଆମେରିକା ରହଣିକୁ ନେଇ ଦୁଇ ଭଉଣୀଙ୍କ ଭିତରେ ଏ ଟଣା ଓଟରାର ଆଶୁ ସମାଧାନ ପାଇଁ ଆମେ ବାହାରିଲୁ ନ୍ୟାସଭିଲ୍– ବଡଝିଅ ଜୋଇଁଙ୍କ ଘରକୁ ।

କନେକ୍ଟିକଟ୍‌ର ରାଜଧାନୀ ସହର ହାର୍ଟଫୋର୍ଡ ବିମାନବନ୍ଦରର ନାମ ସ୍ପ୍ରିଙ୍ଗଫିଲ୍ଡ । ଆମକୁ ବଳେଇ ଦେବାକୁ ସୁଲୁ ଓ ମହେଶ ସ୍ପ୍ରିଙ୍ଗ୍‌ଫିଲ୍ଡ ଏୟାରପୋର୍ଟକୁ ଆସି ଆମକୁ ପ୍ଲେନ୍‌ରେ ବସେଇ ଦେଇଗଲେ । ନ୍ୟାସ୍‌ଭିଲ୍‌କୁ ସିଧା ଉଡାଣରେ ଆମକୁ ଟିକେଟ୍ ମିଳିଲା ନାହିଁ, ତେଣୁ ଆମ ପାଇଁ ଟିକେଟ୍ ହୋଇଥିଲା ନର୍ଥକାରୋଲିନାର ସାର୍ଲୋଟ୍ ବିମାନବନ୍ଦର ବାଟେ ଟେନିସୀ ରାଜ୍ୟର ବିମାନବନ୍ଦର ନ୍ୟାସ୍‌ଭିଲ୍‌କୁ । ପ୍ରାୟ ଦୁଇଘଣ୍ଟା ଫ୍ଲାଇଟ୍ ପରେ ଆମ ପ୍ଲେନ୍ ସାର୍ଲୋଟ୍ ବିମାନବନ୍ଦରରେ ଅବତରଣ କଲା ଅପରାହ୍ନ ୩.୫୦ରେ । ସାର୍ଲୋଟ ନର୍ଥ କାରୋଲିନାର ଏକ ପ୍ରମୁଖ ସହର । ସାର୍ଲୋଟ ବିମାନ ବନ୍ଦରରେ ଆମକୁ ପ୍ରାୟ ଘଣ୍ଟାଏ ଅପେକ୍ଷା କରିବାକୁ ଥାଏ କନେକ୍ଟିଂ ଫ୍ଲାଇଟ୍ ପାଇଁ । ଏଇ ଅପେକ୍ଷା କରିବା ସମୟରେ ମୋ ଆଖିରେ ପଡିଲା– ଲାଉଞ୍ଜରେ ଆତଯାତ ହଉଥିବା ଅଧିକାଂଶ ଯାତ୍ରୀ ତଥା ବିମାନ କର୍ମଚାରୀଙ୍କ ଚେହେରା ଉପରେ । ଦେଖିଲି ସେମାନେ ଅଧିକାଂଶ ଥିଲେ ଆଫ୍ରିକାନ୍ ଓରିଜିନ୍‌ର କଳାଲୋକ । ମୁଁ ଜାଣିଥାଏ ଆମେରିକାର ଏଇ ଦାକ୍ଷିଣାତ୍ୟ ଅଞ୍ଚଳ, ଯଥା– ନର୍ଥକାରୋଲିନା, ସାଉଥ୍ କାରୋଲିନା, ଜର୍ଜିଆ ପ୍ରଭୃତି ରାଜ୍ୟରେ କଳାଲୋକଙ୍କ ସଂଖ୍ୟା ଢେର୍ ବେଶୀ । ମନେପଡିଲା ଯୁକ୍ତରାଷ୍ଟ୍ର ଆମେରିକାର ସିଭିଲ୍ ୱାର୍‌ର ଇତିହାସ । ସେ ଇତିହାସରେ ଯଦିଚ କଳାଲୋକେ ପ୍ରତ୍ୟକ୍ଷରେ ଅଂଶ ଗ୍ରହଣ କରିନଥିଲେ ତେବେ ସେଇ କଳା ଲୋକଙ୍କ ପାଇଁ ତ ଆବଶ୍ୟକ ଥିଲା ସେଇ ଭୟଙ୍କର ଅନ୍ତର୍ଯୁଦ୍ଧ– ଯେଉଁଥିରେ ଦେଶର ଉତ୍ତରାଞ୍ଚଳର ବର୍ଣ୍ଣଭେଦ ବିରୋଧୀ ଲୋକେ ଦକ୍ଷିଣର ବର୍ଣ୍ଣଭେଦ ସପକ୍ଷବାଦୀ ଓ କ୍ରୀତଦାସ ପରଂପରାର ପୃଷ୍ଠପୋଷକ ଗୋଷ୍ଠୀର ଧନୀ ଜମିଦାର ଶ୍ରେଣୀ ବିରୁଦ୍ଧରେ ସେଇ ଭୟଙ୍କର ସଂଗ୍ରାମ ଘଟିଯାଇଥିଲା ଆମେରିକାର ଇତିହାସରେ ଯାହାର ପରିଣତି ଥିଲା ଏ ଦେଶର କଳଙ୍କମୟ କ୍ରୀତଦାସ ପରମ୍ପରାର ବିଲୋପ ସାଧନ । ପୁଣି ଏଇ ଐତିହାସିକ ରାଜନୈତିକ ବିପ୍ଳବର ଚୂଡାନ୍ତ ପରିଣତି ମଧ୍ୟ ଥିଲା ଏକ ଚୂଡାନ୍ତ ରାଜନୈତିକ ବଳିଦାନ : ଆତତାୟୀ ଗୁଳିରେ ତତ୍‌କାଳୀନ ଆମେରିକାର ଅତ୍ୟନ୍ତ ଲୋକପ୍ରିୟ ପ୍ରେସିଡେଣ୍ଟ ଆବ୍ରାହାମ୍ ଲିଙ୍କନ୍‌ଙ୍କ ଶୋଚନୀୟ ହତ୍ୟାକାଣ୍ଡ ।

ଲାଉଞ୍ଜରେ ଶତାଧିକ ସଂଖ୍ୟାରେ ଅପେକ୍ଷମାଣ କୃଷ୍ଣକାୟ ଯାତ୍ରୀଙ୍କ ଭିତରେ ଥିଲେ ବହୁ ସଂଖ୍ୟାରେ ନାରୀ ଓ ଶିଶୁ । ସେମାନଙ୍କର ମୁକ୍ତ ସହଜ ସରଳ ଚାଲିଚଳଣ, ହାବଭାବ ଓ ଉଲ୍ଲସିତ ହସହସ ମୁହଁ ଦେଖି ମୁଁ ନିରୁପମାଙ୍କୁ କହିଲି– ଆମେ ବର୍ତ୍ତମାନ ଅଛେ ଏ ଦେଶର ଇତିହାସର ପ୍ରାଣକେନ୍ଦ୍ରରେ ଯୋଉଠି ଘଟିଯାଇଥିଲା ଉପନିବେଶବାଦୀ ଗୋରାଲୋକଙ୍କର ତଥାକଥିତ ସଭ୍ୟତାର ଅଗ୍ନିପରୀକ୍ଷା– ଦେଢଶହ ବର୍ଷ ତଳେ । ମନେ-ପକାଅ ଆଲେକ୍ସ ହ୍ୟାଲିଙ୍କ 'ଦ' ରୁଟ୍' ଉପନ୍ୟାସ । ଦେଢଶହ ବର୍ଷ ତଳକୁ ଚାଲିଯାଅ–

ଦେଖ କି ଶୋଚନୀୟ ହୋଇଥିବ ସେ ସମୟରେ ଏଇ ଅଂଚଳର ତତ୍କାଳୀନ ଅଧିବାସୀ ଜଣେ କ୍ରୀତଦାସର ଅବସ୍ଥା । ଆମ ଆଗଧାଡିର ଚେୟାର୍ ଗୁଡିକରେ ବସିଥିବା ସେଇ ଯାତ୍ରୀଦଳଟିକୁ ଦେଖ । ମନେହେଉଚି ସେମାନେ ଏଇ ସଦ୍ୟ କୌଣସି ଆଫ୍ରିକାନ୍ ଏୟାର୍ ଲାଇନ୍ ପ୍ଲେନ୍‌ରୁ ଓହ୍ଲେଇଚନ୍ତି । ସେ ଦଳ ଭିତରେ ଅଛନ୍ତି ସଂଖ୍ୟାଧିକ ନାରୀ ଓ କିଶୋର କିଶୋରୀ । ସେମାନଙ୍କ ମୁହଁକୁ ଅନାଅ– ଦେଖ କି ହସହସ ଉତ୍ଫୁଲ୍ଲିତ ଚେହେରା ସେମାନଙ୍କର । କୌଣସି ଡରଭୟ ବା ଅନୁଶୋଚନାର ଲେଶମାତ୍ର ସୂଚନା ସେଇ ହସହସ ମୁହଁ ଗୁଡାକରେ ଦେଖୁଚ ? ହେଇ ଦେଖ ଦେଖ– ସେ ଝିଅଟି କେମିତି ହସିହସି ଲୋଟିପଡୁଚି ପୂରା କାର୍ପେଟ ଉପରେ । କେତେ ମୁକ୍ତ ନିର୍ଭୟ ନିର୍ମଳ ହୃଦୟର ହସ ହସୁଚନ୍ତି ସେମାନେ ଦେଖୁଚ । ଅଥଚ ବିଗତ ଶତାବ୍ଦୀରେ ଏଇଠି ଏଇ ସାର୍ଲୋଟ୍ ସହରର ବିଚ୍ ବଜାରରେ ଚାଲିଥିଲା ଏଇ କଳାଲୋକଙ୍କୁ ପଣ୍ୟ ରୂପେ କିଣାବିକାର ବେପାର ବଣିଜ । ମଣିଷମାନେ ପ୍ରକାଶ୍ୟରେ ନିଲାମ ହେଉଥିଲେ ଏଠି ରାସ୍ତା ଛକରେ । ଆଫ୍ରିକାରୁ ସଦ୍ୟ ଧରାହେଇ ଆସିଥିବା ନରନାରୀଙ୍କୁ ବଜାର ମଝିରେ ଉଲଗ୍ନ କରି ଠିଆ କରାଇ ସେମାନଙ୍କ ଶାରୀରିକ ସାମର୍ଥ୍ୟ ମପାହେଉଥିଲା . ଏଠି– ଘୋଡା ବଳଦଙ୍କ ପରି ଏ ଦେଶରେ । ମନେପକାଅ ଆଲେକ୍ସ ହ୍ୟାଲିଙ୍କ ସଦ୍ୟ ପ୍ରକାଶିତ "ଦ' କ୍ୱିନ୍ 'ଉପନ୍ୟାସ ! ଆମେ ଯୋଉଠିକି ବର୍ତ୍ତମାନ ଯାଉଚେ– ଟେନିସୀ ରାଜ୍ୟର ନ୍ୟାସ୍‌ଭିଲ୍, ଆଲେକ୍ସ ହ୍ୟାଲିଙ୍କ କ୍ୱିନ୍ ଉପନ୍ୟାସ ଅନୁସାରେ ସେ ତ ହେଲା ଆମେରିକାର କ୍ରୀତଦାସ ଇତିହାସର ରାଜଧାନୀ ସହର ! ଗତଥର, ୧୯୯୩ରେ, ଆମେ ନ୍ୟାସ୍‌ଭିଲ୍ ଯାଇଥିଲେ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବର ଅତିଥି ହେଇ । କିନ୍ତୁ ଏଇ ଚାରିବର୍ଷ ଭିତରେ ସେ ଜାଗା ପ୍ରତି ମୋ' ଦୃଷ୍ଟିକୋଣ ସଂପୂର୍ଣ୍ଣ ବଦଳି ଯାଇଚି । ଆଲେକ୍ସ ହ୍ୟାଲିଙ୍କ ସେ ବହି ଦୁଇଟା– 'ଦ ରୁଟ୍' ଆଉ 'କ୍ୱିନ୍' ମୋ' ମୁଣ୍ଡରେ ଭୂତ ଭଳି ସବାର ହେଇ ବସିଚନ୍ତି । ଭାବୁଚି ଏଥର ମୋ ଆମେରିକା ବୁଲାର ଗୋଟାଏ ନୂଆ ଦିଗ ମିଳିଯିବ ସେଠି ବୁଲବୁଲ ଓ ପ୍ରବୀରଙ୍କ ଘରେ ଦୁଇମାସ ରହଣି ସମୟରେ ।

ହଠାତ୍ ସାମ୍ନା ଟିଭି ସ୍କ୍ରିନ୍‌କୁ ଅନାଇ ନିରୁପମା ତରବର ହେଇ ଉଠିପଡିଲେ । ମତେ ସତର୍କ କରିଦେଲେ, "ହେଇଟି ଦେଖୁଚ– ୪.୫୫ରେ ୟୁ.ଏସ୍ ଏୟାରଲାଇନ୍‌ର ନ୍ୟାସ୍‌ଭିଲ୍ ଫ୍ଲାଇଟ୍ ନମ୍ବର ଫ୍ଲାସ୍ କଲାଣି ସେଠି ଟାଇମ୍ ଟେବ୍ଲ ସ୍କ୍ରିନ୍‌ରେ... ଉଠ ଶୀଘ୍ର ଚାଲ..." । ଆମେ ଆମ ହ୍ୟାଣ୍ଡବ୍ୟାଗ୍ ଉଠେଇ ଦଉଡିଲୁ ଆମ ପ୍ଲେନ୍‌ର ବୋର୍ଡିଂ ପାଇଁ ନିର୍ଦ୍ଧାରିତ ଗେଟ୍ ନମ୍ବର ଦିଗରେ ।

ଠିକ୍ ସମୟରେ ଆମେ ବୋର୍ଡିଂ କଲୁ ଆମ ପ୍ଲେନ୍‌ରେ । ସାର୍ଲୋଟ୍‌ରୁ ନ୍ୟାସ୍‌ଭିଲ୍ ପ୍ରାୟ ଘଣ୍ଟାକର ଉଡାଣ । ପ୍ଲେନ୍ ନ୍ୟାସ୍‌ଭିଲ୍ ବିମାନ ବନ୍ଦରରେ ଅବତରଣ କଲା ସନ୍ଧ୍ୟା ୬ରେ । ଏ ବିମାନବନ୍ଦର ମୋର ପୂର୍ବ ପରିଚିତ । ପ୍ଲେନ୍‌ରୁ ଓହ୍ଲାଇ ଆମେ ଆମ ବ୍ୟାଗେଜ୍ ସଂଗ୍ରହ

କଲୁ ଓ ବିମାନବନ୍ଦରରୁ ବାହାରିଲୁ । ଏୟାର୍‌ପୋର୍ଟ ବାହାରେ ବୁଲବୁଲ ଆଉ ପ୍ରତୀକ ଆମ ପାଇଁ ଅପେକ୍ଷା କରିଥାନ୍ତି । ଦୀର୍ଘ ଚାରିବର୍ଷ ବ୍ୟବଧାନରେ ଝିଅ ଓ ନାତିଙ୍କୁ ଦେଖି ନିରୁପମା ନିଜକୁ ସଂଭାଳି ପାରିଲେ ନାହିଁ । ପରସ୍ପରକୁ କୁଣ୍ଢେଇ ଧରି ମା ଝିଅ ମନଭରି କାନ୍ଦିବା ପରେ ଆମେ ବସିଲୁ ଝିଅର କାର୍‌ରେ ।

ଘଣ୍ଟାଏ ପରେ ଆମେ ପହଞ୍ଚିଲୁ ଝିଅଁ ଜୋଇଁଙ୍କ ଆପାର୍ଟମେଣ୍ଟ୍‌ରେ । ଚାରିବର୍ଷ ତଳେ, ୧୯୯୩ରେ, ଏମାନେ ଥିଲେ ଏଇ ଟେନିସୀ ରାଜ୍ୟର ଅନ୍ୟ ଏକ ସହର ଚାଟାନୁଗାରେ । ଏ ଭିତରେ ଆମେରିକାର ଅର୍ଥନୀତିରେ ବହୁ ପରିବର୍ତ୍ତନ ଘଟିଯାଇଥାଏ । ସେଇ ପରିବର୍ତ୍ତନ ଯୋଗୁ ଜୋଇଁ ପ୍ରବୀର ଓ ଝିଅ ବୁଲବୁଲ ଉଭୟ ସେମାନଙ୍କର କଂପାନୀ ଚାକିରି ଛାଡିଥିଲେ । ବର୍ତ୍ତମାନ ସେ ଦୁହେଁ ଏକ ସ୍ୱାଧୀନ ବ୍ୟବସାୟିକ ବ୍ୟବସ୍ଥା କରି-ସାରିଥାନ୍ତି ନିଜର ଅର୍ଥନୈତିକ ସ୍ଥିତି ବଜାୟ ରଖିବା ଲକ୍ଷ୍ୟରେ । ଚାଟାନୁଗା ଛାଡି ସେମାନେ ଚାଲିଆସିଥାନ୍ତି ଟେନିସୀର ଏଇ ପ୍ରମୁଖ ସହର ନ୍ୟାସ୍‌ଭିଲ୍ ନିକଟ ଅନ୍ୟଏକ ସହର ଫ୍ରାଙ୍କ୍‌ଲିନ୍‌କୁ ; ସେଠି ସାମୟିକ ଭାବେ ଏକ ଆପାର୍ଟମେଣ୍ଟରେ ରହୁଥାନ୍ତି ସେମାନେ । ଆମେ ସେଦିନ ସନ୍ଧ୍ୟାରେ ଆସି ପହଞ୍ଚିଲୁ ସେଇ ଆପାର୍ଟମେଣ୍ଟରେ । ଏ ଆପାର୍ଟମେଣ୍ଟର ଠିକଣା ଥିଲା : ୨୭୨୯, କେନେଡି କୋର୍ଟ, ଫ୍ରାଙ୍କ୍‌ଲିନ୍, ଟେନୀସୀ ।

## ଲୁଇସବର୍ଗ ଓ ହଣ୍ଟସ୍‌ଭିଲ୍ ଯାତ୍ରା–

– ତା ୨୧ ଅଗଷ୍ଟ, ୧୯୯୭ ।

ପରଦିନ ବଡିଭୋର୍‌ରୁ ଝିଅର ଡାକରାରେ ନିଦ ଭାଙ୍ଗିଲା, "ନନା ! ଉଠ – ଆମେ ଯିବା ପରା ହଣ୍ଟସ୍‌ଭିଲ୍. . .''

ମନେପଡିଲା ଆଜି ସକାଳେ ଆମର ହଣ୍ଟସ୍‌ଭିଲ୍ ଯିବା କଥା । ସେଠି ଡାକ୍ତର ଦେବୀ ପ୍ରସାଦ ମିଶ୍ରଙ୍କ ପୁଅର ବ୍ରତୋତ୍ସବ । ସପରିବାର ଯୋଗ ଦେବାକୁ ନିମନ୍ତ୍ରଣ ଥାଏ ଆମ ସମସ୍ତଙ୍କୁ । ଦେବୀବାବୁ ଜଣେ ପ୍ରଭାବଶାଳୀ ଓଡିଆ ଏନ୍ ଆର୍ ଆଇ ଡାକ୍ତର ଏଠାକାର । ଅନେକ ବର୍ଷ ଆଗରୁ ସେ ଭାରତରୁ ଆସି ଆମେରିକାରେ ଚିକିତ୍ସା ଶାସ୍ତ୍ରରେ ଉଚ୍ଚତର ଡିଗ୍ରୀ ହାସଲ କରିବା ସହିତ ଆଲାବାମାର ପ୍ରଧାନ ସହର ହଣ୍ଟସ୍‌ଭିଲ୍‌ରେ ନିଜର ଚିକିତ୍ସା ବ୍ୟବସାୟ ପ୍ରତିଷ୍ଠା କରିଥିଲେ । ଏ ଭିତରେ ଜଣେ ପ୍ରବୀଣ ଡାକ୍ତରଭାବେ ତାଙ୍କର ସୁଖ୍ୟାତି ଓ ପ୍ରତିଷ୍ଠା ଆହୁରି ବ୍ୟାପକ ହୋଇସାରିଚି । ଦେବୀବାବୁଙ୍କର ଜନ୍ମସ୍ଥାନ କଟକ । ତାଙ୍କ ପିତା ନ୍ୟାୟମୂର୍ତ୍ତି ଗତିକୃଷ୍ଣ ମିଶ୍ର ଓଡିଶା ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ଭାବେ ସୁପରିଚିତ ।

ହଣ୍ଟସ୍‌ଭିଲ୍ ଯିବା କଥା ଉଠିବା ମାତ୍ରେ ମୁଁ ସଚେତନ ହେଲି ଏ ସହରର ଭୌଗୋଳିକ ସ୍ଥିତି ସହିତ ଏହାର ଐତିହାସିକତା ବିଷୟରେ ଟିକେ ବେଶୀ ଜାଣିବାକୁ । ରୋଡମ୍ୟାପ୍‌ରୁ ଜାଣିବାକୁ ପାଇଲି ହଣ୍ଟସ୍‌ଭିଲ୍ ଟେନିସୀ ରାଜ୍ୟର ଦକ୍ଷିଣରେ ଆଲାବାମା ରାଜ୍ୟର ଏକ

ପ୍ରମୁଖ ସହର । ଆଲାବାମା ରାଜ୍ୟର ଇତିହାସ ଖୋଜିଲେ ଏ ହଉଚି ସେଇ ରାଜ୍ୟ ଯୋଉଠି ଆମେରିକାର ଆଫ୍ରିକୀୟ ବଂଶଜ କୃଷ୍ଣକାୟ ଲୋକଙ୍କ ସିଭିଲ୍‌ରାଇଟ୍‌ସ୍ ମୁଭ୍‌ମେଣ୍ଟ (୧୮୯୬-୧୯୫୪) ପୁନର୍ଜନ୍ମ ଲାଭକରିଥିଲା । ସେଦିନ ମଣ୍ଟଗୋମେରି ସହରର ଟା କଂପାନୀର ଏକ ଯାତ୍ରୀବାହୀ ବସ୍‌ରେ ଜଣେ କୃଷ୍ଣକାୟ ଶ୍ରମଜୀବୀ ମହିଳା ରୋଜାପାର୍କ ଦିନମାନର ହାଡଭଙ୍ଗା ଖଟଣି ସାରି ଘରକୁ ଫେରିବା ପାଇଁ ଟିକେଟ୍ କାଟି କଳାଲୋକଙ୍କ ପାଇଁ ବସ୍ ପଛଆଡକୁ ଚିହ୍ନଟ ହେଇଥିବା ବେଞ୍ଚରେ ଏକ ସିଟ୍‌ରେ ବସିସାରିଥାନ୍ତି । ସେତିକିବେଳେ ବସ୍‌ର ଗୋରା ଡ୍ରାଇଭର୍ ତାଙ୍କୁ ନିର୍ଦ୍ଦେଶ ଦେଲା– "ଏ କାଳୀ ବୁଢୀ, ସେ ସିଟ୍ ଛାଡ ! ସେ ସିଟ୍‌ରେ ଆମର ଜଣେ ଏକ୍‌ଷ୍ଟ୍ରା ଗୋରା ପ୍ୟାସେଞ୍ଜର୍ ବସିବେ ।"

କିନ୍ତୁ ସେ କାଳୀ ବୁଢୀ ଜଣକ ନଛାଡେ । କାଳୀବୁଢୀ ଉତ୍ତରଦେଲା ଗୋରା ଡ୍ରାଇଭର୍‌କୁ, "ନା– ଏଇଟା ଆମ କଳାଲୋକଙ୍କ ପାଇଁ ରିଜର୍ଭ ସିଟ୍– ଦେଖୁନ କି ନୋଟିସ୍‌ବୋର୍ଡ ? ମୁଁ କିଆଁ ମୋ ସିଟ୍‌ରୁ ଉଠିବି ? ତାଙ୍କୁ କହୁନ ସେ ଆସି ଆମ କଳାଲୋକଙ୍କ ସେକ୍‌ସେନ୍‌ରେ ବସିବେ ? ମୁଁ କିଆଁ ଛାଡିବି ହୋ ମୋ ହକ୍ ଦାବୀ– ଦିନମାନ ଖଟିଖଟି ମୋ' ଦିହରେ ଜୀବନ ଟିକେ ବି ନାହିଁ । ବସୁନବସୁଣୁ ପୁଣି ଲଗଉଚ ଏ ଅଦଉତି ତମେ ଗୋରାମାନେ ? ନା, ମୁଁ ଯୋଉଠି ବସିଚି ସେଇଠି ବସିବି– ଉଠିବି ନାଇଁ ଜମାରୁ । ଦେଖିବା କ'ଣ କରିବ ତମେ ମୋର !''

ଏଇ ଥିଲା ଆମେରିକାର ସେଇ ଐତିହାସିକ ଗାନ୍ଧିବାଦୀ ସତ୍ୟାଗ୍ରହର ଆରମ୍ଭ ଯାହାର ନାଁ ହେଲା ଆଲାବାମାର ରୋଜା ପାର୍କ Bus Boycott (୧୯୫୫-୫୬) । ସେ ଜନ୍‌ସଂଗ୍ରାମ ମାସ ମାସ ଧରି ଚାଲୁରହିଥିଲା ଆଉ ସେଥିରୁ ବାହାରିଥିଲେ ଆମେରିକାର ଦୁଇଜଣ ବିଖ୍ୟାତ କୃଷ୍ଣକାୟ ନେତା Jesse Jackson ଓ Martin Luther King (Jr.) । କୁହାଯାଏ 'ରୋଜା ପାର୍କରଙ୍କ ବସ୍ ବୟକଟ୍ ଆନ୍ଦୋଳନ ସୃଷ୍ଟି ହେବା ପୂର୍ବରୁ ମାର୍ଟିନ୍ ଲୁଥର କିଂ (ଜୁନିୟର୍) ଥିଲେ ଜଣେ ଅପରିଚିତ କୃଷ୍ଣକାୟ ଯୁବ ଧର୍ମଯାଜକ ।

କେନଡି କୋର୍ଟ, ଫ୍ରାଙ୍କଲିନ୍‌ରୁ ଆମେ ଆଜି ସକାଳ ଦଶରେ ହଣ୍ଟସ୍‌ଭିଲ୍ ଯିବା ପାଇଁ କାର୍‌ରେ ବସିଲୁ । ଆମ ଦଳରେ ଥାଉ ଆମେ ପାଞ୍ଚଜଣ– ପ୍ରବୀର, ବୁଲ୍‌ବୁଲ୍, ପ୍ରତୀକ ନିରୁପମା ଓ ମୁଁ । ପ୍ରବୀର ଷ୍ଟିୟରିଂ ଧଇଲେ । ଆରମ୍ଭ ହେଲା ହଣ୍ଟସ୍‌ଭିଲ୍ ଯାତ୍ରା । ଏକ ଲମ୍ବା ଡ୍ରାଇଭ୍– ପ୍ରାୟ ତିନିଘଣ୍ଟାର ଯାତ୍ରା । କିନ୍ତୁ ମୁଁ ଜାଣିନଥିଲି ଅଧାବାଟରେ ନିରୁପମା ଓ ମୋ ପାଇଁ ଏକ ସଂପୂର୍ଣ୍ଣ ଅଭାବିତ ବିସ୍ମୟକର ବିଷୟ ଅପେକ୍ଷା କରି ରହିଥାଏ । ହଠାତ୍ ରାସ୍ତାର ରୋଡ୍‌ସାଇନ୍‌କୁ ଅନେଇ ମୁଁ ଦେଖିଲି– ଆଗକୁ ଆସୁଚି ଏକ ସହର– ଲୁଇସ୍‌ବର୍ଗ । ଆମେ ସେ ପର୍ଯ୍ୟନ୍ତ ଟେନୀସୀ ରାଜ୍ୟ ସୀମା ଭିତରେ ଥାଉ ।

ଲୁଇସ୍‌ବର୍ଗର ନାଁ ମୁଁ ପୂର୍ବରୁ କେବେ ଶୁଣିନଥାଏ । ପଚାରିଲି ପ୍ରବୀରଙ୍କୁ– ଏ ସହରଟା କ'ଣ ? ଏଠି ତ ବେଶ୍ ସଂଖ୍ୟାର ଗାଡିମଟର ଦେଖୁଚି ମୁଁ ରାସ୍ତାରେ !

ହଠାତ୍ ଝିଅ ବୁଲବୁଲ କୁରକୁର ହେଇ ହସିଉଠିଲା । କହିଲା– "ନନା ମମି ! ଆମେ ଏଇଲେ ତୁମ ଦି'ଜଣଙ୍କୁ ଗୋଟାଏ ରିଏଲ୍ ସରପ୍ରାଇଜ୍ ଦବୁ ।"– କହୁକହୁ କାର୍ ଅଟକିଲା ଗୋଟାଏ ଗ୍ୟାସ୍ ଫିଲିଂ ଷ୍ଟେସନ୍ ଆଗରେ । ମୁଁ ଭାବିଲି ବୋଧେ କାର୍‌ରେ ପେଟ୍ରୋଲ୍ (ଗ୍ୟାସ୍) ପକାଇବା ପାଇଁ ପ୍ରବୀର କାର୍ ପାର୍କକଲେ । କିନ୍ତୁ ନା– "ନନା, ଏଇଟା ଆମ ନିଜର ଗ୍ୟାସ୍ ଫିଲିଂ ଷ୍ଟେସନ୍ । ଏଇ ଆଗରେ ଯୋଉ ଲମ୍ବା ସପିଂ କମ୍ପ୍ଲେକ୍ସ ଦେଖୁଚନ୍ତି ସେସବୁଟା ଯାକ ହେଲା ଆମ ଦୋକାନ, ମାନେ ଆମ ବିଜିନେସ୍ ପ୍ଲେସ୍–" ପ୍ରବୀର ସତରେ ଚମକେଇଦେଲେ ଆମକୁ ।

ଘଟଣା କ'ଣ ଅନ୍ଦାଜ୍ କରିବା ପୂର୍ବରୁ ପ୍ରବୀର ବୁଝେଇଦେଲେ– "ଆଶ୍ଚର୍ଯ୍ୟ ହବାର କିଛି ନାହିଁ । ସତ କହିବାକୁ ଗଲେ ଆମେ ଦୁହେଁ ଆଉ ଚାକିରି କରୁନାହୁଁ– ଆମେ ବର୍ତ୍ତମାନ ସ୍ୱାଧୀନ ବ୍ୟବସାୟ ଆରମ୍ଭ କରିଚୁ ଆମ ନିଜର । କିଛି ମାସ ପୂର୍ବରୁ ଏ ବିଜିନେସ୍‌ଟା ଜଣେ ମିଡଲ୍ ଇଷ୍ଟ ଲୋକଠୁଁ ଖର୍ଦ୍ଦି କରିନେଇଚୁ । ଆପଣଙ୍କୁ କହିନଥିଲୁ ସେ କଥା । ଆପଣମାନେ ଗତଥର ଆମେରିକା ଆସିଲାବେଳେ, ଆମକୁ ୧୯୯୩ରେ ଦେଖିଥିଲେ ଆମ ଚାଟାନୁଗା ଘରେ । ଆମେ ଦୁହେଁ ସେତେବେଳେ ଟେନିସୀ ନଦୀ କୂଳର ସେଇ ଆଟମିକ୍ ରିଆକ୍ଟର୍ ବିଲଡିଂ କଂପାନୀରେ ଚାକରି କରୁଥିଲୁ । ଆମେ ସେ ଚାକିରି ଛାଡି-ସାରିଚୁ ଏ ଭିତରେ । ସେତବେଳେ ଆପଣ ତ ନିଜ ଆଖିରେ ଦେଖିଯାଇଥିଲେ Post Cold War ଆମେରିକାର– କି ଭୟଙ୍କର ସେ ଅବସ୍ଥା ! ବଡ ବଡ କଂପାନୀ ସବୁ ରାତାରାତି ବନ୍ଦ ହେଇଯାଉଥାନ୍ତି ଆଉ ଚାଲିଥାଏ ରିଟ୍ରେଞ୍ଚମେଣ୍ଟ୍ କଂପାନୀମାନଙ୍କର ପ୍ରେସିଡେଣ୍ଟ, ଭାଇସ୍ ପ୍ରେସିଡେଣ୍ଟ୍ ସମେତ ବଡ ବଡ ପୋଷ୍ଟର୍ ମ୍ୟାନେଜର୍‌ମାନଙ୍କର । ଆମେ ଦୁହେଁ କେମିତି ଡରିମରି ପ୍ରତି ୱିକ୍‌ଏଣ୍ଡରେ ଘରକୁ ଫେରୁଥିଲୁ ଦେଖିଥିଲେ ଆମ ଅବସ୍ଥା । କୋଲ୍‌ଡ୍‌ୱାର୍ ଖତମ୍ ହେବା ପରେ ପରେ ୧୯୯୦ରୁ ଆରମ୍ଭ ହେଇଯାଇଥିଲା ଆମେରିକାରେ ସେ ଇକନିମିକ୍ ଡିପ୍ରେସନ୍ । ସାରା ଆମେରିକାର ଲୋକେ ତ୍ରାହି ତ୍ରାହି ବୋବାଳି ଛାଡୁଥାନ୍ତି । ଆମେ ଦେଖିଲୁ ଆମ କଂପାନୀ ଯେକୌଣସି ଦିନ ଆମକୁ କହିଦେଇ ପାରେ– କ୍ୱିଟ୍ ! ତା' ପୂର୍ବରୁ ଆମେ ସ୍ଥିରକରିନେଲୁ ଆମ ବାଟ– ଚାକିରି ଛାଡି ଆମର ନିଜର ଏଣ୍ଟରପ୍ରାଇଜ୍ ଆରମ୍ଭ କରିବା ସିଦ୍ଧାନ୍ତ ନେଲୁ ତା'ପରେ । ଚାଟାନୁଗା ଛାଡି ଚାଲିଆସିଲୁ ଫ୍ରାଙ୍କଲିନ୍ । ସେତେବେଳେ ଶୁଣିଲୁ– ଏଠି ଲୁଇସ୍‌ବର୍ଗରେ ଏଇ ଗ୍ୟାସ୍ ଷ୍ଟେସନ୍ ସମେତ ପୂରା କନ୍‌ଭିନିଏନ୍ସ ଷ୍ଟୋର୍‌ଟା ବିକ୍ରୀକରିଦେଇ ଜଣେ ଇରାକୀଲୋକ ଚାଲି-ଯାଉଥାଏ । ବହୁ ବିଚାର ବିମର୍ଶ ପରେ ଆମେ ବ୍ୟାଙ୍କ୍‌ରୁ ଲୋନ୍ ଉଠେଇଲୁ ଆଉ ଏଇ ବିଜିନେସ୍‌ଟା କିଣିନେଲୁ । ଆସନ୍ତୁ ଦେଖିବେ କେମିତି ଚାଲିଚି ଆମର ଏ ବିଜିନେସ୍ ।"

ସେ ସବୁ କଥା ସତରେ ବିସ୍ମିତ ଆଉ କିଛି ମାତ୍ରାରେ ବିଚଳିତ ବି କରିଦେଲା ମତେ । କାରଣ ଏ ଦୁହେଁ ଆମେରିକା ବିଶ୍ୱବିଦ୍ୟାଳୟରୁ ଇଂଜିନିୟରିଂ ଡିଗ୍ରୀ ପ୍ରାପ୍ତ କଂପାନୀ

ଚାକିରିଆ ଯେ ସତରେ ସେମାନଙ୍କର ସେଇ ଉଚ୍ଚ ପଦପଦବୀର ଚାକିରି ଛାଡିଦେଇ ଏଭଳି ଏକ ବିଜିନେସ୍‌ରେ ପାରିଉଠିବେ ସେଥିରେ ସନ୍ଦେହ ଥାଏ ମୋର ।

କାର୍‌ରୁ ଓହ୍ଲେଇ ମୁଁ ଆଉ ନିରୁପମା ଆବାକାବା ଆଖିରେ ଚାରିଦିଗକୁ ଅନାଇଲୁ । ଲୁଇସ୍‌ବର୍ଗ ଗୋଟିଏ ଛୋଟ ସହର ଭଳି ମନେହେଉଥାଏ; କିନ୍ତୁ ଚାରିଆଡେ ନିର୍ମାଣ କାମ ଚାଲିଥାଏ ଧୁମଧାମ୍ । ମନେହେଉଥାଏ ଅଳ୍ପ କିଛି ବର୍ଷ ଭିତରେ ଏ ବି ଗୋଟାଏ ବଡ ସହର ପାଲଟିଯିବା ଅସଂଭବ ନୁହେଁ । ଏଇ ବିକାଶଶୀଳ ଆମେରିକାନ୍ ସହରରେ ଆମ ଝିଅଜ୍ୱାଇଁ ଯେ ନିଜର କରି ଗୋଟାଏ ବିଜିନେସ୍ ସଂସ୍ଥା କିଣିନେଇପାରିଥାନ୍ତି ଏହା ସହଜେ ବିଶ୍ୱାସ ହେଉନଥାଏ ।

ପ୍ରବୀର ମତେ ତାଙ୍କ ବିଜିନେସ୍ ସଂପର୍କରେ କିଛି ଧାରଣା ଦେବାକୁ କହିଲେ, "ନନା ! ଏଇଟା ନିଶ୍ଚେ ସେମିତି କିଛି ବଡ ବିଜିନେସ୍ ନୁହଁ, ତଥାପି ଯା'ର ଟର୍ଣ୍ଣଓଭର୍ କିଛି ମନ୍ଦ ନୁହେଁ । କଂପାନୀ ଚାକିରିରେ ଆମ ଦୁଇଜଣଙ୍କ ଦରମାର ବହୁ ଗୁଣ ଆୟ ଏଠୁ ଆମେ କରୁଛୁ । ଏ ଗୋଟାଏ ସାଧାରଣ ଫିଲିଂ ଷ୍ଟେସନ୍ ବ୍ୟବସାୟ ନୁହେଁ– ଏଠି ଆମର ଅଛି ପାଞ୍ଚଟା ଗ୍ୟାସ୍‌ପମ୍ପ, ଗୋଟାଏ କନ୍‌ଭିନିଏନ୍ସ ଷ୍ଟୋର୍, ଗୋଟାଏ କ୍ୟାଣ୍ଟିନ୍, ଗୋଟାଏ ବଡ ଲିକର୍ ଷ୍ଟୋର୍ ବି । ଏସବୁ ପାଇଁ ଦୁଇଜଣ ମ୍ୟାନେଜର ଓ ଅନେକଗୁଡିଏ ସେଲ୍‌ସ୍‌ମେନ୍ ନିଯୁକ୍ତ ହେଇଚନ୍ତି... ସମସ୍ତେ ହେଲେ ସ୍ଥାନୀୟ ୱର୍କରସ୍– White Americans"

ଦେଖିଲି– ଗ୍ୟାସ୍ ପମ୍ପ ସାମ୍‌ନାରେ ଲାଗିଥାଏ ଗୁଡାଏ ଗାଡି । ଗାଡିରେ ଗ୍ୟାସ୍ ଫିଲିଂ ଚାଲିଥାଏ । ଗୋରା କଳା ସ୍ତ୍ରୀ ପୁରୁଷ ଗାଡିରୁ ଓହ୍ଲେଇ ପଶୁଥାନ୍ତି । ଗାଡିରେ ନିଜେନିଜେ ଗ୍ୟାସ୍ ପୂରେଇସାରି ସାମ୍‌ନା କନ୍‌ଭିନିଏନ୍‌ସ୍ ଷ୍ଟୋର୍ ଭିତରକୁ ଯାନ୍ତି । ଆମେ ସେମାନଙ୍କ ସାଥିରେ ପଶିଲୁ ସେଇ ଷ୍ଟୋର୍ ଭିତରକୁ । ଗୋଟାଏ ବିରାଟ ଶୀତତାପ ନିୟନ୍ତ୍ରିତ ଷ୍ଟୋର୍ ଭିତରକୁ ପଶିବାମାତ୍ରେ ଦେଖିଲି ଗରାଖଙ୍କ ଖୁବ୍ ଭିଡ ଲାଗିଚି– ଗରାଖମାନେ ଦୋକାନ ଭିତରେ ବୁଲି ବୁଲି ନିଜ ଆବଶ୍ୟକୀୟ ଜିନିଷପତ୍ର ସେଲ୍‌ଫ୍‌ଗୁଡାକରୁ ସଂଗ୍ରହ କରୁଥାନ୍ତି ଆଉ ଯାଉଥାନ୍ତି କ୍ୟାସ୍ ରେଜିଷ୍ଟର୍ (କାଉଣ୍ଟର୍) ପାଖକୁ ଜିନିଷର ଦାମ୍ ପଇଠ କରିବାକୁ । କାଉଣ୍ଟର୍ ପଛପଟେ ଠିଆହେଇଥାନ୍ତି କେତେଜଣ ୟୁନିଫର୍ମପିନ୍ଧା ସ୍ତ୍ରୀ ପୁରୁଷ– ସେମାନେ ନିଶ୍ଚୟ ଏ ଷ୍ଟୋର୍‌ର କର୍ମଚାରୀ । ଝିଅ ବୁଲବୁଲ ଆମକୁ ତା' କର୍ମଚାରୀମାନଙ୍କ ସାଙ୍ଗେ ଚିହ୍ନାକରାଇଦେଲା– Wen, David, Beverly, Jean, Stacy, Heather, Joshephine ଇତ୍ୟାଦି ନାଁରେ । ସେ ଦଳରେ ଥାଆନ୍ତି କେତେଜଣ ଖୁବ୍ ସୁନ୍ଦର ଚେହେରାର ଆମେରିକାନ୍ ଝିଅ । ସେମାନେ ନିରୁପମାଙ୍କୁ ଘେରିଯାଇ ତାଙ୍କର ଶାଢି ଚୁଡି ସୁଦଶାବ୍ରତ ଆଉ ସିନ୍ଦୂର ଟିପା– ସବୁକୁ ଗୋଟିଗୋଟି କରି ଟିପରେ ଛୁଇଁ ପରୀକ୍ଷା କରୁଥାନ୍ତି ଓ ସେସବୁ ଅଳଙ୍କାରର ନାଁ ଇତ୍ୟାଦି ଟିକିନିଖି କରି ପଚାରି ବୁଝୁଥାନ୍ତି ।

ମୁଁ କିନ୍ତୁ ବୁଝିବାକୁ ଚାହୁଁଥାଏ ସେମାନଙ୍କର ସାମାଜିକ ସ୍ଥିତି ସଂପର୍କରେ ଯାହା

ନପଚାରିବାକୁ ମତେ ସତର୍କ କରିଦେଲା ଝିଅ ଇସାରା ମାଧ୍ୟମରେ । ପରେ ବୁଝିଲି– ସେମାନେ ଅଧିକାଂଶ ଥିଲେ ଅବିବାହିତା ମାଆ । ପ୍ରତ୍ୟେକଙ୍କର ଏକାଧିକ ସନ୍ତାନ-ସନ୍ତତି, ଆଉ ସେମାନେ ରହନ୍ତି ବୟଫ୍ରେଣ୍ଡମାନଙ୍କ ସହିତ ଚକଲଗା ଗାଡିଘର ମାନଙ୍କରେ (Mobile houses) । ସେ ସବୁ ଚକଲଗା ଗାଡିଘରଗୁଡିକ କିପରି ତାହା ଦେଖିବାର ମୋର କୌତୂହଳ ଅବଶ୍ୟ ପୂରଣ ହୋଇଥିଲା ଯଥା ସମୟରେ ।

କିଛି ସମୟ ସେମାନଙ୍କର କନ୍‌ଭିନିଏନ୍ସ ଷ୍ଟୋର୍ ଓ କ୍ୟାଣ୍ଟିନ୍ ଭିତରେ ବୁଲଚାଲ କଲା ପରେ ଝିଅ ବୁଲବୁଲ ଡାକିଲା– "ନନା ମମି, ଆସ ଦେଖିବ ଆମ ଷ୍ଟୋର୍‌ର ଆଉ ଗୋଟାଏ ଡିଭିଜନ୍ । ଏ ଡିଭିଜନ୍‌ଟାକୁ ମଧ୍ୟ ଏ ଷ୍ଟୋର୍ ସାଙ୍ଗରେ କିଣିବାକୁ ହେଲା ସେ ମିଡଲ୍-ଇଷ୍ଟ୍ ଲୋକଠୁ ଯେ ଥିଲା ଯା'ର ପୂର୍ବ ମାଲିକ ।

ବିରାଟ ବିଲଡିଂର ଅନ୍ୟ ଗୋଟାଏ ଅଂଶରେ ଥାଏ ସେ ଡିଭିଜନ୍–ଏକ ବଡ ୱାଇନ୍ ଓ ଲିକର୍ ଷ୍ଟୋର୍ । ଆମେ ଚାଲିଲୁ ସେଠିକି । ଦେଖିଲୁ ଷ୍ଟୋର୍‌ର ର୍‌ୟାକ୍ ସବୁରେ ସୁନ୍ଦର ଭାବେ ଡିସ୍‌ପ୍ଲେ କରାଯାଇଚି ବିଦେଶୀ ପାନୀୟ ବୋତଲ୍ ମାନ । କ୍ୟାସ୍ ରେଜିଷ୍ଟର୍ ପଛରେ ବସିଥାନ୍ତି ଜଣେ ଚଷମାଦିଆ ପ୍ରୌଢ ବ୍ୟକ୍ତି । ହାତରେ ଧରିଥାନ୍ତି ଖଣ୍ଡେ ବେଶ୍ ମୋଟା ବହି । ଲୋକଟି ମନୋଯୋଗ ସହକାରେ ବହି ପଢିବାରେ ଲାଗିଥାଏ । ଦେଖିଲି ଆମେ ଲୋକଟିର ଷ୍ଟୋର୍ ଭିତରକୁ ପଶିବା ପରେ ମଧ୍ୟ ସେ ବହିରୁ ଆଖି ନଉଠେଇ ପଢାରେ ମନଦେଇଥାନ୍ତି । ବୁଲବୁଲ ତାଙ୍କ ନାମ ଧରି ଡାକିଲା, Hello Campbell ! Please look up who has come to meet you !

ବହିରୁ ମୁହଁ ଟେକି ଲୋକଟି ଚାହିଁଲା । ସାମ୍‌ନାରେ ଖୋଦ୍ ମାଲକାଣୀଙ୍କୁ ଦେଖି ମଧ୍ୟ ସେ ସେପରି କିଛି ଖାସ୍ ପ୍ରତିକ୍ରିୟା ପ୍ରକାଶ କଲା ନାହିଁ । ଆମ ଭାରତରେ ଅଫିସର୍ କିରାଣିମାନେ ଉଚ୍ଚ ଅଫିସର୍ ବା ମାଲିକ ମାଲିକାଣୀଙ୍କୁ ନିଜ ଡେସ୍କ ସାମ୍‌ନାରେ ଦେଖିଲେ ଯେଭଳି ଚମକିପଡନ୍ତି ସେଭଳି କିଛି ଲକ୍ଷ୍ୟ କଲିନାହିଁ, ଲୋକଟି ତା' ମାଲିକାଣୀ ବୁଲବୁଲକୁ ତା' କାଉଣ୍ଟର୍ ସାମ୍‌ନାରେ ଠିଆହେଇଥିବା ଦେଖିବା ପରେ ବି ।

ସେ ଲୋକ ସାଙ୍ଗେ ପରିଚିତ କରାଇ ଦେବା ପାଇଁ ନରମ ସ୍ୱରରେ ବୁଲବୁଲ ମତେ କହିଲା– ନନା ! ୟା'ଙ୍କ ନାଁ କ୍ୟାମ୍ପବେଲ୍ । ଏ ଜଣେ ଏକ୍ସ-ମିଲିଟାରି ପର୍ସୋନେଲ୍ । ସେକେଣ୍ଡ୍ ୱାର୍ଲଡ୍ ୱାର୍‌ରେ ଏ ଥିଲେ ଜାପାନରେ ୟୁଏସ୍ ଅକୁପେସନ୍ ଆର୍ମିରେ । ସେତେବେଳେ ଦୁର୍ଦ୍ଦାନ୍ତ ଜେନେରାଲ୍ ମ୍ୟାକ୍ ଆର୍ଥର୍ ଥିଲେ ଆମେରିକାର ଇଷ୍ଟର୍ଣ୍ଣ କମାଣ୍ଡର ଚିଫ୍ । ଏ ଲୋକ ସେଇ ସମୟର । ଆମେ ଏ ଷ୍ଟୋର୍ ଖରିଦ କଲାବେଳେ ଏ ଥିଲେ ଏଇଠି– ଆମେ ୟାଙ୍କୁ ରଖିଚୁ ଏଠି, କାରଣ ଏ ଗୋଟାଏ ଖୁବ୍ ସେନ୍‌ସିଟିଭ୍ ଜାଗା– ଏ ଦେଶରେ ଲିକର୍ ସେଲିଂ ପାଇଁ ଖୁବ୍ ଷ୍ଟ୍ରିକ୍ଟ ଆଇନ୍ କାନୁନ୍, ବିଶେଷତଃ କୌଣସି ମାଇନର୍ ୟୁଥ୍‌କୁ ମଦ ସେଲ୍ କରିବା ନିଷେଧ ଏ ଦେଶରେ । ସେଥିପାଇଁ ଡ୍ରାଇଭିଂ

ଲାଇସେନ୍ସ ଚେକ୍ କରିବାକୁ ପଡେ କଡାକଡି ଭାବେ । ଯଦି ଦୈବାତ୍ କୌଣସି ମାଇନର୍ ପିଲାକୁ କେହି ଲିକର୍ ସେଲ୍ କରିଥିବା ପ୍ରମାଣ ମିଳେ ତେବେ ସେଲସ୍‌ମ୍ୟାନ୍ ସମେତ ଦୋକାନ ମାଲିକଙ୍କୁ ଜେଲ୍ । ପୁଣି ଏ ଦେଶର ୟୁଥ୍‌ଙ୍କ ସାଙ୍ଗେ ଡିଲ୍ କରିବା ସହଜ ନୁହେଁ– ବେଳେବେଳେ ଗଣ୍ଡଗୋଳ କରନ୍ତି ସେମାନେ । ଏଠି ତ ସମସ୍ତଙ୍କ ହାତରେ ଗନ୍– ସେଥିପାଇଁ ଜଣେ ଏକ୍ସ ମିଲିଟାରି ଲୋକଙ୍କୁ ଏ ଦାୟିତ୍ୱରେ ରଖାଯିବା ଦରକାର । କ୍ୟାମ୍ପ୍‌ବେଲ୍ ଜଣେ ଖୁବ୍ ଦକ୍ଷ ଲୋକ । ତୁମେ ତା' ସାଙ୍ଗେ କଥା ହୁଅ– ଅନେକ ଖବର ପାଇବ । ମୁଁ ଟିକେ ଯାଉଚି– ଷ୍ଟୋର୍‌ରେ କେତେଟା ଜରୁରୀ କାମ କରି ଫେରିବି । ପରେ ଆମେ ବାହାରିବା ହଣ୍ଟସ୍‌ଭିଲ୍ ।

"Hello Campbell. . ."– ହାତରେ ଏକ ମୋଟା ବହି ଧରି ବସିଥିବା ବୟସ୍କ ଭଦ୍ରଲୋକଟି ଆଡକୁ ହାତ ବଢେଇଲି । କ୍ୟାମ୍ପବେଲ୍ ଏଥର ମୋ ସାଙ୍ଗେ କଥାବାର୍ତ୍ତା ପାଇଁ ହାତର ଖୋଲା ବହିଟିକୁ ବନ୍ଦକରି ଠାଏ ରଖିଲା । ମୁଁ ଲକ୍ଷ୍ୟକଲି ସେ ବହିର କଭର୍ ଉପରେ ବହିର ନାଁ– "ଫର୍ ହୁମ୍ ଦ' ବେଲ୍ ଟୋଲ୍‌ସ୍''– ଆଉ ଲେଖକ ହେମିଂ ୱେ ! ହେମିଂ ୱେ ମୋର ଅତି ପ୍ରିୟ ଲେଖକ । ବହୁ ବର୍ଷ ତଳେ ମୁଁ ତାଙ୍କର ଏଇ ବିଶ୍ୱବିଖ୍ୟାତ ଉପନ୍ୟାସ "ଫର୍ ହୁମ୍ ଦ' ବେଲ୍ ଟୋଲ୍‌ସ୍'' ପଢିଥିଲି । କିନ୍ତୁ ଆଶ୍ଚର୍ଯ୍ୟ ହେଲି ସେ ବହିଟିକୁ ଲିକର୍ ଷ୍ଟୋର୍‌ର କ୍ୟାସ୍ କାଉଣ୍ଟର୍ ପଛରେ ବସି ସେପରି ମନଧ୍ୟାନ ଦେଇ ପଢୁଥିବା ଜଣେ ସେଲସ୍‌ମ୍ୟାନ୍‌କୁ ଭେଟି । ଲୋକଟିର ସଂପୂର୍ଣ୍ଣ ପରିଚୟ ପାଇବାକୁ ବ୍ୟାକୁଳ ହୋଇ ମୁଁ ତା' ସାଙ୍ଗେ ଆତ୍ମୀୟତା ସୃଷ୍ଟି କରିବା ପାଇଁ କଥାବାର୍ତ୍ତା ଆରମ୍ଭ କରିଦେଲି ।

ଅଳ୍ପ ସମୟ କଥାବାର୍ତ୍ତା ପରେ ବୁଝିପାରିଲି ସେଇ ପ୍ରୌଢ ସେଲସ୍‌ମ୍ୟାନ୍ ଜଣକ ଏଣୁ ତେଣୁ ଲୋକ ନୁହନ୍ତି । ଝିଅ ମୁହଁରୁ ଶୁଣିଥିଲି ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜାପାନରେ ଆମେରିକାର ଅକୁପେସନ୍ ଆର୍ମିରେ ଯୋଗଦେଇଥିଲେ ଓ ପରମାଣୁ ବିଧ୍ୱସ୍ତ ଜାପାନରେ କେତେବର୍ଷ କାମ କରିଥିଲେ । ପରେପରେ ମିଲିଟାରି ସର୍ଭିସ୍‌ରୁ ଅବସର ନେବା ପରେ ସେ କ'ଣ କରୁଥିଲେ ସେକଥା ତାଙ୍କ ମୁହଁରୁ ଶୁଣିବାକୁ ଆରମ୍ଭକଲି କଥାବାର୍ତ୍ତା ତାଙ୍କ ସାଙ୍ଗେ ।

ତାଙ୍କ ସହିତ ବେଶ୍ କିଛି ସମୟ ଆଳାପ ଆଲୋଚନା ଭିତରେ ଆହୁରି ମଧ୍ୟ ବୁଝିଲି ସେ ଜଣେ 'ପୁସ୍ତକ କୀଟ' voracious reader ! ପ୍ରତି ସପ୍ତାହରେ ସେ ପଢନ୍ତି ଅନ୍ତତଃ ହଜାରେ ପୃଷ୍ଠା, ପୁଣି ତାଙ୍କର ରୁଚି ରହିଚି ବିଶ୍ୱ-ସାହିତ୍ୟର କ୍ଲାସିକ୍‌ସ୍ ପ୍ରତି !

ସେ ଭଦ୍ରଲୋକ ଥିଲେ ଠିକ୍ ମୋରି ବୟସର ଲୋକ । ତାଙ୍କ ଜନ୍ମ ୧୯୩୩ରେ ମୋ' ଜନ୍ମ ବର୍ଷ । ଏଭଳି ଜଣେ ସମବୟସ୍କ ଅଭିଜ୍ଞ ଭଦ୍ରଲୋକଙ୍କ ସାଙ୍ଗେ ବନ୍ଧୁତା ଖୁବ୍ ଶୀଘ୍ର ଜମିଗଲା । ପ୍ରାୟ ଅଧଘଣ୍ଟାଏ ଗପସପ ଭିତରେ ତାଙ୍କଠାରୁ ଆମେରିକାର ସାମାଜିକ ମୂଲ୍ୟବୋଧ ସଂପର୍କରେ ଅନେକ କିଛି ତଥ୍ୟ ଜାଣିବାକୁ ମିଳିଲା । ମୋର ଗୋଟିଏ ଦୁଇଟି ପ୍ରଶ୍ନର ଯାହାସବୁ ଉତ୍ତର ତାଙ୍କଠାରୁ ପାଇଥିଲି ସେସବୁ ମତେ ଆହୁରି ବିସ୍ମିତ କରିଥିଲା ।

ମୁଁ ତାଙ୍କୁ ପଚାରିଥିଲି– କ୍ୟାମ୍ପବେଲ୍, ତମେ ହାଇସ୍କୁଲ୍‌ରେ ପଢିଲାବେଳେ ଏ ଲୁଇସ୍‌ବର୍ଗ ସହରର ଏ ସିକ୍ସ ଲେନ୍ ହାଇୱେରେ ଏତେସବୁ ଗାଡିମୋଟର ଚାଲୁଥିଲା କି ? ଉତ୍ତର– ନାଁ । ଆମ ପିଲାଦିନେ ଏ ଜାଗା ଥିଲା ଘୋର ଜଙ୍ଗଲ । ଏଠି ଗଧିଆ ଆଉ ଭାଲୁମାନେ ସ୍ୱଚ୍ଛନ୍ଦରେ ବୁଲାବୁଲି କରିବା ମୁଁ ପିଲାଦିନେ ଦେଖିଚି । ଦ୍ୱିତୀୟ ପ୍ରଶ୍ନ– ତମେ କେଉଁ ବର୍ଷ ହାଇସ୍କୁଲ୍ ପାଶ୍ କଲ ? ଉତ୍ତର– ୧୯୪୯ । ଚମକିପଡିଲି, କାରଣ ଠିକ୍ ସେଇବର୍ଷ ମୁଁ ମଧ୍ୟ ରେଭେନ୍ସା କଲିଜିଏଟ୍ ସ୍କୁଲରୁ ମ୍ୟାଟ୍ରିକ୍ ପାଶ୍ କରିଥିଲି । ପରବର୍ତ୍ତୀ ପ୍ରଶ୍ନ – ତମେ ସ୍କୁଲ୍‌ପଢୁଆ ପିଲାମାନେ କେମିତି ସ୍କୁଲକୁ ଯା-ଆସ କରୁଥିଲ ? ଉତ୍ତର – ଚାଲିଚାଲି । ଆମ ଘରଠୁ ସ୍କୁଲ ସାତ-ଆଠ ମାଇଲ ଦୂର । ଆମେ ପିଲାଦିନେ ମୋଟର୍ ଗାଡି ଦେଖିନଥିଲୁ– ଏପରିକି ଆମ ପିଲାଦିନେ ମୋଟର ବାଇକ୍ ଦେଖିନଥିଲୁ । ସେ ସବୁ ହୁଏତ ଥିଲା ନ୍ୟୁୟର୍କ ସିକାଗୋ ଭଳି ବଡବଡ ସହରରେ ବୋଲି ଶୁଣିଥିଲୁ କେବଳ । ଆମେ ସ୍କୁଲ୍‌କୁ ଯାଉ ଚାଲିଚାଲି, ବେଳେବେଳେ ଘୋଡାଟଣା ମିଲକ୍‌ଭ୍ୟାନ୍ ପଛପଟେ ଓହଳି ଓହଳି । ଏ ସବୁ ଯୋଉ ରାସ୍ତାଘାଟ ଘରଦ୍ୱାର ଗାଡି ମଟର ଦେଖୁଚନ୍ତି ସେସବୁ ହେଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତି ସମୟର, ମାନେ ୧୯୫୦ ପରେ । ଦ୍ୱିତୀୟ ବିଶ୍ୱଯୁଦ୍ଧହିଁ ଆମେରିକାର ବିକାଶ ପ୍ରତି ଏକ ବରଦାନ ! ସମଗ୍ର ଆମେରିକାର ଅଭ୍ୟୁଦୟ ପଛରେ ଯୁଦ୍ଧହିଁ ଆଶୀର୍ବାଦ ଭଳି କାମ କରିଆସିଚି ଆଜିଯାକେ ।

ଫ୍ରାଙ୍କ୍‌ଲିନ୍‌ରେ ଝିଅଜୋଇଁଙ୍କ ଘରେ ଏଥର ଦୁଇମାସ ରହଣି ଭିତରେ ମୁଁ ସେମାନଙ୍କର ଦୋକାନରେ କାମକରୁଥିବା ଏଇ କ୍ୟାମ୍ପବେଲ୍ ଲୋକଟି ସଙ୍ଗେ ଗପିବାକୁ ଏଠିକି– ଏଇ ଲୁଇସ୍‌ବର୍ଗକୁ ଅନେକବାର ଆସିଥିଲି ।

ବୁଲବୁଲ ଡାକିଲା, "ନନା, ଚାଲ ବାହାରିବା । ହଣ୍ଟସ୍‌ଭିଲ୍ ଦେଢଘଣ୍ଟା ଡ୍ରାଇଭ୍ ଏଠିକି– ବହୁତ ଡେରି ହେଇଗଲାଣି ।"

କ୍ୟାମ୍ପବେଲ୍ ସାଙ୍ଗରେ ଗପସପ ବନ୍ଦକରି ଲିକର୍ ଷ୍ଟୋର ବାହାରକୁ ଆସିଲି । ଖରା ଖୁବ୍ ଟାଣ ହେଇଯାଇଥାଏ ବାହାରେ । ଆମେରିକାର ଦକ୍ଷିଣ ରାଜ୍ୟମାନଙ୍କରେ ଅଗଷ୍ଟ ମାସର ଖରା ଅବିକଳ ଆମ ଭାରତର ଅଗଷ୍ଟମାସର ଖରାପରି ବେଶ୍ ଟାଣ ଆଉ ମଧ୍ୟାହ୍ନ ସୂର୍ଯ୍ୟ ମଧ୍ୟ ପ୍ରଚଣ୍ଡ ।

ହଣ୍ଟସ୍ ଭିଲ୍ ରାସ୍ତାରେ ଡ୍ରାଇଭ୍ କଲାବେଳେ ବାଟରେ ମୁଁ ମୋ ମନକଥା ଖୋଲି କହିଲି ଝିଅ ଜୋଇଁଙ୍କୁ– "ତୁମେ ଦୁହେଁ ଯୋଡିଏ ଉଚ୍ଚ ଦରମାପ୍ରାପ୍ତ କ୍ୱାଲିଫାଏଡ୍ ଇଂଜିନିୟର୍ । ପୁଣି ଆଟମିକ୍ ରିଆକ୍ଟର ନିର୍ମାଣ କଲାବାଲା ମଲ୍‌ଟିନ୍ୟାସ୍‌ନାଲ୍ କଂପାନୀରେ ଚାକିରି କରୁଥିଲ– ସେଭଳି ଚାକିରି ଛାଡି ଏଭଳି ବିଜିନେସ୍ କଲ ଶୁଣି ମୋର ପ୍ରଥମେ ଟିକେ ଅବଶୋଷ ହେଲା ନିଶ୍ଚୟ । କିନ୍ତୁ ତୁମେମାନେ ନିଶ୍ଚିତ ରହ ଯେ ଗ୍ଲୋବାଲାଇଜେସନ୍ ପରେ ଆମେରିକାର ଏଭଳି ଅର୍ଥନୈତିକ ବିପର୍ଯ୍ୟୟ ସମୟରେ ତମେ ଦୁହେଁ ଯେ ହାରି-

ଯାଇଛନ୍ତି– ଓଲଟି ଅଣ୍ଟାଭିଡି ଏକ ନୂଆ ବାଟ ବରଣ କରିନେଇପାରିଚ ସେଥିପାଇଁ ମୁଁ ଗର୍ବିତ । ମୋର ଅନ୍ୟ ଏକ କାରଣ ମଧ୍ୟ ଅଛି ଗର୍ବ କରିବା ପାଇଁ ତମ ପାଇଁ –କାହିଁକି ଜାଣ ?"– ଅଳ୍ପ ହସି କହିଲି, "ଆମ ଭାରତୀୟଙ୍କର ୟୁରୋପର ଗୋରାଲୋକଙ୍କ ପ୍ରତି ଗୋଟାଏ ସହଜାତ ଭୟ ରହିଥାଏ ଐତିହାସିକ କାରଣରୁ । ସେମାନେ ଥିଲେ ଦୁଇଶହ ବର୍ଷ ଧରି ଆମର ଶାସକ । ଆମେ ଭାରତୀୟମାନେ ସେମାନଙ୍କ ଅଧୀନରେ ଚାକିରି କରୁଥିଲୁ ଭାରତ ସ୍ୱାଧୀନ ହେବା ପୂର୍ବରୁ । ମନ ଭିତରେ ଗୋଟାଏ ଓରିମାନା ରହିଆସିଥିଲା ପିଲାଦିନୁ ମୋର– କୋଉଦିନ ଏ ଗୋରାଙ୍କୁ ଆମେ ଭାରତୀୟ ଲୋକେ ଚାକର କରି ରଖିବୁ ! ମନ ଓରିମାନ ଆଜି ମେଣ୍ଟିଗଲା ପିଲାଏ । ତମ ଦି'ଜଣଙ୍କୁ ସାବାସ୍ ନଦେଇ ରହିପାରୁନି !"

ଲୁଇସ୍‌ବର୍ଗର କିଛି ଦୂରରେ ଟେନିସୀ ରାଜ୍ୟ ସୀମା ସରହଦ ସରିଗଲା । ଆମେ ପ୍ରବେଶକଲୁ ଆଲାବାମା ରାଜ୍ୟ ଭିତରକୁ । ରାସ୍ତାକଡ ଖୁଣ୍ଟରୁ ଜଣାପଡୁଥାଏ ଆଉ ପ୍ରାୟ ଘଣ୍ଟାଏ ଡ୍ରାଇଭ୍ ହଣ୍ଟସ୍‌ଭିଲ୍‌କୁ ।

ପ୍ରତୀକ ଆରମ୍ଭକଲା ଜଗନ୍ନାଥ ଜଣାଣ– ସାଲବେଗଙ୍କର ଜଣାଣ ..."କେଣେ ଘେନି ଯାଉଚ ଜଗନ୍ନାଥଙ୍କୁ / ଆମ୍ଭେ ଦର୍ଶନ କରିବୁ କାହାକୁ– ।" ନ୍ୟାସ୍‌ଭିଲ୍ ହିନ୍ଦୁ ମନ୍ଦିରରେ ପ୍ରବାସୀ ଓଡିଆମାନଙ୍କ ଭଜନ ଶୁଣି ଆମର ଏ ନାତିଟି ମଧ୍ୟ ଜଗନ୍ନାଥଙ୍କ ଭଜନ ଜଣାଣ ସବୁ ବୋଲୁଥାଏ । ପିଲାଦିନୁ ଇଂରେଜି ଆକ୍‌ସେଣ୍ଟରେ ଓଡିଆ କହୁଥିବା ଏଇ ଆଠ ନ' ବର୍ଷର ପିଲାଟି କଣ୍ଠର ଜଗନ୍ନାଥ ଜଣାଣ ଅତି ଚମତ୍କାର ପରିବେଶ ସୃଷ୍ଟି କରୁଥାଏ କାର୍ ଭିତରେ । ହାଇୱେ କଡରେ ବହୁତଗୁଡିଏ ଗୋପାଳନ କେନ୍ଦ୍ର (ର୍ୟାଞ୍ଚ) ଦେଖିବାକୁ ମିଳୁଥାଏ । ଶହଶହ ହୃଷ୍ଟପୁଷ୍ଟ ଦୁଧିଆଳି ଗାଈ ବିସ୍ତୀର୍ଣ୍ଣ ଘାସପଡିଆ ଭିତରେ ଦଳଦଳ ହେଇ ଚରୁଥିବା ଦୃଶ୍ୟ ଅତ୍ୟନ୍ତ ମନଲୋଭା । ଠାଏ ଠାଏ ମଧ୍ୟ ଘୋଡାମାନେ ସେମିତି ବଡ ବଡ ରାଞ୍ଚ୍ ଭିତରେ ସ୍ୱଚ୍ଛନ୍ଦରେ ବିଚରଣ କରୁଥିବା ଦୃଶ୍ୟ ଦେଖି ମୁଗ୍ଧ ହେଲି ।

ପ୍ରବୀର କହିଲେ, "ଏ ଘୋଡା ଗୁଡିକ କ'ଣ ଜାଣନ୍ତି ? ଏମାନଙ୍କୁ କୁହାଯାଏ ନାଚଘୋଡା (dancing horses) ।"– ଏସବୁ ଘୋଡାଙ୍କୁ ନାଚ କରାଇ ବେଶ୍ ପଇସା ରୋଜଗାର କରାଯାଏ ସ୍ୱତନ୍ତ୍ର ଉତ୍ସବମାନଙ୍କରେ । ସେମିତି ଏ ର୍ୟାଞ୍ଚ୍‌ମାନଙ୍କରେ ପାଳନ କରାଯାଉଥିବା ଘୋଡାମାନେ ମଧ୍ୟ ଘୋଡାଚଢା (riding) ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ । ଏ ଦେଶରେ ଘୋଡାଚଢା ଗୋଟାଏ ବଡ ସ୍ପୋର୍ଟସ ଓ ବଡ ସଉକ । ବହୁ ଧନୀ ପରିବାର ନିଜ ନିଜ ପାଳିତ ଘୋଡାମାନଙ୍କୁ ଏଇ ସବୁ ର୍ୟାଞ୍ଚ୍‌ମାନଙ୍କରେ ରଖିଥାନ୍ତି । ସେମାନେ ଛୁଟିଦିନରେ ଏସବୁ ର୍ୟାଞ୍ଚକୁ ଆସି ନିଜନିଜ ଘୋଡା ଚଢି ଆନନ୍ଦ ପାଆନ୍ତି ।"

ଆଲାବାମାର ଗ୍ରାମାଞ୍ଚଳର ଦୃଶ୍ୟ ଆମ ଭାରତର ଗ୍ରାମାଞ୍ଚଳ ପରି ଅନେକଟା । ଚାଷ ବିଲ, ମଝିରେ ମଝିରେ କାଁଭାଁ ଗାଆଁ ଦେଖିବାକୁ ମିଳୁଥାଏ । ରାସ୍ତାରେ ଗାଡିମଟର ଖୁବ୍ କମ୍ ଥିବାରୁ ସାରା ଅଞ୍ଚଳଟା ଆମ ଭାରତର ଗ୍ରାମାଞ୍ଚଳ ପରି ଶାନ୍ତ ନିରୁପଦ୍ରବ

ମନେହେଲା । ଆମେ ହଣ୍ଟସ୍‌ଭିଲ୍‌ରେ ପହଞ୍ଚିଲୁ ପ୍ରାୟ ଗୋଟାଏବେଳେ । ସେତେ ବେଶୀ ବଡ ସହର ପରି ଲାଗିଲାନାହିଁ ହଣ୍ଟସ୍‌ଭିଲ୍ । ଗୋଟିଏ ପ୍ରଧାନ ରାସ୍ତା ଦେଇ ପ୍ରବୀର ଡ୍ରାଇଭ୍ କଲାବେଳେ ରାସ୍ତାକଡରେ ଗୁଡିଏ ଚର୍ଚ୍ଚ ଦେଖିଲି ।

''ହଣ୍ଟସ୍‌ଭିଲ୍ ବ୍ୟାପ୍‌ଟିଷ୍ଟ୍ ଖ୍ରୀଷ୍ଟିୟାନ୍‌ଙ୍କ ଗଡ ବୋଲି ଜାଣନ୍ତୁ ନନା !'' – ପ୍ରବୀର ଗୋଟାଏ ଚର୍ଚ୍ଚ ଆଡକୁ ଚାହିଁ କହିଲେ; କିନ୍ତୁ ଆପଣ ଆଶ୍ଚର୍ଯ୍ୟ ହେବେ– ଜଣେ ଓଡିଆ ଡାକ୍ତର ଡକ୍ଟର୍ ଭାଗବତ ସାହୁ ଏଠି ଗୋଟାଏ ବ୍ୟାପଟିଷ୍ଟ ଚର୍ଚ୍ଚକୁ କିଣିନେଇ ତା' ଉପରେ ଏକ ପ୍ରକାଣ୍ଡ ହିନ୍ଦୁ ମନ୍ଦିର, ମାନେ ଜଗନ୍ନାଥ ମନ୍ଦିର ତିଆରିକରିଚନ୍ତି ଏଇ ହଣ୍ଟସ୍‌ଭିଲ୍‌ରେ ! ହଣ୍ଟସ୍‌ଭିଲ୍‌ରେ ବହୁତ ଓଡିଆ ଅଛନ୍ତି– ଡାକ୍ତର ଇଂଜିନିୟର୍ । ଏଠି ଗୋଟାଏ ବିରାଟ ସ୍ପେସ୍ ରିସର୍ଚ୍ଚ ସେଣ୍ଟର୍ ଅଛି– ଆମେରିକାର ସବା ପ୍ରଥମ ସାଟେଲାଇଟ୍ Explorer-1 ଏଇ ହଣ୍ଟସ୍‌ଭିଲ୍ କ୍ଷେପଣାସ୍ତ୍ର ଘାଟିରୁ ଛଡାଯାଇଥିଲା । ସେଇ ସମୟରୁ ସ୍ପେସ୍ ସେଣ୍ଟର୍‌ରେ କାମ-କରୁଥିବା ଅନେକ ଓଡିଆ ଆଷ୍ଟ୍ରୋଫିଜିସିଷ୍ଟ୍ ସାଇଣ୍ଟିଷ୍ଟ୍ ଇଂଜିନିୟର୍ ଏ ସହରରେ ରହି ଆସୁଚନ୍ତି ।''

## ହଣ୍ଟସ୍‌ଭିଲ୍‌ରେ ବୈଦିକ ଉପନୟନ

ହଣ୍ଟସ୍‌ଭିଲ୍ ସହରର ସିନିୟର୍ ସିଟିଜେନ୍‌ସ୍ ରିକ୍ରିଏସନ୍ ସେଣ୍ଟର୍‌ଠାରେ ପହଞ୍ଚି ଗୋଟାଏ ବଡ କରିଡର୍ ଦେଇ ଆମେ ସିଧା ଚାଲିଲୁ କାନରେ ବାଜୁଥିବା ବୈଦିକ ମନ୍ତ୍ର ଉଚ୍ଚାରଣର ଉତ୍ସକୁ । ସେଠି ପହଞ୍ଚିଲା ପରେ ଦେଖିଲି ଏକ ବେଶ୍‌ବଡ ପେଣ୍ଡାଲ୍ ଉପରେ ଚାଲିଚି ବ୍ରତଘରର କର୍ମ– ହୋମ କୁଣ୍ଡରେ ଅଗ୍ନି ଦାଉଦାଉ ହେଇ ଜଳୁଥାଏ, ଆଉ ସେଥିରେ ମନ୍ତ୍ରୋଚ୍ଚାରଣ ସହିତ ବାରମ୍ବାର ଆହୁତି ଦିଆଚାଲିଥାଏ ।

ଲାଉଡସ୍ପିକର୍ ଯୋଗେ ଯଜ୍ଞର ପ୍ରତ୍ୟେକ କର୍ମାନୁଷ୍ଠାନ ପାଇଁ ବୋଲାଯାଉଥିବା ମନ୍ତ୍ରଗୁଡିକ ପ୍ରସାର ଓ ପ୍ରଚାର କରାଯାଉଥାଏ । ସିନିୟର୍ ସିଟିଜେନ୍ ସେଣ୍ଟରଟା ପ୍ରତିଧ୍ୱନିତ ହେଉଥାଏ ସେଇ ବୈଦିକ ମନ୍ତ୍ରରେ । ପେଣ୍ଡାଲ୍ ଉପରେ ବ୍ରତ ବେଦୀ ଉପରକୁ ଦୃଷ୍ଟି-ପକାଇଲି । ଦେଖିଲି ଜଣେ ଦଶ-ବାରବର୍ଷର ପିଲାକୁ ପିନ୍ଧାଇଦିଆଯାଉଥାଏ ଏକ ଛଣପଟର କୌପୀନ ଆଉ ତା' କାନ୍ଧରେ ପକାଯାଇଥାଏ ବ୍ରହ୍ମଚାରୀର ବଂଶଦଣ୍ଡ । ପିଲାଟିର ଶରୀରରେ ହୋମକୁଣ୍ଡର ଭସ୍ମ ବୋଳାଯାଇଥାଏ, ଆଉ ତା' ଲଲାଟରେ ଚନ୍ଦନର ଚିତା ସହିତ ଦୁଇ-ଭ୍ରୂ ମଧ୍ୟ ବିନ୍ଦୁରେ ଲଗାଯାଇଥିବା କଜ୍ଜ୍ୱଳ ଓ ସିନ୍ଦୂର ଟୀକା ତା' ଡଉଲଡାଉଲ ମୁହଁଟିକୁ ଜଣେ ବାଳ-ବ୍ରହ୍ମଚାରୀ ଭାବେ ଆହୁରି ଅର୍ଥାନ୍ୱିତ କରିତୋଳିଥାଏ ।

ଝିଅ ବୁଲବୁଲ୍ ମୋ କାନରେ କହିଲା, "ନନା ! ଏ ହଉଚି ଡକ୍ଟର୍ ଦେବୀ ମିଶ୍ରଙ୍କ ସାନ ପୁଅ । ଆଉ ଏ ଯୋଉ ପୁରୋହିତଙ୍କୁ ଦେଖୁଚ ସେ କିଏ କହିଲ ? ତାଙ୍କ ନାଁ ଡକ୍ଟର୍ ବିଷ୍ଣୁ ଯୋଶୀ । ଗଲାଥର ତୁମେ ଆମେରିକା ଆସି ଯାଙ୍କୁ ଦେଖିଚ. . .''

ବିଷ୍ଣୁ ଯୋଶୀଙ୍କ ପରିଚୟ ପାଇଥିଲି ଗତଥର ନ୍ୟାସ୍‌ଭିଲ୍ ଜଗନ୍ନାଥ ମନ୍ଦିରରେ ରଥଯାତ୍ରା ସମୟରେ, ମୁଁ ଜଣେ ଅତିଥିଭାବେ ମଞ୍ଚ ଉପରେ ବକ୍ତୃତା ଦେଉଥିବା ସମୟରେ । ସେ ଏକ ଅପ୍ରୀତିକର ସ୍ମୃତି । ବୃତ୍ତିରେ ସେ ଥିଲେ ଜଣେ ଭେଟେରିନାରୀ ସର୍ଜନ । କେତେବର୍ଷ ତଳେ ସେ ଓଡିଶା ୟୁନିର୍ଭସିଟି ଅଫ୍ ଏଗ୍ରିକଲ୍‌ଚର୍‌ରୁ ଭେଟେରିନାରି ଡିଗ୍ରୀ ନେଇ ଆମେରିକା ଆସିଥିଲେ ଉଚ୍ଚତର ଅଧ୍ୟୟନ ପାଇଁ । ପାଠପଢା ପରେ ଆମେରିକାରେ ଚାକିରି ପାଇ ରହିଯାଇଥିଲେ । ସେ ଓ ତାଙ୍କର ପତ୍ନୀ ଶ୍ରୀମତୀ ପ୍ରଭା ଯୋଶୀଙ୍କୁ ମୁଁ ଚିହ୍ନିଥିଲି ଗଲାଥର ଆମେରିକା ଭ୍ରମଣ ସମୟରେ ।

ଉପନୟନ କ୍ରିୟାକର୍ମ ଯଥାବିଧି ଚାଲିଥାଏ । ହଲ୍ ଭିତରେ ଉପସ୍ଥିତ ଲୋକମାନଙ୍କ ଭିତରେ ଚିହ୍ନାମୁହଁ ଖୋଜିବା ଲକ୍ଷ୍ୟରେ ମୁଁ ଚାରିଆଡକୁ ଆଖି ବୁଲେଇଲି । ଶତାଧିକ ଅତିଥିଙ୍କ ଭିତରୁ ମୁଁ କେତେଜଣଙ୍କୁ ଚିହ୍ନିପାରିଲି । ସେମାନଙ୍କୁ ପୂର୍ବଥର ଆମେରିକା ଭ୍ରମଣ ସମୟରେ ନ୍ୟାସ୍‌ଭିଲ ରଥଯାତ୍ରାରେ ଓ ପରେ ସେବର୍ଷ (୧୯୯୩) ଓସା ମିଟିଂରେ ଭେଟିଥିଲି । କେତେଜଣ ମଧ୍ୟ ଥିଲେ ମୋର ପୂର୍ବତନ ଛାତ୍ରଛାତ୍ରୀ ।

ଉପନୟନ କର୍ମ ଶେଷରେ ନବବ୍ରହ୍ମଚାରୀଙ୍କୁ ଦୀକ୍ଷାନ୍ତ ପରେ ଆଶୀର୍ବାଦ ଓ ଭିକ୍ଷା-ଅର୍ପଣ ପାଇଁ ଆହ୍ୱାନ ଆସିଲା । ଆମେ ସମସ୍ତେ ଜଣଜଣ କରି ବ୍ରହ୍ମଚାରୀଙ୍କୁ ଯଥାବିଧି ଆଶୀର୍ବାଦ ଦେଲୁ ଏବଂ ଭିକ୍ଷାର୍ପଣ ପରେ ଭୋଜିରେ ଯୋଗଦେବା ପାଇଁ ଏକତ୍ରିତ ହେଲୁ । ଭୋଜି ସଭାରେ ସମବେତ ଅତିଥିମାନଙ୍କ ଭିତରେ ଯେଉଁ କେତେଜଣଙ୍କ ସହିତ ମୋର ଆଳାପ ଆଲୋଚନା ହୋଇଥିଲା ସେମାନେ ଥିଲେ ସ୍ଥାନୀୟ ପ୍ରବାସୀ ଓଡିଆ । ସେମାନଙ୍କ ଭିତରୁ କେତେଜଣଙ୍କ ନାମ ଏଠି ଉଲ୍ଲେଖ କରୁଚି–

ଡକ୍ଟର ଦେବୀ ପ୍ରସାଦ ମିଶ୍ର ଓ ଶ୍ରୀମତୀ ସରୋଜିନୀ ମିଶ୍ର । ହଣ୍ଟସ୍‌ଭିଲ୍‌ର ଜଣେ ସୁଖ୍ୟାତ ଡାକ୍ତର ଓ ସର୍ଜନ ଭାବେ ଦେବୀବାବୁଙ୍କ ପ୍ରତିଷ୍ଠା ବହୁବର୍ଷର । ତାଙ୍କରି ପ୍ରଚେଷ୍ଟାରେ ଏ ସହରକୁ ସମୟକ୍ରମେ ଆସିଚନ୍ତି ଆହୁରି କେତେଜଣ ଓଡିଆ ଯୁବ ଡାକ୍ତର ଓ ଇଂଜିନିୟର୍ ବୋଲି ଜାଣିବାକୁ ପାଇଲି । ଡକ୍ଟର୍ ଅନୁପ ଶତପଥୀ ଓ ତାଙ୍କ ପତ୍ନୀ ମାମି । ଏମାନେ ଆମ ବନ୍ଧୁବାନ୍ଧବ । ଡକ୍ଟର ଲଳିତ ପଟ୍ଟନାୟକ ଓ ପତ୍ନୀ ଅସୀମା । ଲଳିତବାବୁ ଜଣେ ଷ୍ଟାଟିଟିକ୍ସ୍ ପ୍ରଫେସର୍– ସେ ଏଇ ହଣ୍ଟସ୍‌ଭିଲ୍‌ରେ କାମ କରନ୍ତି । ମାମୀ, ମୋ ମଝିଆ ଝିଅ ନିବେଦିତାର ସ୍କୁଲ୍ ସାଙ୍ଗ । ବର୍ତ୍ତମାନ ମାମି ଜଣେ ବାୟୋକେମିଷ୍ଟ ଭାବେ ଏଠାରେ କାର୍ଯ୍ୟରତ । ଡକ୍ଟର ଅମୀୟ ପଟ୍ଟନାୟକ ଓ ପତ୍ନୀ ସରଳା (ସର) । ସେମାନଙ୍କ ସହିତ ଆମର ପୂର୍ବ ପରିଚୟ– କଟକରେ । ସର କଟକ ଛତ୍ରବଜାରରେ ମୋ ଶ୍ୱଶୁର ସ୍ୱର୍ଗତ ନନ୍ଦକିଶୋର ରଥଙ୍କ ଘର ସାମ୍ନାରେ ରହୁଥିବା ଡଃ ବସନ୍ତ କୁମାର ଦାସଙ୍କ ପରିବାରର ଜଣେ । ବସନ୍ତବାବୁ ପ୍ରସିଦ୍ଧ ଲେଖକ ଚିତ୍ତରଂଜନ ଦାସ (ଚିତ୍ତଭାଇ)ଙ୍କ ସାନଭାଇ ଓ ଭୁବନେଶ୍ୱର ବକ୍ସି ଜଗବନ୍ଧୁ କଲେଜର ମନସ୍ତତ୍ତ୍ୱ ବିଭାଗର ରିଡର୍ ଭାବେ

ମୋର ଘନିଷ୍ଠ ବନ୍ଧୁ ଥିଲେ । ଡକ୍ଟର୍ ପଞ୍ଚାନନ ଶତପଥୀ ଓ ଶ୍ରୀମତୀ ଶଶିକଳା ଶତପଥୀ । ପଞ୍ଚାନନବାବୁ ନ୍ୟାସଭିଲ୍‌ରେ ଡାକ୍ତରି ପ୍ରାକ୍ଟିସ୍ କରନ୍ତି । ସେ ମଧ୍ୟ ଦେବୀବାବୁଙ୍କ ପରି ଜଣେ ସ୍ୱନାମଧନ୍ୟ ସର୍ଜନ– ବିଶେଷତଃ କିଡନୀ ପ୍ରତିରୋପଣ ସର୍ଜରୀରେ ସେ ଜଣେ ସିଦ୍ଧହସ୍ତ ସର୍ଜନ ଭାବେ ସୁପରିଚିତ । ଉଭୟ ଡଃ ଦେବୀ ମିଶ୍ର ଓ ଡଃ ପଞ୍ଚାନନ ଶତପଥୀ ହେଲେ ଦୁଇ ସଢୁ । ଡକ୍ଟର ଭାଗବତ ସାହୁ ଓ ପତ୍ନୀ ପୁଷ୍ପଲତା । ଭାଗବତବାବୁ ହଣ୍ଟସ୍‌ଭିଲ୍‌ରେ ଜଣେ ଖୁବ୍ ସୁପରିଚିତ ଡାକ୍ତର । କିନ୍ତୁ ଆମେରିକାର ପ୍ରବାସୀ ଓଡିଆମାନଙ୍କ ଭିତରେ ତାଙ୍କର ସ୍ୱତନ୍ତ୍ର ପରିଚୟ ଅଛି– ଜଗନ୍ନାଥ ସଂସ୍କୃତିର ପ୍ରଚାର ପ୍ରସାର ପାଇଁ ତାଙ୍କର ପ୍ରଶଂସନୀୟ ଉଦ୍ୟମ ଓ ଅବଦାନ ଲାଗି । ଆମେରିକାର ଘୋର ରକ୍ଷଣଶୀଳ ବ୍ୟାପ୍ଟିଷ୍ଟ୍ ଖ୍ରୀଷ୍ଟୟାନ୍‌ମାନଙ୍କ ହୃତ୍‌ପିଣ୍ଡ ଏଇ ଦାକ୍ଷିଣାତ୍ୟ ପ୍ରଦେଶ ଆଲବାମାର ପ୍ରଧାନ ସହର ହଣ୍ଟସ୍-ଭିଲ୍‌ରେ ହିନ୍ଦୁ ଧର୍ମ ଓ ଦର୍ଶନର ମୂଳ ମନ୍ତ୍ର ସର୍ବଧର୍ମ ସମନ୍ୱୟର ପ୍ରତୀକ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସମର୍ପିତ ଏକ ବିଶାଳ ମନ୍ଦିର ନିର୍ମାଣ ଲାଗି ତାଙ୍କର ବିଶେଷ ଅବଦାନ ଯୋଗୁ ତାଙ୍କୁ ମୁଁ ମୋର ପୂର୍ବଥର ଆମେରିକା ଭ୍ରମଣ ସମୟରୁ ଚିହ୍ନିଥିଲି । (ତାଙ୍କ ସଂପର୍କରେ ଓ ହଣ୍ଟସ୍‌ଭିଲ୍‌ରେ ନିର୍ମିତ ସର୍ବଧର୍ମ ସମନ୍ୱୟ ମନ୍ଦିର ସଂପର୍କରେ ଅଧିକ ସୂଚନା ୨୦୦୬ ବର୍ଷର ଆମେରିକା ଭ୍ରମଣ ଅଧ୍ୟାୟରେ ଉଲ୍ଲେଖ କରାଯାଇଛି) । ଡକ୍ଟର ରାଧାକାନ୍ତ ମିଶ୍ର ଓ ଶ୍ରୀମତୀ ଡକ୍ଟର ଗୀତା ମିଶ୍ର । ରାଧାକାନ୍ତ ଓ ଗୀତାଙ୍କ ସହିତ ମୋର ପୂର୍ବ ପରିଚୟ– ଗତଥର ଆମେରିକା ଭ୍ରମଣ ସମୟରୁ । ରାଧାକାନ୍ତ ବାବୁ ଜଣେ ଭେଟେରିନାରି ଡାକ୍ତର– ଓଡିଶାର ଓ.ୟୁ.ଏଟି ବିଶ୍ୱବିଦ୍ୟାଳୟର ପୂର୍ବତନ ଛାତ୍ର । କେତେବର୍ଷ ତଳେ ସେ ଆମେରିକା ଆସିଥିଲେ ପଶୁଚିକିତ୍ସା ବିଦ୍ୟାରେ ଉଚ୍ଚତର ଶିକ୍ଷାଲାଭ ପାଇଁ । ଶିକ୍ଷାଲାଭ ପରେ ସେ ଆମେରିକାରେ ଜଣେ ଏନ୍‌ଆର୍‌ଆଇ ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି ସ୍ୱାଧୀନ ବ୍ୟବସାୟ ମାଧ୍ୟମରେ । ତାଙ୍କର ଅନ୍ୟତମ ପରିଚୟ ହେଲା ସେ ଓଡିଶାର ବିଶିଷ୍ଟ ଶିକ୍ଷାବିତ୍, ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ କଲିକତା ବିଶ୍ୱବିଦ୍ୟାଳୟର ଓଡିଆଭାଷା ସାହିତ୍ୟ ବିଭାଗର ପ୍ରାକ୍ତନ ପ୍ରଫେସର୍ ପଣ୍ଡିତ ବିନାୟକ ମିଶ୍ରଙ୍କ ପୁତୁରା । ସେହିପରି ତାଙ୍କର ପତ୍ନୀ ଡକ୍ଟର ଗୀତା ମିଶ୍ର ମୟୂରଭଂଜ ବାରିପଦାର ଏକ ସଂଭ୍ରାନ୍ତ ପରିବାରର କନ୍ୟା । ସେ ବର୍ତ୍ତମାନ ଆମେରିକାରେ ନାଗରିକତ୍ୱ ପ୍ରାପ୍ତ ଜଣେ ବିଶିଷ୍ଟ ଡାକ୍ତର । ଡକ୍ଟର ଦିଗମ୍ବର ମିଶ୍ର– ଆଲାବାମା ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ପ୍ରଫେସର୍ ଡକ୍ଟର ମିଶ୍ର ଜଣେ ଅତ୍ୟନ୍ତ ଓଡିଆ ପ୍ରେମୀ ଶିକ୍ଷାବିତ୍ ପ୍ରବାସୀ ଓଡିଆ । ଆମେରିକାରେ ପ୍ରବାସୀ ଓଡିଆମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ସେ ଅତ୍ୟନ୍ତ ସଚେତନ ଭାବେ "ଓଡିଶା ସୋସାଇଟି ଅଫ୍ ଆମେରିକା (ଓସା)" ପରି ବିଭିନ୍ନ ସାମାଜିକ ସାଙ୍ଗଠନିକ ଅନୁଷ୍ଠାନ ଗଢିବାରେ ନେତୃତ୍ୱ ନେଇଆସିଛନ୍ତି । ତାଙ୍କ ସଂପର୍କରେ ଏଇ ବହିରେ ମୁଁ ଅନେକ ଅଧ୍ୟାୟରେ ଉଲ୍ଲେଖ କରିଛି । ଡକ୍ଟର୍ ଗୋପାଳ ପରିଜା ଓ ପତ୍ନୀ ଅନ୍ନପୂର୍ଣ୍ଣା (ସଶୀନା)– ଗୋପାଳବାବୁ ଓ ତାଙ୍କ ପତ୍ନୀଙ୍କୁ ଗତଥର

ମୁଁ ନ୍ୟାସ୍‌ଭିଲ୍‌ରେ ଭେଟିଥିଲି ସେ ବର୍ଷର ରଥଯାତ୍ରା ଉତ୍ସବରେ । ସେ କଟକ ଏସ୍.ସି.ବି ମେଡିକାଲ କଲେଜର ଜଣେ ଟପର୍ ମେଡିକାଲ୍ ଗ୍ରାଜୁଏଟ୍, ତାଙ୍କ ବ୍ୟାଚ୍‌ର । ତାଙ୍କ ଜନ୍ମସ୍ଥାନ ଜଗତସିଂହପୁର, ବାଲିକୁଦା ଓ ସେ ଓଡିଶାର ଅନ୍ୟତମ ପ୍ରସିଦ୍ଧ ବ୍ୟକ୍ତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ପରିବାରର ବୋଲି ଜାଣି ମୋର ତାଙ୍କ ପ୍ରତି ଆକର୍ଷଣ ପୂର୍ବଥର ଆମେରିକା ଭ୍ରମଣ ସମୟରେହିଁ ଜାତହୋଇଥଲା । କେତେବର୍ଷ ତଳେ ସେ ଡାକ୍ତରି ପାଠରେ ଉଚ୍ଚଶିକ୍ଷା ପାଇଁ ଆମେରିକା ଆସିଥିଲେ ଏବଂ ବର୍ତ୍ତମାନ ଏନ୍ ଆର୍ ଆଇ ଭାବେ ଏଠାରେ ସୁପ୍ରତିଷ୍ଠିତ । ଉଭୟ ପତିପତ୍ନୀ ସ୍ଥାନୀୟ ପ୍ରବାସୀ ଓଡିଆଙ୍କୁ ସାହାଯ୍ୟ ସହଯୋଗ ପାଇଁ ଅତ୍ୟନ୍ତ ଲୋକପ୍ରିୟତା ଅର୍ଜନ କରିଛନ୍ତି । ନ୍ୟାସ୍‌ଭିଲର ହିନ୍ଦୁ ମନ୍ଦିର ସଂଗଠନ ଏବଂ ବିଶେଷକରି ସେ ମନ୍ଦିରରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତିଷ୍ଠା ଏବଂ ବାର୍ଷିକ ରଥଯାତ୍ରା ବିଧି ପ୍ରଚଳନ ଲାଗି ଯେଉଁ କେତଜଣ ପ୍ରବାସୀ ଓଡିଆ ପ୍ରାଥମିକ ଉଦ୍ୟମ କରିଆସିଛନ୍ତି ସେମାନଙ୍କ ଭିତରେ ଏଇ ପରିଜା ଦମ୍ପତିଙ୍କ ଅବଦାନ ଯଥାର୍ଥରେ ପ୍ରଶଂସନୀୟ । ଏମାନଙ୍କ ବ୍ୟତୀତ ହଣ୍ଟସ୍‌ଭିଲ୍‌ରେ ସେଦିନ ଆହୁରି ମଧ କେତେଜଣ ପ୍ରବାସୀ ଓଡିଆଙ୍କୁ ଭେଟିବାର ସୌଭାଗ୍ୟ ମୁଁ ଲାଭ କରିଥିଲି । ସେମାନେ ହେଲେ– ଡକ୍ଟର ମୃତ୍ୟୁଞ୍ଜୟ ପାଣି, ଡକ୍ଟର ସତ୍ୟ ହୋତା ଓ ପତ୍ନୀ ସଂଜୁ ଏବଂ ଶ୍ରୀ ମହେନ୍ଦ୍ର ମିଶ୍ର ଓ ତାଙ୍କ ପତ୍ନୀ କବିତା ।

## ପ୍ରିନ୍‌ସେସ୍ ଡାଏନାଙ୍କ ଅପମୃତ୍ୟୁ ସମ୍ବାଦ –

ଆମେ ସେଦିନ ସନ୍ଧ୍ୟାରେ ହଣ୍ଟସ୍‌ଭିଲ୍‌ରୁ ଫ୍ରାଙ୍କ୍‌ଲିନ୍ ଫେରିଆସିଲୁ ସନ୍ଧ୍ୟା ସାତରେ । ରାତି ନ'ରେ ବୁଲବୁଲ ଟିଭି ଖୋଲିଲା । ସି.ଏନ୍.ଏନ୍ ସମ୍ବାଦରୁ କ'ଣ ଶୁଣିଲା ହାଉଳି ଖାଇ କାନ୍ଦିବାକୁ ଲାଗିଲା । ଆମେ ଦଉଡି ଆସିଲୁ । ସେତେବେଳେ ଟିଭିରେ ସେଇ ମର୍ମନ୍ତୁଦ ଦୃଶ୍ୟର ବିବରଣୀ ସବୁ ଦର୍ଶାଯାଉଥାଏ । ଦୁଃସମ୍ବାଦଟା ଥିଲା– ରାସ୍ତା ଦୁର୍ଘଟଣାରେ ବ୍ରିଟିଶ୍ ରାଜବଂଶର ଭାବୀ ଦାବିଦାର ଯୁବରାଣୀ (ପ୍ରିନ୍‌ସେସ୍) ଡାଏନାଙ୍କ ଶୋଚନୀୟ ମୃତ୍ୟୁର ବିବରଣୀ । ସେଦିନ ସେ ତାଙ୍କର ବହୁଚର୍ଚ୍ଚିତ ଇଜିପ୍‌ସିଆନ୍ ବିଲିୟନାର୍ ବୟଫ୍ରେଣ୍ଡ "ଡୋଡି ଏଲ୍‌ଫାଏଡ୍"ଙ୍କ ସହିତ ଏକ ଦ୍ରୁତଗାମୀ କାର୍‌ରେ ଲଣ୍ଡନରୁ ପ୍ୟାରିସ୍ ଯିବା ରାସ୍ତାରେ ସେମାନଙ୍କ ଗୁପ୍ତ ପ୍ରେମ ଉପରେ ବହୁ ଦିନୁ ନଜର ରଖିଥିବା ଦଳେ ସାମ୍ବାଦିକ ଫଟୋଗ୍ରାଫର୍ ବା "ପାପାରାଜି" ଦଳର ହାବୁଡରେ ପଡିଗଲେ । ଡାଏନାଙ୍କ କାର୍ ଡ୍ରାଇଭର୍ ପାପାରାଜିଙ୍କ ନଜର ଏଡାଇବାକୁ ଯାଇ ଅତିଶୟ ଦୃତବେଗରେ କାର୍ ଚଳାଇଲେ । ଡାଏନାଙ୍କ କାର୍ ବ୍ରିଟେନ୍‌ର ସୀମା ଟପି ପଡୋଶୀ ରାଜ୍ୟ ଫ୍ରାନ୍ସ ସୀମା ଭିତରକୁ ପ୍ରବେଶକରି ସୈନ ନଦୀର (River Seine) ଭୂତଳ ସୁଡଙ୍ଗ ଭିତରେ ଛୁଟି ଯାଉଥିବା ସମୟରେ ଡାଏନାଙ୍କ କାର୍‌ର ଡ୍ରାଇଭର୍ ଗତି ନିୟନ୍ତ୍ରଣ କରିନପାରିବା ହେତୁ ଦୁର୍ଘଟଣାର ସମ୍ମୁଖୀନ ହେଲା । ଦୁର୍ଘଟଣାରେ ପ୍ରିନ୍‌ସେସ୍ ଡାଏନାଙ୍କ ସମେତ ଡୋଡି ଓ ଡ୍ରାଇଭର୍ ପ୍ରାଣ ହରାଇଥିଲେ ।

ଏଇ ଦୁଃସମ୍ବାଦ ସମଗ୍ର ବିଶ୍ୱରେ, ବିଶେଷକରି ପାଶ୍ଚାତ୍ୟ ଜଗତରେ, ଏକ ନାହିଁନଥିବା ଚାଞ୍ଚଲ୍ୟ ଖେଳାଇ ଦେଇଥାଏ । ଘଟନାକୁ ନେଇ ଗଣମାଧ୍ୟମରେ ଘମାଘୋଟ ଆଲୋଚନାମାନ ଆରମ୍ଭ ହୋଇଯାଇଥାଏ । ସେ ଆଲୋଚନା ଦିନ ପରେ ଦିନ ବହୁଦିନ ଧରି ଚାଲିଥିଲା ଆମେ ଆମେରିକାରେ ଥିଲାବେଳେ । ସେତେବେଳେ ମୁଁ ଲକ୍ଷ୍ୟ କରିଥିଲି ଗଣମାଧ୍ୟମରେ ପ୍ରିନ୍‌ସେସ୍ ଡାଏନାଙ୍କ ଅବୈଧ ପ୍ରେମ ଜୀବନକୁ ସମର୍ଥନ ଜଣାଇ ବହୁ ବିଶିଷ୍ଟ ବୁଦ୍ଧିଜୀବୀ ବ୍ରିଟିଶ୍ ରାଜପରିବାରକୁ ଦାୟୀ କରୁଥାନ୍ତି । କୁହାଯାଉଥାଏ ନିଜର ପାରିବାରିକ ତଥା ରାଜକୀୟ ମର୍ଯ୍ୟାଦାବୋଧର ସୁରକ୍ଷା ପାଇଁ ବକିଂହାମ୍ ପ୍ୟାଲେସ୍‌ରେହିଁ ସେ ଷଡଯନ୍ତ୍ରର ଚକ୍ରାନ୍ତ ରଚନା କରାଯାଇଥିଲା । କିନ୍ତୁ ଖୁବ୍ କମ୍ ବୁଦ୍ଧିଜୀବୀ ସେଇ ଦୁର୍ଭାଗ୍ୟପୂର୍ଣ୍ଣ ପରିଣତି ପାଇଁ ରାଜ-ପରିବାର ପରିବର୍ତ୍ତେ ସୁନ୍ଦରୀ ପୁତ୍ରବଧୂ ଡାଏନାଙ୍କୁ ହିଁ ଦାୟୀ କରୁଥାନ୍ତି ତାଙ୍କର ଗର୍ହିତ ଅନୈତିକ ଆଚରଣ ପାଇଁ । ମୁଁ ନିଜେ ମଧ୍ୟ ଶେଷୋକ୍ତ ମତ ସହିତ ଏକମତ ହୋଇଥିଲି । ଯେଉଁ ଆଧୁନିକ ପାଶ୍ଚାତ୍ୟ ସମାଜରେ ବିବାହ ଅନୁଷ୍ଠାନକୁ ଗୌଣ ମନେକରାଯାଏ ଓ କୁହାଯାଏ–"Marriage is Legal Prostitution" ସେ ସମାଜରେ ଏପରି ଦୁର୍ଘଟଣା ଘଟିବା ଅବଶ୍ୟମ୍ଭାବୀ ନୁହେଁ କି ?

## ମଦର ଥେରେସାଙ୍କ ମହାପ୍ରୟାଣ–

– ୫ ସେପ୍ଟେମ୍ବର, ୧୯୯୭, ଫ୍ରାଙ୍କଲିନ୍ ।

ଆଜି ଆହୁରି ଏକ ଦୁଃସମ୍ବାଦ ପାଇ ଆମେ ସମସ୍ତେ ମର୍ମାହତ ହୋଇପଡିଲୁ । ସେ ଦୁଃସମ୍ବାଦଟା ଟିଭିରେ କୁଆଡେ ଗଲା କାଲିଠୁ ପ୍ରସାର କରାଯାଇଥାଏ; କିନ୍ତୁ ଗଣ-ମାଧ୍ୟମରେ ବର୍ତ୍ତମାନର ମୁଖ୍ୟ ପ୍ରସଙ୍ଗ ପ୍ରିନ୍‌ସେସ୍ ଡାଏନାଙ୍କୁ ନେଇ ଚାଲିଥିବା ହାଉହାଉ ଭିତରେ ମଦର ଥେରେସାଙ୍କ ମୃତ୍ୟୁ ଖବରଟା କୁଆଡେ ନାଇ କୁଆଡେ ହଜି ଯାଇ ସାରିଥାଏ । ସକାଳେ ପ୍ରବୀର ଖବରଟା ଦେଲେ– ଗଲା ରାତିରେ ଲୁଇସ୍‌ବର୍ଗରେ ଷ୍ଟୋର୍ ବନ୍ଦକରି ସେ କାର୍‌ରେ ଫ୍ରାଙ୍କଲିନ୍ ଫେରୁଥିବା ବେଳେ ରାସ୍ତାରେ କାର୍ ରେଡିଓ ଅନ୍ କରି ଶୁଣିଥିଲେ ପ୍ରିନ୍‌ସେସ୍ ଡାଏନାଙ୍କ ସଂପର୍କରେ ଏକ ଘମାଘୋଟ ଆଲୋଚନା । ହଠାତ୍ ତାଙ୍କ କାନରେ ପଡିଲା– ଜଣେ ଆଲୋଚକଙ୍କ ମନ୍ତବ୍ୟ, "Suppose just now Mother Theresa lying ill in Calcutta would breathe her last. Do you think there would be any space left for the Mother in this Diana-crazy mass media of today ? People are always keen to hear of harlots than of saints."

ସତକୁ ସତ ଠିକ୍ ସେଇ ମୁହୂର୍ତ୍ତରେଇ ଖବର ଆସିଲା କଲିକତାରେ ମଦର ଥେରସାଙ୍କ ମୃତ୍ୟୁର । ଟିଭିରେ ସେ ସଂବାଦଟା ମୁହୂର୍ତ୍ତକ ପାଇଁ ଫ୍ଲାସ୍ ହେବା ପରେ ପରେ ପୁଣି ଆରମ୍ଭ ହେଇଗଲା ସେଇ ଗରମାଗରମ ଡାଏନା-ଡୋଡି ରୋମାନ୍ସ ଗସିପ୍ !

## ବାସୁକିଙ୍କ ରାଜଧାନୀ ମାମଥ୍ କେଭ୍ ଭିତରେ ଅଢେଇଘଣ୍ଟା

– ତା ୧୪ ସେପ୍ଟେମ୍ବର, ୧୯୯୭, ରବିବାର ।

"ନନା ! ଆଜି ଆମେ ଯିବା ଗୋଟାଏ ଅଦ୍ଭୁତ ଜାଗାକୁ– ବହୁଦିନୁ ଭାବିଥିଲି ତୁମକୁ ଓ ମମିକୁ ନେଇ ସେଠିକି ଯିବାକୁ । କିନ୍ତୁ ଲୁଇସ୍‌ବର୍ଗରେ ବିଜିନେସ୍ କାମ ଭିତରେ ସମୟ କରିବା କଷ୍ଟକର । ଚାଲ ବାହାର– ଯିବା ଆଜି ସମସ୍ତେ ମାମଥ୍ କେଭ୍ ଦେଖିବାକୁ ।'' –ଝିଅ ବୁଲବୁଲର ପ୍ରସ୍ତାବ ଶୁଣି ଆମେ ସମସ୍ତେ ତରବର ହେଇ ପ୍ରସ୍ତୁତ ହେଇଗଲୁ ଆଜି ରବିବାରଟାକୁ ଗୋଟାଏ ବୁଲାବୁଲି କାମରେ ଲଗେଇଦବାକୁ; କିନ୍ତୁ ମୁଁ କଦାପି ଭାବି ପାରି-ନଥିଲି ଯେ ଆଜି ଦିନଟା ମୋ ପାଇଁ ଗୋଟାଏ ଚିରସ୍ମରଣୀୟ ଦିନ ହୋଇ ରହିଯିବ ବୋଲି ।

ସକାଳ ନ'ରେ ଆମ କାର୍‌ରେ ଫ୍ରାଙ୍କ୍‌ଲିନ୍‌ରୁ ବାହାରିଲୁ– ବୁଲବୁଲ ପ୍ରବୀର ପ୍ରତୀକ ନିରୁପମା ଓ ମୁଁ । ସେପ୍ଟେମ୍ବର ମାସ ଏଠି ଆମେରିକାର ଦକ୍ଷିଣର ଟେନୀସୀ ରାଜ୍ୟରେ ଲାଗେ ଆମ ଭାରତର ଭୋଦୁଅ ମାସ ପରି ଅନେକଟା । ସେମିତି ଉଜ୍ଜ୍ୱଳ ସୂର୍ଯ୍ୟ ଆଉ ଖରାର ପିନ୍‌ପିନିଆ ତାତି ସାଙ୍ଗକୁ ପବନର ଶୀତୁଳିଆ ଭାବ । ଆମେ ଡ୍ରାଇଭ୍ କରୁଥାଉ ହାଇୱେ ଇଣ୍ଟରଷ୍ଟେଟ୍– ୬୫ (IS-65)ରେ ଟେନୀସୀ ରାଜ୍ୟର ଉତ୍ତର ସୀମା ଆଡକୁ । ନ୍ୟାସ୍‌ଭିଲ୍‌ରୁ ୮୫ ମାଇଲ୍ ଉତ୍ତରରେ କେଣ୍ଟକୀ ରାଜ୍ୟ ସୀମାଠାରୁ ମାତ୍ର ୯ ମାଇଲ୍ ଉତ୍ତରକୁ ମ୍ୟାପ୍‌ରେ ଦେଖାଉଥାଏ ସେଇ ଅଦ୍ଭୁତ ସ୍ଥାନ ଯାହାର ନାମ ମାମଥ୍ କେଭ୍ (Mammoth Caves) ।

ଦୁଇଘଣ୍ଟା କ୍ରମାଗତ ଡ୍ରାଇଭ୍ ପ୍ରରେ ହାଇୱେ କଡର ରୋଡ୍‌ସାଇନ୍‌ରେ ଦେଖାଗଲା– ମାମଥ୍ କେଭ୍ ପାର୍କ ଏରିଆକୁ ରାସ୍ତା (ଏକ୍‌ଜିଟ୍) । ଆମେ ହାଇୱେରୁ ବାଟ କାଟିଲୁ ପାର୍କଦିଗରେ ଯାଇଥିବା ରାସ୍ତାରେ । ଖୁବ୍ ଶୀଘ୍ର ପ୍ରବେଶ କଲୁ ଏକ ନିସ୍ତବ୍ଧ ଅରଣ୍ୟରେ ଯାହାକୁ ମ୍ୟାପ୍‌ରେ ଦର୍ଶାଯାଇଥାଏ– ''ମାମଥ୍ ପାର୍କ'' ନାଁରେ । ପାର୍କ କହିଲେ ଆମେ ଭାରତରେ ବୁଝୁ ଗୋଟାଏ ବଡ ଉଦ୍ୟାନ ବା ବଗିଚା– ଖୁବ୍ ବେଶୀ ଦଶପନ୍ଦର ଏକରର ଗଛବୃଛ ଭରା ଅରାଏ ଜାଗା । କିନ୍ତୁ ଏଠି ଏକ ମହାରଣ୍ୟକୁ ଯେ ନାମିତ କରାଯାଇଚି ମାମଥ୍ ପାର୍କ ? ଏଇ ସନ୍ଦେହରେ ମୁଁ ଆମ ଦଳର ଗାଇଡ୍ ପ୍ରବୀରଙ୍କୁ ପଚାରିଲି, ''ଏ କ'ଣ ? ଏଇଟା ତ ଦିଶୁଚି ଦଣ୍ଡକାରଣ୍ୟ ପରି– ଏ ଦିଗନ୍ତବିସ୍ତାରୀ ବିଶାଳ ବ୍ୟାପକ ଅରଣ୍ୟ ଭିତରେ ମାମଥ୍ ପାର୍କଟା କୋଉଠି କାହିଁ ?''

ଏତିକି କହୁକହୁ ହଠାତ୍ ଆମ ସାମ୍ନାରେ ଦଳେ ହରିଣ ରାସ୍ତା ପାରିହେଉଥିବା ଦୃଶ୍ୟ ଦେଖିଲୁ । ଦଳଟାଯାକ ଚାଲିଥାନ୍ତି ନିର୍ଭୟରେ, ସତେକି କୋଉ ଋଷି ଆଶ୍ରମର ପାଳିତ କୁରଙ୍ଗ ଯୂଥ ! ପ୍ରବୀର କାର୍‌ର ଗତି ଧୀମେଇଦେଲେ । ରାସ୍ତାକଡରେ ଟିକିଏ ପୂର୍ବରୁ

ଗୋଟାଏ ନୋଟିସ୍ ବୋର୍ଡ ଅବଶ୍ୟ ମରାଯାଇଥିବା ପଡିଥିଲା ନଜରରେ ଆମର । ସେଥିରେ ଲେଖାଥିଲା– "ସାବଧାନ୍ ! ଏଇଟା ହରିଣମାନଙ୍କର ରାସ୍ତା ପାରି ହେବା ଜାଗା । ଗାଡି ଧୀରେ ଚଳାନ୍ତୁ । ବଣ୍ୟଜନ୍ତୁମାନଙ୍କ ପ୍ରତି ବିପଦ ସୃଷ୍ଟି କରିବା ଦଣ୍ଡନୀୟ ଅପରାଧ ।"

ଆମେରିକାର ଅଧିକାଂଶ ଅଞ୍ଚଳରେ ହରିଣମାନେ ଅବାଧରେ ରାସ୍ତାଘାଟରେ ବୁଲିବା ଦୃଶ୍ୟ ମୋ' ପାଇଁ ନୂଆ ନଥିଲା । କିନ୍ତୁ ମୁଁ ଚିନ୍ତାକରୁଥିଲି– ହାୟ ! ଏ ଯଦି ଆମ ଭାରତ ହୋଇଥାନ୍ତା ଏ ନିରୀହ ପ୍ରାଣୀଗୁଡ଼ିକଙ୍କର ଜୀବନ କ'ଣ ଏଭଳି ନିରାପଦ ଥା'ନ୍ତା ?

ହରିଣମାନେ ରାସ୍ତା ପାରି ହେଇ ଯିବା ପରେ ପ୍ରବୀର କାର୍‌ର ବେଗ ସାମାନ୍ୟ ବଢେଇଲେ । ପରେ ପରେ ଏକ ନିସ୍ତବ୍ଧ ନିଘଞ୍ଚ ଶ୍ୟାମଳିମାର ସମୁଦ୍ର ଭିତରେ ଆମେ ପ୍ରବେଶ କଲୁ । ଆମ ଚାରିପାଖେ ଦିଗ୍‌ବଳୟ ବିସ୍ତାରୀ ନୀଳବର୍ଣ୍ଣର କୁହୁଡ଼ିର ଆସ୍ତରଣ । କୁହୁଡି ଭିତରେ ଅସ୍ପଷ୍ଟ ଦିଶୁଥାଏ ଦିଗ୍‌ବଳୟରେ ସାରି ସାରି ପର୍ବତମାଳାର ଆଭାସ ଚିତ୍ର ।

ପ୍ରବୀର କାର୍ ଅଟକେଇଲେ ରାସ୍ତାକଡର ଏକ ସାଇନ୍‌ବୋର୍ଡ ନିକଟରେ । ସେଥିରେ ଯାହା ଲେଖାଯାଇଥିଲା ପଢିଲା ପରେ ପ୍ରବୀର କହିଲେ, "ଦେଖୁଚନ୍ତି ନନା କ'ଣ ଲେଖା-ହେଇଚି ଏଠି ! ଏ ଯୋଉ ସୁନ୍ଦର ନୀଳବର୍ଣ୍ଣର କୁହୁଡି ଦେଖି ଆମେ ଏଯାକେ ଏତେ ଖୁସିହଉଥିଲେ ସେଗୁଡାକ କୁହୁଡି ନୁହେଁ– ଧୂଆଁ– ଅର୍ଥାତ୍ ପ୍ରଦୂଷଣ ! ଲେଖାଯାଇଚି– ଏଗୁଡାକ ଆମେରିକାର ଇଣ୍ଡଷ୍ଟ୍ରିଗୁଡାକରୁ ବାହାରୁଥିବା ଧୂଆଁରୁ ଝରୁଥିବା ଏସିଡ୍ ମେଘର ପଟଳ ମାତ୍ର ! ଏଇଥିରୁ ଝରେ ଏସିଡ୍ ବର୍ଷା ଯାହା ଚାଷଜମିକୁ ନଷ୍ଟକରିଦିଏ । ଏସିଡ୍ ବର୍ଷାର ମାତ୍ରା ଆମେରିକାରେ ବର୍ଷ ପରେ ବର୍ଷ ବଢିବଢି ଚାଲିଚି । ସେ ସଂପର୍କରେ ଜନସାଧାରଣଙ୍କୁ ସଚେତ କରାଯିବା ପାଇଁ ପାର୍କର ଭ୍ରମଣକାରୀଙ୍କ ଉଦ୍ଦେଶ୍ୟରେ ଏଇ ଶିକ୍ଷଣୀୟ ବାର୍ତ୍ତାଟି ଆମେରିକାର ଟୁରିଜମ୍ ଡିପାର୍ଟମେଣ୍ଟ୍ ପକ୍ଷରୁ ଏଠି ଦିଆଯାଇଚି ।

ଏ ପର୍ଯ୍ୟନ୍ତ ମନକୁ ଉଲ୍ଲସିତ କରୁଥିବା ସୌନ୍ଦର୍ଯ୍ୟବୋଧଟା ହଠାତ୍ ମାଟି ହେଇଗଲା ଭଳି ମନେହେଲା ମୋର ସେ ବାର୍ତ୍ତାଟି ପାଠ କଲା ପରେ । ଏହାପରେ ମୁଁ ଗୁମ୍‌ହେଇ ବସିଲି । ପ୍ରାୟ ଆଠ ନ' ମାଇଲ୍ ଚୁପ୍‌ଚାପ୍ ବସିରହିବା ପରେ ମାମଥ୍ କେଭ୍‌ର ଭିଜିଟର୍ସ ସେଣ୍ଟର୍ ପାଖ ପାର୍କିଂ ଲଟ୍ ନିକଟରେ ପହଞ୍ଚିସାରିଥିଲୁ । ଗୋଟାଏ ଖାଲି ପାର୍କିଂ ଜାଗା ଖୋଜିବାପାଇଁ ପ୍ରବୀର ଚାରିଆଡକୁ ଆଖି ବୁଲେଇଲେ । ପାର୍କିଂଲଟ୍‌ରେ ଗାଡିମାନଙ୍କର ଭିଡ ଲାଗିଯାଇଥାଏ ଦେଖିଲି– ଶହଶହ ଭିଜିଟର୍‌ଙ୍କ ଶହ ଶହ କାର୍ । ଅନେକ ସମୟ ଖୋଜାଖୋଜି ପରେ ମିଳିଲା ଗୋଟାଏ ଖାଲି ସ୍ଲଟ୍– ପ୍ରବୀର ତାଙ୍କ କାର୍ ସେଇଠି ପାର୍କିଂ କଲେ ।

"ଦେଖୁଚନ୍ତି ନନା ମମି !"– ପ୍ରବୀର କହିଲେ, "କେତେ ଲୋକ ଆସିଚନ୍ତି ଏ ମାମଥ୍‌କେଭ ଦେଖିବାକୁ ! ସେମାନଙ୍କ ଚେହେରାରୁ ଅନ୍ଦାଜ୍ କରନ୍ତୁ– କୋଉକୋଉ ଦେଶର ଲୋକ ହେଇଥିବ ସେମାନେ ! ପୁଣି ଦେଖନ୍ତୁ ସ୍ତ୍ରୀଲୋକମାନେ ପିଲାଛୁଆ ଧରି ଆସିଚନ୍ତି କୋଉକୋଉ ଦେଶରୁ । କ'ଣ ଦେଖିବାକୁ ଆସିଚନ୍ତି ଏମାନେ ଭାବନ୍ତୁ ତ !

ମାମଥ୍ କେଭ୍ ଭିତରେ କ'ଣ ଅଛି ଦେଖିବାକୁ– ଖାଲି କିଟ୍‌କିଟ୍ ଅନ୍ଧାର ଛଡା ! କିନ୍ତୁ ମାମଥ୍‌କେଭ୍ କେତେ ବଡ ସୁଡଙ୍ଗ ଜାଣନ୍ତି ? ତାଙ୍କ ଲିଟରେଚର୍ କହୁଚି– ଏ ସୁଡଙ୍ଗ କୁଆଡେ ହଜାରେ ମାଇଲ୍ ଲମ୍ବ– ମାନେ ପନ୍ଦରହଜାର କିଲୋମିଟର ।''

''କ'ଣ କହୁଚ ?''– ବିଶ୍ୱାସ କରିହେଲାନାହିଁ ପ୍ରବୀରଙ୍କ ଆଗୁଆ ସୂଚନାଟିକୁ । ତେଣୁ କଳ୍ପନା କଲି– ସୁଡଙ୍ଗଟା ତେବେ କ'ଣ ଖାଲି ଗୋଟାଏ ଟନେଲ୍ ଭଳି ହେଇଥିବ ଯାହା ଭିତରେ ଜଣେ ଲୋକ ହଜାରେ ମାଇଲ୍ ଚାଲି ଯାଇ ପାରିବ ମାଟି ତଳେ ତଳେ ! ମାନେ ମନେକର ଭୁବନେଶ୍ୱରରୁ ବମ୍ବେ ପର୍ଯ୍ୟନ୍ତ ଗୋଟାଏ ସୁଡଙ୍ଗ ଲମ୍ବିଥାଇପାରେ ! କିଏ କରିଚି ଏତେ ବଡ ଗୋଟାଏ ସୁଡଙ୍ଗ ?– ଏହା କଦାପି ମନୁଷ୍ୟ କୃତ ନହୋଇପାରେ– ତେବେ ପ୍ରକୃତିକୃତ ହେଇଥିଲେ ବି କି ଭୟଙ୍କର ସ୍ଥାନ ନହେଇଥିବ ସତେ ।''

ଆମେ ଚାଲିଲୁ ଭିଜିଟର୍ ସେଣ୍ଟର୍ ଦିଗରେ ପାର୍କିଂ ଲଟ୍‌ରୁ । ଭିଜିଟର୍ ସେଣ୍ଟର୍‌ରେ ଟିକେଟ୍ କାଉଣ୍ଟର୍‌ଗୁଡାକ ସାମ୍ନାରେ ପର୍ଯ୍ୟଟକଙ୍କ ଲମ୍ବା ଲମ୍ବା 'କ୍ୟୁ' ଲାଗିଥାଏ । ପ୍ରବୀର ଆମ ସମସ୍ତଙ୍କ ପାଇଁ ଟିକେଟ୍ କିଣିବାକୁ ଗୋଟାଏ 'କ୍ୟୁ' ପଛରେ ଠିଆହେଲେ । ଆମେ ଅପେକ୍ଷା କରୁଥାଉ । ଆଖିରେ ପଡିଲା ଗୋଟାଏ ରୁମ୍‌ର ବାହାର କାନ୍ଥ ଉପରେ ମାମଥ୍ କେଭ୍‌ର ଗୋଟାଏ ସୁନ୍ଦର ନକ୍ସା କରାଯାଇଥାଏ ପର୍ଯ୍ୟଟକମାନଙ୍କୁ ସୂଚନା ଦେବା ପାଇଁ ନିଶ୍ଚୟ । ମୁଁ ସେଇ ନକ୍ସା ପାଖକୁ ଚାଲିଲି । ମାମଥ୍ କେଭ୍‌ର ଭୂ-ଗର୍ଭସ୍ଥ ସୁଡଙ୍ଗଟିର ସବିଶେଷ ବିବରଣୀ ସହ ସେଥିରେ ଥାଏ ଗୋଟିଏ ରୁଟ୍ ଡାଏଗ୍ରାମ୍– ଅର୍ଥାତ୍ ସୁଡଙ୍ଗ ଭିତରେ ଚଲାପଥ ଗୁଡିକର ନକ୍ସା ସହିତ ସବିଶେଷ ବିବରଣୀ । ମୂଳରୁ ସୂଚନା ଦିଆ-ଯାଇଥାଏ ଯେ ଯୁକ୍ତରାଷ୍ଟ୍ର ଆମେରିକାର କେଣ୍ଟକୀ ପ୍ରଦେଶର ଏଇ ଅଦ୍ଭୁତ ସ୍ଥାନଟି ଯାହାର ନାଁ ମାମଥ୍ କେଭ୍ ତାହା ଏକ ଭୂ-ତାତ୍ତ୍ୱିକ ଗହ୍ୱର । ପ୍ରାୟ ଚାରିହଜାର ବର୍ଷ ତଳ ପର୍ଯ୍ୟନ୍ତ ଏହାର ମାନବ ସଂପର୍କିତ ଇତିହାସ ଆକଳନ କରାଯାଇପାରିଚି । ସେତେବେଳେ ଏଇ ପ୍ରାକୃତିକ ଭୂ-ଗହ୍ୱରର ପ୍ରବେଶ ଦ୍ୱାର ଠାରୁ ପ୍ରଥମ ଦଶ ମାଇଲ୍ ପର୍ଯ୍ୟନ୍ତ ସ୍ଥାନ ମାତ୍ର ଆମେରିକାର ପ୍ରାଚୀନ ଆଦିମ ଅଦିବାସୀଙ୍କ ଦ୍ୱାରା ଏକଦା ବ୍ୟବହୃତ ହେଉଥିବାର ପ୍ରମାଣ ଏଯାବତ୍ ହସ୍ତଗତ ହୋଇପାରିଚି । ତେବେ ଖ୍ରୀ. ୧୭୯୮ରେ ଏଇ ଲୁକ୍କାୟିତ ଗହ୍ୱରର ପ୍ରାଥମିକ ସୂଚନା କିଛି ମିଳିଥିଲେ ମଧ୍ୟ ଏଇ ଅଜ୍ଞାତ କୃଷ୍ଣଗର୍ତ୍ତ ମଧ୍ୟକୁ ସାହସ କରି ପ୍ରବେଶ କରିନଥିଲା କୌଣସି ମାନବ ଖ୍ରୀ. ୧୮୩୮ ପର୍ଯ୍ୟନ୍ତ । ଆମେରିକାର ଜଣେ ନିରକ୍ଷର କ୍ରୀତଦାସ– ସତରବର୍ଷ ବୟସର "ଷ୍ଟିଫେନ୍ ବିଶପ୍'' ଏ ଗହ୍ୱର ଭିତରକୁ ଏକାକୀ ପ୍ରବେଶ କରିଥିଲେ ଅପୂର୍ବ ସାହସିକତା ସହକାରେ । ପରେ ପରେ ସେ କେତେଜଣ ଦୁଃସାହସୀ ଲୋକଙ୍କ କୌତୂହଳ ମେଣ୍ଟାଇବା ଲକ୍ଷ୍ୟରେ ଏଇ "ବ୍ଲାକ୍‌ହୋଲ୍'' ଭିତରକୁ ବାଟ କଢେଇ କିଛି ଦୂର ଅଭ୍ୟନ୍ତର ପର୍ଯ୍ୟନ୍ତ ନେଇଯିବାକୁ ସକ୍ଷମ ହୋଇଥିଲେ । ଏହାପରେ ୧୯୨୫ରେ ''ଫ୍ରଏଡ୍ କଲିନସ୍'' ନାମକ ଜଣେ ଆମେରିକାନ୍ ବ୍ୟକ୍ତି ସମଗ୍ର

ରାଷ୍ଟ୍ରର ଦୃଷ୍ଟି ଆକର୍ଷଣ କରିଥିଲେ ଏଇ ଅଜ୍ଞାତ ରସାତଳ ଜଗତ ପ୍ରତି । କିନ୍ତୁ ସେଥିପାଇଁ ତାଙ୍କୁ ଅବଶେଷରେ ନିଜ ପ୍ରାଣ ବିସର୍ଜନ କରିବାକୁ ପଡିଥିଲା । ଘୋର ଅନ୍ଧକାରମୟ ଗହ୍ୱର ମଧ୍ୟରେ ଦିଗହରା ହୋଇ ରାସ୍ତା ଖୋଜିବା ଭିତରେ ସେ ଗୋଟିଏ ସଂକୀର୍ଣ୍ଣ ସ୍ଥାନର ଦୁଇ କାନ୍ଥ ମଝି ଫାଟରେ ଚାପିହୋଇ ରହିଗଲେ ଓ ବାହ୍ୟ ସାହାଯ୍ୟ ପହଞ୍ଚିବା ପୂର୍ବରୁ ଶେଷନିଃଶ୍ୱାସ ତ୍ୟାଗ କରିସାରିଥିଲେ ।

ଆବିଷ୍କାରକ ଫ୍ଲଏଡ୍ କଲିନ୍ସ୍‌ଙ୍କର ସେଇ ଦୁଃଖଦ ଆତ୍ମୋତ୍ସର୍ଗର ବାର୍ତ୍ତା ଦେଶସାରା ବ୍ୟାପୀ ଯାଇଥିଲା । ତାଙ୍କ ମୃତ୍ୟୁର ଠିକ୍ ବର୍ଷକପରେ ୧୯୨୬ରେ ଆମେରିକାସରକାର ଏଇ ସ୍ଥାନକୁ ଆମେରିକାର ଏକ ଜାତୀୟ ଉଦ୍ୟାନ (ନ୍ୟାସନାଲ୍ ପାର୍କ) ଭାବେ ଘୋଷଣା କରିଥିଲେ ।

ଗହ୍ୱରର ଦୈର୍ଘ୍ୟ ବିଷୟରେ ଉଲ୍ଲେଖ ଥିଲା– ଅଦ୍ୟାବଧି ଏଇ ରହସ୍ୟମୟ ଭୂତଳ ଗହ୍ୱରର ମାତ୍ର ୩୫୦ ମାଇଲ୍ ପର୍ଯ୍ୟନ୍ତ ସୁଡଙ୍ଗର ସର୍ବେକ୍ଷଣ ରିପୋର୍ଟ ପ୍ରକାଶିତ ହୋଇଛି । ଭୂ-ତତ୍ତ୍ୱବିତ୍‌ଙ୍କ ଅନୁମାନ– ଏଇ ବିସ୍ମୟକର ଭୂଗହ୍ୱରର ଆହୁରି ପ୍ରାୟ ଛଅଶହମାଇଲ୍ ଦୈର୍ଘ୍ୟ ଏପାବତ୍ ରହିଚି ଅଗମ୍ୟ ।

୧୯୮୧ରେ ଏହି ରାଷ୍ଟ୍ରୀୟ ଉଦ୍ୟାନକୁ ୟୁନେସ୍କୋ ପକ୍ଷରୁ "ୱର୍ଲଡ୍ ହେରିଟେଜ୍" ମର୍ଯ୍ୟାଦା ପ୍ରଦାନ କରାଯାଇଚି । ୧୯୯୦ରେ ଏହାକୁ ଆନ୍ତର୍ଜାତିକ ଜୀବମଣ୍ଡଳର ଆଧାର "International Biosphere Reserve" ତାଲିକା ଅନ୍ତର୍ଭୁକ୍ତ କରାଯାଇଚି । ଭୂପୃଷ୍ଠରେ ମାମଥ୍ କେଭ୍‌ର ସମୁଦାୟ କ୍ଷେତ୍ରର ଆୟତନ ହେଉଚି ପ୍ରାୟ ୫୦,୦୦୦ (ପଚାଶ ହଜାର) ଏକର । ମାମଥ୍ କେଭ୍ ଚତୁଃର୍ପାଶ୍ୱର ସମଗ୍ର ଉପତ୍ୟକାଟି ହେଉଚି ଏଥିରେ ପ୍ରବାହିତ ଗୋଟିଏ ନଦୀର ଅବଦାନ । ନଦୀଟିର ନାମ "ଗ୍ରୀନ୍-ରିଭର୍" । ବିବିଧ ଜୀବଜନ୍ତୁ, କୀଟପତଙ୍ଗ, ସରୀସୃପ, ବୃକ୍ଷଲତା ଓ ଶୈବାଳର ଉତ୍ପତ୍ତିସ୍ଥଳ, ଏଇ ରାଷ୍ଟ୍ରୀୟ ଉଦ୍ୟାନର ଉଭା ପୋତା ଅର୍ଥାତ୍ ଉଭୟ ଭୂପୃଷ୍ଠ ଏବଂ ଭୂତଳ ଭାଗ । ଏଠାରେ ଭୂତଳର ଘୋର ଅନ୍ଧକାରମୟ ଗହ୍ୱର ଗୁଡିକର ଅଭ୍ୟନ୍ତରରେ ଲୁକ୍କାୟିତ ସ୍ଥାନମାନଙ୍କରେ ମଧ୍ୟ ଜୀବମଣ୍ଡଳର ଉପସ୍ଥିତି ଲକ୍ଷ୍ୟକରାଯାଏ । ଏଠାରେ ଗ୍ରୀନ୍ ରିଭର୍‌ର ବାସିନ୍ଦାଭାବେ ଅନ୍ୟୁନ ୮୨ ଜାତିର ମାଛଙ୍କ ଉପସ୍ଥିତି ଲକ୍ଷ୍ୟ କରାଯାଇଛି । ପୁଣି ଭୂଗର୍ଭର ଅନ୍ଧକାରାଚ୍ଛନ୍ନ ଜଳରେ ବାସକରନ୍ତି ରଙ୍ଗବିହୀନ, ଚକ୍ଷୁବିହୀନ ମାଛ ଯାହାଙ୍କର ବାହ୍ୟ ଦୃଷ୍ଟି ନାହିଁ, କିନ୍ତୁ ସେମାନେ ଅନ୍ଧ ନୁହନ୍ତି । ବାହ୍ୟ ଜଗତ୍ ସଂପର୍କରେ ସବୁ ଖବର ସେମାନେ ଜାଣିପାରନ୍ତି ସ୍ୱତନ୍ତ୍ର ଇନ୍ଦ୍ରିୟ ମାଧ୍ୟମରେ । ଏହା ଏକ ପ୍ରକାର ଅନ୍ତର୍ଦୃଷ୍ଟି ଯାହା ଆଲୋକ ବିହୀନ ଜଗତ୍‌ରେ ବାସକରୁଥିବା ପ୍ରାଣୀମାନଙ୍କ ପକ୍ଷରେହିଁ ସମ୍ଭବ ।

– 'ଅନ୍ତର୍ଦୃଷ୍ଟି' । – ସେଇ ଶବ୍ଦଟି ପଢୁ ପଢୁ ମୁଁ ହଠାତ୍ ଜୋର୍‌ରେ ହସିଉଠିଲି ।

ମୋ ପାଖରେ ଠିଆହୋଇ ମୋ ହାତକୁ ଭିଡିଧରିଥିବା ଆଠବର୍ଷର ନାତି ପ୍ରତୀକ ବୋଧହୁଏ ମୋର ହସ ଶୁଣି ଆଶ୍ଚର୍ଯ୍ୟ ହେଇଗଲା । ପଚାରିଲା, "କ'ଣ ହେଲା ଅଜା ?

ହସିଲ କାହିଁକି ?'' ଗମ୍ଭୀର କଣ୍ଠରେ କହିଲି, ''ଜାଣିଚୁ– ଆମ ଭାରତରେ ଏମିତି ଲୋକ ଅଛନ୍ତି ଯୋଉମାନେ ଆଖି ବୁଜି ବାହାର ଜଗତକୁ ଦେଖିପାରନ୍ତି । ସେମାନଙ୍କୁ ଆମେ କହୁ ଯୋଗୀ ଋଷି– 'ସେଣ୍ଟସ୍' । ଏ ମାମଥ୍ କେଭ୍‌ରେ କୁଆଡେ ଏମିତି ମାଛ ଅଛନ୍ତି ଯାହାଙ୍କର ଆଖି ନାହିଁ; କିନ୍ତୁ ସେମାନେ ସବୁ ଦେଖିପାରୁଚନ୍ତି । ଏ ନୋଟିସ୍ ବୋର୍ଡରେ ଲେଖାହେଇଚି ଦେଖ ! ତା'ମାନେ ତମର ଏଠି ଏଇ ମାମଥ୍ କେଭ୍‌ର ଅଣ୍ଡରଗ୍ରାଉଣ୍ଡ୍‌ରେ ଗ୍ରୀନ୍ ରିଭର୍‌ର ପାଣିର ଅନ୍ଧ ମାଛମାନେ ପ୍ରକୃତରେ ମାଛ ନୁହନ୍ତି– ସେମାନେ ହେଲେ ଋଷିମୁନି ବା ସେଣ୍ଟସ୍ !''

"Are they Saints?" – ଛୋଟ ପିଲା ପ୍ରତୀକ ମୋ ବ୍ୟଞ୍ଜନାର ଅର୍ଥ ବୁଝି-ନପାରି ଆଶ୍ଚର୍ଯ୍ୟ ହେଇ ପଚାରିଲା, "Do Saints live here in the Mamoth-caves, underground, Aja !"

ଆତ୍ମସଚେତନ ହେଲି ନାତିର ପ୍ରଶ୍ନରେ । କହିଲି, "ଦେଖ, ଆମେ ଆଜି ପରା ଯିବା ମାମଥ୍ କେଭ୍ ଭିତରକୁ– ସେଠି କୁଆଡେ ମାଟିତଳେ ଗଭୀର ଅନ୍ଧାର ଭିତରେ ଗ୍ରୀନ୍-ରିଭର୍ ବୋଲି ଗୋଟାଏ ନଈ କଳକଳ ନାଦ କରି ବୋହିଚାଲିଚି । ପୁଣି ସେ ନଈରେ ଅଛନ୍ତି ବହୁ ପ୍ରକାରର ମାଛ ଯାହାଙ୍କର ଆଖି ନାହିଁ; କିନ୍ତୁ ସେମାନେ ନିଜ ଅନ୍ତର୍ଦୃଷ୍ଟିରେ ସବୁ ଦେଖିପାରୁଚନ୍ତି । ଆମ ଭାରତରେ ଏଭଳି ଦୃଷ୍ଟିଶକ୍ତି କେବଳ ଋଷିମୁନିମାନଙ୍କର ଥାଏ । ସେଇଥିପାଇଁ ଭାବିଲି ମାମଥ୍ କେଭ୍‌ରେ ମାଛମାନେ ସତରେ ମାଛ ନୁହନ୍ତି– ସେମାନେ ଦିବ୍ୟଦ୍ରଷ୍ଟା ଋଷି ଅର୍ଥାତ୍ ସେଣ୍ଟ୍ ଗୁଡିଏ ନିଶ୍ଚୟ !''

ଏ ଭିତରେ ପ୍ରବୀର ଫେରିଆସିଥାନ୍ତି କାଉଣ୍ଟରରୁ ଆମ ପାଇଁ ପ୍ରବେଶିକା ଟିକେଟ୍ ପାଞ୍ଚଟି ଧରି । ଆମକୁ ଶୁଣାଇ କହିଲେ ସେ, "ନନା, ମମି ! ମୁଁ ଆଣିଚି ଅଢେଇଘଣ୍ଟିଆ ଟୁର୍ ପ୍ରୋଗ୍ରାମ୍‌ର ଟିକେଟ୍ ଆମ ସମସ୍ତଙ୍କ ପାଇଁ । ଆପଣ ଜାଣନ୍ତି ମାମଥ୍ କେଭ୍ ଭିତରେ ଅସଂଖ୍ୟ ସୁଡଙ୍ଗ ମାନ ରହିଚି– ପ୍ରାୟ ହଜାରେ ମାଇଲ୍ ଲମ୍ବା ସୁଡଙ୍ଗ । ଆପଣ ଚାହିଁଲେ ସେ ସୁଡଙ୍ଗ ଭିତରେ ଅଢେଇଘଣ୍ଟାରୁ ପନ୍ଦର ଘଣ୍ଟା ପର୍ଯ୍ୟନ୍ତ ଟ୍ରେକିଂ– ମାନେ କଷ୍ଟେମଷ୍ଟେ ଗଳିଗାଳି ଚାଲିପାରିବେ । ଏମିତି ଅନ୍ଧାରରେ ଟ୍ରେକିଂ ପାଇଁ ବହୁ ଆନ୍ତର୍ଜାତିକ ଟୁରିଷ୍ଟ୍ ଟିକେଟ୍ କରୁଥିଲେ ସେ କାଉଣ୍ଟରରେ । ସେମାନେ ଭୂଗର୍ଭର ଅଜଣା ଅନ୍ଧକାରମୟ ଜଗତ୍ ଭିତରେ ଘୂରି ବୁଲିବାର ବିପଜ୍ଜନକ ଅଭିଜ୍ଞତା ଅର୍ଜନକୁ ଖୁବ୍ ମୂଲ୍ୟ ଦିଅନ୍ତି । ମୁଁ ଆମ ସମସ୍ତଙ୍କ ପାଇଁ ଆଣିଚି ଅଢେଇଘଣ୍ଟିଆ ଟିକେଟ୍ ପାଞ୍ଚଟି– ଚାଲନ୍ତୁ ଦେଖିବେ କେମିତି ଲାଗେ କେଭ୍ ଭିତରର ଅନ୍ଧାର.."

ଝିଅ ବୁଲବୁଲ ବ୍ୟସ୍ତହେଇପଡିଲା ପ୍ରବୀରଙ୍କ ପ୍ରସ୍ତାବରେ । ଚିଡିଉଠି କହିଲା, "ତା'ମାନେ ଆମେ ଏ କେଭସ୍ ଭିତର ଅନ୍ଧାରରେ ଅଢେଇଘଣ୍ଟାକାଳ ରହିବା ! ନନା, ମମି କଣ ପାରିବେ ?" କିନ୍ତୁ ମୁଁ ଆମ ଆଡୁ ତାକୁ ସାନ୍ତ୍ୱନା ଦେଇ କହିଲି, "ହଁ ହଁ ଆମେ ପାରିବୁ–

ଆମେତ ସେଇଥିପାଇଁ ଆସିଚୁ ଏଠିକି କେଭ୍ ଭିତରେ ବୁଲିବାକୁ– ଚାଲ ତାହେଲେ''. . .

ସେତିକିବେଳେ କେଭ୍ ଭିତରେ ବୁଲିବାପାଇଁ ଟିକେଟ୍ ଖର୍ଚ୍ଚ କରିଥିବା ଲୋକମାନଙ୍କ ଉଦ୍ଦେଶ୍ୟରେ ଏକ ଘୋଷଣା ଶୁଣାଗଲା ମାଇକ୍‌ରେ– "Visitors who have purchased tickets for the exploration inside the caves assemble here near the cave entrance for the journey. . ." (ଯେଉଁ ପର୍ଯ୍ୟଟକମାନେ ମାମଥ୍ କେଭ୍ ଭିତରକୁ ପ୍ରବେଶ ପାଇଁ ଟିକେଟ୍ ଖର୍ଚ୍ଚ କରିଚନ୍ତି ସେମାନେ ଗୁମ୍ଫାର ପ୍ରବେଶଦ୍ୱାରକୁ ଆସନ୍ତୁ...)

ଆମେ ଚାଲିଲୁ– ଗୁମ୍ଫା ମୁହଁ ଦିଗକୁ ଯାଇଥିବା ଏକ ଗଡାଣିଆ ରାସ୍ତାରେ ବେଶ୍ କିଛି ତଳକୁ ଓହ୍ଲାଇଲା ପରେ ପହଞ୍ଚିଲୁ ଗୁମ୍ଫାମୁହଁ ପାଖ ଏକ ସମତଳ ଜାଗାରେ । ଆମ ସାଥିରେ ଆଗରେ ଆଉ ପଛରେ ମଧ୍ୟ ଦଳଦଳ ଯାତ୍ରୀ ଆସୁଥାନ୍ତି ଦେଖିଲୁ । ସମସ୍ତେ ଏକାଠି ହେଲା ପରେ ଆମକୁ ସ୍ୱାଗତ କଲେ କେତେଜଣ ଗାଇଡ୍ । ସେମାନେ ନିଯୁକ୍ତ ହେଇଥାନ୍ତି ଦର୍ଶକମାନଙ୍କୁ ଦଳଦଳ କରି ବାଟ କଢାଇ ନେଇ ଗୁମ୍ଫା ଭିତରଟା ବୁଲେଇ ଦେଖେଇବା ପାଇଁ । ଆମେ ପାଞ୍ଚଜଣ ଗୋଟିଏ ଦଳରେ ମିଶିଲୁ । ସେ ଦଳରେ ଆମେ ଥାଉ ପଚିଶଜଣ ନାରୀ ପୁରୁଷ । ସମସ୍ତେ ଶ୍ୱେତାଙ୍ଗ– କେବଳ ଆମ ପାଞ୍ଚଜଣଙ୍କ ବ୍ୟତୀତ । ପୁଣି ଦେଖିଲି– ଆମ ଦଳର ଜଣେ ଶ୍ୱେତାଙ୍ଗୀ ମହିଳା କାଖରେ ଧରିଥାନ୍ତି ଏକ ବାଳୁତ ଶିଶୁ ! ସେ ଶିଶୁଟିର ବୟସ ହୁଏତ ବର୍ଷେ କି ଦେଢବର୍ଷ । ଏଭଳି ଏକ ଉଡିଆଣି ଛୁଆକୁ କାଖରେ ଧରି ଯୁବତୀଜଣକ ଅତି ଉତ୍ସାହ ସହକାରେ ବାହାରିପଡିଥାନ୍ତି ମାମଥ୍ କେଭ୍ ବୁଲିବା ପାଇଁ । ମନେହେଉଥାଏ ଆମ ଦଳର ସେଇ ଶ୍ୱତାଙ୍ଗୀ ଜଣକ ଥିଲେ ଏକାକୀ । କାଖରେ ଛୁଆଟିକୁ ଜାକି ଏଭଳି ଏକ ବିପଜ୍ଜନକ ସ୍ଥାନକୁ ଭ୍ରମଣ ପାଇଁ ଜଣେ ସ୍ତ୍ରୀଲୋକ ଏକା ଏକା ବୁଲିବାକୁ ଆସିବାକୁ ଯେ ସାହସ କରିପାରେ ସେକଥା ଭାବି ମତେ ଆଶ୍ଚର୍ଯ୍ୟ ଲାଗୁଥାଏ ।

ଏ ଭିତରେ ଆମ ଦଳ ପାଇଁ ନିଯୁକ୍ତ ଦୁଇଜଣ ଗାଇଡ୍ ପହଞ୍ଚି ସାରିଥାନ୍ତି । ସେମାନେ– ଗୋରା ଆମେରିକାନ୍ ଟୋକା ଯୋଡାଏ । କଥାବାର୍ତ୍ତାରୁ ମନେହେଉଥାନ୍ତି ଭାରି ମଜାଦାର୍ ହସଖୁସିଆ ଟୋକା ଦି'ଟା । ସେମାନଙ୍କ ଭିତରୁ ଜଣେ ଟୋକା ଗୋଟାଏ ପଥର ଉପରକୁ ଉଠିଯାଇ ଆରମ୍ଭ କରିଦେଲା ଘୋଷଣା, "ବନ୍ଧୁଗଣ, ଆପଣମାନଙ୍କ ଭିତରୁ କାହାର ଯଦି ସ୍ୱାସ୍ଥ୍ୟଗତ କିଛି ସମସ୍ୟା ଥାଏ– ଯେମିତି ହାର୍ଟ-ଡିଜିଜ୍ ବା ଏପିଲେପ୍‌ସି ଇତ୍ୟାଦି ତେବେ ଦୟାକରି ଆପଣ ଏ ଟ୍ରେକିଂରେ ଯୋଗ ଦିଅନ୍ତୁ ନାହିଁ । ପୁଣି ଆପଣମାନଙ୍କ ଭିତରୁ ଯଦି କାହାର ଅନ୍ଧାରକୁ ଭୟ ବା ସଂକୀର୍ଣ୍ଣ ସ୍ଥାନରେ ପ୍ରବେଶକୁ ଭୟ ଅର୍ଥାତ୍ "କ୍ଲଷ୍ଟ୍ରୋଫୋବିଆ'' ଭଳି କିଛି ମାନସିକ ସମସ୍ୟା ଥାଏ ତେବେ ଆପଣ ଏ ଅଭିଯାନରେ ଯୋଗ ନଦେବା ଭଲ ବୋଲି ଆମେ ଆପଣଙ୍କୁ ମୂଳରୁ ସତର୍କ କରିଦେଉଚୁ । ଦୟାକରି ସେମାନେ ଏ ଦଳରୁ ଅନ୍ତର ହେଇଯାଆନ୍ତୁ ।''

ଘୋଷଣା ସତ୍ତ୍ୱେ ଆମ ଦଳ ଭିତରୁ କେହି ଜଣେ ମଧ୍ୟ ଅନ୍ତର ନହେବା ଦେଖି ଗାଇଡ୍ ଆମ ମାନଙ୍କୁ ଏକ ସଂକ୍ଷିପ୍ତ ବକ୍ତୃତା ମାଧ୍ୟମରେ ବିଶ୍ୱର ପରମ ଆଶ୍ଚର୍ଯ୍ୟ ଓ ରହସ୍ୟ ମୟ ସେଇ ମାମଥ୍ କେଭ୍‌ର ଇତିହାସ ଆଉ ଗୁମ୍ଫା ଭିତରେ ଆଗାମୀ ଅଢେଇଘଣ୍ଟାର ଟ୍ରେକିଂ କାଳରେ ଆମକୁ ସମ୍ମୁଖୀନ ହେବାର କେତେକ ଆପଦ ବିପଦ ଓ ସମସ୍ୟା ସଂପର୍କରେ ଅବଗତ କରାଇଲେ । ଏହାପରେ ଆରମ୍ଭ ହେଲା ଆମଦଳର ଯାତ୍ରା– ଗୁମ୍ଫା ପ୍ରବେଶ ।

ଗହ୍ୱରରେ ପ୍ରବେଶ ପୂର୍ବରୁ ମୁଁ ଥରେ ଆଖି ବୁଲେଇନେଲି ଚତୁର୍ଦ୍ଦିଗର ପରିବେଶ ଉପରେ । ସେତେବେଳକୁ ଆକାଶରେ ସୂର୍ଯ୍ୟ ନଇଁଗଲେଣି ଅନେକଦୂର ପଶ୍ଚିମ ଦିଗ୍‌ବଳୟ ଆଡକୁ; କିନ୍ତୁ ସୂର୍ଯ୍ୟାଲୋକର ପ୍ରଖରତା କମିନଥାଏ । ଚାରିଆଡର ସବୁଜ ଗଛବୃଛ ଭରା ପରିବେଶରୁ ମନେହେଉଥାଏ ଆମେ ଗୋଟାଏ ଘୋର ଜଙ୍ଗଲ ଭିତରେ କୌଣସି ପର୍ବତର ପାଦଦେଶରେ ଅଛୁ । ସେଇ ପର୍ବତର ଅଭ୍ୟନ୍ତରକୁ ଯାଇଥିବା ଏକ ଗର୍ତ୍ତ ଭିତରକୁ ବର୍ତ୍ତମାନ ଆମକୁ ପ୍ରବେଶ କରିବାକୁ ହେବ ।

ଗୁମ୍ଫା ମୁହଁଟା ଦିବାଲୋକରେ ଦିଶୁଥାଏ ପିଲାଦିନେ ପଢିଥିବା ଆରବିୟାନ୍ ନାଇଟ୍‌ସ୍ କାହାଣୀର "ଆଲିବାବା ଓ ଚାଳିଶ ଚୋର୍"ଙ୍କ ସେଇ ଗୁମ୍ଫାପରି ଯାହାର କବାଟ ଖୋଲିଯାଏ "ଓପେନ୍ ସିସେମ୍" ମନ୍ତ୍ର ଉଚ୍ଚାରଣ ମାତ୍ରେ ।

ଗାଇଡ୍‌ଙ୍କ ନିର୍ଦ୍ଦେଶ ମିଳିଲା– ଆସନ୍ତୁ ! ପ୍ଲିଜ୍ ମତେ ଅନୁସରଣ କରନ୍ତୁ ସମସ୍ତେ ! ଏତିକି କହି ଗାଇଡ୍ ପଶିଗଲେ ଗୋଟାଏ ଅନ୍ଧାରୁଆ ଗଡାଣି ରାସ୍ତାରେ ଗୁମ୍ଫା ଭିତରକୁ । ଆମେ ତାଙ୍କ ପିଛା ଧରିଲୁ ।

ଗହ୍ୱରର ପ୍ରବେଶପଥ ବାହ୍ୟଜଗତ୍‌ର ଦିବାଲୋକରେ ସାମାନ୍ୟ ଆଲୋକିତ ହୋଇଥାଏ । କିନ୍ତୁ ଭୂଗର୍ଭକୁ ଅଳ୍ପ କିଛି ବାଟ ପ୍ରବେଶ କରିବା ପରେ ପରେ ଗୁମ୍ଫା ଭିତରଟା ଭାରି ଅନ୍ଧାରିଆ ଦିଶିଲା । ତେବେ ସୁଡଙ୍ଗ ରାସ୍ତାର ଦୁଇ-କାନ୍ଥରେ ସ୍ଥାନେ ସ୍ଥାନେ ଖଂଜାଯାଇଥିବା ଇଲେକ୍‌ଟ୍ରିକ୍ ଫୁଟ୍‌ଲ୍ୟାମ୍ପର ମିଂଜିମିଂଜି ଆଲୁଅ ଆମକୁ ବାଟ ଦେଖେଇବାରେ କିଛି କିଛି ସାହାଯ୍ୟ କରୁଥାଏ । କିନ୍ତୁ ଅନ୍ଧାରକୁ ଆହୁରି ରହସ୍ୟମୟ କରୁଥାଏ ସେଇ ପାଦପ୍ରଦୀପ ବ୍ୟବସ୍ଥା ସତେବା ।

କିଛି ବାଟ ପରେ ଆମେ ପହଞ୍ଚିଲୁ ଗୋଟାଏ ବଡ ହଲ୍ ଭଳି ଖୋଲା ଗୁମ୍ଫାରେ । ସେ ହଲ୍‌ର ଛାତକୁ ଅନେଇ ନାତି ପ୍ରତୀକ ମୋ କାନରେ କହିଲା, "ଅଜା– ଭ୍ୟାମ୍ପାୟାର୍ସ– ହେଇ ସେଠି ! ଏମାନେ ଆମ ରକ୍ତ ଶୋଷିନେବେ ଦିହରୁ । ମତେ ଡରଲାଗୁଚି. . ." ଉପରକୁ ଅନେଇ ଦେଖିଲି ସତରେ ଗୁମ୍ଫା ଛାତରୁ ଓହଳିଥାନ୍ତି ଗୁଡାଏ ଚେମେଣି ! ମାଳ ମାଳ ଚେମେଣିଙ୍କୁ ମୁଣ୍ଡ ଉପରେ ଓହଳିବା ଦେଖି ଆହୁରି ଅନେକ ସହଯାତ୍ରୀ ଚିତ୍କାର ଛାଡିଲେ– ଭ୍ୟାମ୍ପସ୍ ଭ୍ୟାମ୍ପସ୍ ! ପାଶ୍ଚାତ୍ୟ ଲୋକେ ବାଦୁଡି ଚେମେଣି ଜାତୀୟ ପ୍ରାଣୀଗୁଡାକୁ ଖୁବ୍ ଡରନ୍ତି ।

ସେ ଯାହାହେଉ, ଏପର୍ଯ୍ୟନ୍ତ ଅଦୃଶ୍ୟ ଗାଇଡ୍ ହଠାତ୍ ଦୃଶ୍ୟମାନ ହେଲେ ଆମ ଆଗରେ । ସେ ଆମକୁ ସାନ୍ତ୍ୱନା ଦେଇ କହିଲେ– ଡରିବାର କିଛି ନାହିଁ । ସେମାନେ ଆମର କିଛି ଅନିଷ୍ଟ କରିବେ ନାହିଁ । ବର୍ତ୍ତମାନ ଏଣେ ଅନାନ୍ତୁ– । ହେଇ ସେଠି ଦେଖୁଚନ୍ତି– ସେଠି କାନ୍ଥକଡରେ ଯୋଉ ଢିପ ଜାଗାଟା– ତା' ଉପରେ କ'ଣ ସବୁ ରଖାଯାଇଚି ଦେଖନ୍ତୁ । ସେଗୁଡାକ କ'ଣ ଜାଣନ୍ତି– ଇଣ୍ଡିୟାନ୍ ମାନଙ୍କ ମଦରନ୍ଧା ସାଜ ସରଞ୍ଜାମ । ଏ ଜାଗାକୁ କୁହାଯାଏ 'ମୁନ୍‌ସାଇନ୍' ଏରିଆ, – ମାନେ ମଦପିଇ ମାତାଲ୍ ହେଇ ନାଚଗାନ କରିବା ଜାଗା ଥିଲା ଏ ବହୁ ବର୍ଷ ପୂର୍ବେ ଏଠାକା ସ୍ଥାନୀୟ ଆଦିବାସୀଙ୍କର । ପୁଣି ଏଠି ଦେଖନ୍ତୁ– ଏଇଠୁ ମଧ୍ୟ ସେମାନେ କିଛିକିଛି ମିନ୍‌ରାଲସ୍ ଖୋଳାଖୋଳି କରୁଥିଲେ । ବୋଧହୁଏ ଏ ଜାଗାଟା ଥିଲା ସେମାନଙ୍କର ଜିପ୍‌ସମ୍ ଖଣି ଅଂଚଳ । ସେମାନେ ନିଶ୍ଚୟ ଜିପସମ୍‌ର ବ୍ୟବହାର ଜାଣିଥିଲେ ।''

ଆମେ ଆଖି ବୁଲେଇଲୁ ଚାରିଆଡକୁ । ବିଶାଳ ଗୁମ୍ଫା ଭିତରେ ଆଲୋକର ବ୍ୟବସ୍ଥା କରାଯାଇଥାଏ । ଆଦିବାସୀମାନଙ୍କ ମଦ ରନ୍ଧା ସାଜସରଞ୍ଜାମ ଗୁଡିକ ପ୍ରଦର୍ଶିତ ହେଇଥିଲା ସେଇ ହଲ୍ ଭଳି ଉଚ୍ଚ ଛାତ ଥିବା ଗୁମ୍ଫାର ଗୋଟିଏ ସ୍ଥାନରେ । ସେ ସବୁ ସରଞ୍ଜାମ ମୁଖ୍ୟତଃ ବଡ ବଡ ମାଟିହାଣ୍ଡି, ଆଉ ମଦ ରନ୍ଧନ ପାଇଁ ବକଯନ୍ତ୍ର ଇତ୍ୟାଦି ଡିଷ୍ଟିଲେସନ୍ ସାମଗ୍ରୀ । ତାହା ପ୍ରମାଣିତ କରୁଥିଲା ଯେ, ଆମେରିକା ଗୋରା ଲୋକଙ୍କ ଅଧିକାରକୁ ଆସିବାର ଢେର୍ ପୂର୍ବରୁ ଏଠାକାର ଭୂମିଜ ମାନବ, ଯାହାକୁ କଲମ୍ବସ୍‌ଙ୍କ ଅନୁଚରମାନେ ଏଯାବତ୍ ନାମିତ କରିଆସିଛନ୍ତି ଇଣ୍ଡିୟାନ୍‌ସ୍ ନାଁରେ, ସେଇ ଇଣ୍ଡିୟାନ୍‌ମାନେ ଏଇ ମାମଥ୍ କେଭ୍‌ର ଯଥାର୍ଥ ଅଧିକାରୀ ଥିଲେ ।

"ପ୍ରତ୍ନତତ୍ତ୍ୱବିତ୍‌ଙ୍କ ମତରେ, ଆମେରିକାର ଇଣ୍ଡିୟାନ୍‌ମାନେ ମାମଥ୍ କେଭ୍‌ର ସନ୍ଧାନ ପାଇଥିଲେ ଅନ୍ୟୁନ ୪,୦୦୦ ବର୍ଷ ତଳୁ ।"– ଏଥର ଗାଇଡ୍‌ଙ୍କ ସ୍ୱର ପୁଣି ଶୁଣାଗଲା, "ସେମାନେ ଏଇ ବିଶାଳ ଗହ୍ୱର ଭିତରେ ଭିତରେ ଅନ୍ତତଃ ଦଶ ମାଇଲ୍ ଭିତରକୁ ପ୍ରବେଶ କରିଥିବାର ପ୍ରମାଣ ମିଳିଛି । ଏଇ ଗହ୍ୱର ଭିତରୁ ସେମାନେ କେତେକ ମୂଲ୍ୟବାନ୍ ସ୍ଫଟିକ (କ୍ରିଷ୍ଟାଲସ୍ ବା ମଣି ପଥର ?), ଲବଣ ଇତ୍ୟାଦି ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ମଧ୍ୟ ସଂଗ୍ରହ କରୁଥିଲେ । କିନ୍ତୁ କୌଣସି କାରଣରୁ ପ୍ରାୟ ଦୁଇ ହଜାର ବର୍ଷ ପର୍ଯ୍ୟନ୍ତ ସେମାନଙ୍କର ସେପ୍ରକାର କାର୍ଯ୍ୟକଳାପ ବନ୍ଦହୋଇଯାଇଥିଲା– ଖ୍ରୀ. ୧୭୯୮ରେ ଉପନିବେଶବାଦୀ ଗୋରାଲୋକମାନେ ଏ ଜାଗାର ଆବିଷ୍କାର କରିବା ପର୍ଯ୍ୟନ୍ତ ।"

ଆମେ କିଛି ସମୟ ସେଇ ବିଶାଳ ହଲ୍ ଭଳି କୋଠରୀରେ ଚୁପ୍‌ଚାପ୍ ଠିଆହୋଇ ଇତିହାସର ପଦପାତକୁ କାନେଇ ରହିଲୁ । ଏହାପରେ ଗାଇଡ୍‌ଙ୍କ ନିର୍ଦ୍ଦେଶ ମିଳିଲା– "ବନ୍ଧୁଗଣ ! ଏହିଠାରୁ ଆରମ୍ଭ ହେବ ଆମମାନଙ୍କର ଯଥାର୍ଥ ଅଭିଯାନ ମାମଥ୍ କେଭ୍‌ସ୍ ଅଭ୍ୟନ୍ତରକୁ । ଆପଣମାନେ ପ୍ରସ୍ତୁତ କରନ୍ତୁ ନିଜକୁ– । ଆମକୁ ଏହା ପରେ ଅତ୍ୟନ୍ତ

ସଂକୀର୍ଣ୍ଣ ଏବଂ ବନ୍ଧୁର ମାର୍ଗରେ ଅବତରଣ କରିବାକୁ ହେବ ଭୂଗର୍ଭର ଅନ୍ତତଃ ଦୁଇଶହ ଫୁଟ୍ ଅନ୍ତରାଳ ପର୍ଯ୍ୟନ୍ତ ପ୍ରଥମ ପର୍ଯ୍ୟାୟରେ । ସେଠାକୁ ଏକ ଅତ୍ୟନ୍ତ ସଂକୀର୍ଣ୍ଣ ସୁଡଙ୍ଗ ମାର୍ଗରେ ଆମମାନଙ୍କୁ ଗତି କରିବାକୁ ହେବ । ସୁଡଙ୍ଗର ଛାତ ସ୍ଥାନେ ସ୍ଥାନେ ଏତେ କମ୍ ଉଚ୍ଚ ଯେ ଆପଣମାନେ ମୁଣ୍ଡ ନୁଆଇଁ ସାବଧାନତା ସହକାରେ ନଚାଲିଲେ ମୁଣ୍ଡରେ ଗୁରୁତର ଆଘାତ ଲାଗିବାର ଆଶଙ୍କା ଏଠାରେ ରହିଚି । ସେଥିପାଇଁ ସ୍ଥାନେସ୍ଥାନେ ଆପଣମାନଙ୍କୁ ଗୁରୁଣ୍ଡି ଗୁରୁଣ୍ଡି ବାଟ ଚାଲିବାକୁ ପଡିବ ନିଶ୍ଚୟ । ଏଇ ସଂକୀର୍ଣ୍ଣ ସୁଡଙ୍ଗ ପଥର ଛବି ଆପଣମାନେ ଆମର ଅଫିସିଆଲ୍ ମ୍ୟାପ୍ ଓ ଗାଇଡ୍‌ରୁ ପାଇପାରିବେ Houchins Narrows ନାମରେ । ଏଇ ସଂକୀର୍ଣ୍ଣ ସୁଡଙ୍ଗ ଭିତରେ ଆପଣମାନଙ୍କୁ ଅନ୍ୟଏକ ପ୍ରକାର ଶାରୀରିକ ଅସୁବିଧାର ସମ୍ମୁଖୀନ ହେବାକୁ ପଡିବ ମଧ୍ୟ । ସ୍ଥାନେସ୍ଥାନେ ଏଇ ଭୂତଳ ଗିରିସଂକଟ ମାର୍ଗରେ ଆପଣମାନେ ପାଇବେ ଏପରି ସଂକୀର୍ଣ୍ଣ ସ୍ଥାନ ଗଳି ରାସ୍ତା ଯେଉଁଠି ଆକ୍ଷରିକ ଭାବେ ଆପଣମାନଙ୍କୁ ପଥର ଫାଟମାନଙ୍କ ସନ୍ଧିରେ ଝିଟିପିଟିପରି ଗଳି ଆଗେଇବା ବ୍ୟତୀତ ଅନ୍ୟ ଉପାୟ ନଥିବ । ଆପଣଙ୍କର ଆଜିର ମାମଥ୍ କେଭ୍ ଦର୍ଶନ ପ୍ରୋଗ୍ରାମ୍ ଅନୁଯାୟୀ ଏକ ଦୀର୍ଘ ଅଢେଇଘଣ୍ଟିଆ ଟ୍ରେକିଂ ରାସ୍ତାରେ ଯାତ୍ରା ପଥ ଅତିକ୍ରମ କରିବାକୁ ହିଁ ହେବ । ମୁଁ ଏଠାରେ ଆପଣମାନଙ୍କୁ ସ୍ପଷ୍ଟ ଭାଷାରେ ସୂଚେଇ ଦେବାକୁ କହୁଚି ଯେ ଆପଣମାନଙ୍କ ଭିତରୁ ଯେଉଁମାନେ ସେଭଳି ଦୁଃସାହସିକ ଅଭିଯାନ ପାଇଁ ପ୍ରସ୍ତୁତ ନୁହନ୍ତି ସେମାନେ ବରଂ ଏଇଠାରେ ଅପେକ୍ଷା କରନ୍ତୁ । ଯେଉଁମାନେ ଏହି ଠାରୁ ଯାତ୍ରା ସମାପ୍ତ କରିବାକୁ ଇଚ୍ଛୁକ ଦୟାକରି ଆଗକୁ ଆସନ୍ତୁ ।”

କିଛି ସମୟ ନୀରବତା ପରେ ଦେଖାଗଲା କେହି ଆଗକୁ ଆସିଲେ ନାହିଁ । ସେଇ ମଉକାରେ ମୁଁ ଲକ୍ଷ୍ୟକଲି ଆମ ଦଳରେ ଥିଲେ ବାସ୍ତବିକ କେତେଜଣ ପୃଥୁଳକାୟ ଲୋକ ଯେଉଁମାନେ ଗାଇଡର କଥାରେ କିଛିଟା ବିଚଳିତ ହେଲା ପରି ଦିଶିଲେ । କିନ୍ତୁ ସେମାନେ ପଛେଇ ରହି ଯିବାକୁ ଆଦୌ ପ୍ରସ୍ତୁତ ନଥିଲେ ।

“So let’s start”... କଥା ଶେଷ ହେବା ପୂର୍ବରୁ ଲୋକଟା ହଠାତ୍ ଆମ ସମସ୍ତଙ୍କ ଦୃଷ୍ଟିରୁ ହଜିଗଲା । ଲାଗିଲା ସତେକି ସେ ଗୋଟାଏ ମୂଷା ପାଲଟିଗଲା ଆଉ ଆଖି ପିଛଡାକେ କୋଉ ଗାତରେ ପଶିଗଲା । ଆମକୁ ବୁଝିବାକୁ ଡେରି ହେଲା ନାହିଁ ଯେ ଆମ ସମସ୍ତଙ୍କ ସାମନାରେ ଦେଖାଯାଉଥିବା ମୂଷାଗାତ ଭଳି ଏକ ସଂକୀର୍ଣ୍ଣ ସୁଡଙ୍ଗର କିଟ୍‌କିଟ୍ ଅନ୍ଧାର ଭିତରକୁ ପଶିବା ପାଇଁ ନିର୍ଦ୍ଦେଶ କରିଥିଲା । ଏହାପରେ ଆମେ ସମସ୍ତେ ଗୋଟିଏ ଧାଡିରେ ସେଇ ଅନ୍ଧାରିଆ ସୁଡଙ୍ଗ ଭିତରକୁ ପ୍ରବେଶ କଲୁ ।

ଆମ ସାମ୍ନା ସୁଡଙ୍ଗ ପଥଟି ବାସ୍ତବରେ ଥିଲା ଏକ ପ୍ରାକୃତିକ ଗିରିସଂକଟ । ମାମଥ୍ କେଭ୍‌ର ସହସ୍ର ବିବର ଏବଂ ଗିରିସଂକଟ ଭିତରୁ ଏଇ ଗିରିସଂକଟଟି ଥିଲା ଆମର ଆଜିର ଚଲାପଥ । କିଞ୍ଚିତ୍ ଭିତରକୁ ପ୍ରବେଶ କରିବା ପରେ ଅନ୍ଧାର ଅଧିକରୁ ଅଧିକ ରହସ୍ୟମୟ

ହୋଇଉଠିଲା, ତା' ସହିତ ଏକ ଅସ୍ୱାଭାବିକ ଶବ୍ଦ ମଧ୍ୟ କାନରେ ବାଜିଲା– ସତେକି କୋଉଠି ଗୋଟାଏ ଜଳପ୍ରପାତରୁ ଗଦ୍‌ଗଦ୍ ହେଇ ପାଣି ପଡୁଚି ! ମନେହେଲା ସେ ଶବ୍ଦ- ସୁଡଙ୍ଗର ପଥର କାନ୍ଥ ଭିତରୁ ବାହାରୁଚି । କାନ୍ଥରେ କାନ ମାଡି ଶୁଣିଲେ ଶବ୍ଦଟା ସ୍ପଷ୍ଟ ଶୁଣାଗଲା ମଧ୍ୟ । ଅଦୃଶ୍ୟ ଗାଇଡ୍‌ଙ୍କ ସ୍ୱର ଶୁଣାଗଲା– This is Green, River flowing underground– you hear the sounds ? ମାଟି ତଳେ ପ୍ରବହମାନ ଗୋଟାଏ ନଈର ଶବ୍ଦ ନିଜ କାନରେ ଶୁଣିଥିଲେ ବି ମୁଁ ବିଶ୍ୱାସ କରି ପାରିଲି ନାହିଁ ନିଜ କାନକୁ । କିନ୍ତୁ ଆମ ପାଇଁ ତାହା ଥିଲା ରହସ୍ୟମୟ ମାମଥ୍ କେଭ୍‌ର ପ୍ରଥମ ରହସ୍ୟ ।

ସେତିକିବେଳେ ଆମ ଦଳରେ ଥିବା ଏକମାତ୍ର ଶିଶୁଟିର ଏକ ଭୟାର୍ତ୍ତ ଚିତ୍କାରରେ ଗୁମ୍ଫା ଭିତରଟା ଥରିଗଲା । ମୋ ପାଖେ ପାଖେ ଏପର୍ଯ୍ୟନ୍ତ ଚୁପ୍‌ଚାପ୍ ଚାଲିଥିବା ଆଠବର୍ଷର ନାତି ପ୍ରତୀକ ବୋଧହୁଏ ଭୟପାଇଗଲା । ମୋ ହାତକୁ ତା' କୁନିକୁନି ହାତମୁଠାରେ ଜାବୁଡି ଧରିପକେଇ ମୋ କାନରେ କହିଲା, "ଅଜା ! ତୁମେ ଗୋଟାଏ ଷ୍ଟୋରି କହୁଥିଲ ନା ପୃଥିବୀ ଭିତରେ ଗୋଟାଏ ସ୍ନେକ୍ କିଙ୍ଗଡମ୍ ଅଛି– ଯାହାର ନାଁ ପାତାଳ ! ସେଠି ଜାଏଣ୍ଟ୍ କିଙ୍ଗ୍ କୋବ୍ରାମାନେ ରହନ୍ତି– ସେମାନଙ୍କ କିଙ୍ଗ୍‌ର ନାଁ ବାସୁକି ! ତେବେ କ'ଣ ଆଜି ଆମେ ସେଇ ସ୍ନେକ୍‌କିଙ୍ଗ ବାସୁକିଙ୍କୁ ଭେଟିବାକୁ ଯାଉଚେ ପାତାଳକୁ ?"

ଏଥିରେ ସନ୍ଦେହ ନଥିଲା ଯେ ସେତେବେଳେ ଆମେ ସମସ୍ତେ ଥିଲୁ ଅନେକାଂଶରେ ଆତଙ୍କିତ । ମୁଁ ମୋ ନାତିକୁ ଆଶ୍ୱସ୍ତ କରିବାକୁ କହିଲି, "ବାସୁକି ଗୋଟାଏ ମିଥ୍, ଡରନା ବାପା । କିନ୍ତୁ ଆଜି ହୁଏତ ଆମେ ନିଶ୍ଚୟ ଏକ ଅଦ୍ଭୁତ ଅନୁଭୂତି ଏଇ ରହସ୍ୟମୟ ଅନ୍ଧାର ଭିତରୁ ପାଇବା । ତୁ ମୋ ହାତ ଧରି ପାଖେ ପାଖେ ଚାଲୁଥା ।"

ସେତେବେଳେ ଆମେ ଏକ ଆବଡା ଖାବଡା ଗଡାଣି ଦେଇ ଭୂତଳ ଦିଗରେ ଗତି କରୁଥାଉ । ଅନ୍ଧାର ନିବିଡରୁ ନିବିଡତର ହେବାରେ ଲାଗିଥାଏ । ମନେହେଉଥାଏ ଆମର ଗତିପଥ ମୁହେଁଇଥାଏ କେବଳ ଅନ୍ଧକାରର ହୃତ୍‌ପିଣ୍ଡ ଭିତରକୁ । ସେତେବେଳେ ଆଖିର କୌଣସି ଆବଶ୍ୟକତା ନଥାଏ । କେବଳ ଅନ୍ଧାରକୁ ପାଦରେ ଅଣ୍ଡାଳି ଅଣ୍ଡାଳି ପାଦେପାଦେ କରି ଭୂତଳକୁ ଅବତରଣ ବ୍ୟତୀତ ଆମର ଆବଶ୍ୟକ ପଡୁନଥାଏ ଅନ୍ୟ କୌଣସି ଅଙ୍ଗ- ପ୍ରତ୍ୟଙ୍ଗ– ଏପରିକି ଇନ୍ଦ୍ରିୟମାନଙ୍କର ।

କିଛି ବାଟ ସେଇଭଳି ଅନ୍ଧପରି ଅବତରଣ କରିବା ପରେ ହଠାତ୍ ଅଦୃଶ୍ୟ ଗାଇଡ୍‌ର ସ୍ୱର କେଉଁଠୁ ଶୁଭିଲା– "Are you all OK ? Now of course you are soon going to get a spacious breathing space! But the name of that space is little scary– it is known as : The Giant's Coffin."

– 'ଜାଏଣ୍ଟସ୍ କଫିନ୍' । ନାଁ ଟା ଶୁଣି ଆମେ ସମସ୍ତେ ତଟସ୍ଥ ହେଲୁ । କିନ୍ତୁ ପାଦ ଅଣ୍ଡାଳି ଅଣ୍ଡାଳି ଅଳ୍ପ କିଛି ବାଟ ଆଗେଇବା ପରେ ହଠାତ୍ ଏକ ଖୁବ୍ ପ୍ରଶସ୍ତ କୋଠରୀ

ଭଳି ଏକ ସ୍ଥାନରେ ଆମେ ପହଞ୍ଚିବାମାତ୍ରେ ଆଶ୍ୱସ୍ତିର ଏକ ମିଳିତ ଦୀର୍ଘନିଃଶ୍ୱାସରେ ସୁଡଙ୍ଗ ଭିତରଟି ପ୍ରତିଧ୍ୱନିତ ହୋଇଉଠିଲା । ଅନେକ ସମୟ ଧରି ଅକାମି ଆଖି ଗୁଡାକ ଆମର ହଠାତ୍ ଦୃଷ୍ଟିକ୍ଷମ ହେଲା ପରି ଜଣାପଡିଲେ । ଦେଖିଲୁ ଆମେ ଏକ ବେଶ୍ ବଡ କୋଠରୀ ଭିତରେ ପହଞ୍ଚିଯାଇଚୁ । କୋଠରୀଟିକୁ ଅର୍ଦ୍ଧ ଆଲୋକିତ କରାଯାଇଥାଏ ଯେପରି ଚତୁର୍ଦ୍ଦିଗକୁ ଆଖି ବୁଲେଇ ଦର୍ଶକ ସ୍ଥାନଟିର ରୂପରେଖ ବାରିପାରିବ ।

କିନ୍ତୁ ସେଇ କୋଠରୀର ଠିକ୍ କେନ୍ଦ୍ରସ୍ଥଳରେ ରଖାଯାଇଥିବା ଏକ ଅଦ୍ଭୁତ ଆକୃତିର ଜିନିଷ ଉପରେ ଆମ ସମସ୍ତଙ୍କ ଦୃଷ୍ଟି ସେତେବେଳକୁ ନିବଦ୍ଧ ହୋଇସାରିଥାଏ । ଜିନିଷଟି ପ୍ରକୃତରେ କ'ଣ ବୁଝି ହେଉନଥାଏ । ତା'ର ଆକୃତି ଠିକ୍ ଏକ କଫିନ୍ ପରି । ଏକ ବିଶାଳ କଫିନ୍ ଆକୃତିର ସେଇ ପଦାର୍ଥଟାକୁ ଦେଖି ମୁଁ କିଛି ଠଉରେଇ ପାରିଲିନାହିଁ । ଦେଖିଲି ଏଯାବତ୍ ଅଦୃଶ୍ୟ ଆମ ଗାଇଡ୍ ସେଇ ପଥର ନିର୍ମିତ ବିରାଟ ବାକ୍ସ କଡରେ ଠିଆହେଇଚନ୍ତି । ଆମେ ସମସ୍ତେ ତାଙ୍କ ନିକଟକୁ ଆସିବା ପରେ ସେ କହିଲେ, "ଏଇ ବାକ୍ସ ଭଳି ଦିଶୁଥିବା ବିଶାଳ ଚଉଖୁଣ୍ଟିଆ ପଥର ଖଣ୍ଡକ ଅବିକଳ ଏମିତି ଏ ହଲ୍ ମଝିରେ ରଖାଯାଇଥିବା ଦେଖିବାକୁ ମିଳିଥିଲା ଏ ଗୁମ୍ଫାର ମୂଳ ଆବିଷ୍କାରକଙ୍କୁ । କିନ୍ତୁ କ'ଣ ପାଇଁ ଏଖଣ୍ଡକ ଏଠି ରଖାଯାଇଚି ତାର କୌଣସି କାରଣ ଏପର୍ଯ୍ୟନ୍ତ ଜଣା ପଡିନାହିଁ ଆମକୁ । ତେଣୁ ଏ ପଥର ଖଣ୍ଡକର ଏଭଳି ନାମକରଣ The Giant's Coffin ।"

ପରେପରେ ପୁଣି ଆଗକୁ ଆରମ୍ଭ ହେଲା ଯାତ୍ରା ଆମ ଦଳର । ଏଥର ସୁଡଙ୍ଗ ବାଟଟି ଆହୁରି ସଂକୀର୍ଣ୍ଣ ହୋଇଆସିଲା । ମୁଣ୍ଡ ଉପର ଛାତଟା ଏତେ ନୁଆଁଣିଆ ହେଇଆସିଲା ଯେ ଏଠି କେବଳ ଆଣ୍ଠୁମାଡି ଗୁରୁଣ୍ଡି ଗୁରୁଣ୍ଡି ବାଟ ଚାଲିବା ବ୍ୟତୀତ ଅନ୍ୟ କିଛି ଚାରା ନଥାଏ ଆଗକୁ ବଢିବାକୁ । ସେମିତି କେତେବେଳ ଗୁରୁଣ୍ଡି ଗୁରୁଣ୍ଡି ଚାଲିବା ପରେ ମୁଣ୍ଡ ଉପର ନୁଆଁଣିଆ ଗୁମ୍ଫାଟା ଫର୍ଚ୍ଚେଇ ଗଲା ଭଳି ଲାଗିଲା । ସୁଡଙ୍ଗ ଭିତରେ ଏଥର ସିଧା ଠିଆ ହେଇ ହେଲା । ମନେହେଲା ଆମେ ସେତେବେଳେ ଗୋଟାଏ ବିରାଟ ହଲ୍‌ର ଦ୍ୱାର ବାଟ ଦେଇ ପ୍ରବେଶକରୁଥାଉ କୌଣସି ଏକ ବିରାଟ ଖୋଲାମେଲା ଅଉ ଭୀଷଣ ଥଣ୍ଡା ଜାଗାକୁ ।

ଗାଇଡ୍‌ର ସ୍ୱର ଶୁଣାଗଲା– "ବନ୍ଧୁଗଣ ! ଏଥର ଆପଣମାନେ ମୁଣ୍ଡ ଉପରକୁ କରି ସିଧା ହେଇ ଠିଆ ହେବା ପାଇଁ ଯଥେଷ୍ଟ ଜାଗା ପାଇଯିବେ । ଆମେ ବର୍ତ୍ତମାନ ପହଞ୍ଚି ସାରିଲୁଣି ଗୋଟାଏ ବଢିଆ ଜାଗାରେ । ଆପଣମାନଙ୍କ ପାଇଁ ଗୋଟାଏ ବଢିଆ ଖବର । ଏ ପ୍ରଶସ୍ତ ଜାଗାଟାର ନାଁ ଆପଣ ନିଷ୍ଚୟ ଟୁରିଜିମ୍ ମ୍ୟାପ୍‌ରୁ ପାଇଥିବେ ଏଠାକୁ ଆସିବା ଆଗରୁ! ମ୍ୟାପ୍‌ରେ ଦେଖିଥିବେ ଏ ଜାଗାର ନାଁ Tuberculosis Sanatorium ! ତେବେ ଡରିବାର କିଛି ନାହିଁ । ଏ ଜାଗାରେ ବର୍ତ୍ତମାନ ସେପରି କୌଣସି ସାନାଟୋରିୟମ୍ ଚାଲୁନାହିଁ । କିନ୍ତୁ କିଛି ବର୍ଷ ତଳେ ଜଣେ ଆମେରିକାନ୍ ଡାକ୍ତର କେଜାଣି କାହିଁକି ଏଇ

ଜାଗାଟାକୁ ବାଛିଥିଲେ ତାଙ୍କର ଟି.ବି. ସାନାଟୋରିୟମ୍ ପାଇଁ । ଯକ୍ଷ୍ମାରୋଗରେ ପୀଡିତ ରୋଗୀମାନଙ୍କୁ ସଂପୂର୍ଣ୍ଣ ଆରୋଗ୍ୟ କରିବା ଉଦ୍ଦେଶ୍ୟରେ ସେ ଡାକ୍ତର ଗୋଟାଏ ଅଭିନବ ସ୍ଥାନ ବାଛିଥିଲେ– ଭୂତଳର ଗଭୀର ଅନ୍ଧାକାରାଚ୍ଛନ୍ନ ଆଉ ଥଣ୍ଡାଜାଗା– ମାମଥ୍ କେଭ୍‌ର ଏଇ ଗହ୍ୱରଟାକୁ ! କଅଣ ଭାବି ସେ ମନୋନୀତ କରିଥିଲେ ଏଭଳି ଏକ ସ୍ଥାନକୁ ଯକ୍ଷ୍ମାନିବାସ ପାଇଁ ସେ ଜାଣିଥିବେ । ବୋଧହୁଏ ତାଙ୍କ ମତରେ ଭୂଗର୍ଭର ଅନ୍ଧାର ଆଉ ଶୀତଳ ବାତାବରଣହିଁ ଦୁରାରୋଗ୍ୟ ଯକ୍ଷ୍ମାରୋଗୀଙ୍କ ଆରୋଗ୍ୟ ପାଇଁ ଏକ ଐଶ୍ୱରିକ ବରଦାନ । ରେକର୍ଡପତ୍ରରୁ ଜଣାଯାଏ ସେ ଡାକ୍ତର ଜଣକ ତାଙ୍କ ଚିକିତ୍ସାଧୀନ ବହୁ ଯକ୍ଷ୍ମା-ରୋଗୀଙ୍କୁ ଚିକିତ୍ସା ପାଇଁ ଏଇ ସ୍ଥାନରେ ତାଙ୍କ ଚିକିତ୍ସାଳୟ ଓ ଆରୋଗ୍ୟ ନିକେତନଟିକୁ ପ୍ରତିଷ୍ଠା କରିଥିଲେ । ସାନାଟୋରିୟମଟି ବେଶ୍ କିଛି ବର୍ଷ ଚାଲିଲା । କିନ୍ତୁ ଦୁଃଖର କଥା ତାଙ୍କ ଚିକିତ୍ସାଧୀନ ସବୁତକ ରୋଗୀ ମରିଗଲେ ।''

– "ଏଁ ମରିଗଲେ ?''– ଗୋଟାଏ ମିଳିତ ହାହାକାର ଶୁଣାଗଲା ।

କିନ୍ତୁ ଆମ ହାହାକାରକୁ ଉପହାସ କରି ଗାଇଡ୍‌ର ହସଟାଏ ବି ଶୁଣିବାକୁ ମିଳିଲା– "ହଁ ଆଜ୍ଞା ସମସ୍ତେ ମରିଗଲେ ଆଉ ମରି କରି ବାଦୁଡି ପାଲଟିଗଲେ ! ଦେଖୁ ନାହାନ୍ତି ହେଇ ସେଠି ଆପଣଙ୍କ ମୁଣ୍ଡ ଉପର ଛାତରୁ ଲଟକିଚନ୍ତି ସେମାନେ !''

ଏଥର ଏକ ସମ୍ମିଳିତ ହାସ୍ୟରୋଳରେ ଗୁମ୍ଫା ଭିତରଟା କମ୍ପିଗଲା । ସେ କମ୍ପନରେ ଗୁମ୍ଫା ଭିତରର ଥଲ ଥଲ ଅନ୍ଧାର ବି ନାଚିଉଠିଲା । କିନ୍ତୁ ଆମ ଦଳର କନିଷ୍ଠତମ ସଭ୍ୟ ବିଚରା ଉଡିଆଣି ଛୁଆଟିର ନିଦ ବୋଧେ ଭାଂଗିଗଲା ! ସେ ବିଚରା ପୁଣିଥରେ ଚିରଚିରେଇ ଉଠିଲା । ତାକୁ ପ୍ରବୋଧନା ଦେବାକୁ ବିଚାରି ମା'ଟିକୁ ତାର ବହୁ କଷ୍ଟ କରିବାକୁ ପଡିଥିଲା ।

ଗାଇଡ୍‌ଙ୍କ ନିର୍ଦ୍ଦେଶରେ ଆମ ଦଳର ଯାତ୍ରା ପୁଣି ଆରମ୍ଭ ହେଲା । ପୁଣି ଆରମ୍ଭ ହେଲା ଗୁରୁଣ୍ଡିବା, ଲେପେଟେଇବା, ଓଃ ଆଃ ବାପଲୋ ମାଆଲୋ ଭଳି ଆର୍ତ୍ତନାଦ । ସେଇଭଳି ଅନେକ ବାଟ ଯିବା ପରେ ଆମେ ପହଞ୍ଚିଲୁ ଗୋଟିଏ ପ୍ରଶସ୍ତ ଗୁମ୍ଫା ଭିତରେ । ହଠାତ୍ ଗୁମ୍ଫା କାନ୍ଥରେ ଏଯାବତ୍ ମିଞ୍ଜିମିଞ୍ଜି ହେଇ ଜଳୁଥିବା ସବୁତକ ଫୁଟ୍ ଲାଇଟ୍ ଏକାସାଙ୍ଗେ ଥପ୍ କିନା ଲିଭିଗଲା । ମାଡିଆସିଲା ଅନ୍ଧାର– ବହଳିଆ କଳା କିଟିକିଟି ପିଚୁ ଭଳି ଅନ୍ଧାର ! ଅବଶ୍ୟ ମାମଥ୍ କେଭ୍ ଭିତରକୁ ପ୍ରବେଶ ମୁହୂର୍ତ୍ତରୁ ଅନ୍ଧାର ସାଙ୍ଗରେ ଆମର ଗୋଟିଏ ବୁଝାମଣା ହେଇସାରିଥାଏ । କିନ୍ତୁ ଏଥର ଯେଉଁ ଅନ୍ଧାର ସହିତ ଆମର ମୁକାବିଲା ହେଲା ତାର ରୂପ ଗୁଣ ଥିଲା ସଂପୂର୍ଣ୍ଣ ଭିନ୍ନ ।

ନିସ୍ତବ୍ଧତା ଓ ଅନ୍ଧକାରର ସମ୍ମିଳିତ ପ୍ରଭାବକୁ ଭୂଗର୍ଭରେ ଅନୁଭବ କରିବା ଏକ ଆଧ୍ୟାତ୍ମିକ ସାତ୍ତ୍ୱିକ ଯୋଗ ପ୍ରକ୍ରିୟା ବୋଲି ଶୁଣିଥିଲି ମୁଁ । ବର୍ତ୍ତମାନ ସେଇ ପ୍ରକାର ଅନୁଭବ ପ୍ରଗାଢତର ହୋଇଉଠିଲା । ଏକ ଦିବ୍ୟ ଆନନ୍ଦ ମତେ ଆଚ୍ଛନ୍ନ କରିନେଲା ।

ସେତିକିବେଳେ ଆମ ଗାଇଡ୍‌ର ସ୍ୱର ଶୁଭିଲା, "ଆହା– ଏ ତ ବଡ ସାଂଘାତିକ! ପାୱାର୍ ଫେଲ୍ୟୁଅର୍ ! ହେ ଭଗବାନ୍ ! ଏଇଲେ ହବ କ'ଣ? ଆମକୁ ତ ଆଗକୁ ଅନେକ ବାଟ ଚାଲିବାକୁ ଅଛି। ଏ ଗୁମ୍ଫାରୁ ବାହାରି ଦିବାଲୋକ ଦେଖିବା କେମିତି କେଜାଣି ଆଜି! – ଆପଣମାନେ ଏଭଳି ଅନ୍ଧାର ଭିତରେ ଅଣ୍ଡାଳିଅଣ୍ଡାଳି ବାଟ ଚାଲିପାରିବେତ ! ତେବେ ବନ୍ଧୁଗଣ ଭୟନାହିଁ– ଆମ ପାଖରେ ଅନ୍ୟ ବ୍ୟବସ୍ଥା ଅଛି– ଟିକେ ଧୈର୍ଯ୍ୟର ସହିତ ଚୁପ୍‌ଚାପ୍ ଏଇଠି ତଳେ ବସିପଡନ୍ତୁ– ମୁଁ ଖୁବ୍ ଶୀଘ୍ର ବ୍ୟବସ୍ଥା କରିଦଉଚି. . . ଅପେକ୍ଷା କରନ୍ତୁ। ମୁଁ ଭାବୁଚି ଏଇଠି କୋଉଠି ଗୋଟାଏ କଣରେ ଗୋଟାଏ ପେଟ୍ରୋମାକ୍ସ ଲାଇଟ୍ ଥିଲା– ମୁଁ ଦେଖେ। . . .ଆପଣମାନେ ଧୈର୍ଯ୍ୟ ରକ୍ଷାକରନ୍ତୁ।". . .

ଏହା ପରେ ସେ ଟୋକା ଗାଇଡ୍ ତା' ପକେଟ୍‌ରୁ ଗୋଟାଏ ଟର୍ଚ୍ଚ ବାହାରକଲା। ଆଉ ଅନ୍ଧାର ଭିତରେ ଚାରିଦିଗକୁ ସର୍ଚ୍ଚ ଲାଇଟ୍ ପକେଇଲା ଭଳି କ'ଣ ଖୋଜାଖୋଜି କଲା। ଶେଷରେ ଆବୁଡା ଖାବୁଡା ପଥର୍ ଗୁଡାକୁ ଗୁମ୍ଫାକାନ୍ଥରେ ଏଣେତେଣେ ଦରଣ୍ଡା-ଦରଣ୍ଡି କରି ଗୋଟାଏ ପେଟ୍ରୋମାକ୍‌ସ୍ ଲାଇଟ୍ ଖୋଜି ବାହାରକଲା। କିନ୍ତୁ ପେଟ୍ରୋମାକ୍ସଟାକୁ ଜଳାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ, ଆଦୌ ସମର୍ଥ ହେଲା ନାହିଁ ସେ। ବହୁ ଚେଷ୍ଟା ସତ୍ତ୍ୱେ ପେଟ୍ରୋମାକ୍ସ ନଜଳିବା ହେତୁ ଲୋକଟା ସତରେ ଖୁବ୍ ଆତଙ୍କିତ ହୋଇଉଠିଲା। ତାର ଆତଙ୍କ ତତ୍‌କ୍ଷଣାତ୍ ସଂକ୍ରମିତ ହେବାକୁ ଲାଗିଲା ଆମ ଟୁରିଷ୍ଟ୍ ଦଳକୁ। ଆମ ଭିତରୁ ନାନାପ୍ରକାର ଗୁଞ୍ଜରଣ ଓ ଅଭିଯୋଗମାନ ଶୁଣାଗଲା। ହଠାତ୍ ଗୋଟାଏ ହାହତୋସ୍ମି ଭାବର ପ୍ରକାଶ ଘଟିଲା। କେହି ଜଣେ ଚିତ୍‌କାର କରିଉଠିଲା– Oh God ! I am getting suffocated ! What will happen now if the power does not return soon ! We might all perish here in this hell hole. . . (ହେ ଭଗବାନ୍ ! ମୋ' ନିଶ୍ୱାସ ରୁନ୍ଧିହେଇ ଯାଉଚି ! ଯଦି ଲାଇନ୍ ଆଉ ନଆସେ? ତେବେ୍ କ'ଣ ଏଇ ନରକର ଅନ୍ଧାରରେ ମରିବା ଯୋଗ ଅଛି ଆଜି ଆମ ସମସ୍ତଙ୍କର ?)

ବିଚରା ଗାଇଡ୍ ଜଣକ ସେତେବେଳେ କଣ କରୁଥାନ୍ତି କେଜାଣି ! ତାଙ୍କ ହାତର ଛୋଟ ଟର୍ଚ୍ଚ ଲାଇଟ୍‌ର ମିଞ୍ଜିମିଞ୍ଜି ଆଲୁଅକୁ ଗୁମ୍ଫା ଭିତରର ପ୍ରଗାଢ ଅନ୍ଧକାର ରାହୁ ଭଳି ଗିଳିପକାଉଥାଏ। ମନେହଉଥାଏ ଆମେ ସେତେବେଳେ ଗୋଟାଏ ବ୍ଲାକ୍‌ହୋଲ ଭିତରକୁ ଖସିପଡିଥାଉ ଯୋଉଠୁ ମୁକ୍ତିର ରାହା ଆଉ ଦିଶୁନଥାଏ ।

ହଠାତ୍ ଏକ ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଘଟଣା ଘଟିଲା। ସେଇ କୃଷ୍ଣଗର୍ତ୍ତ ଭିତରେ ଜଣେ ସୁନ୍ଦରୀ ତରୁଣୀଙ୍କର ଆବିର୍ଭାବ ହେଲା। ସ୍ୱର୍ଗଦୂତ ପରି ଆବିର୍ଭୂତା ସେ ତରୁଣୀଙ୍କ ହାତରୁ ଝୁଲୁଥାଏ ଏକ ଜଳନ୍ତା ପେଟ୍ରୋମାକ୍ସ। ଅନ୍ଧାର ଭିତରେ ସେପରି ଅଯାଚିତ ଭାବେ ଆଲୋକର ଆବିର୍ଭାବ ଆମ ସମସ୍ତଙ୍କୁ ଅବାକ୍ କରିଦେଲା। କିନ୍ତୁ କିଏ ସେ ତରୁଣୀ! କେଉଁଠୁ ଆସିଲେ ସେ? ସେ କ'ଣ ଜଣେ ଷ୍ଟାଣ୍ଡ୍‌ଗାଇଡ୍ ଯାହାଙ୍କୁ ପୂର୍ବରୁ ନିଯୁକ୍ତ କରାଯାଇଥିଲା ଏଇଭଳି

ଏକ ନାଟକ ରଚନା ପାଇଁ ? କିନ୍ତୁ ଭୂଗର୍ଭରେ ତାଙ୍କପରି ଜଣେ ସୁନ୍ଦରୀ ତରୁଣୀଙ୍କର ଏକାନ୍ତରେ ସେପରି ଆବିର୍ଭାବକୁ କେହି ସହଜରେ ଗ୍ରହଣ କରିନେବାକୁ ପ୍ରସ୍ତୁତ ନଥିଲୁ ।

ରହସ୍ୟମୟୀ ତରୁଣୀ ତାଙ୍କ ହାତର ଜ୍ୱଳନ୍ତ ପେଟ୍ରୋମାକ୍ସ ଲାଇଟ୍‌ଟିକୁ ଆମ ଗାଇଡ୍‌ଙ୍କ ହାତକୁ ବଢେଇଦେଲେ ଆଉ ତାଙ୍କ ହାତରୁ ପୁରୁଣା ପେଟ୍ରୋମାକ୍ସଟିକୁ ନେଇ ଚୁପ୍‌ଚାପ୍ ଅନ୍ତର୍ହିତ ହୋଇଗଲେ ଘନ ଅନ୍ଧକାରମୟ ସୁଡଙ୍ଗ ଭିତରେ ।

ହାତରେ ଜଳନ୍ତା ପେଟ୍ରୋମାକ୍ସଟିକୁ ଝୁଲେଇଧରି ଗାଇଡ୍ ନିର୍ଦ୍ଦେଶ ଦେଲେ, "ଏଥର ଚାଲନ୍ତୁ– ଆମକୁ ବର୍ତ୍ତମାନ ଅନେକଗୁଡ଼ାଏ ବାଟ ଚାଲିବାକୁପଡିବ ଆଗକୁ ଏଇ ଗ୍ୟାସ୍‌ଲାଇଟ୍ ଆଲୁଅରେ ।''– ଯା କହୁ କହୁ କ'ଣ ପାଇଁ ଲୋକଟା ଫେଁ-କିନା ହସିପକେଇଲା ।

ଲୋକଟାର ହସରୁ ମନେହେଲା ସେ କିଛି ଗୋଟାଏ କହିବାକୁ ଚାହୁଁଥାଏ ଅଥଚ କହୁନଥାଏ । ଜଣେ କିଏ ଆମ ଭିତରୁ ତାଙ୍କୁ ପଚାରିଲେ, "ହୋ ଗାଇଡ୍ ମହାଶୟ । ଏ ସବୁ ଯାହା ଘଟିଗଲା ସେଗୁଡାକ କ'ଣ ସତ ନା ନାଟକ ମାତ୍ର ? ସେ ଝିଅଟି କିଏ ଯେ ଦେବଦୂତ ପରି ହାତରେ ଆଲୋକ ବର୍ତ୍ତିକା ଧରି ସେପରି ନାଟକୀୟ ଭାବେ ଆବିର୍ଭୂତ ହେଲା ?– ସେ ମହିଳା ଆପଣଙ୍କ କଲିଗ୍ ଜଣେ ଟି ?"

ଗାଇଡ୍‌ଙ୍କ ଉତ୍ତର ଥିଲା ମୋ' ପାଇଁ ଏକ ସ୍ମରଣୀୟ ଉକ୍ତି । ସେ କହିଲେ, "ଶୁଣନ୍ତୁ– ଅନ୍ଧାର ଆଉ ନିସ୍ତବ୍ଧତା ଏ ଦୁଇ ହେଲା ମଣିଷ ପାଇଁ ଅତ୍ୟନ୍ତ ଆନନ୍ଦମୟ ସାତ୍ତ୍ୱିକ ଅନୁଭବ । ଏ ଦୁଇର ମିଳିତ ଅନୁଭବ ମିଳିପାରେ କେବଳ ଦୁଇଟି ସ୍ଥାନରେ– ମହାକାଶରେ କିମ୍ବା ଭୂଗର୍ଭରେ । ମହାକାଶରେ ବିଚରଣ କରିଥିବା ଅଷ୍ଟ୍ରୋନଟ୍‌ମାନେ କହନ୍ତି ମହାକାଶର ଅନ୍ଧକାର ଆଉ ନିସ୍ତବ୍ଧତା ସେମାନଙ୍କୁ ଐଶ୍ୱରିକ ଆନନ୍ଦ ଦିଏ । ସେଇଭଳି ଖଣିଖାଦାନରେ କାମ କରୁଥିବା ଲୋକେ କହନ୍ତି ଭୂପୃଷ୍ଠ ଅପେକ୍ଷା ଭୂତଳ କୁଆଡେ ପରମ ଶାନ୍ତିଦାୟକ ସ୍ଥାନ । ମାମଥ୍ କେଭ୍‌ର ଭିଜିଟର୍‌ମାନଙ୍କୁ ଆମେ ସେଇ ସାତ୍ତ୍ୱିକ ଆନନ୍ଦର କିଞ୍ଚିତ୍ ସ୍ୱାଦ ପରିବେଷଣ ଲକ୍ଷ୍ୟରେ ଆମପକ୍ଷରୁ ଏଇ ନାଟକଟିର ବ୍ୟବସ୍ଥା କରାଯାଇଚି ଯାହା ଆପଣମାନେ ନିଶ୍ଚୟ ଅନୁଭବ କରିପାରିଥିବେ । ଏ ଏକ ରୁଟିନ୍ ମନୋରଂଜନ ବ୍ୟବସ୍ଥା । ଏଥିରେ କାହାର କିଛି ଅସୁବିଧା ହୋଇଥିଲେ କ୍ଷମା କରିବେ . . . ଏବେ ଚାଲନ୍ତୁ ଯିବା ଆଗକୁ । ଆଗରେ ଆହୁରି ଆହୁରି ବିସ୍ମୟ ଅପେକ୍ଷା କରି ରହିଚି ଆପଣମାନଙ୍କ ପାଇଁ ବନ୍ଧୁ ଗଣ !''

ଆମେ ଗାଇଡ୍‌ଙ୍କର ଅନୁଧାବନ କଲୁ । ସେ ତାଙ୍କ ହାତରେ ଧରିଥିବା ପେଟ୍ରୋମାକ୍ସ ଆଲୁଅରେ ଆମକୁ ସୁଡଙ୍ଗର ଏକ ଢାଲୁ ରାସ୍ତାରେ ବାଟ କଢୋଉଥାନ୍ତି । ବାଟଟା ମୁହେଁଇ-ଥାଏ କୌଣସି ଏକ ଗଭୀର ଗର୍ତ୍ତ ଭଳି ସ୍ଥାନକୁ । ତଳ୍‌ମୁହାଁ ପଡିଥିବା ସେ ରାସ୍ତାରେ କେତେ ଗଭୀରତା ଭିତରକୁ ଓହ୍ଲେଇ ଯିବା ପରେ ହଠାତ୍ ଏକ ଜଳପ୍ରପାତର ଘୁ ଘୁ ଶବ୍ଦ ବାଜିଲା କାନରେ । ଭୟରେ ଦେହ ଶୀତେଇଗଲା । ମାଟି ତଳେ ଜଳପ୍ରପାତ ! ମନେ-ପଡିଗଲା କେତେବର୍ଷ ତଳେ ବିହାରର ଧାନବାଦ କୋଇଲା ଖଣିର ଦୁର୍ଘଟଣା । ଖଣି

ଭିତରକୁ ପଶିଆସିଲା ନଈବଢି ପାଣି । ଜଳବନ୍ଦୀ ଖାଦାନ ଶ୍ରମିକମାନେ ମାସାଧିକ କାଳ ଅଟକି ରହିଲେ ଖଣି ଭିତରେ । ଅନେକ ମରିଗଲେ । ଖୁବ୍ କମ୍ ଲୋକ ବର୍ତ୍ତିଥିଲେ ସେଇ ଦୁର୍ଘଟଣାରୁ । ସେଇ ଭୟ ଗ୍ରାସୁଥାଏ ମତେ ସେତେବେଳେ ।

ଧୀରେ ଧୀରେ ଆମେ ଆମ ସୁଡଙ୍ଗ ରାସ୍ତାରେ ଅଗ୍ରସର ହେଉଥାଉ । ଶେଷରେ ସତକୁ ସତ ଗୋଟାଏ ଜଳପ୍ରପାତ ପାଖରେ ନେଇ ଆମକୁ ପହଞ୍ଚେଇ ଦେଲେ ପେଟ୍ରୋମାକ୍ସ ମସାଲ୍ ଧାରୀ ଆମ ଗାଇଡ୍ ।

ହଠାତ୍ ସୁଡଙ୍ଗ ଭିତରଟି ଆଲୋକିତ ହୋଇଗଲା । ଏଯାବତ୍ ବନ୍ଦରହିଥିବା ବିଦ୍ୟୁତ୍ ସରବରାହ ପୁଣି କାର୍ଯ୍ୟକ୍ଷମ ହେବାରୁ ଗାଇଡ୍ ତାଙ୍କ ହାତର ଜଳନ୍ତା ପେଟ୍ରୋମାକ୍ସ ଲାଇଟ୍‌ଟିକୁ ଲିଭେଇଦେଇ କହିଲେ, "ଅନ୍ଧାର ପରେ ଏଥର ଆରମ୍ଭହେବ ଅନ୍ୟପ୍ରକାରେ ଅନୁଭବ ଆପଣମାନଙ୍କର । ଏଇ ଦେଖନ୍ତୁ— ଏଇ ପଥର କାନ୍ଥର ଫାଟମାନଙ୍କରୁ କେମିତି ପାଣି ଝରୁଚି ଗଦ୍‌ଗଦ୍ ହେଇ ଦେଖୁଚନ୍ତି ? ଏ ପାଣି କୋଉଠୁ ଆସୁଥାଇପାରେ ଭାବନ୍ତୁ ! ମନେରଖନ୍ତୁ ଏଇ ଯୋଉ କାନ୍ଥ ଏପାଖେ ଠିଆହେଇଚନ୍ତି ଆପଣମାନେ ଠିକ୍ ତା'ର ଆରପାଖେ ଭୂଗର୍ଭରେ ପ୍ରବାହିତ ହଉଚି ଏକ ବିଶାଳ ନଦୀ— ଗ୍ରୀନ୍ ରିଭର୍ ! ଆମେ ବର୍ତ୍ତମାନ ଠିଆହେଇଚେ ଗ୍ରୀନ୍ ନଦୀର ଜଳ ପତ୍ତନର ଢେର୍ ତଳ ଲେଭଲ୍‌ରେ । ଦେଖନ୍ତୁ ନଦୀଜଳ କେମିତି କାନ୍ଥ ଫାଟ ଦେଇ ଅନେକ ଜାଗରେ ଲିକ୍ କରୁଚି ଆମର ଏଇ ସୁଡଙ୍ଗ ଭିତରକୁ । ଥରେ ଥରେ ନଦୀରେ ବନ୍ୟା ଆସିଲେ ଏ ସୁଡଙ୍ଗଟା ଜଳମଗ୍ନ ହେଇଯାଏ । ସେତେବେଳେ ଏ ବାଟେ ଟୁରିଜିମ୍ ବନ୍ଦ । ବର୍ତ୍ତମାନ ଅବଶ୍ୟ ସେ ଭୟ ନାହିଁ । ଆପଣମାନେ ଉପଭୋଗ କରନ୍ତୁ ଏଇ ଭୟଙ୍କର ବିପଜ୍ଜନକ ସ୍ଥାନରେ ଆପଣଙ୍କ ନିଜନିଜର ସ୍ଥିତିକୁ ।"

ଆମ ଦଳଟି ସେଇଠି କିଛି ସମୟ ଅଟକିବା ଭିତରେ ମୁଁ ଚାରିଆଡକୁ ଆଖି ବୁଲେଇ ଜାଗାଟାକୁ ଭଲକରି ସର୍ଭେ କରୁକରୁ ହଠାତ୍ ମୋ ଆଖିରେ ପଡିଲା ଏକ ବିଶାଳ ଶିବଲିଙ୍ଗ ! ଅବଶ୍ୟ ସେଇ ଶିବଲିଙ୍ଗ ଆକୃତିର ଷ୍ଟାଲାଗ୍‌ମାଇଟ୍‌ରେ ହୁଙ୍କାଗୁଡିକୁ ଆମେରିକାର ବହୁ ସ୍ଥାନରେ, ବିଶେଷତଃ ଭୂତଳ ଗୁମ୍ଫା ଗୁଡିକ ଅନ୍ତରାଳରେ ଆବିଷ୍କାର ମୋ ପାଇଁ ନୂଆ ନଥିଲା ସେତେବେଳକୁ । ଗତଥରର ଆମେରିକା ଭ୍ରମଣ ସମୟରେ ମୁଁ ଥରେ ଟେନାସୀର ଲଷ୍ଟ୍-ସି ନାମକ ଏକ ଐତିହାସିକ ଭୂତଳ ଗୁମ୍ଫାର ଘୋର ଅନ୍ଧକାରମୟ ସ୍ଥାନରେ ଏହିପରି ଏକ ରହସ୍ୟମୟ ଶିବଲିଙ୍ଗଙ୍କ ଦର୍ଶନ ପାଇଥିଲି ଯାହାଙ୍କ ଉପରେ ଦୁର୍ଲଭ କ୍ରିଷ୍ଟାଲ୍ ଫ୍ଲାୱାର୍ସ ସବୁ ଆପେଆପେ ଫୁଟିଥିବାର ଦୃଶ୍ୟ ମତେ ଅଭିଭୂତ କରିଥିଲା । ସେ ବିଷୟ ପୂର୍ବରୁ ଆଲୋଚନା କରିଚି; କିନ୍ତୁ ଏଥର ଆମେରିକା ଭ୍ରମଣ ସମୟରେ କେଣ୍ଟକୀ ରାଜ୍ୟର ବିଖ୍ୟାତ ମାମଥ୍ କେଭ୍‌ର ଦେଢଶହ ଫୁଟ୍ ଅନ୍ତରାଳରେ ପୁନର୍ବାର ଶିବଦର୍ଶନଜନିତ ଅଭିଜ୍ଞତା ମୋର ଭାରତୀୟ ଆତ୍ମାକୁ ଗଭୀର ଭାବେ ପ୍ରଭାବିତ କରିବା ଆରମ୍ଭକଲା । ମୋ' ଓଠରୁ ନିରବରେ ଉଚ୍ଚାରିତ ହେଲା— ଓଁ ନମଃ ଶିବାୟ ।

ନାତି ପ୍ରତୀକ ମୋ ପାଖେ ପାଖେ ରହି ମୋର ହାବଭାବ ପ୍ରତି ଲକ୍ଷ୍ୟ ରଖିଥାଏ ନିଶ୍ଚୟ । କିନ୍ତୁ ସେ ମଧ୍ୟ ଗୁମ୍ଫା ଭିତରେ ଗଢ଼ିଉଠିଥିବା ସେଇ ଶିବଲିଙ୍ଗାକୃତି ବିଶାଳ 'ଫର୍ମେସନ୍'ଟିକୁ ଦେଖିପକେଇ ଆବିଷ୍କାର କଲା ପରି ଖୁସିରେ ମୋ କାନରେ କହିଲା, "ଅଜା ! ଅଜା ! ଏଠି ଶିବ ଅଛନ୍ତି ଦେଖୁଚ !"

"ହଁ ବାପା, ଏ ହେଲା ଆମ ଭରତୀୟ ପୁରାଣର ପାତାଳପୁର । ଯାକୁ ସିନା ଏମାନେ କହୁଚନ୍ତି ମାମଥ୍ କେଭ୍, କିନ୍ତୁ ପୁରାଣ ମତରେ ଏ ସ୍ଥାନର ନାମ ହେଲା ପାତାଳର ନାଗଲୋକ । ନାଗଲୋକର ସମ୍ରାଟ୍ କିଏ ଜାଣୁ– ବାସୁକି ମହାରାଜ । ନାଗମାନେ ଶିବଙ୍କ ଭକ୍ତ । ବର୍ତ୍ତମାନ ଆମେ ସେମାନଙ୍କର ଆରାଧ୍ୟ ଦେବ ଶିବଙ୍କର ଦର୍ଶନ ପାଇଗଲେ । ମନେହେଉଚି ବାସୁକିଙ୍କ ରାଜଧାନୀ ଆଉ ବେଶୀ ଦୂରରେ ନଥାଇପାରେ । ଅପେକ୍ଷାକର– ଆମେ ଆଜି ନିଶ୍ଚେ ଦର୍ଶନ କରିବା ବାସୁକିଙ୍କୁ". . . କାନରେ ଫିସ୍‌ଫିସ୍ କରି କହିଲି ନାତିର ।

ପ୍ରତୀକ ହାତର ନରମ ପାପୁଲିଟିକୁ ମୁଠେଇଧରିଲି– ଖୁବ୍ ଥଣ୍ଡା ଲାଗୁଥାଏ ପିଲାଟାର ହାତଟା ମୋ ଉଷୁମ ହାତକୁ । ପଚାରିଲି– ଡରୁଚୁ କି ଧନ ? ଆମେ ତ ପ୍ରାୟ ଦୁଇଘଣ୍ଟା ଧରି ଚାଲିଲେଣି ଏ ଅନ୍ଧକାରମୟ ଭୂଗର୍ଭ ସୁଡଙ୍ଗଟାରେ– ଥକି ଯିବୁଣି ନିଶ୍ଚେ । ଆଉ ତ ଅଧଘଣ୍ଟାକର ବାଟ । ଧୈର୍ଯ୍ୟ ରଖ । ଏଠି ଅନେକ କଥା ଶିଖିବାର ଅଛି ତୋର ଯୋଉଗୁଡ଼ାକ ତୋ' କାମରେ ଆସିବ ଜୀବନରେ ଭବିଷ୍ୟତରେ । ତୁ ପରା କବିତା ଲେଖୁ– ମନେରଖିଥା– ଏଇ ମାମଥ୍ କେଭ ଭିତରେ ଚାଲିବାର ଅନୁଭୂତି ଦିନେ ତତେ କବିତା ଲେଖାରେ ବହୁତ କାମଦେବ ।

କାନ୍ଥ ଆରପାଖେ ପ୍ରବାହିତ ଗ୍ରିନ୍ ରିଭର୍ କଡେ କଡେ ବେଶ୍ କିଛି ଦୂର ସେଇ ସଂକୀର୍ଣ୍ଣ ସୁଡଙ୍ଗ ବାଟରେ ଚାଲୁଚାଲୁ ଖୁବ୍ ଥକିପଡିଥାଉ ଆମେ ଦଳକଯାକ ଯାତ୍ରୀ । ଥରେ ଅଧେ ଢୁଙ୍କା ହେଲାଣି ପ୍ରାୟ ସମସ୍ତଙ୍କର ମୁଣ୍ଡ ଅନୁଚ୍ଚ ଗୁମ୍ଫା ଛାତରେ । ଠାଏଠାଏ ଏତେ ସଂକୀର୍ଣ୍ଣ ଦୁଇକାନ୍ଥ ମଝିରେ ଚଲାପଥ ଏତେ ସରୁ ହୋଇଯାଇଥାଏ ଯେ ଆମ ଦଳର ଜଣେ ବିଚରା ମୋଟାଲୋକ ବଡ ହଇରାଣରେ ପଡିଗଲେ । ଦୁଇ କାନ୍ଥ ମଝିରେ ଚିପିହେଇ ସେ ରହିଗଲେ ଅନେକ ସମୟ ପର୍ଯ୍ୟନ୍ତ ଆଉ ଛଟପଟ ହେଲେ ପଥର ସନ୍ଧିରୁ ନିଜକୁ ମୁକ୍ତ କରିନପାରି । ଆମେ ତ ମନେକଲୁ ଭଦ୍ରଲୋକ ବୋଧହୁଏ ଆଉ ଖସିପାରିବେ ନାହିଁ ସେ ହରିକାଠ ସନ୍ଧିରୁ । କିନ୍ତୁ ଈଶ୍ୱରଙ୍କ କୃପାରୁ ସେ ତାଙ୍କ ସାଧ୍ୟମତେ କିଛି ସମୟ ଚେଷ୍ଟା କରିବା ପରେ ଅବଶେଷରେ ନିଜକୁ ମୁକୁଳାଇନେଲେ ଓ ଆମ ଦଳ ସହିତ ମିଶିଲେ ।

ଏଣିକି ବାଟଚଲା ଖୁସି ବଦଳରେ କ୍ଳାନ୍ତିକର ମନେହେଲା । ପରେ ପରେ ପ୍ରାଣ-ବ୍ୟାକୁଳ ହେବାକୁ ମଧ୍ୟ ଆରମ୍ଭକଲା ଭୂପୃଷ୍ଠରେ ମୁକ୍ତ ସୂର୍ଯ୍ୟାଲୋକ ଦର୍ଶନ ପାଇଁ ।

"ହେ ଭଗବାନ୍ ! ଆଉ କେତେ ବାଟ ?"– ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ଚାଲିଥିବା ଝିଅ ବୁଲବୁଲର କ୍ଷୀଣ କଣ୍ଠସ୍ୱର ପଡିଲା ମୋ କାନରେ, "ନନା ! ତୁମେ ଟାୟାର୍ଡ ହେଇ-

ପଡିବଣି ନିଶ୍ଚେ– ଏଭଳି ଏକ ସାଂଘାତିକ ଜାଗାକୁ ବରଂ ନଆସିଥିଲେ ଆମର ଭଲ-ହେଇଥାନ୍ତା ।"

ମୁଁ ତାକୁ ପ୍ରବୋଧନା ଦେବାକୁ କହିଲି, "ନାଇରେ ମା, ଟାୟାର୍ଡ ହେଇନି । ମୋର ଲକ୍ଷ୍ୟ ତ ଏ ଯାକେ ପୂରଣ ହେଇନି । ମୁଁ ପରା ତୋ' ପୁତ୍ରମଣିକୁ ପ୍ରମିସ୍ କରିଚି ଯେ ଆଜି ତାକୁ ଦେଖେଇବି ପାତାଳପୁର କୋଉଠି, ଆଉ ପାତାଳରେ ନାଗରାଜ ବାସୁକିଙ୍କ ନିବାସଟା କେମିତି !"

ଏମିତି ଗପସପ ଭିତରେ ଆମେ ପାଦେ ପାଦେ କରି ଆଗେଇ ଚାଲିଥାଉ । ମନେହେଉଥାଏ ଆମେ ଏଣିକି ଗଡାଣି ବଦଳରେ ଉଠାଣିରେ ଚାଲିଲୁଣି । ତା'ମାନେ ଆମେ କ'ଣ ଭୂପୃଷ୍ଠ ଦିଗରେ ଯାତ୍ରା ଆରମ୍ଭ କରିବାକୁ ବାହାରିଚୁ କି ?

ସନ୍ଦେହ ମୁକ୍ତ କଲେ ଗାଇଡ୍ । କହିଲେ, Friends, we shall soon get into the Mammoth Dome. There is a cat walk ahead. Take care of your steps, for the path is slippery !

## ମାମଥ୍ ଡୋମ୍

କିଛି ସମୟ ପରେ ଗୋଟିଏ ସରୁ ଲୁହା ସିଢିରେ ଉପରକୁ ଚଢିବା ପାଇଁ ଆମକୁ ନିର୍ଦ୍ଦେଶ ମିଳିଲା । ନିର୍ଦ୍ଦେଶ ଅନୁସାରେ ସିଢି ଚଢିବା ପରେ ମନେହେଲା ଆମେ ପହଞ୍ଚିଗଲୁ ଗୋଟାଏ ଲୁହା ବାଡ ଦିଆ ସରୁ କ୍ୟାଟ୍‌ୱାକ୍‌ରେ । ସେଇ କ୍ୟାଟ୍‌ୱାକ୍‌ରେ ଯେତିକି ଯେତିକି ଆଗେଉଥାଉ ଅନ୍ଧାରର ଘନତା ସେତିକି ସେତିକି ବଢି ଉଠିବା ପରି ମନେହେଉଥାଏ । ମନେହେଲା କୌଣସି ଏକ ଗଭୀର ଗହ୍ୱରର ପରିଧି ଉପରେ ଆମକୁ ଗତି କରିବାକୁ ହେଉଥାଏ । ସେଇ ଗହ୍ୱର ଠାରୁ ଆମକୁ ପୃଥକ୍ କରି ରଖିଥିବା କ୍ୟାଟ୍‌ୱାକ୍‌ର ସରୁ ରେଲିଂର ଲୁହାବାଡ ସେପଟେ ଯେଉଁ ଗହ୍ୱରଟି ଥିଲା ତାହା ନିଶ୍ଚିତ ଭାବେ ରସାତଳ ବ୍ୟତୀତ ଅନ୍ୟ କିଛି ନୁହେଁ ।

ରସାତଳର ସ୍ୱରୂପ କିପରି ଜାଣିବାର ଆଗ୍ରହକୁ ଚାପିନପାରି ମୁଁ ରେଲିଂ ବାଡା ଉପରୁ ସାମାନ୍ୟ ଟିକେ ଝୁଙ୍କିପଡିଲି ତଳ ଆଡକୁ । ହଠାତ୍ ଏକ ସ୍ତମ୍ଭୀଭୂତକାରୀ ଦୃଶ୍ୟ ମୋ ପାଦ ଦୁଇଟାକୁ ଅଚଳ କରିଦେଲା । ଗହ୍ୱର ଭିତରକୁ ଫୋକସ୍ କରୁଥିବା କେତେକ ଉଜ୍ଜ୍ୱଳ ଲାଇଟ୍ ବିମ୍‌ର ପ୍ରତିଫଳନରେ ଗହ୍ୱରର କାନ୍ଥଗୁଡିକ ସ୍ପଷ୍ଟ ଦୃଶ୍ୟମାନ ହେଉଥାଏ । ସେ ଦୃଶ୍ୟ ମତେ ଆଶ୍ଚର୍ଯ୍ୟ କରିପକାଇଲା । ଆମ ଓଡିଶାର ମନ୍ଦିରଗାତ୍ରରେ ଖୋଦିତ ହୋଇଥିବା ଲାସ୍ୟମୟୀ ନର୍ତ୍ତକୀମାନଙ୍କର ବିଭିନ୍ନ ଭଙ୍ଗିର ଛବି ପରି ଅବିକଳ ସେଇ ଛବିଗୁଡିକୁ ଦେଖି ମୁଁ ନିଜ ଆଖିକୁ ବିଶ୍ୱାସ କରିନପାରି ମୋ ପଛରେ ଅଟକିଯାଇଥିବା ଆମ ପରିବାରର ସମସ୍ତଙ୍କୁ ସେ ଦୃଶ୍ୟ ଦେଖାଇ ଜାଣିବାକୁ ଚାହିଁଲି ମୁଁ ଯାହା ଦେଖୁଥିଲି ତାହା ସତ୍ୟ ନା

କେବଳ ମୋ ମନର ଭ୍ରମ ବିଶେଷ ।

ନିରୁପମା ଓ ଅନ୍ୟମାନଙ୍କ ସମର୍ଥନ ମତେ ଆହୁରି ବିସ୍ମିତ କଲା । ବିସ୍ମୟର କାରଣ ମାମଥ୍ କେଭ୍ ଅଭ୍ୟନ୍ତରର ସେଇ ଭୂତଳ ଗହ୍ୱରଟି ବାସ୍ତବିକ କଅଣ– ଗୋଟିଏ ପ୍ରାକୃତିକ ଗହ୍ୱର କିଂବା ଏକ ଭୂତଳ ପ୍ରାସାଦ ? କିଏ ଗଢ଼ିଚି ଏଠି ଏ ଅତଳ ଭୂଗର୍ଭରେ ଏଇ ସବୁ କାରୁକାର୍ଯ୍ୟମୟ ରୂପ ବିଗ୍ରହଗୁଡ଼ିକୁ– ଅନ୍ଧ ପ୍ରକୃତି କିମ୍ବା କୌଣସି ଚକ୍ଷୁଷ୍ମାନ୍ ଦିବ୍ୟ ଶକ୍ତି ?

ସେତକିବେଳେ ଶୁଣାଗଲା ଆମ ଗାଇଡ୍‌ଙ୍କର ଘୋଷଣା– "Friends, now you are looking at the Mammoth Dome from the top downwards – it is exactly one hundred and eighty six feet from top to bottom."

"ଶହେ ଛୟାଅଶୀ ଫୁଟ୍ !''– ଘୋଷଣାଟି ଶୁଣିଲାମାତ୍ରେ ମୋର ରୋମାଞ୍ଚ ଜାତହେଲା । ମନେପଡ଼ିଲା ଆମ ପୁରୀର ଜଗନ୍ନାଥଙ୍କ ମନ୍ଦିରର ଉଚ୍ଚତା ମଧ୍ୟ ଅବିକଳ ସେଇଆ !

ଏହି ସମୟରେ ମୋ ହାତକୁ ଜୋର୍‌ରେ ଜାବୁଡ଼ିଧରି ପ୍ରତୀକ ଥରଥର ଗଳାରେ ମୋ କାନରେ କହିଲା, "ଅଜା ! ଦେଖୁଚ ? ହେଇ ସେଠି ବାସୁକି. . ."

– ଚମକିପଡ଼ିଲି । ନାତିର ଇସାରାକୁ ଅନୁସରଣ କରି ମୁଣ୍ଡଉପରେ ଡୋମ୍‌ର ଛାତଆଡ଼କୁ ଚାହିଁଲି । ଗୋଟାଏ ଫ୍ଲଡ୍‌ଲାଇଟ୍ ଆଲୋକିତ କରୁଥାଏ ବହୁତ ଉଚ୍ଚକୁ । ସେଇ ଆଲୋକରେ ଯାହା ଦୃଶ୍ୟମାନ ହେଲା ତାହା ଥିଲା ବାସ୍ତବରେ ସଂପୂର୍ଣ୍ଣ ଅଭାବିତ । ଏପରି ଦୃଶ୍ୟ ଦେଖିବାକୁ ସତରେ ମୁଁ ଆଦୌ ପ୍ରସ୍ତୁତ ନଥିଲି । ଦେଖିଲି– ଗହ୍ୱରର ଗ୍ରାନାଇଟ ପଥର କାନ୍ଥରୁ ନିମ୍ନମୁଖୀ ଅବସ୍ଥାରେ ରହିଥାଏ ଏକ ବିଶାଳକାୟ ପଦ୍ମଫୁଲର ଆକୃତି ଯାହାର ପାଖୁଡ଼ାଗୁଡ଼ାକ ନିମ୍ନମୁଖୀ ହୋଇ ଦିଶୁଥାନ୍ତି ଅବିକଳ ଅନେକ ଗୁଡ଼ିଏ ଉତ୍‌ଫଣ ନାଗଙ୍କ ବିସ୍ତୃତ ଫଣା ପରି ଭୟଙ୍କର! ପୁଣି ଫଣାର ରଙ୍ଗ ମଧ୍ୟ ଅବିକଳ ପଦ୍ମଫୁଲର ରଙ୍ଗପରି– ଗୋଲାପି । ମୁଁ ଆଶ୍ଚର୍ଯ୍ୟ ହେବାର ଅନ୍ୟଏକ କାରଣ ହେଲା– ରଙ୍ଗ ! ସାଧାରଣତଃ ଅନ୍ଧକାର ଭିତରେ ଯେଉଁଠି ସୂର୍ଯ୍ୟକିରଣ ପଡ଼େନା ସେଠାରେ କୌଣସି ପଦାର୍ଥର ରଙ୍ଗ ନରହିବା କଥା । ଅଥଚ ମାମଥ୍ କେଭ୍‌ର ଅତଳଗର୍ଭରେ ଗୁମ୍ଫାକାନ୍ଥରେ ଫୁଟିଥିବା ପଦ୍ମ-ପାଖୁଡ଼ା ଆକୃତିର ସେଇ ନାଗମାନଙ୍କ ଫଣାଗୁଡ଼ିକ ସେଭଳି ଅଦ୍ଭୁତ ପଦ୍ମରାଗରେ ରଂଜିତ ହେଲା କିପରି !

ସତେକି ମୋ ପ୍ରଶ୍ନ ଆମ ଗାଇଡ୍‌ଙ୍କୁ ଶୁଣାଗଲା । ତାଙ୍କ ଉତ୍ତର ଶୁଣିବାକୁ ମିଳିଲା, "Don't be surprised. These are all mineral deposits– scientists call them some funny play of nature– Calcium magnesium deposits."

ଗାଇଡ୍‌ର କଥା ବୋଧହୁଏ ନାତି ପ୍ରତୀକର ମନକୁ ପାଇଲାନାହିଁ । ଗଲା କିଛି ଦିନ ଧରି ସେ କବିତା ଲେଖା ଆରମ୍ଭ କରିଥାଏ । ତା' କବି ମନକୁ ଗାଇଡର ସେପରି

ବୈଜ୍ଞାନିକ ଅର୍ଥନ୍ତରୀକରଣ ଶୁଣାଗଲା ଅବାନ୍ତର । ମୋ ମୁହଁକୁ ପ୍ରଶ୍ନିଳ ଚାହାଣିରେ ଅନାଇ ରହିଲା ସେ ।

ତାକୁ ବୁଝାଇବା ଥିଲା ସେ ମୁହୂର୍ତ୍ତରେ ମୋର କର୍ତ୍ତବ୍ୟ । ସେଇ କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ତାକୁ ବୁଝେଇ ବସିଲି, "ଶୁଣ ବାବୁ, ପ୍ରକୃତି ଯାହା ନିଜେ ଗଢେ ତା ନାଁ ସୃଷ୍ଟି, ମଣିଷ ଯାହା ଗଢେ ତା ନାଁ ଆର୍ଟ । ଉଭୟଙ୍କ ପାଇଁ ଦରକାର ସୃଜନଶୀଳ ବୁଦ୍ଧି । ସମସ୍ତ ବୁଦ୍ଧି ଓ ଚେତନାର ଗନ୍ତାଘର ହେଉଚନ୍ତି ସୃଷ୍ଟିକର୍ତ୍ତା ଈଶ୍ୱର । ଈଶ୍ୱରଙ୍କ ସୃଷ୍ଟିରେ ବୁଦ୍ଧି ନାହିଁ ଅଥଚ ମଣିଷ ସୃଷ୍ଟିରେ ବୁଦ୍ଧି ଅଛି ଏପରି ଭାବିବା ହିଁ ମଣିଷର ମୂର୍ଖତା । ଆଜି ଗୋଟିଏ ଶ୍ରେଣୀର ଲୋକ ନିଜକୁ ସର୍ବଜ୍ଞ ମନେକରି ନିଜକୁ ଈଶ୍ୱର ବା ପ୍ରକୃତି ଠାରୁ ଅଧିକ ବୁଦ୍ଧିମାନ୍ ମନେକରୁଚନ୍ତି– ସେମାନଙ୍କୁ ଆମେ କହୁ ବୈଜ୍ଞାନିକ । ଏ ଯେଉଁ ପଦ୍ମପାଖୁଡ଼ା ବା ଫଣା ମେଲିଥିବା ସାପଗୁଡ଼ିକର ମୂର୍ତ୍ତି ଏଠାରେ ଗଢାଯାଇଚି ସେଗୁଡ଼ିକୁ କୌଣସି ବୁଦ୍ଧିହୀନ ପ୍ରାକୃତିକ ଶକ୍ତି କଦାପି ଗଢିଥିବା ସଂଭବ କି ? ତା' କଥା ଶୁଣନା । ବରଂ ମନେକର ଯେ ଆମେ ଆଜି ସତରେ ନାଗରାଜ୍ ବାସୁକିଙ୍କ ଦର୍ଶନ ପାଇଛେ ତାଙ୍କର ମନ୍ଦିରରେ । ଏଇ ସ୍ଥାନଟି ହେଉଚି ସତରେ ବାସୁକିଙ୍କ ନିବାସ ଯାହା ସ୍ୱଚକ୍ଷୁରେ ଦେଖିଲେ ଆମେ ଆଜି ଆମେରିକାର ଭୂଗର୍ଭରେ । ଆମର ଆଜିର ମାମଥ୍ କେଭସ୍ ଦର୍ଶନ ସେ ଦିଗରୁ ଅତ୍ୟନ୍ତ ସାର୍ଥକ ।"

ମାମଥ୍ କେଭସ୍ ଭିତରେ ଅଢେଇ ଘଣ୍ଟା ଭ୍ରମଣ ସମାପ୍ତ କରି ଆମେ ସେଦିନ ସୂର୍ଯ୍ୟାସ୍ତ ପୂର୍ବରୁ ଭୂପୃଷ୍ଠକୁ ବାହାରି ଆସିଥିଲୁ ।

## ଭାରତ ବାହୁଡ଼ା

ଏଥର ଆମର ଆମେରିକା ରହଣି କାଳ ଥିଲା ପାଖାପାଖି ଚାରିମାସ । ସେ ଭିତରେ ଆମର ମୂଳ ଉଦ୍ଦେଶ୍ୟ ଥିଲା– ସେ ସମୟର ସବୁଠାରୁ ଜଟିଳ ଓ ସମସ୍ୟା ବହୁଳ ବିଶ୍ୱ-ରାଜନୈତିକ ଏବଂ ଦ୍ରୁତ ପରିବର୍ତ୍ତନଶୀଳ ଅର୍ଥନୈତିକ ପରିସ୍ଥିତି ସହିତ ଖାପ ଖୁଆଇ ପ୍ରବାସରେ ଥିବା ଆମ ପିଲାମାନେ କିଭଳି ଚଳିପାରୁଛନ୍ତି ତାର ଏକ ପ୍ରତ୍ୟକ୍ଷ ଆକଳନ । ଆମର ସବୁଠାରୁ ବେଶୀ ଆଶଙ୍କା ଥିଲା ଜୋଇଁ ପ୍ରବୀର ଓ ଝିଅ ବୁଲବୁଲ ଉଭୟଙ୍କର ଏକ ବଡ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଆମେରିକାନ୍ କଂପାନୀରୁ ଚାକିରି ଛାଡିଦେବା ଓ ନୂଆ କରି ବିଦେଶରେ ବ୍ୟବସାୟ କ୍ଷେତ୍ରକୁ ପ୍ରବେଶ କରିବା ପାଇଁ ସେମାନଙ୍କର ସିଦ୍ଧାନ୍ତକୁ ନେଇ । କିନ୍ତୁ ସେମାନଙ୍କ ସାଙ୍ଗରେ ମାସାଧିକ ସମୟ ରହଣି ଓ ଚଳଣି ଭିତରେ ଆମ ମନରୁ ସମସ୍ତ ଆଶଙ୍କା ଦୂର ହୋଇ ଯାଇଥିଲା । ଦେଖିଲୁ ସେମାନେ ତାଙ୍କ ନୂଆ ବ୍ୟବସାୟକୁ ନେଇ ଖୁବ୍ ଉତ୍ସାହିତ ହୋଇପଡିଛନ୍ତି ଏବଂ ଆମେରିକାର ପରିବର୍ତ୍ତିତ ଅର୍ଥନୈତିକ ସଂକଟ ସମୟରେ ମଧ୍ୟ ବ୍ୟବସାୟକୁ ନେଇ ଖୁବ୍ ଉତ୍ସାହିତ ହୋଇପଡିଛନ୍ତି

ଏବଂ ଆମେରିକର ପରିବର୍ତ୍ତିତ ଅର୍ଥନୈତିକ ସଂକଟ ସମୟରେ ମଧ୍ୟ ନୂଆ ବ୍ୟବସାୟ କ୍ଷେତ୍ରରେ ବେଶ୍ ସଫଳତା ପାଇବାକୁ ଆରମ୍ଭ କରିଥାନ୍ତି । ଏହା ଆମ ପାଇଁ ଥିଲା ଖୁବ୍ ଆନନ୍ଦ ଓ ଆଶ୍ୱାସନାର ବିଷୟ । ସେଇ ମନୋଭାବ ନେଇ ଆମେ ସେ ବର୍ଷ ଅକ୍ଟୋବର ୧୭ରେ ଭାରତ ଫେରି ଆସିଲୁ । ଫେରିବା ଲାଗି ଆମର ରିଟର୍ଣ୍ଣ ଏୟାର୍ ଟିକେଟ୍ କିଣାଯାଇଥାଏ ନ୍ୟୁୟର୍କରୁ ଲଣ୍ଡନ ବାଟେ ନୂଆ ଦିଲ୍ଲୀକୁ । ତେଣୁ ସେଇ ତାରିଖକୁ ଆଖିରେ ରଖି ଆମକୁ ପୁଣି ଯଥା ସମୟରେ ଫ୍ରାଙ୍କଲିନ୍ (ଟେନାସୀ)ରୁ ଗ୍ଲାସ୍‌ଟନବର୍ଗ (କନେକ୍ଟିକଟ୍) ଫେରିଆସିବାକୁ ପଡିଲା । ସେଠାରେ ମଝିଆ ଝିଅ ଜୋଇଁ ଓ ଦୁଇ ନାତିଙ୍କ ସଙ୍ଗେ ଅଳ୍ପ ଦିନ ରହଣି ପରେ ଆମେ ଯଥା ସମୟରେ ଦିଲ୍ଲୀ ଫେରିଲୁ । ଦିଲ୍ଲୀରେ ସାନଝିଅ ଜୁଲି ଓ ଜୋଇଁ ଅଭିଜିତ ଆଉ ତିନିବର୍ଷର ଗେହ୍ଲା ନାତୁଣୀ ଅଙ୍କିତା ଆମର ଫେରିବା ବାଟକୁ ଚାହିଁ ବସିଥାନ୍ତି । ସେମାନଙ୍କ ମେଳରେ କିଛିଦିନ ରହି ନିର୍ଦ୍ଧାରିତ ଦିନ ଫ୍ଲାଇଟ୍ ନେଇ ଦିଲ୍ଲୀରୁ ଭୁବନେଶ୍ୱର ଫେରି ଆସିଲୁ ।

ଏହିପରି ଆମର ଦ୍ୱିତୀୟବାର ଆମେରିକା ଭ୍ରମଣ ସୁଯୋଗ ଚରିତାର୍ଥ ହୋଇଥିଲା ।

––

## ଅଧ୍ୟାୟ - ତିନି

# ତୃତୀୟ ଆମେରିକା ଭ୍ରମଣ ଡାଏରୀ – ୨୦୦୩

ମେ ପନ୍ଦର ୨୦୦୩ । ମୋ ଜନ୍ମଦିନ ଏଇ ମେ ପନ୍ଦର । ମତେ ସତୁରୀ ପୂରିଲା । ସେଦିନ ଗୋଟିଏ ଟେଲିଫୋନ୍ କଲ୍ ପାଇଲି ଆମେରିକାରୁ । ନ୍ୟାସ୍‌ଭିଲ୍‌ର ଫ୍ରାଙ୍କଲିନ୍‌ରେ ରହୁଥିବା ମୋ' ବଡଜୋଇଁ ଶ୍ରୀମାନ୍ ପ୍ରବୀର କୁମାର ଦାଶ ଫୋନ୍‌ରେ ପଚାରିଲେ, ''ନନା ! ଏ ବର୍ଷ ନ୍ୟାସ୍‌ଭିଲ୍ ହିନ୍ଦୁ ମନ୍ଦିରରେ ଜଗନ୍ନାଥଙ୍କ ରଥଯାତ୍ରା ହେବ ଜୁଲାଇ ପ୍ରଥମ ସପ୍ତାହରେ । ଆମର ଜଣେ ଭଲ ସ୍ପିକର୍ ଦରକାର ଯେ ଜଗନ୍ନାଥ ସଂସ୍କୃତି ଉପରେ କହିବେ । ବକ୍ତାଙ୍କ ନାଁ କହନ୍ତୁ । ରଥଯାତ୍ରା ଅର୍ଗାନାଇଜେସନ୍ କମିଟି ପକ୍ଷରୁ ମତେ ଏ ଦାୟିତ୍ୱ ଦିଆଯାଇଚି ।''

ଟିକେ ଚିନ୍ତା କଲା ପରେ ମୁଁ କହିଲି– ''ଡକ୍ଟର କବିପ୍ରସାଦ ମିଶ୍ରଙ୍କୁ ଡାକ । କବି ମିଶ୍ରଙ୍କୁ ଜାଣିଥିବ– ସେ ଜଣେ ପ୍ରବୀଣ ହାର୍ଟସର୍ଜନ । ଚେନାଇର ଆପୋଲୋ ହସପିଟାଲ୍‌ରେ ଚାକିରି କରୁଚନ୍ତି । ଜଣେ ସୁବକ୍ତା, ଲେଖକ ଆଉ ଜଗନ୍ନାଥଙ୍କର ବଡ ଭକ୍ତ । ମାଡ୍ରାସ୍‌ରେ ଏକ ବିଶାଳ ଜଗନ୍ନାଥ ମନ୍ଦିର ତୋଳାଇଚନ୍ତି... ତାଙ୍କୁ ଏବର୍ଷ ଡାକ ଭଲହବ ।''

କିନ୍ତୁ ଦୁଇଦିନ ପରେ ଶୁଣାଗଲା କବିବାବୁ ହଠାତ୍ ପୀଡିତ– ହୃଦ୍‌ରୋଗରେ ! ସେ ଦିଲ୍ଲୀରୁ ଚେନାଇ ଆସିବା ବାଟରେ ଛାତିରେ କଷ୍ଟ ଅନୁଭବ କଲେ. . . ।

ପ୍ରବୀର ଆମେରିକାରୁ ଟେଲିଫୋନ୍ କଲେ, ''ଡଃ କବି ମିଶ୍ରଙ୍କୁ ନିମନ୍ତ୍ରଣ କଲୁ– ସେ 'ହଁ' କରିଥିଲେ । କିନ୍ତୁ ଏଇଲେ ଶୁଣୁଚୁ– ସେ ବର୍ତ୍ତମାନ ହସ୍‌ପିଟାଲ୍‌ରେ. . . ହଠାତ୍ ବାହାରିଲା ହାର୍ଟ-ପ୍ରବ୍‌ଲେମ୍ ! ଆପଣ ତାଙ୍କ ଜାଗାରେ ଅନ୍ୟ ଜଣେ କାହା ନାମ ସଜେଷ୍ଟ୍ କରନ୍ତୁ ।''

ହୃଦ୍‌ରୋଗ ବିଶାରଦ ଶଲ୍ୟ ଚିକିତ୍ସକଙ୍କୁ ପୁଣି ହାର୍ଟଆଟାକ୍ ? ଆଶ୍ଚର୍ଯ୍ୟ ହେଲି ।

ଆଶ୍ଚର୍ଯ୍ୟ ହେବାର କାରଣ ଥିଲା । ସେ ଜଗନ୍ନାଥଙ୍କର ଜଣେ ପରମ ଭକ୍ତ, ମାଡ୍ରାସରେ ବିଶାଳ ଜଗନ୍ନାଥ ମନ୍ଦିର ତିଆରିକରିଚନ୍ତି ଜଗନ୍ନାଥଙ୍କ ପାଇଁ ! ପୁଣି ଜଗନ୍ନାଥଙ୍କ ମିରାକ୍‌ଲ ଉପରେ ଏତେ ପ୍ରତ୍ୟକ୍ଷ ବିଶ୍ୱାସ ଓ ଅଭିଜ୍ଞତାକୁ ନେଇ ସେ ଲେଖିଚନ୍ତି ଅନେକ ପୁସ୍ତକ ! ଅଥଚ...

ଏ ସବୁ କିଛି ନକହି ମୁଁ ପ୍ରବୀରଙ୍କୁ ଆଉ ଜଣେ ପ୍ରସିଦ୍ଧ ଜଗନ୍ନାଥ ସ୍କଲାର୍, ପୁରୀର ଡକ୍ଟର୍ ଜି. ସି. ତ୍ରିପାଠୀଙ୍କ ନାଁ କହିଲି । ତ୍ରିପାଠୀଙ୍କ ଏକ ପାଣ୍ଡିତ୍ୟପୂର୍ଣ୍ଣ ଲେଖା ପଢିଥିଲି ଡକ୍ଟର୍ ହରମାନ୍ କୁଲ୍‌କେଙ୍କ ସଂକଳିତ "The Cult of Jagannath" ପୁସ୍ତକରେ ।...

ଦି'ଦିନ ପରେ ପ୍ରବୀରଙ୍କ ଫୋନ୍ ପାଇଲି– ''ଆମ ରଥଯାତ୍ରା କମିଟି କହୁଚି– ଆପଣ ଆସନ୍ତୁ ଏବର୍ଷ ଆମର ଚିଫ୍‌ଗେଷ୍ଟ ହେବେ । ଆପଣ ହିଁ ଠାକୁରମାନଙ୍କ ରଥରେ ଛେରାପହଁରା କରିବେ– ସନ୍ଧ୍ୟାରେ ଭାଷଣ ଦେବେ । ଆମର ଏବର୍ଷ ଦ୍ୱିତୀୟ ବକ୍ତା କେହି ନାହାନ୍ତି– ଆପଣ ଏକମାତ୍ର ସ୍ପିକର୍ । ଭାଷଣ ପରେ ଅନ୍ୟ ସବୁ ସାଂସ୍କୃତିକ କାର୍ଯ୍ୟକ୍ରମ ରହିଚି । ଶୁଣି ଖୁସିହେବେ– ଡଃ. ଜୁଲି ରାୟଙ୍କୁ ନ୍ୟୁଜର୍ସିରୁ ଡକାହେଇଚି ଏ ଥର ରଥଯାତ୍ରାରେ ଜଗନ୍ନାଥ ଭଜନ ଗାଇବା ପାଇଁ ।

ଡକ୍ଟର ଜୁଲି ରାୟ ଅନ୍ୟ କେହି ନୁହେଁ– ଆମ ସାନ ଝିଅ ଜୁଲି । ଜୋଇଁ ଅଭିଜିତ୍ ଓ ଜୁଲି ଗଲାବର୍ଷଠାରୁ ଭାରତରୁ ବିଦାୟନେଇ ଆମେରିକା ଚାଲିଯାଇଥିଲେ୍ ନ୍ୟୁଜର୍ସିର ରଟ୍‌ଗର୍ ବିଶ୍ୱବିଦ୍ୟାଳରେ ପୋଷ୍ଟ-ଡକ୍ କରିବା ପାଇଁ ।

ପ୍ରବୀରଙ୍କ ପ୍ରସ୍ତାବରେ ମୁଁ ସାଙ୍ଗେ ସାଙ୍ଗେ ରାଜିହେଇଗଲି । ଏହାପରେ ଚାଲିଲା ଆମେରିକା ଯିବା ପାଇଁ ପ୍ରସ୍ତୁତି । କିନ୍ତୁ ସାତଦିନ ନଯାଉଣୁ ସେଦିନ ବଡିଭୋର୍‌ରୁ ମର୍ଣ୍ଣିଂଓ୍ୱାକ୍ ପାଇଁ ଘରୁ ବାହାରି ଅଳ୍ପ ବାଟ ନଯାଉଣୁ ହଠାତ୍ ଛାତିରେ କଷ୍ଟ ଅନୁଭବ କଲି । ଡାକ୍ତରି ପରୀକ୍ଷାରୁ ସନ୍ଦେହ କରାଗଲା– ହୁଏତ କରୋନାରି ଆର୍ଟେରିରେ ବ୍ଲକେଜ୍ ଅଛି । ଡାକ୍ତର କହିଲେ– ହାଇଦ୍ରାବାଦ୍ ବା ଆଉ କୋଉଠିକି ଯାଇ ପରୀକ୍ଷା କରାନ୍ତୁ ।

ଏ ସବୁ ଶୁଣି ମତେ ଲାଗିଲା– ଜଗନ୍ନାଥ ଜଣେ ହଟିଆ ଠାକୁର ବୋଲି ଯାହା କୁହାଯାଏ ତାହା ନିଶ୍ଚୟ ସତ । ନହେଲେ ଡକ୍ଟର କବି ପ୍ରସାଦ ମିଶ୍ରଙ୍କ ଭଳି ଜଣେ ଭକ୍ତ ଆଉ ବିଖ୍ୟାତ ହାର୍ଟ-ସର୍ଜନ ଯେମିତି ହିଁ କରିଦେଇଚନ୍ତି ଠାକୁରଙ୍କ କାମପାଇଁ ଆମେରିକା ଯିବାକୁ ସେମିତି ଠାକୁରେ ଭୂତ ଭଳି ମାଡିବସିଥାନ୍ତେ ତାଙ୍କ ହାର୍ଟକୁ ! ଆଉ ମୁଁ– ସେ ହଟିଆ ଠାକୁରଙ୍କ କାମରେ ଆମେରିକା ଯିବାକୁ ରାଜି ହେଉନହେଉଣୁ ମୋ' ଛାତି ଉପରେ ପଡିଲା ଚଡକ ?

ଫୋନ୍ ଉଠେଇ ପ୍ରବୀରଙ୍କୁ ସାଙ୍ଗେ ସାଙ୍ଗେ ଡାକିଲି । କହିଲି, ''ନା– ବର୍ତ୍ତମାନ ମତେ ଯିବାକୁ ହେବ ହାଇଦ୍ରାବାଦ୍ କି ବାଙ୍ଗାଲୋର । ଡାକ୍ତର କହୁଚନ୍ତି. . .''

ପ୍ରବୀର ବୁଲବୁଲକୁ କହିଲେ ମୋ ହାଲତ୍ । ଉଭୟ ଜିଦିକଲେ– ଶୀଘ୍ର ପଳେଇଆସ ଆମେରିକା– ଆମେ ଏଠି ତା' ବ୍ୟବସ୍ଥା କରିବା ।

ସେମାନଙ୍କ ଜିଦିଯୋଗୁ ରାଜିହେଲି । କଲିକତା ଯାଇ ଭିସା ଯୋଗାଡ କରିବାକୁ ଥିଲା ଆମେରିକାନ୍ କନ୍‌ସୁଲେଟ୍‌ରୁ । ସେତେବେଳେ ଆମେରିକାକୁ ଭିସା ମିଳିବା ଏକବାରେ ଅସଂଭବ ହୋଇପଡିଥାଏ– ୨୦୦୧ ସେପ୍ଟେମ୍ବର ୧୧ ତାରିଖରେ ନ୍ୟୁୟର୍କର ଓ୍ୱାର୍ଲଡ କମର୍ସ ସେଣ୍ଟର୍‌ର ଟାଓ୍ୱାର୍ ଦୁଇଟା ସମେତ ଓ୍ୱାସିଂଟନ୍‌ର ପେଣ୍ଟାଗନ୍ ଉପରେ ଇସ୍‌ଲାମିକ୍ ଆତଙ୍କବାଦୀ ଆଲ୍‌କାଇଦା ଗୋଷ୍ଠୀର ଅଚାନକ ଚଢାଉ ପରେ ପରେ । ତଥାପି ନିରୁପମା ଓ ମୋ ପାଇଁ ଭିସା କରିବାକୁ ଆମେ କଲିକତା ଗଲୁ । ଭିସା ଇଣ୍ଟର୍ଭ୍ୟୁ ତାରିଖରେ ହାଜର

ହେଲୁ କଲିକତାର ହୋଚିମିନ୍ ଷ୍ଟ୍ରିଟ୍‌ରେ ଆମେରିକାନ୍ କନ୍‌ସ୍ୟୁଲେଟ୍ ଅଫିସ୍‌ରେ । ସେଠି ଲାଗିଥାଏ ପ୍ରବଳ ଭିଡ । ଶହ ଶହ ଭିସା ପ୍ରାର୍ଥୀ ସେଦିନ ଇଣ୍ଟରଭ୍ୟୁ ପାଇଁ ଡକରା ପାଇ ଆସିଥାନ୍ତି । କିନ୍ତୁ ସେ ସବୁ କେବଳ ଫର୍ମାଲିଟି ହିଁ ଥିଲା ବୋଲି ଜଣାପଡିଗଲା ଅତି ଶୀଘ୍ର– ସକାଳ ଆଠରେ ଇଣ୍ଟରଭ୍ୟୁ ଆରମ୍ଭ ହେବା ମାତ୍ରେ । କାରଣ– ଆମେ ଦେଖିବାକୁ ପାଇଲୁ ନାମ ଡକରା ପାଇ ପ୍ରାର୍ଥୀଜଣକ ହସହସ ମୁହଁରେ ଇଣ୍ଟରଭ୍ୟୁ ନଉଥିବା ଜଣେ ଆମେରିକାନ୍ ମହିଳାଙ୍କ ଇଜଲାସ୍‌ରେ ହାଜର ହେବାର ଅଳ୍ପ ସମୟ ପରେ ହିଁ ଫେରିଆସୁଥାଏ ମୁହଁ ଆମ୍ପିଳା କରି ବା ଆଖି ପୋଛିପୋଛି ରୁମାଲ୍‌ରେ ।

ପରେ ପରେ ପାଳି ପଡିଲା ଆମର । ମୋ ନାମ ଡକାଯିବା ମାତ୍ରେ ହାଜର ହେଲି ଅର୍ଗଳି ପାର ହେଇ ଅଫିସରଙ୍କ ଇଜଲାସ୍‌ରେ । ଲେଡି ଅଫିସର୍ ମତେ ଦେଖୁ ଦେଖୁ ଜେରା ଆରମ୍ଭକଲେ, ''ଆପଣଙ୍କ କାଗଜପତ୍ରରୁ ଦେଖୁଚି ସେଠି ଆମେରିକାରେ ଆପଣଙ୍କର ଅନେକ ନିକଟ ସଂପର୍କୀୟ ଅନେକବର୍ଷ ଧରି ରହୁଚନ୍ତି । ଆପଣମାନେ ଆମେରିକାରେ ରହିନଯାଇ ଇଣ୍ଡିଆ ଫେରିବେ ବୋଲି କି ଗ୍ୟାରେଣ୍ଟି ଅଛି ?''

ମତେ ହସଲାଗିଲା । ଭାବିଲି– ଯୁଗ ବଦଳିଗଲାଣି ବୋଲି ବୋଧହୁଏ ଏ ବୁଢୀକୁ ଜଣାପଡୁନାଇଁ ! ଆରେ ଏଇଟା ପରା ଗ୍ଲୋବାଲାଇଜେସନ୍ ଯୁଗ ! ସୁଅ ବୋହିଲାଣି ଉଜାଣି । ତମର ସେଠି କଂପାନୀମାନେ ତାଲା ପକେଇ ସାରିଲେଣି କାରଖାନାମାନଙ୍କରେ । ଚାଲିଚି ଛଟେଇ ଶହଶହ ସଂଖ୍ୟାରେ । ଏଥର ଆମ ପିଲେ କହିଲେଣି ପଳେଇଆସିବେ ଇଣ୍ଡିଆ । ଏଥିରେ ତମ ଦେଶକୁ ଯାଇ ମୋ'ଭଳି ଟୁରିଷ୍ଟ୍ ଜଣେ ସେଠି ରହିଯିବ କାହିଁକି ?

କିନ୍ତୁ ମନକଥା ମନରେ ରଖି ମୁହଁରେ ସ୍ମିତହାସ୍ୟ ଖେଳେଇ କହିଲି, ''ମାଡାମ୍ ! ଆପଣଙ୍କ ବିଖ୍ୟାତ ଦେଶ ଆମେରିକାକୁ ମୁଁ ବହୁତ ସମ୍ମାନ କରେ ସେଠାର ଉଚ୍ଚ ଗଣତାନ୍ତ୍ରିକ ପରମ୍ପରା ପାଇଁ । କିନ୍ତୁ ମୋ'ଭଳି ଜଣେ ବୁନିୟାଦିସଂପନ୍ନ ବିଶ୍ୱବିଦ୍ୟାଳୟ ପ୍ରଫେସର୍ ଓ ଜଣେ ଚିନ୍ତାଶୀଳ କ୍ରିଏଟିଭ୍ ରାଇଟର୍ ପକ୍ଷରେ ମୋ ନିଜ ଦେଶ ଭାରତବର୍ଷ ସ୍ୱର୍ଗ ଠାରୁ ବି ବଳି ମହୀୟାନ୍ । ଆପଣ ଦେଖୁଚନ୍ତି– ମୁଁ ଓ ମୋ ପତ୍ନୀ ଆମେ ଦୁହେଁ ଦୁଇ ବୟସ୍କ ବ୍ୟକ୍ତି । ମତେ ବର୍ତ୍ତମାନ ସତୁରି ବର୍ଷ ଚାଲୁଚି । ଭାରତର ସୁଦୀର୍ଘ ପରମ୍ପରା ଅନୁସାରେ ଆମେ ଦୁଇଜଣ ବର୍ତ୍ତମାନ ପହଞ୍ଚିଚୁ ଏପରି ବୟସରେ ଯାହାକୁ ଆମେ କହୁ ବାନପ୍ରସ୍ଥର ବୟସ । ଏ ବୟସର ଭାରତୀୟ ଲୋକେ ପାରିବାରିକ ବନ୍ଧନ ଓ ସାଂସାରିକ ଭୋଗବିଳାସଠାରୁ ବହୁ ଦୂରକୁ ଚାଲିଯାଇ କୌଣସି ଧାର୍ମିକ ତୀର୍ଥସ୍ଥାନରେ ରହି ତପସ୍ୟା ଆରମ୍ଭ କରିବା କଥା । ଆମେ ସେଇ କଥା ଚିନ୍ତାକରୁଚୁ । ତେଣୁ ଆମ ଜନ୍ମସ୍ଥାନ ଓଡିଶାର ଜଗନ୍ନାଥଧାମ ପୁରୀରେ ଜୀବନର ଅବଶିଷ୍ଟାଂଶ କଟାଇବା ଆମର ଯୋଜନା– ଏଥିରେ ଆମେରିକା ଯିବୁ କାହିଁକି ? ଆମେ ଆମ କାମରେ ଆମେରିକା ଯାଉନୁ– ଯାଉଚୁ ସେଠାର ଏକ କଲଚରାଲ୍ ସଂସ୍ଥାର ନିମନ୍ତ୍ରଣ ପାଇ ।''

– ''କୋଉ କଲଚରାଲ୍ ସଂସ୍ଥା ?''– କନ୍‌ସୁଲେଟ୍ ଅଫିସର୍ ଭଦ୍ରମହିଳା ଏଥର ଆହୁରି ବଡ ବଡ ଆଖିରେ ଚାହିଁଲେ ମତେ । ମନେହେଲା କିଛି ଭୁଲ୍ ହୋଇଗଲା ବୋଧେ । ବର୍ତ୍ତମାନ ଆମେରିକାନ୍‌ମାନେ ଇଣ୍ଡିଆ ପାକିସ୍ଥାନର ଲୋକଙ୍କୁ ଯୋଉ ଆଖିରେ ଦେଖୁଚନ୍ତି ସେଥିରେ କଲଚର୍ ଶବ୍ଦରୁ ଏ ଆମେରିକାନ୍ ବୁଢୀ କ'ଣ ସନ୍ଦେହ କଲା କେଜାଣି !

– ''ଆମ ଭିସା ଦରଖାସ୍ତ ଦୟାକରି ଦେଖନ୍ତୁ । ନ୍ୟାସ୍‌ଭିଲ୍‌ର 'ଦ ଜଗନ୍ନାଥ ସୋସଇଟି ଅଫ୍ ଆମେରିକାଜ୍' ମତେ ନିମନ୍ତ୍ରଣ କରିଚି ସେଠି ଏବର୍ଷ ଜୁଲାଇ ତିନିରେ ପ୍ରସ୍ତାବିତ ଜଗନ୍ନାଥ ରଥଯାତ୍ରାରେ ଯୋଗଦେବାକୁ– ଚିଫ୍ ସ୍ପିକର୍ ଓ ଗେଷ୍ଟ୍ ଭାବେ । ମୁଁ ଓ ମୋ ପତ୍ନୀ ଉଭୟଙ୍କୁ ନିମନ୍ତ୍ରଣ କରିଚନ୍ତି ସେମାନେ । ଆମେ ପୂର୍ବରୁ ଦୁଇ ଦୁଇ ଥର ଆମେରିକା ଯାଇଚୁ ଓ ଠିକ୍ ସମୟରେ ଫେରିଚୁ । ତେଣୁ ଏଥର ସେଠିକି ଯାଇ ଆଉ ଫେରିଆସିବୁ ନାଇଁ, ସବୁଦିନ ପାଇଁ ଆମେରିକାରେ ରହିଯିବୁ ଏ ଭଳି ସନ୍ଦେହର ହେତୁ କ'ଣ ଥାଇପାରେ ?''

ତା'ପରେ ଦେଖିଲି– ସେ ବୁଢୀ ଆମ ଭିସା ଦରଖାସ୍ତ ଫାଇଲ୍ ଖେଳେଇଲା । ସେଥିରୁ ''ଦ ଜଗନ୍ନାଥ ସୋସାଇଟି ଅଫ୍ ଆମେରକାଜ୍'' ମତେ ପଠେଇଥିବା ନିମନ୍ତ୍ରଣ ଚିଠିଟିକୁ କିଛି ସମୟ ଧ୍ୟାନ ଦେଇ ପଢିଲା । ଆଖି ନରମକରି ମତେ ଚାହିଁଲା । ପଚାରିଲା, ''କେତେଦିନ ପାଇଁ ଚାହୁଁଚନ୍ତି ଏ ଭିସା ?''

–''ଚାରିମାସ ।'' ଗଲା ଦୁଇଥର ମୁଁ ଆମେରିକା ଯାଇଥିଲି ଚାରିମାସିଆ ଭିସା ନେଇ ।

– ''ଓ.କେ– ଆପଣଙ୍କୁ ଦିଆଗଲା ଦଶବର୍ଷର ମଲ୍‌ଟିପଲ୍ ପଏଣ୍ଟ ଏଣ୍ଟ୍ରି ଭିସା– ପ୍ଲିଜ୍ ଡିପୋଜିଟ୍ ଦ' ଫିଜ୍ ।''

– ପରଦିନ ଆମେ ଭୁବନେଶ୍ୱର ଫେରିଆସିଲୁ ।

୨୮ ଜୁନ୍, ୨୦୦୩ ମଧ୍ୟରାତିରେ (ରାତିବାର ପରେ ୨୯ ଜୁନ୍) ନିରୁପମା ଓ ମୁଁ ବମ୍ବେ ଛତ୍ରପତି ଶିବାଜୀ ଆନ୍ତର୍ଜାତିକ ବିମାନ ବନ୍ଦରରୁ ଏୟାରଇଣ୍ଡିଆ ପ୍ଲେନ୍ ଧରିଲୁ । ସେଇ ତାରିଖରେ ପହଞ୍ଚିଲୁ ସିକାଗୋର ଓହାରା ଆନ୍ତର୍ଜାତିକ ବିମାନ ବନ୍ଦରରେ । ସିକାଗୋ ବିମାନ ବନ୍ଦରରେ ଏ ଥର ନାହିଁ ନଥିବା ସିକ୍ୟୁରିଟି ଚେକିଂ ଚାଲିଥାଏ । ପ୍ରଥମ ଥର ପାଇଁ କଷ୍ଟମ୍‌ସ୍ କ୍ଲିୟରାନ୍ସ ବେଳେ ଆମ ଆଖି ଡୋଳାର କମ୍ପ୍ୟୁଟର ଫଟୋ ନିଆଗଲା, ଆଉ କମ୍ପ୍ୟୁଟରରେ ଦଶଆଙ୍ଗୁଠିର ଟିପଚିହ୍ନ ମଧ୍ୟ ରେକର୍ଡ କରାଗଲା । ପୂର୍ବ ଦୁଇଥରର ଭ୍ରମଣ ବେଳେ ଯୋଉ ଆମେରିକାକୁ ଦେଖିଥିଲୁ ସେ ଆମେରିକା ଆଉ ନଥାଏ । ସବୁଆଡେ ସନ୍ଦେହର ବାତାବରଣ । ବିଶେଷତଃ ଆମଭଳି ଭାରତୀୟ ଚେହେରାର ଲୋକଙ୍କ ପ୍ରତି ଏ ଦେଶର ଗୋରା ଲୋକଙ୍କର ପ୍ରବଳ ସନ୍ଦେହ– କାଳେ ଆତଙ୍କବାଦୀଟାଏ ହୋଇଥିବ !

ସିକାଗୋ ବିମାନ ବନ୍ଦରରେ କଷ୍ଟମ୍‌ସ୍ କ୍ଲିୟରାନ୍ସ ପାଇଁ ପୂରା ତିନି ଘଣ୍ଟା ଲାଗିଗଲା

ଆମକୁ । ଫଳରେ ନ୍ୟାସଭିଲ୍‌କୁ କନେକ୍ଟିଂ ଫ୍ଲାଇଟ୍ ହରାଇବାକୁ ବାଧ୍ୟହେଲୁ । ତା'ଛଡା ହଠାତ୍ କୁଆଡୁ ଆସିଲା ନାହିଁ ନଥିବା ଝଡବର୍ଷା– ସବୁ ଫ୍ଲାଇଟ୍ କ୍ୟାନ୍‌ସେଲ ହେଇଗଲା । ଆମେ ବାଧ୍ୟହେଇ ରାତି ବିତେଇଲୁ ସିକାଗୋରେ ଜଣେ ବନ୍ଧୁଙ୍କ ଘରେ ।

ପରଦିନ କନେକ୍ଟିଂ ଫ୍ଲାଇଟ୍ ନେଇ ପହଞ୍ଚିଲୁ ନ୍ୟାସ୍‌ଭିଲ୍ ବିମାନ ଏୟାର୍‌ପୋର୍ଟରେ । ବଡଝିଅ ବୁଲବୁଲ ଓ ନାତି ପ୍ରତୀକ ଆମକୁ ଏୟାର୍‌ପୋର୍ଟରୁ ପାଛୋଟି ନେଇଗଲେ ତାଙ୍କ ଘରକୁ । ଏ ଭିତରେ ପ୍ରବୀର ଓ ବୁଲବୁଲ ନ୍ୟାସ୍‌ଭିଲ୍ ସହର ନିକଟ ଏକ ଛୋଟ ସହର ଫ୍ରାଙ୍କ୍‌ଲିନ୍‌ର ସବ୍‌ର୍ବରେ ଏକ ଏକର ଜମି କିଣି ତା' ଉପରେ ଗୋଟିଏ ସୁନ୍ଦର ନୂଆ ଘର ବନେଇ ସାରିଥାନ୍ତି । ଆମେ ରହିଲୁ ଝିଅ ଜୋଇଁଙ୍କ ସେଇ ନୂଆ ଘରେ ।

## ନ୍ୟାସ୍‌ଭିଲ୍ ହିନ୍ଦୁମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା

**୫ ଜୁଲାଇ, ୨୦୦୩ :** ସେଦିନ ଦି'ପହରେ ନ୍ୟାସ୍‌ଭିଲ୍ ହିନ୍ଦୁ ମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଭବ୍ୟ ସମାରୋହ ସହକାରେ ପାଳିତ ହେଲା । ମୁଖ୍ୟଅତିଥି ଭାବେ ମୁଁ ଠାକୁରଙ୍କ ରଥରେ ପାରମ୍ପରିକ ଛେରାପହଁରା କର୍ତ୍ତବ୍ୟ ସଂପାଦନ କଲି । ସନ୍ଧ୍ୟାବେଳେ ମନ୍ଦିରର ଅଡିଟୋରିୟମ୍‌ରେ ଏକ ବିଶାଳ ଜନସଭାରେ ମୁଁ ସଂବୋଧନ କଲି । ଏକମାତ୍ର ବକ୍ତାଭାବେ ମତେ ସମୟ ଦିଆଯାଇଥିଲା ପୂରା ଏକ ଘଣ୍ଟା । ସାଧାରଣତଃ କୌଣସି ଆନ୍ତର୍ଜାତିକ ସମ୍ମିଳନୀରେ ବକ୍ତାମାନଙ୍କୁ ଦଶପନ୍ଦର ମିନିଟ୍‌ରୁ ଅଧିକ ସମୟ ଦିଆଯାଏନା କୌଣସି ବିଷୟରେ ବକ୍ତବ୍ୟ ପ୍ରଦାନ ପାଇଁ– କିନ୍ତୁ ମତେ ପୂରା ଏକଘଣ୍ଟା ସମୟ ଦିଆଯାଇଥିବାରୁ ମୁଁ ମୂଳରୁ ବିଷୟବସ୍ତୁ ନିର୍ବାଚନ ପାଇଁ ଏକ ଗମ୍ଭୀର ବିଷୟ ନିର୍ବାଚନ କରିଥିଲି । ମୋ ବକ୍ତବ୍ୟର ବିଷୟବସ୍ତୁ ଥିଲା– "Cosmological significance of Hindu Dharma and its application through Jagannath consciousness"

› ଜଗନ୍ନାଥଙ୍କ କୃପାରୁ ବିଷୟବସ୍ତୁ ଉପରେ ଦୀର୍ଘ ଏକଘଣ୍ଟାକାଳ ଏକ ସୁଚିନ୍ତିତ ବକ୍ତବ୍ୟ ଉପସ୍ଥାପନ କଲି । ହିନ୍ଦୁଧର୍ମର ବ୍ରହ୍ମାଣ୍ଡ ଉତ୍ପତ୍ତିର ତତ୍ୱ ସହିତ ଷ୍ଟିଫେନ୍ ହକିଂସ୍‌ଙ୍କର ସେ ସମୟରେ ଚହଳ ପକାଇଥିବା– ''ଏ ବ୍ରିଫ୍ ହିଷ୍ଟ୍ରି ଅଫ୍ ଟାଇମ୍''ବହିର ପ୍ରଧାନ ଉପପାଦ୍ୟ ।

''ସିଙ୍ଗୁଲାରିଟି'' କନ୍‌ସେପ୍ଟର ଏକ ତୁଳନାତ୍ମକ ଆଲୋଚନା କରି ମୁଁ ଯେତେବେଳେ କହିଲି, "Lord Jagannath is the Singularity of Stephen Hawking. He is the unification principle of the four fundamental forces of Einstein, He is the Brahman of Vedanta about which Swami Vivekananda elaborated in his historic speech at the Chicago

World Congress of Religions,in 1893, here in the heart of USA. and He is none other than our dear friend whom you may enlist as a friend in the Face Book of your computer ।

ମୋର ଅଭିମତକୁ ଏକ ବିପୁଳ କରତାଳି ଦ୍ୱାରା ସମର୍ଥନ ଜଣାଇଥିଲେ ସେଦିନ ସଭାରେ ଉପସ୍ଥିତ ଶତାଧିକ ସଂଖ୍ୟକ ସର୍ବଭାରତୀୟ ଶ୍ରୋତୃବୃନ୍ଦ । ଏହାର ମୁଖ୍ୟ କାରଣ– ସଭାରେ ଉପସ୍ଥିତ ଅଧିକାଂଶ ଶ୍ରୋତା ବିଜ୍ଞାନ ଓ ବୈଷୟିକ ବିଭାଗର ଲୋକ । ସେମାନେ ଧର୍ମ ଓ ଧାର୍ମିକତାକୁ ସହଜେ ଗ୍ରହଣ କରିପାରନ୍ତି ନାହିଁ ତହିଁରେ ବିଜ୍ଞାନ ସମର୍ଥିତ ଯୁକ୍ତି ଓ ପ୍ରମାଣ ନଥିଲେ । ଜଗନ୍ନାଥ ତତ୍ତ୍ୱକୁ ସାଧାରଣତଃ ଧାର୍ମିକ ପରମ୍ପରାରେ ହିଁ ବିଚାରକରନ୍ତି ପ୍ରବଚନ ଦେବା ପ୍ରବଚକମାନେ । ସେଭଳି ପାରମ୍ପରିକ ପ୍ରବଚନକୁ ଆଧୁନିକ ଶିକ୍ଷିତ ଲୋକେ ଉପେକ୍ଷା କରିବା ସ୍ୱାଭାବିକ । ତେଣୁ ମୁଁ ଜଗନ୍ନାଥଙ୍କୁ ଆଜିର ସର୍ବାଧୁନିକ ବୈଜ୍ଞାନିକ ବିଚାରରେ ଉପସ୍ଥାପନା କରିଥିଲି ଓ ଦେଖିଲି ତାହା ସର୍ବଜନ ଗ୍ରାହ୍ୟ ମଧ୍ୟ ହେଲା ।

ସେହିପରି ମୁଁ ଯେତେବେଳେ ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି– ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କ ରଙ୍ଗକୁ ବର୍ତ୍ତମାନ ପୃଥିବୀ ପୃଷ୍ଠର ସମଗ୍ର ମାନବଜାତିର ଚତୁର୍ବର୍ଣ୍ଣ ଅର୍ଥାତ୍ ଶ୍ୱେତ ବା କକେସଏଡ୍, ପୀତ ଅର୍ଥାତ୍ ମଙ୍ଗୋଲ୍ଏଡ୍, କୃଷ୍ଣ ଅର୍ଥାତ୍ ନିଗ୍ରୟଡ୍ ଓ ଲୋହିତ ଅର୍ଥାତ୍ ଅଷ୍ଟ୍ରାଲଏଡ୍ ଭଳି ନୃତତ୍ତ୍ୱସମ୍ମତ ମାନବିକ ବର୍ଣ୍ଣବୈଷମ୍ୟର ସମନ୍ୱୟ ବୋଲି ଆଖ୍ୟାୟିତ କଲି ପୁନର୍ବାର ସଭା କକ୍ଷ ପ୍ରକମ୍ପିତ ହେଲା କରତାଳିରେ ।

ଏହା ସହିତ ମୋ ବକ୍ତବ୍ୟର ଅନ୍ୟ ଏକ ଅଭିମତକୁ ମଧ୍ୟ ଶ୍ରୋତାମାନେ ଉଲ୍ଲସିତ କରତାଳି ଦ୍ୱାରା ସମର୍ଥନ ଜଣାଇଲେ । ଏଥର ଆମେରିକା ଯିବା ପୂର୍ବରୁ ମୁଁ ଦୁଇଟି ଭାରତୀୟ ଗ୍ରନ୍ଥ ଅଧ୍ୟୟନ କରିଥିଲି । ପ୍ରଥମଟି ହେଲା ୧୯୫୦ରେ ପ୍ରକାଶିତ ଏକ ମୂଲ୍ୟବାନ୍ ଗ୍ରନ୍ଥ – "Hindu America by Chamanlal"– ଏ ଗ୍ରନ୍ଥର ମୁଖବନ୍ଧ ଲେଖିଛନ୍ତି ଭାରତର ତିନିଜଣ ବିଶିଷ୍ଟ ବ୍ୟକ୍ତି– ପଣ୍ଡିତ ଜବାହରଲାଲ୍ ନେହେରୁ, ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ପଣ୍ଡିତ ମଦନ-ମୋହନ ମାଲବ୍ୟ । ଚମନଲାଲ୍ ଥିଲେ ଜଣେ ବୌଦ୍ଧ ଭିକ୍ଷୁ ଓ ସେ ବିଶ୍ୱ ଭ୍ରମଣ କରି ପୃଥିବୀର ବିଭିନ୍ନ ଦେଶ ଓ ଅଞ୍ଚଳର ଧର୍ମ ସଂସ୍କୃତି ଏବଂ ସେଠାକାର ସାଂପ୍ରତିକ ସାମାଜିକ ଚଳଣିରେ ପ୍ରାଚୀନ ଭାରତୀୟ ସଭ୍ୟତାର ଛାପଗୁଡିକୁ ତନ୍ନତନ୍ନ କରି ନିରୀକ୍ଷଣ କରିଥିଲେ । ଆମେରିକା ଭ୍ରମଣକାଳରେ ସେ ଆଜିର ତଥାକଥିତ ଲାଟିନ୍ ଆମେରିକାର ମେକ୍ସିକୋ ଓ ପେରୁରେ ଏଯାବତ୍ ପ୍ରଚଳିତ ମାୟା, ଆଜ୍‌ଟେକ୍ ଓ ଇନ୍‌କା ନାମକ ତିନୋଟି ପ୍ରାଚୀନ ସଭ୍ୟତାରେ ପ୍ରଚଳିତ ସାମାଜିକ ଧାର୍ମିକ ରୀତିନୀତି, ଆଚାର ବ୍ୟବହାର ସହିତ ସେଠାର ମନ୍ଦିରମାନଙ୍କର ପ୍ରତ୍ନତାତ୍ତ୍ୱିକ ଖନନ ସ୍ଥାନ ସବୁର ଅନୁସନ୍ଧାନ କରିଥିଲେ । ତାଙ୍କର ''ହିନ୍ଦୁ ଆମେରିକା'' ଗ୍ରନ୍ଥରେ ସେ ସେସବୁର ବିଶଦ ବିବରଣୀ ଦେଇଛନ୍ତି । ସେଥିରେ ସେ

ନିର୍ଭରଯୋଗ୍ୟ ଭାବେ ପ୍ରମାଣ କରିଛନ୍ତି ଯେ ସେଇ ତିନୋଟିଯାକ ପ୍ରାଚୀନ ସଭ୍ୟତା ବାସ୍ତବରେ ତିନୋଟି ହିନ୍ଦୁ ସଭ୍ୟତା ବ୍ୟତୀତ ଅନ୍ୟ କିଛି ନୁହନ୍ତି । ତାର ସତ୍ୟତା ଆଧୁନିକ ବୈଜ୍ଞାନିକଯୁଗର ପ୍ରତ୍ନତତ୍ତ୍ୱବିତ୍‌ମାନେ ଖନନ ମାଧ୍ୟମରେ ପ୍ରମାଣ କରିଚନ୍ତି । ମେକ୍‌ସିକୋର ବିଭିନ୍ନ ଅଞ୍ଚଳର ପ୍ରତ୍ନତାତ୍ତ୍ୱିକ ଖନନରୁ ଅନେକ ହିନ୍ଦୁ ମନ୍ଦିରର ଧ୍ୱଂସାବଶେଷ ମିଳିଛି । ସେଥିରୁ ଶିବ, ଗଣେଶ, ଦୁର୍ଗା, ହନୁମାନ ଓ ଇନ୍ଦ୍ର ବରୁଣ ପ୍ରଭୃତି ବହୁ ଦେବଦେବୀଙ୍କ ମୂର୍ତ୍ତି ମଧ୍ୟ ଉଦ୍ଧାର କରାଯାଇ ମ୍ୟୁଜିୟମ୍‌ମାନଙ୍କରେ ପ୍ରଦର୍ଶିତ ହେଉଛି । ସେଥିରୁ ୧୪୯୨ ଖ୍ରୀଷ୍ଟାବ୍ଦରେ କଲମ୍ବସ୍‌ଙ୍କ ତଥାକଥିତ ଆମେରିକା ଆବିଷ୍କାରକୁ ନେଇ ଯେଉଁ ଐତିହାସିକ ମତ ଏଯାବତ୍ ଶିକ୍ଷିତ ମହଲରେ ପ୍ରଚଳିତ ରହିଚି ତାର ଭ୍ରମାତ୍ମକତା ପ୍ରମାଣିତ ହୋଇପାରିଚି । ଆମେରିକାରେ ଅନ୍ୟୂନ ଦୁଇହଜାର ବର୍ଷ ତଳୁ ହିନ୍ଦୁଧର୍ମ ଯେ ଏକ ବ୍ୟାପକ ଅଞ୍ଚଳରେ ପ୍ରତିଷ୍ଠିତ ହୋଇସାରିଛି ତାର ତାତ୍ତ୍ୱିକ ବିଚାର ମୁଁ ଉପସ୍ଥାପିତ କରିଥିଲି ମୋ ବକ୍ତବ୍ୟରେ ।

ସେଇ ପ୍ରସଙ୍ଗରେ ମୁଁ ଉପସ୍ଥାପିତ କଲି ଅନ୍ୟ ଏକ ଗ୍ରନ୍ଥରୁ ଯାହା ପୂର୍ବରୁ ପାଠ-କରିଥିଲି । ସେ ଗ୍ରନ୍ଥଟି ହେଲା ଭାରତୀୟ ବିଦ୍ୟାଭବନ ପ୍ରକାଶିତ "The Hindu Dharma"– by His Holiness Sankaracarya of Kanchi ।

ଏ ଏକ ବିଶାଳ ଗ୍ରନ୍ଥ ଯାହାର ରଚୟିତା ସ୍ୱାମୀ ଚନ୍ଦ୍ରଶେଖରାନନ୍ଦ ସରସ୍ୱତୀ । ଏ ଜଣେ ସର୍ବ-ସ୍ୱୀକୃତ ସଂସ୍କୃତ ସ୍କଲାର୍ ଭାବେ ପରିଚିତ । ସଂସ୍କୃତ ବାହାରେ ଭାରତତତ୍ତ୍ୱ (ଇଣ୍ଡୋଲଜି), ଇତିହାସ, ପ୍ରତ୍ନତତ୍ତ୍ୱ (ଆର୍କିଓଲଜି), ନୃତତ୍ୱ (ଆନ୍ଥ୍ରୋପୋଲଜି) ଇତ୍ୟାଦି ବିଷୟରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ଥିଲା ଓ ସଂସ୍କୃତ ତଥା ଇଂରେଜୀରେ ବହୁ ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ମତରେ ଆମେରିକା ତଥା ମେକ୍ସିକୋ ପେରୁ ଇତ୍ୟାଦିରେ ବହୁ ପ୍ରାଚୀନ କାଳରୁ ମାୟା, ଆଜ୍‌ଟେକ୍ ଓ ଇନ୍‌କା ପ୍ରଭୃତି ଯେଉଁ ତିନୋଟି ମୁଖ୍ୟ ସଭ୍ୟତା ପ୍ରତିଷ୍ଠିତ ହୋଇଥିଲା ତାହା ନିଶ୍ଚିତରେ ଭାରତୀୟ । ଏ ସଂପର୍କରେ ସେ ବ୍ୟାପକ ଆଲୋଚନା କରିଛନ୍ତି ତାଙ୍କ ପୁସ୍ତକରେ । ସେ କହନ୍ତି– ମାୟା ଶବ୍ଦର ଉତ୍ପତ୍ତି 'ମୟ'ରୁ । ମୟଙ୍କ ବିଷୟରେ ରାମାୟଣ ମହାଭାରତରେ ବହୁ ଉଲ୍ଲେଖ ରହିଚି । ମୟ ପାତାଳର ଜଣେ ପ୍ରସିଦ୍ଧ ସ୍ଥପତି ଯେ ଲଙ୍କାର ରାଜା ରାବଣଙ୍କ ଶଶୁର । ସେ ରାବଣ ପାଇଁ ସ୍ୱର୍ଣ୍ଣ ଲଙ୍କା ନିର୍ମାଣ କରିଥିଲେ । ସେ ମଧ୍ୟ ଶ୍ରୀକୃଷ୍ଣଙ୍କ ଆଦେଶରେ ଧୃତରାଷ୍ଟ୍ରଙ୍କଦ୍ୱାରା ହସ୍ତିନାରୁ ବିତାଡିତ ପାଣ୍ଡବମାନଙ୍କ ପାଇଁ ନିର୍ମାଣ କରିଥିଲେ ମହାଭାରତ ଯୁଗର ମାୟାପୁରୀ 'ଇନ୍ଦ୍ରପ୍ରସ୍ଥ' ନଗରୀ ଯାହା ଆଜିର ଭାରତର ରାଜଧାନୀ ଦିଲ୍ଲୀ ସହର ନାମରେ ସ୍ୱୀକୃତ ।

ସେହିପରି 'ଆଜ୍‌ଟେକ୍' (Astec) ଶବ୍ଦର ଉତ୍ପତ୍ତି ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ମହର୍ଷି ଆସ୍ତିକଙ୍କ ନାମାନୁସାରେ ବୋଲି ଉକ୍ତ ଗ୍ରନ୍ଥରେ ଉଲ୍ଲେଖ କରାଯାଇଚି । ଭାଗବତରେ ମହର୍ଷି ଆସ୍ତିକଙ୍କ ସଂପର୍କରେ ବର୍ଣ୍ଣିତ ହୋଇଛି ଯେ ପାଣ୍ଡବଙ୍କ ବଂଶଧର, ଅଭିମନ୍ୟୁଙ୍କ ପୁତ୍ର ମହାରାଜ ପରିକ୍ଷିତ ବ୍ରାହ୍ମଣ ଅଭିଶାପରେ ତକ୍ଷକ ଦଂଶନରେ ମୃତ୍ୟୁବରଣ କଲାପରେ ତାଙ୍କ

ପୁତ୍ର ଜନ୍ମେଞ୍ଜୟ ସର୍ପକୁଳ ଲୋପ କରିଦେବା ପାଇଁ ଏକ ସର୍ପ ଯଜ୍ଞ କରିଥିଲେ । ଯଜ୍ଞରେ ପୃଥିବୀର ସମସ୍ତ ସର୍ପଙ୍କୁ ଆହୁତି ଦେବା ପରେ ପାଳି ପଡିଲା ସ୍ୱର୍ଗରେ ଇନ୍ଦ୍ରଙ୍କ ପାଳିତ ସର୍ପରାଜ ତକ୍ଷକଙ୍କର ଯେ ପରିକ୍ଷିତଙ୍କୁ ଦଂଶନ କରିଥିଲେ । ତକ୍ଷକଙ୍କୁ ଆହୁତି ଦେବା ପାଇଁ 'ତକ୍ଷକାୟ ସ୍ୱାହା' ଉଚ୍ଚାରଣ ସମୟରେ ଇନ୍ଦ୍ରଙ୍କ ଶରଣ ପଶିଲେ ତକ୍ଷକ । ଇନ୍ଦ୍ର ତାଙ୍କୁ ରକ୍ଷା-କରିବାରୁ ଜନ୍ମେଜୟ ଯାଜ୍ଞିକ ଋଷିମାନଙ୍କୁ କହିଲେ, ''ଯଦି ଇନ୍ଦ୍ର ପ୍ରତିବନ୍ଧକ ହେଉଛନ୍ତି ତେବେ ତକ୍ଷକ ସହିତ ଇନ୍ଦ୍ରଙ୍କୁ ମଧ୍ୟ ଏ ସର୍ପଯଜ୍ଞରେ ଆହୁତି ଦିଅ ।''– ସେହି ସମୟରେ ଆସ୍ତିକ ରାଜା ଜନ୍ମେଜୟଙ୍କ ସର୍ପଯଜ୍ଞରେ ହସ୍ତକ୍ଷେପ କରିଥିଲେ ଓ ସର୍ପରାଜ ତକ୍ଷକଙ୍କ ପ୍ରାଣ ରକ୍ଷାକରିଥିଲେ । ପରେ ସେ ଜନ୍ମେଜୟଙ୍କୁ ବାରଣ କଲେ ବିଶ୍ୱରୁ ସର୍ପକୁଳ ସମୂଳେ ଧ୍ୱଂସ କରି ନଦେବା ଲାଗି ଏବଂ ଚେତାବନୀ ଦେଲେ, ''ହେ ରାଜା ! ଈଶ୍ୱର ସୃଷ୍ଟ ଜୀବଗୋଷ୍ଠୀର ରକ୍ଷକ ହେବାକୁ ତୁମେ ଧର୍ମ ସହିତ ଚୁକ୍ତିବଦ୍ଧ ହୋଇଛ । ବିଶ୍ୱରୁ କୌଣସି ଜାତି ବା ପ୍ରଜାତିର ଜୀବ ଜଗତ୍‌କୁ ସମୂଳେ ଧ୍ୱଂସ କରିବାର ଅଧିକାର ତୁମର ନାହିଁ । ଏହା ଘୋର ଅନିଷ୍ଟ ସାଧନ କରିବ ସମଗ୍ର ସୃଷ୍ଟିର । ତମେ ଏ ଅପକର୍ମରୁ କ୍ଷାନ୍ତ ହୁଅ ।''

ବହୁ ତର୍କବିତର୍କ ପରେ ଜନ୍ମେଜୟ ତକ୍ଷକ ବଧ ସଂକଳ୍ପରୁ ନିବୃତ୍ତ ହେଲେ । ପରେ ତକ୍ଷକ ମହର୍ଷି ଆସ୍ତିକଙ୍କୁ ନିଜର କୁଳଗୁରୁ ରୂପେ ବରଣ କଲେ ଏବଂ ପାତାଳରେ ନାଗଲୋକ ପ୍ରତିଷ୍ଠା ହେଲା ଯେଉଁଠି ନାଗମାନେ ବାସ କରନ୍ତି ବୋଲି ଭାରତୀୟ ପୁରାଣମାନଙ୍କରେ ସୂଚୀତ ହୋଇଚି ।

ପାତାଳ କହିଲେ ଆଧୁନିକ ଅର୍ଥରେ ଆମେରିକାକୁ ବୁଝାଏ । ସେଠାରେ ନାଗମାନଙ୍କର ସଭ୍ୟତାକୁ ଆସ୍ତିକ ସଭ୍ୟତା ନାମରେ ବୁଝିବସିଲେ ସେଠାରେ ପ୍ରତିଷ୍ଠିତ ଆଜ୍‌ଟେକ୍ ସଭ୍ୟତାକୁ ଯଥାର୍ଥରେ ଆସ୍ତିକ ସଭ୍ୟତା କୁହାଯାଇପାରିବ ବୋଲି କାଞ୍ଚିର ଶଙ୍କରାଚାର୍ଯ୍ୟ ସ୍ୱାମୀ ଚନ୍ଦ୍ରଶେଖରେନ୍ଦ୍ର ମତ ଦିଅନ୍ତି ।

ସେହିପରି ଦକ୍ଷିଣ ଆମେରିକାର ପଶ୍ଚିମ ଉପକୂଳର ଦେଶ ପେରୁ ସଂପର୍କରେ ଜଣାଯାଏ, ଏ ଦେଶ ପ୍ରାୟ ଦୁଇହଜାର ବର୍ଷ ପୂର୍ବରୁ ଷୋଡଶ ଶତାବ୍ଦୀ ପର୍ଯ୍ୟନ୍ତ ''ଇନ୍'' ବା ସୂର୍ଯ୍ୟ ଉପାସକମାନଙ୍କ ଦେଶ ରୂପେ ପରିଚିତ ଥିଲା । ସେହି ଅନୁସାରେ ପେରୁର ସଭ୍ୟତାକୁ ଅଦ୍ୟାବଧି ''ଇନ୍‌କା'' ସଭ୍ୟତା ବୋଲି ନାମିତ କରାଯାଏ । ରାମାୟଣରେ ରାମଚନ୍ଦ୍ରଙ୍କ ବଂଶକୁ ଇନ୍ ବା ସୂର୍ଯ୍ୟ ବଂଶ ବୋଲି ମଧ୍ୟ ନାମିତ କରାଯାଏ । ଏହି ସଭ୍ୟତାକୁ କଲମ୍ବସ୍‌ଙ୍କ ଆମେରିକା ଆବିଷ୍କାର ପରେପରେ ତାଙ୍କ ପଦାଙ୍କ ଅନୁସରଣକାରୀ ସ୍ପେନ୍‌ଦେଶର ଉପନିବେଶବାଦୀମାନେ ଅଧିକାର କରିଥିଲେ ଓ ସେଠାର ସୂର୍ଯ୍ୟ ଉପାସକ ରାଜବଂଶକୁ ନିଷ୍ଠୁର ଭାବେ ହତ୍ୟାକରି ଜାହାଜ ବୋଝେଇ ସୁନା ଲୁଣ୍ଠନ କରି ନିଜ ଦେଶକୁ ରପ୍ତାନୀ କରିଥିଲେ । ସେସବୁର ବିଶଦ ବର୍ଣ୍ଣନା ଆଜିର ଇତିହାସ ପୃଷ୍ଠାରେ ଲିପିବଦ୍ଧ କରାଯାଇଚି, ଶଙ୍କରାଚାର୍ଯ୍ୟଙ୍କ ''ଦ' ହିନ୍ଦୁ ଧର୍ମ'' ପୁସ୍ତକରେ ମଧ୍ୟ ଏହାର ସୂଚନା ରହିଚି ।

ତେବେ ତାଙ୍କ ମତରେ ସୂର୍ଯ୍ୟପୂଜକ ଏହି ଇନ୍‌କା ସଭ୍ୟତାର ଲୋକମାନେ ଯେଉଁ ମନ୍ଦିରମାନଙ୍କରେ ପୂଜା କରୁଥିଲେ ସେ ମନ୍ଦିରରେ ହିନ୍ଦୁଧର୍ମର ମୂର୍ତ୍ତି ପୂଜା ପଦ୍ଧତି ଅନୁସରଣ କରାଯାଉଥିଲା । ଏ ମତର ମଧ୍ୟ ପୂର୍ବୋକ୍ତ ଭିକ୍ଷୁ ଚମନଲାଲ୍‌ଙ୍କ ''ହିନ୍ଦୁ ଆମେରିକା'' ବହିରେ ପ୍ରକାଶିତ ବହୁ ତଥ୍ୟ ସହିତ ମେଳ ରହିଚି ।

ଏ ସବୁ ଦୃଷ୍ଟିରୁ ଆମେରିକାରେ ବହୁ ପୂର୍ବରୁ ହିନ୍ଦୁମାନଙ୍କର ଉପସ୍ଥିତି ଯେ ଉଭୟ ଇତିହାସ ଓ ପୁରାଣ ସମର୍ଥିତ ଏକ ବାସ୍ତବତା ଏହାକୁ ଇତିହାସ ଅସ୍ୱୀକାର କରିପାରିବନାହିଁ । ତେବେ ପ୍ରଶ୍ନ ଉଠେ ପୃଥିବୀର ଏଇ ବିଶାଳ ଭୂଭାଗରେ ଜଗନ୍ନାଥଙ୍କ ପୂଜା ଆରାଧନା କେବେ କେଉଁଠି କରାଯାଉଥିଲା କି ନାହିଁ ।

ସେଇ ପ୍ରଶ୍ନର ଉତ୍ତର ସ୍ୱରୂପ ମୁଁ ସେଦିନ ସଭାରେ ମୋ ନିଜର ଏକ ବାସ୍ତବ ଅଭିଜ୍ଞତାର ସଂକ୍ଷିପ୍ତ ବିବରଣୀ ଉପସ୍ଥାପନା କଲି । ଏ ସଂପର୍କରେ ୧୯୯୭ରେ ଆମେରିକା ଭ୍ରମଣ ସମୟରେ ମୁଁ କନେକ୍‌ଟିକଟ୍‌ର ଆଭ୍ୟନ୍ତରୀଣ ଆଦିବାସୀ ଅଞ୍ଚଳ 'ୱାସିଂଟନ୍'ରେ ଦେଖିଥିବା ରେଡ୍‌ଇଣ୍ଡିୟାନ୍‌ମାନଙ୍କ ଏକ ସାଂସ୍କୃତିକ ସଂଗ୍ରହାଳୟର ପ୍ରବେଶ ଦ୍ୱାରରେ ପ୍ରତିଷ୍ଠିତ ଜଗନ୍ନାଥଙ୍କ ଏକ ଅବିକଳ ପ୍ରତିକୃତି ବିଷୟ କହିଲି । ସେଇ ପ୍ରତିମୂର୍ତ୍ତି ତଳେ ଲେଖାଯାଇଥିବା "The House Deity Of American Indians" ବିଷୟ କହିବା ସମୟରେ ଲକ୍ଷ୍ୟକଲି ଶ୍ରୋତାମାନଙ୍କ ଭିତରୁ କେତେକ ମୋ' କଥାକୁ ସହଜରେ ବିଶ୍ୱାସ କରିବାକୁ ଯେପରି କୁଣ୍ଠିତ ।

ସେ ଯାହାହେଉ ପ୍ରଭୁ ଶ୍ରୀଜଗନ୍ନାଥଙ୍କ କୃପାରୁ ସେଇ ସନ୍ଧ୍ୟାରେ ନ୍ୟାସ୍‌ଭିଲ୍ ରଥଯାତ୍ରାରେ ମୋର ଦୀର୍ଘ ଏକଘଣ୍ଟାର ଆଲୋଚନା ଅତ୍ୟନ୍ତ ସଫଳ ଭାବେ ସମାପ୍ତ ହେଲା ।

ତାର ସୁଫଳ ମତେ ଅବିଳମ୍ବେ ପ୍ରାପ୍ତ ହେଲା ।

## ସେଣ୍ଟ୍ ଥମାସ୍ ହସ୍‌ପିଟାଲ୍‌ରେ ଭର୍ତ୍ତିହେଲି

ମୋର ଏଥରର ଆମେରିକା ବୁଲିବା ଭିତରେ ଏହା ଥିଲା ଏକ ବିଶେଷ ଉଲ୍ଲେଖ-ଯୋଗ୍ୟ ଘଟଣା । ପୂର୍ବ ଦୁଇଥର ଆମେରିକା ବୁଲିବା ଭିତରେ ମୁଁ ଅନେକ ଜାଗା ଦେଖିଥିଲି– କେବଳ ଏଠାକାର କୌଣସି ବଡ ଡାକ୍ତରଖାନା ଦେଖିନଥିଲି । ପ୍ରଭୁ ଜଗନ୍ନାଥ ମତେ ଏଥର ଏଠିକି ତାଙ୍କ କାମରେ କାହିଁକି ଆଣିଥିଲେ ସେ କଥା ଖୁବ୍ ଶୀଘ୍ର ବୁଝାପଡିଗଲା ।

ରଥଯାତ୍ରାର ଦୁଇ ତିନ ଦିନ ପରେ ମତେ ଜୋଇଁ ପ୍ରବୀର କହିଲେ, ''ଆପଣଙ୍କର ହାର୍ଟ ପରୀକ୍ଷା କରାଯିବାର ବ୍ୟବସ୍ଥା କରାଯାଇଚି । ଚାଲନ୍ତୁ ଯିବା. . .''

ମୁଁ କାବା ହେଇ ତାଙ୍କୁ ଅନେଇଲି । କହିଲି, ''ନାନା, ମୋର ହାର୍ଟଫାର୍ଟ ସବୁ ଠିକ୍‌ଠାକ୍ ଅଛି । ଏଇତ ଦେଖୁଚ ମୁଁ ସକାଳେ ଚାରିମାଇଲ୍ ଚାଲବୁଲ କରି ଆସୁଚି । ମୋର କିଛି ହେଇନି ।''

ତଥାପି ଝିଅ ଜୋଇଁ ମତେ ବାଧ୍ୟକରି ଗାଡିରେ ଘିନିଚାଲିଲେ ଏଠାକାର ଏକ ନାମୀ ଡାକ୍ତରଖାନା ସେଣ୍ଟ୍ ଥମାସ୍ ହସ୍‌ପିଟାଲ୍‌କୁ । ମୋର ଏକମାତ୍ର ଭୟ ଥାଏ ଏଠିକା ଡାକ୍ତରଖାନାରେ ଯଦି ଭର୍ତ୍ତିହୁଏ ତେବେ ଖର୍ଚ୍ଚ ତୁଲେଇବ କିଏ ? ଏଠାକାର ଡାକ୍ତରଖାନାର ଖର୍ଚ୍ଚ ତ ନିଶ୍ଚୟ ଭାରତ ତୁଳନାରେ ଅଚିନ୍ତନୀୟ । ସେ ଖର୍ଚ୍ଚ କାହିଁକି ମୁଁ ମୋ ପିଲାଙ୍କ ମୁଣ୍ଡରେ ପକେଇବି ? ତେଣୁ ମୁଁ ଶେଷ ପର୍ଯ୍ୟନ୍ତ ରାଜି ହେଉନଥିଲି ଏଠାକାର ଡାକ୍ତରଖାନାରେ ମୋର କିଛି ଟ୍ରିଟ୍‌ମେଣ୍ଟ୍ କରାଇବାକୁ ।

ଫ୍ରାଙ୍କ୍‌ଲିନ୍‌ରେ ପ୍ରବୀରଙ୍କ ଘରଠାରୁ ନ୍ୟାସ୍‌ଭିଲ୍‌ର ସେଣ୍ଟ୍ ଥମାସ୍ ହସ୍‌ପିଟାଲ୍ କାର୍‌ରେ ପ୍ରାୟ ଦେଢଘଣ୍ଟାର ବାଟ । ଆମେ ଯାଇ ହସ୍‌ପିଟାଲ୍‌ରେ ପହଞ୍ଚିଲୁ । ଏଠାକାର ଡାକ୍ତରଖାନା ବାସ୍ତବରେ ଗୋଟିଏ ଦର୍ଶନୀୟ ସ୍ଥାନ । ଏକ ବିଶାଳ ଦୁର୍ଗପରି ବିରାଟ ଅଞ୍ଚଳ ବ୍ୟାପୀ ଏକ ବହୁତଳ ପ୍ରାସାଦର ସବା ଉପର ମହଲା ପର୍ଯ୍ୟନ୍ତ ଗାଡିରେ ବସି ଡ୍ରାଇଭ୍ କରିବାପାଇଁ ର୍‍ୟାମ୍ପ ରହିଚି । ଆମେ ପାଞ୍ଚମହଲାଠାରେ ଏକ ବିଶାଳ ପାର୍କିଂ ଏରିଆରେ କାର୍ ପାର୍କ କଲୁ । ପରେ ପରେ ଚାଲିଲୁ ନିର୍ଦ୍ଧାରିତ ହାର୍ଟ ସର୍ଜନ୍ ଡକ୍ଟର୍ ଏନ୍.ଏସ୍.ବାବୁଙ୍କ ଅଫିସ୍‌କୁ । ବାଟରେ ପ୍ରବୀର ସୂଚନା ଦେଲେ, ''ଏ ଡାକ୍ତର ଓ ତାଙ୍କ ସ୍ତ୍ରୀ ସେଦିନ ସଭାରେ ଉପସ୍ଥିତ ଥିଲେ ଓ ସେମାନେ ଆପଣଙ୍କ ବକ୍ତୃତା ଶୁଣିଚନ୍ତି । ସେମାନେ ଦକ୍ଷିଣ ଭାରତୀୟ ଲୋକ– ବୋଧହୁଏ ବାଙ୍ଗାଲୋରର । ବହୁତ ଈଶ୍ୱରବିଶ୍ୱାସୀ । ସେମାନଙ୍କ ସହିତ ସିଧାସଳଖ ପରିଚୟ ମୋର ଅବଶ୍ୟ ନାହିଁ । କିନ୍ତୁ ସେମାନଙ୍କୁ ଯେତେବେଳେ ଆମର ଏଠାକାର ଓଡିଆ ଡାକ୍ତର ବନ୍ଧୁ ପଞ୍ଚାନନ ଶତପଥୀ ଆପଣଙ୍କ ହେଲ୍‌ଥ୍ ବିଷୟ କହିଲେ ସେ ସାଙ୍ଗେସାଙ୍ଗେ ରାଜି-ହେଇଗଲେ ଆଜି ଆପଣଙ୍କୁ ଚେକ୍‌ଅପ୍ କରିବାକୁ । ଏଇଟା ଜଗନ୍ନାଥଙ୍କ କୃପା ବୋଲି ଜାଣନ୍ତୁ– କାରଣ ବିନା ଏମ୍‌ର୍ଜେନ୍ସିରେ ଏସବୁ ଡାକ୍ତରଖାନାରେ ହାର୍ଟ ଚେକ୍‌ଅପ୍ କରାଇବାକୁ ହେଲେ ଡାକ୍ତରଙ୍କ ସାଙ୍ଗେ ବହୁଦିନ ପୂର୍ବରୁ ଆପ୍‌ଏଣ୍ଟମେଣ୍ଟ୍ ନେବାକୁ ହୁଏ । କିନ୍ତୁ ଡାକ୍ତର ଏନ୍.ଏସ୍. ବାବୁ ସାଙ୍ଗେ ସାଙ୍ଗେ ରାଜିହେଇଗଲେ । ସେ ଜଣେ ଅତି ବିଖ୍ୟାତ ଡାକ୍ତର । ଆପଣଙ୍କ ଚେକ୍‌ଅପ୍ କରିବାକୁ ସେ ତତ୍‌କ୍ଷଣାତ୍ ରାଜିହେଇଯିବାଟା ନିଶ୍ଚୟ ଜଗନ୍ନାଥଙ୍କ କୃପା. . .''

ଆମେ ଡାକ୍ତରବାବୁଙ୍କ ଅଫିସ୍‌ରେ ପହଞ୍ଚିଲୁ । ସେଠି ଅଫିସିଆଲ୍ ରେଜିଷ୍ଟ୍ରେସନ୍ ଇତ୍ୟାଦି କାମ ସୁରୁଖୁରୁରେ ହେଇଗଲା । ଇଣ୍ଡିଆରୁ ଆସିବା ପୂର୍ବରୁ ମୁଁ ଓ ନିରୁପମା ହେଲ୍‌ଥ୍ ଇନ୍‌ସ୍ୟୁରାନ୍ସ କରାଇଥିଲୁ । ସେ ଇନ୍‌ସ୍ୟୁରାନ୍ସ ଦେଖି ଆଡ୍‌ମିସନ୍ ହେଇଗଲା । ଡାକ୍ତରବାବୁଙ୍କ ଚେମ୍ବରକୁ ଗଲୁ । ସେ ମୋର ପ୍ରାଥମିକ ଚେକ୍‌ଅପ୍ କରାଇବା ପୂର୍ବରୁ ମତେ ଭଲକରି ଚାହିଁଲେ । ମତେ ଦେଖି ସେ ପଚାରିଲେ କ'ଣ ହେଇଚି ଆପଣଙ୍କର ? ଆପଣ ତ ଦିଶୁଚନ୍ତି ଅତ୍ୟନ୍ତ ସତେଜ, ପ୍ରଫୁଲ୍ଲ ଓ ହସ ହସ । ହାର୍ଟ-ପେସେଣ୍ଟ୍‌ମାନେ ତ ଏମିତି ଦିଶନ୍ତି ନାହିଁ ? ଆପଣଙ୍କଠାରେ ତ କୌଣସି ରୋଗର ଲକ୍ଷଣ ଦେଖାଯାଉନି ।''

ମୁଁ ହସିହସି କହିଲି, ''ମୋର ତ କିଛି ହେଇନି । ଏମାନେ ମୋ ଝିଅ ଜୋଇଁ କାହିଁକି ମତେ ଏଠିକି ଆଣିଚନ୍ତି ପଚାରନ୍ତୁ ତ ସେମାନଙ୍କୁ ।''

ଡାକ୍ତର ତାପରେ ପ୍ରବୀରଙ୍କୁ ଚାହିଁଲେ । ପ୍ରବୀର କହିଲେ– ଇଣ୍ଡିଆରେ ମର୍ଣ୍ଣିଂୱାକ୍ କଲାବେଳେ ଥରେ ଶଶୁରଙ୍କର ଛାତିରେ କଷ୍ଟହେଲା ବୋଲି ସେ ଆମକୁ ଫୋନ୍‌ରେ କହିଥିଲେ । ତା'ପରେ ଆମେ ତାଙ୍କୁ ଜଗନ୍ନାଥଙ୍କ ରଥଯାତ୍ରା ପାଇଁ ଟିଫ୍‌ଗେଷ୍ଟ କରି ଆଣିଚୁ । ତଥାପି ଟିକେ ଦେଖନ୍ତୁ ତାଙ୍କ ହାର୍ଟ ଦୟାକରି. . .''

ମୁଁ ଇଣ୍ଡିଆରୁ ଆଣିଥିବା ବ୍ଲଡ୍ ରିପୋର୍ଟ, ଇ.ସି.ଜି, ଇକୋ-ଷ୍ଟ୍ରେସ୍‌ଟେଷ୍ଟ ଇତ୍ୟାଦି ରିପୋର୍ଟ ଡାକ୍ତର ଦେଖିଲେ । କହିଲେ, ''ସବୁତ ପରଫେକ୍ଟ . . . ତଥାପି ଷ୍ଟ୍ରେସ୍‌ଟେଷ୍ଟରେ ଟିକେ ଅସୁବିଧା ଥାଇପାରେ– ତେବେ ରିସ୍କ ନନେଲେ ଭଲ । ଠିକ୍ ଅଛି । ଆପଣ ଅଗାମୀ ସପ୍ତାହରେ ଆସନ୍ତୁ । ଆଞ୍ଜିଓ ଗ୍ରାଫ୍ କରାଯିବ– ଦରକାର ପଡିଲେ ଆଞ୍ଜିଓପ୍ଲାଷ୍ଟି ବି ସେଇ ଥରକରେ . . .''

ତାଙ୍କ କଥା ଶୁଣି ଆମେ ଆଶ୍ୱସ୍ତ ହେଲୁ । ଭାବିଲି ମୋର କିଛି ହେଇନି– ଖାଲି ଗୋଟାଏ କେଞ୍ଚା କେଞ୍ଚି କ'ଣ କରାଯିବ ।

ନିର୍ଦ୍ଧାରିତ ତାରିଖ ଜୁଲାଇ ୨୩, ୨୦୦୩, ଭୋର୍ ପାଞ୍ଚରେ ଆମକୁ କୁହାଗଲା ଡାକ୍ତରଖାନାରେ ହାଜର ହେବାକୁ । ସାତଟାରେ ଅପରେସନ୍ । ଆମେ ରାତି ତିନିରୁ ଉଠି ସଜବାଜ ହେଇ ଘରୁ ବାହାରି ଆସିଲୁ । ଅମ ଦଳରେ ଥିଲେ ନିରୁପମା, ପ୍ରବୀର, ବୁଲବୁଲ, ମହେଶ (ମଝିଆଁ ଜୋଇଁ) ଓ ମୁଁ । ପ୍ରବୀରଙ୍କର ଗୋଟାଏ ବଡ ଭ୍ୟାନ୍ ଥାଏ– ତିନିଧାଡିରେ ଡ୍ରାଇଭର୍ ସମେତ ଛ'ଜଣ ପ୍ୟାସେଞ୍ଜରଙ୍କ ପାଇଁ ବସିବା ବ୍ୟବସ୍ଥା । ପ୍ରବୀର ଡ୍ରାଇଭ୍ କଲେ । ତାଙ୍କ ପାଖକୁ ସାମ୍ନା ସିଟ୍‌ରେ ବସିଲି ମୁଁ । ପଛସିଟ୍‌ରେ ବସିଲେ ମହେଶ ଓ ନିରୁପମା । ସବା ପଛଧାଡିରେ ବସିଲା ବଡଝିଅ ବୁଲବୁଲ । ଦେଢ ଘଣ୍ଟାର ଡ୍ରାଇଭ୍ । ରାତି ଜାଗୁଲୁ ଜାଗୁଲୁ ସମୟ– ପୂରା ସକାଳ ହେଇନି ।

ହାର୍ଟ ଅପରେସନ୍ ରୋଗୀ ଅପରେସନ୍ ପାଇଁ ଡାକ୍ତରଖାନା ବୁହା ହେଇଗଲା ବେଳେ ରୋଗୀର ମନରେ ଯାହା ଚିନ୍ତା ରହିଥାଉ ପଛେ ତାକୁ ଡାକ୍ତରଖାନା ନେଉଥିବା ସଂପର୍କୀୟଙ୍କ ମନରେ ଆହୁରି ବେଶୀ ଆଶଙ୍କା ଖେଳିବା ଅସ୍ୱାଭାବିକ ନୁହେଁ । ସ୍ତ୍ରୀ ଝିଅ ଜୋଇଁମାନେ ଆଶଙ୍କିତ ଅବସ୍ଥାରେ ଗମ୍ଭୀର ହୋଇ ବସିଥାନ୍ତି । କେହି ମନକଥା ପ୍ରକାଶ କରିବାକୁ ପାଟି ଖୋଲୁନଥାନ୍ତି । ନୀରବତା ମାଡିମୋଡି ପଡିବାରୁ ବୁଲବୁଲ ମୁହଁ ଖୋଲିଲା । ପଚାରିଲା, ''ନନା ! ଡର ମାଡୁଚିକି ?''

ମୁଁ ସତରେ ଆଦୌ କୌଣସି ଦୁଃଶ୍ଚିନ୍ତାର ଶିକାର ହୋଇନଥାଏ । ଅପରେସନ୍ କଥା ପକ୍କା ହେବା ପରେ ବି ମନରେ ମୃତ୍ୟୁ ଭୟ ଆଦୌ ସ୍ଥାନପାଇନଥାଏ । ମୃତ୍ୟୁକୁ ତ ମୁଁ କେତେଥର କେତେ ନିକଟରୁ ବି ଦେଖିସାରିଥାଏ ଜୀବନରେ । ଉଣେଇଶବର୍ଷ ବୟସରେ

ସାମ୍ନାରେ ପୋଟାସିୟମ୍ ସାୟାନାଇଡ୍ ଭର୍ତ୍ତି ଟେଷ୍ଟଟ୍ୟୁବ୍‌ଟାଏ ରଖି ଚବିଶ ଘଣ୍ଟାକାଳ ଭଗବାନ୍‌ଙ୍କୁ ସ୍ୱଚକ୍ଷୁରେ ଦେଖିବାକୁ ସଂକଳ୍ପ ସମୟରେ ବି ତ ମୃତ୍ୟୁଭୟ ନଥିଲା ମୋର– ତେଣୁ ବର୍ତ୍ତମାନ ସତୁରୀ ବର୍ଷ ବୟସରେ ସାମାନ୍ୟ ଆଞ୍ଜିଓଗ୍ରାଫି ଟେଷ୍ଟ ପାଇଁ ଡାକ୍ତରଖାନାକୁ ଗଲାବେଳେ ମୃତ୍ୟୁ କଥା କାହିଁକି ବା ଭାବନ୍ତି ? ତେଣୁ ବୁଲବୁଲକୁ ଆଶ୍ୱାସନା ଦବାକୁ କହିଲି, ''ତମେମାନେ ଭୟ କରୁଚ ବୋଧେ । ମୁଁ ଠିକ୍ ଅଛି . . .''

ମୋ କଥା ଆଶ୍ୱସ୍ତ କରିବା ପରିବର୍ତ୍ତେ କନ୍ଦେଇଲା ଝିଅକୁ ମୋର । କାନ୍ଦି କାନ୍ଦି କହିଲା, ''ଜଗନ୍ନାଥ ବଡ ନିଷ୍ଠୁର । ତାଙ୍କୁ ପୂଜା ପ୍ରାର୍ଥନା କାହିଁକି କରୁଚୁ ଆମେ ଏଠି ଆମେରିକାରେ କେଜାଣି . . . ! ତମକୁ କ'ଣ ସେ ଆମେରିକା ଡକେଇଥିଲେ ଏଥର ଏଇ ଖେଳ ଖେଳିବାକୁ ?''

ଏଇ ସମୟରେ ନିରୁପମାଙ୍କ ମୁହଁ ଖୋଲିଲା । ସେ ସାଧାରଣତଃ ଖୁବ୍ ଭାବପ୍ରବଣ । ଟିକେ କଥାରେ କାନ୍ଦନ୍ତି । କିନ୍ତୁ ତାଙ୍କ ସ୍ୱର ମତେ ଆଶ୍ଚର୍ଯ୍ୟ କଲା । ଗମ୍ଭୀରକଣ୍ଠରେ କହିଲେ, ''ଜଗନ୍ନାଥଙ୍କୁ ଡାକ ନାହିଁ, ଡାକ ବଳଭଦ୍ରଙ୍କୁ ! ସେଇ ହେଉଚନ୍ତି ଶିବ ଯେ ଆଶୁ ବର ପ୍ରଦାନ କରନ୍ତି ଆର୍ତ୍ତ ଲୋକଙ୍କୁ । ଜଗନ୍ନାଥ ଶୁଣିବେ ନାଇଁ– ଶୁଣିବେ ବଳଭଦ୍ର– ଯାହାଙ୍କ ନାଁ ଦେଇଚି ଆନୁ ''ବଡ ଧୋବ୍‌ଲା'' ! (ଆନୁ ଆମ ସବା ସାନ ନାତୁଣୀ– କୁଲିର ତିନିବର୍ଷର ଝିଅ) ।''

ଏହିପରି ଗପସପ ଭିତରେ ଆମେ ପହଞ୍ଚିଗଲୁ ସେଣ୍ଟ୍ ଥମାସ୍ ହସ୍‌ପିଟାଲ୍‌ରେ । ଗାଡି ପାର୍କିଂ କରାଗଲା ସର୍ଜରୀ ପାଇଁ ସ୍ଥିରକରାଯାଇଥିବା ଅପରେସନ୍ ଥିଏଟର୍ ଫ୍ଲୋର୍‌ର ପାର୍କିଂ ଲଟ୍‌ରେ । ଆମେ ଚାଲିଲୁ ନିର୍ଦ୍ଧାରିତ ସ୍ଥାନକୁ । ଆଡ୍‌ମିସନ୍ ଇତ୍ୟାଦି ରୁଟିନ୍ କାମ ସରିବା ପରେ ପ୍ରିପାରେସନ୍ ରୁମ୍‌କୁ ମତେ ନିଆଗଲା । ସେଠି ନର୍ସମାନେ ଅପରେସନ୍ ପୂର୍ବ ପ୍ରସ୍ତୁତି କ୍ରିୟା ଆରମ୍ଭ କରିଦେଲ । ଗୋଟାଏ ଇଣ୍ଟ୍ରାଭେନସ୍ ଇଂଜେକ୍‌ସନ୍ ଦିଆଗଲା । ଏଇଟା ନିଶା ଔଷଧ । କୁହାଗଲା– ଜେନେରାଲ୍ ଆନିସ୍‌ଥେସିଆର ଆବଶ୍ୟକତା ନାହିଁ । ଅପରେସନ୍ ବେଳେ ରୋଗୀର ଚେତା ରହିବ । କମ୍ପ୍ୟୁଟର ସ୍କ୍ରିନ୍‌ରେ ନିଜ ଅପରେସନ୍ ପ୍ରକ୍ରିୟାକୁ ମୂଳରୁ ଶେଷ ପର୍ଯ୍ୟନ୍ତ ଦେଖିହେବ ।

ମତେ ଚଲେଇ ଚଲେଇ ନିଆଗଲା ସିଧା ଅପରେସନ୍ ଟେବ୍ଲ ପର୍ଯ୍ୟନ୍ତ । ମୋ ବାଁ ହାତ କଚଟିରେ ଗୋଟାଏ ଇଂଜେକସନ୍ ସିରିଞ୍ଜ ଫୋଡାଯାଇଥାଏ । ସିରିଞ୍ଜ ଦେଇ ଏକ ଷ୍ଟାଣ୍ଡରୁ ଝୁଲୁଥିବା ମେଡିସିନ୍ ପାଉଚ୍‌ରୁ ଔଷଧ କ୍ରମାଗତ ଝରୁଥାଏ । ସେଇ ଷ୍ଟାଣ୍ଡଟାକୁ ନିଜ ହାତରେ ଟେକି ଟେକି ଓ.ଟି ପର୍ଯ୍ୟନ୍ତ ନେବାକୁ କୁହାଯାଇଥାଏ ମତେ । ମୁଁ ସେ ଷ୍ଟାଣ୍ଡଟାକୁ ଟେକିଟେକି କରିଡର୍‌ରେ ଚାଲିଲି ଓଟି ଅଭିମୁଖେ । ସେତେବେଳେ ବାଇବେଲ୍‌ରେ ପଢିଥିବା ଯୀଶୁଖ୍ରୀଷ୍ଟଙ୍କ କ୍ରୁସିଫିକେସନ୍ ଦୃଶ୍ୟଟା ଦିଶିଗଲା ମତେ । ମନେହେଲା ସତେକି ମୁଁ ମୋ ନିଜ କ୍ରସ୍ ବୋହିବୋହି ଚାଲିଚି ବଧ୍ୟଭୂମିକୁ !

ସେ ଯାହାହେଉ ନର୍ସମାନେ ମତେ ବାଟ କଢେଇ ଘେନିଗଲେ ଓ.ଟି.କୁ । ସେଠି ମୋ ପାଇଁ ନିର୍ଦ୍ଦିଷ୍ଟ ଅପରେସନ୍ ଟେବୁଲରେ ମତେ ଶୋଇବାକୁ କୁହାଗଲା । ଟେବୁଲ ଉପରେ ଚିତ୍‌ହେଇ ଶୋଇଲି । ମୋର ପୂର୍ଣ୍ଣ ଚେତା ଥାଏ । ଓଟିଟା ଏକ ବିରାଟ ହଲ୍ ଭଳି ଗୁମ୍ । ଭୀଷଣ ଥଣ୍ଡା । ନର୍ସମାନେ ଯାହା କଥାବାର୍ତ୍ତା ହଉଥାନ୍ତି ସବୁ ଶୁଣୁଥାଏ ଓ ପରସ୍ପର ଭିତରେ ସେମାନଙ୍କ ଥଟ୍ଟା ତାମସା ଚାଲିବା ବିଷୟ ବି ମତେ ଆମୋଦିତ କରୁଥାଏ । ସେମାନଙ୍କ ଭିତରେ କେତେଜଣ ପୁରୁଷ ନର୍ସ ବି ଥା'ନ୍ତି । ଝିଅ ପୁଅଙ୍କ ଗପସପ ବେଳେ ଅନ୍ୟର ପ୍ରେମ ବ୍ୟାପାରକୁ ନେଇ ପରିହାସ କରିବା ଯେମିତି ସ୍ୱାଭାବିକ ସେଇଭଳି ଲଘୁ କଥାବାର୍ତ୍ତା ଚାଲିଥାଏ ତାଙ୍କ ମାନଙ୍କ ଭିତରେ ।

ଅପରେସନ ସମୟ ହୋଇଗଲା । ଡାକ୍ତର (ଏନ୍.ଏସ୍.ବାବୁ) ପହଞ୍ଚିଗଲେ । ମତେ ଚାହିଁ ପଚାରିଲେ, ''ଆର୍ ୟୁ ଓକେ ସାର୍ ?'' ମୁଁ ହସିଦେଇ କହିଲି ''ୟେସ୍ ସାର୍ ! ନାଓ ୟୁ ମେ ଷ୍ଟାର୍ଟ ଡିସେକ୍ଟିଂ ମି ଲାଇକ ଦ ପୁଅର ଫ୍ରଗ୍ ଆଇ ଡିସେକ୍ଟେଡ୍ ଇନ୍ ମାଇଁ ବାୟୋଲଜିଲାବ୍ ୱେନ୍ବ୍ୟାକ୍ ଇନ୍‌ମାଇଁ ଆଇ.ଏସ୍.ସି କ୍ଲାସ୍...'' ଡାକ୍ତର ତାଙ୍କ କାମ ଆରମ୍ଭ କଲେ । ପାଖ ଟିଭି ସ୍କ୍ରିନ୍‌କୁ ଚାହିଁ ସବୁ ଦୃଶ୍ୟ ଦେଖୁଥାଏ । ପ୍ରଥମେ ଡାହାଣ ଜଂଘସନ୍ଧିରେ ଗୋଟାଏ ଛୁଞ୍ଚି ଫୋଡାହେବା ଅନୁଭବ କଲି । ପରେ ପରେ ଗୋଟାଏ ସାପ ପରି ଏକ ଲମ୍ବା ନଳୀ ମୋ ଜଂଘର ଧମନୀ ବାଟଦେଇ ସିଧା ଆଗକୁ ଆଗକୁ ଚାଲିବା ଦେଖିଲି ଟିଭି ପର୍ଦ୍ଦାରେ । ସେ ନଳୀର ଅଗଟା ଦିଶୁଥାଏ ଗୋଟାଏ ସାପର ଗୋଲାକାର ମୁଣ୍ଡ ପରି । ତା'ରି ଭିତରେ ଥାଏ ଉଭୟ ଆଞ୍ଜିଓଗ୍ରାଫି ଓ ଆଞ୍ଜିଓପ୍ଲାଷ୍ଟିର ସରଞ୍ଜାମ । ଡାକ୍ତର ମତେ ପୂର୍ବରୁ କହିଥିଲେ, ''ଯଦି ଦେଖାଯିବ କରୋନାରୀ ଆର୍ଟେରିରେ କିଛି ବ୍ଲକେଜ୍ ତେବେ ସେଇ ଏକା ଥରକେ ମଧ୍ୟ ଆଞ୍ଜିଓଗ୍ରାଫି ସହିତ ଆଞ୍ଜିଓପ୍ଲାଷ୍ଟି ମଧ୍ୟ କରିଦିଆଯିବ । ଆଞ୍ଜିଓପ୍ଲାଷ୍ଟିର ବେଲୁନ୍‌ନିଂ ସାମଗ୍ରୀ ସବୁ ସାଇତା ରହିଚି ସେଇ ନଳୀର ମୁଣ୍ଡ ଭିତରେ ।''

ନଳୀଟା ଆର୍ଟେରି ଭିତର ଦେଇ ଆସ୍ତେ ଆସ୍ତେ ଆଗକୁ ଗତିକଲାବେଳେ ମତେ ସେତେ ବେଶୀ କିଛି ଅସୁବିଧା ଅନୁଭବ ହେଉନଥାଏ । କିନ୍ତୁ ଯେମିତି ନଳୀର ମୁଣ୍ଡ କରୋନାରୀ ଆର୍ଟେରୀର ଦ୍ୱାର ପାଖରେ ପହଞ୍ଚିଲା ମତେ ଟିକେ କଷ୍ଟ ହେଲା ।

ଡାକ୍ତର କହିଲେ, ''ବର୍ତ୍ତମାନ ଆଞ୍ଜିଓଗ୍ରାଫି ଆରମ୍ଭ କରାଯିବ । ଡାଇ (ରଙ୍ଗ) ରିଲିଜ୍ ପରେ ସମୁଦାୟ ରକ୍ତରେ ସଞ୍ଚରିବ । ଆପଣ ଟିକେ ଗରମ ଫିଲ୍ କରିବେ । ଅସୁବିଧା ଲାଗିପାରେ– ସହିନେବେ ।''

ସତକୁ ସତ ମୋ ଦେହ ଭିତରେ ପ୍ରଥମେ ନିଆଁ ଚରିଗଲା ଭଳି ଏକ ଅନୁଭବ ହେଲା । ସବୁଠୁ ବେଶୀ ଉତ୍ତାପ ଅନୁଭବ ହେଲା ମଳଦ୍ୱାର ପାଖରେ । – ଦେହଟା ପୂରା ଜଳିଲା ।

ଅଳ୍ପ ସମୟ ପରେ ଶୁଣିଲି ଡାକ୍ତର କହୁଚନ୍ତି, ''ଗୋଟିଏ ବ୍ଲକେଜ୍ ପ୍ରାୟ ନବେ ପର୍ସେଣ୍ଟ୍ ରହିଚି । ଅନ୍ୟଟିରେ ପଚାଶ ପାଖାପାଖି ଦେଖୁଚି । ବର୍ତ୍ତମାନ ଆଞ୍ଜିଓପ୍ଲାଷ୍ଟି

କରିବାକୁ ପଡିବ ଉଭୟ ବ୍ଲକେଜ୍‌କୁ । ସାମାନ୍ୟ କଷ୍ଟ ହେବ– ସହିଯିବେ. . .''

ମୁଁ ହଁ କଲି । ଟି.ଭି. ସ୍କ୍ରିନ୍‌କୁ ଚାହିଁଥାଏ । ହଠାତ୍ ମୋ ଛାତି ଉପରେ ଗୋଟାଏ ବିରାଟ ଓଜନିଆ ଜିନିଷ ରଖିଦିଆଯିବା ଭଳି ଅନୁଭବ ହେଲା । ସହିଗଲି । କିନ୍ତୁ ଧୀରେ ଧୀରେ ସେ ଓଜନଟା ଏତେ ବେଶୀ ବେଶୀ ବଢିବାକୁ ଲାଗିଲା ଯେ ମନେହେଲା ସତେକି ଗୋଟାଏ ହାତୀ ମୋ ଛାତି ଉପରେ ତା' ଓଜନିଆ ପାଦଟାକୁ ରଖି ଠିଆହେଇଯିବାକୁ ଚେଷ୍ଟା କରୁଚି ! ମୋ ନିଶ୍ୱାସ ପ୍ରଶ୍ୱାସ ପୂରା ବନ୍ଦହେଇଗଲା ଭଳି ଲାଗିଲା । ସତେକି କିଏ ମୋ ତଣ୍ଟି ଚିପିଧରିଚି– ସେଇ ଅନୁଭବ ହେଲା । ସେତିକିବେଳେ ବହୁ ବର୍ଷ ତଳେ ଦିନେ ରାତିରେ ଏକ ଭୟଙ୍କର 'ନାଇଟ୍ ମେୟାର୍'ର ଆକ୍ରମଣର ଶିକାର ହୋଇ ମୁଁ ଯେଉଁ ଧରଣର କଷ୍ଟ ଭୋଗକରିଥିଲି, ସେଇ ଅବସ୍ଥାର ପୁନରାବୃତ୍ତି ହେଲା ।

ସେତେବେଳେ ମୁଁ ଏମ୍.ଏସ୍‌ସି. ପଢୁଥାଏ– ଫାଇନାଲ୍ ବର୍ଷ । ରହୁଥାଏ କେମିଷ୍ଟ୍ରି ପ୍ରଫେସର୍ ଡକ୍ଟର ଦୟାନିଧି ପଟ୍ଟନାୟକଙ୍କ କ୍ୱାଟର୍ସ ପଛପଟ ଆଉଟ୍ ହାଉସ୍‌ରେ । ବଖୁରିଏ ମାତ୍ର ଆଜ୍‌ବେଷ୍ଟସ୍ ଛୁଆଣି ଛୋଟ ରୁମ୍ । ସେଥିରେ ଦୁଇଟି ଖଟିଆ ପକେଇ ଶୋଉଥାଉ ଆମେ ଦୁଇଜଣ ସହପାଠୀ– ପାରେଶ୍ୱର ଜେନା ଓ ମୁଁ । ସେଦିନ ରାତି ଅଧ ସରକି ମୁଁ ନିଘୋଡ ନିଦରେ ହଠାତ୍ ଅନୁଭବ କଲି କିଏ ଗୋଟାଏ ଯେପରି ବସିପଡିଚି ମୋ ଛାତି ଉପରେ ଆଉ ଦୁଇହାତରେ ମୋ ବେକକୁ ଜାବୁଡି ଧରି ଜୋର୍‌ରେ ଚିପି ଧରିଚି । ମୁଁ ଅଣନିଃଶ୍ୱାସୀ ହେଇ ଆଖିଫିଟେଇ ଚାହିଁଦେଲାବେଳକୁ ଦେଖିଲି ଗୋଟାଏ ଭୂତଭଳି ସ୍ତ୍ରୀଲୋକ ମୋ' ଛାତି ଉପରେ ଦୁଇଗୋଡ ଫରକଟେଇ ଦେଇ ସବାର ହେଇଚି ଆଉ ପାରୁ ପର୍ଯ୍ୟନ୍ତ ଚେଷ୍ଟାକରି ମୋ ବେକ ଚିପି ମାରିଦେବାର ପ୍ରୟାସ କରୁଚି ! ସେ ଏକ ଭୟଙ୍କର ବୀଭତ୍ସ ରୂପ ! ନୁଖୁରା ଖାଂକର ବାଳଗୁଡାକ ତାର ମୁହଁ ଚାରିପଟେ ଫର୍‌ଫର୍ ଉଡୁଥାଏ । କାଳୀ ରୂପ ଧରି ସେ ସ୍ତ୍ରୀଲୋକ ମୋ ଉପରେ ସବାର ହେଇଥାଏ ଆଉ ମତେ ଜୀବନରୁ ମାରିଦେବାକୁ ଉପକ୍ରମ ଚଳେଇଥାଏ । ଆତ୍ମରକ୍ଷା ପ୍ରବୃତ୍ତି ବଶତଃ ମୁଁ ମୋ ବେକକୁ ଛାତି ଭିତରକୁ ଚିପିଦେଇ ତାର ଦୁଇହାତର ଚାପରୁ ରକ୍ଷାପାଇଯିବାକୁ ପ୍ରାଣପଣେ ଚେଷ୍ଟା କଲି କିଛି ସମୟ । ଶେଷରେ ଦେଖିଲି ସେ ମତେ ପୂରା କାବୁ କରିନେଇସାରିଚି– ଆଉ ରକ୍ଷା ନାହିଁ !

ସେତିକିବେଳେ ମୋର ଇଚ୍ଛାଶକ୍ତିର ଏକ ଅଦ୍ଭୁତ ଜାଗରଣ ହେଲା । ମତେ କିଏ କହିଲା, ''ଏ ଅସୁରୁଣୀ ତତେ କବଳିତ କରି ନେବାକୁ ବସିଚି– ଯା' ସାଙ୍ଗେ ଯୁଦ୍ଧ କର । ମାନି ନେନା, ମାନି ନେନା ଯା' ବଳକୁ– ଗୋଟାଏ ବଜ୍ରମୁଷ୍ଟିରେ ଯା'କୁ ସାବାଡ୍ କର !'' ହଠାତ୍ ବାଁ ହାତଟାକୁ ମୁଠାକରି ଏକ ବଜ୍ର ମୁଥ ମାଇଲି ମୁଁ ସେଇ ଅସୁରୁଣୀ ମୁହଁ ଉପରେ । ଅସୁରୁଣୀ ଉଭେଇଗଲା । ମୋ ମୁଥ ବାଜିଲା ଖଟ କଡ କାନ୍ଥରେ । ଖୁବ୍ କାଟିଲା । ସେତେବେଳକୁ ଅପରେସନ୍ ଖତମ୍ । କେତେ ସମୟ ସେଇ ଅଣନିଃଶ୍ୱାସୀ ଅବସ୍ଥା ମୋର

ଥିଲା ଜାଣେନା– କିନ୍ତୁ ସେଇ ସମୟରେ ମୋର ରକ୍ତଚାପ କୁଆଡେ ଦୁଇଶହକୁ ଉଠି-ଯାଇଥିଲା ବୋଲି ପରେ ଡାକ୍ତର ମତେ କହିଲେ । ଫଳରେ ମୋର ଗୋଟାଏ ଆର୍ଟେରୀ ଶାଖାରେ ବେଲୁନିଂ ହେଇପାରିଲା– ଅନ୍ୟଟା ରହିଗଲା । ଡାକ୍ତର କହିଲେ ସେଇ ଗୋଟାକ ବଡ ଅସୁବିଧା ସ୍ଥାନରେ ରହିଗଲା । ତାକୁ ବେଲୁନିଂ କରିବାକୁ ଚେଷ୍ଟା କରିବା ଭିତରେ ମୋ ରକ୍ତଚାପ ବହୁ ଉଚ୍ଚକୁ ଚାଲିଗଲା– ତେଣୁ ସେ ସେଇଠି ରହିଲା ।

ମୁଁ ସେ ସବୁ କିଛି ଜାଣିବା ଅବସ୍ଥାରେ ନଥିଲି । ମୋର ଚେତା ଥିଲେ ବି ଆଖି ବୁଜିହେଇଯାଇଥାଏ । ଟିଭି ସ୍କ୍ରିନ୍‌କୁ ଚାହିଁବା ଅବସ୍ଥାରେ ନଥାଏ । ନିଃଶ୍ୱାସ ରୁଦ୍ଧ ଅବସ୍ଥା ସହିତ ସଂଘର୍ଷ କରୁଥାଏ ଖୁବ୍ ଜୋର୍‌ରେ ।

ସେଇ ସମୟରେ ତେଣେ ରୁମ୍ ବାହାରେ କ'ଣ ସବୁ ଘଟୁଥାଏ ତାର ଖବର ପାଇଲି ଓ.ଟି.ରୁ ବାହାରିବାର ଅନେକ ପରେ । ଅପରେସନ୍ ସମୟରେ ୱେଟିଂ ରୁମ୍‌ରେ ଉଦ୍‌ବେଗର ସହିତ ଅପେକ୍ଷାରତ ଥା'ନ୍ତି ନିରୁପମା ଓ ପିଲାମାନେ । ସେମାନଙ୍କୁ ମୋ ଅବସ୍ଥାର ରିପୋର୍ଟ ଥରକୁ ଥର ନର୍ସ ଦେଇଚାଲିଥାନ୍ତି । ସେତେବେଳେ ଜଣେ କିଏ ଅଚିହ୍ନା ଆମେରିକାନ୍ ପାଦ୍ରୀ ଭଦ୍ରଲୋକ ଆସି ନିରୁପମାଙ୍କୁ ଭେଟିଥିଲେ ବୋଲି ଶୁଣିଲି ସାମାନ୍ୟ ସୁସ୍ଥ ହେଲାପରେ । ସେ ପାଦ୍ରୀ ଭଦ୍ରଲୋକ ଏକ ପରିଚୟପତ୍ର ଛାଡ଼ିଯାଇଥିଲେ । ସେଇ ପରିଚୟ ପତ୍ରଟା ଉପରେ ତାଙ୍କର ନାମ ଓ ଠିକଣା ସହିତ Balabhadra ଲେଖାଥିବା ଦେଖି ଚମକି ପଡିଲି । ପୂରା ଘଟଣା ନିରୁପମାଙ୍କ ଏକ ଲେଖାରୁ ଜଣାପଡିବ । ଲେଖାଟିର ଶୀର୍ଷକ ''ବଡଧୋବଲାଙ୍କ ଅଭିସାର''– ବଡଧୋବଲା ଅର୍ଥାତ୍ ବଡଠାକୁର ବଳଭଦ୍ର । ତାଙ୍କର ଏପରି ନାମକରଣ କରିଥିଲା ମୋର ସବାସାନ ନାତୁଣୀ, ତିନିବର୍ଷର ଝିଅ ଅପର୍ଣ୍ଣା– ଡାକ ନାଁ ଆନୁ ବା ଆନା । ବଡଧୋବଲାଙ୍କ ଅଭିସାର ଘଟଣାର ସତ୍ୟାସତ୍ୟ ନିରୂପଣ ଦୃଷ୍ଟିରୁ ନିମ୍ନରେ ପତ୍ନୀ ନିରୁପମା ଆଚାର୍ଯ୍ୟଙ୍କ ଏକ ପ୍ରକାଶିତ ଲେଖା ଏଠାରେ ଅବିକଳ ଉଦ୍ଧାର କରୁଚି ।

"ଆମେରିକାର ନ୍ୟାସ୍‌ଭିଲ୍ ସହରର ସେଣ୍ଟ ଥମାସ୍ ହସ୍‌ପିଟାଲ୍ । ମୁଖ୍ୟଦ୍ୱାର ପାଖରୁ ଦକ୍ଷିଣପଟକୁ 'ହାର୍ଟ ସେଣ୍ଟର୍' । ଖୁବ୍ ବଡ ହସ୍‌ପିଟାଲ୍ । ଗହଳି ଯେ ଗହଳି । ଖାଲି ମଣିଷ ନୁହେଁ, ଗାଡି ମୋଟର ଗହଳି ମଧ୍ୟ କାହିଁରେ କ'ଣ । ତଥାପି ନିରବ ନିଶ୍ଚଳ ପରିବେଶ– ସମସ୍ତେ କାର୍ଯ୍ୟବ୍ୟସ୍ତ । ସବୁଠାରେ ଶୃଙ୍ଖଳିତ ବାତାବରଣ । ସବୁଆଡ ପରିଚ୍ଛନ୍ନ ।

ଜୁଲାଇ ୨୩, ୨୦୦୩ ଭୋର୍‌ରୁ ଆମ ଗାଡି ଚାଲିଲା ହସ୍‌ପିଟାଲ୍ ଅଭିମୁଖେ । ସାତଟାରେ ଅପରେସନ୍ । ବଡ ଭ୍ୟାନ୍‌ର ଡ୍ରାଇଭର୍ ସିଟ୍‌ରେ ବଡ ଜୋଇଁ ଓ ପାଖରେ ଅପରେସନ୍ ପାଇଁ ପ୍ରସ୍ତୁତ ହେଉଥିବା ଭଦ୍ରଲୋକ (ମୋର ସ୍ୱାମୀ ସାହିତ୍ୟିକ ଶାନ୍ତନୁ କୁମାର ଆଚାର୍ଯ୍ୟ) । ତାଙ୍କ ପଛ ସିଟ୍‌ରେ ମଝିଆ ଜୋଇଁ ଓ ମୁଁ । ସବା ପଛସିଟରେ ଏକା ଆମ ବଡ ଝିଅ । ହଠାତ୍ ଝିଅ ପଚାରିଲା, ''ନନା ! ତୁମକୁ ଡରମାଡୁଚି କି ?''– ତାପରେ

ନନାଙ୍କୁ ନୁହେଁ ନିଜକୁ ବୋଧହୁଏ ବୁଝାଉଥାଏ, ''ଡରିବାର କିଛି ନାହିଁ । ଡାକ୍ତର ତ କହିଛନ୍ତି ତୁମକୁ ଆଉଟ୍‌ଡୋର୍ ପେସେଣ୍ଟ୍ ଭାବେ ନେବେ ଓ ସନ୍ଧ୍ୟାକୁ ଛାଡିଦେବେ । ତା'ଛଡା ତୁମେ ପରା ଆମେରିକା ଆସିଥିଲ ଏ ବର୍ଷ ଜଗନ୍ନାଥଙ୍କ ଡକରାରେ ରଥଯାତ୍ରାରେ ଯୋଗଦେବାକୁ ଆମ ନ୍ୟାସ୍‌ଭିଲ୍ ସୋସାଇଟି ଅଫ୍ ଆମେରିକାର ଡକରାରେ । ସବୁ କଥା ତ ସୁରୁଖୁରୁରେ ହେଇଗଲା । ଆଉ ତା'ପରେ ଏ ବ୍ୟବସ୍ଥା ! ସେ ବି ଜଗନ୍ନାଥଙ୍କ ଇଚ୍ଛା– ନହେଲେ ତୁମ ଭଳି ସୁସ୍ଥ ମଣିଷର ଏ ରୋଗ ହୁଅନ୍ତା କାହିଁକି ? ପୁଣି ସେ କଥା ଏଇଠି ଥିଲା ଜଣାପଡିବାକୁ ?''

ସାମ୍ନା ସିଟ୍‌ରୁ ନନା କହିଲେ, ''ମୁଁ ଡରିବି କାହିଁକିରେ ? ତୁ ଡରୁଚୁ ବୋଧେ । ଦାୟିତ୍ୱ ତୋ' ଉପରେ । ଡରନା, କିଛି ହବ ନାଇଁ ।'' କାହିଁକି କେଜାଣି ମୋ ପାଟିରୁ ବାହାରିଲା, ''ଦେଖ୍, ଜଗନ୍ନାଥ ଭକ୍ତିର ଠାକୁର । ତାଙ୍କ ସହିତ ସଂପର୍କ କେବଳ ଭକ୍ତି ପାଇଁ । ଯାହାର କିଛି ମାଗିବାକୁ ଇଚ୍ଛା ତ୍ ବଳଭଦ୍ରଙ୍କୁ ମାଗିବ ।'' ବଳଭଦ୍ରଙ୍କ ନାମ ପଡିଲା ମାତ୍ରେ ସମସ୍ତେ ଖୁସିହୋଇଗଲେ । କାହିଁକି ନା ଏଇ କେତେଦିନ ହେଲାଣି ବଳଭଦ୍ରଙ୍କୁ ଅଢେଇ ବର୍ଷର ନାତୁଣୀ ନୂଆ ନାମକରଣ କରିଥାଏ– ''ବଡ ଧୋବଲା ।''

ଏ ଭିତରେ ଆମ ଗାଡି ହସ୍‌ପିଟାଲ୍ ଭିତରେ ପଶିଲା । ବଡ ଧୋବଲାଙ୍କ ନାମ ପୁଣିଥରେ ଉଚ୍ଚାରଣ କଲି । ଗାଡି ପାର୍କିଂ କରି ଓହ୍ଲେଇଲୁ ସମସ୍ତେ ।

ପ୍ରଥମେ ଆନୁଷଙ୍ଗିକ ବ୍ୟବସ୍ଥା ପରେ ପେସେଣ୍ଟଙ୍କୁ ନିଆଗଲା ଅପରେସନ୍ ଥିଏଟର୍‌କୁ । ତେଣିକି ଅପେକ୍ଷା କରିବା ବେଳ । ବଡଧୋବଲାଙ୍କୁ ଡାକିବା ଛଡା ଆଉ କ'ଣ ବା କରିବାକୁ ଅଛି ? ୱେଟିଂ ରୁମ୍ ଭିତରେ ଅଧଘଣ୍ଟାଏ ଅପେକ୍ଷା କରିବା ପରେ ନର୍ସ ଜଣେ ଆସି ଖବରଦେଲେ, ଗୋଟିଏ ବ୍ଲକେଜ୍‌ର କାମ ସରିଲା– ଅନ୍ୟଟି ସମୟ ନେବ– ସାମାନ୍ୟ ଅସୁବିଧା ଅଛି । ଏଇ ଅପେକ୍ଷା ଭିତରେ ମୁଁ ବଡଧୋବଲାଙ୍କୁ କ'ଣ ସବୁ ମାଗିଲାଗିଥାଏ ନିଶ୍ଚୟ । ଦେଢଘଣ୍ଟା ପରେ ନର୍ସ ଜଣେ ଆସି କହିଲେ, ''ଉପର ୱେଟିଂରୁମ୍‌କୁ ଯାଆନ୍ତୁ । ପେସେଣ୍ଟ ରୁମ୍‌କୁ ଗଲେ ଦେଖିପାରିବେ ।''

ଆମେ ନିର୍ଦ୍ଧାରିତ ରୁମ୍‌ରେ ପହଞ୍ଚି ଅପେକ୍ଷା କରି ରହିଲୁ । ହଠାତ୍ ଜଣେ ଆମେରିକୀୟ ଭଦ୍ରଲୋକ ସେ ବାଟ ଦେଇ ଆଗକୁ ଚାଲିଗଲେ । କ'ଣ ଭାବିଲେ କେଜାଣି ପୁଣି ଫେରିଆସିଲେ ଓ ଦ୍ୱାର ମୁହଁ ପାଖରୁ ଦୁଇହାତ ଯୋଡି ନମସ୍କାର କହି ରୁମ୍ ଭିତରକୁ ପଶିଲେ । ପତଳା ଡେଙ୍ଗା ଗୋରା ମଣିଷ । ଧଳା ପ୍ୟାଣ୍ଟ୍ ଶାର୍ଟ– ଛୋଟିଆ ଗୋଲିଆ ମୁହଁ । ସେମିତି ହାତ ଯୋଡିଥିବା ଅବସ୍ଥାରେ ଠିଆହୋଇ ପଚାରିଲେ, ''ଭିତରକୁ ଆସିପାରେ କି ? ମୁଁ ଏଇବାଟେ ଯାଉଥିଲି । ଶାଢୀପିନ୍ଧା ଜଣେ ମହିଳାଙ୍କୁ ଦେଖି ଫେରିଲି । ଜାଣିବାକୁ ଇଚ୍ଛାହେଲା ଭାରତର କେଉଁ ଅଞ୍ଚଳର ଲୋକ ଆପଣମାନେ ।''

ଝିଅ ତାଙ୍କୁ ବସିବାକୁ କହି– ଆମେ ଓଡିଶାର ଲୋକ ବୋଲି କହିଲା ଓ ଏଠାକୁ

ଆସିବାର କାରଣ ମଧ୍ୟ ଜଣାଇଲା । ଭଦ୍ରଲୋକଙ୍କ ମୁହଁରେ ହଠାତ୍ ବହୁ ପୁରୁଣା ବନ୍ଧୁଙ୍କ ସାକ୍ଷାତ୍ ପାଇବାର ଖୁସିଖୁସି ଭାବ । ପ୍ରଗଲ୍‌ଭ ହୋଇଉଠିଲେ ସେ । କହିଲେ, ''ମୁଁ ଭାରତରେ ରହିଚି ବହୁତ ଦିନ । ଭାରତର ପାଣି ପବନ ମୋ ଭିତରେ ଗୋଟିଏ ଅଦ୍ଭୁତ ପରିବର୍ତ୍ତନ ଆଣିଦେଇଛି । ଗୋଟେ ସମୟରେ ମୁଁ ଖ୍ରୀଷ୍ଟଧର୍ମ ଛାଡିଦେଇ ଚାଲିଯାଇଥିଲି ଥାଇଲାଣ୍ଡ । ସେଠୁ ଗଲି ଭାରତ । କ୍ଲିକତାରେ କଟିଲା ନଅବର୍ଷ । ସେଇ ସମୟ ଭିତରେ ମୁଁ ଭାରତକୁ ଚିହ୍ନିଲି । ଚିହ୍ନିଲି ହିନ୍ଦୁଧର୍ମକୁ । ହିନ୍ଦୁଧର୍ମର ଅଧ୍ୟାତ୍ମଦିଗକୁ ଜାଣିବାର ଆଗ୍ରହ ମୋ ଜୀବନର ଗତିପଥ ବଦଳେଇଦେଲା । ହିନ୍ଦୁଧର୍ମକୁ ବୁଝିଲା ପରେ ଯାଇ ମୁଁ ପୁଣି ଥରେ ଖ୍ରୀଷ୍ଟଧର୍ମକୁ ଭଲପାଇଲି ଓ ଫେରିଆସିଲି ମୋ ଦେଶ ଆମେରିକାକୁ । ଏଠି ବର୍ତ୍ତମାନ ଏକ କ୍ୟାଥଲିକ୍ ଚର୍ଚ୍ଚର ପ୍ରିଷ୍ଟ୍ ।''

ପ୍ରକୃତରେ ସେ ଦିଶୁଥାନ୍ତି ଜଣେ ଧାର୍ମିକ ମଣିଷ ପରି । ଝିଅ କହିଲା, ''ମୋ ବାପା ଜଣେ ରିଟାୟାର୍ଡ ପ୍ରଫେସର୍ । ତାଙ୍କ ସହିତ ଦେଖାହୋଇଥିଲେ ଆପଣ ବହୁତ ଖୁସିହେଇଥାନ୍ତେ ଓ ସେ ମଧ୍ୟ ।''

ଭଦ୍ରଲୋକ ଠିଆହେଇପଡି କହିଲେ, ''ମତେ ଟିକେ ତାଙ୍କ ସହିତ ଦେଖା କରାଇ ଦେବ ?'' ଝିଅ କହିଲା, ''ଆଜି ତ ନୁହେଁ, କାଲି ମଧ୍ୟ ସମ୍ଭବ ହେବନି । ସେ ତ ଏଯାଏ ଅପରେସନ୍ ପରେ କ୍ୟାବିନ୍‌କୁ ମଧ୍ୟ ଆସିନାହାନ୍ତି । ମତେ ଆପଣଙ୍କ ଠିକଣା ଦିଅନ୍ତୁ– ମୁଁ ପରେ ସୁବିଧା କରି ଆପଣଙ୍କ ସହିତ ଦେଖାକରେଇଦେବି ।''

ଭଦ୍ରଲୋକ ତାଙ୍କର ଭିଜିଟିଂ କାର୍ଡ ଉପରେ କଅଣ ଲେଖି ଝିଅହାତକୁ ବଢେଇଦେଇ କହିଲେ, ''ଏ ମୋର ପରିଚୟପତ୍ର ଏବଂ ମୋର ସଂସ୍କୃତ ନାମ ହେଉଛି– ବଳଭଦ୍ର । ଏଇ ନାଁଟିକୁ ବଡ ବଡ ଅକ୍ଷରରେ ଲେଖିଥାନ୍ତି ସେ ତାଙ୍କ ଠିକଣା ଉପରେ ।

ମୁଁ ବାରମ୍ବାର ତାଙ୍କ ମୁହଁକୁ ଲକ୍ଷ୍ୟକରୁଥାଏ । ଏଇତ ! ହସ୍‌ପିଟାଲ୍ ଭିତରକୁ ପଶିବା ପୂର୍ବରୁ କହିଥିଲି, 'ଯାହା ମାଗୁଚ ବଳଭଦ୍ରଙ୍କୁ ମାଗ' । ହଜାର ହଜାର ମାଇଲ୍ ଦୂରର ପୁରୀ ମନ୍ଦିରକୁ କଅଣ ଶୁଭିଗଲା ସେ ସ୍ୱର ? କୋଉ ବାଟରେ ହେଲେ ସାହସ ଦେବାପାଇଁ ମାଧ୍ୟମ କଲେ ସେ ଜଣେ ଆମେରିକୀୟ ପାଦ୍ରୀଙ୍କୁ ? ହଁ, ତାଙ୍କର ନଅବର୍ଷ କଟିଚି କଲିକତାରେ । ହେଲେ, ବଳଭଦ୍ର ଡାକ ତ ଓଡିଶାରେ ଚଳେ– ସେ ଡାକ ତ ଏକାନ୍ତ ଭାବେ ଆମ ଓଡିଆଙ୍କର । ଭାରତର ବିଭିନ୍ନ ପ୍ରାନ୍ତରେ ଶ୍ରୀକୃଷ୍ଣଙ୍କ ସହିତ ଯୋଡା ନାମ ବଳରାମ । କିନ୍ତୁ ବଳଭଦ୍ର ତ ଓଡିଶାର, ପୁରୀର, ଶ୍ରୀମନ୍ଦିରର !

ମୋ ଲୁହ ଭର୍ତ୍ତି ଆଖି ଆଗରେ ଗମ୍ଭୀରା ଭିତରେ, ରତ୍ନବେଦୀ ଉପରୁ ବଡ-ଧୋବଲାଙ୍କ ମୁହଁ ଦିଶିଗଲା ପରିଷ୍କାର । ମାଗିଲେ ତେବେ ଏମିତି ଦିଅ ? ବିଶ୍ୱାସକୁ ଏମିତି ପ୍ରତିଷ୍ଠା କର ? ହଜାର ହଜାର ମାଇଲ୍ ଦୂରରୁ ମଧ୍ୟ ଶୁଭେ ସେ ଡାକ ? ବଡ ଧୋବଲା ! ତୁମ ଅନୁଗ୍ରହ ପାଇଥିବା ମଣିଷର ଜୀବନ ଧନ୍ୟ ।''

ଭିଜିଟିଂ କାର୍ଡରେ ଲେଖାହୋଇଥିଲା–
Balabhadra
Bruce Constain, Pastoral Care Deptt, St Thomas Hospital,
4220, Harding Road, Nashville, TN 37202,
Tel : 615 222 6602
e-mail : bconstain@stthomas.org ।

ଏଠାରେ ଆହୁରି ଉଲ୍ଲେଖନୀୟ– ହସ୍‌ପିଟାଲ୍‌ରୁ ଘରକୁ ଫେରିଲା ପରେ ମୁଁ ଉକ୍ତ ଭଦ୍ରଲୋକଙ୍କ ସହିତ ଫୋନ୍‌ରେ କଥାବର୍ତ୍ତା କରିଥିଲି ଏବଂ ଇ-ମେଲରେ ତାଙ୍କୁ ମଧ୍ୟ ଧନ୍ୟବାଦ ଦେଇ ତାଙ୍କଠାରୁ ଓ ତାଙ୍କ ହସ୍‌ପିଟାଲ୍‌ର କର୍ମକର୍ତ୍ତାଙ୍କଠାରୁ ଉତ୍ତର ପାଇଥିଲି ।

## ନିଉଜର୍ସି (ମିନିଇଣ୍ଡିଆ)

ନ୍ୟାସ୍‌ଭିଲ୍‌ରେ ମୋର ହାର୍ଟ ଅପରେସନ୍ ପରେ କିଛିଦିନ ମତେ ପ୍ରବୀର ଓ ବୁଲବୁଲଙ୍କ ହେପାଜତରେ ତାଙ୍କ ଫ୍ରାଙ୍କ୍‌ଲିନ୍ (ଟେନୀସୀ) ଘରେ ବିଶ୍ରାମ କରିବାକୁ ପଡିଥିଲା । ସେ ଭିତରେ କନେକ୍ଟିକଟ୍‌ରେ ମୋ ବଡନାତି ଅମୃତର ହାଇସ୍କୁଲ୍ ଗ୍ରାଜୁଏସନ୍ ଫଙ୍କ୍‌ସନ୍ କରାଗଲା । ଏ ଦେଶର ଚଳଣିରେ ପିଲାର ହାଇସ୍କୁଲ୍ ପାଶ୍‌କରିବା ଏକ ଗୁରୁତ୍ୱପୂର୍ଣ୍ଣ ସାମାଜିକ ଘଟଣା– ତେଣୁ ଏହାକୁ ସେମାନେ ଏକ ସାମାଜିକ ଶୁଭାନୁଷ୍ଠାନ ଭାବେ ମହା ଜାକଜମକରେ ପାଳନ୍ତି । ବଡଧରଣର ବନ୍ଧୁ ମିଳନର ବ୍ୟବସ୍ଥା କରାଯାଏ । ଗୀତବାଦ୍ୟ ଓ ଭୋଜିଭାତର ଆୟୋଜନ ହୋଇଥାଏ ।

ଏଠାର ହାଇସ୍କୁଲ୍ ଗ୍ରାଜୁଏସନ୍ ଭାରତର ବାରବର୍ଷିଆ ହାଇଅର୍ ସେକେଣ୍ଡାରି ବା +2 ପାଠ ସହିତ ସମାନ । ଏହାପରେ ପିଲା ଉଚ୍ଚତର ପାଠ ପଢିବାକୁ ବିଶ୍ୱବିଦ୍ୟାଳୟକୁ ଯାଏ ।

ବଡ ନାତି ଶ୍ରୀମାନ୍ ଅମୃତ ପତି ଆମ ଜୋଇଁ ମହେଶ ଓ ମଝିଆଁ ଝିଅ ନିବେଦିତା (ସୁଲୁ)ଙ୍କ ବଡପୁଅ । ମହେଶ ସେତେବେଳେ ଆଇ.ବି.ଏମ୍ କଂପାନୀର ସିନିୟର୍ ମ୍ୟାନେଜର୍, ସୁଲୁ ହାର୍ଟଫୋର୍ଡରେ ଏକ ବଡ ଡାକ୍ତରଖାନାର ମାନସିକ ଚିକିତ୍ସା ବିଭାଗରେ କାଉନ୍‌ସେଲର୍ । ଏଥର ଆମେରିକା ଆସିବାବେଳେ ନିରୁପମା ଓ ମୁଁ ଏଇ ନାତିର ଗ୍ରାଜୁଏସନ୍ ଉତ୍ସବକୁ ଆଖିରେ ରଖି ପ୍ରସ୍ତୁତ ହୋଇଆସିଥିଲୁ । କିନ୍ତୁ କିଏ ଜାଣିଥିଲା ନ୍ୟାସ୍‌ଭିଲ୍‌ରେ ରଥଯାତ୍ରା ପରେ ପରେ ମୁଁ ଡାକ୍ତରଖାନା ଯିବି ଓ ପରେ ପରେ ମତେ ବଡଝିଅ ଘରେ ମାସଟିଏ ବିଶ୍ରାମ ନେବାକୁ ପଡିବ ! ନିରୁପମାଙ୍କୁ ସାଙ୍ଗରେ ନେଇ ଜୋଇଁ ପ୍ରବୀର ଓ ନାତି ପ୍ରତୀକ ଗଲେ କନେକ୍ଟିକଟ୍– ଅମୃତର ଗ୍ରାଜୁଏସନ୍‌ରେ ଯୋଗଦେବାକୁ । ସେଠି ଏକ ବିରାଟ ଆୟୋଜନ ଭିତରେ ଅମୃତର ଗ୍ରାଜୁଏସନ୍ ଫଙ୍କ୍‌ସନ୍ ହେବା ଖବର ପାଇଲୁ । ସେ ଫଙ୍କ୍‌ସନ୍‌କୁ ଅନ୍ୟମାନଙ୍କ ଭିତରେ ମହେଶଙ୍କ ବଡଭାଇ ବିଖ୍ୟାତ ପଦାର୍ଥବିଜ୍ଞାନୀ ଡକ୍ଟର ଯୋଗେଶ ଚନ୍ଦ୍ର ପତି ଓ ଆହୁରି ଅନେକ ବିଶିଷ୍ଟ ବ୍ୟକ୍ତି ଆସିଥିବା ଖବର ମିଳିଲା ।

ଫ୍ରାଙ୍କଲିନ୍‌ରେ ପ୍ରାୟ ମାସେ କାଳ ବିଶ୍ରାମ ନେବା ପରେ ମୁଁ ଏକା ଏକା ପ୍ଲେନ୍‌ରେ କନେକ୍ଟିକଟ୍ ଚାଲିଗଲି । କନେକ୍ଟିକଟ୍ ଓ ଆଖପାଖ ମାସାଚ୍ୟୁସେଟ୍‌ସ୍ ଇତ୍ୟାଦି ଅଞ୍ଚଳ ମୋ ପାଇଁ ନୂଆ ନଥିଲା– ସେ ବିଷୟ ପୂର୍ବ ଅଧ୍ୟାୟରେ ଲେଖିଛି । ସେଠି କିଛିଦିନ ରହିବା ପରେ ନିରୁପମା ଓ ମୁଁ ଚାଲିଲୁ ଏକ ସଂପୂର୍ଣ୍ଣ ନୂଆ ଜାଗା– ନିଉଜର୍ସିରେ ରହୁଥିବା ଆମ ସବା ସାନଝିଅ ଜୁଲି ଓ ଜୋଇଁ ଅଭିଜିତ୍‌ଙ୍କ ପାଖକୁ । ସେଠି ପ୍ରଧାନ ଆକର୍ଷଣ ଥିଲେ ସେମାନଙ୍କର ଦୁଇ ଶିଶୁ କନ୍ୟା– ଆମର ଅତି ପ୍ରିୟ ନାତୁଣୀ ଅଙ୍କିତା ଆଉ ଆନୁ ।

ଅଭିଜିତ ଓ ଜୁଲି ଦୁଇତିନି ବର୍ଷ ଆଗରୁ ଦିଲ୍ଲୀ ଛାଡି ଚାଲିଆସିଥାନ୍ତି ଆମେରିକା । ସେତେବେଳେ ସେମାନେ ରହୁଥାନ୍ତି ନିଉଜର୍ସିରେ । ସେଠାର ଏକ ବଡ ବିଶ୍ୱବିଦ୍ୟାଳୟ ରଟ୍‌ଗର୍ ୟୁନିର୍ଭର୍ସିଟିରେ ଉଚ୍ଚତର (ପୋଷ୍ଟ୍‌ଡକ୍) ଗବେଷଣା କରୁଥାନ୍ତି ।

ନିରୁପମା ଓ ମତେ କନେକ୍ଟିକଟ୍‌ରୁ ନେବାପାଇଁ ଜୁଲି ଅଭିଜିତ ଓ ଦୁଇନାତୁଣୀ ସେମାନଙ୍କ କାର୍ ନେଇ ପହଞ୍ଚିଲେ । ସେପ୍ଟେମ୍ବର ମାସର ଏକ ଚମତ୍କାର ଅପରାହ୍ନରେ ଆମେ ସୁଲୁ ମହେଶଙ୍କ ଗ୍ଲାସଟନ୍‌ବରୀ ଘର ଛାଡି ବାହାରିଲୁ ନିଉଜର୍ସି । ଆମେରିକାରେ ସେପ୍ଟେମ୍ବର ଅକ୍ଟୋବର ମାସ ଦୁଇଟାକୁ କୁହାଯାଏ 'ଫଲ୍‌ଟାଇମ୍' । ଭାରତରେ ଏ ସମୟକୁ ଆମେ କହୁ ଶରତଋତୁ । ଶାରଦୀୟ ଦୁର୍ଗାପୂଜାର ସମୟ ଏଇଟା ଆମପାଇଁ ଆମ ନିଜ ଦେଶରେ । ଏଠି ଅବଶ୍ୟ ଦୁର୍ଗାପୂଜାର ପରଂପରା ନାହିଁ; କିନ୍ତୁ ପ୍ରକୃତିମାତା ଏ ଦେଶର ପାଣିପବନ ବିଶେଷତଃ ଅରଣ୍ୟର ଗଛପତ୍ର ସବୁଠି ବିଶ୍ୱଜନନୀଙ୍କର ଧରା-ବତରଣର ସୁସ୍ପଷ୍ଟ ପଦଚିହ୍ନ ଦେଖିବାକୁ ମିଳେ । ସମଗ୍ର ଅରଣ୍ୟ ସେତେବେଳକୁ ଏକ ବହୁରଙ୍ଗୀ ଚିତ୍ରପଟ ପାଲଟୁଥାଏ । ସେ ଚିତ୍ରପଟ ଏକ ବିସ୍ତୀର୍ଣ୍ଣ ଅଞ୍ଚଳକୁ ଆଚ୍ଛାଦିତ କରିବା ଆରମ୍ଭ ହେଉଥାଏ । ଫଲ୍ ସମୟର ଏଇ ଚମତ୍କାର ଦୁର୍ଲଭ ଦୃଶ୍ୟ ଉପଭୋଗ କରିବା ଭାଗ୍ୟରେ ଥିଲେ ମିଳେ ।

ନିଉଜର୍ସି କନେକ୍ଟିକଟ୍ ମଝିରେ ପଡେ ନ୍ୟୁୟର୍କ ରାଜ୍ୟ । ଗ୍ଲାସ୍‌ଟନ୍‌ବରିରୁ ପ୍ରାୟ ପ୍ରାୟ ପାଞ୍ଚ ଘଣ୍ଟା ଡ୍ରାଇଭ୍ ପରେ ଆମେ ସେଦିନ ସନ୍ଧ୍ୟାରେ ପହଞ୍ଚିଲୁ ନିଉଜର୍ସିର 'ହାଇଲ୍ୟାଣ୍ଡ ପାର୍କ' ନାମକ ଏକ ସହରରେ । ଏଠି ଗୋଟିଏ କଲୋନୀରେ ଏକ ଛୋଟ ଫ୍ଲାଟ୍ ଭଡାରେ ନେଇ ଜୁଲି ଅଭିଜିତ ରହିଲେଣି ଦୁଇବର୍ଷ । ସେମାନଙ୍କ କର୍ମସ୍ଥଳ ରଟ୍‌ଗର ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍‌କୁ ଲାଗି ଏଇ ଛୋଟ ସହର ହାଇଲ୍ୟାଣ୍ଡ ପାର୍କ । ଉଭୟ ମଝିରେ ନ୍ୟାସ୍‌ନାଲ୍ ହାଇୱେ ।

ସେମାନଙ୍କ ଫ୍ଲାଟ୍ ଆଗରେ ଗାଡି ପାର୍କ କରିବା ସମୟରେ ହଠାତ୍ କାନରେ ବାଜିଲା ହିନ୍ଦୀ ଭାଷାରେ ଚାଲିଥିବା କଥାବର୍ତ୍ତା । ଆମେରିକାର ରାସ୍ତା ଉପରେ ହିନ୍ଦୀରେ କଥାବାର୍ତ୍ତା ଶୁଣିବା ଏକ ଦୁର୍ଲଭ ଅନୁଭବ । ଅଭିଜିତଙ୍କୁ ପଚାରିଲି, ''ଏଠି ତମ ବିଲଡିଂରେ କ'ଣ ଆମ ଭାରତୀୟ କିଛି ଲୋକ ରହନ୍ତି ନା କ'ଣ ?''

‘‘ଖାଲି ଆମ ବିଲଡିଂରେ ନୁହଁ, ଏ ସାରା ସହରଟା ଆମ ଭାରତୀୟଙ୍କ ଏକ କଲୋନି । ଖାଲି ଏଇ ସହର ନୁହେଁ– ନିଉଜର୍ସି ସାରା ବର୍ତ୍ତମାନ ଭର୍ତ୍ତିହେଇଚନ୍ତି ଆମ ଏନ୍.ଆର୍.ଆଇ (ଇଣ୍ଡିଆନ୍) । ସାରାଭାରତର ବିଭିନ୍ନ ପ୍ରଦେଶର ଲୋକ ଏଠି ବହୁ କାଳୁ ରହିଆସିଲେଣି । ଉତ୍ତର ଭାରତ ଓ ଦକ୍ଷିଣ ଭାରତ ସମେତ ଉତ୍ତର ପୂର୍ବାଞ୍ଚଳର ବହୁ ରାଜ୍ୟର ଲୋକଙ୍କୁ ଏଠି ଭେଟିବେ ଆପଣ । ସେଥିପାଇଁ ନିଉଜର୍ସିକୁ କୁହାଯାଉଚି ‘‘ମିନି ଇଣ୍ଡିଆ’’– ଉଲ୍ଲସିତ ଉତ୍ତର ଦେଲେ ଅଭିଜିତ୍ ।

ସନ୍ଧ୍ୟାର ବହୁ ଡେରିଯାକେ କଟିଲା ଜୁଲି ଅଭିଜିତ ଆଉ ଅଙ୍କିତା ଆନୁଙ୍କ ଗହଣରେ । ନାତୁଣୀ ଦୁଇଙ୍କ ସାଙ୍ଗେ ପିଛିଲା ଦିନର ବକେୟା ମଜାଦାର ଗପ ସବୁ ଜମିଗଲା ଖୁବ୍ । ଦେହ ଖରାପ ପରେ ପରେ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଅନେକେ ଚାଲିଯାନ୍ତି କୋଉ ସମୁଦ୍ର କୂଳ ବା ପର୍ବତ ଉପର ରିସର୍ଟ ସ୍ଥଳକୁ । ମୋ ପାଇଁ ସବୁଠୁ ଭଲ ରିସର୍ଟ ସ୍ଥଳ ଥିଲା– ନିଉଜର୍ସି । ଆଉ ସବୁଠୁ ଭଲ ମନୋରଂଜନ ପାଇଁ ସାଙ୍ଗ ମିଳିଗଲେ– ଦୁଇ ନାତୁଣୀ ଅଙ୍କିତା ଆଉ ଆନୁ । ଅଙ୍କିତା ମତେ ଦେଖୁ ଦେଖୁ ପୂର୍ବେ ଯେପରି ଅଳି କରୁଥିଲା, ‘‘ଅଜା ! ମିଆଁ ଗପ. . .’’– ଆମ ଗପସପ ପୁଣି ଆରମ୍ଭ ହେଇଗଲା ସେଇ ମିଆଁ ଗପରୁ ।

କହିରଖେ, ଏ ମିଆଁଗପ ଆରମ୍ଭ ହେଇଥିଲା ୧୯୯୭ରେ ଶିମିଳାଗାମୀ ହିମାଳୟାନ୍ କ୍ୱିନ୍ ଟ୍ରେନ୍‌ରେ । ସେତେବେଳେ ଅଙ୍କିତାର ବୟସ ମାତ୍ର ଅଢେଇ ବର୍ଷ । ଅଙ୍କିତାର ବୟସ ବଢିବା ସାଙ୍ଗେ ସାଙ୍ଗେ ଏ ମିଆଁ ଚରିତ୍ରର ସମୃଦ୍ଧି ମଧ୍ୟ ଘଟିଚାଲିଲାଣି ଆଜିକୁ ଛ’ବର୍ଷ ତଳୁ । ଆମ ମିଆଁ ଜଣେ ଦୁଃସାହସୀ ଆଫଗାନ୍ ପଠାଣ ଯେ ରବୀନ୍ଦ୍ରନାଥଙ୍କ କାବୁଲିବାଲା ନୁହେଁ– ବରଂ ତାକୁ କୁହାଯାଇପାରେ ଓସାମା ବିନ୍ ଲାଡେନ୍‌ଙ୍କ ଏକ ପୂର୍ବସୁରୀ । ୧୯୯୭ରେ ଓସାମା ବିନ୍ ଲାଡେନ୍ ନାଁ ଥିଲା ଅଶ୍ରୁତ । (ଏ ମିଆଁଗପର ସୂଚନା ପୂର୍ବରୁ ଏ ବହିରେ ଠାଏ ଦିଆଯାଇଚି) ।

ପରଦିନ ସକାଳେ ଘରୁ ବାହାରିଲା ପରେ ଦେଖାଗଲା– ପ୍ରାୟ ପଚାଶ ସରିକି ସ୍କୁଲ୍ ୟୁନିଫର୍ମ ପିନ୍ଧା ଛୋଟ ବଡ ପିଲା ପିଠିରେ ଓଜନଦାର ବହି ବ୍ୟାଗ୍ ଲଦି ଧାଡିହେଇ ଠିଆହେଇଚନ୍ତି ଘର ସାମ୍‌ନା ବସ୍‌ଷ୍ଟାଣ୍ଡରେ । ଚେହେରାରୁ ସେମାନଙ୍କୁ ଚିହ୍ନିହେଉଥାଏ– ସମସ୍ତେ ଭାରତୀୟ ବଂଶୋଦ୍ଭବ । ସେମାନଙ୍କ ବାପ ମା’ ରହନ୍ତି ଆମ ବିଲଡିଂର ବିଭିନ୍ନ ଫ୍ଲାଟ୍‌ରେ ।

ପରେ ସକାଳୁଆ ବୁଲା ଆରମ୍ଭ ହେଲା ଆମର । ହାଇୱେର କଡେ କଡେ ଲମ୍ବା ଫୁଟ୍‌ପାଥରେ ମୁଁ ଓ ନିରୁପମା ସାଙ୍ଗରେ ଅଙ୍କିତାକୁ ନେଇ ଚାଲିଲୁ– ଯେତେଦୂର ସଂଭବ । ଯୁଆଡେ ଗଲୁ ସିଆଡେ ଦେଖିଲୁ ଶାଢି ବା ସାଲୁଆର ପିନ୍ଧା ସ୍ତ୍ରୀଲୋକ ଆଉ ଭାରତୀୟ ଚେହେରାର ପୁରୁଷ ଲୋକ ଚାଲିଛନ୍ତି ନିଜନିଜର କାର୍ଯ୍ୟ ବ୍ୟସ୍ତତା ନେଇ । ଆମେ ଟ୍ରାଫିକ୍ ବହୁଳ ହାଇୱେ ଟପି ଚାଲିଲୁ ଆରପାଖକୁ । ସେ ପାଖେ ରଟ୍‌ଗର୍ ୟୁନିର୍ଭସିଟି କ୍ୟାମ୍ପସ୍ ।

କ୍ୟାମ୍ପସ୍ ଭିତରକୁ ଯାଇଥିବା ରାସ୍ତାରେ ଚାଲିଲୁ କିଛି ବାଟ ଭିତରକୁ । ସେଠି ବି ଭେଟିଲୁ ଭାରତୀୟ ଲୋକଙ୍କୁ ବେଶ୍ କିଛି ସଂଖ୍ୟାରେ । ପଚାରି ବୁଝିଲୁ– ସେମାନେ ଭାରତର ବିଭିନ୍ନ ପ୍ରଦେଶର ଲୋକ; ଛାତ୍ର ଗବେଷକ ବା ଶିକ୍ଷକ ଏ ୟୁନିର୍ଭସିଟିର ।

କ୍ୟାମ୍ପସ୍ ଭିତରଟି ମନେହେଉଥାଏ ଏକ ନ୍ୟାସ୍‌ନାଲ୍ ପାର୍କ ଭଳି । ରାସ୍ତା ଦୁଇକଡେ ସୁରକ୍ଷିତ ପ୍ରାଚୀନ ଅରଣ୍ୟ । ବିଶାଳକାୟ ପାଇନ୍, ଓକ୍, ମ୍ୟାପଲ୍ ଇତ୍ୟାଦି ବୃକ୍ଷର ଘଞ୍ଚ ଅନ୍ଧାରୁଆ ଜଙ୍ଗଲ । କେବଳ ଜଙ୍ଗଲ ନୁହେଁ– ମାଳମାଳ ହରିଣ ବୁଲୁଥାନ୍ତି ସେ ବଣର ଭିତର ବାହାର ଚାରିପଟେ । ସେମାନଙ୍କର ଡର ଭୟ ନଥାଏ ମଣିଷଙ୍କୁ ବା ରାସ୍ତାରେ ଚାଲିଥିବା ଗାଡିମଟରକୁ । ଦେଖିଲୁ ରାସ୍ତା ଏପାଖ ବଣରୁ ବାହାରି ଆରପାଖ ବଣକୁ ଯାଉଥିବା ଗୋଟିକିଆ ବା ଦଳବଦ୍ଧ ହରିଣଙ୍କ ନିରାପତ୍ତା ପାଇଁ ଗାଡିଚାଳକମାନେ ଗାଡି ବନ୍ଦକରି ଅପେକ୍ଷା କରୁଥାନ୍ତି ।

ଆମ ଗାଇଡ୍ ଅଙ୍କିତା ଆମକୁ ବିଶ୍ୱବିଦ୍ୟାଳୟ ହତା ଭିତରର ବିଭିନ୍ନ ଦର୍ଶନୀୟ ସ୍ଥାନର ନାଁ ସବୁ କହୁଥାଏ । କୋଉ ବିଲଡିଂରେ ତା' ବାବା ମାମା ରିସର୍ଚ୍ଚ କରନ୍ତି ସେ ସବୁକୁ ଚିହ୍ନେଇଦଉଥାଏ । ଦେଖିଲୁ ବିଶ୍ୱବିଦ୍ୟାଳୟ ହତା ଭିତରେ ଅନେକ ଗୁଡିଏ କ୍ୟାମ୍ପସ୍ ରହିଚି । ଏକ ବିରାଟ ଅଂଚଳ । କେତେଟା କ୍ୟାମ୍ପସ୍ ଆମେରିକାର କେତେକ ପୂର୍ବତନ ପ୍ରେସିଡେଣ୍ଟ ଓ ବିଖ୍ୟାତ ଲୋକଙ୍କ ନାମାନୁସାରେ ନାମିତ ।

ତେବେ ରଟ୍‌ଗର୍ ୟୁନିଭର୍ସିଟି କ୍ୟାମ୍ପସ୍‌ର ପ୍ରଧାନ ଲକ୍ଷଣୀୟ ବିଷୟହେଲା ଏହାର ଶାନ୍ତ ନିରୁପଦ୍ରବ ବାତାବରଣ ଯେଉଁଠି ମୃଗ ଶିଶୁମାନେ ସବୁଆଡେ ନିର୍ବିଘ୍ନରେ ବିହାର କରୁଥାନ୍ତି । ନିରୁପମା ବିହ୍ୱଳିତ ହୋଇପଡିଲେ । କହିଲେ, ''ଏଇଟା ୟୁନିର୍ଭସିଟି ନା ଶକୁନ୍ତଳାଙ୍କ ପିତା କଣ୍ୱ ମୁନିଙ୍କ ଆଶ୍ରମ ! ସ୍ୱର୍ଗ ପରି ଲାଗୁଚି ଏ ଜାଗା. . . ଏ ଦୃଶ୍ୟ !''

ମୁଁ ତାର ଜବାବ୍ ଦେଲି, ''ସ୍ୱର୍ଗ ତ ନିଶ୍ଚୟ । କିନ୍ତୁ ମନେରଖ– ଏଠି ଭାରତୀୟମାନଙ୍କ ସଂଖ୍ୟା ଯୋଉମାତ୍ରାରେ ବଢୁଚି ଦିନ ଆସିବ ଯେତେବେଳେ ଏ ବଣରେ ଗୋଟିଏ ବି ହରିଣ ଆଉ ନଥିବ । ସବୁ ମାରି ଖାଇ ଶେଷକରିଦେବେ ଯେମିତି କରନ୍ତି ଆମ ଲୋକେ ସେଠି ଇଣ୍ଡିଆରେ ।''

ସନ୍ଧ୍ୟାରେ ଆମ ସାଙ୍ଗେ ମିଶିଲା ଜୁଲି । ଠେଲାଗାଡିରେ ଦୁଇବର୍ଷର ଆନ୍ନୁକୁ ବସେଇ ନିରୁପମା, ଅଙ୍କିତା ଓ ମୁଁ ଏଠାକାର ବିଖ୍ୟାତ ''ଜନ୍‌ସନ୍ ପାର୍କ'' ବୁଲି ବାହାରିଲୁ । ପାର୍କଟା ଘରଠୁ ଟିକେ ଦୂର– ସେଇ ରଟଗର୍ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ପଛପଟ ଏକ ନଦୀ-କୂଳରେ । ଏ ନଦୀର ନାଁ ''ରୈରୀଟାନ୍'' । ନଦୀ ଆରପାଖେ ଜନ୍‌ସନ୍ କଂପାନୀର କାରଖାନା ଅଂଚଳ– ଏକ ବିଶାଳ ଶିଳ୍ପାଞ୍ଚଳ । ସେପାଖେ ଧୂଆଁ-ଧୂଳୀର ଅଞ୍ଚଳ– କିନ୍ତୁ ଏ ପଟଟା ଶାନ୍ତ ସୁରମ୍ୟ ମନୋରମ ପାର୍କ ଅଂଚଳ । ନଈ କୂଳେକୂଳେ ପ୍ରାୟ ଆଠ ନଅ ମାଇଲ ଧରି ପାର୍କଟା ଲମ୍ବିଥାଏ । ବହୁ ଲୋକ ଜଗିଂ କରୁଥାନ୍ତି ଜଗିଂ ଟ୍ରାକ୍‌ରେ । ମତେ

ପ୍ରତିଦିନ ଅନ୍ତତଃ ତିନିମାଇଲ୍ ଜଗିଂ ପାଇଁ ଡାକ୍ତର ପରାମର୍ଶ ଦେଇଥାନ୍ତି । ମୁଁ ବାହାରିଲି ଚାଲିବାକୁ । ମୋ ପଛେପଛେ ଦେହରକ୍ଷୀ ପରି ଲାଗିରହିଥାଏ ନଅବର୍ଷର ନାତୁଣୀ ଅଙ୍କିତା । ସେ ମତେ ମୁହୂର୍ତ୍ତେ ଏକୁଟିଆ ଛାଡିବାକୁ ନାରାଜ । ମୋର ହାର୍ଟ ଅପରେସନ୍ ପରେ ତା' ମନରେ କେତେ ଚିନ୍ତା ପଶୁଥାଏ କେଜାଣେ !

ଠାଏ ଆମେ ଟିକିଏ ଅଟକିଲୁ– ଗୋଟାଏ ଅଦ୍ଭୁତ ଦୃଶ୍ୟ ଦେଖିବାକୁ । ଦେଖିଲୁ ଜଣେ ଆମେରିକାନ୍ ଭଦ୍ରମହିଳା ତାଙ୍କ ପୋଷା କକୁରକୁ ଧରି ଦଉଡୁଥାନ୍ତି । କିଛି ବାଟ ଗଲାପରେ କୁକୁରଟି ଅଟକିଲା ଓ ତା'ର ନିତ୍ୟକର୍ମ କଲା । ସାଙ୍ଗେ ସାଙ୍ଗେ ଭଦ୍ରମହିଳା ତାଙ୍କ ହାତରେ ଧରିଥିବା ଏକ ଝୁଲା ମୁଣିରୁ ବାହାର କଲେ ଏକ ଚଟୁ (ସ୍ପାଚ୍ୟୁଲା) । କୁକୁରର ମଳକୁ ଘାସ ଉପରୁ ନିଚିପର କରି ପୋଛିନେଲେ ଓ ମୁଣିରେ ଥିବା ଏକ ପ୍ଲାଷ୍ଟିକ୍ ବ୍ୟାଗ୍‌ରେ ସଂଗ୍ରହ କଲେ । ଏ ଦୃଶ୍ୟ ଦେଖି ମତେ ହସଲାଗିଲା । ଅଂକିତା ମୋ ମନ କଥା ବୁଝିନେଲା । କହିଲା, ''ଏଠାକାର ନିୟମ କୁକୁର ଝାଡା ଫେରିଲେ ସେ ମଇଳାକୁ କୁକୁରର ମାଲିକ ସଫାକରିବେ– ନହେଲେ ଶହେ ଡଲାର୍ ଫାଇନ୍ !''

''ସେ ମଳକୁ ଭଦ୍ରମହିଳା ନେଇ କ'ଣ କରିବେ?''– ମୁଁ ହସିହସି ଅଙ୍କିତାକୁ ଗେଲରେ ପଚାରିଲି, ''କାଲି ସକାଳ ବ୍ରେକ୍‌ଫାଷ୍ଟ ?''

ଅଙ୍କିତା ହସିଦେଇ କହିଲା, ''କ'ଣ କରୁଚି ଦେଖିବ ରହ. . .''

ଦେଖିଲି ଭଦ୍ରମହିଳା କୁକୁରମଳଥିବା ସେ ପ୍ଲାଷ୍ଟିକ୍ ବ୍ୟାଗ୍‌କୁ ଧରି ଚାଲିଲେ ଆଖପାଖର ଗୋଟାଏ ଡଷ୍ଟବିନ୍ ପାଖକୁ । ପାର୍କର ବିଭିନ୍ନ ସ୍ଥାନରେ ବଡ ବଡ ଡଷ୍ଟ୍‌ବିନ୍ ମାନ ରଖାଯାଇଥାଏ ଖାସ୍ ଏଇ ଉଦ୍ଦେଶ୍ୟରେ । ପାର୍କ ଭିତରେ ଖଣ୍ଡିଏ ଟୁକୁରା କାଗଜ ବି କୋଉଠି ପଡିବାର ନୁହଁ, ସେଥିପାଇଁ ଜାଗାଟା ଏତେ ପରିଷ୍କାର ପରିଚ୍ଛନ୍ନ ଦିଶୁଥାଏ ନିଶ୍ଚୟ । ଅଥଚ ହଜାର ହଜାର ଲୋକ ସାରା ପାର୍କରେ ଦିନରାତି ଘୂରି ବୁଲନ୍ତି । ଅଧିକାଂଶଙ୍କ ସାଥିରେ କୁକୁର ଓ ଛୋଟଛୋଟ ପିଲା ।

ନ୍ୟୁଜର୍ସିରେ ଆମର ଏକମାସ ରହଣି ଭିତରେ ଆମେ ପ୍ରାୟ ପ୍ରତିଦିନ ଏଇ ପାର୍କକୁ ବୁଲିଆସୁ ।

ରୈରୀତାନ ନଦୀର ନାଁ ଶୁଣିଲା ବେଳୁ ମତେ ଏ ନାଁଟା କାହିଁକି କେଜାଣି ଖୁବ୍ ଆପଣାର ଆପଣାର ମନେହେଉଥିଲା– ସତେକି ଏ ଗୋଟିଏ ଭାରତୀୟ ନାଁ । ପରେ ଜଣାଗଲା ଏ ନାଁ ରେଡ୍ ଇଣ୍ଡିୟାନ୍ ଲୋକେ ଦେଇଥିବା ନାଁ । ଏଠି ପୂର୍ବେ ରେଡ୍‌ଇଣ୍ଡିୟାନ୍ ମାନଙ୍କ ବସତି ଥିଲା । ଗୋରା ଲୋକଙ୍କ ଉପନିବେଶବାଦର ଶିକାର ହୋଇ ସେମାନେ ପ୍ରାୟ ଦୁଇଶହ ବର୍ଷ ତଳେ ଏ ଅଂଚଳରୁ ବିତାଡିତ ହୋଇଥିଲେ ।

## ୱାସିଂଟନ୍ ଭ୍ରମଣ (୨୮ ସେପ୍ଟେମ୍ବର, ୨୦୦୩)

ନିଉଜର୍ସିରେ ପ୍ରାୟ ମାସେ ରହଣି ଭିତରେ ଆମେ ଗୋଟାଏ ଶନିବାରରେ ବୁଲି ବାହାରିଲୁ ୱାସିଂଟନ୍। ଯୁକ୍ତରାଷ୍ଟ୍ର ଆମେରିକାର ରାଜଧାନୀ ସହର ୱାସିଂଟନ୍ କେବଳ ଆମେରିକାର ରାଜଧାନୀ ସହର ପାଇଁ ନୁହେଁ– ସେଠାର ପ୍ରଧାନ ଆକର୍ଷଣ ମୋ ପାଇଁ ଥିଲା ସେଠାର ପାର୍ଲ୍ୟାମେଣ୍ଟ ହାଉସ ବା କାପିଟଲ୍ ହିଲ୍ ଓ ପ୍ରେସିଡେଣ୍ଟଙ୍କ ନିବାସ ହ୍ୱାଇଟ୍‌ହାଉସ୍ ସମେତ ସେଠାର ବିଶ୍ୱବିଖ୍ୟାତ ସ୍ମିଥ୍‌ସୋନିଆନ୍ ମ୍ୟୁଜିୟମ୍ ବୁଲି ଦେଖିବା। ବିଶେଷତଃ ଏ ମ୍ୟୁଜିୟମ୍‌ର ଖ୍ୟାତି ବହୁପୂର୍ବରୁ ମୋତେ ଆକୃଷ୍ଟ କରିଥାଏ। କୁହାଯାଏ– ସେ ମ୍ୟୁଜିୟମ୍‌ଟା ମ୍ୟୁଜିୟମ୍ ନୁହେଁ– ଜ୍ଞାନର ଗନ୍ତାଘର ! ଏହାର ବିଭିନ୍ନ ଶାଖା-ପ୍ରଶାଖାଗୁଡିକରେ ପ୍ରଦର୍ଶିତ ବସ୍ତୁଗୁଡିକୁ କେହି ଦର୍ଶକ ଏକାଦିନକେ ତ ପଛକଥା, ସପ୍ତାହ ସପ୍ତାହ ବୁଲିଲେ ବି ପୂରା ଦେଖିପାରେନା । ସେଥିପାଇଁ ଦର୍ଶକ ୱାସିଂଟନରେ କିଛିଦିନ ରହିବା ଦରକାର। କିନ୍ତୁ ଆମ ହାତରେ ଏତେ ସମୟ ନଥିଲା। ତେଣୁ ଅନ୍ତତଃ ଥରଟିଏ ଆମେରିକାର ରାଜଧାନୀ ସହର ୱାସିଂଟନ୍ ସମେତ ସେଠାକାର ପ୍ରଧାନ ଦର୍ଶନୀୟ ସ୍ଥାନ-ଗୁଡିକ ଉପରେ ଟିକେ ନଜର ପକେଇନେବା ଲକ୍ଷ୍ୟରେ ଆମେ ସେଦିନ ସକାଳୁ ଘରୁ ବାହାରିଲୁ ।

ନ୍ୟୁଜର୍ସି ଓ ୱାସିଂଟନ୍ ମଝିରେ ପଡେ ଦୁଇଟି ଛୋଟ ଛୋଟ ରାଜ୍ୟ ବା ଷ୍ଟେଟ୍– ଡିଲାୱେର ଓ ମେରିଲ୍ୟାଣ୍ଡ। ପ୍ରାୟ ସାଢେ ଚାରିଘଣ୍ଟା ଡ୍ରାଇଭ୍ ପରେ ଆମେ ପହଞ୍ଚିଲୁ ୱାସିଂଟନ୍‌ରେ। ଫଲ୍ ସମୟ ଆରମ୍ଭ ଆରମ୍ଭ ବେଳ। ରାସ୍ତା ଦୁଇକଡର ଆରଣ୍ୟକ ଦୃଶ୍ୟ ମନୋରମ, ସ୍ୱର୍ଗୀୟ । ଛ' ଲେନ୍ ହାଇୱେରେ ଘଣ୍ଟା ପ୍ରତି ୬୦-୬୫ ମାଇଲ୍ ବେଗରେ ଶହ ଶହ ଯାନବାହାନ ଛୁଟୁଥାନ୍ତି। ମଝିରେ ମଝିରେ ଆସୁଥାଏ ବିଶାଳ ବିଶାଳ ନଦୀ ଓ ସେସବୁ ଉପରେ ବିସ୍ତୀର୍ଣ୍ଣ ସେତୁ ସବୁ। ସବୁଠୁ ବେଶି ସ୍ମରଣୀୟ ଡିଲାୱେର ନଦୀ ଉପରେ "ଚେସାଡିପେକ୍ ବେ ବ୍ରିଜ୍" ।

ଚେସାପେକ୍ ବ୍ରିଜ୍ ଗୋଟିଏ ଦର୍ଶନୀୟ ସେତୁ। ଏହା ବାସ୍ତବିକ୍ ଏକ ନଦୀ ଉପର ସେତୁ ନୁହେଁ– ଏ ଏକ ଉପସାଗରୀୟ ସେତୁ। ଡେଲାୱେର ନଦୀ ମିଶିଯାଇଚି ଅଳ୍ପ-ଦୂରରେ ଆଟ୍‌ଲାଣ୍ଟିକ୍ ମହାସାଗରରେ। ଏ ସେତୁ ତଳେ ବଡବଡ ସମୁଦ୍ରଗାମୀ ଜାହାଜ ସବୁ ଚାଲିଥାଏ। ସେତୁ ପାରି ହେଲା ବେଳେ ମନରେ ଦକା ପଶିଯାଉଥାଏ– ତଳେ ବିଶାଳ ଜଳରାଶି ଭରା ବିସ୍ତୀର୍ଣ୍ଣ ସମୁଦ୍ର !

ଚେସାପେକ୍ ବେ' ବ୍ରିଜ୍ ପାରିହେଇ ଆମେ ଆଗେଇଲୁ ୱାସିଂଟନ୍ ଅଭିମୁଖେ। ପ୍ରାୟ ମଧ୍ୟାହ୍ନ ସାଢେ ଗୋଟାଏ ସୁଦ୍ଧା ଦେଖାଗଲା ୱାସିଂଟନ୍ ସହରର ସୀମାନ୍ତ କୋଠାବାଡି ଇତ୍ୟାଦି।

ୱାସିଂଟନ୍ ଆମେରିକାର ରାଜଧାନୀ ସହର ହେଲେହେଁ ଏହା ମୂଳତଃ ଆମେରିକାର ଅନ୍ୟତମ ବିଖ୍ୟାତ ରାଜ୍ୟ ଭର୍ଜିନିଆର ଏକ ଅଂଶ । ଭାରତର ହରିୟାନା ରାଜ୍ୟ ଭିତରେ ଦିଲ୍ଲୀ ଏକ ସ୍ୱୟଂ ଶାସିତ ରାଜ୍ୟ ପରି ୱାସିଂଟନ୍ ଭର୍ଜିନିଆର ଏକ ଜିଲା କଲମ୍ବିଆ ଅନ୍ତର୍ଗତ ଏକ ସ୍ୱୟଂଶାସିତ ରାଜ୍ୟ । ତେଣୁ ଯୁକ୍ତରାଷ୍ଟ୍ର ଆମେରିକାର ଏଇ ରାଜଧାନୀ ସହରକୁ କୁହାଯାଏ ୱାସିଂଟନ୍ (ଡି.ସି) ।

ତେବେ ୱାସିଂଟନ୍ ସହରର ଉପକଣ୍ଠରୁ ହିଁ ମତେ ଜଣାଗଲା– ଏ ଗୋଟିଏ ସଂପୂର୍ଣ୍ଣ ଭିନ୍ନ ଜାତିର ଆମେରିକାନ୍ ସହର । ଏହାର ସ୍ୱତନ୍ତତାର ପ୍ରଥମ ଲକ୍ଷଣ ମତେ ଦିଶିଲା– ନ୍ୟୁୟର୍କ ପରି ଏ ସହର ଆଦୌ ଏକ ଘନ ଜନବସତି ଭରା ହାଉଜାଉଆ ମେଟ୍ରୋପଲିସ୍ ନୁହେଁ । ଏହାର ରାସ୍ତା ଗୁଡାକ ଖୁବ୍ ପ୍ରଶସ୍ତ ଆଉ ରାସ୍ତା କଡରେ ଦିଶୁଥିବା ଘର ଗୁଡାକ ନ୍ୟୁୟର୍କ ପରି ବିଶାଳ ବିରାଟ ନଭଶ୍ଚୁମ୍ବୀ ନୁହେଁ । ରାସ୍ତାର ଟ୍ରାଫିକ୍ ଓ ଜନଗହଳି ସେପରି ସାନ୍ଦ୍ର ନୁହେଁ ଯାହା ଦେଖିଲେ ଶ୍ୱାସ ରୁଦ୍ଧ ହେଲା ପରି ମନେହୁଏ ନ୍ୟୁୟର୍କରେ ।

ଏ ସବୁ ବାଦ୍– ପ୍ରଥମଦେଖାରୁ ମନେହେଲା ୱାସିଂଟନ୍‌ରେ କଳାଲୋକଙ୍କ ସଂଖ୍ୟା ବହୁତ ବେଶୀ । ମନେପଡିଲେ ଆବ୍ରାହାମ୍ ଲିଙ୍କନ୍ ଯେ ଏଇ କଳାଲୋକଙ୍କ ତ୍ରାଣକର୍ତ୍ତା ଭାବେ ଆମେରିକାର ଇତିହାସରେ ସୁପରିଚିତ । ମନେପଡିଲା ସୁବିଖ୍ୟାତ ଆମେରିକାନ୍ ଲେଖକ ଆଲେକ୍ସ ହାଲିଙ୍କ ବିଖ୍ୟାତ ଉପନ୍ୟାସ ''ଦ ରୁଟ୍'' । ଦୁଇଶହ ବର୍ଷ ତଳେ ବନ୍ୟ ପଶୁ ପରି ଆଫ୍ରିକାରୁ ବଳପୂର୍ବକ ଧରାହୋଇ ଆସିଥିବା କ୍ରୀତଦାସମାନେ ଯେ ଦିନେ ସେମାନଙ୍କ ଗୌରବର୍ଣ୍ଣ ମାଲିକମାନଙ୍କ ଉତ୍ତରାଧିକାରୀ ଭାବେ ଏ ଦେଶର ରାଜଧାନୀ ସହରକୁ ନିଜ ଅକ୍ତିଆରକୁ ନେଇ ସେ ସହରର ମୁଖ୍ୟ ନାଗରିକ ଶ୍ରେଣୀଭୁକ୍ତ ହେବେ ଓ ସମସ୍ତ ମାନବିକ ଅଧିକାର ସାବ୍ୟସ୍ତ କରିବେ ଏହା ନିଶ୍ଚିତରେ ଥିଲା କ୍ରୀତଦାସମାନଙ୍କର ମୁକ୍ତିଦାତା ଆବ୍ରାହାମ୍ ଲିଙ୍କନ୍‌ଙ୍କ କଳ୍ପନା ବହିର୍ଭୂତ ।

## ୱାସିଂଟନ୍ ଭ୍ରମଣ ଏକ ସ୍ୱପ୍ନ ନା ଦୁଃସ୍ୱପ୍ନ ?–

ସେତେବେଳେ ସମୟ ଅପରାହ୍ନ ଗୋଟାଏ ତିରିଶ୍ ମିନିଟ୍ । ସନ୍ଧ୍ୟା ଛ' ସାଢେ ଛ' ସୁଦ୍ଧା ଆମକୁ ୱାସିଂଟନ୍‌ର ଯେତେଟା ଗୁରୁତ୍ୱପୂର୍ଣ୍ଣ ଜାଗା ବୁଲି ଦେଖିବା ସଂଭବ ସେତିକି ଦେଖି ଫେରିଯିବାର ପ୍ରୋଗ୍ରାମ୍ ଥାଏ ଆମର । ତାର ଏକ ତାଲିକା ଅଭିଜିତ କରିଦେଇଥାନ୍ତି । ସେ ତାଲିକାରେ ପ୍ରାଧାନ୍ୟ ପାଇଥାଏ ସବା ପ୍ରଥମେ ସ୍ମିଥ୍‌ସୋନିୟାନ୍ ମ୍ୟୁଜିୟମ୍, ପରେ ପରେ ପର୍ଯ୍ୟାୟକ୍ରମେ– 'କ୍ୟାପିଟଲ୍ ହିଲ୍' ବା ଆମେରିକାର ପାର୍ଲିମେଣ୍ଟ ଗୃହ, ରାଷ୍ଟ୍ରପତିଙ୍କ ନିବାସ ବା ହ୍ୱାଇଟ୍ ହାଉସ୍, ଜର୍ଜ ୱାସିଂଟନ୍, ଆବ୍ରାହମ୍ ଲିଙ୍କନ୍‌ଙ୍କ ସମେତ ପୋଟୋମାକ ନଦୀ ସେପାରିରେ ପ୍ରାୟ ପାଞ୍ଚ ମାଇଲ୍ ଦୂର ଆର୍ଲିଂଟନ୍‌ରେ ସ୍ୱର୍ଗତ କେନେଡି ଓ ତାଙ୍କ ପତ୍ନୀ ଜାକ୍ୱିଲିନ୍‌ଙ୍କ ସମାଧି ସ୍ଥଳ ଇତ୍ୟାଦି ଘୂରି ବୁଲି ଦେଖିଆସିବାକୁ ।

ସେସବୁ ଦର୍ଶନୀୟ ସ୍ଥାନ ବୁଲି ଦେଖିବାକୁ ଯୋଜନା କରୁ କରୁ ଶୁଣିବାକୁ ପାଇଲୁ ସ୍ମିଥ୍‌ସୋନିୟାନ୍ ସଂଗ୍ରହାଳୟର ଏରୋନ୍‌ଟିକ୍‌ସ୍ ଡିଭିଜନ୍‌ରେ ଏ ଭିତରେ ସ୍ୱର୍ଗତ କଳ୍ପନା ଚାଓଲାଙ୍କ ଚିତାଭସ୍ମ ପହଞ୍ଚି ସାରିଚି । ସେ ସଂବାଦ ହଠାତ୍ ମତେ ବିଚଳିତ କରିବାକୁ ଆରମ୍ଭକଲା । ମୁଁ ଭାବିପାରୁନଥାଏ ଯେ ଏଇ ବର୍ଷ ଫେବୃଆରି ୧ ତାରିଖରେ, ମୋଟେ ଆଠୋଟି ମାସ ତଳେ ଘଟିଯାଇଥିବା ସେ ଶୋଚନୀୟ ସ୍ପେସ୍ ସିପ୍ କଲମ୍ବିଆ ଦୁର୍ଘଟଣାର ପରିଣତିକୁ ଆମେ ବର୍ତ୍ତମାନ ଦେଖିବାକୁପାଇବୁ ମାତ୍ର ମୁଠାଏ ପାଉଁଶ ଭିତରେ, ଏଠାକାର ସ୍ମିଥ୍‌ସୋନିଆନ୍ ମ୍ୟୁଜିୟମ୍‌ର ଏକ ପ୍ରଦର୍ଶନୀ ମଣ୍ଡପର କାଚ ବାକ୍ସ ଭିତରେ !

ଏଠାରେ ସ୍ମରଣୀୟ– ଏଇ ଚଳିତ ୨୦୦୩ରେ ଆମେରିକାର ପ୍ରସିଦ୍ଧ ମହାକାଶ ଗବେଷଣା କେନ୍ଦ୍ର "ନାସା" ପକ୍ଷରୁ "ସ୍ପେସ୍ ସଟଲ୍ କଲମ୍ବିଆ" ନାମକ ଏକ ମହାକାଶଯାନକୁ ଆଠଜଣ ମହାକାଶଚାରୀଙ୍କୁ ମହାକାଶ ଗବେଷଣା ପ୍ରୋଜେକ୍ଟ ପାଇଁ ପ୍ରେରଣ କରାଯାଇଥିଲା । ସେମାନଙ୍କ ଭିତରେ ଥିଲେ ଭାରତ ଜନ୍ମିତ ମହାକାଶ ବିଜ୍ଞାନୀ କଳ୍ପନା ଚାଓଲା । କଳ୍ପନା ଏକ ପଞ୍ଜାବୀ ପରିବାରର ସନ୍ତାନ ଓ ତାଙ୍କର ଜନ୍ମ ୧୯୬୨, ମେ ୧୭ ତାରିଖରେ, ହରିୟାନାର କର୍ଣ୍ଣାଲସହରରେ । ସେ ଆମେରିକାକୁ ଉଚ୍ଚଶିକ୍ଷା ଓ ବୈଜ୍ଞାନିକ ଗବେଷଣା ପାଇଁ ଆସିଥିଲେ ଏବଂ ସମୟକ୍ରମେ 'ନାସା'ରେ ମହାକାଶ ଗବେଷଣା ପାଇଁ ସ୍ୱତନ୍ତ୍ର ତାଲିମ ପ୍ରାପ୍ତ ହୋଇଥିଲେ । ପରବର୍ତ୍ତୀ ସମୟରେ ତାଙ୍କୁ 'ନାସା'ପକ୍ଷରୁ 'ସ୍ପେସ୍ ସଟଲ୍ କଲମ୍ବିଆ' ଯାନରେ ପଠାଯାଇଥିଲା ମହାକାଶରେ ଦୀର୍ଘଦିନ ଭ୍ରମଣକରି କେତେକ ବୈଜ୍ଞାନିକ ତଥ୍ୟ ସଂଗ୍ରହ କାର୍ଯ୍ୟରେ । ସେ ଓ ତାଙ୍କର ଅନ୍ୟ ସାତଜଣ ସହକର୍ମୀ ମହାକାଶରେ ପ୍ରାୟ ଦୁଇ-ସପ୍ତାହ ବିତେଇ ପୃଥିବୀ ପୃଷ୍ଠକୁ ଫେରନ୍ତି ବାଟରେ ସ୍ପେସ୍ ସଟଲ୍‌ରେ ଘଟିଥିଲା ସେଇ ମର୍ମନ୍ତୁଦ ବିସ୍ଫୋରଣ ଜନିତ ଦୁର୍ଘଟଣା । ସେ ହୃଦୟ ବିଦାରକ ଦୃଶ୍ୟ ସାରା ବିଶ୍ୱବାସୀ ଦେଖିଥିଲେ ସେଦିନ ଟି.ଭି ପରଦାରେ । ମୁଁ ଓ ମୋ ପରିବାର ଆମ ଭୁବନେଶ୍ୱର ଘରେ ବସି ଟି.ଭିରେ ଭାରତର କନ୍ୟା କଳ୍ପନାଙ୍କ ମହାକାଶ ଦିଗ୍‌ବିଜୟର ବାହୁଡାଯାତ୍ରାକୁ ଗର୍ବ ଓ ଉଲ୍ଲାସର ସହିତ ଘଣ୍ଟା ଘଣ୍ଟା ଧରି ନିରୀକ୍ଷଣ କରୁଥିଲୁ । ହଠାତ୍ ଟି.ଭି ପରଦାରେ ଦେଖାଗଲା ସ୍ପେସ୍ ସଟଲ୍ କଲମ୍ବିଆ ବୋଲି ପୂର୍ବରୁ ଚିହ୍ନଟ ହୋଇଥିବା ଏକ ଗତିଶୀଳ ଆଲୋକପିଣ୍ଡ ମୁହୂର୍ତ୍ତକେ ଏକ ଜ୍ୱଳନ୍ତ ଉଲ୍‌କାପିଣ୍ଡ ପାଲଟିଗଲା ଓ ଚାହୁଁ ଚାହୁଁ ଜଳିଜଳି ଗୁଡିଏ ଲମ୍ବା ଲମ୍ବା ଧୂଆଁର ରେଖା ପାଲଟି ମହାକାଶରେ ଲୀନ ହୋଇଗଲା !

ସେ ଦୃଶ୍ୟ ମନେପଡିଲା ମାତ୍ରେ ମନ ବିଷାଦରେ ଭରିଗଲା । ଆମେ ତେଣୁ ସ୍ଥିରକଲୁ– ସ୍ମିଥ୍‌ସୋନିଆନ୍ ମ୍ୟୁଜିୟମ୍‌ର ଆଷ୍ଟ୍ରୋନ୍‌ଟିକ୍ ସେଗ୍‌ମେଣ୍ଟ ବୁଲା ପଛକୁ ରଖାଯାଉ । ପ୍ରଥମେ ଏ ବିଶ୍ୱ-ବିଖ୍ୟାତ ମ୍ୟୁଜିୟମ୍‌ର ନାଚ୍ୟୁରାଲ୍ ହିଷ୍ଟ୍ରି ସେକ୍‌ସନ୍ ବୁଲି ଦେଖାଯାଉ । ପିଲାମାନେ ଶୁଣିଥିଲେ ଯେ ଏଠି ଗୋଟାଏ ଡାଇନୋସାର୍‌ର ସଂପୂର୍ଣ୍ଣ କଙ୍କାଳକୁ ଯୋଡାଯୋଡି କରି ଏକ ବିଶାଳ ମଡେଲ୍ ରୂପେ ପ୍ରଦର୍ଶିତ କରାଯାଉଚି । ମଡେଲ୍‌ଟା ଏଡେ ବଡ ଯେ ସେଥିପାଇଁ

ଏକ ସ୍ୱତନ୍ତ୍ର ହଲ୍ ମ୍ୟୁଜିୟମ୍ କର୍ତ୍ତୃପକ୍ଷ ନିର୍ମାଣ କରିଚନ୍ତି । ପିଲାମାନେ ଜିଦ୍ କଲେ ପ୍ରଥମେ ଡାଇନୋସର୍ ତା'ପରେ ଆଉ ଯାହା । ତେଣୁ ସେମାନଙ୍କ ଇଚ୍ଛା ପୂରଣ ପାଇଁ ଆମେ ନାଚ୍ୟୁରାଲ୍ ହିଷ୍ଟ୍ରି ମ୍ୟୁଜିୟମରେ ପ୍ରବେଶ କରିବାକୁ ଟିକେଟ୍ କାଉଣ୍ଟର ଦିଗରେ ଚାଲିଲୁ ।

ସେତେବେଳକୁ ୱାସିଂଟନ୍ ସ୍କୋୟାର୍‌ରେ ଜନାରଣ୍ୟ । ସେ ଜନଅରଣ୍ୟ ଭିତରେ ଆଖି ବୁଲେଇ ଦେଖିଲି– ହଜାର ହଜାର ବିଦେଶୀଙ୍କ ଭିତରେ ବହୁସଂଖ୍ୟାର ଭାରତୀୟ ଦର୍ଶକ ମଧ୍ୟ ସଦଳବଳେ ଚଳଚଞ୍ଚଳ । ଅଧିକାଂଶ ଚାଲିଚନ୍ତି ସ୍ମିଥ୍‌ସୋନିୟାନ୍ ମ୍ୟୁଜିୟମ୍‌ର ସେଇ ନ୍ୟାଚୁରାଲ୍ ମ୍ୟୁଜିୟମ୍ ଆଡକୁ । ଗହଗହ କମ୍ପୁଥାଏ ୱାସିଂଟନ୍ ସ୍କୋୟାର୍ । ଏ ଏକ ବିସ୍ତୀର୍ଣ୍ଣ ଆୟତାକାର କ୍ଷେତ୍ର । ଏହାର ଗୋଟିଏ ପ୍ରାନ୍ତରେ ଆମେରିକାର ପାର୍ଲାମେଣ୍ଟ ଗୃହ ବା କ୍ୟାପିଟଲ୍ ହିଲ୍ । ଅନ୍ୟ ପ୍ରାନ୍ତରେ ଉତ୍ତୁଙ୍ଗ ମୀନାର– ଆମେରିକାର ସର୍ବପ୍ରଥମ ପ୍ରେସିଡେଣ୍ଟ୍ ପ୍ରସିଦ୍ଧ ଐତିହାସିକ ପୁରୁଷ ଜର୍ଜ ୱାସିଂଟନ୍‌ଙ୍କ ସ୍ମୃତିପାଇଁ ଉତ୍ସର୍ଗୀକୃତ ସ୍ମୃତିସ୍ତମ୍ଭ । ଜଗନ୍ନାଥଙ୍କ ମନ୍ଦିର ସମ୍ମୁଖରେ ଦଣ୍ଡାୟମାନ ଅରୁଣସ୍ତମ୍ଭ ପରି ଏ ସ୍ତମ୍ଭ ଆମେରିକା କ୍ୟାପିଟଲ୍ ହିଲ୍‌ର ଧ୍ୱଜାଧାରୀ ପରି ବିରାଜମାନ ।

ଆମେ ଚାଲିଲୁ ନାଚ୍ୟୁରାଲ୍ ମିୟୁଜିୟମ୍ ପ୍ରବେଶ ଦ୍ୱାର ଦିଗରେ । ଭୀଷଣ ଭିଡ ଭିତରେ ଚାଲୁଚାଲୁ ପ୍ରବେଶଦ୍ୱାରର ଅନତିଦୂରରେ ଏକ ଅଦ୍ଭୁତ ଦୃଶ୍ୟ ମୋର ଦୃଷ୍ଟିଗୋଚର ହେଲା । ଦେଖିଲି– ଶ୍ରୀକୃଷ୍ଣଙ୍କ ଛବିର ଏକ ବିଶାଳ କଟ୍ ଆଉଟ୍ ରଖାହେଇଚି ଠିକ୍ ମ୍ୟୁଜିୟମ୍ ସାମ୍ନାରେ ! ଭଲକରି ଚାହିଁ ଦେଖିଲି– ଗୀତାର ପାର୍ଥ-ସାରଥୀ ଛବି । ୱାସିଂଟନ୍ ସ୍କୋୟାର୍‌ରେ କୃଷ୍ଣାର୍ଜୁନ ଛବି ଦେଖି ଆକୃଷ୍ଟ ହେଲି ସେଇ ଦିଗରେ ।

ଆମ ଦଳଟି ରହିଗଲା କୋଉଠି ପଛରେ କେଜାଣି । ହଜାର ହଜାର ଦର୍ଶକଙ୍କ ଭିଡ ଭିତରେ ସେମାନେ ମତେ ନପାଇ ଏଣେ ତେଣେ ଖୋଜି ବୁଲିଲେ । କିନ୍ତୁ ସେତେବେଳକୁ ମୁଁ ପହଞ୍ଚିସାରିଥାଏ ସେଇ ଛବି ପାଖରେ । "Are you from India Sir !"– ଛବିଆଡୁ ମୁହଁ ବୁଲେଇବାମାତ୍ରେ ସ୍ୱପ୍ନ ପରି ଦିଶିଲା ସେ ଦୃଶ୍ୟ । ଦେଖିଲି– ଭାଗବତ ବର୍ଣ୍ଣିତ ଗୋପ ବୃନ୍ଦାବନରୁ ସତେକି ଦୁଇଟି ଗୋପୀଙ୍କର ଆବିର୍ଭାବ ଘଟିଚି ମୋ ଆଖି ଆଗରେ । ସ୍ୱାଗତ ମୁଦ୍ରାରେ ଦୁଇହାତ ଯୋଡି ପ୍ରଣାମ କରୁଚନ୍ତି ସେମାନେ ମତେ !

"My name is Jahnvi and this is Brinda... welcome to our pavillion Sir !"

ବୃନ୍ଦା ଜାହ୍ନବୀ ନାଁ ଶୁଣି ପୁଲକିତ ହେଲି । ସେମାନଙ୍କର ପରିଧାନ ମତେ ଆହୁରି ଆହ୍ଲାଦିତ କଲା । ଚୋଲି ଘାଘରା ପୋଷାକ ପରିଚ୍ଛଦ ସହିତ ଆଖିରେ କଜଳର ରେଖା । କପାଳ ଚନ୍ଦନ ଓ ଗୋରଚନାର ଚିତାରେ ଚିତ୍ରିତ । ଗୋପାଙ୍ଗନା ଦୁହେଁ ପରେ ପରେ ସେମାନଙ୍କର ପରିଚୟ ଦେଲେ– ସେମାନେ ୱାସିଂଟନ୍‌ର ଇସ୍‌କନ୍ ଅନୁଷ୍ଠାନର ଦୁଇଜଣ ବୈଷ୍ଣବୀ । ୱାସିଂଟନ୍ ସ୍କୋୟାର୍‌ରେ ସେମାନେ ଖୋଲିଛନ୍ତି ଏଇ ଛୋଟ ପାଭିଲିୟନ୍‌ଟିକୁ

ଭଗବାନ୍ ଶ୍ରୀକୃଷ୍ଣଙ୍କର ଅଭୟ ବାର୍ତ୍ତା ଏ ଆତଙ୍କ-ପ୍ରମତ୍ତ ବିଶ୍ୱରେ ପ୍ରଚାର-ପ୍ରସାର ଉଦ୍ଦେଶ୍ୟରେ । ପାଖରେ ଖୋଲାଯାଇଥିବା ଏକ ଚକଲଗା ସାନ ପାଭିଲିୟନ୍‌ରେ ପ୍ରଦର୍ଶିତ ହେଉଥାଏ ଗଦାଗଦା ବହି । ଆଖି ବୁଲେଇ ଦେଖିଲି– ଇସ୍‌କନ୍ ପ୍ରକାଶିତ ଗୀତା ଓ ଭାଗବତ ସମେତ ବହୁ ଭାରତୀୟ ଧର୍ମପୁସ୍ତକର ଇଂରେଜୀ ଅନୁବାଦ ସେଗୁଡ଼ିକ । ପୁସ୍ତକ ସହିତ ଅନେକ ଆର୍ଟ ଓ ପଟ୍ଟଚିତ୍ର ପ୍ରଦର୍ଶିତ ହେଉଥିବା ମଧ୍ୟ ଦେଖିଲି । ସେ ଭିତରେ ଦୃଷ୍ଟି ଆକର୍ଷଣକାରୀ ଥିଲା– ଭାଗବତରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ବୃନ୍ଦାବନରେ ଗୋପଲୀଳାର ଅନେକ ଅଭିଭୂତକାରୀ ଦୃଶ୍ୟ ଏବଂ ଗୀତାର ବିଖ୍ୟାତ 'ପାର୍ଥସାରଥୀ' ଆଉ 'ବିଶ୍ୱରୂପ ଦର୍ଶନ'ର ଚିତ୍ର । ସେ ସବୁକୁ ବୁଲିବୁଲି ଦେଖିବା ଭିତରେ କାନରେ ବାଜିଲା ହାର୍‌ମୋନିୟମ୍ ଓ ମୃଦଙ୍ଗବାଦନ ସହିତ ହରିନାମ ସଂକୀର୍ତ୍ତନର ଗୁରୁ-ଗମ୍ଭୀର ଧ୍ୱନି । ୱାସିଂଟନ୍ ସ୍କୋୟାର୍‌ର ଜନଗହଳି ଓ କୋଳାହଳସତ୍ତ୍ୱେ ହରିନାମର ଉଚ୍ଚାରଣ ହଜି ଯିବାର ନଥିଲା ।

ଧ୍ୱନିର ଉତ୍ପତ୍ତିସ୍ଥଳ ଖୋଜି ଦେଖିଲି– ପ୍ୟାଭିଲିୟନ୍‌ଠାରୁ ଅଳ୍ପ ଦୂରରେ ଚାରିଜଣ ଗୌରବର୍ଣ୍ଣ ଲୋକ ଭୂମି ଉପରେ ବସି ସଂକୀର୍ତ୍ତନ ଆରମ୍ଭ କରିବାକୁ ଯାଉଛନ୍ତି । ମୁଁ ସେମାନଙ୍କ ପାଖକୁ ଗଲି । ମତେ ଅନୁସରଣ କରି ଜାହ୍ନବୀ ସେଠାରେ ପହଞ୍ଚିଲେ । ସଂକୀର୍ତ୍ତନ ଦଳର ସଭ୍ୟମାନଙ୍କୁ ଜଣଜଣ କରି ଚିହ୍ନେଇଦେଇ କହିଲେ, "ଏମାନେ ସମସ୍ତେ ପୃଥିବୀର ବିଭିନ୍ନ ଦେଶର ଲୋକ । ଏଇଯେ ପିଆନୋ କୀ ବୋର୍ଡ ଧରି ବସିଚନ୍ତି ତାଙ୍କ ନାଁ ଶ୍ରୀଦାମ– ସେ ଆମେରିକା ଜନ୍ମିତ । ତାଙ୍କର ପୂର୍ବାଶ୍ରମ ନାମ ଟେଡ୍ । ସେ ଯେ ମୃଦଙ୍ଗ ବଜାଉଚନ୍ତି ସେ ହେଲେ ବଟୁକେଶ– ୧୯୯୧ରେ ସୋଭିଏତ୍ ରୁଷିଆରୁ କମ୍ୟୁନିଷ୍ଟ୍ ଶାସନ ପତନ ହେଲା ପରେ ସେ ଚାଲିଆସିଥିଲେ ଆମେରିକା । ସେ ମଧ୍ୟ ଥିଲେ ଜଣେ ଆକ୍ଟିଭ୍ କମ୍ୟୁନିଷ୍ଟ– ବର୍ତ୍ତମାନ ବୈଷ୍ଣବ । ଦେଖନ୍ତୁ, କିପରି ମୁଗ୍ଧ ଭାବେ ସେ ହରିନାମ ସଂକୀର୍ତ୍ତନ କରୁଚନ୍ତି ଆଉ ମୃଦଙ୍ଗ ବଜାଉଚନ୍ତି. . . "

ସୋଭିଏତ୍ ରୁଷିଆର କମ୍ୟୁନିଷ୍ଟକର୍ମୀ ବୈଷ୍ଣବ ପାଲଟିବା ସଂବାଦ ମତେ ରୋମାଞ୍ଚିତ କଲା । ୧୯୮୦ରେ ପ୍ରକାଶିତ ମୋର ଉପନ୍ୟାସ, 'ଶକୁନ୍ତଳା'ରେ ମୁଁ ଏଇ ଭବିଷ୍ୟବାଣୀ କରିଥିଲି– ଖୁବ୍ ଶୀଘ୍ର ନକ୍ସଲବାଦୀମାନେ ହିଂସାରୁ ଓହରିଯିବେ ଓ ହରିନାମ କରିବେ ଏବଂ ଶ୍ରୀ ଜଗନ୍ନାଥଙ୍କ ରଥ ଟାଣିବେ !

ଅଧିକ ପରିଚୟ ହେବା ପରେ ବୃନ୍ଦା ଓ ଜାହ୍ନବୀ ନିଜ ନିଜ ପରିଚୟ ଦେଲେ– ସେ ଦୁହେଁ ଆମେରିକା ଜନ୍ମିତ ଦୁଇଜଣ ଆଧୁନିକା ଉଚ୍ଚଶିକ୍ଷିତା । ଭାରତରେ ବହୁ ବର୍ଷ ରହିଛନ୍ତି । ସେମାନଙ୍କ ମୁହଁରୁ ଜଗନ୍ନାଥ ପୁରୀଧାମ ନାଁ ଶୁଣିଲି ବାରମ୍ବାର । ପୁରୀ ନାମ ଶୁଣି ମୁଁ କହିଲି, "ମୁଁ ଓଡ଼ିଶାର ପୁରୀର ଲୋକ । ଏଇ ବର୍ଷ ଜୁଲାଇ ପାଞ୍ଚ ତାରିଖରେ ନ୍ୟାସ୍‌ଭିଲ୍ ସହରର ରଥଯାତ୍ରା ଉତ୍ସବର ଚିଫ୍‌ଗେଷ୍ଟ୍ ହୋଇଥିଲି । ଠାକୁରଙ୍କ ରଥରେ ଛେରାପହଁରା କରିଚି..."

ମୋ ମୁହଁରୁ ଛେରାପହଁରା ଶବ୍ଦ ଶୁଣିଲା କ୍ଷଣି ସଂପୂର୍ଣ୍ଣ ଆଲୋକିତ ହୋଇଗଲା ଜାହ୍ନବୀ ଓ ବୃନ୍ଦାଙ୍କ ମୁହଁ ଦୁଇଟି । ଦୁଇଜଣଯାକ ଏକ ସାଁଙ୍ଗେ ନଇଁପଡି ମୋ ପାଦ ଛୁଇଁଲେ ଓ ବାରମ୍ବାର ନମସ୍କାର ଜଣାଇ ଗଦ୍‌ଗଦ ସ୍ୱରରେ କହିଲେ, "Oh ! We feel so grateful, Sir for your kind visit here. You must be the Gajapati Maharaj of Puri Sir !"

ସେଭଳି ସଂଭାଷଣର କି ଉତ୍ତର ଦେବି ଜାଣି ପାରିଲି ନାହିଁ । ବିନୀତ ଭାବେ ସେମାନଙ୍କ ଆଗରେ ମୁଣ୍ଡ ନୁଆଁଇ କହିଲି, "No, I am not at all the Gajapati, but an humble writer of Odissa. I am so proud of your true Vaishnavic humility !" ମୋ ମୁହଁରୁ ଉଚ୍ଚାରିତ ହେଲା ବୈଷ୍ଣବର ମନ୍ତ୍ର, "ତୃଣାଦପି ସୁନୀଚେନ ତରୋଃରପି ସହିଷ୍ଣୁନାଂ / ଅମାନୀନାଂ ମାନଦେନ କୀର୍ତ୍ତନୀୟ ସଦା ହରିଃ ।"

ୱାସିଂଟନ୍ ସ୍କୋୟାର୍‌ର ସ୍ମିଥ୍‌ସୋନିୟାନ୍ ମ୍ୟୁଜିୟମ୍ ସାମ୍ନାରେ ଆସୀନ ଶ୍ରୀଦାମ ଓ ବଟୁକେଶ ପ୍ରଭୃତିଙ୍କ ହାର୍‌ମୋନିୟମ୍, ମୃଦଙ୍ଗ ଓ ଗିନି ସହିତ ଭଜନ କୀର୍ତ୍ତନ ଧ୍ୱନି ଗାଢତର ହେଉଥାଏ । ମୁଁ ମଧ୍ୟ ବସିପଡିଲି ସେମାନଙ୍କ ସାଥିରେ ଯୋଗଦେବାକୁ । ମତେ ଖୋଜି ଖୋଜି ନୟାନ୍ତ ହେଲା ପରେ ଜୁଲି ଅଭିଜିତ ଶେଷରେ ମତେ ଆବିଷ୍କାର କଲେ ସେଇ ଇସ୍‌କନ୍ ଭଜନମଣ୍ଡଳୀରେ ।

ଆମେ ସେଦିନ ବହୁକଷ୍ଟରେ ଏକ ଟିକିନିଖି ସିକ୍ୟୁରିଟି ଚେକିଂ ବ୍ୟବସ୍ଥା ଭିତର ଦେଇ ଶେଷରେ ମ୍ୟୁଜିୟମ୍ ଭିତରକୁ ପଶିବାକୁ ଅନୁମତି ପାଇଲୁ । ଅତ୍ୟଧିକ ଖୋଳତାଡ ଧକ୍‌ଚକ୍ ଭିତର ଦେଇ ଆସ୍ତେ ଆସ୍ତେ ଆଗକୁ ଆଗକୁ ଗଡିକଲାବେଳେ ଛାତିରେ ଟିକେ କଷ୍ଟ ଅନୁଭବ ହେଲା । ମନେପଡିଲା ସେଣ୍ଟ୍ ଥମାସ୍ ହସ୍‌ପିଟାଲ୍‌ର ମୋ ସର୍ଜନ ଡଃ ବାବୁଙ୍କ ପରାମର୍ଶ– 'ଆଭଏଡ୍ ଷ୍ଟ୍ରେନ୍ୟୁଅସ୍ ସିଚୁଏସ୍‌ନସ୍. . .'

ଏଥର ଆମେରିକାରେ ପାଦ ଦେଉନଦେଉଣୁ ଚିକାଗୋ ବିମାନଘାଟିର କଷ୍ଟମ୍ କ୍ଲିୟରାନ୍ସ ବେଳୁ ଜାଣିସାରିଥାଏ ଏଥରର ଆମେରିକା ଆଉ ସେ ପୂର୍ବର ଆମେରିକା ପରି ସହଜ ସରଳ ଭଦ୍ର ବ୍ୟବହାରର ଆମେରିକା ଆଦୌ ନୁହଁ । ୨୦୦୧ ସେପ୍ଟେମ୍ବର ୧୧ ତାରିଖ ବା ସଂକ୍ଷେପରେ ୯/୧୧ ଘଟଣା ବିଶ୍ୱବ୍ୟାପି ମଣିଷର ମଣିଷ ଉପରେ ସବୁ ଆସ୍ଥା, ଭରସା ଓ ବିଶ୍ୱାସର ମୂଳକୁ ଉପାଡି ଦେଇ ଯାଇଥିଲା । ଏଥର ଲକ୍ଷ୍ୟକରିଥିଲି ଗଳୁ ବିଶ୍ୱାସୀ ଅଚିହ୍ନା ଅଜଣା ଆମେରିକାନ୍ ନାଗରିକମାନେ ପୂର୍ବଥରମାନଙ୍କରେ ଆମକୁ ରାସ୍ତାରେ ବା ପାର୍କରେ ଦୈବାତ୍ ଭେଟିଲେ ଯେପରି ହେଲୋ ସଂବୋଧନ ସହିତ ମିଠା ହସ ହସିଦେଇ ସ୍ୱାଗତ କରୁଥିଲେ ଏଥର ସେପରି ସହଜ ଭାବ ଆଉ ସେମାନଙ୍କ ମୁହଁରେ ଦେଖାଯାଉନଥାଏ । ସେମାନେ ଭାରତରୁ ଆସୁଥିବା ଟୁରିଷ୍ଟ୍‌ଙ୍କୁ ବର୍ତ୍ତମାନ ସନ୍ଦେହୀ ଦୃଷ୍ଟିରେ ଦେଖୁଥାନ୍ତି । ଭାରତୀୟ ଚେହେରା ଦେଖିଲେ ସେମାନେ ସତର୍କ ହୋଇଯାଉଥାନ୍ତି । କେହି

କେହି ମୁହଁ ଖୋଲି ପଚାରିଦେଉଥାନ୍ତି ବି, ''ତମେ ପାକିସ୍ତାନୀ କି ?''

ସେ ପ୍ରଶ୍ନର ଉତ୍ତରରେ ଯଦି କୁହାଯାଉଥାଏ, ''ନାଁ– ଆମେ ଇଣ୍ଡିଆନ୍ ହିନ୍ଦୁ, ମୁସ୍‌ଲିମ୍ ନୋହୁଁ'' ତଥାପି ଲକ୍ଷ୍ୟକରୁଥିଲି ସେମାନେ ସନ୍ତୁଷ୍ଟ ହେଉନଥାନ୍ତି ସେ ଉତ୍ତରରେ । ଗୁଣୁଗୁଣୁ ସ୍ୱରରେ ସେମାନଙ୍କ କହିବା ଶୁଣିଥିଲି କେଇଥର, ''ଅଲ୍ ଦ ସେମ୍. . .ଏସିଆନ୍‌ସ୍ ଆର୍ ଟେରରିଷ୍ଟସ୍ !'' ଏପରିକି ସ୍ମିଥ୍‌ସୋନିଆନ୍ ମ୍ୟୁଜିୟମ୍ ଭିତରେ ମଧ୍ୟ ସେଇ ଆତଙ୍କବାଦର ଭୟ ଖେଳୁଥିବା ଲକ୍ଷ୍ୟକଲି ।

ଆମେ ସେତେବେଳେ ନାଚୁରାଲ୍ ହିଷ୍ଟ୍ରି ମ୍ୟୁଜିୟମ୍‌ର ଇଭଲ୍ୟୁସନ୍ ସେକ୍‌ସନ୍‌ରେ ବୁଲୁଥାଉ । ସେ ସେକ୍‌ସନ୍‌ରେ ଗୋଟାଏ ଡାଇନୋସର୍‌ର ସଂପୂର୍ଣ୍ଣ କଙ୍କାଳର 'ଫସିଲ୍' ଖୁବ୍ ଏକ ବିରାଟ ମଡେଲ୍ ଭାବେ ପ୍ରଦର୍ଶିତ ହେଉଥାଏ । ପ୍ରାୟ ଶହେ ଫୁଟ୍ ଲମ୍ବ ଏଇ ଆସୁରିକ ପ୍ରାଣୀର କଙ୍କାଳ ପ୍ରଦର୍ଶନୀ ମଣ୍ଡପ ଜନାକୀର୍ଣ୍ଣ ହୋଇଯାଇଥାଏ ଆମେ ସେ ଗହଳିରେ ଯୋଗଦେଲାବେଳେ । ଏଠାର ଲୋକେ ଖୁବ୍ ଡାଇନୋସର୍ ପ୍ରେମୀ । ଆବାଳ ବୃଦ୍ଧବନିତା ଡାଇନୋସର୍ ଦେଖିବାକୁ ଏକପ୍ରକାର ବାଇ । ଡାଇନୋସର୍‌କୁ ଆହୁରି ଅଧିକ ଲୋକପ୍ରିୟ କରିଦେଇଥାଏ ଷ୍ଟିଫେନ୍ ସ୍ପିଲବର୍ଗଙ୍କ ବିଖ୍ୟାତ ମୁଭି ''ଜୁରାସିକ୍‌ପାର୍କ'' । ଆମେରିକାର ଗାଁଗହଳଠୁଁ ଆରମ୍ଭକରି ନ୍ୟୁୟର୍କ ଓ୍ୱାସିଂଟନ୍ ସବୁଆଡେ କେନ୍ଦ୍ରସ୍ଥଳରେ ଗୋଟିଏ ଡାଇନୋସର୍ ମୂର୍ତ୍ତି ସ୍ଥାପନ ଏ ଦେଶର ଏକ ସଂସ୍କୃତିରେ ପରିଣତ ହୋଇସାରିଥାଏ । ତେଣୁ ସ୍ମିଥ୍‌ସୋନିୟାନ୍ ମ୍ୟୁଜିୟମ୍‌ରେ ବି ଡାଇନୋସର୍ କଂକାଳ ଦେଖିବାକୁ ସେଇ ଭିଡ ଲାଗିଯାଇଥାଏ ।

କିନ୍ତୁ ମୁଁ ଏତେ ପରିଶ୍ରମ କରି ଏଠିକି ଆସିନଥିଲି ପୁଣି ସେଇ ଡାଇନୋସର୍ ଦେଖିବାକୁ ! ଜ୍ଞାନର ଗନ୍ତାଘର ଏ ବିଶ୍ୱବିଖ୍ୟାତ ମ୍ୟୁଜିୟମ୍‌ରେ ଏତେ ଦର୍ଶନୀୟ ଜିନିଷ ଥାଉଥାଉ ଲୋକେ କାହିଁକି ସେଇ ପ୍ରାଗୈତିହାସିକ ଦୈତ୍ୟ ପିଛା ପଡିଥାନ୍ତି କେଜାଣି ?

ଏଇ ଭିତରେ ମୁଁ ଜନଗହଳିରୁ ଖସିଯାଇ ଆଖପାଖର ଅନ୍ୟଏକ ପ୍ରଦର୍ଶନୀ ଗୃହ ଭିତରକୁ ଚାଲିଗଲି । ସେଠି ପ୍ରଦର୍ଶିତ ହେଉଥାଏ, ''ଦ' ଇଭଲ୍ୟୁସନ୍ ଟ୍ରି''-ଅର୍ଥାତ୍ ସମଗ୍ର ବିବର୍ତ୍ତନବାଦ ତତ୍ତ୍ୱର ଏକ ବିଶାଳ ମଡେଲ ଯେଉଁଥିରୁ ଉଦ୍ଭିଦ ଓ ପ୍ରାଣୀମାନଙ୍କର ଆଦି କାଳରୁ ଏଯାବତ୍ ସୃଷ୍ଟି ହେଇଥିବା ଯାବତୀୟ ସ୍ପେସିଜ୍‌ଗୁଡିକର ସୃଷ୍ଟିର କ୍ରମବିକାଶର ବୃକ୍ଷାକୃତି ମଡେଲ୍ ।

ସେଇ ବିବର୍ତ୍ତନ ବୃକ୍ଷ ନିକଟରେ ଠିଆହେଇ ମୁଁ ସେ ଗଛର ମୂଳକୁ ଚାହିଁ ଅବାକ୍ ହେଇଗଲି । କାରଣ ଜଣେ ବିଜ୍ଞାନ ଛାତ୍ରଭାବେ ମୋର ଦୃଢ ଧାରଣା ଥିଲା– ଜୀବ ସୃଷ୍ଟିର ମୂଳ ଉଦ୍ଭିଦରୁ । କିନ୍ତୁ ଏଠାରେ ପ୍ରଦର୍ଶିତ ବିବର୍ତ୍ତନ ବୃକ୍ଷର ମୂଳରେ ଦେଖିଲି– ଶଙ୍ଖହିଁ ସର୍ବ ପ୍ରଥମ ! ତା'ହେଲେ ଉଦ୍ଭିଦଙ୍କ ଜନ୍ମ କେବେ ? ଏଇ ଅନ୍ୱେଷଣର ଉତ୍ତର ମିଳିଲା– ବୃକ୍ଷଜଗତ, ଏପରିକି ଶୈବାଳ ସୃଷ୍ଟିହେଲା ଢେର୍ ପଛରେ ।

ଚିନ୍ତାରେ ପଡିଲି । ମୋର ପାଠପଢାରେ ତେବେ ବହୁତ ଖଇଚା ରହିଯାଇଚି ଜାଣି

ସାମନାର ବିବର୍ତ୍ତନ ବୃକ୍ଷର ଟିକିନିଖି ବିବରଣୀ ଟିପିବା ପାଇଁ ନୋଟ୍‌ଖାତା କାଢ଼ିଲି । ଟିପା କାମ ଚାଲିଥାଏ । ହଠାତ୍ ମୋ' କାନ ପାଖେ କିଏ କହିଲା, ''ହେ– ୟୁ ମ୍ୟାନ୍ ହ୍ୱାଇ ଆର୍ ୟୁ ହିଅର୍ ? ଲୁକିଂ ଫର୍ ସମ୍ ପ୍ଲେସ୍ ଫର୍ ଫିକ୍ସିଂ ଦ' ଏକ୍ସପ୍ଲୋସିଭସ୍ ?'' (ହେ ତୁ ଟେରରିଷ୍ଟ୍ ଏଠି କ'ଣ ଉଣ୍ଡୁଚୁ ? ବିସ୍ଫୋରକ ଗୁଞ୍ଜିବା ଜାଗା ନୁହେଁ ?)

ଚମକିପଡି ଚାରିଆଡକୁ ଚାହିଁଲି । ବହୁ ଲୋକ ଭର୍ତ୍ତିହେଇଗଲେଣି ଏ ଭିତରେ ଏ ରୁମ୍‌ରେ ବି । କିନ୍ତୁ ମୋ କାନରେ କିଏ କହିଲା ସେ କଥା ଖୋଜିପାଇଲିନାହିଁ । ତେବେ କ'ଣ ସେ ସ୍ୱରଟା ବାହାରିଲା ଖାସ୍ ଏଇ ବିବର୍ତ୍ତନ ବୃକ୍ଷରୁ ? ମଣିଷ ସୃଷ୍ଟିର କୌଣସି ପର୍ଯ୍ୟାୟରେ କ'ଣ ଏପରି କୌଣସି ଜୀବ ସୃଷ୍ଟିହେଇଥିଲା ଯେ ଅଶରୀରୀ ଅଥଚ ତାର ମନସ୍ତତ୍ତ୍ୱରୁ ବାହାରେ ଅବିକଳ ମଣିଷର କଣ୍ଠସ୍ୱର ?

ସେଦିନ ଆମେ ସ୍ମିଥ୍‌ସୋନିୟାନ୍ ନାଚ୍ୟୁରାଲ୍ ହିଷ୍ଟ୍ରି ସମେତ ମ୍ୟୁଜିୟମ୍‌ର ଅନ୍ୟାନ୍ୟ ବିଭାଗ ସବୁ ବୁଲି ଦେଖିଥିଲୁ । କଳ୍ପନା ଚାଓଲାଙ୍କ ଭସ୍ମ କ୍ୟାସେଟ୍‌ଟିକୁ ଗଭୀର ଦୁଃଖଭରା ହୃଦୟରେ ପ୍ରଣତି ଜଣାଇ ଆମେ ଆମ ପ୍ରୋଗ୍ରାମ୍ ଅନୁସାରେ ସବୁ ଜାଗା ବୁଲିଥିଲୁ ।

କିନ୍ତୁ ଆତଙ୍କବାଦର କୋକୁଆ ଭୟରେ ଆଚ୍ଛନ୍ନ ଆମେରିକାର ମନସ୍ତତ୍ତ୍ୱ ସେତେବେଳକୁ ମତେ ସଂପୂର୍ଣ୍ଣ ଆକ୍ରାନ୍ତ କରିଥାଏ । ସେଥିରୁ ମୁକ୍ତିର ଏକମାତ୍ର ବାଟ ସେଦିନ ଦେଖିଥିଲି– ସେଇ ଇସ୍‌କନ୍‌ବାଦୀଙ୍କ ହରିନାମ କୀର୍ତ୍ତନ ସ୍ଥଳରେ ।

## ଆମେରିକାରେ ମିଳିଲା ଦୁଇଟି ଶୁଭ ସଂବାଦ

### ସାହିତ୍ୟ-ଭାରତୀ ପୁରସ୍କାର (୨୦୦୩)–

ନ୍ୟୁଜର୍ସି ରହଣିବେଳେ ଦିନେ ରାତି ଗୋଟାଏବେଳେ ଟେଲିଫୋନ୍ ବାଜିଲା । ଝିଅ ଜୁଲିମା ନିଦରୁ ଉଠି ଫୋନ୍ ଧରିଲା । କିଛି ସମୟ ପରେ ସେ ତା' ଶୋଇବା ରୁମ୍‌ରୁ ଡାକିଲା, ''ମମି ! ନନାଙ୍କ ଫୋନ୍ କଟକରୁ . . .''

କଟକରୁ ଟେଲିଫୋନ୍, ପୁଣି ରାତି ଅଧରେ– ସମସ୍ତଙ୍କର ମନରେ ଛାନିଆ ପଶିଗଲା । ତେଣେ ଘରେ କାହାର କ'ଣ ହେଲା କି !

ଫୋନ୍ ଧରିଲା ପରେ ସେପାଖୁ ଶୁଣାଗଲା, ''ଗଙ୍ଗାଧର ରଥ କଥାହେବେ, ଟିକେ ଲାଇନ୍‌ରେ ଥାଆନ୍ତୁ ।'' ଗଙ୍ଗାଧର ରଥଙ୍କ ନାଁ ଶୁଣି ଆଶ୍ଚର୍ଯ୍ୟ ହେଲି । ଗଙ୍ଗାଧରବାବୁ ମୋର ପରିଚିତ, କିନ୍ତୁ ଆତ୍ମୀୟ ନୁହନ୍ତି । ସେ ମତେ ଏତେ ରାତିରେ ଫୋନ୍‌ରେ ଡାକିବା ମାନେ କ'ଣ ? ପରେ ପରେ ଗଙ୍ଗାଧରବାବୁଙ୍କ ସ୍ୱର– ''ଆପଣ କେବେ ଭୁବନେଶ୍ୱର ଫେରୁଚନ୍ତି ?''

ସେଇ ଥିଲା ପ୍ରାଥମିକ ସୂଚନା ଗଙ୍ଗାଧର ରଥ ଫାଉଣ୍ଡେସନ୍‌ର ସାହିତ୍ୟ ଭାରତୀ ପୁରସ୍କାରର । ପରେ ଶ୍ରୀଯୁକ୍ତ ରଥ ଆଉ କେତେଥର ମୋ ସାଙ୍ଗେ ଫୋନ୍‌ରେ କଥା

ହୋଇଥିଲେ ପୁରସ୍କାର ସଂପର୍କରେ ଓ ମୋ ମତ ଲୋଡିଥିଲେ– ନୂଆବର୍ଷ ଜାନୁଆରିରେ ହେବାକୁ ଥିବା ଫାଉଣ୍ଡେସନର ଉତ୍ସବରେ କେଉଁ ବ୍ୟକ୍ତିଙ୍କ ଦ୍ୱାରା ପୁରସ୍କୃତ କରାଗଲେ ମୁଁ ଖୁସି ହେବି ? ମୁଁ ମହାପାତ୍ର ନୀଳମଣି ସାହୁଙ୍କ ନାମ କହିଲି ।

ସେ ବର୍ଷ ଡିସେମ୍ବର ମଝାମଝି ଆମେ ଆମେରିକାରୁ ଫେରିଲୁ । ଗଙ୍ଗାଧର ରଥ ଫାଉଣ୍ଡେସନ ପକ୍ଷରୁ ୨୦୦୪, ଜାନୁଆରିରେ କଟକର କଳାବିକାଶକେନ୍ଦ୍ର ହଲ୍‌ରେ ଏକ ଭବ୍ୟ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଆଜୀବନ ସାହିତ୍ୟ ସାଧନା, ବିଶେଷତଃ ଉପନ୍ୟାସ ବିଭାଗର ଗୁଣାତ୍ମକ ସୃଷ୍ଟିପାଇଁ ସାହିତ୍ୟଭାରତୀ ସମ୍ମାନ ମତେ ଦିଆଯାଇଥିଲା । ଏ ବାବଦ୍ ଏକ ମାନପତ୍ର, କୋଣାର୍କ ମନ୍ଦିରର ଏକ ରୌପ୍ୟ ଫଳକ ସହିତ ଏକଲକ୍ଷ ଟଙ୍କା ପୁରସ୍କାର ମିଳିଥିଲା । ମୁଖ୍ୟଅତିଥି ଭାବେ ନିମନ୍ତ୍ରିତ ହୋଇଥିଲେ ଅଗ୍ରଜ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ । ଫାଉଣ୍ଡେସନ୍‌ର ପ୍ରତିଷ୍ଠାତା ଗୁଣଗ୍ରାହୀ ଶ୍ରୀ ଗଙ୍ଗାଧର ରଥଙ୍କ ସଭାପତିତ୍ୱରେ ସଭା ପରିଚାଳିତ ହୋଇଥିଲା । ଏ ସଭାରେ ନିରୁପମାଙ୍କ ସାନଭାଇ ଆମେରିକା ନିବାସୀ ବିଶିଷ୍ଟ କାର୍ଡିଆକ୍ ସର୍ଜନ୍ ଡକ୍ଟର ରଣଜିତ୍ ରଥ ଓ ତାଙ୍କର ପତ୍ନୀ ଶ୍ରୀମତୀ ମେରୀ ରଥ (ମିଡେନ୍‌ଡର୍ଫ) ଯୋଗଦେଇଥିଲେ । ସଭାରେ କଟକ ଭୁବନେଶ୍ୱରର ବହୁ ପ୍ରତିଷ୍ଠିତ ବ୍ୟକ୍ତି ବିଶେଷଙ୍କ ସମେତ ସାହିତ୍ୟିକ, ସାମ୍ବାଦିକ, ଆଇନଜୀବୀ ମଧ୍ୟ ଯୋଗଦେଇଥିଲେ ।

ମୋର ବକ୍ତବ୍ୟର ସାରାଂଶ ଥିଲା– ଓଡିଆସାହିତ୍ୟକୁ ଏକ ସାମାନ୍ୟ ଆଞ୍ଚଳିକ ଭାଷା ବା ଭର୍ଣ୍ଣାକୁଲାର୍ ସାହିତ୍ୟ ମନେନକରି, ଏହାକୁ ବିଶ୍ୱସାହିତ୍ୟର ସମକକ୍ଷ କରିବା ସଂକଳ୍ପରେ ମୁଁ ପ୍ରାୟ ପଚାଶବର୍ଷ ତଳେ ସାହିତ୍ୟ ମାର୍ଗକୁ ବରଣ କରିଥିଲି । ସେଥିପାଇଁ ରସାୟନ ବିଜ୍ଞାନରେ ଉଚ୍ଚତର ଗବେଷଣାର ଲକ୍ଷ୍ୟ ପରିତ୍ୟାଗକରି ଟେଷ୍ଟ୍‌ଟ୍ୟୁବ୍ ବଦଳରେ କଲମ ଧରିଥିଲି । ଆଜି ମଧ୍ୟ ମୋର ସେ ଲକ୍ଷ୍ୟସାଧନ ସଂପୂର୍ଣ୍ଣ ହୋଇପାରିନାହିଁ । ଆଶା କରୁଚି ମୋର ପରବର୍ତ୍ତୀ ପୀଢିର ଯୁବ ସାହିତ୍ୟିକମାନେ ଓଡିଆ ଭାଷା ସାହିତ୍ୟର ବିଶ୍ୱ ମର୍ଯ୍ୟାଦା ପ୍ରାପ୍ତି ଲକ୍ଷ୍ୟ ନେଇ ସୃଷ୍ଟିଶୀଳ ହେବେ । ଓଡିଆଭାଷାରେ, ବିଶେଷତଃ ଉପନ୍ୟାସରେ, ଗୋଟାଏ ଗତାନୁଗତିକତା ବହୁକାଳୁ ଚାଲିଆସିଲାଣି । ମାର୍କ୍ସବାଦ୍ ହେଉ ବା ଫ୍ରଏଡ୍‌ବାଦ ହେଉ ଅଥବା ଅସ୍ତିତ୍ୱବାଦ ହେଉ– ଏ ସବୁକୁ ପାଶ୍ଚାତ୍ୟ ଦେଶମାନଙ୍କରେ ବି ବର୍ଜନ କରାସରିଲାଣି । କିନ୍ତୁ ସେସବୁର ପ୍ରକୋପ ଭାରତରେ ଅଧିକରୁ ଅଧିକ ବଢିବାରେ ଲାଗିଚି । ଏ ଗୋଡାଣିଆ ମନୋଭାବର ପରିବର୍ତ୍ତନ ଲୋଡା । ଭାରତୀୟ ସାହିତ୍ୟିକମାନେ, ବିଶେଷତଃ ଓଡିଆ ସାହିତ୍ୟିକମାନେ କୌଣସି ରାଜନୈତିକ ଆଦର୍ଶ ବଦଳରେ ନିଜର ମୌଳିକ ଚିନ୍ତା ଓ ପ୍ରତ୍ୟକ୍ଷ ଜୀବନାନୁଭୂତିକୁ ପୁଂଜିକରି ସୃଷ୍ଟିଶୀଳ ହେବା ଉଚିତ୍ । ନିଜର ମୌଳିକ ଚିନ୍ତାକୁ ପୁଞ୍ଜିକରି ଉଚ୍ଚାଙ୍ଗ ସାହିତ୍ୟ ରଚନାର ସଂବେଦନରୁ ବିଶ୍ୱସାହିତ୍ୟ ସୃଷ୍ଟିହୁଏ । ଭାରତୀୟମାନେ ଭାରତୀୟ ଚିନ୍ତାଧାରାକୁ ହୀନମନ୍ୟତା କାରଣରୁ ବର୍ଜନ କରନ୍ତୁ ନାହିଁ । ସମଗ୍ର ବିଶ୍ୱ ବର୍ତ୍ତମାନ ଭାରତର ଅର୍ଥନୈତିକ ବିକାଶକୁ ନେଇ ଈର୍ଷାନ୍ୱିତ ।

ସାହିତ୍ୟ ସେଇ ଅର୍ଥନୈତିକ ବିକାଶଧାରାକୁ ସାଂସ୍କୃତିକ ନେତୃତ୍ୱ ଦେଉ । ସେଥିପାଇଁ ଆବଶ୍ୟକ– ଗଭୀର ମନନଶୀଳତା ଓ ସାଧନା । ଆଜିର ସାହିତ୍ୟ ସମାଜକୁ ସାଙ୍ଗରେ ନେଇ ଏକ ସୁଦୀର୍ଘ ସାଂସ୍କୃତିକ ଅଭିଯାନ ପଥରେ ଆଗେଇଚାଲୁ । ଶହେ ବର୍ଷ ତଳେ ସ୍ୱାମୀ ବିବେକାନନ୍ଦ ଭବିଷ୍ୟବାଣୀ କରିଥିଲେ– ଭାରତ ଅଚିରେ ବିଶ୍ୱବନ୍ଦନୀୟ ଗୁରୁର ସ୍ଥାନ ଗ୍ରହଣକରିବ । ସେ ଭବିଷ୍ୟତବାଣୀକୁ ସଫଳ କରିବେ– କୌଣସି ମଲ୍‌ଟିମିୟନାର୍ କଂପାନୀ ବା ରାଜନୈତିକ ନେତା ନୁହନ୍ତି; କବି, ସାହିତ୍ୟିକ ଓ ଚିନ୍ତକମାନେହିଁ ସ୍ୱାମୀଜୀଙ୍କ ସେ ଭବିଷ୍ୟତବାଣୀ ପୂରଣ କରିବାକୁ ସକ୍ଷମ ।

ମୋର ସେ ବକ୍ତବ୍ୟ ପରଦିନ ଦୈନିକ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା ।

**କଥା ପୁରସ୍କାର (୨୦୦୩)–**

ନ୍ୟୁଜର୍ସିରେ ମାସଟିଏ ରହଣି ପରେ ଆମେ ଦୁହେଁ ସୁଲୁ ମହେଶଙ୍କ ଘର, କନେକ୍ଟିକଟ୍‌ର ଗ୍ଲାସଟନ୍‌ବରିକୁ ଫେରିଲୁ । ସେଠାରେ କିଛିଦିନ ବିତେଇ ଭାରତ ପ୍ରତ୍ୟାବର୍ତ୍ତନ ପଥରେ ପୁଣି ପଛୁଆ ଫେରିଲୁ । ବଡଝିଅ ଜୋଇଁଙ୍କ ଟେନୀସୀ, ଫ୍ରାଙ୍କ୍‌ଲିନ୍‌ସ୍ଥ ଘରେ ମାତ୍ର ସପ୍ତାହେ ରହଣି ପରେ ଆମର ଫେରିବା କଥା ସ୍ୱଦେଶ । ସେଇ ସପ୍ତାହକ ରହଣି ଭିତରେ ଦିନେ ତାଙ୍କ କମ୍ପ୍ୟୁଟରରେ ଇଣ୍ଟରନେଟ୍‌ରୁ ମୋର ଚିଠିପତ୍ର ଯାଞ୍ଚ କରୁକରୁ ଗୋଟାଏ ଇ-ମେଲ୍ ଖୋଲି ଦେଖିଲି– ଦିଲ୍ଲୀର କଥା ଫାଉଣ୍ଡେସନ୍‌ରୁ ଆସିଥିଲା ଏକ ଚିଠି । ସେଥିରେ ମତେ ମୋର ଏକ କ୍ଷୁଦ୍ର ଉପନ୍ୟାସ ''ଅନୋମାର କନ୍ୟା'' ପାଇଁ ସେ ବର୍ଷର (୨୦୦୩) ''କଥା''-ପୁରସ୍କାର ଦିଆଯିବା ବିଷୟ ଉଲ୍ଲେଖ ଥିଲା ।

''କଥା'' ଏକ ସଂଭ୍ରାନ୍ତ ସାହିତ୍ୟ ଅନୁଷ୍ଠାନ ଦିଲ୍ଲୀର । ଏ ଅନୁଷ୍ଠାନର ମୁଖ୍ୟ ଶ୍ରୀମତୀ ଗୀତା ଧର୍ମରାଜନ୍ । ପୁରସ୍କାରର ଆର୍ଥିକ ପରିମାଣ ଅବଶ୍ୟ ପ୍ରତୀକାତ୍ମକ– ମାତ୍ର ଦୁଇହଜାର ଟଙ୍କା । କିନ୍ତୁ ଏ ଅନୁଷ୍ଠାନର ଲକ୍ଷ୍ୟ କେବଳ ପୁରସ୍କାର ପ୍ରଦାନରେ ସୀମିତ ନୁହେଁ ଜାଣିଲି । ଚିଠିରେ ପରବର୍ତ୍ତୀ କାର୍ଯ୍ୟକ୍ରମ ସୂଚୀତ ହୋଇଥିଲା– ବହିଟିକୁ ଅନୁଷ୍ଠାନ ତରଫରୁ ଇଂରେଜୀରେ ଅନୁବାଦ କରାଯାଇ ପ୍ରକାଶକରାଯିବ । ତାହାହିଁ ହୋଇଥିଲା । ବର୍ତ୍ତମାନ ମୋର ସେ ଉପନ୍ୟାସ "Anoma's Daughter" ଶୀର୍ଷକରେ ଅନୂଦିତ ହୋଇ ସର୍ବଭାରତୀୟ ତଥା ଭାରତ ବାହାର ଦେଶରେ ବହିଦୋକାନମାନଙ୍କରେ ଉପଲବ୍ଧ । ଇଂରେଜୀ ଭାଷାରେ ଏ ଉପନ୍ୟାସର ଅନୁବାଦ ମିଳିତଭାବେ କରିଛୁ ଶ୍ରୀ ବିଭାସ ଚନ୍ଦ୍ର ମହାନ୍ତି ଓ ମୁଁ । ତେବେ ଏଇ ସଂସ୍କରଣରେ ମୂଳ ଓଡିଆ ଉପନ୍ୟାସର କେତେକ ବିଷୟର କଳେବର ବୃଦ୍ଧି ଦୃଷ୍ଟିରୁ ବାଦ୍ ଦିଆଯାଇଥିବା ଉପଲବ୍ଧି କରିବାପରେ ସଂପୂର୍ଣ୍ଣ ଅନୁବାଦକୁ ସଂରକ୍ଷିତ କରିବାପାଇଁ ପ୍ରଚେଷ୍ଟା କରାଯାଇଚି । ପାଠକମାନେ ଚାହିଁଲେ ତାହା ଅନ୍ ଲାଇନ୍ ୱେବ୍‌ପେଜ୍‌ରୁ ପାଠ କରିପାରିବେ ।

——

# ଅଧ୍ୟାୟ - ଚାରି

# ଚତୁର୍ଥ ଆମେରିକା ଭ୍ରମଣ ଡାଏରୀ – ୨୦୦୬

ଆମେରିକା ଭ୍ରମଣ ଯୋଗ ପୁଣି ପଡିଲା ଏଥର ସଂପୂର୍ଣ୍ଣ ପାରିବାରିକ କାରଣରୁ, ୨୦୦୬ରେ । ପ୍ରବୀର ଓ ବୁଲବୁଲଙ୍କ ଏକମାତ୍ର ପୁଅ ପ୍ରତୀକ ଏ ବର୍ଷ ହାଇସ୍କୁଲ୍ ଗ୍ରାଜୁଏଟ୍ ହେଲା । ଏ ଶୁଭ ସଂବାଦ ପାଇବା ପରେ ନିରୁପମା ଓ ମୁଁ ସ୍ଥିରକଲୁ ତାର ଗ୍ରାଜୁଏସନ୍ ଉତ୍ସବରେ ଯୋଗଦେବାକୁ । ଆମର ହାତରେ ଦଶବର୍ଷିଆ ଭିସା ଥାଏ । ତେଣୁ ପୂର୍ବଥରମାନଙ୍କ ପରି କଲିକତା ଯାଇ ଆମେରିକାନ୍ କନ୍ସୁଲେଟ୍ ଅଫିସ୍ ଆଗରେ ଧାଉଡି ଦେବାର ନଥାଏ ।

୨୯ ମେ, ୨୦୦୬ ଦିନ ଉପରଓଳି ବସିଲୁ ଭୁବନେଶ୍ୱରରୁ ମୁମ୍ବାଇ ଫ୍ଲାଇଟ୍‌ରେ । ସେଇଦିନ ମଧ୍ୟରାତ୍ରିରେ ଏୟାର୍ ଇଣ୍ଡିଆ ଫ୍ଲାଇଟ୍‌ରେ ମୁମ୍ବାଇରୁ ଚିକାଗୋ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲୁ । ପରଦିନ ସକାଳେ ପ୍ଲେନ୍ ବଦଳ କରିବାକୁ ହେଲା ଲଣ୍ଡନ୍ ହିଥ୍ରୋ ବିମାନ ବନ୍ଦରରେ । ପରବର୍ତ୍ତୀ ଉଡାଣ ଚିକାଗୋକୁ । ଚିକାଗୋରେ ଗତଥର ପରି ଏଥର ମଧ୍ୟ କଷ୍ଟମସ୍ କ୍ଲିୟରାନ୍ସ ଖୁବ୍ କଠୋର ଅନୁଭବ ହେଲା । ବିଦେଶୀ, ବିଶେଷତଃ ଭାରତ ଭୂଖଣ୍ଡରୁ ଯାଉଥିବା ଟୁରିଷ୍ଟ୍‌ମାନଙ୍କ ପ୍ରତି ଏୟାରପୋର୍ଟମାନଙ୍କରେ ସିକ୍ୟୁରିଟି ଚେକିଂର ମାତ୍ରା ଏଇ ତିନିବର୍ଷ ଭିତରେ ଆହୁରି କଠିନ ଆହୁରି ତୀବ୍ର ହେବା ଲକ୍ଷ୍ୟକଲି– ତାହା ସମୟେ ସମୟେ ଅସହ୍ୟ ଏପରିକି ସାଧାରଣ ଭଦ୍ରାମି ବହିର୍ଭୂତ ହେବା ମଧ୍ୟ ଲକ୍ଷ୍ୟକଲି । ଯାତ୍ରୀମାନଙ୍କୁ ଜୋତାମୋଜା ଖୋଲି ଯାଞ୍ଚ କରାଯାଉଥାଏ । ନିରୁପମାଙ୍କୁ କୁହାଗଲା– ହାତରୁ ଚୁଡି, କାନରୁ ବେକରୁ ଯତ୍‌ସାମାନ୍ୟ ଗହଣା ଓଗେର୍ କାଢି ଲାଇନ୍‌ରେ ଠିଆହେବାକୁ । ତଥାପି ସିକ୍ୟୁରିଟି ଚେକିଂ ଯନ୍ତ୍ରର କେଁକେଁ ବନ୍ଦନହେବାରୁ ତାଙ୍କୁ ଗୋଟାଏ କନା ପରଦା ପଛପଟେ ଠିଆକରି ଦୁଇଜଣ ଲେଡି ସିକ୍ୟୁରିଟି କର୍ମୀ ପୂରା ବିବସ୍ତ୍ର କଲେ । ତଥାପି ବାହାରିଲା କେଁକେଁ ଶବ୍ଦ ତାଙ୍କ ଦେହରୁ । ସିକ୍ୟୁରିଟିବାଲାଙ୍କ ମୁଣ୍ଡ ଖରାପ । ଶେଷରେ ଦେଖାଗଲା ସେ କେଁକେଁର କାରଣ– ପାଦ ଆଙ୍ଗୁଠିର ରୁପା ମୁଦି ! ରୁପା ମୁଦି କଢାଗଲା ପରେ ଠିକ୍ !

ଏଇ ଧରପଗଡ ଭିତରେ ମୋର ଭୟ ପୂର୍ବଥର ପରି ଏଥର ମଧ୍ୟ ଆମେ ଯେମିତି ନ୍ୟାସ୍‌ଭିଲ୍‌କୁ କନେକ୍ଟିଂ ଫ୍ଲାଇଟ୍ ନହରାଉ । ସେ ଯାହାହେଉ କଷ୍ଟମ୍‌ସ୍‌ରୁ ବାହରିଗଲା ପରେ ଦଉଡିବାକୁ ହେଲା ଡୋମେଷ୍ଟିକ୍ ଫ୍ଲାଇଟ୍ ପାଇଁ ଅନ୍ୟୂନ ଏକମାଇଲ୍ ଦୂର ବୋର୍ଡିଂ କାଉଣ୍ଟର୍ ପାଖ ଗେଟ୍ ନିକଟକୁ । ଠିକ୍ ସମୟରେ ଆମର ଟିକେଟ୍ ଅନୁସାରେ ନ୍ୟାସ୍‌ଭିଲ୍‌କୁ ପ୍ଲେନ୍‌ଟିକୁ ପାଇଗଲୁ । ଦୁଇଘଣ୍ଟା ଉଡାଣ ପରେ ପ୍ଲେନ୍ ଅବତରଣ କଲା ନ୍ୟାସ୍‌ଭିଲ୍ ଏୟାର୍‌ପୋର୍ଟରେ ।

ଆମକୁ ସଂଖୋଳି ନେବାକୁ ଏୟାରପୋର୍ଟକୁ ପ୍ରତୀକ ଓ ବୁଲବୁଲ୍ ଆସିଥାନ୍ତି । ଦୁଇବର୍ଷ ପରେ ସେମାନଙ୍କୁ ଦେଖି ଖୁବ୍ ଖୁସି ହେଲୁ । ଏହା ଭିତରେ ପ୍ରତୀକ କେବଳ ହାଇସ୍କୁଲ୍ ଗ୍ରାଜୁଏଟ୍ ବନି ସାରି ନଥାଏ; ସେ ଆମେରିକାର ଜଣେ ସ୍ୱତନ୍ତ୍ରଭାବେ ଚିହ୍ନିତ ହେବାପରି ବ୍ୟକ୍ତିତ୍ୱ ପାଲଟିସାରିଥାଏ । ୨୦୦୪ ଓ ୨୦୦୫ରେ ସେ ଲାଗଲାଗ ଦୁଇବାର ଜଣେ ପ୍ରତିଭାବନ୍ତ ତରୁଣ କଣ୍ଠଶିଳ୍ପୀ ଭାବେ ସମଗ୍ର ଆମେରିକାର ସ୍କୁଲ୍ ଛାତ୍ର ମାନଙ୍କ ଭିତରୁ ବଛାଯାଇଥାଏ ଓ ଲସ୍ଅଂଜେଲେସ୍ଠାରେ ଅନୁଷ୍ଠିତ ''ଗ୍ରାମୀ ପୁରସ୍କାର ଉତ୍ସବ''ରେ ଯୋଗଦେଇ ଫେରିଆସିଥାଏ । ସେଥିପାଇଁ ସେ ଆମେରିକାର ପ୍ରେସିଡେଣ୍ଟଙ୍କଠାରୁ ଏକ ସ୍ୱତନ୍ତ୍ର ପ୍ରଶଂସା ପତ୍ର ମଧ୍ୟ ପାଇଥାଏ ।

ଜଣେ ଭାରତୀୟ ବଂଶୋଦ୍ଭବ ପିଲା ପାଇଁ ହାଇସ୍କୁଲରେ ପାଠ ପଢୁଥିବା ବୟସରେ ଏପରି ରାଷ୍ଟ୍ରୀୟ ମର୍ଯ୍ୟାଦା ସଂପନ୍ନ ସମ୍ମାନ ଲାଭକରିବା ସତରେ ଗର୍ବର ବିଷୟ । ପ୍ରତୀକ ଓ ତାର ବାପ ମା'ଙ୍କୁ ଆହୁରି ଗୌରବାନ୍ୱିତ କରୁଥାନ୍ତି ଏ ଦେଶର ଗଣମାଧ୍ୟମ । ଟେଲିଭିଜନ୍ ଓ ସଂବାଦପତ୍ରରେ ତା'ର ଇଣ୍ଟରଭ୍ୟୁ ବାରମ୍ବାର ପ୍ରଚାର ପ୍ରସାର ହୋଇସାରିଥାଏ । ଏ ସବୁ ଆନନ୍ଦଦାୟକ ସଂବାଦ ଆମେ ଭୁବନେଶ୍ୱରରେ ଥାଇ ଗତ ଦୁଇବର୍ଷ ହେଲା ଇଣ୍ଟରନେଟ୍ରୁ ଓ ଓଡିଶା ଆସୁଥିବା ଆମେରିକାନ୍ ଏନ୍.ଆର୍.ଆଇ ଓଡିଆମାନଙ୍କଠାରୁ ଏବଂ ବନ୍ଧୁମାନଙ୍କଠାରୁ ମଧ୍ୟ ପାଉଥିଲୁ । ସମସ୍ତେ କହୁଥାନ୍ତି– ଏଭଳି ପ୍ରତିଭା ଯଥାର୍ଥରେ ବିରଳ । ଏଭଳି ପିଲାକୁ ସାଧାରଣ ଶିକ୍ଷା ପରିବର୍ତ୍ତେ ମ୍ୟୁଜିକ୍ ସ୍କୁଲରେ ଭର୍ତ୍ତି କରାଯିବା ଦରକାର ବୋଲି ଅଧିକାଂଶ ଶୁଭେଚ୍ଛୁ ପରାମର୍ଶ ଦେଉଥାନ୍ତି । ତାକୁ ମଧ୍ୟ ଗୋଟିଏ ବିଖ୍ୟାତ ମ୍ୟୁଜିକ୍ ବିଶ୍ୱବିଦ୍ୟାଳୟରୁ (କାଲିଫର୍ଣ୍ଣିଆର ବର୍କେଲି) ସ୍କଲାରସିପ୍ ଯଚାସରିଥାଏ ।

କିନ୍ତୁ ଏବର୍ଷ ଗ୍ରୀଷ୍ମଋତୁରେ ଏକ ପ୍ରକାଣ୍ଡ ସମସ୍ୟା ଯେ ଆମ ଅଗୋଚରରେ ଆସି ଠିଆ ହୋଇ ସାରିଥାଏ– ଏହା ବୁଝାପଡିଲା ଲେଡିଗୁଡ କହୁଣିକୁ ବୋହିଯିବା ପରେ ପରେ ।

ପ୍ରତୀକ ନିଜ ମେରିଟ୍ ଅନୁସାରେ ଆମେରିକାର କେତେକ ବୈଷୟିକ ବିଶ୍ୱବିଦ୍ୟାଳୟ ପକ୍ଷରୁ ବି ମନୋନୀତ ହୋଇସାରିଥାଏ ଇଂଜିନିୟରିଂ ପଢିବା ପାଇଁ । ବାପମା ଦୁହେଁ ଇଂଜିନିୟର୍, ତେଣୁ ସେମାନେ ପିଲାର ଭାଗ୍ୟ ନିରୂପଣ କରିସାରିଥାନ୍ତି– ଏକମାତ୍ର ପୁଅ ଭବିଷ୍ୟତ ନିରାପତ୍ତା ଦୃଷ୍ଟିରୁ ଇଂଜିନିୟରିଂ କ୍ୟାରିୟର୍ ସପକ୍ଷରେ । ଆଟ୍ଲାଣ୍ଟା ସହରର ଆମେରିକାର ଅନ୍ୟତମ ବିଖ୍ୟାତ ବୈଷୟିକ ବିଶ୍ୱବିଦ୍ୟାଳୟ ''ଜର୍ଜିଆ ଟେକ୍'' ବିଶ୍ୱ-ବିଦ୍ୟାଳୟରେ ପ୍ରତୀକର ନାଁ ଲେଖାପାଇଁ ସମସ୍ତ ବ୍ୟବସ୍ଥା କରାସରିଥାଏ– କେବଳ ଅପେକ୍ଷା କରାଯାଉଥାଏ– ଆସନ୍ତା ଅକ୍ଟୋବର ବେଳକୁ ସେଠାରେ ପାଠପଢା ଆରମ୍ଭ ହେବା ସମୟକୁ । ବର୍ତ୍ତମାନ ଲକ୍ଷ୍ୟ କିପରି ପିଲାର ଗ୍ରାଜୁଏସନ୍ ସେରିମନି ଖୁବ୍ ଜାକଜମକରେ ପାଳିତ ହେବ । ଆମେ ଅଜା ଆଇ ଦୁହେଁ ମଧ୍ୟ ନାତିର ସେଇ ଗ୍ରାଜୁଏସନ୍ ଉତ୍ସବ ପାଳିବାକୁ ଆସିଥିଲୁ ଏଥର ଆମେରିକା ।

ଏୟାର୍‌ପୋର୍ଟରୁ ବାହାରିଲା ବେଳକୁ ଖରା ଖୁବ୍ ଟାଣ ଥିବା ଦେଖି ହାତଘଡିକୁ ଚାହିଁଲି– ସମୟ ସନ୍ଧ୍ୟା ପାଞ୍ଚ ଟପିଗଲାଣି– ଅଥଚ ସୂର୍ଯ୍ୟରଶ୍ମିର ପ୍ରଖରତା ଏବଂ ତାପ ଅନୁଭବକରି ମନେପଡିଲା– ଗ୍ରୀଷ୍ମଋତୁରେ ଉତ୍ତର ଗୋଲାର୍ଦ୍ଧର ଉଚ୍ଚତର ଅକ୍ଷାଂଶରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ଖୁବ୍ ଡେରି ସନ୍ଧ୍ୟାରେ– ଅର୍ଥାତ୍ ଆମ ଭାରତର ରାତି ସାଢେ ନଅ ଦଶ ସମୟ ସୁଦ୍ଧା ।

ପ୍ରତୀକ ତାଙ୍କ ପାରିବାରିକ କାର୍‌ଟିକୁ ନିଜେ ଡ୍ରାଇଭ୍ କରୁଥାଏ । ଏ ଭିତରେ ସେ ଯେ ଡ୍ରାଇଭିଂ ଲାଇସେନ୍ସ ପାଇ ଆମେରିକାର ହାଇୱେରେ ଗାଡି ଚଲେଇବାର ଯୋଗ୍ୟତା ହାସଲ କରିସାରିଥାଏ, ଆଉ ବେଶ୍ ଦକ୍ଷତାର ସହିତ ଗାଡି ଡ୍ରାଇଭ୍ କରିପାରୁଥିବା ଏହା ଆମପାଇଁ ଥିଲା ଆଶ୍ଚର୍ଯ୍ୟକର ଓ ଖୁବ୍ ଆନନ୍ଦଦାୟକ ଘଟଣା ।

ନିରୁପମା ତାର ପିଲାଦିନକୁ ମନେପକେଇ ପଚାରିଲେ, ''ବାବୁରେ, ମନେପଡୁଚି– ତୁ ଯେବେ ଛୋଟପିଲା ହେଇଥିଲ ମୁଁ ୧୯୯୧ରେ ଏକା ଏକା ସେଥର ଆମେରିକା ଆସିଥିଲି ତତେ ବେବିସିଟିଂ କରିବାକୁ । ଏୟାର୍‌ପୋର୍ଟରୁ ତୋ' ଡାଡି ଗାଡିରେ ତମର ପୂର୍ବ ଚାଟାନୁଗା ଘରକୁ ଆଣିବା ବାଟରେ ତୁ ମୋ କୋଳରେ ଥାଇ କହିଥିଲୁ, ''ଆଈ, ତୁ ଆଉଥରେ ଆମେରିକା ଆସିଲାବେଳେ ମୁଁ ତତେ ଆଣିବି ମୋ କାର୍‌ରେ ନିଜେ ଡ୍ରାଇଭ୍‌କରି ଦେଖିବୁ । ଏଡେ ଟିକେ ପିଲା ମୁହଁରୁ ଏଡେ ବଡ କଥା ଶୁଣି ହସିଲେ ସମସ୍ତେ... କେଡେ ବେଗି ସେ ଦିନ ସବୁ କୁଆଡ଼େ ଚାଲିଗଲା, ଆଜି ତୁ ବଡହେଇଗଲୁରେ ସତରେ ! ଆମକୁ ଡ୍ରାଇଭ୍ କରି ଘରକୁ ନେଉଚୁ''– ଆନନ୍ଦର ଲୁହ ପୋଛିଲେ ନିରୁପମା ।

ମୁଁ କିନ୍ତୁ ଅଲଗା ପ୍ରସଙ୍ଗ ଚିନ୍ତାକରୁଥାଏ ଡ୍ରାଇଭିଂ ସିଟ୍‌ରେ ତାହାକୁ ଦେଖି । ପଚାରିଲି, ''ତୁ ଆଜିକାଲି ପୋଏଟ୍ରି ଲେଖୁଚୁ ନା ନାହିଁ ? ମନେଅଛି ଦିନେ କବିତା ଲେଖି ତୁ ଫାଷ୍ଟ୍-ପୋଜିସନ୍ ରଖିଥିଲୁ ଫ୍ରାଙ୍କ୍‌ଲିନ୍ କାଉଣ୍ଟି ସ୍କୁଲ୍ ପିଲାଙ୍କ ପୋଏଟ୍ରି କମ୍ପିଟିସନ୍‌ରେ ? ଇଣ୍ଟରଭ୍ୟୁ କରିବାକୁ ଖବରକାଗଜ ରେଡିଓ ଟିଭିବାଲାଏ ଆସୁଥିଲେ ତମ ଘରକୁ ? ଇଣ୍ଟରଭ୍ୟୁରେ ତତେ ପଚରାଗଲା– "Who is your model ?" ତୁ କହିଲୁ, "My Aja, Santanu Acharya, who taught me Ramayan and Mahabharat, himself a renowned writer of India, is my Guru, my Hero ! ସେଇଠୁ ସେମାନେ ପଚାରିଲେ– "How high is your goal ?"

ତୋର ଉତ୍ତର ଥିଲା– "The Sky is the limit !"– ଏ ସବୁ ସେତେବେଳକାର ତମ ଲୋକାଲ୍ ପେପର୍‌ମାନଙ୍କରେ ରିପୋର୍ଟିଂ ହେଇଥିଲା । ସେସବୁର କଟିଂ ଅଛି ମୋ ପାଖରେ । ବର୍ତ୍ତମାନ ମୋ ପ୍ରଶ୍ନ– ''ତୁ କିପ୍ରକାର କ୍ୟାରିୟର୍ ବାଛିଚୁ ତୋ' ପାଇଁ କଲେଜରେ– ସାଇନ୍ସ ନା ହ୍ୟୁମାନିଟିଜ୍ ?''

ପ୍ରତୀକ ନିରୁତ୍ତର । ଆଉଥରେ ପଚାରିଲି ସେ ପ୍ରଶ୍ନ । କୌଣସି ଉତ୍ତର ନମିଳିବାରୁ ମନରେ କାହିଁକି କେଜାଣି ଟିକେ ଖଟ୍‌କା ଲାଗିଲା । ପାଖରେ ବସି ସବୁ ଶୁଣୁଥାଏ ଝିଅ

ବୁଲବୁଲ । ସେ ବସିଥାଏ ମୋ ପଛ ସିଟ୍‌ରେ । ମୁହଁ ବୁଲେଇ ଦେଖିଲି– ଝିଅର ମୁହଁ ଝାଉଁଳିପଡିଚି । ମନରେ ସରାଗ ନଥାଏ ତାର ଆଦୌ ଯେମିତିକି ! ସନ୍ଦେହରେ ପଡିଲି– ମା' ପୁଅଙ୍କ ଭିତରେ ମନୋମାଳିନ୍ୟ ଘଟିଚି କି କୌଣସି କାରଣରୁ ?

ଖୁବ୍ ଶୀଘ୍ର ପ୍ରକୃତ ଅବସ୍ଥା ଜଣାପଡିଲା । ପ୍ରତୀକ ଆଉ ସେ ପିଲାଦିନର ପ୍ରତୀକ ହେଇ ରହିନଥାଏ । ଆମେରିକାନ୍ ପିଲାମାନଙ୍କୁ ଅଠରବର୍ଷ ହେଇଗଲେ ସେମାନଙ୍କୁ କୁହାଯାଏ ପ୍ରାପ୍ତବୟସ୍କ ଅର୍ଥାତ୍ ସେମାନଙ୍କ ଭାଷାରେ– 'ମେଜର' ! ମେଜର ବୟସ ପ୍ରାପ୍ତ ଆମେରିକାନ୍ ପିଲାମାନେ ନିଜକୁ ପରାଧୀନ ମନେନକରିବା ପାଶ୍ଚାତ୍ୟ ସମାଜର ଚଳଣି । ପ୍ରତୀକ ବର୍ତ୍ତମାନ ତାର ସ୍ୱାଧୀନତା ଜାହିର କରିବାକୁ ବ୍ୟଗ୍ର । ପଦେ ପଦେ ବାପମାଙ୍କ ପରାମର୍ଶକୁ ଚାଲେଂଜ କରିବାକୁ ସେ ପ୍ରସ୍ତୁତ । ସେମାନେ ଚାହୁଁଥିଲେ– ସେ ଇଂଜିନିୟରିଂ ପଢୁ– କିନ୍ତୁ ସେ ତା ବାପ, ମା'ଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ଏକାନ୍ତ ଅନିଚ୍ଛୁକ ।

ଏଇଠୁ ଆରମ୍ଭ ହେଲା ସେ ଦେଶରେ ଭାରତୀୟ ବଂଶୋଦ୍ଭବମାନଙ୍କର ନିଜସ୍ୱ ପ୍ରତିଭାର ବିକାଶ ପାଇଁ ଅସଲ ସମସ୍ୟା । ଠିକ୍ ଏଇ ସମସ୍ୟାକୁ ନେଇ ଛ'ବର୍ଷ ତଳେ, ୨୦୦୨ରେ, ଆମେରିକାନ୍ ଏନ୍.ଆର୍.ଆଇମାନଙ୍କ ''କଲ୍‌ଚର୍ ସକ୍'' ସମସ୍ୟାକୁ ନେଇ ଲେଖାଯାଇଥିବା ''ତୃଷ୍ଣା– ଏକ ଅନାବିଷ୍କୃତ ଆମେରିକା'' ଉପନ୍ୟାସର ଚରିତ୍ର ସତେକି ମୂର୍ତ୍ତିମନ୍ତ ହୋଇ ଠିଆହେଇଗଲା ମୋ ନିଜର ଗୋଟିଏ ନାତି ପ୍ରତୀକ ରୂପରେ । ସେ ଆଉ ପିଲାଟିଏ ହେଇ ରହିନାହିଁ ବୋଲି ବୁଝିପାରିଲି । ସେ ବର୍ତ୍ତମାନ ଅଠରବର୍ଷିଆ ଭାରତୀୟ- ଆମେରିକାନ୍ ଟିନ୍‌ଏଜ୍‌ର ଯେ ନିଜ ବାପ ମାଙ୍କୁ କାହିଁକି ସାରା ଦୁନିଆକୁ ପ୍ରତି ପଦେପଦେ ଚାଲେଞ୍ଜ୍ କରିବାକୁ ପ୍ରସ୍ତୁତ । ସେ ବର୍ତ୍ତମାନ ପାଲଟିଯାଇଚି ଫ୍ରାଞ୍ଜ୍ କାଫ୍‌କାଙ୍କ ବିଖ୍ୟାତ ଅସ୍ତିତ୍ୱବାଦୀ ଉପନ୍ୟାସ ''ମେଟାମର୍ଫୋସିସ୍''ର ନାୟକ... ଯେ ଦିନେ ସକାଳୁ ଆଉ ଶେଯରୁ ଉଠି କାମକୁ ଗଲାନାହିଁ । କାରଖାନାର ସାଇରେନ୍ ଶବ୍ଦ ଆଉ ତା' କାନରେ ବାଜିବା ପୂର୍ବରୁ ସେ ଗୋଟାଏ ପୋକ ପାଲଟି ଯାଇଥିଲା ।

ସାରା ଖରାଛୁଟିଟା ଏଇ ଉଦୀୟମାନ ନାତିଟି ପିଛା ଖର୍ଚ୍ଚ କରି ତାକୁ ଭାରତୀୟ ସଂସ୍କୃତି ବିଷୟରେ ଆହୁରି ଅନେକ କିଛି ବେଶୀ ତାଲିମ କରିବାକୁ ମୁଁ ପ୍ରସ୍ତୁତ ହେଇ ଆସିଥିଲି ଏଥର । କିନ୍ତୁ ଦେଖିଲି– ସେ ଆଉ ମୋ କଥାରେ କାନ ଦେଉନାହିଁ । ମୁଁ ତାକୁ ସକାଳୁ ଶେଯରୁ ଉଠାଇ ଯୋଗାସନ ଏବଂ ପ୍ରାଣାୟାମ ଶିଖେଇବାକୁ ମନରେ ସଂକଳ୍ପ ନେଇ ଏଥର ଆମେରିକା ଆସିଥିଲି– କିନ୍ତୁ ଦେଖିଲି ସେ ଆଉ ଭାରତୀୟ ଆଧ୍ୟାତ୍ମିକତା ସଂପର୍କୀୟ ଶିକ୍ଷା ବା ଆଲୋଚନାକୁ କାନ ଦେବାକୁ ଆଉ ପ୍ରସ୍ତୁତ ନୁହେଁ । ଆଶ୍ଚର୍ଯ୍ୟ ହେଲି ଦିନେ ତା'ର ଖୋଲା ମନ୍ତବ୍ୟରେ, "Sorry, please don't tell me those things again. I can't take in those fantastic things any more. I don't believe in them."

ମନେପଡିଲା ତିନିବର୍ଷ ତଳର ଏକ ଘଟଣା । ୨୦୦୩ରେ ମୋର ଯୋଉବର୍ଷ

ଅପରେସନ୍ ହେଇଥାଏ ସେବର୍ଷ ପ୍ରତୀକ ପଢୁଥାଏ ନବମ ଷ୍ଟାଣ୍ଡାର୍ଡରେ । ଫ୍ରାଙ୍କଲିନ୍ ହାଇସ୍କୁଲ୍ ଏଇ ସହରର ଗୋଟିଏ ଆଗୁଆ ହାଇସ୍କୁଲ୍ ଭାବେ ଆମେରିକାରେ ନାଁ କରିଥାଏ । ପ୍ରତୀକ ଏ ସ୍କୁଲ୍‌ରେ ସେତେବେଳକୁ ଚାରିପାଞ୍ଚ ବର୍ଷ ଧରି ଅଧ୍ୟୟନ କରି ଜଣେ ମେଧାବୀ ଛାତ୍ର ଭାବେ ଶିକ୍ଷକ ମହଲରେ ସଦିଚ୍ଛା ଅର୍ଜନ କରିସାରିଥାଏ । ତେବେ ୨୦୦୧ର ସେଇ କଳାଦିବସ, ୯/୧୧ ତାରିଖ, ପରେ ପରେ ଆମେରିକାର ସାଧାରଣ ନାଗରିକଙ୍କ ମନରେ ଭାରତୀୟ ବଂଶୋଦ୍ଭବମାନଙ୍କୁ ଆତଙ୍କବାଦୀ ସନ୍ଦେହରେ ଯେପରି ସାମାଜିକ ଘୃଣା ଓ ସନ୍ଦେହର ଶିକାର ହେବାକୁ ପଡିଥିଲା ସେଇ ସମୟରେ ପ୍ରତୀକକୁ ନେଇ ତାଙ୍କ ସ୍କୁଲ୍-ପିଲାଙ୍କଠାରୁ ବାସନ୍ଦ ବିଚାର ଭାବର ଶିକାର ହେବାକୁ ପଡିଥିଲା କିଛି ଦିନ । ସ୍କୁଲର ଗୌରବର୍ଣ୍ଣର କେତେକ ଛାତ୍ର "You bloody terrorist" ବୋଲି ଚିଡେଇବାକୁ ଲାଗିଲେ । ତାକୁ ପାକିସ୍ତାନୀ ମୁସଲମାନ୍ ଲୋକର ପିଲା ମନେକରି ସେମାନେ ତା' ବିରୁଦ୍ଧରେ ଅପପ୍ରଚାର ଆରମ୍ଭ କରିଦେଲେ ଓ ତାକୁ ସ୍କୁଲ୍‌ରେ ବାସନ୍ଦ କରିଦେଲେ । ଆମେରିକାର ସ୍କୁଲ୍ ପିଲାମାନେ ସେତେବେଳେ ନିଜ ନିଜ ସ୍କୁଲ୍‌ରେ "୯/୧୧" ଆତଙ୍କବାଦରେ ଶିକାର ହୋଇଥିବା ଲୋକଙ୍କ ପରିବାରକୁ ନୈତିକ ସମର୍ଥନ ଜଣାଇବାକୁ ଏକ ସାହାଯ୍ୟ ପାଣ୍ଠି ଖୋଲିବା ଆୟୋଜନ କରୁଥାନ୍ତି ଏବଂ ସ୍କୁଲ ପିଲାଙ୍କ ଠାରୁ ଚାନ୍ଦା ଆଦାୟ ଅଭିଯାନ ଆରମ୍ଭ କରିଥାନ୍ତି । ସେ ଅଭିଯାନରେ ସାମିଲ ହେବାକୁ ଯେତେବେଳେ ପ୍ରତୀକ ଆଗଭର ହେଲା ଗୋରାପିଲାମାନେ ତାକୁ ଗାଳିମନ୍ଦ କରି ଦୂରେଇ ଦେବା ପାଇଁ ବସିଲେ ।

ଆମେରିକାର ସେଇ ଦୁର୍ଦ୍ଦିନରେ ସେ ଦେଶ ମାଟିରେ ଜନ୍ମିତ ଭାରତୀୟ ବଂଶୋଦ୍ଭବ-ମାନଙ୍କ ପ୍ରତି ସ୍ଥାନୀୟ ଲୋକଙ୍କ ସେଭଳି ପାତରଅନ୍ତର ମନୋଭାବରେ ଭୀଷଣ ଆହତ ହୋଇ ସେତେବେଳେ ନଅ-ଦଶ ବର୍ଷର ପିଲା ଭୟଭୀତ ନହୋଇ ସ୍ଥାନୀୟ ସଂବାଦପତ୍ରକୁ ଏକ ପ୍ରତିବାଦ ପତ୍ର ପଠାଇଥିଲା । ସେଥିରେ ସେ ପ୍ରଶ୍ନ ଉଠାଇଥିଲା– ଆମେରିକାରେ ଜନ୍ମିତ ତା'ପରି ଭାରତୀୟ ପିଲାମାନଙ୍କର ସାମ୍ବିଧାନିକ ଅଧିକାର ସଂପର୍କରେ କେତେକ ଗୁରୁତ୍ୱପୂର୍ଣ୍ଣ ମୌଳିକ ପ୍ରଶ୍ନ । ସଂପାଦକଙ୍କୁ ଲିଖିତ ତାର ସେ ପ୍ରତିବାଦ ପତ୍ରଟି ସଂପୃକ୍ତ ସଂବାଦପତ୍ରରେ ପ୍ରକାଶ ପାଇବା ପରେପରେ ଏକ ଚହଳ ସୃଷ୍ଟି ହେଇଗଲା ସାରା ଅଂଚଳରେ । କ୍ରମେ ତାହା ସାରା ଦେଶକୁ ବ୍ୟାପିଗଲା ଓ ଏ ବିଷୟକୁ ନେଇ ବୁଦ୍ଧିଜୀବୀ ମହଲରେ ଆଲୋଡନ ସୃଷ୍ଟିହେଇଗଲା । ଅନ୍ୟାନ୍ୟ ସଂବାଦପତ୍ରରେ ଏହାର ପ୍ରତିଧ୍ୱନି ଶୁଣାଗଲା ।

ପରିସ୍ଥିତିର ଜଟିଳତାକୁ ଏଡାଇବାକୁ ସ୍କୁଲ୍ କର୍ତ୍ତୃପକ୍ଷ ତତ୍ପରତା ପ୍ରକାଶ କଲେ । ସମଗ୍ର କାଉଣ୍ଟିର ସ୍କୁଲ୍ ପ୍ରିନ୍ସିପାଲମାନଙ୍କର ଏକ ସ୍ୱତନ୍ତ୍ର ମିଟିଂ ଡକାଗଲା । ସେ ମିଟିଂକୁ ନିମନ୍ତ୍ରିତ ହୋଇଥିଲେ ପ୍ରତୀକର ପିତାମାତା ଓ ନିଜେ ପ୍ରତୀକ । ସେଠାରେ ସମଗ୍ର ବିଷୟର ପୁଙ୍ଖାନୁପୁଙ୍ଖ ଆଲୋଚନା ଅନ୍ତେ ପ୍ରତୀକକୁ ତାର ଆମେରିକୀୟ ନାଗରିକତ୍ୱର ସମସ୍ତ ସାମ୍ବିଧାନିକ ଅଧିକାରକୁ ନେଇ ତାର ମୌଳିକ ଦାବୀଗୁଡିକୁ ପ୍ରକାଶ୍ୟରେ ସ୍ୱୀକୃତି ଜଣାଇଦିଆଯାଇଥିଲା । ତା'

ସହିତ ଏତେ କମ୍ ବୟସରେ ତା'ପରି ଜଣେ ସ୍କୁଲ ଛାତ୍ରର ଗଣତାନ୍ତ୍ରିକ ଚେତନାଜନିତ ଅଧିକାର ସାବ୍ୟସ୍ତ କରିବା ମନୋଭାବକୁ ହାର୍ଦ୍ଦିକ ପ୍ରଶଂସା ମଧ୍ୟ କରାଯାଇଥିଲା ।

୨୦୦୧ ମସିହାର ଏ ସମସ୍ତ ବିଷୟ ସେତେବେଳର ''ଦ' ଟେନେସୀୟାନ୍'' ଭଳି ଏକ ଗୁରୁତ୍ୱପୂର୍ଣ୍ଣ ସଂବାଦପତ୍ରରେ ପ୍ରକାଶପାଇଥିଲା । ସେ ସବୁ ସଂବାଦର ''ନିଉଜ୍ କଟିଂ'' ଗୁଡିକୁ ବୁଲବୁଲ ମୋ ପାଖକୁ ଡାକରେ ପଠେଇଥାଏ । ସେ ସବୁକୁ ମୁଁ ଭୁବନେଶ୍ୱରରେ ମୋର ସାହିତ୍ୟିକ ବନ୍ଧୁମାନଙ୍କୁ ଦେଖେଇ ଗର୍ବିତ ହୋଇଥିଲି ।

ଦୁଇ ବର୍ଷ ପରେ, ୨୦୦୩ରେ, ମୁଁ ସେଥର ଆମେରିକା ଆସିଲାବେଳକୁ ପ୍ରତୀକ ତାଙ୍କ ସ୍କୁଲ୍‌ର ଜଣେ ପ୍ରମୁଖ ଅଗ୍ରଣୀ ଛାତ୍ର ଭାବେ ଛାତ୍ର ଓ ଶିକ୍ଷକ ମହଲରେ ପ୍ରତିଷ୍ଠିତ ହୋଇସାରିଥାଏ । ସ୍କୁଲ୍ ବ୍ୟାପାରରେ ତାର ମତାମତକୁ ଉଭୟ ଛାତ୍ର ଓ ଶିକ୍ଷକମାନେ ଗୁରୁତ୍ୱର ସହିତ ଗ୍ରହଣ କରିବାର ପ୍ରମାଣ ପାଇଥିଲି ଅନ୍ୟ ଏକ ଘଟଣାରୁ । ସେତେବେଳେ ଆମେରିକାର ଫେଡେରାଲ୍ ସରକାର ଦେଶର ସ୍କୁଲ୍‌ମାନଙ୍କୁ ଗ୍ରାଣ୍ଟଇନ୍‌ଏଡ୍ ଦେବାକୁ ନେଇ ଏକ ବିବାଦୀୟ ଶିକ୍ଷାନୀତି ଗ୍ରହଣ କରିଥାନ୍ତି । ସେଇ ନୀତି ଅନୁସାରେ ଏଣିକି ବାର୍ଷିକ ପରୀକ୍ଷାରେ ସ୍କୁଲମାନଙ୍କର ବାର୍ଷିକ ରେଜଲ୍ଟକୁ ବିଚାରକୁ ନେଇ ଶିକ୍ଷକମାନଙ୍କୁ ପଦୋନ୍ନତି ଦିଆଯିବାକୁ ସରକାର ସ୍ଥିରକରିଥାନ୍ତି । ତାହା ନିଶ୍ଚିତରେ ଏକ ବିଭ୍ରାନ୍ତିମୂଳକ ଶିକ୍ଷାନୀତି ବୋଲି ସ୍କୁଲ୍‌ର ଶିକ୍ଷକମାନେ ବିଚାରୁଥାନ୍ତି । ତାଦ୍ୱାରା ଅନେକ ସ୍କୁଲ୍‌ର ଇଂରେଜୀ ଭାଷା ସାହିତ୍ୟ ଶିକ୍ଷକ ସର୍ବାଧିକ କ୍ଷତିଗ୍ରସ୍ତ ହେବାର ସଂଭାବନା ଦେଖାଯାଉଥାଏ । କାରଣ ସେତେବେଳେ ସରକାର ନିୟମ କରିଥାନ୍ତି ଯେ ସବୁ ଆମେରିକାନ୍ ସ୍କୁଲରେ ଇଂରେଜୀଭାଷାକୁ ମାତୃଭାଷା ରୂପେ ବାଧ୍ୟତାମୂଳକ ଭାବେ ଶିକ୍ଷାଦିଆଯିବ ଏବଂ ଯେଉଁ ସବୁ ସ୍କୁଲରେ ଇଂରେଜୀ ବିଷୟରେ ଯେତେ ଅଧିକ ଛାତ୍ର ଫେଲ୍ ହେବେ ସେଥିପାଇଁ ସଂପୃକ୍ତ ସ୍କୁଲର ଇଂରେଜୀ ଶିକ୍ଷକଙ୍କୁହିଁ ଦାୟୀକରାଯାଇ ସେମାନଙ୍କର ଇନ୍‌କ୍ରିମେଣ୍ଟ ଇତ୍ୟାଦି ବନ୍ଦକରିଦିଆଯିବ ।

ସେତେବେଳେ ସରକାରଙ୍କ ଏଇ ମେରୀରାୟ ନୀତିର ପ୍ରତିବାଦ ରାଷ୍ଟ୍ରୀୟ ଶିକ୍ଷକ ୟୁନିୟନ୍ ପକ୍ଷରୁ ଜୋର୍‌ଦାର୍ ଚାଲିଥାଏ । ରାଷ୍ଟ୍ରପତି ଜର୍ଜ ବୁସ୍ (ଜୁନିୟର୍) ସେତେବେଳେ ଏଇ ଶିକ୍ଷାନୀତିକୁ ନେଇ ଖୁବ୍ ଚର୍ଚ୍ଚିତ ହେଉଥାନ୍ତି । ଏଇ ବ୍ୟାପାରରେ ଦିନେ ଫ୍ରାଙ୍କ୍‌ଲିନ୍ ହାଇସ୍କୁଲ୍‌ର ଅଷ୍ଟମ / ନବମ ଶ୍ରେଣୀର ଜଣେ ଛାତ୍ର ଶ୍ରୀମାନ୍ ପ୍ରତୀକ ଦାଶଙ୍କ ଏକ କ୍ଷୁଦ୍ର-ପ୍ରବନ୍ଧ ସ୍ଥାନୀୟ ସଂବାଦପତ୍ରରେ ପ୍ରକାଶ ପାଇବା ଦେଖାଗଲା । ଏ ସେଇ ପ୍ରତୀକ ଦାଶ ଯେ ଅଳ୍ପ କେତେଦିନ ତଳେ ଭାରତୀୟ ବଂଶୋଦ୍ଭବ ନାଗରିକଙ୍କ ମୌଳିକ ସାମ୍ବିଧାନିକ ଅଧିକାର ଦାବୀକରି ଖୁବ୍ ହଇଚଇ ସୃଷ୍ଟିକରିଥିଲେ । ପ୍ରକାଶିତ ପ୍ରବନ୍ଧରେ ସେଇ ବାଳକ ଆମେରିକାର ସ୍କୁଲ୍ ଶିକ୍ଷକମାନଙ୍କ ପ୍ରତି ଆମେରିକା ସରକାରଙ୍କ ସେପରି ହୁକ୍କାପିଟା ଦଣ୍ଡବିଧାନ ନୀତିର ପ୍ରତିବାଦ ଜଣାଇଥିଲେ । ତାଙ୍କର ଯୁକ୍ତିଥିଲା– ପରୀକ୍ଷାରେ ପାଶ୍ ଫେଲ୍‌ର ସଂଖ୍ୟାକୁ ମାନଦଣ୍ଡ କରି ଛାତ୍ରମାନଙ୍କର ଅକୃତକାର୍ଯ୍ୟତା ପାଇଁ ଶିକ୍ଷକଙ୍କୁ ଦଣ୍ଡିତ

କରିବା କିପରି ନ୍ୟାୟସଙ୍ଗତ ବିଚାର ହେବ ?

ଏ ସମସ୍ୟାକୁ ନେଇ ସେ ଆମେରିକାର ଦାରିଦ୍ର୍ୟ ଏବଂ ପ୍ରଚଳିତ ସାମାଜିକ ବ୍ୟବସ୍ଥାରେ ଉଚ୍ଚତର ଡିଭୋର୍ସ ହାରର ଶରବ୍ୟ ଲକ୍ଷ ଲକ୍ଷ ଭଗ୍ନ ପରିବାରମାନଙ୍କରୁ ଆସୁଥିବା ସ୍କୁଲ୍‌ପିଲାଙ୍କ ଉପସ୍ଥାନର ଅନିୟମିତତା ଭଳି କେତେକ ବାସ୍ତବ ପ୍ରସଙ୍ଗ ଉଲ୍ଲେଖ କରିଥିଲା । ଏହା ବ୍ୟତୀତ ସେ ତାର ପ୍ରବନ୍ଧରେ ଆମେରିକାରେ ବାସକରୁଥିବା ବହୁ-ସଂଖ୍ୟାର "ଲାଟିନୋ" ବା ମେକ୍ସିକୋ ପ୍ରଭୃତି ଲାଟିନ୍ ଆମେରିକାନ୍ ଉଦ୍‌ବାସ୍ତୁଙ୍କ ମାତୃଭାଷା ସମସ୍ୟା ଉଲ୍ଲେଖକରି ଦର୍ଶାଇଥିଲା ଯେ ସରକାର କଦାପି ସେଇ ଶ୍ରେଣୀର ଛାତ୍ରଛାତ୍ରୀମାନେ ଇଂରେଜୀ ଭାଷା ପରୀକ୍ଷାରେ ଫେଲ୍ ହେବା ପାଇଁ ଶିକ୍ଷକମାନଙ୍କୁ ଦାୟୀ-କରିପାରିବେ ନାହିଁ– ଏହା ସଂପୂର୍ଣ୍ଣ ଏକଦେଶଦର୍ଶୀ ବିଚାର । ସରକାର ଏ ପ୍ରକାର ଅଗଣତାନ୍ତ୍ରିକ ଆଇନ୍ କାନୁନ୍‌କୁ ଶୀଘ୍ର ପ୍ରତ୍ୟାହାର କରନ୍ତୁ ।

ସେଇ ପ୍ରବନ୍ଧ ସମ୍ବାଦପତ୍ରରୁ ପଢିଲା ପରେ ଆମେରିକାର ସ୍କୁଲ୍ ଶିକ୍ଷକମାନେ ଏ ପ୍ରତୀକ ଦାଶ ପିଲାଟି ପ୍ରତି କୃତକୃତ୍ୟତା ପ୍ରକାଶକଲେ । ପରେ ପରେ ନିଜ ସ୍କୁଲ ଫ୍ରାଙ୍କ୍‌ଲିନ୍ ହାଇସ୍କୁଲରେ ପ୍ରତୀକ ଦାଶ ଜଣେ ସମ୍ମାନିତ ଛାତ୍ର ଭାବେ ଶିକ୍ଷକ ମହଲରେ ଅତି ଆଦରର ପାତ୍ର ପାଲଟିଗଲା ।

ସେଇ ୨୦୦୩ ବର୍ଷର ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା । ସେଦିନ ପ୍ରତୀକ ମତେ ଆଶ୍ଚର୍ଯ୍ୟ କରିଦେଲା ଗୋଟିଏ ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଅନୁରୋଧ ଜଣାଇ । କହିଲା, "ଅଜା ! ତୁମେ ଆମ ସ୍କୁଲ୍‌ରେ ଗୋଟିଏ ଟକ୍ ଦବ– ମୁଁ ପ୍ରିନ୍ସିପାଲଙ୍କୁ କହି ସବୁ ବ୍ୟବସ୍ଥା କରିଦେଇ-ସାରିଚି ।"

"ତମ ସ୍କୁଲ୍‌ରେ– ଟକ୍ ଦେବି ମୁଁ ?"– ପିଲାଟାର କଥା ବିଶ୍ୱାସକୁ ନେବା ଅସଂଭବ ଥିଲା ମୋ ପାଇଁ । ଆମେରିକାର ସ୍କୁଲ୍ ପିଲାମାନଙ୍କ ବିଷୟରେ ମୋର କିଛି ଧାରଣା ନଥାଏ । ତେବେ ସେମାନେ ଯେ ଆମ ଭାରତୀୟ ସ୍କୁଲ୍ ପିଲା ନୁହନ୍ତି ଯାହାଙ୍କୁ ମୁଁ କୌଣସି ବିଷୟରେ କହି ସନ୍ତୁଷ୍ଟ କରିପାରିବି ଏ ଆତ୍ମବିଶ୍ୱାସ ମୋର ନଥିଲା ନିଶ୍ଚୟ । ତଥାପି ପଚାରିଲି, "ମୁଁ କୋଉ ବିଷୟରେ ଟକ୍ ଦେବି ବୋଲି ତୁ ତମ ପ୍ରିନ୍ସିପାଲ୍‌ଙ୍କୁ କହି ପରମିସନ୍ ଆଣିଚୁ ?"

ପ୍ରତୀକ ମତେ ସଂପୂର୍ଣ୍ଣ ସ୍ତବ୍ଧ କରିଦେଲା । କହିଲା, "On Indian mythology Ramayan, Mahabharat and everything in our mythologies that you generally talk of. . ."

"ତମ ସ୍କୁଲ ପିଲାମାନେ କ'ଣ ମୋ ଇଂରେଜୀ ଉଚ୍ଚାରଣ ବୁଝିବେ– ଯଦି ଗୋଳମାଳ କରିବେ ? ମତେ କୁହେଇନଦେବେ ଯଦି ତେବେ ମୁଁ କ'ଣ କରିବି ?"– ହସିହସି ପଚାରିଲି ।

''କିଛି କରିବେ ନାହିଁ– ଚୁପ୍‌ଚାପ୍ ବସି ଶୁଣିବେ କେମିତି ଦେଖିବ ।'' ପ୍ରତୀକର କଥାର ଗ୍ୟାରେଣ୍ଟି ସେଦିନ ସ୍ୱୀକାର କରିବାକୁ ପଡିଲା ।

ନିର୍ଦ୍ଧାରିତ ଦିନ ମୁଁ ପହଞ୍ଚିଲି ଫ୍ରାଙ୍କ୍‌ଲିନ୍ ହାଇସ୍କୁଲ୍‌ରେ । ସାଙ୍ଗରେ ବୁଲବୁଲ ଆଉ ନିରୁପମା । ପ୍ରତୀକ ସକାଳୁ ସ୍କୁଲକୁ ଯାଇଥାଏ । ମିଟିଂ ଜାଗା ଠିକ୍‌ଠାକ୍ କରାସରିଥାଏ । ପ୍ରତୀକର ସ୍କୁଲ୍ ପ୍ରିନ୍‌ସିପାଲ୍ ଓ ଶିକ୍ଷୟିତ୍ରୀ କେତେଜଣ ଆମକୁ ସ୍ୱାଗତ ଜଣେଇଲେ । ସେମାନଙ୍କ ଗହଣରେ ଆମେ ପ୍ରତୀକର କ୍ଲାସ୍‌ରୁମ୍‌କୁ ଗଲୁ । ପ୍ରାୟ ଚାଳିଶ ପଚାଶ ଛାତ୍ରଛାତ୍ରୀ କ୍ଲାସ୍‌ରୁମ୍‌ରେ ନିଜ ନିଜ ସିଟ୍‌ରେ ବସି ମତେ ଅପେକ୍ଷା କରୁଥାନ୍ତି । ସମସ୍ତେ ଟିନ୍‌ଏଜର ।

ମତେ ଆଜିର ଟକ୍ ପାଇଁ କୋଡିଏ ମିନିଟ୍ ସମୟ ଦିଆଗଲା । ମୋର ପ୍ରାରମ୍ଭିକ ପରିଚୟ ଇତ୍ୟାଦି ଦିଆଯିବା ପରେ ମୁଁ ଆରମ୍ଭକଲି ମୋ ବକ୍ତବ୍ୟ । କୋଡିଏ ମିନିଟ୍ ପରେ ଗୋଟାଏ ଟାଇମ୍ ପିସ୍‌ର ଆଓ୍ୱାଜ୍ ଶୁଣାଗଲା– ତାହା ଥିଲା ମୋ ପାଇଁ ନିର୍ଦ୍ଦିଷ୍ଟ ସମୟସୀମାର ଅବସାନର ସୂଚନା । କିନ୍ତୁ ଶ୍ରୋତାମାନେ ଚାହିଁଲେ ଆହୁରି ଅଧିକ ଶୁଣିବାକୁ । ପୁଣି କୋଡିଏ ମିନିଟ୍ କହିବା ପରେ ଟାଇମ୍ ପିସ୍ ପୁଣି ଥରେ କ୍ରିଂକ୍ରିଂ କଲା । ଏଥର ନିଜେ ସଭାପତିତ୍ୱ କରୁଥିବା ଶିକ୍ଷୟିତ୍ରୀ ମତେ ଇସାରାରେ ସୂଚନାଦେଲେ ବକ୍ତୃତା ଚାଲୁରଖିବାକୁ । ବକ୍ତୃତା ଶେଷ ହେଲା ବେଳକୁ ସମସ୍ତେ ଆଖିବୁଜି ବସିଥାନ୍ତି । ସେମାନେ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଖୋଜିବାକୁ ଅତ୍ୟନ୍ତ ମନୋଯୋଗ ସହକାରେ ଚେଷ୍ଟା ଚଳେଇଥା'ନ୍ତି । ପ୍ରଶ୍ନଟି ଥିଲା, "Modern science is based on one principle– doubt and by that you understand the observed thing. That is how we study the universe around us. But have you ever doubted your own self? Have you ever asked this question to yourself– Who am I? Now, all of you please close your eyes and looking deeply inside tell me who you are really."

ସେ ଦିନଟି ଥିଲା ମୋ ପାଇଁ ଅତ୍ୟନ୍ତ ସୁଖର ଦିନ । ଆମେରିକାନ୍ ଟିନ୍‌ଏଜ୍‌ର ସ୍କୁଲ ପିଲାଙ୍କୁ କ୍ଲାସ୍‌ରୁମ୍‌ରେ ଲେକ୍‌ଚର୍ ଦେଇ ସନ୍ତୁଷ୍ଟ କରାଇବା ଆଦୌ ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ପୁଣି ମୋ ପରି ଜଣେ ଅଜଣା ବିଦେଶୀ ଲୋକ ପକ୍ଷରେ ତାହା ଦୁଃସାହସିକତା ଛଡା ଅନ୍ୟ କିଛି ନଥିଲା ।

ଆମେରିକାରେ ମୋର ବନ୍ଧୁ ଶୁଭେଚ୍ଛୁ ଯେ ସେକଥା ଶୁଣିଲା ସେ ପ୍ରତୀକକୁ ଦୋଷଦେଲେ । କହିଲେ, ''କି ବିପଦ ଭିତରକୁ ସେ ଟୋକା ଆପଣଙ୍କୁ ଟାଣିନନେଇଥିଲା ! ଭାଗ୍ୟ ବଞ୍ଚେଇଦେଲା ସିନା ! ନହେଲେ କି ଅପଦସ୍ଥ ହେଇଥାନ୍ତେ ସତରେ ?''

କିନ୍ତୁ ସେଦିନର ପ୍ରତୀକ ଏଇ ଚାରିବର୍ଷ ଭିତରେ ରୂପାନ୍ତରିତ ହୋଇସାରିଥାଏ । ତାର ମେଟାମର୍ଫୋସିସ୍ ଘଟୁଥାଏ ।

## ଭାରତରୁ ଆସିଲା ଗଭୀର ଶୋକସମ୍ବାଦ

– ଫ୍ରାଙ୍କ୍ଲିନ୍, ତା ୨୦ ଜୁନ୍, ୨୦୦୬ । ସେଦିନ ସକାଳ ସାଢେନ'ରେ ଖବର ମିଳିଲା ଫୋନ୍‌ରେ– ନିରୁପମାଙ୍କ ବଡଭାଇ ପ୍ରଶାନ୍ତ କୁମାର ରଥ ଗୁରୁତର ହୃଦ୍‌ରୋଗରେ ପୀଡିତ ହୋଇ କଲିକତାର କୌଣସି ବଡ ଡାକ୍ତରଖାନାର ''ଆଇ.ସି.ୟୁ''ରେ ଭର୍ତ୍ତିହେଇଚନ୍ତି । ତାଙ୍କର ଅବସ୍ଥା ଗଭୀର ଉଦ୍‌ବେଗଜନକ ।

ରାତି ଗୋଟାଏ ସୁଦ୍ଧା ସର୍ବଶେଷ ଖବର ଆସିଲା– ପ୍ରଶାନ୍ତ ଆମ ସମସ୍ତଙ୍କୁ ଶୋକ-ସାଗରରେ ଭସାଇ ଚାଲିଗଲେ ସେପାରିକୁ । ତାଙ୍କର ପତ୍ନୀ ଓ ପୁତ୍ର କନ୍ୟା ଉପସ୍ଥିତ ଥିଲେ ମୃତ୍ୟୁଶଯ୍ୟା ନିକଟରେ । କଟକରେ ତାଙ୍କର ସତାଅଶୀ ବର୍ଷର ବୃଦ୍ଧାମାତା ଏ ଦୁଃସମ୍ବାଦ ପାଇ କିପରି ଅବସ୍ଥାରେ ଥିବେ ତାହା ଆମ ସମସ୍ତଙ୍କ ପାଇଁ ଥିଲା ଚିନ୍ତାର ବିଷୟ ।

ନିରୁପମା ତାଙ୍କ ଭାଇଙ୍କ ଅକାଳ ବିୟୋଗ ଖବର ପାଇ ଭାଙ୍ଗିପଡିଲେ । ତାଙ୍କୁ ପ୍ରବୋଧନା ଦେବା ଥିଲା ଅତି କଷ୍ଟସାଧ । ସେମାନେ ଥିଲେ ଛ'ଭାଇ ଭଉଣୀ । ନିରୁପମାଙ୍କ ଉପର ଭାଇ ଓ ଘରର ସବା ବଡପୁଅ ପ୍ରଶାନ୍ତ ସେ ପରିବାର ପାଇଁ ଥିଲେ ଗର୍ବ ଓ ଗୌରବର କାରଣ । ମାତ୍ର ସତୁରୀବର୍ଷ ବୟସରେ ତାଙ୍କର ଅକାଳ ବିୟୋଗ କେବଳ ଆମ ପରିବାର ନୁହେଁ ସମଗ୍ର ଦେଶ ପାଇଁ ଥିଲା ଏକାନ୍ତ ଦୁଃଖଦ ।

ସ୍ୱର୍ଗତ ପ୍ରଶାନ୍ତ କୁମାର ରଥ ଭାରତବର୍ଷର ଜଣେ ଶୀର୍ଷସ୍ଥାନୀୟ ଇସ୍ପାତ ନିର୍ମାତା (Steel Maker of India) ଏବଂ ସୁଦକ୍ଷ ଇଂଜିନିୟର୍ ଥିଲେ । ''ଷ୍ଟିଲ୍ ଅଥରିଟି ଅଫ୍ ଇଣ୍ଡିଆ'' (SAIL)ର ନିର୍ଦ୍ଦେଶକ ପଦବୀ ସମେତ ବହୁ ଇସ୍ପାତ୍ ନିର୍ମାଣକାରୀ ଶିଳ୍ପ ସଂସ୍ଥାର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ପଦବୀ ତାଙ୍କ ଜୀବନ କାଳ ଭିତରେ ମଣ୍ଡନ କରିଥିଲେ । ଓଡିଶାର ରାଓରକେଲା ଇସ୍ପାତ୍ କାରଖାନାର ଶୁଭାରମ୍ଭ ସମୟରୁ ସେ ତାଙ୍କ ଚାକିରି ଆରମ୍ଭ କରିଥିଲେ ଏବଂ ସମୟକ୍ରମେ ସେ ମଧ୍ୟ ପଶ୍ଚିମବଙ୍ଗର ଇସ୍‌କୋ (ବର୍ଣ୍ଣପୁର), ବ୍ରେଥ୍‌ୱେଟ୍ ପ୍ରଭୃତି ବଡ ବଡ କଂପାନୀମାନଙ୍କର ପରିଚାଳନା ନିର୍ଦ୍ଦେଶନା ଦାୟିତ୍ୱ ନେଇଥିଲେ । ଓଡିଶାରେ ଦ୍ୱିତୀୟ ରାଷ୍ଟ୍ରାୟତ୍ତ ବୃହତ୍ ଇସ୍ପାତ ଶିଳ୍ପ ପ୍ରକଳ୍ପ ''ନୀଳାଚଳ ନିଗମ''ର ସେ ଥିଲେ ପ୍ରାଣପ୍ରତିଷ୍ଠାତା ନିର୍ଦ୍ଦେଶନା ପରିଚାଳକ । ଏହା ବ୍ୟତୀତ ଭାରତ ଓ ଭାରତ ବାହାରେ ଚୀନ୍, ବ୍ରାଜିଲ୍ ପ୍ରଭୃତି ଦେଶରେ ବଡ ବଡ ଇସ୍ପାତ୍‌ଶିଳ୍ପର ପରିଚାଳନା କ୍ଷେତ୍ରରେ ଜଣେ ଉଚ୍ଚକୋଟୀର ପରାମର୍ଶଦାତା ଭାବେ ତାଙ୍କର ସୁନାମ ଥିଲା । ସେଭଳି ଜଣେ ଅନୁଭବୀ ଶିଳ୍ପବିଶେଷଜ୍ଞଙ୍କ ଅକାଳ ବିୟୋଗରେ ସମଗ୍ର ଶିଳ୍ପଜଗତ ମର୍ମାହତ ହୋଇପଡିଥିଲା ।

ବ୍ୟକ୍ତିଗତଭାବେ ପ୍ରଶାନ୍ତବାବୁଙ୍କ ଅକାଳ ବିୟୋଗ ମୋ' ନିଜ ପାଇଁ ଥିଲା ଏକାନ୍ତ ଅନୁଶୋଚନାର ବିଷୟ । ସେ ଥିଲେ ମୋର ସ୍କୁଲ୍ ଓ କଲେଜ ସହପାଠୀ ଏବଂ ପରେ ପାରିବାରିକ ସଂବନ୍ଧ ପ୍ରତିଷ୍ଠା ହେତୁ ସେ ହେଲେ ମୋର ଶାଳକ । ତାଙ୍କର ବିଖ୍ୟାତ

ପିତୃଦେବ, କଟକର ରେଭେନ୍ସା କଲିଜିଏଟ୍ ସ୍କୁଲର ସ୍ୱନାମଧନ୍ୟ ପ୍ରଧାନଶିକ୍ଷକ ସ୍ୱର୍ଗତ ନନ୍ଦକିଶୋର ରଥ ଥିଲେ ଆମ ଉଭୟଙ୍କ ଶିକ୍ଷାଗୁରୁ । ୧୯୪୫ ମସିହାରେ ସେଇ କଲିଜିଏଟ୍ ସ୍କୁଲ୍‌ରେ ଆମେ ଦୁହେଁ ଏକାଠି ଆରମ୍ଭ କରିଥିଲୁ ହାଇସ୍କୁଲ୍ ଶିକ୍ଷା । ୧୯୪୯ରେ ଦୁହେଁ ପ୍ରଥମଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍‌କରି ନାଁ ଲେଖେଇଥିଲୁ ରେଭେନ୍ସା କଲେଜର, ଆଇ.ଏସ୍‌ସି.ଶ୍ରେଣୀରେ । ୧୯୫୧ରେ ଆଇ.ଏସ୍‌ସି ପରୀକ୍ଷାରେ ପ୍ରଶାନ୍ତ ଆମ ବ୍ୟାଚର ପ୍ରଥମ ଦଶଜଣଙ୍କ ଭିତରେ ଚତୁର୍ଥ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ପରେପରେ ମେଧାବୀ ଛାତ୍ରବୃତ୍ତିପାଇ ଇଂଜିନିୟରିଂ ପଢିବାପାଇଁ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ । ୧୯୫୫ରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଇଲେକ୍ଟ୍ରିକାଲ୍ ଇଂଜିନିୟରିଂ ଡିଗ୍ରୀ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରି ସେ ଓଡିଶା ଫେରିଲେ । ଅଳ୍ପ କିଛି ମାସ ପାଇଁ ସେ ଓଡିଶା ସରକାରଙ୍କ ଶିଳ୍ପ-ବିଭାଗ ଅଧୀନରେ ସହକାରୀ ଇଂଜିନିୟର୍ ଭାବେ ଯୋଗଦେଲା ପରେ ତାଙ୍କୁ ତତ୍‌କାଳିନ ନବନିର୍ମିତ ରାଉରକେଲା ଷ୍ଟିଲ ଇଣ୍ଡଷ୍ଟ୍ରିରେ ଗ୍ରାଜୁଏଟ୍ ଟ୍ରେନୀ ଭାବେ ଯୋଗଦେବାକୁ ବଛାଗଲା । ପରବର୍ତ୍ତୀ ଦୁଇ ବର୍ଷ ତାଙ୍କୁ ଜାମସେଦ୍‌ପୁର, ଟାଟା କଂପାନୀରେ ଇସ୍ପାତ ନିର୍ମାଣ ଟେକ୍‌ନୋଲଜିରେ ସ୍ୱତନ୍ତ୍ର ତାଲିମ ଦିଆଗଲା । ଇସ୍ପାତ ନିର୍ମାଣରେ ବିଶେଷଜ୍ଞତା ଅର୍ଜନ ପାଇଁ ତାଙ୍କୁ ଭାରତ ସରକାରଙ୍କ ପକ୍ଷରୁ ଜର୍ମାନୀର ପ୍ରସିଦ୍ଧ ଲୌହ ଇସ୍ପାତ୍ ଶିଳ୍ପ କ୍ରୁପ୍‌ସ୍ କଂପାନୀରେ ତାଲିମ୍ ନେବା ପାଇଁ ପଠାଗଲା । ଜର୍ମାନୀରୁ ଉଚ୍ଚଶିକ୍ଷା ଓ ଅଭିଜ୍ଞତା ହାସଲ କରି ସେ ଭାରତ ଫେରିଲେ ଏବଂ ରାଉରକେଲା ଇସ୍ପାତ କାରଖାନାରେ ବିଧିବଦ୍ଧ ନିଯୁକ୍ତି ପାଇଥିଲେ ।

ପ୍ରଶାନ୍ତବାବୁଙ୍କ ଦୁଃଖଦ ବିୟୋଗ ସେତେବେଳେ ଆମେରିକାରେ ରହୁଥିବା ତାଙ୍କର ସାନଭାଇ ଡାକ୍ତର ରଣଜିତ ରଥଙ୍କ ସମେତ ମୋର ତିନିଝିଅ ଆଉ ସେମାନଙ୍କ ପରିବାରକୁ ସନ୍ତାପିତ କରିପକାଇ ଥାଏ । ଏ ସମସ୍ତଙ୍କ ଭିତରେ ସବୁଠାରୁ ବେଶି ବିପର୍ଯ୍ୟସ୍ତ ହୋଇପଡିଥାନ୍ତି ତାଙ୍କର ଭଉଣୀ ନିରୁପମା । ତାଙ୍କୁ ବୁଝାଶୁଝା କରି ସାନ୍ତ୍ୱନା କରିବା ଥିଲା ଆମ ସମସ୍ତଙ୍କ ପାଇଁ ଏକ ବଡ଼ ସମସ୍ୟା । ସେ ଇଚ୍ଛାକରୁଥାନ୍ତି ଭାରତ ଫେରିଯିବାକୁ । କିନ୍ତୁ ଆମେ ମାତ୍ର ତିନି ସପ୍ତାହ ତଳେ ଭାରତରୁ ଆମେରିକା ଭ୍ରମଣରେ ଆସିଥିଲୁ । ଆଗାମୀ ଜୁଲାଇ ମାସର ପ୍ରଥମ ସପ୍ତାହରେ ହେବାକୁ ଥାଏ ନାତି ପ୍ରତୀକର ଗ୍ରାଜୁଏସନ୍ ଫଙ୍କସନ୍ । ଭାରତ ଫେରିଯାଇ ପୁଣି ଆମେରିକା ଫେରିଆସିବା ଆମ ପାଇଁ ବହୁ କାରଣରୁ ସଂଭବପର ହେଲାନାହିଁ ।

ସେ କାଳରାତ୍ରି କଟିଲା ଯନ୍ତ୍ରଣାଦାୟକ ଭାବେ ଦୁଃଖ ଶୋକ ନୈରାଶ୍ୟ ଆଉ ଭୟଙ୍କର ଚିନ୍ତା ଅନୁଶୋଚନା ଭିତରେ ।

## କାଲିଫର୍ଣ୍ଣିଆ ଯାତ୍ରା–

–(୨୧, ଜୁନ୍, ୨୦୦୬)

ପରଦିନ ସକାଳକୁ ସମସ୍ୟା ଠିଆହେଲା । ସେଦିନକୁ ଥାଏ ଆମର କାଲିଫର୍ଣ୍ଣିଆ ଯାତ୍ରାର ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ । ଏଥର ଆମେରିକା ଆସିବା ପୂର୍ବରୁ ବଡଝିଅ ବୁଲବୁଲ ଆମ ଦୁହିଁଙ୍କୁ କାଲିଫର୍ଣ୍ଣିଆ ବୁଲାଇନେବାକୁ ମନସ୍ଥ କରି ଆଗୁଆ ପ୍ଲେନ୍ ଟିକେଟ୍ କାଟିସାରିଥାଏ ଠିକ୍ ଆଜି ତାରିଖକୁ । ବର୍ତ୍ତମାନ ପ୍ରଶାନ୍ତବାବୁଙ୍କ ବିୟୋଗ ସଂବାଦ ପାଇଲା ପରେ କରିବୁ କ'ଣ ? ପ୍ରୋଗ୍ରାମ କାଏମ୍ ରହିବ ନା ନାହିଁ ? ନିରୁପମାଙ୍କ ଅବସ୍ଥା ଯାହା ସେଥିରେ କାଲିଫର୍ଣ୍ଣିଆ ବୁଲିବା ନିରର୍ଥକ ମନେହେଲା । ବହୁ ବିଚାର ବିମର୍ଶ ପରେ ଶେଷରେ ସ୍ଥିରକରାଗଲା ସ୍ଥାନାନ୍ତର ଓ ଦୂର ଜାଗା ଭ୍ରମଣ ଦ୍ୱାରା ବନ୍ଧୁବିଚ୍ଛେଦଜନିତ ଶୋକ ହୁଏତ କିଛି ଲାଘବ ହେବା ସଂଭବ ।

ଅପରାହ୍ଣ ଫ୍ଲାଇଟ୍ ଦିନ ସାଢେଚାରିରେ । ଖୁବ୍ ଲମ୍ବା ପ୍ଲେନ୍ ଜର୍ଣ୍ଣି– ଛ'ସାତ ଘଣ୍ଟାର ଫ୍ଲାଇଟ୍ ନ୍ୟାସ୍‌ଭିଲ୍‌ରୁ ସାନ୍‌ଜୋସେ । ମଝିରେ ଘଣ୍ଟାକର ଯାତ୍ରା ବିରତି ମିନିଆପଲିସରେ । ନିରୁପମାଙ୍କୁ ବୁଝାସୁଝା କରି ପ୍ରବର୍ତ୍ତାଇବା ପରେ ତାଙ୍କୁ ସାଙ୍ଗରେ ଧରି ପ୍ରତୀକ, ବୁଲବୁଲ ଓ ମୁଁ– ଚାରିଜଣ ଫ୍ରାଙ୍କ୍‌ଲିନ୍ ଘରୁ ବାହାରିଲୁ ।

ପ୍ରବୀର ନେଇ ଆମକୁ ନ୍ୟାସ୍‌ଭିଲ୍ ବିମାନ ବନ୍ଦରରେ ଛାଡିଲେ । ଠିକ୍ ସାଢେ-ଚାରିରେ ପ୍ଲେନ୍ ଟେକ୍ ଅଫ୍ ନେଲା ନ୍ୟାସ୍‌ଭିଲ୍ ଏୟାରପୋର୍ଟରୁ । ଅଢେଇ ଘଣ୍ଟା ଫ୍ଲାଇଟ୍ ପରେ ପ୍ଲେନ୍ ଅବତରଣ କଲା ମିନିଆପଲିସ୍ ବିମାନବନ୍ଦରରେ । ମିନିଆପଲିସ୍ ଯୁକ୍ତରାଷ୍ଟ୍ର ଆମେରିକାର ଉତ୍ତରାଞ୍ଚଳର ରାଜ୍ୟ ମିନେସୋଟାର ରାଜଧାନୀ ସହର । ଆମେରିକାର ଏ ଏକ ଅତ୍ୟନ୍ତ ସମୃଦ୍ଧ ଧନାଢ୍ୟ ରାଜ୍ୟ । ଏଠି ବହୁ ପ୍ରବାସୀ ଓଡିଆ ଅଛନ୍ତି । ସେମାନେ ଅନେକ ବର୍ଷ ପୂର୍ବରୁ ଆସି ବିଭିନ୍ନ ସଂସ୍ଥାମାନଙ୍କରେ ବଡ ବଡ ଚାକିରି ଓ ବ୍ୟବସାୟରେ ଅଛନ୍ତି । ନୂଆ ନୂଆ ବି ଆସୁଚନ୍ତି ଅନେକ । ସେମାନଙ୍କ ଭିତରେ ଓଡିଶା ସୋସାଇଟି ଅଫ୍ ଆମେରିକାର ପୂର୍ବତନ ସଭାପତି ଡକ୍ଟର ସିତିକଣ୍ଠ ଦାଶ ମୋର ପୂର୍ବ-ପରିଚିତ । ଶ୍ରୀଦାଶ ଓ ତାଙ୍କ ପତ୍ନୀ କଞ୍ଚନାଙ୍କ ସାଙ୍ଗଠନିକ ସୁଖ୍ୟାତି ବିଷୟରେ ବହୁତ ଶୁଣିଥାଏ । ସିତିକଣ୍ଠ ବାବୁ ଓ ମିନେସୋଟାର ଆହୁରି ବହୁ ପ୍ରଭାବଶାଳୀ ଓଡିଆ ଏଠାକାର ପ୍ରବାସୀ ଭାରତୀୟଙ୍କ ସହଯୋଗରେ ମିନିଆପଲିସରେ ଏକ ବିରାଟ ହିନ୍ଦୁମନ୍ଦିର ନିର୍ମାଣ କରିଛନ୍ତି । ପୁଣି ଆହୁରି ସୁଖକର ବିଷୟ– ଏଠାକାର ହିନ୍ଦୁ ମନ୍ଦିରରେ ଚଳିତ ୨୦୦୬ ବର୍ଷ ଶ୍ରୀ ଜଗନ୍ନାଥଙ୍କ ଚାରି ବିଗ୍ରହ ପ୍ରତିଷ୍ଠା ପାଇଛନ୍ତି ଏବଂ ଏବର୍ଷ ମନ୍ଦିରରେ ରଥଯାତ୍ରାର ଆୟୋଜନ ମଧ୍ୟ କରାଯାଇଥିବା ଶୁଣିଲି ।

ମିନିଆପଲିସ୍ ଏକ ବିରାଟ ଆନ୍ତର୍ଜାତିକ ବିମାନବନ୍ଦର । ଭିତରଟା ଦିଶୁଥାଏ ଏକ ଅତିବଡ ଜନଗହଳି ପୂର୍ଣ୍ଣ ସହର ପରି । ଶତାଧିକ ପ୍ଲେନ୍ ବିଭିନ୍ନ ରୁଟ୍‌ରୁ ଆସୁଥାଏ ଓ ଯାଉଥାଏ । ଶହଶହ ସଂଖ୍ୟାରେ ପ୍ଲେନ୍ ବିଭିନ୍ନ ରନ୍‌ୱେରେ ଏକକାଳୀନ ଲ୍ୟାଣ୍ଡିଂ ଓ ଟେକ୍ ଅଫ୍ ଦୃଶ୍ୟ ମୁଗ୍ଧ ଆଖିରେ ଦେଖୁ ଦେଖୁ କୁଆଡେ ଚାଲିଗଲା ସମୟ । ସାନ୍‌ଜୋସେଗାମୀ ପ୍ଲେନ୍‌ରେ ବସିଲୁ– ସନ୍ଧ୍ୟା ଛ'ଟା ପଇଁଚାଳିଶରେ । ସେ ପର୍ଯ୍ୟନ୍ତ ସୂର୍ଯ୍ୟ ତେଜର ପ୍ରଖରତା କମିନଥାଏ । ଗ୍ରୀଷ୍ମ ଦିନରେ ଉତ୍ତର ଗୋଲାର୍ଦ୍ଧରେ ଦିନସବୁ ଖୁବ୍ ଲମ୍ବା । ତେଣୁ ସୂର୍ଯ୍ୟାସ୍ତ ହୁଏ ବହୁତ ଡେରିରେ– ପ୍ରାୟ ନଅ ସାଢେ ନ'ରେ । ପୁଣି ଆମ ପ୍ଲେନ୍‌ର ଗତିପଥ ପୂର୍ବରୁ ପଶ୍ଚିମ ଦିଗକୁ । ତେଣୁ ଆମେ ସୂର୍ଯ୍ୟାସ୍ତକୁ ବରାବର ପଛରେ ଛାଡି ଉଡିଯାଉଥାଉ ଆଗକୁ ଆଗକୁ ପଶ୍ଚିମ ଦିଗରେ କାଲିଫର୍ଣ୍ଣିଆ ଅଭିମୁଖେ ।

ସାନ୍‌ଜୋସେ ବିମାନବନ୍ଦରରେ ପ୍ଲେନ୍ ଲ୍ୟାଣ୍ଡିଂ କରିବା ସୂଚନା ମିଳିଲା । ହାତଘଡିକୁ ଚାହିଁ ଦେଖିଲି– ସମୟ ରାତି ସାଢେ ଏଗାର– କିନ୍ତୁ କାଲିଫର୍ଣ୍ଣିଆର ଲୋକାଲ୍ ଟାଇମ୍ ସେତେବେଳେ ସାଢେ ନ' ! ହାତଘଡିର ଟାଇମ୍ ଲୋକାଲ୍ ଟାଇମ୍ ଅନୁସାରେ ସେଟ୍ କରିନେବା ଦରକାରପଡିଲା । ଆମେରିକାର ପୂର୍ବ ଓ ପଶ୍ଚିମ ଭିତରେ ତିନିଟା ଟାଇମ୍ ଜୋନ! ପୂର୍ବାଞ୍ଚଳ, ମଧ୍ୟାଞ୍ଚଳ ଓ ପଶ୍ଚିମାଞ୍ଚଳ– ଏହି ତିନି ଟାଇମ୍ ଜୋନ୍‌ରେ ବିଭକ୍ତ ଏ ବିଶାଳ ଦେଶ । ପୂର୍ବରୁ ପଶ୍ଚିମ– ପ୍ରତ୍ୟେକଟି ଟାଇମ୍‌ଜୋନ୍ ପରସ୍ପରଠାରୁ ଏକଘଣ୍ଟା ପଛରେ ।

ପ୍ଲେନ୍‌ରୁ ଓହ୍ଲାଇ ଲଗେଜ୍ କ୍ଲିୟରାନ୍ସ ପାଖରେ ଠିଆହେଲୁ । ଲଗେଜ୍ ସବୁ ଗୋଟିଗୋଟି ହେଇ କନ୍‌ଭେୟର୍ ବେଲ୍ଟ ଉପରେ ଘୂରି ବୁଲିଲା ଆମ ସାମନାରେ । ପ୍ୟାସେଞ୍ଜରମାନେ ଯେ ଯାହାର ଲଗେଜ୍ ଉଠେଇନେଇ ଚାଲିଯାଉଥାନ୍ତି । କିନ୍ତୁ ସବା ଶେଷ ଲଗେଜ୍‌ଟି ବି ଚାଲିଗଲା ପରେ ଆମର ଲଗେଜ୍ କନ୍‌ଭେୟର୍ ବେଲ୍ଟରେ ନଦେଖି ହାଲୁକା ଶୁଖିଗଲା । ଆମର ଥାଏ ଗୋଟିଏ ସୁଟ୍‌କେଶ୍ ଯୋଉଟାରେ ମୋର ଓ ନିରୁପମାଙ୍କ ଲୁଗାପଟା ଦାନ୍ତ ଘସା ସାମଗ୍ରୀ ଇତ୍ୟାଦି ଥାଏ । ସେଇଟି ଗାୟବ ହେଇଯିବା ଜାଣି ହତାଶ ଭାବେ ଏଣେ ତେଣେ ଚାହିଁ ଦେଖିଲୁ ହସହସ ମୁହଁରେ ଆମ ଆଡକୁ ଚାହିଁ କାଚ ବାଡ ସେପାଖେ ଠିଆହେଇଚନ୍ତି ତିନଜଣ ଅତି ପରିଚିତ ମହିଳା– ଅଂଜି, ଟିଟା ଓ ଅନ୍ନପୂର୍ଣ୍ଣା ।

ସେମାନଙ୍କୁ ଦେଖି ମନ ଖୁସିହେଇଗଲା । ସେମାନଙ୍କ ଭିତରେ ଥିଲେ ଆମର ଏକାନ୍ତ ପରିଚିତ ଅଂଜି ଓ ଟିଟା ଦୁଇଭଉଣୀ । ଏ ଦୁହେଁ ଓଡିଶାର ବରେଣ୍ୟ ଔପନ୍ୟାସିକ ସ୍ୱର୍ଗୀୟ ଗୋପୀନାଥ ମହାନ୍ତିଙ୍କ ଦୁଇ କନ୍ୟା । ଗୋପୀବାବୁଙ୍କ ମଧ୍ୟମା କନ୍ୟା ଅଂଜଳିକା ଆମେରିକାର ପ୍ରବାସୀ ଓଡିଆ ଇଂଜିନିୟର୍ ଡକ୍ଟର ସୂର୍ଯ୍ୟ ପଟ୍ଟନାୟକଙ୍କୁ ବିବାହ କରିଥିଲେ । ସେ ବର୍ତ୍ତମାନ ସାନ୍‌ଜୋସେ ସହରର ଜଣେ ସୁପ୍ରତିଷ୍ଠିତ ଜନପ୍ରିୟ ଡାକ୍ତର । ଅଂଜଳିଙ୍କ ସାନଭଉଣୀ ଟିଟାକୁ ଛୋଟଦିନୁ ଆମେ ଜାଣିଥିଲୁ । ଏ ଦୁଇ ଭଉଣୀ ଓ ସେମାନଙ୍କର

ସାନଭାଇ ଅମୃତ ତିନିଜଣଯାକ ବିଜେବି କଲେଜରେ ପାଠ ପଢୁଥିଲେ । ସେତେବେଳେ ମୁଁ ଥିଲି ସେ କଲେଜରେ ଅଧ୍ୟାପକ– ସେଇ ସୂତ୍ରରେ ଏ ତିନିହେଁ ମୋର ଛାତ୍ର ଛାତ୍ରୀ ।

ତା'ଛଡା ଗୋପୀନାଥ ମହାନ୍ତିଙ୍କ ଭୁବନେଶ୍ୱର ଘରେ ଅଧିକାଂଶ ସନ୍ଧ୍ୟାରେ ମୋର ଏମାନଙ୍କ ସହିତ ଭେଟହେଉଥିଲା ୧୯୬୧-୬୨ରୁ ୧୯୯୦-୯୧ ଭିତରେ, ତାଙ୍କ ଘରେ ବସୁଥିବା ସାହିତ୍ୟ ଆସରରେ । ଗୋପୀବାବୁ ଚିରଦିନ ପାଇଁ ଭୁବନେଶ୍ୱର ଛାଡି ଚାଲିଆସିଥିଲେ ୧୯୯୦ରେ, ଅସୁସ୍ଥ ଅବସ୍ଥାରେ । ତାଙ୍କର ଦେହାନ୍ତ ଘଟିଥିଲା ୧୯୯୧ରେ, ଏଇ ସାନ୍‌ଜୋସେ ସହରରେ, ଡାକ୍ତର ଅଂଜଳିକାଙ୍କ ବାସଭବନରେ । ଅଂଜି ଓ ଟିଟାଙ୍କୁ ଭେଟି ଖୁସିରେ ବିହ୍ୱଳିତ ହେଉଥିବା ଅବସ୍ଥାରେ ବୁଲବୁଲ ମତେ ଡାକି କହିଲା, ''ନନା ! ଏ ହଉଚି ମୋ ପିଲାଦିନ ସାଙ୍ଗ ଅନ୍ନପୂର୍ଣ୍ଣା । ଆଉ ଏ ହଉଚନ୍ତି ପ୍ରଫେସର ତ୍ରିଲୋକି ପାଣ୍ଡେ, ୟା'ର ବର । ଏମାନେ ରହନ୍ତି ସାନ୍ତାକ୍ରୁଜରେ– ଏଠୁ କିଛି ଦୂରରେ । ଆମେ ଆଜି ଏଇମାନଙ୍କ ଘରେ ରହିବାର ବନ୍ଦୋବସ୍ତ କରାଯାଇଚି ।''

ଏ କଥା ଶୁଣି ଅଂଜି ଟିଟା ଦୁଇ ଭଉଣୀ ନିରୁପମାଙ୍କୁ ଅଟକାଇ କହିଲେ, ''ଆମେ ଛାଡିବୁ ନାହିଁ ଏମାନଙ୍କୁ । ଏମାନେ ଆମ ଘରେ ରହିବେ. . .'' ଏଇ ଧରାପରା ଭିତରେ କଟିଗଲା କିଛି ସମୟ । ତେବେ ମୁଖ୍ୟ ସମସ୍ୟା ହେଲା ରାତିରେ ପିନ୍ଧିବୁ କ'ଣ ? ସବୁତକ ଲୁଗାପଟା ତ ରହିଗଲା ସୁଟ୍‌କେଶ୍‌ରେ । ଏହାପରେ ଚାଲିଲା ଏୟାରପୋର୍ଟ ଅଫିସ୍‌ରେ ଲେଗଜ୍ ମିସିଂ ପାଇଁ କଂପ୍ଲେନ ଦେବା ଇତ୍ୟାଦି ବ୍ୟାପାର ନେଇ ନାନା ହଙ୍ଗାମା । ସେଥିରେ ବହୁତ ସମୟ ବିତିଗଲା ଅଯଥାରେ । ଦେଖିଲି ବୁଲବୁଲର ସାଙ୍ଗ ଅନ୍ନପୂର୍ଣ୍ଣା ଏ ହଙ୍ଗମାରେ ପୂରା ଦୋରସ୍ତ । ସେ ବିମାନ ବନ୍ଦରର କର୍ମଚାରୀମାନଙ୍କ ସହିତ ଯୁକ୍ତିତର୍କ କରି ଶେଷରେ ପଚାଶ ଡଲାର ଆଦାୟ କଲା ଆମ ପାଇଁ ରାତିପିନ୍ଧା ଲୁଗାପଟା ଖରିଦ କରିବା ଆଳରେ । ଏହା ସହିତ ଚୁକ୍ତି ହେଲା– କାଲି ସକାଳ ଫ୍ଲାଇଟ୍‌ରେ ମିସିଂ ଲଗେଜ ସବୁ ଆସିବ ମିନିଆପଲିସ୍‌ରୁ– ଆମ ଲଗେଜ ଘରେ ଡେଲିଭରି ଦେବ କଂପାନୀ ତାଙ୍କ ଡେଲିଭରି ଭ୍ୟାନ୍ ଯୋଗେ ।

ରାତି ବଢିଗଲାଣି ସେତେବେଳକୁ ବହୁତ । ବହୁ କଷ୍ଟରେ ଅଂଜି ଟିଟାଙ୍କୁ ବୁଝାବୁଝି କଲୁ । କଥା ଦେଲୁ ଆମେ ଯଶୋମତୀ ପାର୍କ ଭ୍ରମଣ କରିସାରି ଦୁଇଦିନ ପରେ ଫେରିବୁ । ଗୋଟିଏ ରାତି ନିଶ୍ଚୟ ରହିବୁ ସାନ୍‌ଜୋସରେ ଅଂଜି, ଟିଟାଙ୍କ ଘରେ । ସେମାନେ ବିଦାୟ ନେଲେ । ଆମେ ବସିଲୁ ଅନ୍ନପୂର୍ଣ୍ଣା ଓ ପ୍ରଫେସର୍ ପାଣ୍ଡେଙ୍କ କାର୍‌ରେ । ଗାଡି ଚାଲିଲା ସାନ୍ତାକ୍ରୁଜ ସହର ଦିଗରେ ସାନଜୋସେ ଏୟାର ପୋର୍ଟରୁ ।

କାଲିଫର୍ଣ୍ଣିଆର ଏକ ପାର୍ବତ୍ୟ ଅଂଚଳର ସରୁ ରାସ୍ତାରେ ଗାଡି ଚାଲିଥିବା ସମୟରେ ମୁଁ ଆଶ୍ଚର୍ଯ୍ୟ ହେଲି ଏଠାକାର ରାସ୍ତାର ଅବସ୍ଥା ଦେଖି । ରାସ୍ତାଟା ଆଦୌ ଆମେରିକାର ପୂର୍ବାଞ୍ଚଳରେ ଦେଖିଥିବା ହାଇୱେ ବା ଷ୍ଟେଟ୍ ରୋଡ୍ ପରି ବହୁ ଲେନ୍ ବିଶିଷ୍ଟ ପ୍ରଶସ୍ତ ଓ

ସମତଳ ଦିଶୁନଥାଏ । ମଝିରେ ମଝିରେ ରାସ୍ତା କଟାଯାଇ ଡାଇଭର୍ସନ୍ ମାନ ତିଆରି ହୋଇଥାଏ । ସେସବୁ ବଡ ବିପଦଜନକ ମଧ୍ୟ ମନେହଉଥାଏ । ରାସ୍ତାକଡକୁ ଚାହିଁ ଦେଖିଲି– ଦୁଇପଟେ ବଡ ବଡ ପାହାଡ । ଏଇ ସବୁ ପାହାଡ କଟାଯାଇ ଏଠି ରାସ୍ତା କରାଯାଇଥାଏ ଘାଟି ରାସ୍ତା ପରି । ମଝିରେ ମଝିରେ ପାହାଡ ଉପରୁ ଗଡି ଆସି କାନ୍ଥିମାନଙ୍କରେ ବିପଜ୍ଜନକ ଭାବେ ଝୁଲନ୍ତା ଅବସ୍ଥାରେ ଅଟକି ଯାଇଥିବା ବଡ ବଡ ପଥର ମାନ ଦେଖିଲି । କେତେବେଳେ ଯେ ସେ ପଥର ତଳକୁ ଗଡ଼ି ଆସି ରାସ୍ତାରେ ଯାଉଥିବା ଗାଡି ମୋଟର ଉପରେ ନପଡିବ କହି ହେବ ନାହିଁ । ମନେପଡିଲା କାଲିଫର୍ଣ୍ଣିଆର ଭୂଗୋଳ । ଆମେରିକାର ଏ ପଶ୍ଚିମ ଉପକୂଳ ଏକ ଭୂକମ୍ପ ପ୍ରବଣ ଅଂଚଳ । ଏଠି ମଝିରେ ମଝିରେ ଭୂକମ୍ପ ହୁଏ ଆଉ ପର୍ବତମାନଙ୍କରୁ ମାଟି ଅତଡା ଧସି ଆସେ ତଳର ରାସ୍ତାଘାଟ ଘରଦ୍ୱାର ଉପରକୁ ।

''ଯାତିକା ରାସ୍ତାଘାଟ ଏମିତି'' – ପ୍ରଫେସର ପାଣ୍ଡେ ଗୋଟାଏ ଡାଇଭର୍ସନ୍ ବାଟେ ସାବଧାନରେ ବାଟ କାଟୁକାଟୁ କହିଲେ, ''କିନ୍ତୁ ଆମ ଘରଟା ସାନ୍ତାକ୍ରୁଜର ଏକ ଚମତ୍କାର ଅଂଚଳରେ– ଠିକ୍ ପାସିଫିକ୍ କୋଷ୍ଟ ଲାଇନ୍ ଉପରେ । ଏଇ ପାହାଡଟା ପାରିହେଇଗଲେ ପହଞ୍ଚିବା ସମତଳ ଅଂଚଳରେ । ଆମ ଘର ପାଖରୁ କୋଷ୍ଟ୍ ଲାଇନ ଦୁଇ ମିନିଟର ରାସ୍ତା. . . ।''

କଥାବାର୍ତ୍ତା ଭିତରେ ପ୍ରଫେସର ତ୍ରିଲୋକି ପାଣ୍ଡେଙ୍କ ପରିଚୟ ମିଳିଗଲା । ସେ ଉତ୍ତର ପ୍ରଦେଶର ଲୋକ । କିନ୍ତୁ କୌଣସି ସୂତ୍ରରେ ଓଡ଼ିଶାର ଝିଅ ଶ୍ରୀମତୀ ଅନ୍ନପୂର୍ଣ୍ଣା ବିଶ୍ୱାଳଙ୍କ ସହିତ ଉଭୟଙ୍କର ଦେଖାସାକ୍ଷାତ୍ ଅନ୍ତେ ଦୁହେଁ ବୈବାହିକ ସୂତ୍ରରେ ଆବଦ୍ଧ ହୋଇଥିଲେ ଏବଂ ଉଭୟ ବର୍ତ୍ତମାନ ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟର ପ୍ରଫେସର । ଅନ୍ନପୂର୍ଣ୍ଣାଙ୍କୁ ମୁଁ ଚିହ୍ନିଥିଲି କଟକରେ । ତାଙ୍କ ପିତା ସ୍ୱର୍ଗତ ହଳଧର ବିଶ୍ୱାଳ ସେକେଣ୍ଡାରୀ ବୋର୍ଡ ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ମୋ ବଡଝିଅ ପ୍ରଜ୍ଞେଶନନ୍ଦିନୀ (ବୁଲବୁଲ) ଓ ଅନ୍ନପୂର୍ଣ୍ଣା ସେଇ ବୋର୍ଡସ୍କୁଲର ଛାତ୍ରୀ ଓ ସେଇଠି ଆରମ୍ଭ ସେ ଦୁହିଁଙ୍କର ବନ୍ଧୁତା । ଅନ୍ନପୂର୍ଣ୍ଣା ଓ ବୁଲବୁଲ ଦୁହେଁ ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏକାଠି ପଢୁଥିଲେ– ଏମ୍.ଏ ସୋସିଓଲଜିରେ । ଅନ୍ନପୂର୍ଣ୍ଣା ପିଏଚ୍.ଡି କଲା ପରେ ବର୍ତ୍ତମାନ ସୋସିଓଲଜିର ପ୍ରଫେସର୍ ଏଠାକାର ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟରେ ।

ରାତି ପ୍ରାୟ ଗୋଟାଏରେ ଆମେ ଡକ୍ଟର ପାଣ୍ଡେ ଓ ଅନ୍ନପୂର୍ଣ୍ଣାଙ୍କ ଘରେ ପହଞ୍ଚିଲୁ । ସେମାନଙ୍କର ଦୁଇ ପୁଅ ଆଲୋକ ଓ ଆକାଶ ଆମକୁ ସ୍ୱାଗତକଲେ । ବଡପୁଅ ଆଲୋକ ହାଇସ୍କୁଲ୍ ଗ୍ରାଜୁଏସନ୍ କରିଥାଏ ଏଇ ବର୍ଷ । ଆଗାମୀ ଦୁଇଦିନ ପରେ ତାର ଗ୍ରାଜୁଏସନ୍ ଉତ୍ସବ ପାଳିତ ହେବାକୁ ଥାଏ । ଏ ଉତ୍ସବରେ ଯୋଗଦେବାକୁ ଆମକୁ ନିମନ୍ତ୍ରଣ ରହିଥାଏ ପୂର୍ବରୁ ।

ଆଲୋକ ଓ ଆକାଶଙ୍କୁ ଭେଟିବା ସୁଯୋଗରେ ଦେଖିଲି ସେମାନଙ୍କ ଘରେ ଅଛନ୍ତି ଦୁଇଜଣ ତଗଡା ତଗଡା ଦରୁଆନ୍– ଦୁଇଟି ଭଦ୍ର ଲାବ୍ରାଡର୍ କୁକୁର । ଗୋଟିଏ ଟିକିଏ ବୁଢାଳିଆ, ଅନ୍ୟଟି ବେଶ ଚଗଲା ତରୁଣ । ଏ ଦୁହେଁ ବିଶେଷ ଓଜର ଆପତ୍ତି ନକରି ଆମକୁ ଭେଟିବା ପରେ ଆପଣାର କରିନେଲେ । ଡକ୍ଟର ପାଣ୍ଡେଙ୍କ ସହିତ ଡିନର୍ ଖାଇବା ସମୟରେ ଚିହ୍ନା ପରିଚୟ ହେଲୁ । ଚେହେରାରୁ ଦିଶୁଥାନ୍ତି– ଉତ୍ତରଭାରତୀୟ । ଡେଙ୍ଗା, ରଙ୍ଗ ଫରଚା ସୁନ୍ଦର ଗଢଣ, ବୁଦ୍ଧିଦୀପ୍ତ ବ୍ରାହ୍ମଣ ଚେହେରା । କଥାବର୍ତ୍ତାରୁ ଠଉର କରିହେଲା– ଆଧୁନିକ ବୁଦ୍ଧିଜୀବୀ ପ୍ରଫେସର୍ ହେଲେ ମଧ୍ୟ ଭିନ୍ନ ମତାମତ ପ୍ରତି ସହନଶୀଳତା ସୁସ୍ପଷ୍ଟ । ଘର ଭିତରକୁ ପଶୁପଶୁ ଦେଖିସାରିଥାଏ– ଘରର ଅନ୍ଧିକନ୍ଧି ସବୁଆଡେ, ଏପରିକି ଗ୍ୟାରେଜରେ ମଧ୍ୟ ଭର୍ତ୍ତିହେଇଥାଏ ଥାକଥାକ ବହି । ଆମେରିକା ରହଣିବେଳେ ମୁଁ ପୂର୍ବରୁ କେବେ କୌଣସି ବିଶ୍ୱବିଦ୍ୟାଳୟ ପ୍ରଫେସରଙ୍କ ଘରେ ଅତିଥି ହୋଇନଥିଲି । ଏ ଥିଲା ମୋ ପାଇଁ ଗୋଟିଏ ସୁଯୋଗ ଆମେରିକାରେ ରହୁଥିବା ଜଣେ ପ୍ରଫେସରଙ୍କ ସହିତ କିଛି ସମୟ ବିତାଇବା ଓ ମତ ବିନିମୟକରିବା । ସେସବୁ ବାକି ରହିଲା କାଲି ଓ ପରଦିନମାନଙ୍କ ପାଇଁ ।

ପାଣ୍ଡେଜୀ ମୋ ରାତି ପିନ୍ଧା ପାଇଁ ଗୋଟିଏ ସେଟ୍ ନୂଆ ନାଇଟ୍ ଡ୍ରେସ୍ ଯୋଗାଇଦେଲେ । ଆମେ ଶୋଇବାକୁ ଗଲୁ । ରାତିର ଅବଶିଷ୍ଟାଂଶ ମୋର କଟିଲା ଶେଯ ଉପରେ ପଡି ଖଣ୍ଡେ ବହି ପଢିବାରେ । ବହିଟିକୁ ସେଇ ଶୋଇବା ବଖରରା ବହି ଥାକରୁ ଆବିଷ୍କାର କରିଥିଲି । ସେଇଟି ଥିଲା ୧୯୯୨ର ଶାନ୍ତି ପୁରସ୍କାର ପାଇଥିବା ରିଗୋବର୍ଟା ମେଞ୍ଚୁଙ୍କ ଲୋମହର୍ଷକ ଜୀବନ କାହାଣୀ ।

ରିଗୋବର୍ଟା ମେଞ୍ଚୁ କେନ୍ଦ୍ର ଆମେରିକୀୟ ଏକ ଅର୍ଥନୈତିକ ଅନଗ୍ରସର ଦେଶ ଗ୍ୱେଟାମାଲାର ଜଣେ ଆଦିବାସୀ ''ଇଣ୍ଡିଆନ୍'' । ସମଗ୍ର ଆମେରିକା ମହାଦେଶ– ଉଭୟ ଉତ୍ତର ଓ ଦକ୍ଷିଣର ସ୍ଥାନୀୟ ଆଦିବାସୀମାନଙ୍କ ପରିଚୟ ହେଲା ୧୪୯୨ରେ କଲମ୍ବସ୍‌ଙ୍କ ଆମେରିକା ଆବିଷ୍କାର ସମୟର ଆରୋପିତ ଉପାଧି ଇଣ୍ଡିଆନ୍ । ନିଜ ମାଟିର ସନ୍ତାନମାନଙ୍କର ସଂସ୍କୃତି, ସ୍ୱାତନ୍ତ୍ର୍ୟ ଓ ମାନବିକ ଅଧିକାର ସାବ୍ୟସ୍ତ କରିବାକୁ ମେଞ୍ଚୁ ଅକଥନୀୟ ନିର୍ଯାତନା ବରଣ କରିଥିଲେ । ତାଙ୍କର ଜୀବନକାହାଣୀ ଲେଖିଥିଲେ ଜଣେ ଫରାସୀ ଲେଖକ ଯେ ତାଙ୍କ ସହିତ ସାକ୍ଷାତ୍ କରି ଏହି ଜୀବନ ବୃତ୍ତାନ୍ତକୁ ଲିପିବଦ୍ଧ କରିଥିଲେ । ସେଇ ବିଖ୍ୟାତ ପୁସ୍ତକର ଇଂରେଜୀ ଅନୁବାଦଟି ସେ ରାତିରେ ପଢୁପଢୁ ମୋ ଆଖିକୁ ନିଦ ଆସିଲା ନାହିଁ । ଭୋର୍ ବେଳାକୁ ଆଖିପତା ଟିକେ ପଡିଯିବାବେଳେ ଦେଖିଲି ମୋ ଶୋଇବା ଘର କବାଟ ଚଉକାଠ ଫ୍ରେମ୍ ଭିତରେ ଦଣ୍ଡାୟମାନ ହୋଇଛନ୍ତି ସତ୍ୟସାଇବାବା । ମୁଁ ତାଙ୍କ ପାଦ ପାଖରେ ପ୍ରଣାମ ଜଣାଇଲି ଓ ହାତ ବଢେଇଲି ପାଦ ସ୍ପର୍ଶ କରିବାକୁ– କିନ୍ତୁ ବାବା ତାଙ୍କ ପାଦ ଘୁଞ୍ଚେଇ ନେଲେ ଓ ଉଭେଇଗଲେ ।

ସାନ୍ତାକ୍ରୁଜ୍ କାଲିଫର୍ଣ୍ଣିଆ–

– ୨୨, ଜୁନ୍, ୨୦୦୬ ।

ପରଦିନ ସକାଳେ ପାଣ୍ଡେଜୀଙ୍କ ସହିତ ବ୍ରେକ୍‌ଫାଷ୍ଟ୍ ସମୟରେ ଘରର ଚାରିକାନ୍ଥ ଉପରେ ଆଖି ବୁଲୋଉ ବୁଲୋଉ ଦେଖିଲି କାନ୍ଥର ଠାଏ ଝୁଲୁଚି ରମଣମହର୍ଷିଙ୍କର ଗୋଟିଏ ଫଟୋଗ୍ରାଫ୍ । ଜାଣିଲି ଏ ଘରେ ଭାରତୀୟ ମହାତ୍ମାମାନଙ୍କର ଚେତନା ଭରପୂର୍ ହୋଇରହିଚି ।

ପ୍ରଫେସର୍ ପାଣ୍ଡେ ଜଣେ ମେଳାପୀ ମଣିଷ । ମୋର ସାହିତ୍ୟିକ କୃତି ସଂପର୍କରେ ସେ ପୂର୍ବରୁ କିଛିଟା ଅବଗତ ଥିଲେ । ବ୍ରେକ୍‌ଫାଷ୍ଟ୍ ଟେବୁଲ୍‌ରେ ପଡିଲା ଭାରତୀୟ ସଂସ୍କୃତି ଓ ସାହିତ୍ୟ ଇତ୍ୟାଦିର ସାଂପ୍ରତିକ ସ୍ଥିତି ବିଷୟ । ସେ ରବୀନ୍ଦ୍ର ସାହିତ୍ୟରେ ଜଣେ ଅବଗାହୀ ବ୍ୟକ୍ତି ମନେହେଲା । ବୋଧହୁଏ. ଶାନ୍ତିନିକେତନରେ ସେ କିଛି ବର୍ଷ ଅଧ୍ୟୟନ ମଧ୍ୟ କରିଥିଲେ ।

କଥା ପ୍ରସଙ୍ଗରେ ତାଙ୍କ ନିଜ ପିଲାଦିନ କଥା କହୁକହୁ କହିଲେ– ସେ ଭାରତର ଉତ୍ତରାଖଣ୍ଡ ରାଜ୍ୟର ଅଧିବାସୀ ଓ ନିଷ୍ଠାପର ବ୍ରାହ୍ମଣ ପଣ୍ଡିତ ପରିବାରର ସନ୍ତାନ । ତାଙ୍କ ବାପା ଜଣେ ସଂସ୍କୃତ ସ୍କଲାର୍ । ନିଜ ଘର ବା ନିଜ ହାତରନ୍ଧା ରୋଷେଇ ଛଡା ବାପା ତାଙ୍କର ଅନ୍ୟ କୋଉଠି ଖାଦ୍ୟ ଛୁଅନ୍ତି ନାହିଁ । ଥରେ ସେ ନିଜର କଲେଜପଢୁଆ ପୁଅକୁ ଦେଖିବା ପାଇଁ ସହରକୁ ଆସିଥିଲେ । ପୁଅ ସେତେବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ର । ସେଦିନ ରାତିରେ ବାପାଙ୍କୁ ହଷ୍ଟେଲ୍‌ରେ ନିଜ ରୁମ୍‌ରେ ରହିବାକୁ ଅନୁରୋଧ କଲେ ପୁଅ । କିନ୍ତୁ ବାପା ରହିଲେ ସିନା, ସାରା ରାତି ଉପାସରେ ରହିଲେ । ଏପରିକି ହଷ୍ଟେଲର ପାଇପ୍ ପାଣି ପିଇବାକୁ ମନାକଲେ । ଏକଥା କହିବା ଭିତରେ ପାଣ୍ଡେ ବର୍ଣ୍ଣନାକଲେ କିପରି ସେ ରାତିରେ ବାପାଙ୍କ ପାଇଁ ପିଇବା ପାଣି ଆଣିବାକୁ ଗଲେ ବନାରସର ଗଙ୍ଗା ଘାଟକୁ । ଗୋଟିଏ ମାଟି କଳସୀରେ ଗଙ୍ଗାଜଳ ଭରି କଳସୀଟିକୁ ନିଜ ମୁଣ୍ଡରେ ନେଇ ସେ ପହଞ୍ଚିଥିଲେ ବାନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ରାବାସରେ । ଏ ଦୃଶ୍ୟ ଦେଖି ଛାତ୍ରବାସର ଅନ୍ତେବାସୀମାନେ ଅଭିଭୂତ ହୋଇଥିଲେ । ଏ ଥିଲା ସେଦିନର ଉତ୍ତରଭାରତର କୁଳୀନ ବ୍ରାହ୍ମଣମାନଙ୍କର ଶୁଦ୍ଧ ପବିତ୍ର ଜୀବନର ଏକ ନମୁନା ।

ଏ କଥାର ତାତ୍ପର୍ଯ୍ୟ ଥିଲା– ଜଣେ ସମାଜବିଜ୍ଞାନୀଭାବେ ପ୍ରଫେସର୍ ତ୍ରିଲୋକି ପାଣ୍ଡେଙ୍କୁ କିପରି ପ୍ରାଚୀନ ଭାରତୀୟ ସାମାଜିକ ପରମ୍ପରାକୁ ଅତିକ୍ରମ କରିବାକୁ ହୋଇଥିଲା– ସୁଦୂର ଓଡିଶାର ସୁଯୋଗ୍ୟା କନ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ବିଶ୍ୱାଳଙ୍କ ସହିତ ତାଙ୍କର ବିବାହ ପ୍ରସଙ୍ଗରେ । ଅନ୍ନପୂର୍ଣ୍ଣାଙ୍କୁ ସେ ଭେଟିଥିଲେ ସମ୍ବଲପୁର ବିଶ୍ୱଦ୍ୟାଳୟରେ ଅନୁଷ୍ଠିତ କୌଣସି ଏକ ଏକାଡେମିକ୍ ସେମିନାର୍‌ରେ ।

ପାଂଣ୍ଡେଙ୍କ ପ୍ରତି ମୋର ସମ୍ମାନ ଆହୁରି ବଢିଗଲା ତାଙ୍କର ସଂପୂର୍ଣ୍ଣ ନିର୍ବିକାର

ମନୋଭାବକୁ ଲକ୍ଷ୍ୟ କରି । ବ୍ରେକଫାଷ୍ଟ୍ ଶେଷ ନହେଉଣୁ ଦେଖିଲି– ସେ ନିଜ ସିରିଆଲ୍ ଗିନାକୁ ଆଉ ମୁଠାଏ ସିରିଆଲ୍ ଓ ବେଶ୍ କିଛି ପରିମାଣରେ ଦୁଧ ଢାଳିଲେ । ନିଜ ଚେୟାର୍ କଡରେ ଅପେକ୍ଷାରତ ପୋଷା ଲାବ୍ରାଡରକୁ ସେ ସେତକ ଅର୍ପଣ କଲେ । ପ୍ରିୟ କୁକୁରଟି ମନଖୁସିରେ ପାଣ୍ଡେଙ୍କ ଖାଇବା ପ୍ଲେଟ୍‌କୁ ଚାଟିଚୁଟି ଖାଇଦେବାର ଦୃଶ୍ୟ ଦେଖିଲି । ନିଜ ଥାଳୀରେ କୁକୁର ପାଇଁ ଆହାର ପରଷିଦେବା ଜଣେ ଉତ୍ତରଭାରତୀୟ ବ୍ରାହ୍ମଣ ସନ୍ତାନ ପକ୍ଷରେ ନିଶ୍ଚୟ ଚୂଡାନ୍ତ ଆତ୍ମବିକାରଶୂନ୍ୟତାର ଲକ୍ଷଣ ।

ପାଣ୍ଡେ ଜଣେ ଭାରତପ୍ରେମୀ ବ୍ୟକ୍ତି । ତାଙ୍କ ସହିତ ମୋର ଆଳାପ ଆଲୋଚନା ଭିତରେ ମୁଁ ତାଙ୍କ ମତ ଜାଣିବାକୁ ଏକ ଗୂଢ-ତାତ୍ତ୍ୱିକ ପ୍ରଶ୍ନ ଉତ୍‌ଥାପନ କଲି । ଯଦିଚ ମୁଁ ନିଜେ ଜଣେ ଇଣ୍ଡୋଲଜିଷ୍ଟ୍ (ଭାରତ-ତତ୍ତ୍ୱବିତ୍) ନୁହେଁ ତଥାପି ଇଣ୍ଡୋଲଜି ସଂପର୍କରେ ମୁଁ କିଛି ଅଧ୍ୟୟନ କରେ । ସେଇ ଯତ୍‌ସାମାନ୍ୟ ଜ୍ଞାନକୁ ନେଇ ମୁଁ ଯେତେବେଳେ ତାଙ୍କ ଅଭିମତ ବୁଝିବାକୁ ଚେଷ୍ଟାକରି ପଚାରିଲି, ''ଡକ୍ଟର ପାଣ୍ଡେ, ମୁଁ କେତେକ ଇଣ୍ଡୋଲଜି ବହି ଅଧ୍ୟୟନ କରି ଜାଣିବାକୁ ପାଇଛି– ପ୍ରାଚୀନ ଭାରତ ସଂପର୍କରେ ଆଜିର ଅଧିକାଂଶ ଇତିହାସ ପାଠ୍ୟପୁସ୍ତକ ବିଭ୍ରାନ୍ତିଜନକ । ସେସବୁ ବହିରେ ସ୍କୁଲପିଲାମାନଙ୍କୁ ପଢାଯାଏ ବୈଦିକ ଭାରତର ଆର୍ଯ୍ୟମାନେ ବାହାର ଦେଶମାନଙ୍କରୁ ଆସିଥିଲେ । ସଂସ୍କୃତ ଭାଷା ଭାରତର ନୁହେଁ– ବାହାରୁ ଆମଦାନୀ ଏକ ବର୍ବର ଚାରଣ ଜାତିର ଭାଷା ଯେଉଁ ମାନଙ୍କୁ କୁହାଯାଏ ଆର୍ଯ୍ୟ । "Aryan Migration" ସଂପର୍କରେ ଆପଣଙ୍କର ମତ କ'ଣ ?''

ପ୍ରଫେସର୍ ପାଣ୍ଡେ ଚୁପ୍ ରହିଲେ ଓ ସେ ବିଷୟରେ ମୋ'ଠାରୁ ଅଧିକ କିଛି ଶୁଣିବାକୁ ଚାହିଁଲେ ।

ମୁଁ ତାଙ୍କୁ ମୋ ନିଜର ମତ ଜଣାଇଲି । କହିଲି, ''ମୁଁ କେତେଗୁଡିଏ ଗବେଷଣାତ୍ମକ ପୁସ୍ତକ ଅଧ୍ୟୟନ କରିଛି– ୧୯୦୫ରେ ପ୍ରକାଶିତ "Four Principal Religions of the World : by Carlyle, The Hittits of Anatolia (Modern Turkey), The Hindu Dharma by The Shankaracharya of Kanchi (Chandrasekharananda Saraswati), The Hindu America by Bhikhyu Chaman Lal and my friend Dr. N. C. Panda's research based Vedic Novel titled – 'Sapata Sindhu' etc । ସେଥିରୁ ମନେହୁଏ ଆଧୁନିକ ଐତିହାସିକମାନେ ଭାରତ ପ୍ରତି ଜାଣି ଜାଣି ବହୁ ଅବହେଳା କରିଆସିଛନ୍ତି । ସେମାନେ ଆମକୁ ବିଶ୍ୱାସ କରିବାକୁ ବାଧ୍ୟ କରୁଛନ୍ତି ଯେ ଆର୍ଯ୍ୟମାନେ ମଧ୍ୟ-ଏସିଆରୁ ଭାରତକୁ ଆସିଥିଲେ । ସେମାନେ ହିଁ ସଂସ୍କୃତ ଭାଷାକୁ ଆଣିଥିଲେ ମଧ୍ୟ ଏସିଆ ଇତ୍ୟାଦି ସ୍ଥାନରୁ । ସେମାନଙ୍କ କଥା ବିଶ୍ୱାସକଲେ ମନେହେବ ଭାରତର ଆର୍ଯ୍ୟମାନେ ଆଦୌ ସଂସ୍କୃତିସଂପନ୍ନ ମାନବ ଗୋଷ୍ଠୀ ନଥିଲେ– ସେମାନେ ଥିଲେ ଚାରଣବୃତ୍ତିଧାରୀ ଦୁର୍ଦ୍ଧର୍ଷ

ବର୍ବର ଜାତିର ଲୋକ ଇତ୍ୟାଦି । କିନ୍ତୁ ମୁଁ ଯେଉଁ ଗବେଷଣାତ୍ମକ ପୁସ୍ତକ ଇତ୍ୟାଦିର ନାଁ ଉଲ୍ଲେଖକଲି ସେ ସବୁରେ ଏହାର ଠିକ୍ ଓଲଟା ପ୍ରମାଣ ମିଳୁଛି । ଆର୍ଯ୍ୟମାନେ ପଶ୍ଚିମରୁ ଆସିନଥିଲେ । କାର୍‌ଲାଇଲ୍‌ଙ୍କ ମତରେ ପାରସ୍ୟ ସଭ୍ୟତାର ଉତ୍ସ ବୈଦିକ ଭାରତର ସିନ୍ଧୁ ଉପତ୍ୟକାରେ । ସେମାନଙ୍କ ଅଗ୍ନି ପୂଜା, ସେମାନଙ୍କ ଭାଷା, ସଂସ୍କୃତି ସବୁ ଭାରତରୁ । ଆନାଟୋଲିଆ (ତୁର୍କୀ)ର ପ୍ରାଚୀନ ହିଟିଟ୍‌ସ୍‌ମାନେ ଇନ୍ଦ୍ର ରୁଦ୍ର ବରୁଣ ପୂଜକ ଥିଲେ । ଏସବୁ ଦେବତା ବେଦର ମୂଳ ଦେବତା । ହିଟିଟ୍‌ସ୍‌ମାନେ ପାରସ୍ୟର ପଶ୍ଚିମକୁ ଆନାଟୋଲିଆର ଅଧିବାସୀ । ଏମାନେ ମଧ୍ୟ ଭାରତରୁ ବିଚ୍ଛୁରିତ ଏକ ଆର୍ଯ୍ୟଶାଖା । ସେହିପରି ଆନାଟୋଲିଆର ପଶ୍ଚିମକୁ ଗ୍ରୀସ୍ । ଗ୍ରୀସ୍ ଶବ୍ଦର ଉତ୍ପତ୍ତି ଦ୍ରୀହୁରୁ । ଦ୍ରୀହୁ ଗୋଟିଏ ଆର୍ଯ୍ୟ ଡାୟାସ୍ପୋରା (ବିଚ୍ଛୁରିତ ଶାଖା) । ଏ ବିଷୟରେ ଋକ୍‌ବେଦର ଦଶରାଜ୍ଞ ଯୁଦ୍ଧ ଉପାଖ୍ୟାନରେ ସ୍ପଷ୍ଟ ଉଲ୍ଲେଖ ଅଛି । ଗ୍ରୀକ୍ ପୁରାଣର ସମସ୍ତ ଦେବଦେବୀଙ୍କ ସହିତ ଭାରତୀୟ ପୁରାଣର ସବୁ ଦେବଦେବୀଙ୍କ ସାମଞ୍ଜସ୍ୟ ସେଇ କାରଣରୁ ଏତେ ବେଶୀ । ବୈଦିକ ଯୁଗରେ ଆର୍ଯ୍ୟ-ମାନଙ୍କର ବିଚ୍ଛୁରଣତତ୍ତ୍ୱ ଅଧ୍ୟୟନରୁ ସ୍ପଷ୍ଟ ପ୍ରମାଣିତ ହେବ ବୈଦିକ ସଂସ୍କୃତ ଭାଷା ଓ ବୈଦିକ ସଂସ୍କୃତିହିଁ ସମସ୍ତ ଇଣ୍ଡୋୟୁରୋପୀୟାନ୍ ଗୋଷ୍ଠୀର ଭାଷା ଏବଂ ସଭ୍ୟତାର ଜନନୀ । ଏହାର ବିପରୀତ କଥା ଆମକୁ ବରାବର କହିଆସୁଚନ୍ତି ପାଶ୍ଚାତ୍ୟ ପଣ୍ଡିତମାନେ । ଭାରତର ସ୍ୱାଧୀନତା ପରେ ପରେ ଏ ଭିତରେ ବହୁ ଗବେଷଣା ହୋଇଗଲାଣି 'ଇଣ୍ଡୋଲଜି'ରେ । "The Indian presence all over the world is growing and gathering momentum. The Indian diaspora have started spreading from the Vedic period all through the human history. Bhikhyu Chaman Lal's Hindu America provides ample facts for proving that the Indian maritime people have crossed the Pacific by boats and reached Mexico and Peru regions in pre-Christian eras. The Aryan migration is still in force. Otherwise oneman, Triloki Pande, born in a conservative Brahmin family of Uttarankhanda of India, could not be found to teach Sociology and Anthropology in an American University, here and now in California, on the remote coast of the Pacific Ocean !"

ପାଣ୍ଡେଜୀ ହସିଲେ । କିନ୍ତୁ ସେଇ ବ୍ରେକଫାଷ୍ଟ୍ ଟେବୁଲରେ ଆମର ଯତ୍‌ସାମାନ୍ୟ ଆଲୋଚନାକୁ ହସି ଉଡେଇ ନଦେଇ ସେ କହିଲେ– "Your Aryan Migration and the Diaspora theory is very interesting. I would like to hear more of it."

ଆମ ହାତରେ ସମୟ ବେଶୀ ନଥିଲା । ବୁଲବୁଲ ଓ ନିରୁପମାଙ୍କୁ ସାଙ୍ଗରେ ଧରି

ଅନ୍ନପୂର୍ଣ୍ଣା ପହଞ୍ଚିଲା । କହିଲା, "ମଉସା ! ବାହାରନ୍ତୁ– ପ୍ରଶାନ୍ତମହାସାଗର ଦେଖିବାକୁ ଯିବେ ପରା ? ବାହାରନ୍ତୁ– ଡେରିହେଇଯାଉଚି ।"

ପ୍ରଶାନ୍ତ ମହାସାଗର ନାଁ ପଡିବା ମାତ୍ରେ ମୁଁ ଚମକିପଡିଲି । ମନେପଡିଲା– ଆମେ କାଲିଫର୍ଣ୍ଣିଆ ଆସିଥିଲୁ ମୁଖ୍ୟତଃ ଦୁଇଟି ଉଦ୍ଦେଶ୍ୟ ନେଇ । ଚିର ଅଭିଳଷିତ ଇଚ୍ଛା– ଆମେରିକାର ପଶ୍ଚିମ ସୀମାନ୍ତର ସେଇ ବିସ୍ମୟକର ଭୌଗୋଳିକ ଜଳଭାଗ ପ୍ରଶାନ୍ତ ମହାସାଗରର ଜଳ ସ୍ପର୍ଶକରି ତର୍ପଣ କରିବା ଓ କାଲିଫର୍ଣ୍ଣିଆର ଅନ୍ୟତମ ଦର୍ଶନୀୟ ସ୍ଥାନ ଯଶୋମିତି ଜାତୀୟ ଉଦ୍ୟାନ ଦର୍ଶନ କରିବା । ପାଣ୍ଡେଙ୍କଠାରୁ ବିଦାୟନେଇ ଅନ୍ନପୂର୍ଣ୍ଣାଙ୍କ ନେତୃତ୍ୱରେ ବାହାରିପଡିଲୁ ଆମେ ଦଳଟିଏ ।

## ପ୍ରଶାନ୍ତ ମହାସାଗର ଦର୍ଶନ–

ଅନ୍ନପୂର୍ଣ୍ଣା ନିଜ କାର୍ ଡ୍ରାଇଭ୍ କରି ଆମକୁ ନେଇଗଲେ ସମୁଦ୍ର କୂଳକୁ । ଆମ ସାଙ୍ଗରେ ଥା'ନ୍ତି ତାଙ୍କର ଦୁଇ ପୋଷା ଲାବ୍ରାଡର । ପାଣ୍ଡେଙ୍କ ଘରୁ ଅଳ୍ପ ଦୂରରେ ସମୁଦ୍ର । ଏକ ଚମତ୍କାର ପାଇନ୍ ଅରଣ୍ୟ ଭିତର ଦେଇ ଯାଉଥାଉ । ପାଗ ଖୁବ୍ ମନୋରମ । ସକାଳର ସୂର୍ଯାଲୋକ ବେଶ୍ ଉଜ୍ଜ୍ୱଳ । ପବନ ଆରାମଦାୟକ । ବାଟରେ ଦିଶିଲା ଏକ ପବ୍ଲିକ୍ ପାର୍କର ସାଇନ୍‌ବୋର୍ଡ । ଲେଖାହୋଇଥାଏ– "National Bridge Beach SZ.– Watch the World's largest butterflies, the Monarch Butterflies here."

ଅନ୍ନପୂର୍ଣ୍ଣା କହିଲେ, "ଏଠିକି ଗୋଟାଏ ଜାତିର ଭ୍ରମଣକାରୀ ପ୍ରଜାପତି ପ୍ରତିବର୍ଷ ଉଡିଉଡି ଆସନ୍ତି ସୁଦୂର ଉତ୍ତରରୁ– କାନାଡା ଅଞ୍ଚଳରୁ । ସେମାନଙ୍କୁ କୁହାଯାଏ 'ମନାର୍କ ବଟର୍‌ଫ୍ଲାଇଜ୍' । ଖୁବ୍ ବଡ ବଡ ଆକାରର ରଙ୍ଗବେରଙ୍ଗ ଚିତ୍ର ବିଚିତ୍ର ଦର୍ଶନୀୟ ପ୍ରଜାପତି । ସେମାନଙ୍କୁ ଦେଖିବାକୁ ଆନ୍ତର୍ଜାତିକ ଟୁରିଷ୍ଟ୍‌ମାନଙ୍କର ଖୁବ୍ ଭିଡ ହୁଏ ପ୍ରତିବର୍ଷ ଏଇ ସମୟରେ ଏ ପାର୍କରେ । ଯିବା ?"

ସେଦିନ ହୁଏତ ପାର୍କ ଭିତରେ ପଶିଥିଲେ ଆମେ ଦେଖିବାର ସୁଯୋଗ ପାଇପାରିଥାନ୍ତୁ ସେଇ ବିଚିତ୍ର ଜାତିର ପ୍ରଜାପତିର । କିନ୍ତୁ ଆମର ଆଜି ଦିନର ଭ୍ରମଣ ସମୟ ଥିଲା ଅତ୍ୟନ୍ତ ସୀମିତ । ଦି'ପହରେ ଏଠାକାର ବିଶ୍ୱବିଦ୍ୟାଳୟ ବୁଲି ଦେଖିବାର ପ୍ରୋଗ୍ରାମ । ସେଥିପାଇଁ ଆମେ ପ୍ରଥମେ ସମୁଦ୍ର ଦର୍ଶନ ପାଇଁ ଆଗେଇଲୁ । ପ୍ରଶାନ୍ତ ମହାସାଗର ଦର୍ଶନପାଇଁ ବହୁ ବର୍ଷର ଏକ ସଂକଳ୍ପ ଆଜି ସଂପୂର୍ଣ୍ଣ ହେବାର ଥିଲା– ତେଣୁ ଆମେ ଆଗେଇଲୁ ପ୍ରଥମେ ସମୁଦ୍ରକୂଳ ଦିଗରେ ।

ଅଳ୍ପ ଦୂରରୁ ଦୃଶ୍ୟମାନ ହେଲା ପ୍ରଶାନ୍ତ ମହାସାଗରର ନୀଳିମା । କୂଳରୁ କିଛି ଦୂରରେ କାରରୁ ଓହ୍ଲେଇଲୁ । ଅନ୍ନପୂର୍ଣ୍ଣା ଆମକୁ ବୁଲିବାକୁ ଛାଡିଦେଇ କୁକୁର ଦୁଇଟିଙ୍କ ସେବାରେ

ବାହାରିଗଲେ । ଆମ ସାଙ୍ଗେ ସାଙ୍ଗ ହେଇଥିବା ଦୁଇ କିଶୋର ବନ୍ଧୁ– ପ୍ରତୀକ ଆଉ ଆଲୋକ ବୁଲିବାହାରିଲେ ନିଜ ମନଖୁସିରେ । ବୁଲିବା ପାଇଁ ପାଗଟା ମଧ୍ୟ ଖୁବ୍ ବଢ଼ିଆଥାଏ ।

ନିରୁପମା, ବୁଲବୁଲ ଓ ମୁଁ ଚାଲିଲୁ ସମୁଦ୍ରକୂଳକୁ । ପ୍ରଶାନ୍ତ ମହାସାଗରର ଏଇ ଉପକୂଳ ଅଞ୍ଚଳର ଦୃଶ୍ୟ ମୋ ପାଇଁ ଥିଲା ଏକ ସଂପୂର୍ଣ୍ଣ ଭିନ୍ନ ଜଗତର ଦୃଶ୍ୟ । ଏ ଉପକୂଳ ଆମ ପୁରୀ କୋଣାର୍କ ବା ଚାନ୍ଦିପୁରର ବାଲିଆ ବା କାଦୁଆ ବେଳା ଭୂମି ପରି ନୁହେଁ । ଏଠିକାର ଉପକୂଳ ପାହାଡ ପର୍ବତ ଘେରା । ସ୍ଥାନେ ସ୍ଥାନେ ସମୁଦ୍ର ମାଡିଆସିଥାଏ ସ୍ଥଳଭାଗକୁ– ସୃଷ୍ଟି ହେଇଥାଏ ଲେଗୁନ୍ ପରି ଛୋଟଛୋଟ ହ୍ରଦ । ବେଳାଭୂମି ସନ୍ତସନ୍ତିଆ । କିନ୍ତୁ ସମଗ୍ର ବେଳାଭୂମି ଦିଶୁଥାଏ ଏକ ଚିତ୍ରିତ ଗାଲିଚା ପରି । ଟେବ୍ଲ୍ ରୋଜ ପରି ଏକ ଜାତିର ଲଟାରେ ଆବୃତ ହୋଇଥାଏ ସମଗ୍ର ବେଳାଭୂମି । ସେଥିରେ ଭର୍ତ୍ତିହେଇଥାଏ ଫୁଲ– ଲାଲ୍, ଗୋଲାପି ଆଉ ହଳଦିଆ ରଙ୍ଗର ଫୁଲ ।

ଭାରତର ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତମାଳା ପରି ଆମେରିକାର ପଶ୍ଚିମତଟର ସୀମା ରକ୍ଷକ ପର୍ବତ ହେଲା– 'ସିଏରା– ନେଭେଡା' ପର୍ବତଶୃଂଖଳା । ଏ ପର୍ବତମାଳା ଉତ୍ତରରୁ ଦକ୍ଷିଣ– ପ୍ରାୟ ତିନିହଜାର ମାଇଲ୍ ଲମ୍ବ । ସ୍ଥାନେ ସ୍ଥାନେ ପର୍ବତକୁ ଭାଙ୍ଗି ସମୁଦ୍ର ଧସେଇ ପଶି ଆସିଥାଏ ଭୂଭାଗ ଭିତରକୁ । ସେଇଭଳି ଏକ ସ୍ଥାନରେ ଆମେ ପ୍ରବେଶ କଲୁ ସମୁଦ୍ର କୂଳକୁ ।

ସମୁଦ୍ରକୂଳରେ ପହଞ୍ଚିବା ପରେ ଆଖିରେ ପଡିଲା ଗୋଟାଏ ଅଦ୍ଭୁତ ଦୃଶ୍ୟ । କୂଳଠାରୁ ବେଶ୍ କିଛି ଦୂର ସମୁଦ୍ର ଭିତରେ ଏକ କ୍ଷୁଦ୍ର ଦ୍ୱୀପ ପରି ରହିଥାଏ ଏକ ପାହାଡିଆ ଟାପୁ । ସେ ଟାପୁର ସେପାଖରୁ ଏପାଖ ଗୋଟାଏ ମସ୍ତବଡ କୋରଡ । କୋରଡ ଆରପଟୁ ଦିଶୁଥାଏ ସମୁଦ୍ର । ତା' ଭିତର ଦେଇ ଅଜାଡି ହେଇପଡୁଥାଏ ସମୁଦ୍ରର ଲହଡି । ସେଇଟା ଏତେବଡ ଗୋଟାଏ କୋରଡ ଯେ ତା' ଭିତର ଦେଇ ସହଜରେ ଗୋଟଏ ବଡ ଡଙ୍ଗା ମଧ୍ୟ ଆତଯାତ ହୋଇପାରିବ । ମନେପଡିଲା– ଏଇ ଶ୍ରେଣୀର ସାମୁଦ୍ରିକ ପାର୍ବତ୍ୟ କୋରଡଗୁଡିକୁ କୁହାଯାଏ– ''ଗ୍ରୋଟୋ'' । 'ଗ୍ରୋଟୋ' ଗୁଡିକ ଭୂତାତ୍ତ୍ୱିକ ପ୍ରଣାଳୀରେ ଗଠିତ ଗର୍ତ୍ତ ବା ସୁଡଙ୍ଗ । ଏ ସୁଡଙ୍ଗ ଗୁଡିକ ସମୁଦ୍ରରେ ଉଠୁଥିବା ତରଙ୍ଗମାଳାର ଅନବରତ ଧକ୍କାରୁ ସୃଷ୍ଟିହୋଇଥାଏ ପାହାଡ କାନ୍ଥରେ । କଠିନ ଗ୍ରାନାଇଟ ପଥରର କାନ୍ଥକୁ ପାଣି କିପରି କଣାକରିଦେଇପାରେ ସମୟକ୍ରମେ, ତାର ପ୍ରତ୍ୟକ୍ଷ ପ୍ରମାଣ ଥୁଆହେଇଥାଏ ଆମ ଆଖି ସାମନାରେ । କ୍ୟାମେରାରେ କେତେଗୁଡିଏ ଫଟୋ ଉଠେଇଲି ସେ ଅପୂର୍ବ ଦୃଶ୍ୟର ।

ଚାରିଆଡକୁ ଆହୁରି ଭଲକରି ଚାହିଁ ଦେଖିଲି– ଗ୍ରୋଟୋ ଉପର ପାହାଡ ଟାପୁ ଉପର ଶୁଖିଲା ଜାଗାରେ ପଲ ପଲ ହେଇ ଶୋଇ ଖରାପୋଉଁଥାନ୍ତି ଗୁଡିଏ କିଛି ସଚଳ ଜନ୍ତୁ । ସେଗୁଡିକୁ ଚିହ୍ନଟ କରାଗଲା– ସି-ଲାୟନ୍ସ୍ (Sea-Lions) ! ସମୁଦ୍ରର ସିଂହ ବା ସି-ଲାୟନ୍ସ୍ ବୋଲି ଆମେ ଜାଣିଥିବା ଏଇ ସାମୁଦ୍ରିକ ପ୍ରାଣୀମାନଙ୍କୁ ଆମେ କେବଳ ଛବିରେ

ଦେଖିଥିଲୁ– ବର୍ତ୍ତମାନ ଆମ ଆଖି ଆଗରେ ଜୀବନ୍ତ ସି-ଲାୟନସ୍‌ମାନଙ୍କର ସେପରି ମୁକ୍ତ-ବିହାରର ଦୃଶ୍ୟ ପ୍ରଥମେ ଆମକୁ ଖୁବ୍ ଅପାର୍ଥିବ ମନେହେଲା । କିଛି ସମୟ ସେଇ ଦୃଶ୍ୟକୁ ଆଖି ପୂରେଇ ଦେଖିଲା ପରେ ଆଖି ଲମ୍ବିଗଲା ସମୁଦ୍ରର ଆରପାରି ବିସ୍ତୀର୍ଣ୍ଣ ଦିଗ୍‌ବଳୟ ଆଡକୁ । ଏଥର ମନଶ୍ଚକ୍ଷୁରେ ଦେଖାଗଲା ଆହୁରି ରୋମାଞ୍ଚକର ଦୃଶ୍ୟାବଳୀ ।

ଆମେ ସେତେବେଳେ ଚାହିଁରହିଥିଲୁ ଆମେରିକାର ପଶ୍ଚିମ ଦିଗନ୍ତକୁ । ସେପାରିରେ ରହିଥାଏ ଏସିଆ ମହାଦେଶର ପୂର୍ବ ଉପକୂଳର ଦେଶ ସମୂହ– ଜାପାନ ଚୀନ ଥାଇଲ୍ୟାଣ୍ଡ ଇତ୍ୟାଦି । ସେଇ ପଶ୍ଚିମ ଦିଗନ୍ତକୁ ଚାହିଁ ପ୍ରଣାମକଲି । ପିଲାଦିନର ବହି ପଢା ଭୌଗୋଳିକ ଜ୍ଞାନ ନେତ୍ର ଧୀରେଧୀରେ ଆହୁରି ଆହୁରି ବିସ୍ତୃତି ସହିତ ମନର ଅତଳ ପ୍ରଦେଶକୁ ଆଲୋକିତ କରିବା ଆରମ୍ଭ କରିଥାଏ । ଆଉ ଟିକେ ଧ୍ୟାନସ୍ଥହୋଇ ଦୂରକୁ ନିରେଖିଲାପରେ ମନରେ ଉଦୟହେଲା ଜନ୍ମଭୂମି ଭାରତର ପୂର୍ବ ଉପକୂଳ । ଏହାର ବିସ୍ତୀର୍ଣ୍ଣତା ଭିତରୁ ଠାଏ ଦିଶିଗଲା ଏକ ଉତ୍ତୁଙ୍ଗ ମନ୍ଦିରର ଚୂଡା । ଓଡିଶାର ପୁରୀ ସମୁଦ୍ର ତଟର ସେଇ ଦୁର୍ଲଭ ସ୍ୱର୍ଣ୍ଣାଭ ବେଳାଭୂମି ଉପରେ ଯୁଗଯୁଗ ଧରି ଦଣ୍ଡାୟମାନ ପୁରୀର ଶ୍ରୀମନ୍ଦିରର ଦର୍ଶନ ପରେ ମନ ଘରମୁହାଁ ହୋଇଗଲା । ମନର ଚେତନସ୍ତର ଭିତରକୁ ଅଜାଡିହେଇପଡିଲା ଗୁଡାଏ ଚାପା-ସ୍ମୃତି । ଅବଚେତନ ଭିତରୁ ଆପଣାଛାଏଁ ସେମାନେ ଉବୁରି ଉଠୁଥାନ୍ତି । ଦୁଇହାତ ଯୋଡି ସେଇଦିଗକୁ ବାରବାର ପ୍ରଣାମ କରୁକରୁ ମନ ଉଦ୍‌ବେଳିତ ହେବାକୁ ଲାଗିଲା । ଅହେତୁକ ପରିପୂର୍ଣ୍ଣତା ଜନିତ କୃତଜ୍ଞତାରେ ଭରିଗଲା ମନପ୍ରାଣ । ମୁଁ ଯେ ଆଜି ଏ ପରିଣତ ବୟସ ପର୍ଯ୍ୟନ୍ତ ବଞ୍ଚିରହିପାରିଚି ଏବଂ ପୃଥିବୀର ଆରପାଖେ, ସ୍ୱଦେଶ ମାଟିରୁ ପନ୍ଦର ହଜାର ମାଇଲ ଦୂରର ଏଇ ପ୍ରଶାନ୍ତ ମହାସାଗର ତଟର ସାନ୍ତାକ୍ରୁଜ ନାମକ ଏକ ସ୍ଥାନରୁ ମୋ ଜନ୍ମଭୂମିକୁ ଅନ୍ତଃଶ୍ଚକ୍ଷୁରେ ଦର୍ଶନ କରିବାର ସୁଯୋଗ ଲାଭକରିପାରିଛି ସେଥିପାଇଁ ମୁଁ କୃତକୃତ୍ୟ ଅନୁଭବ କଲି । ପୁଣି, ଆହୁରି କୃତଜ୍ଞତାରେ ଭରିଗଲା ମୋ' ମନ– ମୋ' ପିତାମାତାଙ୍କ ପ୍ରତି ଭକ୍ତିରେ ଅବନତ ହେଲା । ଆଜିକୁ ତେସ୍ତରୀବର୍ଷ ତଳେ ସେ ଦୁହେଁ ମତେ ଏ ସଂସାରକୁ ଆବାହନ କରି ଆଣିଥିଲେ । ସେମାନେ କେଉଁ କାଳୁ ଚାଲିଗଲେଣି ଏ ସଂସାରରୁ, ଅଥଚ ମୁଁ ଯେ ବଞ୍ଚିରହିଚି ଆଜି ସୁଦୂର କାଲିଫର୍ଣ୍ଣିଆରେ ଥାଇ ସେମାନଙ୍କୁ ସ୍ମରଣ କରିବାକୁ ଓ ସେମାନଙ୍କର କେତେ ଇଚ୍ଛା– "ପୁଅ ଆମର ବଡହେବ, ସୁନାମ ଅର୍ଜିବ, ଦେଶ ବିଦେଶ ଭ୍ରମଣ କରିବ, ବିଖ୍ୟାତ ହେବ"– ସେମାନଙ୍କର ସେ ଇଚ୍ଛା ସତେକି ସାର୍ଥକ ହୋଇଯାଇଚି ଆଜି ! – ଏହିପରି ଭାବୁଭାବୁ ମନେପଡିଗଲା ମୋର ଗୋଟିଏ ବହୁ ପୂର୍ବର ସଂକଳ୍ପିତ ଅଭିଳାଷ ।

ନିରୁପମା ଓ ବଡଝିଅ ବୁଲବୁଲଙ୍କୁ ପାଖକୁ ଡାକିଲି । କହିଲି– ଚାଲ ପିତୃପୁରୁଷଙ୍କୁ ସ୍ମରଣକରି ଜଳ ତର୍ପଣ କରିବା । ସମୁଦ୍ର ପାଣିକୁ ଓହ୍ଲାଇ ଆସିଲୁ ଆମେ ତିନିହେଁ । ଆଂଜୁଳାଏ ଆଂଜୁଳାଏ ପାଣିଧରି ପ୍ରଶାନ୍ତ ମହାସାଗର ସେପାରିକୁ ମୁହଁ କରି ଆଖି ବୁଜି

ଠିଆହେଲୁ । ଜନ୍ମଭୂମି ଭାରତ ଓ ଓଡ଼ିଶାକୁ ସ୍ମରଣ କଲୁ । ପରେପରେ ଆମର ପିତାମାତା, ଅଜାଆଈ ଏବଂ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଜଳ ତର୍ପଣ କଲୁ ।

ବୁଲବୁଲ କହିଲା, ''ନନା ! କେବଳ ଆମରି ନିଜର ପିତୃପୁରୁଷଙ୍କୁ ନୁହେଁ ଚାଲ ସମଗ୍ର ବିଶ୍ୱବାସୀଙ୍କ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବା ।'' ଆମେ ତିନିହେଁ ପୁଣିଥରେ ଆଂଜୁଳାରେ ସମୁଦ୍ର ଜଳ ଭରିଲୁ । ମୁଁ ଆବୃତ୍ତି କଲି– ଯେ ବାନ୍ଧବା ଅବାନ୍ଧବା ଅନ୍ୟ ଜନ୍ମନି ବାନ୍ଧିବାଃ, ତେ ସର୍ବେ ତୃପ୍ତିମଖିଳାଂ ଯାନ୍ତୁ ଯେ ଚାସ୍ମତ୍ତୋୟକାଂକ୍ଷିଣଃ (ହେ ନିଖିଳ ବିଶ୍ୱବାସୀମାନଙ୍କର ପିତୃପୁରୁଷଗଣ, ଯେଉଁମାନେ ଆମର ଏ ଜନ୍ମ ଅବା ଅନ୍ୟ ଜନ୍ମ-ମାନଙ୍କରେ ବାନ୍ଧବ ଥିଲେ, ଅଥବା ଅବାନ୍ଧବ ମଧ୍ୟ ଥିଲେ, ସେମାନେ ସମସ୍ତେ ଆମର ଏଇ ଜଳତର୍ପଣ ଗ୍ରହଣ କରନ୍ତୁ ଏବଂ ତୃପ୍ତିଲାଭ କରି ଅଖିଳ ପଥରେ ଯାତ୍ରା କରନ୍ତୁ ।)

ମନେପଡ଼ିଲା ୧୯୯୩ରେ ପ୍ରଥମଥର ଆମେରିକା ବୁଲି ଆସିଥିବା ବେଳେ ଆମେ ଆମେରିକାର ପୂର୍ବଉପକୂଳର ଫ୍ଲରିଡାର 'ଡେଟୋନା' ବେଳା ଭୂମିରେ ଠିଆହୋଇ ଏହିପରି ତର୍ପଣ କରିଥିଲୁ– ଆଟଲାଣ୍ଟିକ୍ ମାହାସାଗର ଜଳରେ । ସେତେବେଳେ ଭାରତକୁ ଆମେ ଦେଖୁଥିଲୁ ପୂର୍ବ ଦିଗ୍‌ବଳୟରେ । ଆଜି ପଶ୍ଚିମ ଦିଗ୍‌ବଳୟକୁ ମୁହଁକରି ସେଇ ମନ୍ତ୍ରରେ ପିତୃପୁରୁଷଙ୍କୁ ତର୍ପଣ କରୁଥିଲୁ ପ୍ରଶାନ୍ତ ମହାସାଗର ଜଳରେ ।

## ସାନ୍ତାକ୍ରୁଜ୍ ହ୍ୱାର୍ଫ (Santacruz Wharf)

ଅନ୍ନପୂର୍ଣ୍ଣା ତାଙ୍କ କୁକୁର ଦୁଇଙ୍କୁ ପ୍ରାତଃଭ୍ରମଣ କରାଇ ପ୍ରତୀକ ଓ ଆଲୋକଙ୍କୁ ସାଥିକରି ପହଞ୍ଚିଲେ । କହିଲେ, ''ଚାଲନ୍ତୁ– ସାନ୍ତାକ୍ରୁଜ୍ ହ୍ୱାର୍ଫ'' ଦେଖିଯିବା । ବସିଲୁ ଗାଡ଼ିରେ । ଆମେ ଛ'ଜଣ ଓ ଦୁଇଟି ଓଦା ସରସର ଲାବ୍ରାଡର କୁକୁର ଆମେ ସମସ୍ତେ ବସିଲୁ ଅନ୍ନପୂର୍ଣ୍ଣାଙ୍କ ବଡ଼ ଭ୍ୟାନ୍‌ରେ । କୁକୁର ଦୁଇଟା ପଛପଟ ସିଟ୍‌ରୁ ବରାବର ଚାଲିଆସିବାକୁ ଚେଷ୍ଟିତ ଥା'ନ୍ତି ଆଗର ଡ୍ରାଇଭିଂ ସିଟ୍‌ରେ ବସି ଗାଡ଼ି ଚଳଉଥିବା ସେମାନଙ୍କ ଖାମିନ୍ଦାଣିଙ୍କ କୋଳକୁ । ଆଲୋକ ସେମାନଙ୍କୁ କୌଣସି ପ୍ରକାରେ ରୋକି ରଖିଥାଏ । ସେମାନେ ମଝିରେ ମଝିରେ ନିଜ ଦେହକୁ ଝାଡ଼ିବାରେ ଲାଗିଥାନ୍ତି । ଓଦା ରୁମରୁ ଝଡ଼ା ପାଣି ଓ ବାଲି ବିଛାଡ଼ି-ହେଇପଡୁଥାଏ ଆମ ସମସ୍ତଙ୍କ ଦେହ ମୁହଁରେ । ଆମେ ହସୁଥାଉ ଆଉ ଉପଭୋଗ ମଧ୍ୟ କରୁଥାଉ ଅନ୍ନପୂର୍ଣ୍ଣାଙ୍କ କୁକୁର ସୋହାଗକୁ ।

ସମୁଦ୍ର କୂଳ ମାରାଇନ୍ ଡ୍ରାଇଭ୍‌ରେ ବହୁତ ବାଟ ବୁଲାଇ ବୁଲାଇ ଦେଖେଇଲେ ଅନ୍ନପୂର୍ଣ୍ଣା । ସାନ୍ତାକ୍ରୁଜର ମାରାଇନ୍ ଡ୍ରାଇଭ୍ ଅନେକଟା ବମ୍ବେ ଜୁହୁବିଚ୍ ଭଳି ଦେଖିବାକୁ । ତେବେ ଏହାର ଉପକୂଳରେ ବେଳାଭୂମି ସେତେ ପ୍ରଶସ୍ତ ନୁହେଁ କି ବାଲିଆ ନୁହେଁ । ଜାଗାଟା ପାହାଡ଼ିଆ ପଥୁରିଆ । ବଡ଼ବଡ଼ ଅତଡ଼ିର ବହୁତ ତଳେ ଥାଏ ସମୁଦ୍ର । ପୁଣି

ଏଠାକାର ଆବହାଓ୍ୱା ଓ ଦୃଶ୍ୟାବଳି ବମ୍ବେ ବା ପୁରୀ ଉପକୂଳଠାରୁ ବହୁତ ଭିନ୍ନ । ରାସ୍ତାକଡର ଘରଗୁଡାକ ଅଧିକାଂଶ ବଂଲୋ ପ୍ୟାଟର୍ଣ୍ଣ-ଗୋଟିଗୋଟିକିଆ, ଛଡାଛଡା । ଅନେକ ଘରର ଛାତ ଟାଇଲ୍‌ରେ ତିଆରି । ତେବେ ରାସ୍ତା କଡ ଯାକ ଭର୍ତ୍ତି ହେଇଥାଏ ଗୋଲାପ ବଣ । ଫୁଲରେ ଭାଙ୍ଗିପଡୁଥାଏ ଗୋଲାପ ବୁଦା ଗୁଡାକ । କେହି ସେ ଫୁଲକୁ ଏଠି ଏ ଦେଶରେ ତୋଳି ନିଅନ୍ତି ନାହିଁ ଆପଣା ଘରେ ରଖିବାକୁ । ଘର ଆଗରେ ରାସ୍ତା ଉପରେ ଆପଲ୍ ଗଛରେ ଆପ୍ଲ ଭରିହେଇଥାଏ । କେହି ତୋଳି ନେଉନଥାନ୍ତି ଏସବୁକୁ । ଆପ୍ଲ ପାଚି ଗଛରୁ ଝଡି ତଳେ ଗଡୁଥାଏ ।

ଏଠାକାର ବାସଗୃହ ଗୁଡିକୁ ଲକ୍ଷ୍ୟକରି ଦେଖିଲି ଏସବୁ ଦିଶୁଥାଏ ଅପେକ୍ଷାକୃତ ଅସ୍ଥାୟୀ । ତାର କାରଣ ବୁଝାପଡିଲା– କାର୍ଲିଫର୍ଣ୍ଣିଆ ଆମେରିକାର ଏକ ଭୂମିକମ୍ପ ପ୍ରବଣ ଅଂଚଳ । ଭୂମିକମ୍ପର ପ୍ରଭାବକୁ ଦୃଷ୍ଟିରେ ରଖି ହୁଏତ ଏଠାକାର ସାଧାରଣ ଲୋକେ ଏପରି ହାଲୁକା ଅସ୍ଥାୟୀ ଘର ସବୁ ତିଆରି କରାଇଥାନ୍ତି । ଏ ଅଞ୍ଚଳର ଉଦ୍ଭିଦଗୁଡିକର ବୈଶିଷ୍ଟ୍ୟ ଆଖିରେ ପଡିଲା । ଉଭୟ ଶୀତପ୍ରଧାନ ଦେଶର ପାଇନ୍ ଏବଂ ଗ୍ରୀଷ୍ମପ୍ରଧାନ ମରୁଭୂମି ଅଂଚଳର ଖଜୁରୀ ଏବଂ କାକ୍‌ଟସ୍ ଜାତିର ଗଛ ପ୍ରଚୁର । ବଡ ଗଛ ସବୁ ବଡବଡ ଛତା ବିସ୍ତାରି ଥାଏ ବହୁତ ଉଚ୍ଚରେ– ଦିଶୁଥାଏ ଆମ ଆଡିକା ବର ଓ ଚାକୁଣ୍ଡା ଗଛ ଭଳି । ଖଜୁରୀ ଗଛର ପ୍ରାବଲ୍ୟ ଜଣେଇଦଉଥାଏ କାଲିଫର୍ଣ୍ଣିଆର ମରୁଭୂମି ବେଶୀ ଦୂରରେ ନାହିଁ ।

ସାନ୍ତାକ୍ରଜ୍ ମାରାଇନ୍ ଡ୍ରାଇଭ୍‌ରେ ବେଶ୍ କିଛି ବାଟ ଡ୍ରାଇଭ୍ କଲାପରେ ପଡିଲା– ହ୍ୱାର୍ଫ । ଅନ୍ନପୂର୍ଣ୍ଣା କାର୍ ପାର୍କ କଲେ ଓ ଆମେ ସମସ୍ତେ ହ୍ୱାର୍ଫ ଦେଖିବାକୁ ବାହାରିଗଲୁ । ହ୍ୱାର୍ଫ କହିଲେ ସମୁଦ୍ର ଭିତରକୁ ଲମ୍ବିଯାଇଥିବା ଏକ ବିଶାଳ ଅର୍ଦ୍ଧ ସେତୁ । ଏ ସେତୁର ଅପରପାର୍ଶ୍ୱ ସମୁଦ୍ର ଭିତରକୁ ପ୍ରାୟ ଏକମାଇଲ ଦୂର ପର୍ଯ୍ୟନ୍ତ ଲମ୍ବିଥାଏ । ମଜଭୁତ୍ ପାଇନ୍ କାଠର ଖୁଣ୍ଟ ଉପରେ ଲମ୍ବିଥିବା ଏଇ ପ୍ରଶସ୍ତ ସେତୁ ଉପରେ ଦଳଦଳ ଟୁରିଷ୍ଟ ଘୂରି-ବୂଲୁଥିବାର ଦେଖିଲୁ । ଆମେ ମଧ୍ୟ ବୁଲିବାହାରିଲୁ । ସମୁଦ୍ର ଭିତରୁ ପ୍ରଶାନ୍ତମହାସାଗର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ମନେହେଲା ଆମେ କୌଣସି ଏକ ଦ୍ୱୀପରେ ଥାଉ ଓ ମୂଳ ଭୂଖଣ୍ଡର ଦୃଶ୍ୟ ଦେଖୁଥାଉ ସମୁଦ୍ର ଭିତରୁ । ଦୂରରୁ ତଟଦେଶର ଗଛଲତା, ଘରଦ୍ୱାର, ଦୋକାନ ବଜାର ଓ ସମୁଦ୍ରରେ ଚାଲିଥିବା ଜାହାଜ, ଛୋଟବଡ ନୌକା ଇତ୍ୟାଦିର ଦୃଶ୍ୟ ଚିତ୍ରପଟ ପରି ମନୋହର ଏବଂ ଖୁବ୍ ଉପଭୋଗ୍ୟ ।

ସେତୁ ଉପରୁ ତଳ ସମୁଦ୍ରକୁ ଅନାଇ ଦେଖିଲୁ– ସେତୁକୁ ମଜଭୁତ୍ ରଖିବାକୁ ସ୍ଥାନେ ସ୍ଥାନେ ଖଞ୍ଜାଯାଇଥିବା ମୋଟମୋଟା କାଠ ଦଣ୍ଡା ଉପରଯାକ ଧାଡିକି ଧାଡି ଶୋଇଥାନ୍ତି ସେଇ କଳା କଳା ବିଶାଳକାୟ ସମୁଦ୍ର ସିଂହମାନେ । ସାମୁଦ୍ରିକ ପ୍ରାଣୀମାନେ ବେଶ୍ ନିର୍ଭୟରେ ଏ ଅଂଚଳରେ ଚଳପ୍ରଚଳ ହେବା ଲକ୍ଷ୍ୟକଲି । ସେମାନଙ୍କ ସାଙ୍ଗେ ଦଳଦଳ କଳାକଳା ସାମୁଦ୍ରିକ ପାଣିକୁଆ ମଧ୍ୟ ସମୁଦ୍ର ଭିତରେ ଠାକୁଠା ପାହାଡିଆ ଟାପୁ ଉପରେ

ବସି ଡେଣା ଶୁଖୋଉଥିବା ଦୃଶ୍ୟ ଏବଂ ମଝିରେ ମଝିରେ ସମୁଦ୍ର ସିଂହମାନେ ସେଇ ପକ୍ଷୀମାନଙ୍କୁ ଧମକେଇବାର ପ୍ରଚେଷ୍ଟା ଉପଭୋଗ୍ୟ ଲାଗୁଥାଏ ।

ଏ ଭିତରେ ଢେର୍ ସମୟ ବିତିଗଲାଣି । ଖରା କାଟିଲାଣି ଦେହକୁ । ଅନ୍ନପୂର୍ଣ୍ଣା କହିଲେ, ''ଆସନ୍ତୁ ଫେରିବା– ଲଞ୍ଚ ପରେ ଯିବା ୟୁନିର୍ଭସିଟି । ପାଣ୍ଡେଜୀ ଆଜି ଆପଣମାନଙ୍କୁ ଆଉ ଏକ ଅଦ୍ଭୁତ ସ୍ଥାନ ମଧ୍ୟ ଦେଖେଇବାକୁ ନେବେ ବୋଲି କହିଛନ୍ତି ।'' ଘରକୁ ଫେରିଲୁ । ଲଞ୍ଚ ପରେ କିଛି ସମୟ ବିଶ୍ରାମ କଲାପରେ ପୁଣି ବାହାରିଲୁ ସାନ୍ତାକ୍ରୁଜ ସହରର ଅନ୍ୟ କେତେକ ଜାଗା ବୁଲି ଦେଖିବାକୁ ।

## ମିଷ୍ଟ୍ରି ପଏଣ୍ଟ (Mystery Point)

ସାନ୍ତାକ୍ରୁଜର ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଭିତରେ ଗୋଟିଏ ସ୍ମରଣୀୟ ଜାଗା ଏଇ ରହସ୍ୟମୟ ମିଷ୍ଟ୍ରି-ପଏଣ୍ଟ୍ । ପ୍ରଫେସର୍ ପାଣ୍ଡେ ଗାଡି ଡ୍ରାଇଭ୍ କରି ସାନ୍ତାକ୍ରୁଜ ସହରର ଡାଉନ୍‌ଟାଉନ୍ ଭିତରେ ବୁଲାଇ ସାରି ଗୋଟିଏ ସରୁ ରାସ୍ତାରେ ଚାଲିଲେ କୌଣସି ଏକ ସ୍ଥାନକୁ । ରାସ୍ତାଟା କେବଳ ସରୁ ନୁହେଁ– ଘୋର ଅରଣ୍ୟ ସଂକୁଳିତ । ଦୁଇପାଖେ ଆକାଶ-ଛୁଆଁ ସାନ୍ଦ୍ର ପାଇନ୍ ଅରଣ୍ୟ । କିଛିବାଟ ଯିବା ପରେ ଗୋଟାଏ ଫର୍ଚ୍ଚା ଜାଗାରେ ଦେଖିଲୁ ବହୁତ ଗୁଡିଏ କାର୍ ପାର୍କ କରାଯାଇଛି । ସେଇଠି ଆମ ଗାଡି ଅଟକିଲା । ଗାଡିରୁ ଓହ୍ଲେଇ ଦେଖିଲୁ ବହୁ ଟୁରିଷ୍ଟ୍ ଧାଡିବାନ୍ଧି ଠିଆହେଇଚନ୍ତି ଟିକେଟ୍ କାଉଣ୍ଟର୍ ସାମ୍‌ନାରେ । ପାଣ୍ଡେଜୀ ଆମ ପାଇଁ ଟିକେଟ୍ କିଣିବାକୁ ଚାଲିଲେ କାଉଣ୍ଟର୍ ପାଖକୁ ।

ପ୍ରବେଶ ଦ୍ୱାର ପାଖରେ ଗୋଟିଏ ବୃହତ୍ ବିଜ୍ଞାପନ ବୋର୍ଡରେ କ'ଣ ସବୁ ବହୁତ କଥା ଲେଖାଥିବା ଲକ୍ଷ୍ୟ କରି । ପାଖକୁ ଯାଇ ଆମୂଳଚୂଳ ପଢିଲି । ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ । ଆଶ୍ଚର୍ଯ୍ୟ ହେବାର କାରଣ, ବିଜ୍ଞାପନ ଅନୁସାରେ କୁଆଡେ ଏଇ ମିଷ୍ଟ୍ରି ପଏଣ୍ଟର ପାହାଡର ଏକ ନିର୍ଦ୍ଦିଷ୍ଟ ଉଚ୍ଚତାରେ ଏମିତି ଏକ ଜାଗା ଅଛି ଯେଉଁଠି ପଦାର୍ଥ-ବିଜ୍ଞାନର ମାଧ୍ୟାକର୍ଷଣ ଧର୍ମ କାମ ଦିଏନା । ପୃଥିବୀପୃଷ୍ଠର ଯେକୌଣସି ସ୍ଥାନରେ ସେଇ ପ୍ରାକୃତିକ ଧର୍ମ ଅନୁସାରେ ଓଜନିଆ ଜିନିଷ ଉଚ୍ଚରୁ ନିମ୍ନକୁହିଁ ଖସିପଡିବା ସୁନିଶ୍ଚିତ । କିନ୍ତୁ ଏଇ ''ମିଷ୍ଟ୍ରି ପଏଣ୍ଟ୍'' ବୋଲାଉଥିବା ସ୍ଥାନରେ କୁଆଡେ ବିପରୀତ ଘଟଣା ଘଟେ । ଏଠାରେ ମଧ୍ୟାକର୍ଷଣର ବିପରୀତ ଶକ୍ତି ବା ''ଆଣ୍ଟି ଗ୍ରାଭିଟି'' ଶକ୍ତି କାମ କରେ ବୋଲି ବିଜ୍ଞାପନରେ ସ୍ୱଷ୍ଟ ଭାଷାରେ ଉଲ୍ଲେଖ ଥିବା ଲକ୍ଷ୍ୟ କଲି । ପୁଣି ଉଲ୍ଲେଖ ଥିଲା– ଏହି ଅଣବୈଜ୍ଞାନିକ ଘଟଣାର ସୂତ୍ର ବାହାରକରିବାକୁ ପୃଥିବୀର ବିଭିନ୍ନ ଦେଶର ବୈଜ୍ଞାନିକମାନେ ବହୁବର୍ଷଧରି ଚେଷ୍ଟା ଚଳେଇ ଆସିଚନ୍ତି– କିନ୍ତୁ ଏ ପର୍ଯ୍ୟନ୍ତ କେହି ସଫଳ ହୋଇପାରିନାହାନ୍ତି ।

ସ୍ଥାନଟିକୁ ବାହାରୁ ଆଖି ବୁଲେଇ ଦେଖିଲି । ଏକ ନିର୍ଜନ ଆରଣ୍ୟକ ଉପତ୍ୟକାର ଘୋର ଅରଣ୍ୟ ଭିତରେ ଛୋଟ ମୁଣ୍ଡିଆ ଭଳି ସେଇ ପାହାଡଟା ବାହାରୁ ଦିଶୁଥାଏ ଅବିକଳ

ଆମ ଭୁବନେଶ୍ୱରର ଖଣ୍ଡଗିରିର ଜୈନତୀର୍ଥ ଉଦୟଗିରି ପାହାଡ ପରି । ସେମିତି ମାଳେ ପାହାଚ ଲମ୍ବିଥାଏ ପାହାଡ ଉପରକୁ । ମିଷ୍ଟ୍ରି ପଏଣ୍ଟର ସ୍ଥାନ ପାହାଡ ମଝିରେ ବେଶ୍ କିଛି ଉଚ୍ଚତାରେ । ଗୁଡାଏ ପାହାଚ ଚଢ଼ିବାକୁ ହୁଏ ।

ପ୍ରଫେସର୍ ଆମପାଇଁ ଟିକେଟ୍ କିଣିସାରି ଫେରିଲେ । ପାହାଡ ଚଢ଼ା ଆରମ୍ଭ ପୂର୍ବରୁ ସାମାନ୍ୟ ଉଚ୍ଚତାରେ ଦେଖିଲୁ ପ୍ରବେଶଦ୍ୱାର ନିକଟରେ ରଖାଯାଇଚି ଦୁଇଟି ଚାରିକୋଣିଆ ପଥର । ଟୁରିଷ୍ଟ ସେଇ ପଥର ଉପରକୁ ଚଢ଼ି ଓହ୍ଲାଇ ଆସୁଥାନ୍ତି ଆଶ୍ଚର୍ଯ୍ୟ ଅଭିଭୂତ ଅବସ୍ଥାରେ । ପ୍ରଫେସର୍ ପାଣ୍ଡେ କହିଲେ, ''ଏ ପଥର ଦୁଇଟା ମାତ୍ର ଦୁଇଫୁଟ୍ ତଫାତ୍‌ରେ ଥିଲେ ବି ଯା'ଉପରେ ଠିଆହେଲେ ଦେଖିବେ ଗୋଟିଏ ପଥର ଉପରେ ଠିଆହେଲେ ଆପଣ ହେଇଯିବେ ଡେଙ୍ଗା, ଅନ୍ୟ ପଥର ଉପରକୁ ଘୁଞ୍ଚିଯିବା ମାତ୍ରେ ଆପଣ ପାଲଟିଯିବେ ଗେଡା । ମାତ୍ର ଦୁଇଫୁଟ୍ ବ୍ୟବଧାନରେ ଆପଣଙ୍କ ନିଜ ଉଚ୍ଚତା କେମିତି ଏପରି ବଦଳିଯାଉଚି ପରୀକ୍ଷା କରି ଦେଖନ୍ତୁ ।''

ପରୀକ୍ଷା କଲି । ପ୍ରଥମ ପଥର ଖଣ୍ଡ ଉପରେ ମୁଁ ଠିଆହେଲି, ଦ୍ୱିତୀୟ ପଥର ଉପରେ ଠିଆହେଲେ ନିରୁପମା । ମୁଁ ପାଞ୍ଚଫୁଟ୍ ନଅ ଇଞ୍ଚ ଉଚ୍ଚ, ନିରୁପମା ମୋଠୁ ଉଚ୍ଚତାରେ ପ୍ରାୟ ଛ'ସାତ ଇଞ୍ଚ ସାନ । ଆମେ ଦୁହେଁ ଜାଗା ବଦଳକଲୁ । ଦେଖିଲି– ଦ୍ୱିତୀୟ ପଥର ଖଣ୍ଡ ଉପରେ ଠିଆହେବା ପରେ ନିରୁପମା ମତେ ଦିଶିଲେ ମୋଠୁ ଢେର୍ ଡେଙ୍ଗା ! ବାରମ୍ବାର ପରୀକ୍ଷା ପରେ ଜାଗା ଗୁଣରେ ଉଚ୍ଚତାର ତାରତମ୍ୟ ଏପରି ନାଟକୀୟ ଭାବେ ବଦଳିଯିବା ଲକ୍ଷ୍ୟକରି ବିସ୍ମିତ ହେବା ଛଡା ଅନ୍ୟ ଗତି ନଥିଲା– କେବଳ ମୋର ନୁହେଁ; ଆମ ସମସ୍ତଙ୍କ ପାଇଁ । ଏହାର କୌଣସି ବୈଜ୍ଞାନିକ କାରଣ ଯେତେ ଖୋଜିଲେ ବି ପାଇପାରିଲି ନାହିଁ । ଭାବିଲି– କିଛି optical illusion ସଂଭବତଃ ଘଟୁଚି । କିନ୍ତୁ ତାହା ବାସ୍ତବିକ୍ କୌଣସି ଦୃଷ୍ଟିଭ୍ରମ ଯୋଗୁ ଘଟୁନଥିଲା– ତାହା ଥିଲା ଏଇ ଅଦ୍ଭୁତ ସ୍ଥାନର ଗୁଣ !

ପରେ ପରେ ଆମେ ପାହାଡ ଉପରକୁ ଚଢ଼ିଲୁ । କିଛି ବାଟ ପାହାଚ ଆରୋହଣ କଲାପରେ ଆସିଲା ସେଇ ବିଚିତ୍ର ଜାଗା ଯାହାକୁ କୁହାଯାଉଚି– ''ମିଷ୍ଟ୍ରି ପଏଣ୍ଟ୍'' । ପାହାଡ ଉପରେ ବେଶ୍ ବଡ ଏକ ଇଲାକାକୁ ଚାରିଆଡୁ ଲୁହାବାଡ ଦିଆଯାଇ ସୁରକ୍ଷିତ କରାଯାଇଥାଏ । ତା'ଭିତରେ ବିଭିନ୍ନ ଉଚ୍ଚତାର ଛୋଟବଡ ମୁଣ୍ଡିଆ କେତୋଟି ଥାଏ । ଏଇ ଇଲାକାର ନାମ–''ମିଷ୍ଟ୍ରି ପଏଣ୍ଟ୍'' । ଏଇ କ୍ଷେତ୍ର ଭିତରେ ସ୍ଥାନେସ୍ଥାନେ ଦର୍ଶକମାନଙ୍କ ପ୍ରତି ନାନାପ୍ରକାର ସତର୍କତା ଅବଲମ୍ବନ ପାଇ ନିର୍ଦ୍ଦେଶ ଥାଏ, ବିଶେଷତଃ ଛୋଟ ପିଲାମାନଙ୍କ ସୁରକ୍ଷା ପାଇଁ ବିଶେଷ ଧ୍ୟାନ ଦେବାକୁ କୁହାଯାଇଥାଏ । ଏହାର ମୁଖ୍ୟ-କାରଣ– ଏଇ ସୁରକ୍ଷିତ ସ୍ଥାନ ଭିତରେ ପୃଥିବୀର ମାଧ୍ୟାକର୍ଷଣ କ୍ଷେତ୍ରର ବିକୃତି ପରିଲକ୍ଷିତ ହୁଏ । ଫଳରେ ଉପରକୁ ମୁଣ୍ଡକରି ଠିଆହେବାକୁ ଚେଷ୍ଟାକଲେ ମୁଣ୍ଡ ଘୂରାଇଦିଏ । ଏ କ୍ଷେତ୍ରରେ ମଣିଷର ଊର୍ଦ୍ଧ୍ୱ-ଅଧଃ ଦିଗ-ଜ୍ଞାନ ହଜିଯାଏ । ତାହା ସହଜରେ ଅନୁଭୂତ

ହୁଏ ଚାଲିବାକୁ ଚେଷ୍ଟାକଲାବେଳେ ।

ଅଡା ଭିତରକୁ ପଶିଲାମାତ୍ରେ ସେଇ ଅନୁଭବ ପ୍ରତ୍ୟକ୍ଷ୍ୟ କରିହେଲା । ଯେତେ ଚେଷ୍ଟା କଲେବି ମୁଁ ସିଧାହୋଇ, ମୁଣ୍ଡ ଉପରକୁ ଟେକି ଠିଆହେଇ ପାରିଲି ନାହିଁ । ସେପରି ଚେଷ୍ଟାକଲାମାତ୍ରେ କିଏ ଯେପରି ଧକ୍କାମାରି ପେଲିଦେଉଥାଏ ତଳମୁହାଁ– ସେହିପରି ଅନୁଭବ ହେଉଥାଏ ।

ମାଧ୍ୟାକର୍ଷଣର ବିକୃତିକୁ ଦର୍ଶକମାନଙ୍କୁ ବୁଝାଇଦେବାପାଇଁ ଏଠାରେ କେତେଗୁଡିଏ ବୈଜ୍ଞାନିକ ପରୀକ୍ଷାର ବ୍ୟବସ୍ଥା କରାଯାଇଥାଏ । ସେପରି ଗୋଟିଏ ପରୀକ୍ଷଣପାଇଁ ଏକ 'ବୈଜ୍ଞାନିକ ଏକ୍ସପେରିମେଣ୍ଟ' ସେଟ୍‌ଅପ୍ କରାଯାଇଥାଏ । ଗୋଟାଏ ଜାଗାରେ ରଖାଯାଇଥାଏ ଖଣ୍ଡେ ଲମ୍ବା କାଠପଟା ତେର୍ଚ୍ଛା ଭାବରେ । ତା'ପାଖରେ ରଖାଯାଇଥାଏ କେତୋଟି ଲୁହା ପେଣ୍ଡୁ । ଦର୍ଶକମାନଙ୍କ ପାଇଁ ନିର୍ଦ୍ଦେଶଥାଏ– ଲୁହା ପେଣ୍ଡୁ ଗୁଡିକୁ ଗଡାଣିଆ ଢାଲୁ ଅଂଶରେ ରଖି ପରୀକ୍ଷା କରନ୍ତୁ ।

ଆମେ ପରୀକ୍ଷା କଲୁ । ଲୁହା ପେଣ୍ଡୁଗୁଡିକ ଗଡାଇ ଦେଖିଲୁ । ଗୋଟିଏ ପେଣ୍ଡୁକୁ ସେଇ ଗଡାଣିଆ ପଟାର ସବା ତଳ ମୁଣ୍ଡରେ ରଖିବା ମାତ୍ରେ ପେଣ୍ଡୁଟି ଉପର ମୁଣ୍ଡ ଆଡକୁ ବେଶ୍ ଜୋର୍‌ରେ ଗଡିବାକୁ ଆରମ୍ଭକଲା ! ଏହିପରି ଅନ୍ୟ କେତୋଟି ବୈଜ୍ଞାନିକ ଏକ୍ସପେରିମେଣ୍ଟ ପାଇଁ ମଧ୍ୟ ଏଠାରେ ବ୍ୟବସ୍ଥା କରାଯାଇଥାଏ । ସବୁ ପରୀକ୍ଷାର ଫଳ ଏକ– ଏଠି ଉଚ୍ଚର ଅର୍ଥ ନିମ୍ନ ଆଉ ନିମ୍ନର ଅର୍ଥ ଉଚ୍ଚ ! ଏଠି ପାଣି ଢାଳିଗଲେ ତଳକୁ ବୋହିନଯାଇ ବୋହିଯାଏ ଉପରକୁ ! କିଛି ସମୟ ସେଇ ଅଦ୍ଭୁତ ସ୍ଥାନରେ 'ଆଣ୍ଟିଗ୍ରାଭିଟି' ଅନୁଭବ କଲା ପରେ ଓହ୍ଲେଇ ଆସିଲୁ ପାହାଡ ତଳକୁ ।

ପାହାଡ ତଳେ ଏକ ଛୋଟ ପାର୍କ ଥାଏ ! ସେଠି ଅନ୍ୟାନ୍ୟ ବୃକ୍ଷଲତା ଭିତରେ ଯୋଡିଏ ଜାତିର ଫୁଲଗଛ ଦୃଷ୍ଟିରେ ପଡିଲା । ଅପୂର୍ବ ମନଲୋଭା ଫୁଲରେ ମଣ୍ଡି ହୋଇଥାନ୍ତି ସେମାନେ । ଗୋଟିଏ ଜାତିର ଫୁଲର ନାଁ 'ୟୁଷ୍ଟେରିଆ' (Eusteria) । ଏଥିରେ ଫୁଟିଥାଏ ମନ୍ଦାରଫୁଲଭଳି ବଡ ବଡ ଫୁଲ । ଏ ଫୁଲଗୁଡିକ ଝୁଲିଥାଏ ସୂତା ଭଳି ଢେର୍ ଲମ୍ବ ଲମ୍ବ ଡେଙ୍ଗମାନଙ୍କରୁ ଆଉ ପବନରେ ଦୋହଲୁଥାଏ ଦୋଳି ଖେଳିଲା ପରି । ଅନ୍ୟଜାତିର ମନ ଲୋଭାଣିଆ ଗୋଲାପି ରଙ୍ଗର ଫୁଲଗୁଡିକର ନାମ 'ଜେରାନିୟମ୍' ।

## ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଭ୍ରମଣ

ଜୁନ୍‌ମାସର ଅପରାହ୍ଣ । କାଲିଫର୍ଣିଆର ଉପକୂଳ ଏକ ଭୂସ୍ୱର୍ଗ ପାଲଟିଥାଏ । ଆମେରିକାର ଏଇ ପଶ୍ଚିମ ଉପକୂଳର ଆବହାଓ୍ୱା ସେପାଖ ପୂର୍ବ ଉପକୂଳଠାରୁ ଭିନ୍ନ ହେବାର ମୁଖ୍ୟ କାରଣ– ଏଠାକାର ଅରଣ୍ୟର ଚିତ୍ର ସେପାଖ ଅପେକ୍ଷା ଅଧିକ ବୈଚିତ୍ର୍ୟପୂର୍ଣ୍ଣ ।

କାଲିଫର୍ଣ୍ଣିଆର ଅରଣ୍ୟରେ ''ରେଡ୍‌ଉଡ୍ ଫରେଷ୍ଟ୍''ର ଖ୍ୟାତି ଶୁଣିଥିଲି । ପୁଣି ଶୁଣିଛି– ଏଇ କାଲିଫର୍ଣ୍ଣିଆ ଅରଣ୍ୟରେ ଅଛି ଏକ ଜାତିର ମହାଦ୍ରୁମ । ଏମାନେ ଯଥାର୍ଥରେ ଅମର ପଦବାଚ୍ୟ– ଅନ୍ୟୂନ ପାଞ୍ଚହଜାର ବର୍ଷ ପର୍ଯ୍ୟନ୍ତ ବଞ୍ଚିରହିପାରନ୍ତି ଏମାନେ । ଏ ମହାଦ୍ରୁମର ନାମ ''ସିକ୍ୱୋୟା'' (Giant Sequoia) ।

ପ୍ରଫେସର୍ ପାଣ୍ଡେ ଆମମାନଙ୍କୁ ତାଙ୍କ କର୍ମକ୍ଷେତ୍ର ସାନ୍ତାକ୍ରୁଜ୍ ବିଶ୍ୱବିଦ୍ୟାଳୟର ପରିସର ବୁଲାଇ ଦେଖେଇଦେବାକୁ ତାଙ୍କ କାର୍‌ରେ ନେଇ ଯାଉଥିଲେ ସେଦିନ ଅପରାହ୍ନରେ । ରାସ୍ତାର କଡେକଡେ ଘଞ୍ଚ-ଅରଣ୍ୟ । ଅରଣ୍ୟ ଫାଙ୍କରେ ପ୍ରଶାନ୍ତ ମହାସାଗର ଦୃଶ୍ୟମାନ ହେଉଥାଏ ଠାଏ ଠାଏ । ସମୁଦ୍ର ଉପରୁ ସ୍ଥଳଭାଗ ଆଡକୁ ମାଡିଆସୁଥିବା ଘନ କୁହୁଡିର ପଟଳ ଏକ ସ୍ୱପ୍ନିଳ ଜଗତ ରଚନା କରିଥାଏ ଶାନ୍ତ ଅପରାହ୍ନର ଆକାଶରେ । ସେଇ ପରିବେଶରେ ଘରୁ ବାହାରି ପ୍ରାୟ ପାଞ୍ଚ ସାତ ମାଇଲ୍ ଡ୍ରାଇଭ୍ କଲା ପରେ ଆମେ ପହଞ୍ଚିଲୁ ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଭିତରେ । ଏ ଏକ ବୃହତ୍ କ୍ୟାମ୍ପସ୍ ଯାହାର ଭିତର ଗୋଟାକ କେବଳ ''ରେଡଉଡ୍'' ଗଛରେ ଭରପୂର । ରେଡଉଡ୍ ଗଛ ଖୁବ୍ ଶକ୍ତିଶାଳୀ, ସଳଖ, ଶକ୍ତ ଓ ସୁଉଚ୍ଚ– ଦେଖିବାକୁ ଅନେକଟା ଶାଳଗଛ ପରି । ତେବେ ଏହାର ବିଶେଷତ୍ୱ ହେଲା– ଏମାନେ ଗୋଟିଗୋଟିକିଆ ହେଇ ବଢନ୍ତି ନାହିଁ । ଏକାମୂଳରୁ ପାଞ୍ଚପାଞ୍ଚଟା କରି ଶାଖା ବାହାରି ଏକ ପରିବାରର ପାଞ୍ଚଭାଇ ପରି ବଢନ୍ତି– ଦିଶନ୍ତି ପାଞ୍ଚ ଭାଇ ବା ପଞ୍ଚପାଣ୍ଡବଙ୍କ ପରି ।

ପାଣ୍ଡେଜୀ ଆମକୁ ସେଇ ରେଡଉଡ୍ ଜଙ୍ଗଲ ଭିତରେ ବୁଲାଇ ବୁଲାଇ କ୍ୟାମ୍ପସ୍ ଦେଖେଇଦେବା ପରେ ଗୋଟିଏ ବିଲଡିଂ କମ୍ପ୍ଲେକ୍ସର ଗେଟ୍ ସାମ୍ନାରେ କାର୍ ଅଟକେଇଲେ । କହିଲେ, ''ମୁଁ ଏଇଠି କାମ କରେ । ଏ ହେଲା ''କାଉଓ୍ୱେଲ୍ କଲେଜ'' । ଆମେ ଗାଡିରୁ ଓହ୍ଲେଇ ଚାରିଆଡେ ଆଖି ବୁଲେଇ ଦେଖିଲୁ । ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟ ହତା ଦିଶୁଥାଏ ଗୋଟିଏ ଉପବନ ପରି । ତା'ଭିତରେ ବହୁତ ଗୁଡିଏ ଶିକ୍ଷାନୁଷ୍ଠାନ । ପ୍ରଫେସର ପାଣ୍ଡେ କହିଲେ– ଚାଲନ୍ତୁ ଭିତରକୁ ଯିବା । ଆମେ ଗେଟ୍ ଟପି କାଉଓ୍ୱେଲ୍ କଲେଜର କୋଠାବାଡ଼ି ବାହାରୁ ବାହାରୁ ଦେଖି ଏଠାକାର ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କର ଭୂସମ୍ପତ୍ତି ଇତ୍ୟାଦିର ବ୍ୟାପକତା ଓ ଆଭିଜାତ୍ୟ କଳନା କରିବାକୁ ଲାଗିଲୁ । ସେତେବେଳେ କଲେଜର ଗ୍ରୀଷ୍ମ-ଅବକାଶ ସମୟ । କଲେଜହତାରେ ଜନସମାଗମ ବିଶେଷ ନଥାଏ । କିଛି ସମୟ ବୁଲାବୁଲି କରିସାରି ଆମେ ପୁଣି ବାହାରକୁ ବାହାରିଲୁ ।

ଡକ୍ଟର ପାଣ୍ଡେ କହିଲେ, ''ଏ କ୍ୟାମ୍ପସ୍‌ରେ ଆହୁରି ତିନିଟି କଲେଜ ଅଛି– ଆଡାଲାଇ ଷ୍ଟିଫେନ୍‌ସନ୍ କଲେଜ, କ୍ରାଉନ୍ କଲେଜ ଆଉ ମେରିଲ୍ କଲେଜ । ଏ ସବୁ ଅନୁଷ୍ଠାନ ଓ ଅନେକ ଛାତ୍ରାବାସ ଏଇ କ୍ୟାମ୍ପସ୍ ଭିତରେ ଥିଲେବି ଆପଣ ଜାଣିପାରିବେନାହିଁ ସେମାନଙ୍କର ଅବସ୍ଥିତି । କାରଣ ଆମ ୟୁନିର୍ଭସିଟିର ଏକ ନିୟମ ଅଛି– "No building shall be

taller than the trees." (କ୍ୟାମ୍ପସ୍ ଭିତର ଗଛମାନଙ୍କଠାରୁ କୌଣସି ବିଲଡିଂର ଉଚ୍ଚତା ଅଧିକ ହେବନାହିଁ) ।

ଏ କଥା ମନେପକେଇଦେଲା ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ କଥା । ସେଠି ମଧ୍ୟ ଆରମ୍ଭରୁ ଏଇ ନିୟମ କୁଆଡେ ପ୍ରଚଳିତ ଥିଲା ।

ଆମେରିକାର ବିଶ୍ୱବିଦ୍ୟାଳୟମାନଙ୍କର କ୍ୟାମ୍ପସ୍‌ଗୁଡ଼ିକର ମୂଳ ଧର୍ମ ହେଲା– ପରିବେଶ ନିରବ ନିରୁପଦ୍ରବ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ହୋଇଥିବା ଦରକାର । ତେଣୁ ଏଠାର ବିଶ୍ୱବିଦ୍ୟାଳୟ ହତା ଭିତରେ ବୁଲିଲେ ଲାଗେ ଋଷି ଆଶ୍ରମ ପରି । ଭାରତର ପ୍ରାଚୀନ ଗୁରୁକୁଳ ଶିକ୍ଷାବ୍ୟବସ୍ଥାର ନମୁନାକୁ ଏମାନେ ଆଧୁନିକ ଯୁଗରେ ମଧ୍ୟ ଜୀବିତ ରଖିପାରିଛନ୍ତି ।

କ୍ୟାମ୍ପସ୍ ବୁଲା ଭିତରେ ଲକ୍ଷ୍ୟକଲି ଅରଣ୍ୟ ଭିତରେ ଠାଏ ଗୋଟିଏ ନିର୍ଜନସ୍ଥଳରେ କ'ଣ ସବୁ କାର୍ଯ୍ୟକଳାପ ଚାଲିଚି । ଅନେକ ଯୁବକ ମାଟିରେ ଗାତ ଖୋଳି ଖୁଣ୍ଟ ପୋତୁଛନ୍ତି । ପାଖରେ ତମ୍ବୁ ଖୁଣ୍ଟ ଓ ତମ୍ବୁଟଣା ସରଂଜାମ ଜମାହେଇଚି । ପାଣ୍ଡେଜୀ ପଚାରି ବୁଝିଲେ– ଜଣାଗଲା ସେମାନେ ବିଶ୍ୱବିଦ୍ୟାଳୟର ଛାତ୍ର । ଗ୍ରୀଷ୍ମଋତୁରେ ସେକ୍ସପିୟର୍‌ଙ୍କ ନାଟକ ଉତ୍ସବ ପାଇଁ ଏମାନେ ଅସ୍ଥାୟୀ ମଞ୍ଚ ଏଠାରେ ନିର୍ମାଣ କରୁଚନ୍ତି ।

କ୍ୟାମ୍ପସ ଭିତରେ, ଅନ୍ୟ ଏକ ନିର୍ଜନ ଆରଣ୍ୟକ ସ୍ଥାନରେ ଲକ୍ଷ୍ୟ କଲି–ଗୋଟିଏ ସ୍ୱତନ୍ତ୍ର ଶୈଳୀରେ ନିର୍ମିତ ଦୋ'ମହଲା ଘର । ପାଣ୍ଡେଜୀଙ୍କୁ ପଚାରି ବୁଝିଲି– ସେଇଟା ତାଙ୍କ ବିଶ୍ୱବିଦ୍ୟାଳୟର ଚାନ୍‌ସେଲର୍‌ଙ୍କ କ୍ୱାଟର୍ସ । ଚାନ୍‌ସେଲର୍ ଜଣେ ମଧ୍ୟବୟସ୍କା ଅବିବାହିତା ଭଦ୍ରମହିଳା ଓ ସେ ବିଖ୍ୟାତ ଏମ୍‌ଆଇଟି (MIIT) ବିଶ୍ୱବିଦ୍ୟାଳୟରୁ ମେଟାଲର୍ଜି ବିଦ୍ୟାରେ ସର୍ବୋଚ୍ଚ ଇଂଜିନିୟରିଂ ଡିଗ୍ରୀ ପ୍ରାପ୍ତ । ଦରମା– ବାର୍ଷିକ $ 2,75,000 (ଦୁଇଲକ୍ଷ ପଞ୍ଚସ୍ତରୀ ହଜାର ଡଲାର) । ସେ ଜଣେ ଖୁବ୍ କାର୍ଯ୍ୟଦକ୍ଷା ମହିଳା । ଅଳ୍ପ କେଇବର୍ଷ ରହଣି ଭିତରେ ବିଶ୍ୱଦ୍ୟାଳୟର ବହୁବିଧ ଉନ୍ନତି ସାଧନ କରାଇସାରିଲେଣି । ତେବେ ଅନେକ କାରଣରୁ ତାଙ୍କର ଜନପ୍ରିୟତା କମିକମି ଚାଲିଚି ବୋଲି ମଧ୍ୟ ଶୁଣିବାକୁ ମିଳିଲା । ମୁଖ୍ୟ କାରଣ ହେଲା– ସେ ତାଙ୍କର ଜଣେ ଲେସ୍‌ବିୟାନ୍ (ସମଲିଙ୍ଗୀ ଯୌନ ସଂପର୍କୀୟ) ମହିଳା ଇଂଜିନିୟର ବନ୍ଧୁଙ୍କୁ ବିଶ୍ୱବିଦ୍ୟାଳୟରେ ନିଯୁକ୍ତି ଦେଇଚନ୍ତି ଫାକଲ୍‌ଟି ସଭ୍ୟଭାବେ, ଅତି ଉଚ୍ଚ ଦରମା ହାରରେ– ବାର୍ଷିକ $ 1,92,000/- (ଏକ ଲକ୍ଷ ବୟାନବେ ହଜାର ଡଲାର) । ଏଇ ବିଷୟ ନେଇ ଶିକ୍ଷକ ମହଲରେ ଓ ଜନ-ସମାଜରେ ତାଙ୍କର ବହୁ ସମାଲୋଚନା ଚାଲିଥିବା ଶୁଣିଲି ।

**ଶେଷ ସମ୍ବାଦ :** ଏଇ ସବୁ କଥାବାର୍ତ୍ତା ଭିତରେ ଆମର କ୍ୟାମ୍ପସ୍ ବୁଲା ସେଦିନ ପାଇଁ ଶେଷହେଲା । ଘରକୁ ଫେରିଲୁ । ଏ ଥିଲା ୨୨ ଜୁଲାଇ ସନ୍ଧ୍ୟାର ଖବର । ତେବେ ମାତ୍ର ଦୁଇଦିନ ପରେ, ତା ୨୪ ଜୁଲାଇ ସକାଳେ ଶୁଣିବାକୁ ମିଳିଲା ଶେଷ ସମ୍ବାଦ–

ସେଦିନ ସକାଳେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ଶୋକାବହ ପରିବେଶ ସୃଷ୍ଟି ହୋଇଯାଇଥିଲା । ଦେଶରେ ସମସ୍ତ ଗଣମାଧ୍ୟମରେ ସମ୍ବାଦଟି ପ୍ରକାଶପାଇଥିଲା– ସମ୍ବାଦରୁ ପ୍ରକାଶ : ସାନ୍ତାକ୍ରୁଜ ବିଶ୍ୱ-ବିଦ୍ୟାଳୟର ଚାନସେଲର ପ୍ରଫେସର୍ ଶ୍ରୀମତୀ ଡେନିସ୍ ଡେଣ୍ଟନ୍ ପୂର୍ବଦିନ ତାଙ୍କର ବୃଦ୍ଧାମାତାଙ୍କ ଦର୍ଶନ ପାଇଁ ଦେଢଶହମାଇଲ୍ ଦୂର ସାନ୍‌ଫ୍ରାନ୍ସିସ୍‌କୋ ସହରକୁ ଯାଇଥିଲେ । ସେଇ ରାତିରେ ସେ ତାଙ୍କ ମା'ଙ୍କ ବାସଗୃହ ଫ୍ଲାଟ୍‌ର ଚାଳିଶ ମହଲା କୋଠା ଉପରୁ ତଳକୁ ଡେଇଁପଡି ଆତ୍ମହତ୍ୟା କରିଥିଲେ । ଏ ଘଟଣା ଆମେରିକାର ଜାଜ୍ୱଲ୍ୟମାନ ସର୍ବାଧୁନିକ ସଭ୍ୟ ଶିକ୍ଷିତ ସମାଜକୁ ରାହୁର ଛାୟା ପରି ଗ୍ରାସ କରିସାରିଥାଏ ।

## ୟୁସମିତି (Yoshemite) ଜାତୀୟ-ଉଦ୍ୟାନ ଭ୍ରମଣ–

– ତା ୨୩ ଜୁନ୍, ୨୦୦୬, ସାନ୍ତାକ୍ରୁଜ, କାଲିଫର୍ଣ୍ଣିଆ –

ସକାଳ ସାଢେଆଠରେ ଅନ୍ନପୂର୍ଣ୍ଣାଙ୍କ ଘରୁ ଆମେ ଚାରିଜଣ– ବୁଲବୁଲ, ପ୍ରତୀକ, ନିରୁପମା ଓ ମୁଁ ଗୋଟିଏ ବଡ ଭ୍ୟାନ୍‌ରେ ସବାରହେଲୁ । ଏ ଭ୍ୟାନ ଅନ୍ନପୂର୍ଣ୍ଣାଙ୍କର । ସେ ଆମକୁ ତାଙ୍କ ଗାଡିନେଇ ୟୁସମିତି (ଯଶୋମତି ?) ଜାତୀୟ ଉଦ୍ୟାନ ଭ୍ରମଣପାଇଁ ସୁଯୋଗ ଦେଇଥିଲେ । ବୁଲବୁଲ ଗାଡି ଡ୍ରାଇଭ୍ କଲା । ପ୍ରତୀକ ପାଖ ସାମ୍ନା ସିଟ୍‌ର ବସି ମ୍ୟାପ୍‌ରୁ ବାଟ ଚିହ୍ନେଇବା ଦାୟିତ୍ୱନେଲା । ଆମ ସାମ୍ନାରେ ପ୍ରାୟ ତିନିଶହ ମାଇଲ୍‌ର ଲମ୍ବା ସଫର୍ । ଏତେଗୁଡାଏ ରାସ୍ତା, ପୁଣି ସଂପୂର୍ଣ୍ଣ ଅଜଣା ଅଚିହ୍ନା ଜାଗାରେ ଝିଅଟା ଆମର କେମିତି ଡ୍ରାଇଭ୍ କରିପାରିବ ସେଇ ସନ୍ଦେହରେ ଆମେ ବାପ ମା' ଦୁହେଁ ପଛ ସିଟ୍‌ରେ ବସି ଚିନ୍ତା କରିଥାଉ । କିନ୍ତୁ ଝିଅ ଆମର ତାର ଆମେରିକାରେ ପଚିଶ ଛବିଶ ବର୍ଷର ରହଣି ଭିତରେ ଜଣେ ପୋଖତ ଡ୍ରାଇଭର୍ ବନିସାରିଥାଏ– ତାର ପ୍ରମାଣ ମିଳିଗଲା– କାଲିଫର୍ଣ୍ଣିଆର ଏକାନ୍ତ ମରୁଭୂମି ଭିତରେ ଯାଉଣୁ ଆସୁଣୁ ଛ'ସାତ ଶହ ମାଇଲ୍ ଡ୍ରାଇଭିଂ ସମୟ ଭିତରେ ।

କାଲିଫର୍ଣ୍ଣିଆ ଆମେରିକାର ପଶ୍ଚିମଉପକୂଳର ଏକ ବିଶାଳ ରାଜ୍ୟ । ପିଲାଦିନେ ସ୍କୁଲ୍ ଭୂଗୋଳ ବହିରେ ଏ ରାଜ୍ୟ ସଂପର୍କରେ ଯାହା ଧାରଣାଥିଲା ସେଥିରୁ ମନେହେଉଥିଲା କାଲିଫର୍ଣ୍ଣିଆ ଆମେରିକାର ଭୂସ୍ୱର୍ଗ । ଏହାର ସୁଦୀର୍ଘ ସାମୁଦ୍ରିକ ଉପକୂଳ ଏକ ଉପବନ ଭଳି ସୁନ୍ଦର ଆଉ ଏହାର ଆଭ୍ୟନ୍ତରୀଣ ଅଞ୍ଚଳ ଏକ ବିସ୍ତୀର୍ଣ୍ଣ ମରୂଦ୍ୟାନ ବୋଲି କଳ୍ପନା କରିଥିଲି । ଏ ରାଜ୍ୟର ସବୁଠୁ ବଡ ସୁଖ୍ୟାତି ସେଇ ଭୂଗୋଳ ବହିରୁ ପାଇ ଖୁବ୍ ଲାଳାୟିତ ହୋଇଥିଲି ଥରେ କେବେ ସୁଯୋଗ ପାଇଲେ କାଲିଫର୍ଣ୍ଣିଆର କମଳା, ଅଙ୍ଗୁର, ସେଓ, ପିଚ୍ ଇତ୍ୟାଦି ବଗିଚାରେ ପଶି ସେସବୁ ଦୁର୍ଲଭ ସ୍ୱର୍ଗୀୟ ଫଳ ସିଧା ଗଛରୁ ତୋଳି ଖାଇବାକୁ । ମୋ ଉପନ୍ୟାସ ''ନର-କିନ୍ନର''ରେ ନାୟକ ଜର୍ଜ ଏଇ ସବୁ ସ୍ୱର୍ଗୀୟ ଦୁର୍ଲଭ ଫଳକୁ ସ୍ୱପ୍ନରେହିଁ ଭକ୍ଷଣ କରୁଥିଲା । ସେଇ କାଳ୍ପନିକ ଫଳଗୁଡିକର ନାଁ ସେ ତା' ଗୁରୁ ନଜିର ଚାଚାଠୁଁ ଶୁଣିଥିଲା– 'ମେଓ୍ୱା' । ଆଜି ମୋ ମନରେ ମେଓ୍ୱା ପ୍ରାପ୍ତିପାଇଁ ଜର୍ଜର ସେଇ ଅପୂର୍ଣ୍ଣ

ଆକାଂକ୍ଷା ପୂର୍ଣ୍ଣ ହେବାକୁ ଯାଉଥାଏ । ଆଜି କାଲିଫର୍ଣ୍ଣିଆର ବିସ୍ତୀର୍ଣ୍ଣ ମରୂଦ୍ୟାନ ଭିତରେ ତିନିଶହ ମାଇଲ୍ ଲମ୍ୱା ଡ୍ରାଇଭ୍ ଭିତରେ ମୁଁ ସେଇ ମେଣ୍ଢା ସନ୍ଧାନହିଁ କରୁଥାଏ, ସତେବା ।

କାଲିଫର୍ଣ୍ଣିଆର ଆଭ୍ୟନ୍ତରୀଣ ଅଞ୍ଚଳର ଦୃଶ୍ୟ ପ୍ରଥମରୁ ମତେ ଦିଶିଲା ଟିକେ ଚିହ୍ନା ଚିହ୍ନା । କେତେବର୍ଷ ତଳେ ଗୋଟିଏ କାମରେ ମତେ ଥରେ ଏକ ଫିଆଟ୍‌କାର୍ ଡ୍ରାଇଭ୍‌କରି ସିଧା ଭୁବନେଶ୍ୱରରୁ ବମ୍ବେ ଯିବାକୁ ପଡିଥିଲା । ଛ'ନମ୍ବର ନ୍ୟାସ୍‌ନାଲ୍ ହାଇୱେରେ ମଧ୍ୟ-ପ୍ରଦେଶ ଭିତରେ ପ୍ରବେଶ କଲା ପରେ ବିନ୍ଧ୍ୟାଂଚଳର ଶୁଷ୍କ ପାର୍ବତ୍ୟ ଅଂଚଳ ଭିତରଦେଇ ଯିବାକୁ ହେଲା । ସେଠାକାର ପାହାଡ ପର୍ବତର ରୂପ ଦେଖିଥିଲି । ରାସ୍ତା କଡେକଡେ ଗୁଡାଏ ଭଗ୍ନଦୁର୍ଗର ଅବଶେଷ ପରି ପ୍ରତୀୟମାନ ହେଉଥିବା ସେ ପାହାଡଗୁଡାକ ଦେଖି ମନେପଡିଲା ପୁରାଣର ଗପ– ଦିନେ ଏଇ ବିନ୍ଧ୍ୟପର୍ବତ ଥିଲା ଉତ୍ତର ଭାରତୀୟଙ୍କ ପାଇଁ ଦୁର୍ଲଂଘ୍ୟ । ସେଥିପାଇଁ ମହର୍ଷି ଅଗସ୍ତ୍ୟ ତାଙ୍କର ଦକ୍ଷିଣକୁ ଯିବା ରାସ୍ତା ଅବରୋଧ କରୁଥିବା ବିନ୍ଧ୍ୟକୁ ଅନୁରୋଧ କରିଥିଲେ– ଦୟାକରି ମତେ ବାଟ ଛାଡିଦିଅ । ବିନ୍ଧ୍ୟ ମଥା ନତ କଲା । ମହର୍ଷି ଆଶୀର୍ବାଦ କଲେ– ଏହିପରି ମଥା ନତ କରିଥାଅ ଆମେ ଫେରିବା ପର୍ଯ୍ୟନ୍ତ । ବିନ୍ଧ୍ୟ ସେଇକାଳୁ ମଥା ନତ କରି ଠିଆହେଇଚି– ମହର୍ଷି ଆଉ ଫେରିଆସିନାହାନ୍ତି ଦକ୍ଷିଣରୁ । ପୁଣି ମନେପଡିଲା ପ୍ରାଚୀନ ଗଣ୍ଡୱାନା ଲାଣ୍ଡ୍, ଅର୍ଥାତ୍ ସେଇ ମଧ୍ୟଭାରତର ଭୂତାତ୍ତ୍ୱିକ ସମୟର ଅବସ୍ଥା ଯେବେ ବିନ୍ଧ୍ୟହିଁ ଥିଲା ସୀମାନ୍ତ ପର୍ବତ ଆଉ ହିମାଳୟ ସେ ପର୍ଯ୍ୟନ୍ତ ଜନ୍ମ ବି ନେଇନଥିଲା । ପରେ ପରେ ଅନେକ ଭୂତାତ୍ତ୍ୱିକ ପରିବର୍ତ୍ତନ ଘଟିଥିଲା ଲକ୍ଷଲକ୍ଷ ବର୍ଷ ଅନ୍ତରାଳରେ । ଗଣ୍ଡୱାନାଲାଣ୍ଡର ପୂର୍ବ-ପଶ୍ଚିମରୁ ଯୋଡାଏ ମହାଦେଶ ଅଲଗା ହେଇଯାଇ ସୃଷ୍ଟିହେଲା ଯଥାକ୍ରମେ ଅଷ୍ଟ୍ରେଲିଆ ଆଉ ଆଫ୍ରିକା– ମଝିରେ ଯେତିକି ଭୂଭାଗ ରହିଗଲା ତା'ରି ନାଁ ଆଜିର ଭାରତ । ଉତ୍ତୁଙ୍ଗ ହିମାଳୟ ପର୍ବତମାଳା ସୃଷ୍ଟିହେଲା, ଆଉ ଦୁର୍ଲଂଘ୍ୟ ବିନ୍ଧ୍ୟ ପର୍ବତାବଳୀ ଭାଙ୍ଗି ଖଣ୍ଡଖଣ୍ଡ ହେଇଗଲା । ପୂର୍ବକାଳର ନଭଶ୍ଚୁମ୍ବୀ ପର୍ବତ ଶୃଙ୍ଗ ସମୟକ୍ରମେ ଭଗ୍ନଦୁର୍ଗର ଅବଶିଷ୍ଟାଂଶ ବା ଖଣ୍ଡହାର ପାଲଟିଲା ।

କାଲିଫର୍ଣ୍ଣିଆ ଆମେରିକା ମହାଦେଶର ଏକ ଭୂକମ୍ପ ପ୍ରବଣ ଅଂଚଳ । ଅବିକଳ ଭୂତାତ୍ତ୍ୱିକକାଳର ବିନ୍ଧ୍ୟାଂଚଳ ପରି ଏବେ ବି ଏଠାର ଭୂପୃଷ୍ଠର ପୁନର୍ଗଠନ ପ୍ରକ୍ରିୟା କାର୍ଯ୍ୟରତ । ବାରମ୍ବାର ଭୂକମ୍ପନ ଯୋଗୁ ଏଠାର ବଡବଡ ପର୍ବତ ସବୁ ଭାଙ୍ଗିପଡି ବିନ୍ଧ୍ୟାଂଚଳ ପରି ଖଣ୍ଡହାର ପାଲଟି ସାରିଥାଏ ହଜାର ହଜାର ବର୍ଷ ଅନ୍ତରାଳରେ ।

କାଲିଫର୍ଣ୍ଣିଆର ମରୁ ଅଂଚଳ ମୁଖ୍ୟତଃ ଏକ ତୃଣଭୂମି । ମାର୍ଚ୍ଚ ଏପ୍ରିଲ୍‌ରେ ବସନ୍ତଋତୁର ଆଗମନ ସମୟରେ ହଠାତ୍ ସମଗ୍ର ଅଂଚଳ ଆବୃତ ହୋଇଯାଏ ଛନଛନ ଜୀବନ ଭରପୂର କଅଁଳ ଘାସର ଅନିନ୍ଦ୍ୟ ସବୁଜିମାରେ । କିନ୍ତୁ ମାସ ଦୁଇଟା ନଯାଉଣୁ ଗ୍ରୀଷ୍ମର ପ୍ରଖର ସୂର୍ଯ୍ୟତାପରେ ସେ ସବୁଜିମା ଜଳିଯାଏ । ଚାରିଆଡ ଆଚ୍ଛନ୍ନ ହୁଏ ଶୁଖିଲା ଘାସର ଧୂସର ବିବର୍ଣ୍ଣତାରେ । ଖରାଦିନେ ଏଇ ତୃଣଭୂମି ଦିଶେ ଅବିକଳ ନିରାଟ ମରୁଭୂମିର ଧୂ ଧୂ

ତାତିଲା ବାଲିପରି ଦୂରକୁ ।

ଏଇ ନିର୍ଜୀବ ଶୁଷ୍କ ମରୁଭୂମି ଭିତରେ ଆମେରିକାର ଜାତୀୟ ରାଜପଥ କଡରେ ମଝିରେ ମଝିରେ ମରୂଦ୍ୟାନ ପରି ଗୋଟିଏ ଗୋଟିଏ ବ୍ୟାପକ ଅଞ୍ଚଳ ମଧ୍ୟ ଆଖିରେ ପଡୁଥାଏ । ଅଂଚଳଟା ସାରା ସବୁଜିମାରେ ଭରିଉଠିଥାଏ । ବୁଲବୁଲ କହିଲା, "ନନା ! ଦେଖ– ଏଇ ହେଲା ଆମେରିକାର ଆଧୁନିକ ଫାର୍ମଲ୍ୟାଣ୍ଡ । ଦେଖ– ଶହଶହ 'ୱାଟର୍ ସ୍ପ୍ରିଙ୍କଲର୍' ସବୁରୁ କେମିତି ପିଚ୍‌କାରି ମାରି ପାଣି ଛିଞ୍ଚା ଚାଲିଚି ଶହଶହ ଏକର ଭେଜିଟେବ୍ଲ ଗାର୍ଡେନ ଉପରେ ।"

କାର୍‌ର ଶୀତତାପ ନିୟନ୍ତ୍ରିତ ପରିବେଶ ଭିତରୁ ବାହାରକୁ ଚାହିଁଦେଖିଲି– ଧୂଧୂ ଖରା । ବାହାରର ତାପମାତ୍ରା ଚାଳିଶ ପଇଁଚାଳିଶ ଡିଗ୍ରୀ ସେଣ୍ଟିଗ୍ରେଡ୍ ! କିନ୍ତୁ ତା'ରି ଭିତରେ– ଶହଶହ ଏକର ବ୍ୟାପି ପରିବା ବଗିଚା । ସେଠି ଚାଲିଚି ଲେଟ୍‌ସ୍ ଶାଗ ଚାଷ ।

ବୁଲ୍‌ବୁଲ କହିଲା, "ସମଗ୍ର ଆମେରିକାକୁ ଲେଟସ୍ (Lettuce) ଶାଗ ଖୁଆଏ ଏଇ କାଲିଫର୍ଣ୍ଣିଆର ଚାଷ କ୍ଷେତ । ଖାଲି ଲେଟ୍‌ସ୍ ନୁହେଁ ଆଗକୁ ଚାଲ ଦେଖିବ– ଆଳୁ ମଟର ଟମାଟୋ ସ୍ୱାଗାର୍ଟି... ଯାବତ୍ ପନିପରିବା ଚାଷ କ୍ଷେତ..."

"କିନ୍ତୁ ଏ ମରୁଭୂମିକୁ ପାଣି ଆସିଲା କୁଆଡୁ ?"– ଆଖି ବୁଲେଇ ଅନୁସନ୍ଧାନ କଲାପରେ ଦେଖିଲି– ପାଣି ଉବୁଟୁବୁ କେନାଲଟିଏ ବୋହିଚାଲିଚି ଟିକଏ ଦୂରରେ । ସେଥିରୁ ସିମେଣ୍ଟରେ ତିଆରି କରନାଳ ସବୁ ଜାଲପରି ବିଛେଇ ହେଇ ରହିଚି ଫାର୍ମ ଗୋଟାକ ଯାକ । ମରୁଭୂମି ଭିତରେ ସେସବୁ ନୀଳଜଳ ଭରପୂର କେନାଲ ଓ କରନାଳ ଗୁଡିକ ସୂଚେଇ ଦେଉଥିଲା– ନିଶ୍ଚୟ କୌଣସି ନଦୀ ବା ଜଳଭଣ୍ଡାର ଅଛି କୋଉଠି ଆଖ ପାଖରେ । କିଛି ସମୟ ପରେ ହାଇୱେ କଡ ସାଇନ୍‌ବୋର୍ଡ ଆସିଲା ଦୃଷ୍ଟିକୁ । ଲେଖାହେଇଥିଲା- "San Lewis Lake Reservoir" !

ବୁଲବୁଲ କାର୍ ଅଟକେଇଲା ସେଇ ସାନ୍‌ଲୁଇସ୍ ଜଳଭଣ୍ଡାର ବନ୍ଧ ଉପର ସାଇଟ୍ ସିଇଂ ପାର୍କିଂଲଟ୍‌ରେ । ଆହୁରି କେତୋଟି କାର୍ ସେଠି ପୂର୍ବରୁ ପାର୍କ କରାଯାଇଥାଏ । ଭ୍ରମଣକାରୀମାନେ ଦଳଦଳ ହେଇ ହ୍ରଦକୂଳରେ ଠିଆହେଇ ହ୍ରଦର ବ୍ୟାପକ ନୀଳିମାମୟ ଜଳରାଶିର ସୌନ୍ଦର୍ଯ୍ୟ ଓ ଶୀତଳ ଆର୍ଦ୍ର ପବନର ସ୍ପର୍ଶ ଉପଭୋଗ କରୁଥାନ୍ତି । ଡହଡହ ତାତିଲା ମରୁଭୂମି ଭିତରେ ଏଇ ମରୁଦ୍ୱୀପ (ଓଏସିସ୍) ପରି ସ୍ଥାନଟି ମନେହେଲା ଅତ୍ୟନ୍ତ ଉପଭୋଗ୍ୟ । ଆମମାନେ ବି ଓହ୍ଲାଇପଡିଲୁ କାର୍‌ରୁ । ନିରାଟ ଶୁଷ୍କ ମରୁଭୂମି ଭିତରେ ସ୍ଥାନେ ସ୍ଥାନେ କୃତ୍ରିମ ଜଳଭଣ୍ଡାର ସୃଷ୍ଟି ଦ୍ୱାରା ଆମେରିକାର ବିଶାଳ କାଲିଫର୍ଣ୍ଣିଆ ମରୁଭୂମିକୁ ଶସ୍ୟଶ୍ୟାମଳା କରିପାରିଛନ୍ତି ବହୁ ବର୍ଷ ପୂର୍ବରୁ ଆମେରିକାନ୍‌ମାନେ । ଆଜିକାଲି ଏଇ ସେଚ ପଦ୍ଧତି ଅବଲମ୍ବନ କରି ଇସ୍ରାଏଲ୍‌ର ମରୁଭୂମିକୁ ମଧ୍ୟ ଶସ୍ୟଶ୍ୟାମଳ କରିଦେଇପାରିଚନ୍ତି ଇସ୍ରାଏଲ୍ ସରକାର ବୋଲି ଆମେ ଶୁଣିଲୁ । କିନ୍ତୁ ଆମ ଓଡିଶାର କଳାହାଣ୍ଡି ବଲାଙ୍ଗୀର

ଭଳି ବ୍ୟାପକ ଅଂଚଳରେ ପ୍ରତିବର୍ଷ ମରୁଡି ଯୋଗୁ ଯେଉଁ ହାହାକାର ପଡେ ତାର ସ୍ଥାୟୀ ନିରାକରଣ କରିବା ଏଯାଏଁ ସଂଭବ ହେଲାନାହିଁ– ଏଇ ଅବଶୋଷ କିଛି ସମୟ ପାଇଁ ଘାରିଲା ମନକୁ ।

ଆମେ ସେତେବେଳକୁ ପ୍ରାୟ ସାଢେ ତିନିଘଣ୍ଟା କାଳ ଡ୍ରାଇଭ୍ କରିସାରିଥାଉ । ମଝିରେ ବାଟ ଭୁଲି ଅନେକତ୍ର ଅବାଟରେ ପଶି ପୁଣି ପଛକୁ ଫେରିବାରେ ବି ଗୁଡାଏ ସମୟ ବିନିର୍ବ୍ୟୟ ହୋଇସାରିଥାଏ ସେଇ ଭିତରେ । ଲକ୍ଷ୍ୟସ୍ଥଳ ୟୁସମିତି ପାର୍କରେ ପହଞ୍ଚିବାକୁ ହୁଏତ ଆଉ ଦୁଇତିନିଘଣ୍ଟା ଲାଗିଯାଇପାରେ । ବୁଲବୁଲ ଖୁବ୍ ସାହସରେ ସେଇ ଅଚିହ୍ନା ଅଜଣା ବିଦେଶୀ ମୁଲକରେ କାର୍‌ଟିକୁ ଖୁବ୍ ସାବଧାନରେ ଚଳଉଥାଏ । ଅତ୍ୟଧିକ ସାବଧାନତା ଯୋଗୁ ସେ କ୍ଲାନ୍ତ ହେଇପଡୁଥାଏ । ତା' କପାଳ ଆକୁଞ୍ଚନରୁ ତାର ମାନସିକ ଅବସ୍ଥା ବୁଝିହେଇଯାଉଥାଏ । କିନ୍ତୁ ମୁଁ ନାଚାର । ମତେ ଡ୍ରାଇଭିଂ ଜଣାଥିଲେ ବି ଏ ଦେଶରେ ଗାଡି ଚଳେଇବାକୁ ମୋର ଆନ୍ତର୍ଜାତିକ ଡ୍ରାଇଭିଂ ଲାଇସେନ୍ସ ନଥାଏ । ପ୍ରତୀକର କାର୍ ଡ୍ରାଇଭିଂ ଲାଇସେନ୍ସ ଥାଏ । କିନ୍ତୁ ତା' ମା' ତାକୁ ଭରସିକରି ସେ ଦାୟିତ୍ୱ ଦେଇ ପାରୁନଥାଏ । ତେଣୁ ଆମ ସମସ୍ତଙ୍କୁ ନେବା ଆଣିବା ଦାୟିତ୍ୱ ଏକା ତା'ରି ଉପରେ ।

ଏଇ ଭିତରେ ପାହାଡ ଚଢା ଘାଟି ରାସ୍ତା ଆରମ୍ଭ ହେଇଯାଇଥାଏ । ଆମକୁ ପ୍ରାୟ ସାତ ଆଠହଜାର ଫୁଟ୍ ଉପର ଉଚ୍ଚତାକୁ ଉଠିବାକୁ ହେବ– ୟୁସମିତି ପାର୍କରେ ପହଞ୍ଚିବାକୁ ହେଲେ । ମରୁଭୂମିର ତାତି ଯୋଗୁ କାର୍‌ର ରେଡିଏଟର୍ ଭଲ କାମ କରୁନଥାଏ– ଇଂଜିନ୍ ଗରମ ହେବାର ସୂଚନା ମିଳୁଥାଏ ଡ୍ୟାସ୍‌ବୋର୍ଡ ଇନ୍‌ଷ୍ଟ୍ରୁମେଣ୍ଟ୍ ପ୍ୟାନେଲ୍‌ର ଥର୍ମୋମିଟର୍‌ରୁ । ବୁଲବୁଲ ଗାଡିର ସ୍ପିଡ କମେଇଦେଲା ଅନେକ ।

ଲମ୍ବା ଡ୍ରାଇଭ୍ ଭିତରେ ଆମେ କେତେଗୁଡିଏ ଛୋଟଛୋଟ ଗାଁଉଳି ଟାଉନ୍ ଭିତର ଦେଇ ଆଗଉ ଥାଉ । ସେମିତି କେତେଟା ଟାଉନ ହେଲା– Los Banos, Merced, Mariposa ଇତ୍ୟାଦି । ସେଇସବୁ ଗାଉଁଲି ଟାଉନ୍ ଗୁଡିକହେଲା କୃଷକମାନଙ୍କର ଟାଉନ୍ । ଟାଉନ୍‌କୁ ଲାଗି ଚାଷକ୍ଷେତ ଏବଂ ଫଳବଗିଚା । ଫଳବଗିଚା ଗୁଡିକ ଏକସଙ୍ଗରେ ହଜାର ହଜାର ଏକରର । ସେତେବେଳେ ଚାଲିଥାଏ ପିଚ୍ ପ୍ଲମ୍ ଟ୍ରେଓ ଅଙ୍ଗୁର ଓ କମଳା ଇତ୍ୟାଦିର ସିଜନ୍ । ଫାର୍ମର ସାରିସାରି କିଆରି ଉପରେ ଠିଆହେଇଥିବା ଫଳଗଛଗୁଡିକରେ ଟହଟହ ପାଚିଲା ରଙ୍ଗୀନ ଫଳର ଦୃଶ୍ୟ ମୋର "ମେଓ୍ୱା" ପ୍ରାପ୍ତି ଆଶାକୁ ବହୁ ପରିମାଣରେ ଚରିତାର୍ଥ କରୁଥାଏ । ମଝିରେ ଠାଏ ଗାଡି ଅଟକେଇଲା ବୁଲବୁଲ । ରାସ୍ତା କଡ ଦୋକାନରୁ ଆମେ କିଛି ପାଚିଲା ଫଳ କିଣିଲୁ । ଏଠାକାର ଯାବତୀୟ ଫଳ ଭିତରେ ମତେ ବେଶୀ ଆକୃଷ୍ଟ କରେ– ପ୍ଲମ୍ ! ତାର ଚକ୍‌ଚକ୍ ଜାମୁକୋଳିଆ କଳା ରଙ୍ଗ ଖୁବ୍ ଲୋଭନୀୟ ।

କିଛି ସମୟ ବିଶ୍ରାମ ପରେ ପୁଣି ଆରମ୍ଭ ହେଲା ଯାତ୍ରା । ଭୋକଲାଗୁଥାଏ ସମସ୍ତଙ୍କୁ । ନିରୁପମା ପଚାରିଲେ, "ପାଖରେ କୌଣସି ଭଲ ହୋଟେଲ୍ ନାହିଁ ? ପ୍ରତୀକକୁ ନିଶ୍ଚୟ

ଭାରି ଭୋକହବଣି''– ପ୍ରତୀକ ପଥପ୍ରଦର୍ଶକ ଆମର । ରୋଡ୍‌ମ୍ୟାପ୍‌ରୁ ସେ ଠାବକରିନେଇ ସାରିଥାଏ ଗୋଟାଏ ଫିଲିଂ ଷ୍ଟେସନ୍ ଆଉ ତା' ପାଖକୁ ଲାଗି ଏକ ରେଷ୍ଟୁରାଁକୁ ରାସ୍ତା ।

ଏ ଦେଶରେ ଦୂରପଥଗାମୀ କାର୍ ଡ୍ରାଇଭର୍‌ମାନଙ୍କର ଅସଲ ପାନ୍ଥଶାଳା ହେଲା– ପେଟ୍ରୋଲ୍ ବା ଗ୍ୟାସ୍ ଫିଲିଂ ଷ୍ଟେସନ୍ । ସେଠି ଗ୍ୟାସ୍ କମ୍ପାନୀ ପକ୍ଷରୁ ଟୁରିଷ୍ଟ୍‌ମାନଙ୍କ ସୁବିଧା ଲାଗି ମାଗଣାରେ ଭଲ ଟଏଲେଟ୍ ବ୍ୟବସ୍ଥା ଯୋଗେଇ ଦେବା ହେଲା ଏ ଦେଶର ଆଇନ୍ । ଏହା ବ୍ୟତୀତ ଫିଲିଂ ଷ୍ଟେସନ୍ ପାଖରେ ଭଲ ଭଲ ରେଷ୍ଟୁରାଁ ମାନ ଥାଏ । ବହୁ ଦୂରରୁ ଦେଖାଗଲା ପରି ଉଚ୍ଚ ଖୁଣ୍ଟମାନଙ୍କରେ ରେଷ୍ଟୁରାଁମାନେ ନିଜ ନିଜ ସାଇନ୍‌ବୋର୍ଡ ପ୍ରଦର୍ଶିତ କରନ୍ତି । ସେଭଳି ଏକ ନାମୀ ରେସ୍ତରାଁ ହେଲା ''ମାକ୍‌ଡୋନାଲାଡ୍'' । ତାର ବିଜ୍ଞାପନ ସୂଚନା ହେଲା– M । ଭୋକିଲା ପଥିକର ତ୍ରାଣକର୍ତ୍ତା ସେଇ ସୂଚନାଟି ଆଖିରେ ପଡ଼ିଲା କିଛି ସମୟ ପରେ । ବୁଲବୁଲ କାର୍‌ର ଗତି ମନ୍ଥର କଲା ଓ ହାଇୱେରୁ ଗୋଟାଏ ''ଟର୍ଣ୍ଣପାଇକ୍'' (ହାଇୱେ ଅପରପାର୍ଶ୍ୱକୁ ଯିବାପାଇଁ ସେତୁ) ବାଟେ କାର୍ ବୁଲିଲା ।

## ପ୍ରାଗ୍ଐତିହାସିକ ଦୃଶ୍ୟର ଗନ୍ତାଘର – ୟୁସମିତି ପାର୍କ–

ପାର୍କ ଏରିଆ ଯେତେଯେତେ ପାଖେଇଥାଏ ସ୍ଥଳଭାଗର ଦୃଶ୍ୟପଟ ସେତେସେତେ ବଦଳି ବଦଳି ଯାଉଥାଏ– ସତେକି ସିନେମା ଦେଖୁଚୁ ! ଶୁଷ୍କ ଧୂସର ରଙ୍ଗର ତୃଣ ପ୍ରାନ୍ତର ମାନ ପଛରେ ରହିଗଲେଣି । ତା' ଜାଗାରେ ଉଭାହେଲେଣି– ଘନ ଅରଣ୍ୟର ସବୁଜିମା । କିନ୍ତୁ ସବୁଠୁ ବିଚିତ୍ର ମନେହେଉଥାଏ ପର୍ବତଗୁଡ଼ାକର ଆଶ୍ଚର୍ଯ୍ୟଜନକ ରୂପ ! କେତେଟା ଦୂରପର୍ବତ ନିଶ୍ଚିତଭାବେ ରୂପାୟିତ ହେଉଥାନ୍ତି ଗଦା ଉଞ୍ଚେଇ ଧାଇଁଆସୁଥିବା ଦୈତ୍ୟ ପରି । କେତେଟା ଦିଶୁଥାଏ ଉଡନ୍ତା ଅବସ୍ଥାରେ ପଥର ପାଲଟି ଯାଇଥିବା ପ୍ରାଗ୍ଐତିହାସିକ ଉଡନ୍ତା ଡାଇନୋସୋର ପରି ।

ପ୍ରତୀକ କହିଲା– ଏଇଟା ନିଶ୍ଚୟ ସେଇ ଜୁରାସିକ୍ ପାର୍କ– ଷ୍ଟିଫେନ୍ ସ୍ପିଲ୍‌ବର୍ଗଙ୍କ ଜୁରାସିକ୍ ପାର୍କ ମୁଭିର ସୁଟିଂ ସ୍ପଟ୍ ! ଏଠି ଲିଭିଂ ଡାଇନୋସୋର ନିଶ୍ଚୟ ବୁଲୁଥିବେ ଏ ପାର୍କରେ । ସାବଧାନ !

ମୁଁ ପଚାରିଲି– ମ୍ୟାପ୍‌ରେ ଦେଖ ସେଇ ପର୍ବତଶ୍ରେଣୀର ନାଁ କ'ଣ ।

ୟୁସମିତି ପାର୍କର କେତେଟା ଲିଟରେଚର୍ ପାଖରେ ଥାଏ । ସେ ସବୁ ଉପରେ ଆଖି ବୁଲେଇ ସାରି ପ୍ରତୀକ କହିଲା, ''ଅଜା ! ଆଗରୁ କହିଥିଲି ନା ଏ ମାଉଣ୍ଟେନ୍ ନାଁ ସିଏରାନେଭେଡା ରେଞ୍ଜ– ଯୋଉଟାକୁ ଦେଖିଥିଲେ ଆମେ ଦୂରରୁ ? ଆମେ ଏଇଲେ ପଶିବାକୁ ଯାଉଚୁ ସେଇ ମାଉଣ୍ଟେନ୍ ରେଞ୍ଜ ଭିତରକୁ । ୟୁସମିତି ପାର୍କ ୟା'ରି ଭିତରେ । ପାର୍କର ସମୁଦାୟ ଏରିଆ– 761,268 ଏକର, ମାନେ 3,080 Sq Km. । ଏଠିକାର ତିନିଟା କାଉଣ୍ଟିକୁ କଭର୍ କରିଚି ୟୁସମିତି ପାର୍କ– ଟୁଲୁମ୍ (Tuolumne), ମାରିପୋଷା

(Mariposa) ଆଉ ମାଦେରା (Madera) । ପାର୍କ ଲ୍ୟାଣ୍ଡର ହାଇଟ୍– 2,127 ft. ରୁ 13,114 ft. । ଏଠିକି ପ୍ରତିବର୍ଷ କେତେ ଭିଜିଟର୍ସ ଆସନ୍ତି ଜାଣ– 3.7 millions of visitors from all over the world– ସାରା ପୃଥିବୀରୁ । ଏ ଏକ ''ୱାର୍ଲଡ୍ ହେରିଟେଜ୍ ସାଇଟ୍'' । ଏ ପାର୍କର ଫ୍ଲୋରାଫୌନା (ଗଛବୃକ୍ଷ ଜୀବଜନ୍ତୁ) ଅତ୍ୟନ୍ତ ବିରଳଜାତି ପ୍ରଜାତିର । ଏ ପାର୍କ ଭିତରେ ତିନୋଟି ସୁରକ୍ଷିତ ତୋଟା (Groves) ଅଛି । ସେଇ ତୋଟାରେ ତମେ ପାଇବ Giant Sequoia ଗଛ । ଏମାନେ ସଂଖ୍ୟାରେ ହାତଗଣତି । ତୋଟା ତିନିଟାକୁ ବହୁତ ଯତ୍ନରେ ସୁରକ୍ଷିତ ରଖାଯାଇଚି ସେଠି । ସେ ତୋଟାସବୁର ନାଁ ହେଲା– ମାରିପୋଷା ତୋଟା– ଏଠି ଅଛି ଦୁଇଶହ (୨୦୦)ଟି ସିକ୍ୱୋୟା ଗଛ । ଅନ୍ୟ ତୋଟା ନାଁ ଟୁଲୁମ ତୋଟା । ଏଠି ମୋଟ ୨୫ (ପଚିଶ)ଟି ସିକ୍ୱୋୟା ଗଛ । ତୃତୀୟ– ମାର୍ସେଡ୍ ତୋଟା– ଏଥିରେ ଅଛି ୨୦ (କୋଡିଏ)ଟି ସିକ୍ୱୋୟା । ଏ ଗଛ ପୃଥିବୀରେ ଆଉ କୋଉଠି ନାହିଁ ଜାଣ ? ପ୍ରକାଣ୍ଡ ଆକାରର ଗଛ । ଏଗୁଡାକୁ ମୁଭିରେ ଦେଖିଥିବ– ଗୋଟାଏ ଗୋଟାଏ ସିକ୍ୱୋୟା ଗଛରର ଗଣ୍ଡିର ଗୋଲେଇ ୪୦ (ଚାଳିଶ) ଫୁଟ୍ । ଏ ଗଛ ୨୭୦ (ଦୁଇଶହ ସତୁରି) ଫୁଟ୍ ପର୍ଯ୍ୟନ୍ତ ଡେଙ୍ଗା ହବା ରେକର୍ଡ ଅଛି । ଯା' ପରମାୟୁ କେତେ ଶୁଣିବ ? ପାଞ୍ଚହଜାର (୫,୦୦୦) ବର୍ଷ ଯାଏଁ !

– ପାଞ୍ଚ ହଜାର ? ଆମେ ଚମକିଉଠିଲୁ ।

ପଚାରିଲି, ''ଆଚ୍ଛା, ଏ ଗଛ ମରିଗଲେ ତ ଯାକୁ କାଟିବା କଷ୍ଟସାଧ ହଉଥିବ ?''

କାଗଜକୁ ଅନେଇ ପ୍ରତୀକ ଉତ୍ତର ଖୋଜିଲା । କିଛି ସମୟ ଆଖି ବୁଲେଇସାରି କହିଲା, ''ଗୋଟାଏ ଗୋଟାଏ ଗଛରୁ କେତେ କାଠ ମିଳିବ ଶୁଣ ! ଏଠି ଲେଖା ହେଇଚି– ଏତେ ପରିମାଣର କାଠ ମିଳିବ ଯେ ସେଥିରେ ଚାଳିଶଟା ଆମେରିକାନ୍ ଲୋକ ତାଙ୍କ ଘର ତିଆରି କରିପାରନ୍ତେ । କିନ୍ତୁ, ଦୁର୍ଭାଗ୍ୟ– ସିକ୍ୱୋୟା କାଠ କାଉଁରିଆ କାଠିଠୁ ବି ଆହୁରି ମସ୍‌କା– ଠକ୍‌ଠାକ୍ ଭାଙ୍ଗିଯାଏ । ତେଣୁ ଏଠାର ଅଙ୍ଗୁର ବଗିଚାରେ ପୂର୍ବେ ଅଙ୍ଗୁର ଚାଷୀମାନେ ବ୍ୟବହାର କରୁଥିଲେ ଯାକୁ ରଂଜା ଦବାକୁ ! ହାଃ ହାଃ । What a shame indeed to our tallest and five thousand year long life of a Giant Sequoia !''

ମୁଁ ତା' କଥା ଶୁଣି ହସିଲି ନାହିଁ, କାରଣ ଅମରତ୍ୱ ସହିତ ଶରୀର ଗଠନରେ ବ୍ୟବହୃତ ପଦାର୍ଥର ଶକ୍ତି ଓ ସ୍ଥାୟିତ୍ୱର ସଂପର୍କ ବା କ'ଣ ? ଆଜିର ବିଜ୍ଞାନଯୁଗର ଜେନେଟିକାଲ୍ ଇଂଜିନିୟର୍‌ମାନେ କହୁଚନ୍ତି ସେମାନେ ଏପରି ମଣିଷ ତିଆରିକରିପାରିବେ ଯେ ଶହଶହ ବର୍ଷଯାକେ ବଞ୍ଚିରହିବା ସଂଭବ ହେବ ଭବିଷ୍ୟତରେ– ତା' ମାନେ କ'ଣ ଭବିଷ୍ୟତର ମଣିଷ ରକ୍ତମାଂସର ନହୋଇ ଲୁହାରେ ତିଆରି ହବ ? ତେବେ ସିକ୍ୱୋୟା ଗଛଟିଏ ଆଖିରେ ଦେଖିବାର ପ୍ରବଳ ବାସନା ନେଇ ଆମେ ପାର୍କର ମୁଖ୍ୟ ପ୍ରବେଶ ଦ୍ୱାର ଆଡକୁ ଗତିକଲୁ ।

ବୁଲବୁଲ ଠାଏ ଗାଡି ଅଟକେଇଲା– ସେଠି ଟିକେଟ୍ କାଉଣ୍ଟର । ଲମ୍ବା ଧାଡି ଜମିଯାଇଥାଏ ଟୁରିଷ୍ଟ ଗାଡିମାନଙ୍କର । ଟିକେଟ୍ ପାଇବାକୁ ବହୁ ସମୟ ନେଲା । ଟିକେଟ୍ ସାଙ୍ଗକୁ ପାର୍କର ମାନଚିତ୍ର, ଦର୍ଶନୀୟ ଜାଗାମାନଙ୍କର ସଂକ୍ଷିପ୍ତ ବିବରଣୀ, ପାର୍କ ଭିତରେ ରାତ୍ରିନିବାସ ଜାଗାର ଠିକଣା ଇତ୍ୟାଦି ମେଞ୍ଚେ କାଗଜ ନେଇ ସେ ଗାଡିକୁ ଫେରିଲା । ଲକ୍ଷ୍ୟକଲି ଏଠିବି ସିକ୍ୟୁରିଟି ଚେକିଂ ପାଇଁ ବ୍ୟାପକ ତନାଘନା । ୨୦୦୧, ସେପ୍ଟେମ୍ବର ୧୧ ପରେ ଆମେରିକାର ପ୍ରବଳ ଆତଙ୍କ ଆତଙ୍କବାଦୀଙ୍କ ପ୍ରତି । ଏହା ମଧ୍ୟ ଅତ୍ୟନ୍ତ ସ୍ୱାଭାବିକ ମନେହେଲା । କାରଣ ୟୁସମିତି ନ୍ୟାସ୍‌ନାଲ୍ ପାର୍କ କିଛି ଗୋଟାଏ ସାଧାରଣ ଟୁରିଷ୍ଟ ସ୍ପଟ୍ ନୁହେଁ– ଏ ହେଲା ପରା ବିଶ୍ୱର ବୁନିୟାଦି ସମ୍ପତ୍ତି ବା ''ୱର୍ଲଡ୍ ହେରିଟେଜ୍ ସାଇଟ୍'' (World Heritage Site) !

## ଅଦ୍ଭୁତ ଜଗତରେ ଆଲିସ୍ ! (Alice in Wonderland)–

ଗେଟ୍ ଟପି ପଶିଲୁ ଭିତରକୁ । ପ୍ରଥମରୁହିଁ ଏକ ଅତିବାସ୍ତବ ଅନୁଭବ– ଏଇଟା ପୃଥିବୀର ଅଂଶ ନା ପୃଥିବୀ ବାହାରର ଅନ୍ୟ କୋଉ ଗ୍ରହ ଉପଗ୍ରହର ଅଂଶ ? ପାର୍କ ଭିତରେ ଅଳ୍ପ କିଛି ରାସ୍ତା ଡ୍ରାଇଭ୍ କରିବା ଭିତରେ ଏ ଜାଗାର ଭୂତାତ୍ତ୍ୱିକ ପରିବେଶ ଆମକୁ ଲକ୍ଷାଧିକ ବର୍ଷ ତଳର ଏକ ଅଦ୍ଭୁତ ଜଗତକୁ ନେଇଗଲା । ମନେହେଲା ଆମେ ହୁଏତ ଗୋଟାଏ ଟାଇମ୍ ମେସିନ୍‌ରେ ସବାର ହେଇସାରିଚୁ ।

ପ୍ରତୀକ ଚିତ୍କାରକଲା– Aja ! See See– we have already entered the Alice's wonderland !

ଚାରିଦିଗକୁ ଚାହିଁ ଦେଖିଲି– ସମୁଦାୟ ଉପତ୍ୟକାର ବଣ ପାହାଡ ନଇ ଝରଣା, ଏପରିକି ରାସ୍ତାକଡରେ ପଡିଥିବା ବଡ ଛୋଟ ପଥର ଖଣ୍ଡର ବି ଗୋଟାଏ ଗୋଟାଏ ରୂପ ଅଛି ! ସେ ରୂପରେ ଦେବ ଦାନବ ମାନବ ପଶୁପକ୍ଷୀ ସରୀସୃପଙ୍କ ସାମଂଜସ୍ୟ ଅତି ସ୍ପଷ୍ଟ ।

ପ୍ରଥମେ ଆଖିରେ ପଡିଲା ସେଇଭଳି ଗୋଟିଏ ରୂପ– ଉପତ୍ୟକାର ଏକ ଅଂଶରେ । ମନେହେଲା ଜଣେ ଋଷି ପର୍ବତ ଶିଖରରେ ତପସ୍ୟାରତ । ତାଙ୍କର ମୁଣ୍ଡରେ ଗୋଟାଏ ମସ୍ତବଡ ଶିଙ୍ଗ ଉଠିଚି, ଆକାଶର ବହୁ ଉଚ୍ଚକୁ ଉଠିଚି ସେ ଶିଙ୍ଗ । କିଛି ସମୟ ନିରୀକ୍ଷଣ କଲା ପରେ ରାମାୟଣର ମହର୍ଷି ଋଷ୍ୟଶୃଙ୍ଗଙ୍କ ଚେତନା ମତେ ଜର୍ଜରିତ କରିଦେଲା ।

ଏଇ ଭିତରେ ବୁଲବୁଲ ୟୁସମିତି ପାର୍କର ମ୍ୟାପ୍‌ଟା ଉପରେ ଆଖିବୁଲେଇ ସାରିଥାଏ । କହିଲା, ''ଏ ପର୍ବତର ନାଁ ଏଲ୍-କ୍ୟାପିଟନ୍ (El-Capitan) ଏ ହଉଚି ପାର୍କର ମୁରବି । ସମଗ୍ର ଉପତ୍ୟକାର ଯେ କୌଣସି ଜାଗାରୁ ଏଇ ପର୍ବତ ଶୃଙ୍ଗ ଦେଖାଯାଏ । ତେଣୁ କହନ୍ତି ଏଇ ଶୃଙ୍ଗଟା ୟୁସମିତି ପାର୍କର ମୁରବି ହେଲେ ଏଲ୍-କ୍ୟାପିଟନ୍ । ଏ ଶୃଙ୍ଗର ବିଶେଷତ୍ୱ ହେଲା– ବିଶୁଦ୍ଧ ଗ୍ରାନାଇଟ୍ ପଥରର । ଗୋଟାଏ

ଆକାଶଛୁଆଁ ସିଧାସଳଖ ସ୍ତମ୍ଭଭଳି ହୋଇଥିବାରୁ ଯା' ଉପରକୁ ଚଢ଼ିବା ଆଦୌ ସହଜ ନୁହେଁ। ଏ ଗୋଟାଏ ଚାଲେଂଜ ମାଉଣ୍ଟେନିୟର୍ସଙ୍କ ପାଇଁ। ପୃଥିବୀ ତମାମ୍‌ରୁ ପାହାଡ ଚଢାଳିମାନେ ପ୍ରତିବର୍ଷ ଜମନ୍ତି ଏଠି ଏଲ୍ କ୍ୟାପିଟନ କ୍ଲାଇବିଂ ପାଇଁ। ଅନେକ ମରନ୍ତି ବି ଏଠି ଦୁର୍ଘଟଣାରେ...''

ନିରୁପମାଙ୍କ ମୁହଁକୁ ଚାହିଁଲି । ଆଖିରେ ତାଙ୍କର ଲେସିହେଇ ରହିଥାଏ ସଦ୍ୟ ଭ୍ରାତୃ-ବିୟୋଗଜନିତ ଶୋକର କଳା ଛାଇ। ତଥାପି ସେ ବିମୁଗ୍ଧ ଦୃଷ୍ଟିରେ ଈଶ୍ୱରଙ୍କ ସୃଷ୍ଟିର ସେଇ ଅଦ୍ଭୁତ ଜଗତକୁ ଅନାଇଥାନ୍ତି ।

ବୁଲବୁଲ ଧୀରେଧୀରେ କାର୍ ଚଳାଉଥାଏ। ପାହାଡ କଟାଯାଇ ଘାଟି ରାସ୍ତା ତିଆରିହେଇଥାଏ ଦର୍ଶକମାନେ ପାର୍କର ବିଭିନ୍ନ ଅଂଶକୁ ସ୍ୱଚ୍ଛନ୍ଦରେ ବୁଲି ଦେଖିବା ପାଇଁ। ରାସ୍ତା କଡେ କଡେ ବୋହିଯାଉଥାଏ ଏକ ପାହାଡି ଝରଣା । ଝରଣାର ପାଣି କାଚକେନ୍ଦୁ ପରି ସ୍ୱଚ୍ଛ ଆଉ ସୁଅର ବେଗ ପ୍ରବଳ– ସତେକି କୌଣସି ନିକଟବର୍ତ୍ତୀ ଜଳପ୍ରପାତରୁ ସେଇକ୍ଷିଣା ଖସିପଡିଚି !

ରାସ୍ତା ଦୁଇକଡେ ଉଚ୍ଚ ପାଚେରି ପରି ଡେଙ୍ଗା ଡେଙ୍ଗା ପର୍ବତିଆ ପାଇନ୍ ଜାତୀୟ ଗଛର ଜଙ୍ଗଲ। ଏ ଦେଶରେ ଜୁନ୍‌ମାସର ଜଙ୍ଗଲ ଆମ ଭାରତର ବର୍ଷାଦିନିଆ ଜଙ୍ଗଲ ପରି ଛନ୍‌ଛନ୍ ସବୁଜ ପତ୍ରରେ ଭରିଯାଇଥାଏ । ଜଙ୍ଗଲ ଭିତର ଦିନବେଳେ ବି ଅନ୍ଧାର– ଠାଏଠାଏ କିଟିକିଟି ଅନ୍ଧାର !

ପ୍ରତୀକ ଡାକିଲା, ''ଅଜା ! ଦେଖ ଦେଖ– ସେ ଯୋଉ ମସ୍ତବଡ ଟନେଲ୍ ସେଠି ଦେଖୁଚ ତା'ରି ଭିତରେ ଅଛନ୍ତି ସେମାନେ–''

– ''କିଏ ?'' – ନିରୁପମା ଚମକିପଡିଲେ।

ମୁହଁ ଗମ୍ଭୀର କରି ପ୍ରତୀକ କହିଲା, "I think Stephen Spielberg must have shooted his famous picture Jurrasic Park here in this Yoshmite Park. I believe he must have met those creatures, the prehistoric monsters, the Dianosaurs, there in that area around that huge tunnel"–

ବୁଲବୁଲ ହସିଲା– ''ତତେ ତ ସବୁଠେଇଁ ଦିଶୁଚି ଆଲିସ୍ ଇନ୍ ଦ' ୱଣ୍ଡରଲ୍ୟାଣ୍ଡ ନହେଲେ ଜୁରାସିକ୍ ପାର୍କ, ଆଉ ନନାଙ୍କୁ ଦିଶୁଚି ରାମାୟଣ ମହାଭାରତ– ହେଲେ ଏ ମ୍ୟାପ୍‌ରେ ଏ ସୁଡଙ୍ଗର ନାଁ 'ଟନେଲ୍ ଭ୍ୟୁ'। ଏ ଗୋଟାଏ ଜିଓଲଜିକାଲ୍ ଏଜର୍ ଷ୍ଟ୍ରକ୍‌ଚର୍। ହଜାର ହଜାର ବର୍ଷର ଗ୍ଲେସିଆଲ୍ ଆକ୍‌ସନ୍ ଯୋଗୁ ଏ ବିରାଟ ସୁଡଙ୍ଗ ଏଠି ଗଢିଉଠିଚି ପ୍ରାକୃତିକ ପ୍ରଣାଳୀରେ...''

କିଛି ବାଟ ଯିବାପରେ ଅଦୂରରେ ଦିଶିଲା ଯୋଡିଯାଉଁଳିହେଇ ଠିଆହେଇଥିବା ବୃହତ୍‌କାୟ ଦୁଇଟା ଗମ୍ବୁଜ । ତା' ଭିତରୁ ଗୋଟିଏ ଦିଶୁଥାଏ ଅବିକଳ ଏକ ଶିବଲିଙ୍ଗ ଭଳି । ଅନ୍ୟଟି ମନେହଉଥାଏ– ସେ ବି ଥିଲା ସେଇ ଲିଙ୍ଗ ଆକୃତିର– କିନ୍ତୁ ଦିଶୁଥାଏ ଅଧାରୁ ଭାଙ୍ଗି ପଡିବା ଭଳି । ସବୁଠୁ ଆଶ୍ଚର୍ଯ୍ୟ– ସେଇ ପୂର୍ଣ୍ଣ ଅବୟବର ଲିଙ୍ଗର ମୁଣ୍ଡ ଉପରରୁ ବାହାରିଥାଏ ଗୋଟାଏ ବିଶାଳ ଜଳପ୍ରପାତ ! ଅବିକଳ ପୁରାଣ ବର୍ଣ୍ଣିତ ଦୃଶ୍ୟ– ଶିବଙ୍କ ଜଟାରୁ ଗଙ୍ଗାବତରଣ ପରି ସେ ଦୃଶ୍ୟ ।

ବୁଲବୁଲ ମ୍ୟାପ୍ ଦେଖି କହିଲା, ''ଏହାର ନାମ 'ସେଣ୍ଟିନେଲ୍ ଡୋମସ୍' । ଏମାନେ ପାର୍କର ଜଗୁଆଳ । ଯା'ଙ୍କ ଉଚ୍ଚତା କେତେ ଶୁଣିବ– ଯୋଉଟା ଅଭଙ୍ଗା ସେ ୩,୦୦୦ ଫୁଟ୍; କିନ୍ତୁ ଯୋଉଟା ଅଧା ମାନେ 'ହାଫ୍ ଡୋମ୍' ତା' ଉଚ୍ଚତା ୪,୮୦୦ ଫୁଟ୍ ! ତା'ମାନେ ଏ ଅଧା ଗମ୍ବୁଜଟା ଦିନେ ନିଶ୍ଚୟ ଥିବ ଆଠ ନହଜାର ଫୁଟ ଉଚ୍ଚ ! ଏଠିକି ବି ଲୋକେ ଆସନ୍ତି ରକ୍ କ୍ଲାଇବିଂ ପାଇଁ । ଏଗୁଡାକ ବିଶୁଦ୍ଧ ମୁଗୁନି ମାନେ ଗ୍ରାନାଇଟ୍ ଷ୍ଟୋନ୍‌ସ୍...''

ଆମେ କିଛି ସମୟ ସେଠି ଅଟକିଲୁ । ବୁଲାବୁଲି କରି କାର୍‌ରେ ବସି ପୁଣି ଆଗେଇଲୁ । କିଛି ବାଟ ଯିବା ପରେ ଏକ ଚମତ୍କାର ଦୃଶ୍ୟ ପଡିଲା ଆଖିରେ । ସେଠି ଅନେକଗୁଡାଏ କାର୍ ପାର୍କହେଇଥାଏ । ଟୁରିଷ୍ଟଙ୍କ ଭିଡ ଲାଗିଥାଏ । ସମସ୍ତଙ୍କ ଆଖି ସେଇ ଦୃଶ୍ୟ ଉପରେ । ବେଶ୍ ନିକଟରେ ଦିଶୁଥାଏ– ସିଧା ଆକାଶରୁ ଖସିଲାପରି ପଡୁଥାଏ ଗୋଟାଏ ଜଳପ୍ରପାତ ! ପ୍ରପାତଟି ଦିଶୁଥାଏ ଓଢଣା ଦେଇ ବସିଥିବା ଏକ ନାରୀର ଓଢଣା ଅନ୍ତରାଳରୁ ଝରିଆସିଲାପରି– ସତେକି ନାରୀଟି କ୍ରନ୍ଦନରତା...

ଆମ ଗାଇଡ୍ ବୁଲବୁଲ ମୁହଁକୁ ଅନାଇଲି । ସେ ତା' କାଗଜ ଦେଖି କହିଲା, ''ୟା ନାଁ 'ବ୍ରାଇଡାଲ୍ ଫଲ୍' (Bridal Fall) ୧,୬୧୨ ଫୁଟ୍ ଉଚ୍ଚରୁ ପଡୁଚି ଏ ପ୍ରପାତ । ଆମେ ୟାକୁ ଦେଖୁଚେ ଗୋଟାଏ ଟନେଲ୍‌ରୁ ପଡିବା ଅବସ୍ଥାରେ, ତେଣୁ ଦିଶୁଚି ଏମିତି ଓଢଣା ଭିତରୁ ବୋହୂଟିଏ କାନ୍ଦିଲାଭଳି । ଏ ଟନେଲ୍‌ର ନାଁ– ୱାଓନା (Wawona tunnel)– ଏ ନାମ ରେଡ୍ ଇଣ୍ଡିଆନ୍‌ଙ୍କର ନିଶ୍ଚେ ।''

ପରେ ପରେ ଆହୁରି ବହୁତ ଜଳପ୍ରପାତ ଦୃଷ୍ଟିଗୋଚର ହେଲା– ଆମେ ଯେତେ ଯେତେ ଭିତରକୁ ଭିତରକୁ ଆଗେଇଲୁ ସେତେ ସେତେ ବେଶି ସଂଖ୍ୟାରେ । ସେସବୁ ଭିତରେ ଥିଲା 'ୟୁସମିତି ଜଳ ପ୍ରପାତ'– ଉଚ୍ଚତା ୨,୪୨୫ ଫୁଟ୍ । ହେଚ୍‌ହେଚି ପ୍ରପାତ (Hetch Hechy Fall) । ଜାଣିଲୁ ଏ ପାର୍କରେ ଶହଶହ ପ୍ରପାତ ଅଛି । ଏ ସମସ୍ତ ପ୍ରପାତର ଉତ୍ପତ୍ତିସ୍ଥଳ ହେଲା ପର୍ବତ ଉପରେ ଯୁଗଯୁଗର ସଂଚିତ ସଘନ ବରଫକ୍ଷେତ୍ର ଅର୍ଥାତ୍ ଗ୍ଲେସିୟରସ୍ । ବାର-ତେର ହଜାର ଫୁଟ୍ ପର୍ବତଶିଖରରେ ଅବସ୍ଥିତ ଏଇ

ଗ୍ଲେସିୟର୍ ଗୁଡିକୁ ଦେଖିବାକୁ ଇଚ୍ଛୁକ ଟୁରିଷ୍ଟମାନଙ୍କ ପାଇଁ ପର୍ବତର ଅନେକ ଉଚ୍ଚତା ପର୍ଯ୍ୟନ୍ତ କାର୍ ଡ୍ରାଇଭ୍ କରି ଯିବାକୁ ରାସ୍ତା ଅଛି ବୋଲି ଶୁଣିଲୁ । କିନ୍ତୁ ଡ୍ରାଇଭିଂରେ ଉଚିତ୍ ଦକ୍ଷତା ନଥିଲେ ସେଭଳି ଉଚ୍ଚ ପର୍ବତଶିଖରକୁ ଯାଇଥିବା ରାସ୍ତାରେ କାର୍ ଚଳାଇବାରେ ବିପଦ ମଧ୍ୟ ଥାଏ ।

ବୁଲବୁଲ କହିଲା– ଚାଲ ଯିବା ନନା ! ମୁଁ ଡ୍ରାଇଭ୍ କରି ନେଇଯିବି । ନିରୁପମା ମୁହଁ ଖୋଲିଲେ– ନା ! ଆମର ଦରକାର ନାହିଁ. . . । ଗ୍ଲେସିୟର୍ ଦର୍ଶନ ଅଗତ୍ୟା ବନ୍ଦକରିବାକୁ ପଡିଲା । ବାଟରେ ଠାଏ ଗୋଟିଏ ଝରଣା କୂଳରେ ସୁନ୍ଦର ଗାଲିଚା ପଡିଲାପରି ଏକ ବିସ୍ତୃତ ଘାସପଡିଆ ଦେଖିଲୁ– ସେଇଠି ବସିପଡିଲୁ ।

ବୁଲବୁଲ ପାର୍କର ମାନଚିତ୍ର ଉପରେ ଆଖି ପକେଇଲା । କହିଲା– ''ପାର୍କ ସାରା ଏମିତି ଗୁଡାଏ ଘାସ ପଡିଆ (ମିଡୋ) ଅଛି । ଆମେ ବସିଚୁ ଏଇଲେ 'ଟୁଲୁମ୍ ମିଡୋ'ରେ । ଆଉ ଗୋଟାଏ ମିଡୋ ଅଛି ଏଠି କୋଉଠି– 'ଡାନା ମିଡୋ' । ତା'ଛଡା ଏଠାକାର ଅନ୍ୟତମ ଦର୍ଶନୀୟ ଅଂଚଳଗୁଡିକ ହେଲା 'କ୍ଲାର୍କ ରେଂଜ୍' 'କୁନା କ୍ରେଷ୍ଟ୍' 'ସିଏରା କ୍ରେଷ୍ଟ୍' ଇତ୍ୟାଦି । କୁନା କ୍ରେଷ୍ଟଟାକୁ ନିହାତ ଦେଖିବା କଥା– କୁଆଡେ ଏଇଟା ଗୋଟାଏ ମାଣିକ୍ୟ ପଥରର ପାହାଡ ! ଲାଲ୍‌ରଙ୍ଗର ପଥରର ପୂରା ଗୋଟାଏ ପିରାମିଡ୍ ଆକାରର ପର୍ବତ !''

ସୂର୍ଯ୍ୟ ଅସ୍ତଗାମୀ ହେବାକୁ ଆରମ୍ଭ କରୁଥାନ୍ତି । ଛାଇ ବୁଲି ଯିବା ପରେ ଜଙ୍ଗଲ ଭିତର ଆହୁରି ରହସ୍ୟମୟ ଲାଗୁଥାଏ । ସୂର୍ଯ୍ୟକିରଣ ମଉଳିବାମାତ୍ରେ ଶୀତ ହଠାତ୍ ମାଡିଆସିଲା । ଆମେ ସେତେବେଳେ ସମୁଦ୍ର ପତ୍ତନରୁ ପ୍ରାୟ ଆଠ ହଜାର ଫୁଟ ଉଚ୍ଚରେ ଥାଉ । ସମସ୍ତେ ଯେ ଯାହା ଜାକେଟ୍ ସ୍ୱେଟର ପିନ୍ଧିଲୁ ।

କେତେଜଣ ବିଦେଶୀ ଟୁରିଷ୍ଟ୍ କଥାବାର୍ତ୍ତା ହେଉଥିବା ଶୁଣିଲୁ– ଏ ଜଙ୍ଗଲରେ 'ମାର୍‌ମ୍‌ଟ୍' ଅଛନ୍ତି । ମାର୍‌ମଟ୍ ହେଲେ ଏଠାକାର ଭାଲୁ । ସେମାନଙ୍କ ଦେହର ରଙ୍ଗ ବାଦାମୀ । ତା'ଛଡା ଏଠି ବି କଳା ଭାଲୁ ଅଛନ୍ତି । ପୁଣି ବଡବଡ ହରିଣ– ମ୍ୟୁଲ୍‌ଡିଅର୍ ! ରାତିରେ ଜଙ୍ଗଲ ଆଦୌ ନିରାପଦ ନୁହେଁ । ତଥାପି ସାରା ରାତି ଯା' ଭିତରେ ସାହସୀ ଲୋକେ ଘୂରି ବୁଲିବୁଲି ମଜା ଉଠାନ୍ତି– ପୃଥିବୀର ଅଦ୍ୱିତୀୟ ଏଇ ୟୁସମିତି ପାର୍କରେ ।

ସନ୍ଧ୍ୟା ପ୍ରାୟ ଆଠଟା ପର୍ଯ୍ୟନ୍ତ ବୁଲାବୁଲି କରି ଆମେ ଚାଲିଲୁ ରାତି ରହଣି ସ୍ଥାନ– ପୂର୍ବରୁ ଠିକ୍ କରାଯାଇଥିବା ''ୟଶୋମିତି ଭ୍ୟୁ ଲଜ୍''କୁ । ଏ ଲଜ୍‌ରେ ଟୁରିଷ୍ଟମାନେ ନିଜ ରୁମ୍‌ରେ ରୋଷେଇ କରିବା ପାଇଁ ସମସ୍ତ ବ୍ୟବସ୍ଥା ଥାଏ । – ମାଇକ୍ରୋ ଓ୍ୱେଭ୍, ଗ୍ୟାସ୍‌ଚୁଲା, ଫ୍ରିଜ୍ ଗ୍ରାଇଣ୍ଡର୍ ଓଗେର୍ । ନିରୁପମା ଓ ବୁଲବୁଲ ଲାଗି ଗାଡିରେ ଅଣାଯାଇଥବା ଖାଇବା ଜିନିଷ ସବୁ ଗରମ କରି ଏକ ବଢିଆ 'କ୍ୟାମ୍ପ ଡିନର୍' ପ୍ରସ୍ତୁତ କରିଦେଲେ ।

ୟୁସୁମିତି ଭ୍ୟୁ-ଲଜ୍‌ର ପଟ୍ଟଭୂମି ଖୁବ୍ ଚମତ୍କାର । ଦୋ'ମହଲା ଉପରୁ ରୁମ୍‌ର କାଚ ଝରକା ଭିତରୁ ଘର ପଛପଟ ପାହାଡର ଦୃଶ୍ୟ ଜହ୍ନରାତିରେ ଅପୂର୍ବ ଦିଶୁଥାଏ । ପାହାଡତଳେ, ଲଜ୍‌ର ଠିକ୍ ପଛପଟକୁ ଏକ ଚିରସ୍ରୋତା ପାହାଡିଝରଣାର କୁଳୁକୁଳୁ ଶବ୍ଦ ରାତିସାର-ନୈସର୍ଗିକ ସଙ୍ଗୀତ ପରିବେଷଣ କରୁଥାଏ । ଏଇ ଚିରସ୍ରୋତା ପାର୍ବତ୍ୟ ଝରଣା ଏବଂ ଉଜ୍ଜ୍ୱଳ ନୀଳମଣି ସଦୃଶ୍ୟ ଏଠାକାର ଜଳାଧାର ଗୁଡିକହେଲା ସ୍ୱର୍ଗୀୟ ସୌନ୍ଦର୍ଯ୍ୟମୟୀ ୟୁସମିତି ପାର୍କର ମୁଖ୍ୟ ଦର୍ଶନୀୟ ବିଷୟ । ଟୁରିଷ୍ଟ୍‌ଗାଇଡ୍ ମ୍ୟାପ୍ ଅନୁଯାୟୀ ଏ ପାର୍କରେ ଅଛି ସର୍ବମୋଟ ୩,୨୦୦ଟି ପ୍ରାକୃତିକ ହ୍ରଦ ଏବଂ ଦୁଇଟି ବିଶାଳ ଜଳଭଣ୍ଡାର । ଏହା ବ୍ୟତୀତ ଏଠାରେ ପ୍ରବାହିତ ପ୍ରାକୃତିକ ଝରଣାମାନଙ୍କର ସାମଗ୍ରିକ ଦୈର୍ଘ୍ୟ– ୧,୭୦୦ ମାଇଲ୍ !

ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଭରା ଏଇ ବିସ୍ମୟକର ବିଶାଳ ପ୍ରାଗ୍-ଐତିହାସିକ ସ୍ଥଳର ସାମଗ୍ରିକ ରୂପ ଦର୍ଶନ ମାତ୍ର ଦିନ ଦୁଇଟାର ରହଣିକାଳରେ ଆମ ପାଇଁ ଥିଲା ସଂପୂର୍ଣ୍ଣ ଅବାସ୍ତବ । ତେଣୁ ଏକାନ୍ତ ଦୁଃଖର ସହିତ ବାଧ୍ୟହୋଇ ଆମକୁ ବିଦାୟ ନେବାକୁ ହେଲା ।

ସକାଳ ବ୍ରେକଫାଷ୍ଟ ଆମେ ଏଠାକାର ଗୋଟିଏ ରେଷ୍ଟୁରାଁରେ ଖାଇଲୁ । ବୁଲବୁଲ କହିଲା, ''ମୁଁ ତୁମମାନଙ୍କୁ ସାରା ପାର୍କଟା ବୁଲାଇ ଦେଖେଇବାକୁ ଇଚ୍ଛାକରି ବି ପାରୁନାହିଁ ନନା ! ସେଥିପାଇଁ ମୁଁ ଅତି ଦୁଃଖିତ । କିନ୍ତୁ ମୋର ପ୍ରତିଜ୍ଞା ପୂରଣ ହେଇଗଲା ଆଜି– ମୁଁ ଆମେରିକା ଆସିବା ପରେ ଏ ଦେଶର ଅଦ୍ଭୁତ ପ୍ରାକୃତିକ ପରିବେଶକୁ ଦେଖି ମନେମନେ ପ୍ରତିଜ୍ଞା କରିଥିଲି ସମୟ ଓ ସୁବିଧା ପାଇଲେ ମୁଁ ନିଶ୍ଚେ ମୋ ମମି ନନାଙ୍କୁ ଏ ଦେଶ ବୁଲେଇ ଦେଖେଇବି ! ସେଇ ଭିତରେ କାଲିଫର୍ଣ୍ଣିଆର ଏଇ ଅପୂର୍ବ ୟୁସମିତି ପାର୍କ ଥିଲା ଅନ୍ୟତମ । ଆଜି ସେ ସଂକଳ୍ପ ପୂର୍ଣ୍ଣ ହେଲା; ଯଦିଓ ପୂରା ପାର୍କଟା ବୁଲି ହେଲା ନାହିଁ ।''

ଲଗେଜପତ୍ର କାର୍‌ରେ ଲୋଡକରିଦେଇ ଆମେ ଲଜ ଛାଡିଲୁ । ସେଦିନ ସନ୍ଧ୍ୟାପୂର୍ବରୁ ଆମକୁ ସାନ୍ତାକ୍ରୁଜ୍‌ରେ ପହଞ୍ଚିବା ନିହାତି ଦରକାର । ସନ୍ଧ୍ୟାରେ ୟୁନିର୍ଭସିଟି କ୍ୟାମ୍ପସ୍‌ରେ ପାଣ୍ଡେ ପରିବାରର ଫଙ୍କସନ୍– ପୁଅ ଆଲୋକର ହାଇସ୍କୁଲ୍ ଗ୍ରାଜୁଏସନ୍ ଉତ୍ସବ– ସେଥିରେ ମୁଁ ପୁଣି ମୁଖ୍ୟଅତିଥି ହେବି ବୋଲି ଡକ୍ଟର ପାଣ୍ଡେ ମତେ ପୂର୍ବରୁ ଅନୁରୋଧ କରିଥାନ୍ତି । ଦିନ ଏଗାର ସୁଦ୍ଧା ଆମେ ପାର୍କ ଛାଡିଲୁ ।

ୟୁସମିତି ପାର୍କର ଦର୍ଶନହେଲା ନିଶ୍ଚୟ; କିନ୍ତୁ ଅବଶୋଷ ରହିଗଲା– ବୃକ୍ଷରାଜ 'ଜାଏଣ୍ଟ ସିକ୍ୱୋୟା'ଙ୍କ ଦର୍ଶନ କରିହେଲା ନାହିଁ । ସେଥିପାଇଁ ଦରକାର ଥିଲା ବିପଦସଂକୁଳ ଘାଟି ରାସ୍ତାରେ ଡ୍ରାଇଭ୍ କରି ଦଶ ଏଗାର ହଜାର ଫୁଟ୍ ଉଚ୍ଚ ପର୍ବତ ଆରୋହଣ । ପରିସ୍ଥିତି ଦୃଷ୍ଟିରୁ ତାହା ଆମ ପାଇଁ ସଂଭବ ନଥିଲା ।

## ଆମେରିକାରେ ହାଇସ୍କୁଲ୍ ଗ୍ରାଜୁଏସନ୍ ଉତ୍ସବର ତାତ୍ପର୍ଯ୍ୟ

– ତା. ୨୪ ଜୁନ୍, ୨୦୦୬, ସାନ୍ତାକ୍ରୁଜ, କାଲିଫର୍ଣିଆ, ୟୁ.ଏସ.ଏ ।

ସେଦିନ ଅପରାହ୍ନରେ ୟୁସମିତି ପାର୍କ ଭ୍ରମଣ ସାରି ଆମେ ଡକ୍ଟର ପାଣ୍ଡେଙ୍କ ସାନ୍ତାକ୍ରୁଜ ବାସଭବନରେ ପହଞ୍ଚିଲୁ । ୟୁସମିତି ପାର୍କ ଫେରନ୍ତି ବାଟରେ ବୁଲବୁଲ ଡ୍ରାଇଭିଂ କରୁକରୁ କେତେଥର ବାଟ ହୁଡିବା ସତ୍ତ୍ୱେ ଆମେ ଯେ ଠିକ୍ ସମୟକୁ ଆସି ତାଙ୍କ ଘରେ ପହଞ୍ଚିପାରିଥିଲୁ ସେଥିପାଇଁ ଭାଗ୍ୟକୁ ଧନ୍ୟବାଦ ଦେବାକୁ ହେଲା ।

ସନ୍ଧ୍ୟାବେଳକୁ ଅନ୍ନପୂର୍ଣ୍ଣା ଓ ଡକ୍ଟର ତ୍ରିଲୋକୀ ପାଣ୍ଡେଙ୍କ ସହିତ ନିରୁପମା, ପ୍ରତୀକ ଓ ମୁଁ ପହଞ୍ଚିଲୁ ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ । ସେଠି ଏକ କମ୍ୟୁନିଟି ସେଣ୍ଟର ଗୃହରେ ଉତ୍ସବର ବ୍ୟବସ୍ଥା କରାଯାଇଥାଏ । ଆମେରିକାର କୌଣସି ବିଶ୍ୱବିଦ୍ୟାଳୟ ପରିସରରେ ଆୟୋଜିତ ଏପରି କିଛି ଉତ୍ସବରେ ଯୋଗଦେବାର ଅଭିଜ୍ଞତା ମୋର ଏଇ ପ୍ରଥମ । ସେଠାରେ ପହଞ୍ଚିବା ପରେ ଲକ୍ଷ୍ୟକଲି ବିରାଟ ହଲ୍‌ଟିକୁ ଖୁବ ସୁନ୍ଦର ଭାବେ ଫୁଲ୍, ଫେଷ୍ଟୁନ ଓ ବ୍ୟାନର୍‌ରେ ସଜାଯାଇଚି । ବିଶାଳ ହଲ୍ ଭିତରେ ପ୍ରାୟ ଚାରିଶହ ଅତିଥିଙ୍କ ପାଇଁ ବସିବା ଓ ଖିଆପିଆର ଅୟୋଜନ ହୋଇଥାଏ । ଖିଆପିଆ ଆରମ୍ଭ ପୂର୍ବରୁ ନୂଆଗ୍ରାଜୁଏଟଙ୍କୁ ସମ୍ବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ ଏକ ସାଧାରଣ ସଭାର ଆୟୋଜନ କରାଯାଇଥାଏ । ଅନ୍ନପୂର୍ଣ୍ଣା ଓ ଡକ୍ଟର ପାଣ୍ଡେ ଆନୁଷଙ୍ଗିକ ପ୍ରସ୍ତୁତିରେ ଲାଗିଗଲେ ।

ଧୀରେଧୀରେ ଅତିଥିମାନଙ୍କର ଆଗମନକୁ ଲକ୍ଷ୍ୟକଲି । ଶୁଣିଥିଲି ସାନ୍ତାକ୍ରୁଜ ଓ ଆଖପାଖ ସାନ୍‌ହୋଜେ (San Hose) ଇତ୍ୟାଦି ସହରମାନଙ୍କରେ ଅନେକଗୁଡିଏ ଓଡିଆ-ପରିବାର ଚାକିରିବାକିରି ଓ ବ୍ୟବସାୟ ବାଣିଜ୍ୟ ଉଦ୍ଦେଶ୍ୟରେ ବହୁ ବର୍ଷ ହେବ ରହି ଆସିଛନ୍ତି । କାଳେ କେହି ଚିହ୍ନା ମୁହଁ ଦିଶିଯିବ ସେଇ ଆଶାରେ ମୁଁ ଅତିଥିମାନଙ୍କ ଗହଣରେ ବୁଲିବୁଲି ଚିହ୍ନା ମୁହଁ ଖୋଜିଲି ।

ଯଥା ସମୟରେ ସଭାଗୃହ ଭରପୂର୍ ହେଇଗଲା । ଅଧିକାଂଶ ଅତିଥି ଥିଲେ ମୋର ଅଚିହ୍ନା– ବୋଧହୁଏ ପାଣ୍ଡେଙ୍କ ବିଶ୍ୱବିଦ୍ୟାଳୟର ସହକର୍ମୀ– ଉଭୟ ଆମେରିକାନ୍ ଓ ଭାରତୀୟ । ତେବେ ସେମାନଙ୍କ ଭିତରେ ଅନେକ ମଧ୍ୟ ଥିଲେ ମୋର ଚିହ୍ନା ଅଚିହ୍ନା ଓଡିଆ ଭଦ୍ରଲୋକ ଓ ଭଦ୍ରମହିଳା । ସେମାନେ ଅଧିକାଂଶ ନିଜନିଜର ପରିବାରବର୍ଗଙ୍କ ସହିତ ଆସିଥାନ୍ତି । କ୍ରମଶଃ ସଭାଗୃହ ଓଡିଆଭାଷାରେ କଥାବାର୍ତ୍ତାର ସ୍ୱରରେ ଗହଗହ ଶୁଭିଲା । ମନେହେଲା ମୁଁ ସତେକି ଆମେରିକାରେ ନାହିଁ– ଅଛି ଓଡିଶାରେ ! କାଲିଫର୍ଣିଆର ଏଇ ସାନ୍ତାକ୍ରୁଜ ଅଂଚଳରେ ଏତେ ସଂଖ୍ୟାରେ ଓଡିଆ ଲୋକ ଥାଆନ୍ତି ଜାଣି ମୋ ଛାତି କୁଣ୍ଢେ ମୋଟ ହେଇଗଲା । ଜନଗହଳି ଭିତରେ ବୁଲିବୁଲିକା ମୁଁ ମୋ ଚିହ୍ନାଲୋକଙ୍କୁ ଭେଟିବି କ'ଣ ଓଲଟି ସେମାନେ ମତେ ସେଭଳି ଅପ୍ରତ୍ୟାଶିତଭାବେ ଉପସ୍ଥିତ ହୋଇଥିବା ଦେଖି

ମତେ ବେଢ଼ିଗଲେ । ପରେ ପରେ ଚାଲିଲା ବନ୍ଧୁ ସଂଖୋଳା । ସେଦିନ ସନ୍ଧ୍ୟାରେ ଯେଉଁ ବନ୍ଧୁ ଏବଂ ଆତ୍ମୀୟ ସ୍ୱଜନଙ୍କୁ ଭେଟି ଆପ୍ୟାୟିତ ହୋଇଥିଲି ତା'ର ତାଲିକା ବେଶ୍ ଲମ୍ବା । ସେମାନଙ୍କ ଭିତରୁ କେତେଜଣ ହେଲେ–

ଡକ୍ଟର ଓ ଶ୍ରୀମତୀ ନରେଶ ନାୟକ (ଦିଲ୍ଲୀ, ଏମ୍ସ୍‌ର ଅବସରପ୍ରାପ୍ତ ପ୍ରଫେସର); ସମ୍ବଲପୁର ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ କେମିଷ୍ଟ୍ରି ପ୍ରଫେସର୍ ଡକ୍ଟର ଗୋପବନ୍ଧୁ ବେହେରା; ୧୯୫୮ରୁ ୧୯୬୧ ଭିତରେ ପାରଳାଖେମୁଣ୍ଡି ଗଜପତି କଲେଜରେ ମୋର ଅଧ୍ୟାପନା ସମୟର ପୂର୍ବତନ ଛାତ୍ର ଶ୍ରୀ ସରୋଜ ବେହେରା; ଭୁବନେଶ୍ୱର ବି.ଜେ.ବି କଲେଜରେ ମୋର ପୂର୍ବତନ ଛାତ୍ର ଶ୍ରୀ ପ୍ରସନ୍ନ ସାମନ୍ତରାୟ (ବନ୍ଧୁ ବୃନ୍ଦାବନ ସାନ୍ତରାୟଙ୍କ ପୁଅ), ଶ୍ରୀ ପ୍ରିୟଦର୍ଶୀ ଦାଶ (କରଂଜିଆ କଲେଜରେ ମୋର ଅଧ୍ୟକ୍ଷତା ସମୟରେ ସହକର୍ମୀ, ଇତିହାସ ବିଭାଗର ରିଡର ସ୍ୱର୍ଗତ ରାମଚନ୍ଦ୍ର ଦାଶଙ୍କ ପୁଅ); ପ୍ରସିଦ୍ଧ ସାହିତ୍ୟିକ ଗୋପୀନାଥ ମହାନ୍ତିଙ୍କ ଦୁଇ କନ୍ୟା– ଅଂଜୁ, ଟିଟା ଓ ଅଂଜୁର ସ୍ୱାମୀ ଡକ୍ଟର ସୂର୍ଯ୍ୟ ପଟ୍ଟନାୟକ ଏବଂ ଟିଟାର ପୁଅ ନାନୁ ।

ସବୁଠାରୁ ଅଧିକ ଅପ୍ରତ୍ୟାଶିତ ସ୍ୱର୍ଗତ ବାମାଚରଣ ମିତ୍ରଙ୍କ ସାନପୁଅ ବାପ୍ପିକୁ ବହୁବର୍ଷ ପରେ ଭେଟିବା । ପ୍ରସିଦ୍ଧ ଓଡ଼ିଆ ସାହିତ୍ୟିକ ଏବଂ ଆମ ସମୟର ସମସ୍ତ ଓଡ଼ିଆ ସାହିତ୍ୟିକଙ୍କର ଏକାନ୍ତ ଅନ୍ତରଙ୍ଗ 'ବଡଭାଇ' ସ୍ୱର୍ଗତ ବାମାଚରଣ ମିତ୍ରଙ୍କ ସବା ସାନ ପୁଅ ସେ । ସେ ପିଲା ଭାରତୀୟ ବାୟୁସେନା ବାହିନୀର ଜଣେ ଅଫିସର ହୋଇଥିଲେ ବୋଲି ଶୁଣିଥିଲି । ତାଙ୍କୁ ବର୍ତ୍ତମାନ ଏଠାରେ ଅଚାନକ ଭାବେ ଭେଟି ମୁଁ ଓ ନିରୁପମା ପୂର୍ବକଥା ମନେପକେଇ କିଛି ସମୟ ପାଇଁ ବାମାବାବୁଙ୍କୁ ଝୁରି ବସିଲୁ । ବାମାବାବୁ ଓ ତାଙ୍କ ପରିବାର ଆମ ପରିବାର ସହିତ ଅତ୍ୟନ୍ତ ଘନିଷ୍ଠଭାବେ ଜଡିତ ହୋଇପଡିଥିଲେ । ବାମାବାବୁଙ୍କ ଅସମୟରେ ଦେହାନ୍ତ ହେବା ଦିନ ମୁଁ କଲିକତାରେ ଥିଲି; ତାଙ୍କର ଶବକୁ ଶହୀଦନଗର ଶ୍ମଶାନରେ ସଂସ୍କାର ସମୟରେ ହାତ ଗଣତି ଯେଉଁ କେତେଜଣ ଆତ୍ମୀୟ ଉପସ୍ଥିତ ଥିଲେ ସେମାନଙ୍କ ଭିତରେ ଉପସ୍ଥିତ ରହିଥିଲେ ନିରୁପମା– କହିବାକୁ ଲାଜ– ବାମାଚରଣ ମିତ୍ରଙ୍କ ପରି ଜଣେ କାଳଜୟୀ ସାହିତ୍ୟିକଙ୍କୁ ଶେଷ ଶ୍ରଦ୍ଧାଂଜଳି ଜଣାଇବାକୁ କୌଣସି ଜଣେ ହେଲେ ଓଡ଼ିଆ ସାହିତ୍ୟିକ ଉପସ୍ଥିତ ହୋଇପାରିନଥିଲେ । ଏ ସବୁ ପଛକଥା ମନେପଡିଗଲା ବାପ୍ପିକୁ ଦେଖି । ଆଖି ପୋଛିପୋଛି ନିରୁପମା ବାପ୍ପି ଓ ତାର ପତ୍ନୀକୁ କୋଳକଲେ । ବାପ୍ପି ଏବେ ଆଉ ସେ ଛୋଟ କୁଲବୁଲିଆ ପିଲାହୋଇ ନାହିଁ– ସେ ବର୍ତ୍ତମାନ ଏକ ବପୁବନ୍ତ ଛ'ଫୁଟିଆ ଡେଙ୍ଗା ଏକ୍ସ-ଏୟାର୍‌ଫୋର୍ସ ଅଫିସର୍ ! ଅବିକଳ ବାମାବାବୁଙ୍କ ଦ୍ୱିତୀୟ ଅବତାର ! ସେ ବର୍ତ୍ତମାନ ଏକ ଆମେରିକାନ୍ କଂପାନୀରେ ନିଯୁକ୍ତି ପାଇ ଏଠାରେ ବସବାସ କରୁଛି ବୋଲି ଶୁଣି ଖୁବ୍ ଖୁସି ହେଲୁ ଆମେ ।

ପୂର୍ବୋକ୍ତ ପରିଚିତମାନଙ୍କ ବ୍ୟତୀତ ଏ ସଭାରେ ଅନ୍ୟ ଯେଉଁ କେତେଜଣ ସମ୍ମାନିତ

ଓଡିଆଙ୍କୁ ସେ ସନ୍ଧ୍ୟାରେ ଭେଟିଥିଲୁ ସେମାନଙ୍କ ଭିତରେ ଥିଲେ– ଶ୍ରୀମତୀ ନୀତା ପଣ୍ଡା (ଇମ୍ପାର ଚେୟାରମ୍ୟାନ୍ ଡକ୍ଟର ବଂଶୀଧର ପଣ୍ଡାଙ୍କ ସାନଝିଅ) । ସେ ଏଠାରେ ଆଇନ୍ ବ୍ୟବସାୟ କରନ୍ତି । ତା'ଛଡା ଦେଖା-ହେଲେ ଶ୍ରୀ ଦେବନାରାୟଣ ପଟ୍ଟନାୟକ । ଦେବ ହେଉଛନ୍ତି ବି.ଜେବି. କଲେଜରେ ମୋର ପୂର୍ବତନ ଛାତ୍ର । ତାଙ୍କ ପିତା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ ଥିଲେ ସେ ସମୟରେ ବିଜେବି କଲେଜରେ ଇଂରେଜୀ ପ୍ରଫେସର । ପୂର୍ଣ୍ଣବାବୁ ଆମ ଶହୀଦନଗର ବାସିନ୍ଦା । ଦେବଙ୍କ ଅନ୍ୟ ପରିଚୟ ହେଲା ସେ ମୋର ଶିକ୍ଷକ ପ୍ରଫେସର ମହେନ୍ଦ୍ର କୁମାର ରାଉତଙ୍କ ଜୋଇଁ ।

ଏମାନଙ୍କ ବ୍ୟତୀତ ସ୍ଥାନୀୟ ସାନ୍ତାକ୍ରୁଜ ବିଶ୍ୱବିଦ୍ୟାଳୟର କେତେଜଣ ପ୍ରଫେସରଙ୍କ ସହିତ ମଧ୍ୟ ମତେ ପରିଚିତ କାରାଇଦେଲେ ଆଜିର ଆତିଥେୟ ଡକ୍ଟର ତ୍ରିଲୋକୀ ପାଣ୍ଡେ । ସେମାନେ ହେଲେ ପ୍ରଫେସର୍ ସିଙ୍ଗାରାମ (କେମିଷ୍ଟ୍ରି), ପ୍ରଫେସର୍ ପ୍ରଦୀପ ମାସ୍କାର୍କ (କେମିଷ୍ଟ୍ରି), ପ୍ରଫେସର୍ ନନ୍ଦିନୀ ଭଟ୍ଟାଚାର୍ଯ୍ୟ (ମ୍ୟାଥ୍‌ମାଟିକ୍ସ୍) ।

– ଏହି ସମୟରେ ଘୋଷଣା କରାଗଲା ଆନୁଷ୍ଠାନିକ ସଭାକାର୍ଯ୍ୟ ଆରମ୍ଭର ।

ଡକ୍ଟର ପାଣ୍ଡେ ମାଇକ୍‌ରେ ଘୋଷଣା କଲେ– ଆଜି ସଭାର ଉଦ୍‌ଘାଟକ ମୁଖ୍ୟଅତିଥି ହେଲେ ଭାରତର ଜଣେ ବିଖ୍ୟାତ ସାହିତ୍ୟିକ ପ୍ରଫେସର୍ ଶାନ୍ତନୁ କୁମାର ଆଚାର୍ଯ୍ୟ । ଡକ୍ଟର ପାଣ୍ଡେଙ୍କ ଦ୍ୱାରା ଆହୂତ ହୋଇ ସଭା ମଞ୍ଚକୁ ଗଲି । ପାଣ୍ଡେଜୀ ମୋର ପରିଚୟ ଦେବା ଭିତରେ କହିଲେ, ''ଗଲା ଦୁଇଦିନ ଧରି ଏ ମହାଶୟ ଆମ ଘରେ ଅତିଥି ହେବା ଭିତରେ ମୁଁ ତାଙ୍କଠାରୁ ଇଣ୍ଡୋଲଜିର କେତେକ ଅଜଣା ତଥ୍ୟ ଶୁଣିବାକୁ ପାଇ ଅତ୍ୟନ୍ତ ଅଭିଭୂତ । ଏ ମହାଶୟ କେବଳ କେମିଷ୍ଟ୍ରିର ଜଣେ ପ୍ରଫେସର୍ ନୁହନ୍ତି, ଭାରତୀୟ ନ୍ୟାସନାଲ୍ ଏକାଡେମୀ ଅଫ୍ ଲିଟ୍‌ରେଚର୍ ଦ୍ୱାରା ପୁରସ୍କୃତ ଜଣେ ସର୍ବଭାରତୀୟ ସ୍ତରର ସାହିତ୍ୟିକ । – କିନ୍ତୁ ଗଲା ଦୁଇଦିନ ଧରି ତାଙ୍କ ଠାରୁ 'Vedic Indian Diaspora and emigration of Indian people over the ages to almost all parts of the world, particularly to the Americas'– କେତକ ତଥ୍ୟ ଶୁଣି ମୁଁ ବିଶେଷ ଭାବେ ଉପକୃତ ଏବଂ ଚମତ୍କୃତ. . . ଏ ମହାଶୟଙ୍କୁ ଆଜି ଏ ସଭାରେ ମୁଖ୍ୟଅତିଥି ଭାବେ ନିମନ୍ତ୍ରଣ ଜଣାଉଚି ।''

ଅଳ୍ପ ସମୟ ପାଇଁ ମୁଁ କିଛି କହିଲି । ମୋର ବକ୍ତବ୍ୟର ଫୋକସ୍ ଥିଲା– ଆଜିର ଗ୍ଲୋବାଲାଇଜେସନ୍ ଅର୍ଥନୀତିରେ ଆମେରିକାରେ ଜନ୍ମିତ ଦ୍ୱିତୀୟ ଜେନେରେସନ୍ ଭାରତୀୟ ଏନ୍.ଆର୍.ଆଇ ପିଲାଙ୍କ ଆତ୍ମପରିଚୟ ଜନିତ ସାଂସ୍କୃତିକ ସଂକଟ (କଲ୍‌ଚର୍ ସକ୍) ସମସ୍ୟା ।

ବକ୍ତୃତା ପରେ ପରେ ଶ୍ରୋତାମାନଙ୍କ ବୌଦ୍ଧିକ ପ୍ରତିକ୍ରିୟା ମୋ ପାଇଁ ଖୁବ୍ ଉତ୍ସାହଜନକ ହୋଇଥିଲା ।

ସଭାରେ ଅନ୍ୟ କେତେଜଣ ନିମନ୍ତ୍ରିତ ଅତିଥି ଏବଂ ପାଣ୍ଡେ ପରିବାରର ସଦସ୍ୟ ନୂଆ

ଗ୍ରାଜୁଏଟ୍ ଶ୍ରୀମାନ୍ ଆଲୋକ ପ୍ରାଣ୍ଟେଙ୍କୁ ବଧେଇ ସହିତ ଆଶୀର୍ବାଦ ଜଣାଇଲେ । ପରେ ପରେ କିଛି ସମୟ ପାଇଁ ଆଲୋକ ଓ ତା'ର ସାଙ୍ଗମାନଙ୍କ ବକ୍ତୃତା ତଥା ନାଚ ଗୀତ ଇତ୍ୟାଦି ଚାଲିଲା । ଯଥା ସମୟରେ ସମସ୍ତ ଅତିଥି ସେଦିନ ସନ୍ଧ୍ୟା ଭୋଜିରେ ଯୋଗଦେଲେ ।

ପ୍ରାୟ ରାତି ଏଗାର ସୁଦ୍ଧା ଆମେ ଘରକୁ ଫେରିଲୁ । ପରଦିନ ସକାଳେ ଆମର ପ୍ରୋଗାମ୍ ଥିଲା– ସାନ୍‌ହୋସେ ସହରକୁ ଯିବା ପାଇଁ । ସେଠାରେ ଅଂଜୁ ଟିଟାଙ୍କ ଘରେ ଗୋଟିଏ ଦିନର ରହଣିପାଇଁ ପୂର୍ବରୁ ନିରୁପମା ଓ ମୁଁ ସଂକଳ୍ପବଦ୍ଧ ହୋଇଥିଲୁ, କାରଣ– ସେ ଥିଲା ଆମ ପାଇଁ ଏକ ତୀର୍ଥ ଦର୍ଶନ । ସେଇ ଘରେ ଓଡିଆ ଜାତିର ନମସ୍ୟ ପରମ ବରେଣ୍ୟ ସାହିତ୍ୟିକ ଗୋପୀନାଥ ମହାନ୍ତି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ୧୯୯୧ରେ ।

## ସାନ୍‌ଜୋସେ (Sanhose) ସହରରେ

### – ଗୋପୀନାଥ ମହାନ୍ତିଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଂଜଳି :

ପରଦିନ ଅନ୍ନପୂର୍ଣ୍ଣା ଆମକୁ ତାଙ୍କ ଗାଡିରେ ନେଇ ଅଂଜଳି ଓ ଟିଟାଙ୍କ ଘର ସାନ୍‌ଜୋସେ ସହରରେ ଛାଡିଲେ । ସାନ୍‌ଜୋଜେ କାଲିଫର୍ଣିଆର ବେଶ୍ ଜଣାଶୁଣା ଏକ ସହର । ଏଠି ବହୁତ ଭାରତୀୟ, ବିଶେଷକରି ପ୍ରବାସୀ ଓଡିଆ (ଏନ୍.ଆର୍.ଆଇ) ବାସକରନ୍ତି । ଗୋପୀନାଥ ମହାନ୍ତିଙ୍କ ମଝିଆଁ ଝିଅ ଜୋଇଁ– ଡାକ୍ତର ଅଂଜଳି ଓ ଇଂଜିନିୟର ଡକ୍ଟର ସୂର୍ଯ୍ୟ ପଟ୍ଟନାୟକଙ୍କ ସଂପର୍କରେ ଏହା ପୂର୍ବେ ସୂଚନା ଦେଇଚି । ଏ ଦୁହେଁ ବହୁ ବର୍ଷ ହେବ ଏ ସହରର ବାସିନ୍ଦା ହୋଇସାରିଚନ୍ତି । କେତେବର୍ଷ ତଳେ ସେମାନଙ୍କ ପରିବାରଭୁକ୍ତ ହେଲେ ଗୋପୀବାବୁଙ୍କ ସବା ସାନଝିଅ ଟିଟା, ଜ୍ୱାଇଁ ରାମବାବୁ ଓ ନାତି ନାନୁ । ଟିଟା, ରାମବାବୁ ଆମେରିକା ଆସିଥିଲେ ଉଚ୍ଚତର ଅଧ୍ୟୟନ ପାଇଁ । ପରେପରେ ଚାକିରି ପାଇଲେ ଓ ରହିଗଲେ ଏଇଠି ଏକାଠି ବଡଭଉଣୀ ଆଉ ଭିଣୋଇଙ୍କ ଘରେ ।

ଆମ କାର୍ ତାଙ୍କ ଘର ଆଗରେ ଅଟକୁ ଅଟକୁ ଦୁଇ ଭଉଣୀ ଅଂଜଳି ଓ ଟିଟା ଖୁବ୍ ଆଗ୍ରହରେ ପାଛୋଟି ନେଲେ ଆମକୁ । ବନ୍ଧୁ ସଂଖୋଳା ଆଉ ଗୃହପ୍ରବେଶ ପରେ ପରେ ଦୁଇ ଭଉଣୀ ଆମକୁ ଖୁବ୍ ସରାଗରେ ଡାକିନେଇଗଲେ ପ୍ରଥମେ ତାଙ୍କ ଘରର ବାଡିବଗିଚା ବୁଲେଇ ଦେଖେଇବାକୁ । ବଗିଚାରେ କ'ଣ ଅଛି ଦେଖିବାକୁ ମିଳିବ ବୋଲି ମନେମନେ ଭାବୁଥିଲାବେଳେ ଶୁଣିଲି– "ଏ ସବୁ କାହା କୀର୍ତ୍ତି କହିଲେ? ସବୁ ତାଙ୍କରି– ମୋ ବାପାଙ୍କର ! ହେଇ ଦେଖନ୍ତୁ– ସେ ଯୋଡ ଗୋଲାପ ବୁଦାଟା ଲୋଟି ପଡୁଚି ଫୁଲ ଭାରରେ ସେ ଗୋଲାପ ବୁଦାଟିକୁ ବାପା ଲଗେଇଥିଲେ ନିଜ ହାତରେ ସେଇ ବର୍ଷ ୧୯୯୧ରେ । ଆଜି ୨୦୦୬– ପନ୍ଦରବର୍ଷ ବିତିଯାଇଥିଲେବି ସେ ଗୋଲାପ ବୁଦା

ଆଜିବି ଫୁଟୁଚି । ତାଙ୍କରି ହାତଲଗା ଆପ୍ଲଗଛରେ ଆପ୍ଲ କେମିତି ପାଚି ଟହଟହ ଦିଶୁଚି ଦେଖନ୍ତୁ । ଆଉ ଏ ଲାଉ ଭାଡିଟା ଆଡକୁ ଚାହାନ୍ତୁ– ପୁରୁଷେ ପୁରୁଷେ ଉଚ୍ଚର ଲାଉ କେମିତି ଭାଡିରୁ ଝୁଲୁଚି ଦେଖୁଚନ୍ତି ତ ? ଏ ବାଡି ବଗିଚା ସବୁ ତାଙ୍କରି କୀର୍ତ୍ତି, ତାଙ୍କ ଝାଳବୁହା ଶ୍ରମର ଦାନ । ଦିନମାନ କୋଡିକୋଦାଳ ଧରି ସେ ଲାଗିପଡୁଥିଲେ ଏଇ ବଗିଚା କାମରେ– ସେ ଲଗେଇଯାଇଚନ୍ତି ଆଉ ଆମେ ଭୋଗୁଚୁ– ତାଙ୍କ ଯିବାର ପନ୍ଦରବର୍ଷ ପରେ ବି !''

ଅଂଜଳି ଆମକୁ ତାଙ୍କ ବାଡିବଗିଚା ଦେଖେଇବା ଭିତରେ ଗୋପିବାବୁଙ୍କ ଶେଷ କେଇ ବର୍ଷର ସ୍ମୃତି ଆଉଡେଇ ଚାଲିଲେ ଆଉ ତାଙ୍କ ହସ୍ତରୋପିତ ସେଇ ଗୋଲାପ ବୁଦା ପାଖକୁ ନେଇ କହିଲେ, ''ଆପଣ ଆଉ ନାନୀ (ନିରୁପମା) ବାପାଙ୍କ ଫଟୋରେ ଫୁଲଦେବେ ପରା ! ନିଜ ହାତରେ ତୋଳି ନିଅନ୍ତୁ ତାଙ୍କ ଗଛରୁ ଗୋଲାପ । ମୁଁ ଜାଣେ ବାପା ଆପଣମାନଙ୍କୁ କେତେ ଭଲପାଉଥିଲେ । ଭୁବନେଶ୍ୱରରେ ଆପଣ ଆଉ ନାନୀ ଆମ ଘରକୁ ଆସିଲେ ବାପା କେତେ ଖୁସି ହେଉଥିଲେ । ଶେଷବେଳକୁ ବାପା ଆପଣଙ୍କୁ ବହୁତ ମନେପକଉଥିଲେ– ଜାଣନ୍ତି ? ସେ ଯାହା ସବୁ କହିଯାଉଥିଲେ ସେସବୁକୁ ରେକର୍ଡ କରାଯାଇଚି– ଶୁଣିବେ ଆଜି ରାତିରେ ।''

କେତୋଟି ବଡବଡ ଗୋଲାପଫୁଲ ତାଙ୍କ ବାଡି ଗଛରୁ ତୋଳି ଆମେ ସମସ୍ତେ ପଶିଲୁ ଘର ଭିତରକୁ । ଲିଭିଂ ରୁମ୍‌କୁ ପଶୁପଶୁ ଆଖିରେ ପଡିଲା ଗୋଟିଏ ପ୍ରକାଣ୍ଡ ତୈଳଚିତ୍ର ଗୋପୀବାବୁଙ୍କର । ଚିତ୍ର ଭିତରୁ ତାଙ୍କର ହସହସ ମୁହଁଟି ଆଖିରେ ପଡୁନପଡୁଣୁ ମତେ ଶୁଣାଗଲା ଗୋପୀବାବୁଙ୍କ ସେଇ ଚିର ପରିଚିତ ସ୍ୱରରୁ କୁହାଟ– ''ହେଇ ଆସିଗଲେ ଶାନ୍ତନୁବାବୁ ! ଆସନ୍ତୁ ! ଆସନ୍ତୁ !''

ଏ କୁହାଟ ବହୁବର୍ଷ ହେବ କାନରେ ପଡିନଥିଲା । ମୁଁ ସ୍ତବ୍ଧହେଇ ବସିପଡିଲି ତାଙ୍କ ତୈଳଚିତ୍ରର ଷ୍ଟାଣ୍ଡ ତଳେ । ହାତର ଗୋଲାପ ଫୁଲ କେତେବେଳେ ଗୋପୀବାବୁଙ୍କ ପାଦତଳେ ସମର୍ପି ଦେଇଚି ଜାଣିପାରିଲି ନାହିଁ । ଆଖିରୁ ଧାର ଧାର ଲୁହ ବୋହିଲା । ମୁଁ କୋଉଠି ଅଛି– ଭୁବନେଶ୍ୱରରେ ନା କାର୍ଲିଫର୍ଣ୍ଣିଆରେ– ଭୁଲିଗଲି ।

୧୯୬୨ ଅକ୍ଟୋବରର ଏକ ଶାରଦୀୟ ଅପରାହ୍ଣରେ, ଭୁବନେଶ୍ୱରର ଛ'ନମ୍ବର ୟୁନିଟ୍‌ରେ ତାଙ୍କ ଅଫିସ୍‌ରେ ପ୍ରଥମ ଦେଖାହୋଇଥିଲା ମୋର ତାଙ୍କ ସହିତ । ପ୍ରକାଶୋନ୍ମୁଖୀ ମୋର ପ୍ରଥମ ଉପନ୍ୟାସ ''ନର-କିନ୍ନର''ର ପ୍ରୁଫ୍‌ଟିକୁ ନେଇ ମୁଁ ଯାଇଥିଲି ସେଦିନ ତାଙ୍କ ସରକାରୀ ଅଫିସ୍‌ରେ ତାଙ୍କୁ ଭେଟିବାକୁ ଆଉ ଅନୁରୋଧ କରିବାକୁ ସେ ବହିଟିକୁ ପଢି କିଛି ମତାମତ ଦେବାକୁ । ସେଇ ପ୍ରଥମ ସାକ୍ଷାତ୍‌ରୁ ଆତ୍ମୀୟତା ବଢିବଢି ଚାଲିଲା ଶେଷ ପର୍ଯ୍ୟନ୍ତ । ୧୯୮୮ କି ୧୯୮୯ରେ ଚିକିତ୍ସାପାଇଁ ସେ ଆମେରିକା ଆସିଥିଲେ, ଆଉ ଏଇ ସାନହୋଜେରେ ଏଇ ଘରେ ଝିଅଜୋଇଁଙ୍କ ହେପାଜତରେ ରହି ଚିକିତ୍ସିତ ହେଉଥିଲେ ।

ସେତେବେଳେ ମଧ୍ୟ ଟେଲିଫୋନ୍‌ରେ ତାଙ୍କ ସହିତ ସଂପର୍କ ରକ୍ଷାକରି ଜାଣିବାକୁ ପାଉଥାଏ, ସାର୍ କେବଳ ଆମେରିକାରେ ଝିଅ ଘରେ ରହି ମଜା କରୁନାହାନ୍ତି– କାଲିଫର୍ଣିଆର ଏକ ବିଶ୍ୱବିଦ୍ୟାଳୟରେ ଭିଜିଟିଂ ପ୍ରଫେସର୍ ଭାବେ ରୀତିମତ କାମକରୁଚନ୍ତି ଓ ଲେକ୍‌ଚର୍ ଦଉଚନ୍ତି ତାଙ୍କର ଆଜୀବନ ସାଧନାକ୍ଷେତ୍ର ଓଡିଶାର ଜନଜାତି ଓ ସେମାନଙ୍କର ସ୍ୱତନ୍ତ୍ର ସଂସ୍କୃତି ସଂପର୍କରେ । ସେ ଖବର ଜାଣି ଭୁବନେଶ୍ୱରରେ ଆମେ କେତେଜଣ ସାହିତ୍ୟିକ ଗର୍ବିତ ହେଉଥିଲୁ ଏବଂ କେତେ ଆଶା କରି ରହିଥିଲୁ ଗୋପୀବାବୁ କୋଉଦିନ ଫେରିବେ ଭୁବନେଶ୍ୱର ଆଉ ଆମେ ତାଙ୍କ ମୁହଁରୁ ଶୁଣିବୁ ତାଙ୍କ ଆମେରିକା ବିଜୟର ଜୀବନ୍ତ ବର୍ଣ୍ଣନା । କିନ୍ତୁ ସେ ଆଉ ଫେରିଲେ ନାହିଁ ।

ଆଜି ୨୦୦୬, ଜୁନ୍ ୨୪ । ଗୋପୀବାବୁଙ୍କ ସାନ୍ନିଧ୍ୟ ହରାଇବାର ବହୁବର୍ଷ ପରେ ମୁଁ ପ୍ରଥମ କରି ଆଜି ପୁଣି ତାଙ୍କର ଉପସ୍ଥିତିକୁ ଏକାନ୍ତ ଅନ୍ତରଙ୍ଗଭାବେ ଅନୁଭବ କରିପାରୁଥାଏ ଏଠି ଆମେରିକାର ସାନ୍‌ହୋସେ ସହରର ସେଇ ଘରେ ଯୋଉଠି ଦେହାନ୍ତ ଘଟିଥିଲା ତାଙ୍କର ୧୯୯୧ରେ । ତାଙ୍କ ତୈଳଚିତ୍ର ଆଗରେ ମୁଁ ବସିରହିଲି ନିର୍ବାକ୍ ଅବସ୍ଥାରେ କେତେବେଳ ଜାଣେନା ।

ଅଂଜଳି ମୋ କାନରେ କହିଲେ, ‘‘ଆପଣଙ୍କ ପାଇଁ ବାପାଙ୍କ ରୁମ୍‌ରେ ରହିବାର ବନ୍ଦୋବସ୍ତ କରାଯାଇଚି । ଉଠନ୍ତୁ ଯିବା– ’’

ଯନ୍ତ୍ରବତ୍ ଚାଲିଲି ଅଂଜଳିଙ୍କ ପଛେପଛେ ତାଙ୍କ ଘରର ଉପର ମହଲାକୁ । ସେଠି ଗୋପୀବାବୁଙ୍କ ରୁମ୍‌ରେ ମୋର ରାତି ବିତେଇବାର ବନ୍ଦୋବସ୍ତ ହୋଇଥଲା । ରୁମ୍ ଭିତରେ ଆଖି ବୁଲେଇଲା ମାତ୍ରେ ଦୃଷ୍ଟି ପଡିଲା ଗୋଟିଏ ଧୋବ ଫରଫର ଧଳା ଚଦର ବିଛା ଶେଯ ପରାଯାଇଥିବା ପଲଙ୍କ ଉପରେ । କଡରେ ବହି ଥାକରେ ଥାକଥାକ ବହି– ସାହିତ୍ୟ, ନୃତତ୍ୱ, ସମାଜବିଜ୍ଞାନ, ଇତିହାସ, ଦର୍ଶନ ଆଉ ଗୋପୀବାବୁଙ୍କ ନିଜସ୍ୱ କୃତି କେତେଖଣ୍ଡ ବହି ଉପରେ ।

‘‘ଏ ସବୁ ବହି ବାପା ପଢୁଥିଲେ ଶେଷ ପର୍ଯ୍ୟନ୍ତ. . . । ଆଉ ଏଠି ଦେଖନ୍ତୁ ତାଙ୍କ ଲାଙ୍ଗୁଏଜ୍ ଲାବୋରେଟୋରି. . . ପୃଥିବୀର ଯାବତୀୟ ଆଦିମ ଜନଜାତିଙ୍କ କଥିତଭାଷାର ଗଦାଗଦା ଟେପ୍ ଜମା-ହେଇଚି ଏଠି– ଦେଖୁଚନ୍ତି ତ ! ସେ ନିଜେ ମଧ୍ୟ ବହୁତ ସମୟ ଧରି ତାଙ୍କ ଜୀବନର ସ୍ମୃତି ସବୁକୁ ରେକର୍ଡ କରାଇଚନ୍ତି ଭଏସ୍ ରେକର୍ଡର୍‌ରେ । ଏ ସବୁ କାମରେ ତାଙ୍କର ଆସିଷ୍ଟାଣ୍ଟ୍ କିଏ ଜାଣନ୍ତି– ଏଇ ନାନୁ ଆମର । ଏଇ ଏକା ତାଙ୍କୁ ଟିହାଇ ଟିହାଇ ସବୁ କଥା ଆଦାୟ କରାଉଥିଲା ଏ ଟୋକା, ଆଉ ଶେଷଦିନ ପର୍ଯ୍ୟନ୍ତ ତାଙ୍କ ମୁହଁରୁ ବାହାରିଥିବା କଥା ସବୁକୁ ରେକର୍ଡ କରିଚି ସେ’’... ପାଖରେ ଠିଆହେଇ ନାନୁ ମୁରୁକେଇ ମୁରୁକେଇ ହସୁଥାଏ । ସେତିକିବେଳେ ଆଖିରେ ପଡିଲା ନାନୁର ଗୋଟାଏ କାନ ଫଳିରେ ଚକଚକ କରୁଚି ଗୋଟିଏ ସୁନାଫାସିଆ । ଭାରି ସୁନ୍ଦର ମାନୁଥାଏ ସେ ଜିନିଷଟା ପିଲାଟାର

କାନକୁ । ଆଶ୍ଚର୍ଯ୍ୟ ହେଲି ନାହିଁ । ଆଜିକାଲିକା ଆମେରିକାର, ବିଶେଷତଃ କାଲିଫର୍ଣ୍ଣିଆ ସମେତ ଏ ଦେଶର ସମଗ୍ର ଦାକ୍ଷିଣାତ୍ୟର ଯୁବଗୋଷ୍ଠୀର ଏ ହେଲା ଆଜିର ଫ୍ୟାସନ୍– କାନରେ ଫାସିଆ, ଦେହରେ ଚିତା କୁଟେଇବା (ଟାଟୁ), ମୁଣ୍ଡ ପଛରେ କେଶରାଶିକୁ ବେଣ୍ଟିପକାଇ ବାନ୍ଧିବା ଇତ୍ୟାଦି ! ଗୋପୀବାବୁଙ୍କ ଗେହ୍ଲା ନାତିକୁ ଆହ୍ଲାଦ ଭରା ଆଲିଙ୍ଗନ କରୁକରୁ ଶୁଣିଲି ଅଂଜଳିଙ୍କ ସେଇ ଅପୂର୍ବ ପ୍ରସ୍ତାବ– ''ବାପା ଏଇ ରୁମ୍‌ରେ ରହୁଥିଲେ, ଏଇ ଖଟରେ ଶୋଉଥିଲେ, ଏଇଠି ଶେଷ ନିଶ୍ୱାସ ନେଇଥିଲେ– ଏଇ ରୁମ୍‌ରେ ଏଇ ଶେଯରେ । ବାପାଙ୍କ ଶେଯରେ ଶୋଇବାକୁ ନିଶ୍ଚେ ଭଲଲାଗିବ ଆପଣଙ୍କୁ''... ଅଂଜି ମୋ ଆଖିକୁ ଚାହିଁଲେ ।

ସତେକି ସେ ସନ୍ଦେହ କରୁଥିଲେ କାଳେ ପ୍ରସ୍ତାବଟା ମୋ ମନକୁ ନଯିବ । ମୁଁ ତତ୍‌କ୍ଷଣାତ୍ ଚାରିକାତ ମେଲେଇ ଶେଯ ଉପରେ ଲୋଟିପଡିଲି ଓ କହିଲି, ''ମୋ ପାଇଁ ଏ ହେଲା ଆମେରିକାରେ ସବୁଠୁ ବଡ ତୀର୍ଥ ଦର୍ଶନ ଅଂଜି ! ତମେ ବୁଝିପାରିବ ନାହିଁ ତମ ବାପାଙ୍କ ସହିତ ମୋର ସଂପର୍କର ଗଭୀରତା କେତେ ଥିଲା, ଅଛି ଓ ଥିବ ମଧ୍ୟ । ଆଜି ରାତିରେ ମୁଁ ଏଇଠି ଶୋଇବି– ଏଇ ଶେଯ ଉପରେ, ମୋ ସାରସ୍ୱତ ଗୁରୁଙ୍କର ଏଇ ଅନ୍ତିମ ଶଯ୍ୟାରେ ! ଏଇ ତୀର୍ଥବିହୀନ ଦେଶ ଆମେରିକାର ସାନ୍‌ହୋସେ ସହରରେ ତମର ଏ ଘର ମୋ ପାଇଁ ଏକ ତୀର୍ଥ । ଏ ତୀର୍ଥଦର୍ଶନର ସୌଭାଗ୍ୟ ଲାଭକରି ମୁଁ ଆଜି କୃତାର୍ଥ ହେଉଛି !''

ଏଇ କଥା କହିଲାବେଳେ ହଠାତ୍ ଅତୀତର ଗୋଟିଏ ଅପୂର୍ବ ସ୍ମୃତି ମନରେ ଉଦୟହେଲା । ସେଇ ସ୍ମୃତି ଆଉଡେଇ ମୁଁ କହିଲି, ''ଶୁଣ ଅଂଜି, ତମକୁ ତମ ପିତା ଗୋପୀନାଥ ମହାନ୍ତି କିଭଳି ପ୍ରାଣଭରି ଭଲପାଉଥିଲେ ସେ ସଂପର୍କରେ ଗୋଟିଏ ଦିନର ଏକ ହୃଦୟସ୍ପର୍ଶୀ ଘଟଣା''–

ମୋ କଥା ଶୁଣିବାକୁ ସମସ୍ତେ ବସିପଡିଲେ ଆଉ ମୁଁ ସ୍ୱପ୍ନଦେଖିଲା ଭଳି ବିଭୋର ସ୍ୱରରେ କହି ଚାଲିଲି, ''ସେତେବେଳେ ଗୋପୀବାବୁ ତାଙ୍କ ଉପନ୍ୟାସ 'ମାଟିମଟାଳ' ପାଇଁ ଜ୍ଞାନପୀଠ ପୁରସ୍କାର ପାଇଥାନ୍ତି । ପ୍ରଥମ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଓଡିଆ ଲେଖକ ଭାବେ ଓଡିଶାରେ ସ୍ଥାନେ ସ୍ଥାନେ ତାଙ୍କୁ ବିଶେଷ ସମ୍ବର୍ଦ୍ଧନା ଜଣାଇବା ପାଇଁ ସଭା ସମିତି ସବୁ ଚାଲିଥାଏ । ସେ ଭିତରେ ସମ୍ବଲପୁରର ଅଧିବାସୀମାନେ ତାଙ୍କୁ ସଂବର୍ଦ୍ଧିତ କରିବାକୁ ଏକ ବିଶାଳ ଜନସଭାର ଆୟୋଜନ କଲେ । ସେମାନଙ୍କ ଭିତରେ ମୁଖ୍ୟ ଭୂମିକା ନେଇଥାନ୍ତି ଜଣେ ସ୍ଥାନୀୟ ଯୁବକ ଶ୍ରୀ ହାଡିବନ୍ଧୁ ମିର୍ଦ୍ଧା । ସେ ଜଣେ ଆଦିବାସୀ ଛାତ୍ର ନେତା । ମିର୍ଦ୍ଧା ଭୁବନେଶ୍ୱର ଆସି ଗୋପୀବାବୁଙ୍କୁ ତାଙ୍କ ଘରେ ଦେଖାକଲେ । କହିଲେ, ''ସାର୍ ! ସାରା ପଶ୍ଚିମ ଓଡିଶାର ଆଦିବାସୀ ସମାଜକୁ ଆମେ ଖବର ଦେଇସାରିଚୁ । ଆମର ଚାରି ମୁଖ୍ୟ ଆଦିବାସୀ ସଂସପ୍ରଦାୟ ପକ୍ଷରୁ ସେଦିନ ଆପଣଙ୍କୁ ବିପୁଳ ସଂବର୍ଦ୍ଧନା

ଦିଆଯିବା ଲାଗି ଆୟୋଜନ କରାଯାଇଚି । ହଜାର ହଜାର ଲୋକଙ୍କ ସମାଗମ ହେବ । ଆପଣ ତ ଆମ ଆଦିବାସୀଙ୍କ ଠାକୁର । ଦୟାକରି ଆମ ଅନୁରୋଧ ରକ୍ଷାକରନ୍ତୁ । ଆମ ସମ୍ବଲପୁରବାସୀ, ବିଶେଷକରି ଆମ ଅଞ୍ଚଳର ଆଦିବାସୀମାନଙ୍କର ଏ ନିମନ୍ତ୍ରଣ ରକ୍ଷାକରନ୍ତୁ ।''

''ସେଦିନ ଦୈବାତ୍ ମୁଁ ଗୋପୀବାବୁଙ୍କ ଘରେ ଉପସ୍ଥିତ ଥାଏ । ମୁଁ ସେତେବେଳେ ଥାଏ ଶିକ୍ଷା ନିର୍ଦ୍ଦେଶାଳୟରେ ଡେପୁଟି ଡି.ପି.ଆଇ. (ସାଇନ୍ସ) । ସାରା ଓଡିଶାରେ ୟୁନିସେଫ୍ ସାହାଯ୍ୟପ୍ରାପ୍ତ ବିଜ୍ଞାନ ଶିକ୍ଷାର ପ୍ରୋଜେକ୍ଟ ଚାଲିଥାଏ । ପ୍ରୋଜେକ୍ଟ କାମ ତଦାରଖ ପାଇଁ ମୁଁ ବ୍ୟାପକ ଭାବେ ଟୁର୍ କରୁଥାଏ । ହାଡିବନ୍ଧୁ ମିର୍ଦ୍ଧା ମତେ ପୂର୍ବରୁ ଭଲକରି ଜାଣିଥିଲେ । ମତେ ଗୋପୀବାବୁଙ୍କ ଘରେ ଦେଖି ସେ ମତେ ଅନୁରୋଧ କଲେ ସମ୍ବଲପୁରରେ ଟୁର୍ ପ୍ରୋଗ୍ରାମ୍ ପକେଇବାକୁ ଆଉ ଗୋପୀବାବୁଙ୍କୁ ମୋ ଅଫିସ୍ ଜିପ୍‌ରେ ନେଇ ନିର୍ଦ୍ଧାରିତ ଦିନ ଠିକ୍ ସମୟରେ ସମ୍ବଲପୁରରେ ପହଞ୍ଚେଇଦବାକୁ । ମୁଁ ଅରାଜି ହେବାର କାରଣ ନଥାଏ– ହଁ କଲି । ମିଟିଂ ଦିନ ସ୍ଥିର ହେଲା । କଥାହେଲା ସେଦିନ ସକାଳ ଆଠରେ ଆମେ ଭୁବନେଶ୍ୱରରୁ ବାହାରିବୁ ଆଉ ଦିନ ତିନିଟା ସୁଦ୍ଧା ସମ୍ବଲପୁରରେ ପହଞ୍ଚିବୁ । ସର୍କିଟ୍ ହାଉସରେ ବିଶ୍ରାମ କଲା ପରେ ସନ୍ଧ୍ୟା ଛ'ରେ ଟାଉନ୍‌ହଲରେ ସଭା ।

''ପ୍ରୋଗ୍ରାମ୍ ଅନୁସାରେ ମୁଁ ମୋ ପ୍ରୋଜେକ୍ଟ ଜିପ୍ ଓ ଡ୍ରାଇଭର୍ ନେଇ ସକାଳ ଆଠରେ ଗୋପୀବାବୁଙ୍କ ଘରେ ହାଜରହେଲି । ସେଠି ପହଞ୍ଚି ଦେଖିଲି ବୈଠକଖାନା ରୁମ୍‌ରେ ଗୋଟାଏ ବଡ ସତରଞ୍ଜି ବିଛାହେଇଚି । ଗୋପୀବାବୁ ତା' ଉପରେ ଚକାପକେଇ ବସିଚନ୍ତି । ସାମନାରେ କେତେଟା ଫଟୋ ଆଲ୍‌ବମ୍ ଖୋଲା ହେଇ ପଡିଚି । ଜୁଡା ହେଇଚି ଗୁଡାଏ ଫଟୋଗ୍ରାଫ୍ । ଗୋପୀବାବୁ ସେ ଫଟୋଗ୍ରାଫ୍‌ଗୁଡାକୁ ଗୋଟିଗୋଟି କରି ତଦାରଖ କରୁଚନ୍ତି ।

''ମୁଁ ଭାବିଲି ସାର୍ ବୋଧେ ଭୁଲିଯାଇଚନ୍ତି ଆଜି ସମ୍ବଲପୁର ଯିବା କଥା । ତାଙ୍କୁ ଚେତେଇଦେଇ କହିଲି– ସାର୍ ! ଆମେ ଶୀଘ୍ର ବାହାରିନଗଲେ ସନ୍ଧ୍ୟା ସୁଦ୍ଧା ସମ୍ବଲପୁରରେ ପହଞ୍ଚିପାରିବା ନାହିଁ । ଆପଣ ତ ଏ ପର୍ଯ୍ୟନ୍ତ ଗାଧୁଆପାଧୁଆ ବି କରିନାହାନ୍ତି ଯାହା ଦେଖୁଚି । ମୁଁ ତେବେ ଯାଉଚି– ଘଣ୍ଟାଏ ଛାଡି ଆସିବି– ଆପଣ ପ୍ରସ୍ତୁତ ହୁଅନ୍ତୁ ।

''ମୁଁ ଘରକୁ ଫେରିଆସିଲି । ଘଣ୍ଟାଏ ଛାଡି ସକାଳ ନଅଟାରେ ପୁଣି ତାଙ୍କ ଘରେ ଉପସ୍ଥିତ ହେଲି । ଦେଖିଲି– କାମ ସରିନାହିଁ । ଫଟୋ ଆଲ୍‌ବମ୍ ବାହାରେ ଗୁଡାଏ ମ୍ୟାଗାଜିନ୍ ଜମାହେଇଚି । ସାର୍ ସେଇ ମ୍ୟାଗାଜିନ୍‌ର ପୃଷ୍ଠାଗୁଡାକୁ ଗୋଟିଗୋଟି କରି ଖୋଲି କ'ଣ ତଦାରଖ କରୁଚନ୍ତି । ବ୍ୟାପାର କ'ଣ ବୁଝିବାକୁ ଚେଷ୍ଟା କଲି । ଜାଣିଲି, ସାର୍ ଅଂଜିର କୌଣସି ଏକ ନିର୍ଦ୍ଦିଷ୍ଟ ଫଟୋଗ୍ରାଫ୍ ସକାଳ ପହରୁ ଖୋଜିଚାଲିଚନ୍ତି । ଆଲ୍‌ବମ୍‌ରେ ଥିବା କୋଣସି ଫଟୋରେ ସେ ତାଙ୍କ ଅଲିଅଳି ଝିଅ ଅଂଜିର ମନଲାଖି ଫଟୋ

ଖୋଜି ନପାଇ କୌଣସି ଏକ ସ୍କୁଲ୍ ମ୍ୟାଗାଜିନ୍‌ରେ ଝିଅର ଫଟୋ ବାହାରିଥିବା ମନେ-ପଡିବାରୁ ସେଇଆକୁ ଖୋଜାଖୋଜି ଚଲେଇଚନ୍ତି । ମୁଁ ବୁଝିପାରିଲିନାହିଁ ଆଜି ସନ୍ଧ୍ୟାରେ ସଂବଲପୁରରେ ତାଙ୍କୁ ଦିଆଯିବାକୁ ଥିବା ବିଶାଳ ଆଦିବାସୀ ସଭା ପାଇଁ ପ୍ରସ୍ତୁତ ନହୋଇ ସେ କାହିଁକି ଅଂଜିର ଫଟୋ ଉପରେ ଏଭଳି ଅଦମ୍ୟ ଗବେଷଣା ସକାଳୁ ସକାଳୁ ଆରମ୍ଭ କରିଦେଇଚନ୍ତି ।

''ଘର ଭିତରକୁ ଯାଇ ମାଉସୀଙ୍କୁ ଦେଖାକଲି । ପଚାରି ଜାଣିଲି – ସାର୍ ଅଂଜିର ବାହାଘର ପ୍ରସ୍ତାବ ସଂପର୍କରେ କାଲି ସମ୍ବଲପୁରରୁ ଭିଲାଇ ଯିବାର ଅଛି । ସେଠି ଅଂଜିର ଏକ ଫଟୋଗ୍ରାଫ୍ ବରପକ୍ଷକୁ ଦେବାର ଅଛି । ସେଇ ଫଟୋ ଖୋଜାଚାଲିଚି ସକାଳ ପହରୁ ଯେ କାମ ତଥାପି ସରୁନାହିଁ । ମାଉସୀ ବଡ ଦୁଃଖିତ ମନେହେଉଥାନ୍ତି । ସାନପୁଅ ଅମୃତ ଠିଆହେଇଥାଏ । ତାକୁ ପଚାରି ବୁଝିଲି– ବାପାଙ୍କୁ ଯେତେ ଫଟୋ ସେମାନେ ଦେଖାଉଚନ୍ତି ସେ କୌଣସିଥିରେ ସନ୍ତୁଷ୍ଟ ହେଉନାହାନ୍ତି । କହୁଚନ୍ତି– ସେସବୁ କୌଣସିଟିରେ ତାଙ୍କ ଅଂଜି ନାହିଁ । ତାଙ୍କ ଅଂଜିକୁ ସେ ଦେଖିଥିଲେ କୌଣସି ଏକ ସ୍କୁଲ ମ୍ୟାଗାଜିନ୍‌ରେ । ସେତେବେଳେ ଅଂଜି ପଢୁଥିଲା ନବମଶ୍ରେଣୀରେ । ବର୍ତ୍ତମାନ ଅଂଜି ଜଣେ ମେଡିକାଲ୍ ଗ୍ରାଜୁଏଟ୍ । ଏବକାର ବହୁତ ଫଟୋଗ୍ରାଫ୍ ତାଙ୍କୁ ଦେଖାସରିଲାଣି– କିନ୍ତୁ ସେ ସେଇ ଗୋଟିଏ ଫଟୋକୁ ଖୋଜା ଚଲେଇଚନ୍ତି ଯୋଉଥିରେ ଅଂଜିର ଅଂଜୁତ୍ୱ ସେ ଦେଖିଛନ୍ତି । ଅଂଜିର ବାହାଘର ପ୍ରସ୍ତାବ ପକ୍କା କରିବା ପାଇଁ ସେଇ ନିର୍ଦ୍ଦିଷ୍ଟ ଫଟୋଟି ହିଁ ତାଙ୍କର ନିହାତି ଦରକାର''. . .

''ସେଦିନ ଭୁବନେଶ୍ୱର ଛାଡିଲାବେଳକୁ ଦିନ ଦୁଇଟା । ପାଞ୍ଚ ଛ' ଘଣ୍ଟା ଲଗାତାର ଡ୍ରାଇଭ୍ ପରେ ଆମେ ସମ୍ବଲପୁରରେ ପହଞ୍ଚିଲାବେଳକୁ ସନ୍ଧ୍ୟା ଗଡିଗଲାଣି । ସଭାସ୍ଥଳ ଶୂନ୍‌ଶାନ୍ । ସେତେବେଳେ ମୋବାଇଲ୍ ଫୋନ୍ ଯୁଗର ସୃଷ୍ଟି ହୋଇନଥାଏ–-ତେଣୁ ଆଗୁଆ ଖବର ଦେବା ଅସଂଭବ । ସମ୍ବଲପୁର ସର୍କିଟ୍ ହାଉସ୍‌ରେ ପହଞ୍ଚି ଶୁଣିଲୁ ଜିଲା କଲେକ୍ଟର ଶ୍ରୀ ନୀଳମାଧବ ମହାନ୍ତି ଓ ସେଠାରେ ଅବସ୍ଥାପିତ ସର୍ବୋଚ୍ଚ ପୋଲିସ୍ ଅଫିସର୍ ଡିଆଇଜି ଏବଂ ଓଡିଆ ସାହିତ୍ୟର ବିଶିଷ୍ଟ କଥାକାର ଶ୍ରୀ ଦୁର୍ଗାମାଧବ ମିଶ୍ର ପ୍ରଭୃତି ବଡବଡ ହାକିମ ଓ ସ୍ଥାନୀୟ ସାହିତ୍ୟିକମାନେ ଓଡିଆଭାଷାରେ ପ୍ରଥମ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଲେଖକ ଗୋପୀନାଥ ମହାନ୍ତିଙ୍କୁ ସଂଖୋଳିବା ଲକ୍ଷ୍ୟରେ ବହୁ ସମୟ ପର୍ଯ୍ୟନ୍ତ ସେଇ ସର୍କିଟ ହାଉସ୍‌ଠାରେ ଅପେକ୍ଷା କରିଥିଲେ– ଆମେ ପହଞ୍ଚିବାର ଅଳ୍ପ ସମୟ ଆଗରୁ ସେମାନେ ନିରାଶ ହେଇ ଫେରିଗଲେ । ଏହାପରେ ମୁଁ ପୁଣି ଖବର ପଠେଇବାର ବନ୍ଦୋବସ୍ତ କଲି । କଲେକ୍ଟର ମହାନ୍ତି ଓ ଦୁର୍ଗାମାଧବବାବୁ ଖବର ପାଇ ଗୋପୀବାବୁଙ୍କୁ ଭେଟିବାକୁ ପୁଣି ସର୍କିଟ ହାଉସକୁ ଆସିଲେ । ତେବେ ସେଦିନ ସଭାର ମୁଖ୍ୟ ଶ୍ରୋତା ଆଦିବାସୀମାନଙ୍କର ଆଉ ଦେଖା ମିଳିଲା ନାହିଁ । ଶ୍ରୀ ହାଡିବନ୍ଧୁ ମିର୍ଦ୍ଧା ମନଦୁଃଖକଲେ । କହିଲେ– ସବୁ ମାଟିହେଇଗଲା । ଆପଣ

ସାର୍‌ଙ୍କୁ ଠିକ୍ ସମୟରେ ଆଣିନପାରିଲାରୁ ସବୁ ଭଣ୍ଡୁର ହେଲା । ସମସ୍ତେ ଫେରିଗଲେଣି. . . । ଯେନ ତେନ ପ୍ରକାରେ ସେଦିନ ସମ୍ବଲପୁର ଟାଉନ୍‌ହଲ୍‌ରେ ଗୋଟିଏ ସମ୍ବର୍ଦ୍ଧନା ସଭା କରାଗଲା । ଖୁବ୍ ଅଳ୍ପଲୋକଙ୍କୁ ଉପସ୍ଥିତ କରାଯାଇପାରିଥିଲା । ପରଦିନ ଗୋପୀବାବୁ ଅଂଜୁର ବିବାହ ପ୍ରସ୍ତାବ ନେଇ ଭିଲାଇ ଯାତ୍ରା କରିଥିଲେ ।''

''ଆମ ସମୟର ଶ୍ରେଷ୍ଠ ସାହିତ୍ୟିକ ଗୋପୀନାଥ ମହାନ୍ତି ଥିଲେ ଜଣେ ମନୁଆ କଥାକାର । ସେ କୌଣସି ପଦପଦବୀ ବା ଉପାଧି ପଛରେ ଗୋଡାଇନଥିଲେ, ଉପାଧିମାନେ ତାଙ୍କ ପଦାଙ୍କ ଅନୁସରଣ କରୁଥିଲେ । ଶେଷ ବୟସରେ ତାଙ୍କୁ ଭାରତ ସରକାର "ପଦ୍ମଶ୍ରୀ'' ଉପାଧି ଦେବାକୁ ଘୋଷଣାକଲେ । ସେ ଘୋଷଣା ରେଡିଓରୁ ଜଣାଗଲା ପରେ ମୁଁ ତାଙ୍କୁ ସଂଖୋଳିବାକୁ ତାଙ୍କ ଘରେ ପହଞ୍ଚିଲି– ଦେଖିଲି ଘରେ ସମସ୍ତେ ଚୁପ୍‌ଚାପ୍– ଖୁସିର କୌଣସି ସୂଚନା ନାହିଁ । ପଚାରି ବୁଝିଲି– ସାର୍ ଜିଦ୍ ଧରି ବସିଚନ୍ତି ସେ ଉପାଧି ପ୍ରତ୍ୟାଖ୍ୟାନ କରିବା ପାଇଁ– ଟେଲିଗ୍ରାମ୍ ଜରିଆରେ ଭାରତ ସରକାରଙ୍କ ସଂପୃକ୍ତ ବିଭାଗର କର୍ତ୍ତାଙ୍କୁ ଖୋଜାଚାଲିଚି ନାସ୍ତିବାଣୀ ଶୁଣେଇଦେବାକୁ । ଯାହାହେଉ ବହୁ କୁହାପୋଛା ପରେ ସେ ପଦ୍ମଶ୍ରୀ ଉପାଧି ବର୍ଜନରୁ ନିବୃତ୍ତ ହେଲେ । କିନ୍ତୁ ରାଷ୍ଟ୍ରପତିଙ୍କ ହାତରୁ ସେ ସମ୍ମାନ ଗ୍ରହଣ ପାଇଁ ଦିଲ୍ଲୀ ଗଲେ କି ନା ସେକଥା ମତେ ଜଣାନାହିଁ ।''

ଗୋପୀବାବୁଙ୍କ ମହାନିଦ୍ରା ସ୍ମୃତି ବହନକାରୀ ତାଙ୍କର ସେଇ ଶଯ୍ୟା ଉପରେ ଲୋଟିପଡି ମୋର ସାହିତ୍ୟ ଗୁରୁଙ୍କୁ ମୋର ସ୍ମୃତି ଆଉଡେଇ ଆଉଡେଇ ଏହିପରି ଶ୍ରଦ୍ଧାଂଜଳି ଦେଇଥିଲି ସେଦିନ ମଧ୍ୟାହ୍ନରେ । ଏହାପରେ ଆମର ଏକ ଦୀର୍ଘ କାର୍ଯ୍ୟକ୍ରମ ଥିଲା– ସାନ୍‌ଫ୍ରାନ୍ସିସ୍‌କୋର ବିଖ୍ୟାତ ଗୋଲଡେନ୍ ବ୍ରିଜ୍ ଏବଂ ସେଇ ଐତିହାସିକ ସହରର ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ପରିଦର୍ଶନ । ତାଙ୍କ ଘରେ ମଧ୍ୟାହ୍ନ ଭୋଜନ ପରେ ପରେ ଆମେ ବାହାରିପଡିଲୁ । ଆମକୁ ଜୟନ୍ତିକା ଦାସ, ରାମଚନ୍ଦ୍ର ଦାସ ସାନ୍‌ଫ୍ରାନ୍‌ସିସ୍‌କୋ ବୁଲେଇ ଦେଖେଇବା ଦାୟିତ୍ୱ ନେଲେ ଟିଟା ଓ ତାଙ୍କ ସ୍ୱାମୀ ରାମବାବୁ ।

## ସାନ୍‌ଫ୍ରାନ୍ସିସ୍‌କୋ ଭ୍ରମଣ

ସାନଜୋସେରୁ ସାନ୍‌ଫ୍ରାନ୍ସିସକୋ ପ୍ରାୟ ପଚାଶ ମାଇଲ ଦୂର । ସେଦିନ ଦିନ ଦୁଇଟାରୁ ଘରୁ ବାହାରି ଆମେ ପ୍ରାୟ ତିନିଟା ସୁଦ୍ଧା ସାନ୍‌ଫ୍ରାନ୍ସିସ୍‌କୋରେ ପହଞ୍ଚିଲୁ । ଆମଦଳର ନେତ୍ରୀ ଶ୍ରୀମତୀ ଜୟନ୍ତିକା ଦାସ (ଟିଟା)କୁ ପଚାରିଲି, ''ଆଚ୍ଛା ମା ! ଏ ଦେଶର ସ୍ଥାନମାନଙ୍କ ନାମ ପଛରେ ଏତେ ''ସାନ୍'' ଶବ୍ଦର ପ୍ରୟୋଗ କାହିଁକି? ସାନ୍ ମାନେ କ'ଣ ସନ୍ଥ କି?''

ଟିଟା କହିଲା, ''ଠିକ୍ କହୁଚନ୍ତି ମଉସା– ପୂର୍ବରୁ କାଲିଫର୍ଣିଆ ଓ ମେକ୍ସିକୋ ପ୍ରଭୃତି ଅଂଚଳ ମୂଳତଃ ସ୍ପାନିସ୍ ଉପନିବେଶ ଅଧୀନରେ ଥିଲା, ତେଣୁ ଏ ଅଂଚଳରେ ସ୍ପାନିସ୍ ପ୍ରଭାବ ପ୍ରବଳ । ସ୍ପାନିସ୍ ସନ୍ଥମାନଙ୍କ ନାମ ଅନୁସାରେ ଏଠାକାର ବହୁ ସହର ନାମିତ ।

ଲାଟିନ୍‌ରେ ସେଣ୍ଟ ଶବ୍ଦର ଅର୍ଥ ସଂସ୍କୃତରେ ସନ୍ଥ । ସେଇ ଶବ୍ଦର ଅପଭ୍ରଂଶରୁ ସାନ୍ ଶବ୍ଦର ଉତ୍ପତ୍ତି– ସାନ୍ ଜୋସେ କହିଲେ ସେଣ୍ଟ୍ ଜୋସେଫ୍, ସାନ୍ ଫ୍ରାନ୍ସିସକୋ କହିଲେ ସେଣ୍ଟ୍ ଫ୍ରାନ୍ସିସ୍‌ଙ୍କୁ ବୁଝିବାକୁ ହୁଏ ।''

ସେଣ୍ଟ ଫ୍ରାନ୍ସିସ୍‌ଙ୍କ ନାଁ ଶୁଣି ମୋର ଭାବାନ୍ତର ଘଟିଲା । କିଛି ସମୟ ପାଇଁ ମୁଁ ବୁଡ଼ିଗଲି ବହୁ ବର୍ଷ ତଳେ ପଢ଼ିଥିବା ବିଖ୍ୟାତ ଗ୍ରୀକ୍ ଔପନ୍ୟାସିକ କାଜାଣ୍ଟ ଜାକିସ୍‌ଙ୍କ ବିଶ୍ୱବିଦିତ ''ସେଣ୍ଟ ଫ୍ରାନ୍ସିସ'' ଶୀର୍ଷକ ଅବିସ୍ମରଣୀୟ ଜୀବନୀ ଗ୍ରନ୍ଥର ସ୍ମୃତି ଭିତରେ । ଦ୍ୱାଦଶ ଶତାବ୍ଦୀର ୟୁରୋପୀୟ ସନ୍ଥ ଫ୍ରାନ୍ସିସ୍‌ଙ୍କ ଜୀବନୀ ଅନେକଟା ଆମ ଭାରତର ଊନବିଂଶ ଶତାବ୍ଦୀର ସନ୍ଥ ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଜୀବନୀ ପରି । ସେ କାଳର ଖ୍ରୀଷ୍ଟଧର୍ମ ପରଂପରାରେ, ଚର୍ଚ୍ଚରେ ପୂଜାପ୍ରାର୍ଥନା ଠିକ୍ ହିନ୍ଦୁଧର୍ମର ପୂଜା ଉପଚାରରପରି ଧୂପଦୀପ ନୈବେଦ୍ୟ ଅର୍ପଣ ସହକାରେ ମାତା ମେରୀ ଓ ପ୍ରଭୁ ଯୀଶୁ ଏବଂ ବହୁ ସନ୍ଥମାନଙ୍କୁ ନିବେଦନ କରାଯାଉଥିଲା । ଯୁବକ ଫ୍ରାନ୍ସିସ୍ ପ୍ରେମରେ ପଡ଼ି ଆଉବାୟା ହୋଇଗଲା ବେଳେ ତାଙ୍କ ମା' ତାଙ୍କ ଉଦ୍ଦେଶ୍ୟରେ ଚର୍ଚ୍ଚରେ ଭୋଗ ମାନସିକ କରି ପୁଅକୁ ଠାକୁରଙ୍କ ପାଦୁକ ଦେଇ ପୁଅର ଆରୋଗ୍ୟ କାମନା କରିଥିଲେ । କାଜାଣ୍ଟ ଜାକିସ୍ ଲେଖିଛନ୍ତି– ଫ୍ରାନ୍ସିସ୍‌ଙ୍କ ମା' ଚର୍ଚ୍ଚରୁ ଯେଉଁ ପାଦୁକ ଆଣିଥିଲେ ତାହା ଥିଲା, ''ବାସିଲ୍'' ବା ତୁଳସୀ ପତ୍ର । ଖ୍ରୀଷ୍ଟିୟାନ୍ ଓ ହିନ୍ଦୁଧର୍ମର ଆହୁରି ବହୁ ସାମଂଜସ୍ୟ ମୁଁ କାଜାଣ୍ଟ ଜାକିସ୍‌ଙ୍କ ସେଣ୍ଟ୍‌ଫ୍ରାନ୍ସିସ୍ ଜୀବନୀରୁ ପାଇଥିଲି । ସେଇ ସ୍ମୃତିବିଗଳିତ ଅବସ୍ଥାରୁ ମୁକ୍ତି ପାଇବା ଭିତରେ ଆମ କାର୍ ମୁହେଁଇଲା ସହର ଭିତରକୁ ।

## ବାଟ ଓଗାଳିଲା ସମଲିଙ୍ଗିଙ୍କ ଶୋଭାଯାତ୍ରା

ସାନ୍‌ଫ୍ରାନ୍‌ସିସ୍‌କୋ ସହର ଭିତରେ ଆମ କାର୍ ପହଞ୍ଚିବା ପରେ ପରେ ଦେଖିଲୁ ଏକ ବିରାଟ ଶୋଭାଯାତ୍ରା ଆମ ବାଟ ଓଗାଳି ଓଗାଳି କଚ୍ଛପଗତିରେ ଆଗେଉଛି । ଶୋଭାଯାତ୍ରାରେ ଅଂଶ ଗ୍ରହଣ କରିଥିବା ଲୋକଙ୍କ ବେଶପୋଷାକ ଏବଂ ସେମାନଙ୍କର ଢଙ୍ଗରଙ୍ଗ ଦେଖି ମନେହେଲା ତାହା କୌଣସି ସାଧାରଣ ଶୋଭାଯାତ୍ରା ନୁହେଁ । ରାମବାବୁ (ଡକ୍ଟର ରାମଚନ୍ଦ୍ର ଦାସ) କହିଲେ, ''ଦେଖନ୍ତୁ– ହୋମୋସେକ୍‌ସୁଆଲଙ୍କ ପ୍ରସେସନ୍ ଚାଲିଚି ! ନିଜର ରାଜନୈତିକ ଦାବୀ ଜାହିର କରିବା ଉଦ୍ଦେଶ୍ୟରେ ଏମାନେ ବୋଧହୁଏ 'ଲଙ୍ଗମାର୍ଚ୍ଚ'ରେ ବାହାରିଚନ୍ତି । ଇସ୍ ! କି ବିଶାଳ ପ୍ରସେସନ୍ ! ୟା'କୁ ପାରିହେଇ ଆଗକୁ ଯିବା ଭିତରେ ଦିନଟା ଏଇ ରାସ୍ତାରେ କଟିଯିବ ଯାହା ଜଣାପଡିଲାଣି ।''

''ଆମେରିକାରେ ହୋମୋସେକ୍‌ସୁଆଲ୍‌ଙ୍କ ସଂଖ୍ୟା କେତେ ?'' – ପଚାରିଲି ମୁଁ ।

''ବହୁତ'', ରାମ ଉତ୍ତରଦେଲେ, ''ପ୍ରାୟ ଚାଳିଶ ପର୍ସେଣ୍ଟ୍ ବୋଲି କୋଉଠି ପଢ଼ିଚି ମୁଁ ।''

''ଚାଳିଶ ପର୍ସେଣ୍ଟ!'' – ସ୍ତବ୍ଧ ହେଲି ସେ ଉତ୍ତର ଶୁଣି ।

ରାମ କହିଚାଲିଲେ, ''ସାନ୍‌ଫ୍ରାନ୍‌ସିସ୍‌କୋ ହେଲା ଆମେରିକାର ହୋମୋସେକ୍‌ସୁଆଲ୍‌ଙ୍କ ପିଲ୍‌ଟିକାଲ୍ ଆକ୍ଟିଭିଟିର ସେଣ୍ଟର । ଆପଣ ଜାଣିଥିବେ ଗତ ୧୯୯୩ ନିର୍ବାଚନରେ ବିଲ୍ କ୍ଲିଣ୍ଟନ୍‌ଙ୍କ ପ୍ରେସିଡେନ୍ସିଆଲ୍ ନିର୍ବାଚନ ପୂର୍ବରୁ ଏମାନେ ଦାବୀ ଉଠେଇଥିଲେ– ସମଲିଙ୍ଗି ବିବାହପାଇଁ ଆମେରିକା ସରକାର ସଂବିଧାନ ପରିବର୍ତ୍ତନ କରନ୍ତୁ, ନଚେତ୍ ସେମାନେ ତାଙ୍କୁ ଭୋଟ ଦେବେନାହିଁ । ବର୍ତ୍ତମାନ ଆମେରିକାନ୍ ପ୍ରେସିଡେନ୍ସିଆଲ୍ ଇଲେକ୍‌ସନ୍‌ର ଏ ଏକ ମୁଖ୍ୟ ସମସ୍ୟା । ହଁ କହିଲେ ମଲ ନକଲେ ମଲ– ଠିକ୍ ଆମ ଦେଶରେ ସଂଖ୍ୟାଲଘୁ ସମସ୍ୟା ପରି । ଏମାନଙ୍କୁ ହାତରେ ନରଖିଲେ ନିର୍ବାଚନରେ ଜିଣିବା କଷ୍ଟ'' । ରାମବାବୁ ଗାଡି ଡ୍ରାଇଭିଂ ପ୍ରତି ଧ୍ୟାନ ଦେଲେ । ଜନଗହଳି ଭିତରେ ବାଟ କାଟିବା କଷ୍ଟକର ଜାଣି ସେ ଗୋଟାଏ ଗଳି ଭିତରକୁ ମୁହେଁଇଲେ ।

ବହୁ ଗଳି କନ୍ଦି ପାରିହେଇ ଆମ କାର୍ ଶେଷରେ ପହଞ୍ଚିଲା ଗୋଟାଏ ଜାଗାରେ । ଅଳ୍ପଦୂରରେ ସୁନାରଙ୍ଗର ଇନ୍ଦ୍ରଧନୁ ଆକାର ସେତୁଟିଏ ଆକାଶରୁ ଝୁଲିଲା ପରି ଦିଶୁଥାଏ । ରାମବାବୁ କହିଲେ, "The Great Golden Gate Bridge is there just before your eyes now !"

## ଦିଗ୍‌ବଳୟରେ ଦିଶିଲା ଅଲୌକିକ ଦୃଶ୍ୟ– ସ୍ୱର୍ଣ୍ଣସେତୁ

ପିଲାଦିନେ, ମାଇନର୍ ସ୍କୁଲରେ, ଭୂଗୋଳ ପଢିବାବେଳେ ପୃଥିବୀ ମାନଚିତ୍ର ଦେଖି ସ୍ୱପ୍ନ ଦେଖିବା ମୋର ଏକ ମାନସିକ ବିଳାସ ପାଲଟିଥିଲା । ଆଜି ପର୍ଯ୍ୟନ୍ତ ସେଇ ସ୍ୱପ୍ନ ମଝିରେ ମଝିରେ ମନକୁ ଆଚ୍ଛନ୍ନ କରେ । ମୁଁ ଆଟ୍‌ଲାସ୍ ଖୋଲି ପୃଥିବୀ ମାନଚିତ୍ର ଦେଖିବାରେ ବିଭୋର ହୋଇଉଠେ । ମୋ ପାଇଁ ସବୁଠୁ ଅଧିକ ବିସ୍ମୟକର ମନେହୁଏ ପୃଥିବୀର ଜଳଭାଗ । ପୃଥିବୀ ମାନଚିତ୍ରରେ ସ୍ଥଳଭାଗ ତୁଳନାରେ ଜଳଭାଗର ମାତ୍ରା କାହିଁକି ଏତେ ବେଶୀ (ତିନି-ଚତୁର୍ଥାଂଶ) ତାହା ମୋ ପାଇଁ ଏକ ଚିରନ୍ତନ ରହସ୍ୟ । ସେ ପ୍ରଶ୍ନର ଉତ୍ତର ମୁଁ ଆଜିଯାକେ ଆଧୁନିକ ଭୂତତ୍ତ୍ୱ ବା ସର୍ବାଧୁନିକ କସ୍ମୋଲଜି ଶାସ୍ତ୍ରରୁ ପାଇପାରିନାହିଁ ।

ପୃଥିବୀ ପୃଷ୍ଠର ସମସ୍ତ ମହାସାଗର ଭିତରେ ପ୍ରଶାନ୍ତ ମହାସାଗର ସବୁଠୁ ବଡ ଆଉ ସବୁଠୁ ବେଶୀ ରହସ୍ୟମୟ । ଏ ବିଶାଳ ଜଳଭାଗର ପରିଧିକୁ ଘେରି ରହିଚି ଏକ ଅଗ୍ନିବଳୟ– The Pacific Ring Of Fire– ଯାହାର ସ୍ଥାନେ ସ୍ଥାନେ ରହିଚି ଜୀବନ୍ତ ଆଗ୍ନେୟଗିରି ସମୂହ । କେବଳ ମହାସାଗର ତଟ ଦେଶରେ ନୁହେଁ– ପ୍ରଶାନ୍ତମହାସାଗର ଗର୍ଭରେ ମଧ୍ୟ ରହିଚି ଅସଂଖ୍ୟ ଆଗ୍ନେୟଗିରି ଯାହାର ସାମୟିକ ଅଗ୍ନ୍ୟୁତ୍ପାତ କାରଣରୁ ସୃଷ୍ଟିହୁଏ ବାଡବାଗ୍ନି ଏବଂ ଭୂକମ୍ପନ । ସେଥିରୁ ସୃଷ୍ଟି ହୁଏ ପ୍ରଳୟଙ୍କରୀ ସାମୁଦ୍ରିକ ଉଦ୍‌ବେଳନ ବା 'ସୁନାମି' । ଏ ଦୃଷ୍ଟିରୁ ପ୍ରଶାନ୍ତ ମହାସାଗରକୁ ଗୋଟାଏ ଜୀଅନ୍ତା ସମୁଦ୍ର

କହିଲେ ଅତ୍ୟୁକ୍ତି ହେବନାହିଁ । କୁହାଯାଏ ପୃଥିବୀର ଜୀବଜଗତ୍‌ର ଉତ୍ପତ୍ତିସ୍ଥଳ ମଧ୍ୟ ଏଇ ପ୍ରଶାନ୍ତ ମହାସାଗର !

'ସାନ୍ ଫ୍ରାନ୍ସିସକୋ' ସହର ଉପକଣ୍ଠ ଉପକୂଳରେ ଠାଏ କାର୍‌ରୁ ଓହ୍ଲେଇଲୁ । ନିକଟ ଦିଗ୍‌ବଳୟକୁ ଲକ୍ଷ୍ୟ କରିବା ମାତ୍ରେ ଏକ ଶିହରଣ ଖେଳିଗଲା ସର୍ବାଙ୍ଗରେ ମୋର । ମତେ ଜଣାଗଲା ସତେକି ସ୍ୱର୍ଗକୁ ଏକ ବିଶୁଦ୍ଧ ସୁନାର ସିଢ଼ି ବାନ୍ଧିଦିଆଯାଇଚି, ଠିକ୍ ଆମ ଆଖି ଆଗରେ ! ଆମେ ଠିଆହେଇଥାଉ ସେଇ ସିଢ଼ିର ପ୍ରଥମ ପାହାଚ ତଳେ– ସାନ୍ ଫ୍ରାନ୍‌ସିସ୍‌କୋ ଅନ୍ତରୀପରେ । ଗ୍ରୀଷ୍ମ ଅପରାହ୍ନର ସୁନେଲି ଖରାରେ ସିଢ଼ିଟି ଝଲସିଉଠୁଥାଏ– ଏକ ସୁନେଲି ଇନ୍ଦ୍ରଧନୁ ପରି । କିଛି ସମୟ ଅଭିଭୂତ ଦୃଷ୍ଟିରେ ସେ ଅପୂର୍ବ ଦୃଶ୍ୟକୁ ଉପଭୋଗ କଲାପରେ ବୁଝିପାରିଲି– ଏଇ ତା'ହେଲେ ସେଇ ପ୍ରସିଦ୍ଧ The Sanfrancisco Golden Gate Bridge !

ରାମବାବୁ ଆମକୁ ନେଇଗଲେ ସିଢ଼ିର ପ୍ରଥମ ପାହାଚ ପାଖରେ ଆଖିଦୃଷ୍ଟିଆ ଭାବେ ବିଜ୍ଞାପିତ ହେଉଥିବା ଏକ ପ୍ରଜ୍ଞାପନ ସ୍ତମ୍ଭ ପାଖକୁ । ସେ ସ୍ତମ୍ଭରେ ଉଜ୍ଜ୍ୱଳ ସୁନେଲି ଅକ୍ଷରରେ ଉତ୍କୀର୍ଣ୍ଣ ହେଇଥାଏ ଆମେରିକାର ଏଇ ବିସ୍ମୟକର ବୈଜ୍ଞାନିକ କୀର୍ତ୍ତିର ଇତିହାସ ଯାହା ପର୍ଯ୍ୟଟକମାନଙ୍କ ଅବଗତି ପାଇଁ ଉଦ୍ଦିଷ୍ଟ । ଆମେ ସେଇ ସ୍ତମ୍ଭପାଖରେ କିଛି ସମୟ ଅଟକିଯାଇ ସ୍ତମ୍ଭରେ ଉତ୍‌କୀର୍ଣ୍ଣ ବିବରଣିକୁ ପଢ଼ିଲୁ ।

ବୁଲବୁଲ କହିପକାଇଲା, "ଦେଖ ନନା ! ତୁମକୁ ଦିନେ ଏଇ ଜାଗା ବୁଲେଇ ଆଣିବି ବୋଲି ମୋର କେତେଦିନର ସ୍ୱପ୍ନ ଜାଣ ଆଜି ସାର୍ଥକ ହେଲା । ୧୯୮୦ରେ ବାହାହେଇ ଆମେରିକା ଆସିବା ପରେ ମୁଁ ବହୁଦିନଯାକେ ତୁମମାନଙ୍କୁ ଝୁରିଝୁରି କାନ୍ଦୁଥିଲି । ମନର ସବୁ କୋହ ଭିତରେ ମତେ ଗୋଟିଏ ମାତ୍ର ଆଶ୍ୱାସନା ମିଳୁଥାଏ ଯେତେବେଳେ ଭାବିନେଉଥାଏ ଯେ– ଠିକ୍ ଅଛି, ଭଗବାନ୍ ବୋଧେ ମତେ ଏଇ ସୁଦୂର ଆମେରିକାକୁ ପଠେଇଛନ୍ତି ଗୋଟିଏ ବଡ ଉଦ୍ଦେଶ୍ୟରେ । ସେ ଉଦ୍ଦେଶ୍ୟଟି ହେଲା– ଦିନେ ନା ଦିନେ ମୁଁ ମୋ ବାପା ମା'ଙ୍କୁ ଆମେରିକା ଆଣିବି ଆଉ ଏ ଦେଶ ବୁଲେଇ ଦେଖେଇବି । ତୁମେ କ'ଣ କ'ଣ ଦେଖିଲେ ଖୁସିହେବ ତାର ଗୋଟାଏ ତାଲିକା କରଚି । ମୁଁ ଜାଣେ– ତୁମେ ଏ ଦେଶର ବୈଚିତ୍ର୍ୟମୟ ପ୍ରାକୃତିକ ଦୃଶ୍ୟ ଦେଖିଲେ ଯେତିକି ଖୁସି ହେବ, ଏ ଦେଶର ସାଇଣ୍ଟିଫିକ୍ ଆଣ୍ଡ୍ ଟେକ୍ନୋଲଜିକାଲ୍ ଆଚିଭମେଣ୍ଟ୍‌ର କୀର୍ତ୍ତି ତୁମକୁ ସେତିକି ଅଭିଭୂତ କରିବ । ମୋର ସେ ତାଲିକାର ସବା ଉପରେ ଅଛି ଏଇ ଗୋଲ୍‌ଡେନ୍ ଗେଟ୍ ବ୍ରିଜ୍ ! ଏଥର ଚାଲ ଦେଖିବା. . ."

କାର୍‌ପାର୍କିଂ ପ୍ଲେସ୍‌ରେ ଆମକୁ ଗାଡ଼ିରୁ ଓହ୍ଲେଇ ଦେଇ ରାମବାବୁ ତାଙ୍କ କାର୍ ନିର୍ଦ୍ଦିଷ୍ଟ ସ୍ଥାନରେ ପାର୍କ କରିବାକୁ ବାହାରିଲେ । ପାର୍କିଂଲଟ୍‌ରେ ସେତେବେଳକୁ ହଜାର ହଜାର କାର୍ ଜମିସାରିଥାଏ । ଟୁରିଷ୍ଟ୍‌ମାନେ ଦଳଦଳ ହେଇ ଗୋଟିଏ ବଡ ସିଢ଼ି ବାଟେ ବ୍ରିଜ୍ ଉପରକୁ

ଚଢୁଥାନ୍ତି ଆଉ ଓହ୍ଲାଉଥାନ୍ତି । ସେମାନଙ୍କର ଚେହେରା ଦେଖି ଜାଣିହେଉଥାଏ– ସାରା ପୃଥିବୀର ବହୁ ବହୁ ଦେଶର ନାଗରିକ ସେମାନେ । ରାମବାବୁ କାର୍ ପାର୍କିଂ ପାଇଁ ଜାଗା ଖୋଜିବାକୁ ବହୁ ସମୟ ନେବା ଦେଖି ମୁଁ ଚାରିଆଡକୁ ଆଖି ବୁଲେଇଲି । ମୁଣ୍ଡ ଉପରୁ ବହୁ ଉଚ୍ଚରେ ଗୋଲ୍‌ଡେନ୍ ବ୍ରିଜ୍‌ର ସ୍ପାନ୍ ସମୁଦ୍ର ଏପାରି ସେପାରିକୁ ଲମ୍ବିଥାଏ । ଆରପାରିକୁ ଆଖି ପାଉନଥାଏ । ବ୍ରିଜ୍ ଉପରକୁ ଚଢିବାପାଇଁ ବହୁ ମହଲା ଉଚ୍ଚ ଏକ ବିଶାଳ ଲୁହା ସିଢି ଖଂଜାଯାଇଥିବା ଦେଖାଗଲା ।

ସେ ସିଢିର ପ୍ରବେଶ ପଥ ନିକଟରେ ଗୋଟିଏ ବିରାଟ ସ୍ତମ୍ଭ ଥିବା ଦେଖିଲି । ସେ ସ୍ତମ୍ଭକୁ ଦେଖି ମନେହେଲା– ତାହା ନିଶ୍ଚୟ ଏକ ସ୍ମାରକୀ ସ୍ତମ୍ଭ । ସ୍ତମ୍ଭର ଚାରିକାନ୍ଥରେ କ'ଣ ସବୁ ଷ୍ଟାଟିଷ୍ଟିକାଲ୍ ବିବରଣୀ ବଡବଡ ଅକ୍ଷରରେ ଲିପିବଦ୍ଧ ହୋଇଥିବା ଦେଖିପାରିଲି– ମୁଁ ଏକାକୀ ଯାଇ ସ୍ତମ୍ଭ ପାଖରେ ପହଞ୍ଚି ଦେଖିଲି ସ୍ତମ୍ଭର ଚାରିପାଖରେ ଏଇ ବିଖ୍ୟାତ ଗୋଲ୍‌ଡେନ୍ ବ୍ରିଜ୍‌ର ନିର୍ମାଣ ସଂପର୍କରେ ଅନେକ ଐତିହାସିକ ବିବରଣୀ ଲିପିବଦ୍ଧ କରାଯାଇଛି । ସେ ବିବରଣୀର ସବୁଠୁ ଉଲ୍ଲେଖଯୋଗ୍ୟ ବିଷୟ ଥିଲା– ସେତୁ ନିର୍ମାଣରେ ଶହୀଦ ହୋଇଥିବା ଇଂଜିନିୟର୍ ଓ ଶ୍ରମିକଙ୍କ ସଂପର୍କରେ । ବଡବଡ ଯୋଜନାରେ ଆତ୍ମବଳି ଦେଇଥିବା ଲୋକମାନଙ୍କ ନାମ ସାଧାରଣତଃ ଉଲ୍ଲେଖ ହେବା ଦେଖିଚି ମୁଁ ପୂର୍ବରୁ । ଆମ ଓଡିଶାର ବିଖ୍ୟାତ ହୀରାକୁଦ ଡ୍ୟାମ୍ ନିକଟରେ ଅବସ୍ଥାପିତ ଏକ ସୂଚନା ସ୍ତମ୍ଭରେ ଏଭଳି ଶହୀଦ ହୋଇଥିବା ଇଂଜିନିୟର ଓ ଶ୍ରମିକମାନଙ୍କ ନାଁ ରେକର୍ଡ କରାଯାଇଥିବା ଦେଖିଥିଲି ମୁଁ । କିନ୍ତୁ ଆମର ହୀରାକୁଦ ବନ୍ଧ ହେଲା ଗୋଟିଏ ବିରାଟ ନଦୀବନ୍ଧ କେବଳ । ନଦୀର ଶଯ୍ୟା ଉପରେ ନିର୍ମିତ ଏକ ନଦୀବନ୍ଧ ଓ ସମୁଦ୍ର ଉପରେ ନିର୍ମିତ ଏକ ବିଶାଳ ସେତୁ ଭିତରେ ପାର୍ଥକ୍ୟ ବହୁତ । ପ୍ରଶାନ୍ତ ମହାସାଗରର ସେଇ ବିସ୍ତୀର୍ଣ୍ଣ ଉପସାଗର ଉପରେ ଝୁଲନ୍ତା ସେତୁଟିଏ ନିର୍ମାଣ କରିବାକୁ ଚେଷ୍ଟା କରୁଥିବା ଇଂଜିନିୟର ଓ ଶ୍ରମିକମାନଙ୍କୁ ସେକାଳରେ (୧୯୩୩) କିଭଳି ବିପଦ୍ଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡିନଥିବ ତାହା କଳ୍ପନା କରିବା ସଂଭବ ନଥିଲା ମୋ ପକ୍ଷରେ । ସ୍ତମ୍ଭ ନିକଟକୁ ଯାଇ ନିର୍ମାଣ କାର୍ଯ୍ୟରେ ଆତ୍ମବଳି ଦେଇଥିବା ସେଇ ଶହୀଦମାନଙ୍କର ନାଁ ଗୁଡିକୁ ଗୋଟିଗୋଟି କରି ପଢ଼ିଲି । ସମୁଦାୟ ଏଗାରଟି ନାମ ଲିପିବଦ୍ଧ ହେଇଥିଲା ସ୍ତମ୍ଭ ଉପରେ । ସେଇ ନାମାବଳୀକୁ ପଢୁପଢୁ କେଜାଣି କାହିଁକି ମୋର ସାରା ଦେହର ରୁମ ସବୁ ଟାଙ୍କୁରି ଉଠିଲା । ମୁଣ୍ଡ ନୁଆଁଇ ପ୍ରଣାମ କଲି ସେଇ ସ୍ତମ୍ଭକୁ ।

ନୋଟ୍‌ବୁକ୍ ଓ ପେନ୍‌ସିଲ୍ ପକେଟ୍‌ରୁ ବାହାରକରି ମୁଁ ନୋଟ୍ କରି ଚାଲିଲି ସ୍ତମ୍ଭରେ ଲେଖାଥିବା ଅନ୍ୟାନ୍ୟ ସୂଚନା ଗୁଡିକୁ । ସେଇ ଲେଖା ଟିକକୁ ସଂବଳକରି ସାନଫ୍ରାନ୍‌ସିସ୍‌କୋରେ ସେଦିନ ସ୍ୱଚକ୍ଷୁରେ ଦେଖିଥିବା ବିଶ୍ୱର "ଇଂଜିନିୟରିଂ ମାର୍ଭେଲ୍" ନାମରେ ଖ୍ୟାତ ଗୋଲ୍‌ଡେନ୍ ବ୍ରିଜ୍ ଗେଟ୍‌ର ଏକ ସଂକ୍ଷିପ୍ତ ଇତିହାସ ଏଠାରେ ପରିବେଷଣ କରୁଛି ।

## ସାନ୍‌ଫ୍ରାନ୍‌ସିସ୍‌କୋ ସ୍ୱର୍ଣ୍ଣସେତୁ ଜଣେ କବିର ସ୍ୱପ୍ନ ! –

ଶହୀଦମାନଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଂଜଳି ଢାଳି ଦେବା ପରେ ପରେ ମୋ ଦୃଷ୍ଟି ଆକର୍ଷଣ କଲା ସେତୁର ଇତିହାସ । ସେଇ ଇତିହାସର ଆରମ୍ଭ ହୋଇଥିଲା ଏକ କବିତା ପଂକ୍ତିରୁ– ଇଂଜିନିୟରିଂର ଜଟିଳ ଗାଣିତିକ ବିଦ୍ୟାରେ ପୁଣି କବିତା ! କୌତୂହଳ ବଢିଲା ଏ ପ୍ରସିଦ୍ଧ କବି ପୁଣି କିଏ ଯାହାଙ୍କୁ ଏତେ ବଡ ମର୍ଯ୍ୟାଦା ଦିଆଯାଇଚି ଏଭଳି ଏକ ଜାଗାରେ ? କବିତାଟିର ପ୍ରଥମ ପଂକ୍ତି ଥିଲା–

"The Passing world shall never know
The epic of my grim travail
It matters not, nor friend or foe
My place to serve and none to fall."– (Joseph Strauss, 1937)

କବିତାଟି ଆହୁରି ଦୀର୍ଘ– ତାହା ଏଠାରେ ଉଦ୍ଧାର କରୁନାହିଁ । କିନ୍ତୁ କବିତାଟି ପଢି ହୃଦୟଙ୍ଗମ କରିହେଲା ଯେ ଏ କବି ଯେ ହୁଅନ୍ତୁ ନା କାହିଁକି ସେ ନିଶ୍ଚୟ ଜଣେ ବିଦଗ୍ଧ ବ୍ୟକ୍ତିତ୍ୱ ଯାହାଙ୍କୁ ସ୍ମରଣ କରିବାକୁ ଯାଇ ତାଙ୍କର ଏ କବିତା ପଂକ୍ତିଟି ଏଠାରେ ସୁବର୍ଣ୍ଣ ଅକ୍ଷରରେ ଲିପିବଦ୍ଧ କରାଯାଇଚି । ତେବେ କିଏ ସେଇ କବି ଯାହାଙ୍କୁ ସମ୍ମାନିତ କରିବାକୁ ଆମେରିକା ଭଳି ଏକ ବିଜ୍ଞାନ-ଉଦ୍ଧତ ଦେଶ ଏଠାରେ ଜଣେ କବିଙ୍କୁ ଏପରି ସମ୍ମାନିତ କରିଚି ? ପରେ ଜାଣିବାକୁ ପାଇଲି– ଜୋସେଫ୍ ଷ୍ଟ୍ରସ୍ ଥିଲେ ବାସ୍ତବରେ ଏ ସେତୁର ନିର୍ମାତା ଚିଫ୍ ଇଂଜିନିୟର୍ । ମୂଳତଃ ସେ ଥିଲେ ଜଣେ କବି । ତାଙ୍କର ବହୁ କବିତା ପ୍ରକାଶପାଇଚି ତରୁଣ ବୟସରୁ ପରିଣତ ବୟସ ଭିତରେ । ସେଇ ତରୁଣ ବୟସରୁ ସେ ମଧ୍ୟ ଇଂଜିନିୟରିଂ କଲେଜ ଛାତ୍ର ଥିବା ବେଳେ କାଲିଫର୍ଣ୍ଣିଆ ସହରବାସୀଙ୍କ ସମ୍ମୁଖରେ ପ୍ରସ୍ତାବ ଦେଇଥିଲେ ଏଇ ସ୍ୱର୍ଣ୍ଣସେତୁର ନିର୍ମାଣ ଲାଗି । ତାଙ୍କର ସ୍ୱପ୍ନକୁ ଇଂଜିନିୟରିଂ ଡିଜାଇନ୍ ଆକାରରେ ମଧ୍ୟ ଉପସ୍ଥାପନା କରିଥିଲେ– କିନ୍ତୁ ସେଥିପାଇଁ କେବଳ ଉପହାସର ପାତ୍ର ହୋଇଥିଲେ । କାରଣ ସେତେବେଳେ କେହି ବିଶ୍ୱାସ କରିପାରୁନଥିଲେ ଯେ ପ୍ରଶାନ୍ତ ମହାସାଗର ଭଳି ଏକ ଅଶାନ୍ତ ସମୁଦ୍ରର ବିସ୍ତୀର୍ଣ୍ଣ ଜଳରାଶି ଉପରେ ଗୋଟାଏ ବ୍ରିଜ୍ ତିଆରି କରିଦେବାର ଶକ୍ତି ସାମର୍ଥ୍ୟ ମଣିଷ ପକ୍ଷରେ ସଂଭବ ବୋଲି ।

ଏହି ସେତୁ ନିର୍ମାଣ ସଂପର୍କରେ କିଛି ଅଧିକ ଇଂଜିନିୟରିଂ ସୂଚନା ସଂଗ୍ରହ କରିବା ପାଇଁ ମୁଁ ଲାଗିଗଲି । ସେଥିରୁ ଜଣାଗଲା– ସେତୁଟି ସାନ୍‌ଫ୍ରାନ୍‌ସିସ୍‌କୋ ଅନ୍ତରୀପକୁ କାଲିଫର୍ଣ୍ଣିଆର ମୂଳ ଭୂଭାଗର ଏକ ସ୍ଥାନ ''ମାରିନ୍ କାଉଣ୍ଟି'' ସହିତ ଯୋଡିବା ପାଇଁ ଉଦ୍ଦିଷ୍ଟ । ଲମ୍ବରେ ୧୯୭୦ ମିଟର, ଉଚ୍ଚତାରେ ୨୩୦ ମିଟରର ଏଇ ବିଶାଳ ସେତୁଟିର ନିର୍ମାଣ କାର୍ଯ୍ୟ ୧୯୩୩ ଜୁନ୍ ୫ରେ ଆରମ୍ଭ କରାଯାଇଥିଲା । ମାତ୍ର ଚାରିବର୍ଷ ଭିତରେ ୧୯୩୭ ମେ ୨୭ ତାରିଖରେ ଏହା ଉଦ୍‌ଘାଟିତ ହୋଇଥିଲା ରାଷ୍ଟ୍ରପତି ରୁଜ୍‌ଭେଲ୍ଟଙ୍କ

ଦ୍ୱାରା । ରାଷ୍ଟ୍ରପତି ରୁଜଭେଲ୍ଟ ନିଜ ବାସଭବନ ହ୍ୱାଇଟ୍ ହାଉସ୍‌ଠାରେ ଏକ ଟେଲିଗ୍ରାଫ୍ ବୋତାମ ଚିପି ଦେଶର ପୂର୍ବଭାଗ ଆଟଲାଣ୍ଟିକ୍ ମହାସାଗର ତଟ ରାଜଧାନୀ ଓ୍ୱାସିଂଟନ୍‌ରୁ ପଶ୍ଚିମଦିଗରେ ପ୍ରାୟ ପାଞ୍ଚ ହଜାର ମାଇଲ ଦୂର ପ୍ରଶାନ୍ତ ମହାସାଗର ତଟର ଏଇ ଗୌରବମୟ ବିଶ୍ୱ ବିସ୍ମୟକୁ ଆନୁଷ୍ଠାନିକ ଭାବେ ଉଦ୍ଘାଟନ କରିଥିବାର ଉଲ୍ଲେଖ ସ୍ତମ୍ଭ ଉପରେ ଦେଖିଲି ।

ଏଇ ସେତୁ ସଂପର୍କରେ ଅଧିକ ବିସ୍ମୟ ସୃଷ୍ଟିକରୁଥିବା ଅନ୍ୟ କେତେକ ତଥ୍ୟ ମଧ୍ୟ ଉକ୍ତ ସ୍ତମ୍ଭରେ ଉଲ୍ଲେଖ କରାଯାଇଥିବା ଦେଖିଲି । କୁହାଯାଇଥିଲା ଯେ ଏ ଝୁଲନ୍ତା ସେତୁଟି ମାତ୍ର ଦୁଇଟି କାଣ୍ଟିଲିଭର୍ ଖିଲାଣ (ସ୍ପାନ୍) ଉପରେ ଅବସ୍ଥାପିତ । ଗଭୀର ସମୁଦ୍ର ବକ୍ଷରେ ପରସ୍ପର ଠାରୁ ୧,୨୮୦ ମିଟର ଦୂରତାରେ ଅବସ୍ଥାପିତ ଦୁଇଟି ସ୍ତମ୍ଭ ଉପରେ ସମୁଦାୟ ସେତୁଟି ନିର୍ମିତ ହୋଇଛି ଏବଂ ମୋଟେ ଯୋଡିଏ ଷ୍ଟିଲ୍ ରସି (cable) ଏ ସେତୁଟିର ସମସ୍ତ ଭାର ବହନ କରୁଛି । ଏଇ ଷ୍ଟିଲ୍‌ରସି ବା କେବ୍ଲ ଦୁଇଟିର ଗଠନ ସଂପର୍କରେ ଆହୁରି କେତେକ ବିସ୍ମୟକର ତଥ୍ୟ ଜାଣିପାରିଲି । ସୂଚନା ଅନୁଯାୟୀ ଏଇ କେବ୍ଲ ଦୁଇଟି ପ୍ରତ୍ୟେକ ୨୭,୫୭୨ଟି ଇସ୍ପାତ ତାରର ବଳଣା ଦ୍ୱାରା ଗଠିତ ଯାହାର ଲମ୍ବ ସମୁଦାୟ ୮୦,୦୦୦ ମାଇଲ୍ (୧,୨୦,୦୦୦ କିଲୋମିଟର) । ପୁଣି ସମୁଦାୟ ସେତୁ ଗଠନରେ ବ୍ୟବହୃତ ଲୌହ ଯୋଡେଇ କୀଳକ ବା ‘‘ରିଭେଟ୍’’ ସଂଖ୍ୟା ହେଲା– ୧୨,୦୦,୦୦୦ (ବାର ଲକ୍ଷ) । ସେତୁ ନିର୍ମାଣର ଖର୍ଚ୍ଚ ଅଟକଳ ଠାଏ ଲିପିବଦ୍ଧ ହୋଇଥିବା ଦେଖିଲି । ସେତଟିକୁ ନିର୍ମାଣ କରିବାପାଇଁ ସେତେବେଳେ ୧୯୩୩-୩୭ରେ ଖର୍ଚ୍ଚ ହୋଇଥିଲା– ୩୫,୦୦୦,୦୦୦ (ପଞ୍ଚତିରିଶ ନିୟୁତ) ଡଲାର !

ସେତୁଟି ସଂପୂର୍ଣ୍ଣ ହେବା ପରେ ଏହାକୁ ଏକ ଆକର୍ଷଣୀୟ ସୁନା ରଙ୍ଗରେ ରଙ୍ଗ କରାଯାଇଛି । ଏ ରଙ୍ଗ କାଲିଫର୍ଣ୍ଣିଆର ପ୍ରସିଦ୍ଧ ସୁନେଲି ରଙ୍ଗର କମଳାଲେମ୍ବୁର ପ୍ରତୀକ । ସୂର୍ଯ୍ୟ ଆଲୋକରେ ଏଇ ସେତୁଟି ବହୁ ଦୂରରୁ ଦର୍ଶକର ଦୃଷ୍ଟି ଆକର୍ଷଣ କରେ ଏବଂ ପୃଷ୍ଠଭୂମିରେ ପ୍ରଶାନ୍ତ ମହାସାଗରର ସୁନୀଳ ଜଳରାଶି ଯୋଗୁ ଏହା ସ୍ୱର୍ଗକୁ ବନ୍ଧାଯାଇଥିବା ଏକ ସିଡିର ପ୍ରତୀତି ଆଣେ ।

ସ୍ତମ୍ଭ ଚାରିପାଖେ ଘୂରିଘୂରିକା ମୁଁ ପଢି ଚାଲିଲି ଆହୁରି ଅନେକ ଐତିହାସିକ ତଥ୍ୟ ସେତୁଟି ସଂପର୍କରେ । ଏତିକିବେଳେ ରାମବାବୁ ଆସି ପହଞ୍ଚିଲେ । ତାଙ୍କ ସାଙ୍ଗରେ ଟିଗୋ, ନିରୁପମା ଆଉ ବୁଲବୁଲ । ରାମବାବୁ କହିଲେ, ‘‘ମଉସା ! ବ୍ରିଜ ଉପରକୁ ଯାଇ ବୁଲାବୁଲିସାରି ଶୀଘ୍ର ଫେରିବା ଦରକାର । ରେଡିଓରୁ ଶୁଣିଲି ପାଗ ଖରାପ ହବାକୁ ଯାଉଚି । ଉପରଓଳି ଏଠି ପ୍ରାୟ ସବୁଦିନେ ଜୋର୍‌ରେ ପବନ ବହେ । ବ୍ରିଜ୍ ଉପରେ ଠିଆହେବା କଠିନ ସେ ପବନରେ । ଆମକୁ ବହୁ ଉଚ୍ଚ ପର୍ଯ୍ୟନ୍ତ ସିଢି ଚଢିବା ଦରକାର– ବ୍ରିଜ୍ ଉପର ପର୍ଯ୍ୟନ୍ତ ଉଠିବାକୁ । ଚାଲନ୍ତୁ ଯିବା. . .’’

ସ୍ମାରକୀ ସ୍ତମ୍ଭ ଉପରେ ମୁଁ ତଥାପି ଆଖି ବୁଲୋଉଥାଏ । ଅନେକ ତଥ୍ୟ ରହିଗଲା ଅପଢା । ଶେଷ ଥର ପାଇଁ ଆଖି ବୁଲେଇନେଲାବେଳେ ଆଖି ଅଟକିଗଲା ଠାଏ । ଦେଖିଲି ଶହୀଦମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ଶ୍ରଦ୍ଧାଂଜଳି ।

ସଂକ୍ଷିପ୍ତ ବିବରଣୀରୁ ବୁଝାପଡିଲା– ଏ ସ୍ୱର୍ଣ୍ଣ ସେତୁ ବାହାରକୁ ଯେତେ ସୁନ୍ଦର ଦିଶୁଥିଲେ ବି ଏହା ବାସ୍ତବରେ ଗୋଟାଏ ଚମତ୍କାର କବରଖାନା ! ଏଠି ସମୁଦାୟ ଏଗାରଜଣ କର୍ମରତ ଶ୍ରମିକ ଏବଂ ଇଂଜିନିୟର ଶହୀଦ ହୋଇଛନ୍ତି ।

ରାମବାବୁ ବ୍ୟସ୍ତ ହେଲେ । ଝଡତୋଫାନ ମାଡିଆସୁଚି । ଆମେ ବ୍ରିଜ୍‌କୁ ଚଢିବା ପାଇଁ ସିଡି ପାଖକୁ ତରବର ହେଇ ଆଗେଇଲୁ ।

ଗୋଟାଏ ଜାଗାରେ ପୁଣି କ'ଣ ଲେଖାହେଇଚି ଦେଖିବାକୁ ଅଟକିଗଲି ଟିକେ । ଦେଖିଲି– ଏକ ଅଦ୍ଭୁତ ତଥ୍ୟ ଲିପିବଦ୍ଧ ହୋଇଛି ଖଣ୍ଡେ ମାର୍ବଲଫଳକରେ । ପଢିଲି ବିଶ୍ୱାସ କରିହେଲାନାହିଁ । ନିଜକୁ ନିଜେ ପଚାରିଲି– ଲୋକଟି କବି ନିଶ୍ଚୟ; କିନ୍ତୁ ଏତେ ଭାବପ୍ରବଣ ?

ରାମବାବୁଙ୍କୁ ଦେଖେଇଲି ସେ ଫଳକଟାକୁ । ପଚାରିଲି, ''ଏଠି କ'ଣ ଲେଖାହେଇଚି ଦେଖୁଚନ୍ତି ?'' ସମସ୍ତେ ପଢିଲେ । ଆଶ୍ଚର୍ଯ୍ୟ ହେଲେ । ଆଶ୍ଚର୍ଯ୍ୟ ହେବାର କାରଣ ହେଲା– ଆମେ ଭାରତୀୟମାନେ ଭାବିଥାଉ ଆମେରିକାନ୍‌ମାନେ ଖାଲି ଧନ ସଂପତ୍ତି ବିଷୟବାଡି ନେଇ ବ୍ୟସ୍ତ– ସେମାନଙ୍କର ଭାବପ୍ରବଣତା ନଥାଏ । ଆମ ଦେଶରେ ଯେକୌଣସି ନିର୍ମାଣ କାର୍ଯ୍ୟ ଆରମ୍ଭରେ ପୂଜା କରାଯାଏ, ନଡିଆ ଭଙ୍ଗାଯାଏ । ଆମେରିକାରେ ସଂଭବତଃ ସେଭଳି କାମ କରାଯାଏନା ବୋଲି ଆମେ ଭାବିଥାଉ । କିନ୍ତୁ ଦେଖିଲୁ– ଏଠି, ଏଇ ସେତୁ ନିର୍ମାଣ ପୂର୍ବରୁ କିଛି ଶୁଭକାର୍ଯ୍ୟ ଅନୁଷ୍ଠିତ ହୋଇଥିଲା । ତାର ପ୍ରମାଣ– ସେତୁ ନିର୍ମାଣ କାମ ଆରମ୍ଭ ପୂର୍ବରୁ ଏହାର ମୂଳଦୁଆ ତଳେ ଖଣ୍ଡେ ଇଟା ପୋତାହୋଇଥିଲା । ଇଟା ଖଣ୍ଡକ ଥିଲା ଏ ବିଶାଳ ସେତୁର ନିର୍ମାଣ ଦାୟିତ୍ୱ ହାତକୁ ନେଇଥିବା ଚିଫ୍-ଇଂଜିନିୟର୍ କବି ଜୋସେଫ୍‌ଙ୍କ ସ୍ୱପ୍ନସଂଭୂତ । ତାହା ସଂଗ୍ରହ କରାଯାଇଥିଲା ତାଙ୍କ ଶିକ୍ଷାଦାୟୀ ୟୁନିର୍ଭସିଟି ବା ''ଆଲ୍‌ମାମେଟର''ରୁ । ସେ ଥିଲେ ସିନ୍‌ସିନାଟି, ଓହାଇଓ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ଇଂଜିନିୟରିଂ ଛାତ୍ର । ସ୍ୱର୍ଣ୍ଣସେତୁ ନିର୍ମାଣ କାର୍ଯ୍ୟ ତାଙ୍କୁ ଅର୍ପଣ କରାଯିବା ପରେ ସେ ନିଜର ମାତୃକା ଶିକ୍ଷାନୁଷ୍ଠାନ (Alma-Mater)ରୁ ଖଣ୍ଡିଏ ପୁରୁଣା ଇଟା ସଂଗ୍ରହକରି ଆଣିଲେ । ଇଟା ଖଣ୍ଡକ ସେତୁର ନିର୍ମାଣ-ସ୍ଥାନରେ ସ୍ଥାପିତ ମୂଳଦୁଆରେ ସ୍ଥାପନ କରାଗଲା । ସେଇଠି ପ୍ରଥମ ଦଫା ସିମେଣ୍ଟ କଂକ୍ରିଟ୍ ଢଳାଯିବା ପରେ ନିର୍ମାଣ କାମ ଆରମ୍ଭହେଲା ।

୧୯୩୭ ମେ ୨୭ରେ ନିର୍ମାଣ କାମ ଶେଷହେବା ପରେ ଚିଫ୍‌ଇଂଜିନିୟର୍ ଷ୍ଟ୍ରସ୍ ଏକ କବିତା ରଚନା କରିଥିଲେ । ତାର କେତୋଟି ଧାଡି ହେଲା–

"At last the mighty task is done
Resplendent in the western Sun

The bridge looms mountain high
Its Titan piers grip ocean floor
Its great steel arms link shore to shore
Its towers pierce the sky..."

କବିଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଂଜଳି ଜଣାଇ ଆମେ ସମସ୍ତେ ସିଢି ଉପରକୁ ଉଠିଲୁ। ସ୍ୱର୍ଣ୍ଣସେତୁ ଉପରେ ପହଞ୍ଚିବାକ୍ଷଣି ମନେହେଲା ଯେମିତି ଅନ୍ୟ କୌଣସି ଏକ ଜଗତରେ ଆମେ ପହଞ୍ଚିଯାଇଛୁ । ସମୁଦ୍ର ପତନରୁ ୨୩୦ ମିଟର ଉପରୁ ସେ ଦୃଶ୍ୟ ସ୍ୱର୍ଗରାଜ୍ୟ ପରି ମନୋରମ ଅଥଚ ଭୟାବହ । ତଳେ ମର୍ତ୍ତ୍ୟଲୋକରେ ଦିଗନ୍ତବିସ୍ତାରୀ ସମୁଦ୍ର। ତଳକୁ ଅନାଇଦେଲେ ଛାତି ଥରିଯାଉଥାଏ । ସେତୁ ତଳ ଭାଗରେ ସମୁଦ୍ରରେ ବଡ ଛୋଟ ଜାହାଜମାନ ଚଳାଚଳ କରୁଥାଏ । ସେଗୁଡିକ ଦିଶୁଥାଏ ଗୁଡିଏ କାଗଜ ଡଙ୍ଗା ଭାସୁଥିବା ପରି ମହାସାଗର ବକ୍ଷରେ ! ଏଣେ ସେତୁର ଆରପାରିକୁ ଚାହିଁଲେ ଦିଶୁଥାଏ ଝାପ୍‌ସା ଝାପ୍‌ସା କେତେଗୁଡିଏ ପାହାଡ । ସେମିତି ଗୋଟିଏ ଝାପ୍‌ସା ପାହାଡ ଦିଶିଲା ସମୁଦ୍ରର ଅନେକ ଭିତରେ– ବୋଧହୁଏ ତାହା ଗୋଟିଏ ଦ୍ୱୀପ ।

ଟିଟା କହିଲା, ''ମଉସା ! ଏ ଦ୍ୱୀପଟା କ'ଣ ଜାଣିଚନ୍ତି ? ଯା' ନାଁ ଅଲକାଟ୍ରାଜ ଦ୍ୱୀପ। ଏଠି ଅଛି ଆଜୀବନ କାରାଦଣ୍ଡ ଭୋଗୁଥିବା ଦୁର୍ଦ୍ଦାନ୍ତ କଏଦୀମାନଙ୍କର କାରାଗାର– ଠିକ୍ ଆମ ଭାରତର କଳାପାଣି କୁହାଯାଉଥିବା ଆଣ୍ଡାମାନସ୍ ଦ୍ୱୀପପରି । ଏ ଦ୍ୱୀପରୁ ଥରେ ଥରେ ଜଣେ ଜଣେ ଦୁଃସାହସୀ କଏଦୀ ସମୁଦ୍ରକୁ ଡେଇଁପଡି ଖସି ପଳେଇଯିବାକୁ ଚେଷ୍ଟାକରିବା ଖବର ମିଳେ । ଏ ବନ୍ଦୀମାନଙ୍କ ଜୀବନୀକୁ ନେଇ ହଲିଉଡ୍ ବି କେତେଟା ବଢିଆ ଥ୍ରିଲର୍ ମୁଭି କରିଚି ।''

ଆଲ୍‌କାଟ୍ରାଜ୍ ଦ୍ୱୀପକୁ ଆମେରିକା ଦୁର୍ଦ୍ଦାନ୍ତ କୟେଦୀମାନଙ୍କ ପାଇଁ ''ମାକ୍ସିମମ୍ ସିକ୍ୟୁରିଟି ପ୍ରିଜନ୍'' ରୂପେ ବ୍ୟବହାର କରୁଥିଲେ ବି ଏହାକୁ ମୁଭି ଜଗତରେ ବୀରମାନଙ୍କର ବନ୍ଦୀଶାଳା ଭାବେ ଚିତ୍ରିତ କରିବା ହେତୁ ଏହାର ନାଁ ପଛରେ ନାନା ରୋମାଞ୍ଚକର କାହାଣୀ ଯୋଡା ଯାଇଥାଏ । ଯେପରି ଆମ ଭାରତର ସ୍ୱାଧୀନତା ସଂଗ୍ରାମର ଅନେକ ବୀରପୁରୁଷଙ୍କ ସ୍ମୃତି ସହିତ ଆଣ୍ଡାମାନ ଜେଲ ବା କଳାପାଣିର କାହାଣୀ ସବୁ ଯୋଡାଯାଇଥାଏ, ସେହିପରି ଏଠାକାର ଆଲ୍‌କାଟ୍ରାଜ୍ ଦ୍ୱୀପ ସଂପର୍କରେ ବହୁ ଲୋକକଥା ରହିଚି । ଆମ ଗାଇଡ୍ ରାମବାବୁ ସେଇ ଲୋକକଥାରୁ ଗୋଟିଏ କିଛି ମଜାକଥା ଆରମ୍ଭ କରିବାକୁ ଯାଉଥିଲେ– ହଠାତ୍ ତାଙ୍କ କଥା ଅଧାରୁ ବନ୍ଦହେଇଗଲା । ଆମେ ସେତେବେଳେ ସେତୁର ଅପରପାର୍ଶ୍ୱ ଅନ୍ୱେଷଣରେ ଆଗେଇ ଯିବାକୁ ମାତ୍ର କେତେଟା ପାହୁଣ୍ଡ ନେଉଥାଉ– ହଠାତ୍ ସମୁଦାୟ ସେତୁଟା ଥରିବା ଭଳି ମନେହେଲା । ମନେହେଲା ହୁଏତ ଆମେ ଗୋଟାଏ ଝୁଲା ଉପରେ ସବାର ହେଇଚୁ ।

ରାମ ମୁହଁ ଖୋଲିଲେ । କହିଲେ, ''ଏ ବ୍ରିଜ୍‌ଟା ଗୋଟିଏ ସସ୍‌ପେନ୍‌ସନ୍ ବ୍ରିଜ୍ । ଦେଖନ୍ତୁ କେତେ ଉଚ୍ଚ ଖମ୍ବରୁ କେବଳ ଦୁଇଟା କେବ୍ଲ ବନ୍ଧାଯାଇ ବ୍ରିଜ୍‌ର ସ୍ପାନ୍ ଗୁଡାକୁ

ଶୂନ୍ୟରୁ ଝୁଲାଇ ରଖାଯାଇଚି । ଏ ସ୍ଥାନ୍‌ଗୁଡ଼ିକ ଜୋର୍ ପବନ ହେଲେ ଥରିବା ସ୍ୱାଭାବିକ । ଡରିବାର କିଛି ନାହିଁ । କେତେ ଝଡ ବାତ୍ୟା ଏପରିକି ଭୂମିକମ୍ପ ଏ ବ୍ରିଜ୍ ସହି ସହି ଆସିଲାଣି ୧୯୩୭ରୁ ଆଜି ୨୦୦୬ ପର୍ଯ୍ୟନ୍ତ । ଭୟନାହିଁ । ତେବେ ପବନର ବେଗ ବେଶୀ ହେବା ପୂର୍ବରୁ ଓହ୍ଲାଇଯିବା ଭଲ । ଏ ସହରରେ ଆହୁରି ଅନେକ ଇଣ୍ଟରେଷ୍ଟିଂ ସାଇଟ୍ ସିଇଂ ଜାଗା ଅଛି– ଯିବା ଚାଲନ୍ତୁ ।''

ପବନର ବେଗର ତୀବ୍ରତା ଜଣେଇଦେଲା ଝଡ ଆସନ୍ନ । ପରେପରେ ଉଠିଲା ସେଇ ସମୁଦ୍ର ପଟୁ କୁହୁଡ଼ି । ଏ କୁହୁଡ଼ି ଏଠାକାର ନିତ୍ୟ ସହଚର । ପ୍ରତିଦିନ ଅପରାହ୍ଣରେ ଏହିପରି ଘନ କୁହୁଡ଼ି ଏଠିକାର ସମଗ୍ର ଉପକୂଳକୁ ଆଛନ୍ନ କରେ ବୋଲି ଜାଣିଥିଲୁ । ଚାହୁଁ ଚାହୁଁ ସମଗ୍ର ଅଂଚଳକୁ ଘୋଡେଇ ପକେଇଲା କୁହୁଡ଼ି । ଏକ ରହସ୍ୟମୟ ସୃଷ୍ଟିରେ ପରିଣତ ହେଇଗଲା ଚାରିଆଡ । ପୋଲ ଉପରେ ଆମର ସ୍ଥିତି ମନେହେଲା ଏକ ତ୍ରିଶଙ୍କୁର ସ୍ୱର୍ଗ ପରି । ଆମକୁ ଅର୍ଦ୍ଧ ସ୍ୱର୍ଗରେ ଅବସ୍ଥାପିତ କରାଇ କେଉଁ ବିଶ୍ୱାମିତ୍ର ଋଷି ସତେକି ତଳୁ ଡାକଦେଉଥିଲେ, ''ତତ୍ର ତିଷ୍ଠ ! ତତ୍ର ତିଷ୍ଠ !''

କିନ୍ତୁ ଆଉ ବେଶୀ ସମୟ ସେଠାରେ ରହିବା ନିରାପଦ ମନେହେଲା ନାହିଁ । ପବନର ସ୍ରୋତ ବଢିଗଲାଣି ବହୁତ । ସେ ବାତ୍ୟାରେ ସ୍ୱର୍ଣ୍ଣ ସେତୁଟି ଦୋହଲିଯାଉଥାଏ ଆଖିଦୃଷ୍ଟିଆ ଭାବେ । ଆମେ ସତରେ ଭୟପାଇଲୁ ।

ସ୍ୱର୍ଣ୍ଣ ସେତୁଠାରୁ ବିଦାୟ ନେବା ଆଗରୁ ମୋର ମନେପଡିଲା– ଆଜିର ଏ ସ୍ମରଣୀୟ ମୁହୂର୍ତ୍ତ ଗୁଡିକୁ ସାଇତି ରଖିବାକୁ କିଛି ଫଟୋଗ୍ରାଫ୍ ନିଆଯିବା ନିହାତ ଦରକାର । ବୁଲବୁଲ ତା' କ୍ୟାମେରାଟାକୁ ସାଙ୍ଗରେ ଆଣିପାରିନଥାଏ । ସେତୁ ଉପରେ ରାମବାବୁ ନିଜ କ୍ୟାମେରାରେ ଆମ ସମସ୍ତଙ୍କର କେତେଟା ଫଟୋ ଉଠାଇଲେ । କିନ୍ତୁ ଦୁଃଖର କଥା ଆମେ ସେଦିନ ସାନ୍‌ଫ୍ରାନ୍‌ସିସ୍କୋ ସହର ଭିତରେ ବୁଲୁଥିଲା ବେଳେ କ୍ୟାମେରାଟିକୁ ସେ କୋଉଠି କେମିତି ହଜେଇଦେଲେ । ଯେତେ ଖୋଜାଖୋଜି କଲେ ବି ତାହା ଆଉ ମିଳିଲା ନାହିଁ । କ୍ୟାମେରା ଗଲା– ତା' ସହିତ ଚାଲିଗଲା ଆମର ସେ ଦିନର ସେଇ ଅମୂଲ୍ୟ ସ୍ମାରକୀ ଫଟୋଗ୍ରାଫ ଗୁଡିକ ମଧ୍ୟ ।

ସେଦିନ ସାନ୍‌ଫ୍ରାନ୍‌ସିସ୍କୋ ସହରର କେତେକ ଗୁରୁତ୍ୱପୂର୍ଣ୍ଣ ଜାଗା ଆମକୁ ବୁଲେଇ ଦେଖେଇଲେ ରାମବାବୁ । ସେ ଭିତରେ ଥିଲା– ଏଠାକାର ପୁରୁଣା ସମୟର ଏକ ସେତୁ ବା 'ବେ ବ୍ରିଜ୍', ସୋସୋଲିତୋ ବ୍ଲୁକେଡ୍‌ରୋଡ (Shosholito Beach Town) ଇତ୍ୟାଦି । ସେସବୁ ଭିତରେ ସବୁଠୁ ବେଶି କୌତୂହଳୋଦ୍ଦୀପକ ହେଲା ଗୋଟିଏ ପାହାଡିଆ ସର୍ପିଳ ସଂକୀର୍ଣ୍ଣ ରାସ୍ତା । ଯା'ରି ନାଁ "The Crooked Road" ! ବାସ୍ତବିକ୍ ଏହା ଏକ ଅଜବ ଗଳି ଯାହାକୁ ଅଠରବାଙ୍କି ନାଁ ଦେଲେ ଚଳିବ । ସାନ୍‌ଫ୍ରାନ୍‌ସିସ୍କୋ ଭଳି ଏକ ଆଧୁନିକ ସହର ଭିତରେ ଏପରି ଏକ ଅଦ୍ଭୁତ ଇନ୍ଦ୍ରଜାଲ ପରି ଏକ ବିପଜ୍ଜନକ

ସଂକୀର୍ଣ୍ଣ ରାସ୍ତା । କାହିଁକି ରହିଚି ସେ ବିଷୟରେ ଜାଣିବା ପାଇଁ ହାତରେ ସମୟର ଅଭାବ ଥିଲା । ଏହାର ଦୁଇ ପାଖେ ବହୁ ଧନୀ ଲୋକମାନଙ୍କ ଘର । ଅଧିକାଂଶଙ୍କର କାର୍ ଅଛି । କାର ଗୁଡାକ ଘର ଭିତରେ ଡ୍ରଇଂରୁମ୍‌ରେ ରଖାଗଲା ପରି ରଖାଯାଇଥାଏ, କାରଣ, କାର୍ ପାର୍କିଂ ପାଇଁ ଘର ଆଗରେ ଜାଗା ନାହିଁ । ଏଠି କାର୍‌କୁ ଡ୍ରାଇଭର୍‌ମାନେ ଘରୁ କେମିତି କାଢନ୍ତି ଆଉ ଘରେ ପୂରାନ୍ତି ତାହା ମୋ ପାଇଁ ଥିଲା ବିସ୍ମୟ ।

ସେଦିନ ସନ୍ଧ୍ୟାରେ ସାନ୍‌ଫ୍ରାନ୍‌ସିସ୍‌କୋ ବୁଲିସାରି ସାନ୍‌ଜୋସେ ଫେରିବା ବାଟରେ ରାମବାବୁ ପଚାରିଲେ, ''ସାର୍ ! ଷ୍ଟାନ୍‌ଫୋର୍ଡ ୟୁନିର୍ଭସିଟି ଦେଖିବେ ?''

ଷ୍ଟାନ୍‌ଫୋର୍ଡର ନାଁଟା ହିଁ ଯଥେଷ୍ଟ ଜଣେ ଶିକ୍ଷକକୁ ଚମତ୍କୃତ କରିବାପାଇଁ । ମୁଁ ତତ୍‌କ୍ଷଣାତ୍ ରାଜିହେଇଗଲି । କିନ୍ତୁ ସନ୍ଧ୍ୟା ଗଡିଆସୁଥାଏ । ଖରାଦିନେ ଅବଶ୍ୟ ଏଠାର ଉତ୍ତର ଗୋଲାର୍ଦ୍ଧରେ ରାତି ବେଶୀ ଡେରିରେ ଆସେ । ରାତି ହୋଇଯିବା ଆଗରୁ ଷ୍ଟାନ୍‌ଫୋର୍ଡ କ୍ୟାମ୍ପସ୍‌ରେ ପହଞ୍ଚିଯିବାପାଇଁ ରାମବାବୁ ଦ୍ରୁତବେଗରେ ଗାଡି ଚଳେଇଲେ । କିଛି ସମୟ ପରେ କାର୍ ପଶିଲା କ୍ୟାମ୍ପସ୍ ଭିତରେ । ଏ ଏକ ସ୍ୱତନ୍ତ୍ରଭାବେ ପ୍ଲାନିଂ କରାଯାଇଥିବା ଆଧୁନିକ ବିଶ୍ୱବିଦ୍ୟାଳୟ ସହର । ଏହାର ଆଡ୍‌ମିନିଷ୍ଟ୍ରେଟିଭ୍ ୱିଙ୍ଗ, ଫାକଲ୍ଟି ବିଲ୍‌ଡିଂସ୍, ଲେକ୍‌ଚର୍ ଥିଏଟର୍ସ, ଅଡିଟୋରିୟମ୍, ବିଭିନ୍ନ ବିଭାଗର ଲାବରେଟୋରି ବିଲଡିଂ, ଛାତ୍ରାବାସ, ଡର୍ମିଟୋରିଜ୍, ଜିମ୍‌ନାସିୟମ୍, ଷ୍ଟାଡିୟମ୍ ଏବଂ ଦୋକାନବଜାର, କ୍ୟାଣ୍ଟିନ୍, ବହିଦୋକାନ ଇତ୍ୟାଦି ଉପରେ ଆଖି ବୁଲେଇ ବୁଲେଇ ଆମେ ସାରା କ୍ୟାମ୍ପସ୍‌ଟାକୁ ପରିକ୍ରମା କରିଚାଲିଲୁ । ସବୁଠୁ ଆକର୍ଷଣୀୟ ମନେହେଲା ଏ କ୍ୟାମ୍ପସ୍‌ର ଗୋଟିଏ ଅଭୁଲା ଦୃଶ୍ୟ । କ୍ୟାମ୍ପସ୍ ଭିତର ରାସ୍ତାକଡରେ ଲଗାଯାଇଥାଏ ଧାଡି ଧାଡି ଖଜୁରି ଗଛ ! ସାମଗ୍ରିକ ଦୃଷ୍ଟିରେ ସେଗୁଡିକୁ ଦେଖିଲେ ମନେହେଉଥାଏ ସତେକି ଏକ ମରୁଦ୍ୱୀପ ଭିତରେ ସେଇ ବିଶ୍ୱବିଦ୍ୟାଳୟଟିକୁ ପ୍ରତିଷ୍ଠା କରାଯାଇଥାଏ ।

ରାତି ବଢୁଥାଏ । ରାମବାବୁ ପଚାରିଲେ, ''ସାର୍ ! ଘରକୁ ଫେରିବା ବାଟରେ ଜଣେ ବିଶିଷ୍ଟ ଓଡିଆଙ୍କ ଘର ଦେଖିଯିବା କି ? ଆପଣ ଜାଣିଥିବେ ଏଠି ରହନ୍ତି ଡକ୍ଟର ଜ୍ଞାନଦାଶ ଓ ତାଙ୍କ ପତ୍ନୀ ବୁଇ ନାନୀ ?'' ଜ୍ଞାନ ଦାଶ ସ୍ୱର୍ଗତ ପଦାରବିନ୍ଦ ମହାପାତ୍ର ଓ ସମାଜ ସଂପାଦିକା ଶ୍ରୀମତୀ ମନୋରମା ମହାପାତ୍ରଙ୍କ ଜାମାତା । ଜ୍ଞାନ ଆଉ ବୁଇ ଆମର ପୂର୍ବପରିଚିତ– ତେଣୁ ଆମେ ଆଗ୍ରହୀ ଥିଲୁ ସେମାନଙ୍କୁ ଭେଟିବାକୁ । ସାନ୍‌ଜୋସେ ଠାରୁ ଅଳ୍ପ ଦୂର ଏକ ଟାଉନ୍‌ରେ ସେମାନଙ୍କ ଘର । ରାମଙ୍କ ସହଯୋଗରୁ ଆମେ ସେଦିନ ବନ୍ଧୁଦର୍ଶନର ସୁଯୋଗ ପାଇପାରିଥିଲୁ । ବେଶ୍ ଡେରି ରାତିଯାଏଁ ଜ୍ଞାନବାବୁଙ୍କ ସହିତ ବହୁତ ଆଳାପ ଆଲୋଚନା ଚାଲିଲା । ଏ ମହାଶୟଙ୍କୁ ମୁଁ ଚିହ୍ନିଥିଲି ଓଡିଶାର ଜଣେ ଉଚ୍ଚକୋଟୀର ମେଧାବୀ ଇଂଜିନିୟର ଭାବେ । ସେ ମଧ୍ୟ ଜଣେ ବିଚକ୍ଷଣ କଂପ୍ୟୁଟର ବିଜ୍ଞାନ ବିଶାରଦ । ସେତେବେଳେ ଏଇ ଖ୍ୟାତନାମା ଓଡିଆ ଆମେରିକାର କୌଣସି ଏକ ବଡ

କଂପ୍ୟୁଟର ଶିଳ୍ପ କଂପାନୀର ଭାଇସ୍ ପ୍ରେସିଡେଣ୍ଟ ପଦରେ ଅଧିଷ୍ଠିତ ଥିଲେ ।

କେବଳ ଜଣେ ବୈଜ୍ଞାନିକ ଭାବେ ନୁହେଁ, ଜ୍ଞାନବାବୁଙ୍କୁ ଆମେରିକାର ପ୍ରବାସୀ ଓଡିଆମାନେ ଖୁବ୍ ସମ୍ମାନ କରୁଥିଲେ ତାଙ୍କର ସାଂଗଠନିକ ଦକ୍ଷତା ହେତୁ । ପ୍ରବାସୀ ଓଡିଆଙ୍କ 'ଓଡିଶା ସୋସାଇଟି ଅଫ୍ ଆମେରିକା' (ଓସା) ସଂଗଠନର ସଭାପତି ଭାବେ ତାଙ୍କରଂ ସୁଖ୍ୟାତି ମତେ ଜଣାଥିଲା । ଜ୍ଞାନ ଦାଶଙ୍କ ବହୁ ଲେଖା ସମାଜରେ ପ୍ରକାଶ ପାଉଥିଲା ଯାହା ମତେ ପ୍ରଭାବିତ କରିଥିଲା ପୂର୍ବରୁ । ଏ ସବୁ ଉପରେ ସେ ଥିଲେ ଜଣେ ପ୍ରଗାଢ ଅଧ୍ୟାତ୍ମବାଦୀ ବୈଜ୍ଞାନିକ ଯାହା ଏ ଦେଶରେ ଏକାନ୍ତ ଦୁର୍ଲଭ । ଆମେରିକାର ବିଭିନ୍ନ ସହରରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ପାଳନରେ ଏ ମହାଶୟଙ୍କ ନିଷ୍ଠାପର ନେତୃତ୍ୱ ବିଷୟରେ ମଧ୍ୟ ମୁଁ ପୂର୍ବରୁ ଅବଗତ ଥିଲି । ଏ ସବୁ ପ୍ରସଂଗକୁ ନେଇ ଆଲୋଚନା ଭିତରେ ସେଦିନ ସନ୍ଧ୍ୟାଟି ପରମ ତୃପ୍ତିକର ବୌଦ୍ଧିକ ବାତାବରଣ ଭିତରେ ଅତିବାହିତ ହେଲା । ଦାଶ ଦମ୍ପତିଙ୍କ ଆତିଥେୟତା ଗ୍ରହଣକରି ଆମେ ସେଦିନ ରାତ୍ରି ଭୋଜନ ଅନ୍ତେ ସାନ୍‌ଜୋସେ ଫେରିଆସିଲୁ ।

## ଫ୍ରାଙ୍କଲିନ୍ (ଟେନୀସୀ) ପ୍ରତ୍ୟାବର୍ତ୍ତନ

ତା ୨୬, ଜୁନ, ୨୦୦୬ । କାଲିଫର୍ଣ୍ଣିଆ ବୁଲା ଶେଷକରି ସେଦିନ ସକାଳ ସାଢେ ଦଶରେ ଆମେ ଡାକ୍ତର ଅଂଜଳିକାଙ୍କ ଘରୁ ସାନଜୋସେ ବିମାନ ବନ୍ଦର ଅଭିମୁଖେ ବାହାରିଲୁ । ଆମକୁ ବିଦାୟ ଦେବା ପାଇଁ ବିମାନବନ୍ଦରକୁ ସାନ୍ତାକ୍ରୁଜରୁ ଅନ୍ନପୂର୍ଣ୍ଣା ଓ ତାଙ୍କ ପୁଅ ଆକାଶ ମଧ୍ୟ ଆସିଥିଲେ । ମଧ୍ୟାହ୍ନ ସାଢେବାର ଉଡାଣରେ ଆମେ ସମସ୍ତଙ୍କଠାରୁ ବିଦାୟନେଇ ପ୍ଲେନ୍‌ରେ ବସିଲୁ ।

ସାନ୍‌ଜୋସେରୁ ମିନିଆପଲିସ ବାଟେ ନ୍ୟାସ୍‌ଭିଲ୍ ଉଡାଣ ପ୍ରାୟ ଛ'ଘଣ୍ଟାର ଦୀର୍ଘ ଯାତ୍ରା । ସେ ଦିନ ରାତି ସାଢେ ନ'ରେ ଆମେ ନ୍ୟାସ୍‌ଭିଲ୍ ବିମାନବନ୍ଦରରେ ପ୍ଲେନ୍‌ରୁ ଓହ୍ଲେଇଲୁ । ଆମକୁ ପାଛୋଟି ନେବାକୁ ପ୍ରବୀର ବିମାନ ବନ୍ଦରକୁ ଆସିଥିଲେ । ରାତି ଏଗାରରେ ଆମେ ଫ୍ରାଙ୍କ୍‌ଲିନ୍‌ରେ ପ୍ରବୀର ଓ ବୁଲବୁଲଙ୍କ ଘରେ ପହଞ୍ଚିଲୁ ।

କାଲିଫର୍ଣ୍ଣିଆ ଭ୍ରମଣର ରୋମାଞ୍ଚକର ସ୍ମୃତି ଚିରଦିନ ପାଇଁ ମନରେ ଲିପିବଦ୍ଧ ହୋଇ ରହିଲା । ମୋର ବହୁ ଦିନର ସ୍ୱପ୍ନ– ଦିନେ ଆମେରିକାର ପଶ୍ଚିମ ପ୍ରଶାନ୍ତ ମହାସାଗର କୂଳରେ ବସି ମୋ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଜଳ ତର୍ପଣ କରିବି– ସେ ସ୍ୱପ୍ନ ସାକାର ହୋଇପାରିଥିଲା । ଏହା ସହିତ ଆମ ବଡଝିଅ ବୁଲବୁଲର ସ୍ୱପ୍ନ ମଧ୍ୟ ପୂରଣ ହୋଇଥିଲା ଯେ ସେ ଆମକୁ କାଲିଫର୍ଣ୍ଣିଆ ବୁଲେଇବ, ବିଶେଷକରି ୟୋସୋମିତି ପାର୍କ ଦେଖେଇବ । ଈଶ୍ୱରଙ୍କ କୃପାରୁ ଆମ ଉଭୟଙ୍କ ଇଚ୍ଛା ପୂରଣ ହେଇଥିଲା ଏଇ ବର୍ଷ ୨୦୦୬ରେ ମୋର ଚତୁର୍ଥବାର ଆମେରିକା ଭ୍ରମଣ ସୁଯୋଗରେ ।

## ନ୍ୟାସଭିଲ୍ ରଥଯାତ୍ରା (୨୦୦୬)

ତା ୧ ଜୁଲାଇ ୨୦୦୬ । ସେ ଦିନ ନ୍ୟାସ୍‌ଭିଲ୍ ହିନ୍ଦୁମନ୍ଦିରରେ ଶ୍ରୀ ଜଗନ୍ନାଥ ଜୀଉମାନଙ୍କ ବାର୍ଷିକ ରଥଯାତ୍ରା ଉତ୍ସବ ଯଥାବିଧି ପାଳିତ ହେଲା । ଆମେରିକାରେ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ୧୯୯୩ରୁ ଆରମ୍ଭ ହୋଇଥିଲା ଏଇ ନ୍ୟାସ୍‌ଭିଲ୍ ସହରରେ । ସ୍ଥାନୀୟ କେତେଜଣ ପ୍ରବାସୀ ଓଡିଆଙ୍କ ନିରବଧି ଉଦ୍ୟମ ଫଳରେ ଏ ଉତ୍ସବ ଆଜିକୁ ତେରବର୍ଷ ଧରି ଅତି ଯାକଜମକରେ ଏବଂ ଅତ୍ୟନ୍ତ ନିଷ୍ଠାପର ଭାବେ ପାଳିତ ହୋଇଆସୁଚି । ସଂପର୍କରେ ପୂର୍ବ କେତେକ ଅଧ୍ୟାୟରେ ବିଶେଷ ସୂଚନା ଦେଇସାରିଚି । ତେବେ ତେରବର୍ଷ ତଳେ ମୁଁ ଯେଉଁମାନଙ୍କୁ ଏଠାର ରଥଯାତ୍ରାରେ ନିବିଡ ଭାବେ ଜଡିତ ହେବାର ଲକ୍ଷ୍ୟକରିଥିଲି ସେମାନଙ୍କ ବ୍ୟତୀତ ଆହୁରି ଅନେକ ନୂଆ ପ୍ରବାସୀ-ଓଡିଆଙ୍କ ମୁହଁ ଦେଖିବାକୁ ମିଳିଲା । ସେମାନଙ୍କ ବ୍ୟତୀତ ଆଜିର ରଥଯାତ୍ରାରେ ଲୋକ ଗହଳି ମଧ୍ୟ ପୂର୍ବବର୍ଷ ତୁଳନାରେ ଢେର୍ ବେଶୀ ହୋଇଥିବା ଲକ୍ଷ୍ୟକଲି । ବିଶେଷ ଖୁସିର ଖବର ଶ୍ରୀଜୀଉମାନଙ୍କ ରଥ ଟାଣିବା ପାଇଁ ସମବେତ ଭକ୍ତମାନଙ୍କ ଭିତରେ ବହୁସଂଖ୍ୟକ ଗୋରା ଆମେରିକାନ୍ ବୁଢା ବୁଢୀ ଯୁବକ ଯୁବତୀ ଏବଂ କିଶୋର କିଶୋରୀଙ୍କ ଉପସ୍ଥିତି ଯୋଗୁ ଉତ୍ସବଟିର ଆନ୍ତର୍ଜାତିକ ମହତ୍ୱ ବେଶ୍ ମାତ୍ରାରେ ପ୍ରସ୍ଫୁଟିତ ହେବା ଯୋଗୁ ବିଦେଶରେ ଜଗନ୍ନାଥ ସଂସ୍କୃତିର ବିସ୍ତାରର ଏକ ଚାକ୍ଷୁସ ପ୍ରମାଣ ଦେଖିବାକୁ ମିଳିଲା ।

ଏ ବର୍ଷ ନ୍ୟାସ୍‌ଭିଲ୍‌ର ଏଇ ରଥଯାତ୍ରାକୁ ନେଇ ମୋ ପାଇଁ କେତେକ ବିଶେଷ ସ୍ମରଣୀୟ ପ୍ରସଙ୍ଗ ଥିଲା । ତାହା ହେଲା– ଏଠାର ରଥଯାତ୍ରାର ସମସ୍ତ କାର୍ଯ୍ୟକ୍ରମର ପ୍ରଥମବାର ଟେଲିଭିଜନ୍ ପ୍ରସାରଣ । ଏଥିପାଇଁ ଉପଯୁକ୍ତ ଭିଡିଓ କ୍ୟାସେଟ୍ ପ୍ରସ୍ତୁତ କରାଯାଇଥିଲା । ସଂପୃକ୍ତ କାର୍ଯ୍ୟକ୍ରମଗୁଡିକର ନିର୍ଦ୍ଦେଶନା, ପରିଚାଳନା ଏବଂ ଧାରାବିବରଣୀ ପ୍ରଦାନର ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା ମୋ ଉପରେ । ପରେ ଏଇ ଭିଡିଓ କ୍ୟାସେଟ୍ ଗୁଡିକୁ ଭାରତକୁ ପଠାଯାଇଥିଲା ସ୍ୱତନ୍ତ୍ର ବାର୍ତ୍ତାବହଙ୍କ ମାଧ୍ୟମରେ ଓଡିଶାକୁ । ଓଡିଶାର ଇ-ଟି.ଭି. କର୍ତ୍ତୃପକ୍ଷ ସେସବୁକୁ ଯଥାସମୟରେ ସେମାନଙ୍କର ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଜରିଆରେ ଦେଶ ବିଦେଶରେ ସଂପ୍ରସାରିତ କରିଥିଲେ । ଏ ଦିଗରେ ଇ-ଟି.ଭିର ହାଇଦ୍ରାବାଦ୍ ଅଫିସ୍‌ରେ ଅବସ୍ଥାପିତ ତତ୍କାଳୀନ ଓଡିଆ ଅଫିସର୍ ଶ୍ରୀ ନୀଳାମ୍ବର ରଥଙ୍କ ଉଦ୍ୟମ ଯଥାର୍ଥରେ ପ୍ରଶଂସନୀୟ ।

ଅନ୍ୟତମ ସ୍ମରଣୀୟ ପ୍ରସଙ୍ଗ ହେଲା– ଏବର୍ଷ ଏଠାର ହିନ୍ଦୁମନ୍ଦିରରେ ସାନ୍ଧ୍ୟ ଅଧିବେଶନରେ ସାଂସ୍କୃତିକ ଅନୁଷ୍ଠାନ କାର୍ଯ୍ୟକ୍ରମ ଉପଲକ୍ଷେ କାଲଫର୍ଣ୍ଣିଆରୁ ଆଗତ ଜନୈକା ବିଚକ୍ଷଣ ନୃତ୍ୟାଙ୍ଗନା ଶ୍ରୀମତୀ ଶରଣ୍ୟା ମୁଖୋପାଧ୍ୟାୟଙ୍କ ଓଡିଶୀ ନୃତ୍ୟ ପରିବେଷଣର ଚମତ୍କାରିତା । ଏକ ଘଣ୍ଟା ବ୍ୟାପୀ ନୃତ୍ୟ[illegible] ଏହି କିଶୋରୀ ନର୍ତ୍ତକୀ [illegible] ମଞ୍ଚ ଉପରେ

ଯେଉଁ ବିଚକ୍ଷଣ କଳାତ୍ମକତା ପ୍ରଦର୍ଶନ କରିଥିଲେ ତାହା ମୋ ପାଇଁ ଥିଲା ଯଥାର୍ଥରେ ନାନ୍ଦନିକତାର ଚରମ ଉପଲବ୍ଧି ।

ଶରଣ୍ୟା ମୁଖୋପାଧ୍ୟାୟ ଜଣେ ଉଚ୍ଚଶିକ୍ଷିତା ବଙ୍ଗଭାଷାଭାଷୀ ପ୍ରବାସୀ ଭାରତୀୟ । ଓଡିଶୀ ନୃତ୍ୟକୁ ନିଜର ସୃଜନଶୀଳତାର ଚରମ କଳାତ୍ମକ ପରିପ୍ରକାଶ ପନ୍ଥା ଭାବେ ସେ ବରଣ କରିନେଇଥିଲେ ଏବଂ ସିଦ୍ଧି ପ୍ରାପ୍ତ ହୋଇଥିଲେ । ନ୍ୟାସ୍‌ଭିଲ୍ ରଥଯାତ୍ରା ଉତ୍ସବର ସାନ୍ଧ୍ୟ ଅଧିବେଶନରେ ସେ ତାଙ୍କର ସେଇ ଚିତ୍ତାକର୍ଷକ ସିଦ୍ଧିକୁ ମଞ୍ଚରେ ପ୍ରଦର୍ଶନ କରିଥିଲେ ଏକ ବିଶାଳ ଜନସଭା ସମ୍ମୁଖରେ । ଜଣେ ବିମୁଗ୍ଧଦର୍ଶକ ଭାବେ ସେଦିନ ମୁଁ ଶରଣ୍ୟାଙ୍କ ବିଚକ୍ଷଣ ନୃତ୍ୟଶୈଳୀ ଦେଖି ଅବାକ୍ ହୋଇଥିଲି । ମଞ୍ଚ ଉପରେ ତାଙ୍କର ନର୍ତ୍ତନଶୀଳ ପ୍ରତିଟି ପଦପାତ ଏବଂ ବିଦ୍ୟୁତ୍‌ବେଗରେ ପରିବର୍ତ୍ତନଶୀଳ ଅଭିନୟରତ ଅଙ୍ଗ ଭଙ୍ଗୀ ଓ ମୁଦ୍ରା ସମୂହ ଦେଖୁ ଦେଖୁ ମତେ ଲାଗିଲା ଯେପରି ସେଦିନ ମଞ୍ଚ ଉପରେ ମୁଁ ଯାହାଙ୍କ ନୃତ୍ୟ ଦେଖୁଥିଲି ସେ ଶରଣ୍ୟା ନୁହନ୍ତି, କିଛି ବର୍ଷ ଆଗରୁ ସ୍ୱର୍ଗବାସୀ ହୋଇଥି. । ପ୍ରସିଦ୍ଧ ଓଡିଶୀ ନୃତ୍ୟାଙ୍ଗନା ସଂଯୁକ୍ତା ପାଣିଗ୍ରାହୀ ସ୍ୱୟଂ ସଶରୀରେ ମଞ୍ଚରେ ଉଭାହୋଇଛନ୍ତି ।

ନୃତ୍ୟାଭିନୟ କାର୍ଯ୍ୟକ୍ରମ ପରେ ମୁଁ ଶରଣ୍ୟାଙ୍କୁ ମୋର ହାର୍ଦ୍ଦିକ ଆଶୀର୍ବାଦ ଓ ଶୁଭକାମନା ଜଣାଇଲି । ସଭାସ୍ଥଳରେ ଉପସ୍ଥିତ ତାଙ୍କ ମା' ଶ୍ରୀମନ୍ତୀଙ୍କୁ ମଧ୍ୟ ଭେଟିଲି । ସେମାନେ ଆମର ଅତିଥି ହେଲେ ସେଦିନ ମୋ ଝିଅ ଜୋଇଁଙ୍କ ଘରେ, ଫ୍ରାଙ୍କ୍‌ଲିନ୍ ସହରରେ । ସେଇ ଅବସରରେ ଶରଣ୍ୟାଙ୍କ ମା' ଶ୍ରୀମନ୍ତୀଙ୍କ ସହିତ ଆହୁରି ଅଧିକ ପରିଚୟ ଘଟିଲା । ଜାଣିବାକୁ ପାଇଲି– ମୁଖୋପାଧ୍ୟାୟ ପରିବାର ଥିଲେ ମୂଳତଃ ପୂର୍ବବଙ୍ଗର ଅଧିବାସୀ । ସେମାନେ ଆମେରିକା ଚାଲିଆସିଥିଲେ କେତେବର୍ଷ ପୂର୍ବରୁ । ବର୍ତ୍ତମାନ ଶ୍ରୀ ମୁଖୋପାଧ୍ୟାୟ କାଲିଫର୍ଣ୍ଣିଆରେ ଜଣେ ବିଶିଷ୍ଟ କମ୍ପ୍ୟୁଟର ଇଂଜିନିୟର୍ । ତେବେ ଜାଣିଲି ଶ୍ରୀ ମୁଖୋପାଧ୍ୟାୟ ଦୀର୍ଘବର୍ଷ ଧରି ଆମେରିକାରେ ବସବାସ କରିବା ସତ୍ତ୍ୱେ ନିଜ ଜନ୍ମଭୂମି ଭାରତକୁ ଭୁଲିନାହାନ୍ତି । ଭାରତକୁ ଭୁଲିନଯିବାପାଇଁ ସେ ତାଙ୍କର ଏକମାତ୍ର କନ୍ୟା ଶରଣ୍ୟାକୁ ଭାରତର ଧର୍ମ ଦର୍ଶନ ଏବଂ ସାହିତ୍ୟ ସଂସ୍କୃତି ସହିତ ଓତଃପ୍ରୋତଭାବେ ପରିଚିତ କରାଇବା ଉଦ୍ଦେଶ୍ୟରେ ତାକୁ ପିଲାଟି ଦିନୁ ଭାରତୀୟ ଶାସ୍ତ୍ରୀୟ ସଂଗୀତ, ନୃତ୍ୟ ଏବଂ ସାହିତ୍ୟ ସହିତ ପରିଚିତ କରାଇବାର ସମସ୍ତ ଉଦ୍ୟମ କରିଆସିଚନ୍ତି । ସେଇ ପରିପ୍ରେକ୍ଷୀରେ ଶରଣ୍ୟା ପ୍ରଥମେ ଭାରତ ନାଟ୍ୟମ୍ କଳାରେ ପାରଦର୍ଶିତା ଲାଭକଲେ । ପରେପରେ ଆକୃଷ୍ଟ ହେଲେ ଓଡିଶୀନୃତ୍ୟ ପ୍ରତି । ଗୁରୁ କେଳୁଚରଣଙ୍କ ପରମ୍ପରାର ଜଣେ ପ୍ରଗାଢ ଅନୁରକ୍ତ କଳାକାରଭାବେ ସେ ଗତ କେତେବର୍ଷ ଧରି ତାଲିମ ନେଉଛନ୍ତି । ତାଙ୍କ ମତରେ ମାନବିକ ଭାବାବେଗର ଅଭିବ୍ୟକ୍ତି ପାଇଁ ଓଡିଶୀ ନୃତ୍ୟହିଁ ଶ୍ରେଷ୍ଠ ମାଧ୍ୟମ ।

**ବାହୁଡା ରଥଯାତ୍ରା** (ତା. ୯, ଜୁଲାଇ, ୨୦୦୬, ନ୍ୟାସ୍‌ଭିଲ ।)

ନ' ଦିନ ପୂର୍ବେ ତା ୧ ଜୁଲାଇରେ ଏଠାର ହିନ୍ଦୁ ମନ୍ଦିରରେ ଆରମ୍ଭ ହୋଇଥିବା ଶ୍ରୀ ଜଗନ୍ନାଥଙ୍କ ଘୋଷଯାତ୍ର ଉତ୍ସବର ଆଜି ସମାପନ ଉତ୍ସବ । ଶ୍ରୀ ଜୀଉମାନେ ମାଉସୀମା ଗୃହରେ ନ'ଦିନ ଅବସ୍ଥାନ ପରେ ପୁନର୍ବାର ମନ୍ଦିର ଭିତରେ ନିଜ ଆସ୍ଥାନକୁ ଫେରିଲେ । ଏ ଉତ୍ସବରେ ଯୋଗଦେବାକୁ ପୂର୍ବଥର ପରି ସ୍ଥାନୀୟ ହିନ୍ଦୁ ଭକ୍ତଙ୍କ ବ୍ୟତୀତ ବହୁ ଆମେରିକାନ୍ କଳା ଗୋରା ଲୋକଙ୍କ ମୁହଁ ଦେଖିପାରିଲି । ଏଠାର ହିନ୍ଦୁମନ୍ଦିରରେ ଜଗନ୍ନାଥ ଜଣେ ପାର୍ଶ୍ୱଦେବତା ଭଳି ସ୍ଥାନିତ ହୋଇଥିବା କାରଣରୁ ତାଙ୍କ ପାଇଁ ମାଉସୀମା ମନ୍ଦିର ଏ ପର୍ଯ୍ୟନ୍ତ ସ୍ୱତନ୍ତ୍ରଭାବେ ନିର୍ଦ୍ଦିଷ୍ଟ କରାଯାଇପାରିନାହିଁ । ତେଣୁ ରଥଯାତ୍ରା ସମୟରେ ରଥାରୂଢ଼ ବିଗ୍ରହମାନଙ୍କୁ ମନ୍ଦିର ସମ୍ମୁଖ ଏକ ଚକ୍ରାକାର ପଥରେ ଘୂରାଇ ଆଣି ସେମାନଙ୍କୁ ମନ୍ଦିରର ପ୍ରଥମ ମହଲାର ଏକ ବଡ ସଭାଗୃହ ମଞ୍ଚରେ ଅଧିଷ୍ଠିତ କରାଯାଇଥାଏ । ଏ ସହରରେ ଜଗନ୍ନାଥଙ୍କ ପାଇଁ ଏକ ସ୍ୱତନ୍ତ୍ର ମନ୍ଦିର ପ୍ରତିଷ୍ଠା ନହେବା ପର୍ଯ୍ୟନ୍ତ ଏଇ ପ୍ରକାର ପ୍ରତୀକାତ୍ମକ ବ୍ୟବସ୍ଥା ଏହିପରି ଚଳିବ ହୁଏତ । ସେ ଯାହାହେଉ ବାହୁଡା ରଥଯାତ୍ରା ଦିନ ବିଗ୍ରହମାନଙ୍କୁ ପୁରୀ ଶ୍ରୀମନ୍ଦିରରେ ପାଳିତ ନୀତି ନିୟମ ଅନୁସରଣକରି ପୁନର୍ବାର ମନ୍ଦିରର ଉପର ମହଲାରେ ଚିହ୍ନିତ ଗର୍ଭଗୃହକୁ ଫେରେଇ ଅଣାଯାଏ । ଏହା ହେଲା ଏଠାର ବାହୁଡା ଯାତ୍ରା ।

ଏ ଯାତ୍ରାରେ ଯୋଗଦେବାକୁ ସ୍ଥାନୀୟ ଓଡିଆ ଏନ୍.ଆର୍.ଆଇ ଅଧିବାସୀମାନଙ୍କ ଭିତରେ ପୂର୍ବ ପରିଚିତ ଏବଂ ଅପରିଚିତ ବହୁ ପୁରୁଣା ଓ ନୂଆ ମୁହଁ ଦେଖିବାକୁ ପାଇଲି । ସେମାନଙ୍କ ଭିତରେ ଥିଲେ 'ଜଗନ୍ନାଥ ସୋସାଇଟି ଅଫ୍ ଆମେରିକାଜ୍' (ଜେ.ଏସ୍.ଏ)ର ପ୍ରମୁଖ ସଂଗଠକ ଏବଂ ପୃଷ୍ଟ-ପୋଷକଗଣ– ଡକ୍ଟର ପଞ୍ଚାନନ ଶତପଥୀ, ଶ୍ରୀମତୀ ଶଶୀ ଶତପଥୀ, ଡକ୍ଟର ଦେବୀ ମିଶ୍ର ଓ ପତ୍ନୀ ଶ୍ରୀମତୀ ସରୋଜିନୀ ମିଶ୍ର, ଡକ୍ଟର ଗୋପାଳ ପରିଚ୍ଛା ଏବଂ ତାଙ୍କର ପତ୍ନୀ ସଖିନା, ଡକ୍ଟର ଭାଗବତ ସାହୁ ଓ ପତ୍ନୀ ଶ୍ରୀମତୀ ପୁଷ୍ପା ସାହୁ, ଡକ୍ଟର ବିଷ୍ଣୁ ଯୋଶୀ, ପତ୍ନୀ ଶ୍ରୀମତୀ ପ୍ରଭା ଯୋଶୀ, ଶ୍ରୀ ଅଜୟ ଯୋଶୀ (ସସ୍ତ୍ରୀକ), ଡକ୍ଟର ରାଧାକାନ୍ତ ମିଶ୍ର ଓ ତାଙ୍କ ପତ୍ନୀ ଡାକ୍ତର ଗୀତା ମିଶ୍ର, ମୋ ବଡଝିଅ ବଡଜୋଇଁ ବୁଲବୁଲ (ପ୍ରଜେଶ ନନ୍ଦିନୀ) ଓ ଶ୍ରୀ ପ୍ରବୀର କୁମାର ଦାଶ ପ୍ରଭୃତି । ଏମାନେ ସମସ୍ତେ ଏଠାର ପୁରୁଣା ଅଧିବାସୀ ପାଲଟି ସାରିଥାନ୍ତି ଏଇ କେତେବର୍ଷ ଭିତରେ । ତେବେ ଏଇ ବର୍ଷ କେତେଟା ଭିତରେ ଓଡିଶାର ବିଭିନ୍ନ ଅଂଚଳରୁ ଅନେକ ଯୁବ ଇଂଜିନିୟର୍, ଡାକ୍ତର ଏବଂ ବିଶେଷଜ୍ଞ ମଧ୍ୟ ଏଠାରେ କଂପାନୀ ଚାକିରି ପାଇ ଚାଲିଆସିଥିଲେ ଏବଂ ନ୍ୟାସ୍‌ଭିଲ ଓ ଆଖପାଖ ସହରରେ ବସବାସ କରୁଥିଲେ । ସେମାନେ ମଧ୍ୟ ବହୁସଂଖ୍ୟାରେ ଏବର୍ଷର ରଥଯାତ୍ରା ଓ ବାହୁଡା ଉତ୍ସବର ସାଂଗଠନିକ କାମଗୁଡିକରେ ପୂର୍ଣ୍ଣପ୍ରାଣରେ ସହଯୋଗ କରୁଥିବା ଲକ୍ଷ୍ୟ କଲି । ସେମାନଙ୍କ ଭିତରୁ ଖୁବ୍ କମ୍ ବ୍ୟକ୍ତିଙ୍କୁ ମୁଁ ବ୍ୟକ୍ତିଗତ ସ୍ତରରେ ଜାଣିଥିଲି । ତେଣୁ ଏଠାରେ ସମସ୍ତଙ୍କ ନାମୋଲ୍ଲେଖ ସମ୍ଭବ ନୁହେଁ ।

**ଜଗନ୍ନାଥଙ୍କ ମହିମା ଉପଲବ୍ଧି--**

ନ୍ୟାସ୍‌ଭିଲ୍‌ରେ ଏ ବର୍ଷ ବହୁ ବିଦେଶୀ ଲୋକ ରଥଯାତ୍ରାରେ ଅଂଶଗ୍ରହଣ କରିଥିବା ବିଷୟ ପୂର୍ବରୁ କହିଚି । ଏଇ ସଂପର୍କରେ ଗୋଟିଏ ଉଲ୍ଲେଖନୀୟ ଘଟଣା ଏଠାରେ ସୂଚେଇଦେବା ଉଚିତ୍ ମନେହେଉଚି । ଏ ବର୍ଷ ଯେଉଁ ବିଦେଶୀମାନେ ଜଗନ୍ନାଥଙ୍କ ରଥ ଦଉଡିଧରି ବହୁ ଉଲ୍ଲାସ ଉଦ୍ଦୀପନା ଭିତରେ ଉବୁଟୁବୁ ହେଇ ରଥ ଟାଣୁଥିଲେ ସେମାନଙ୍କ ସହିତ ସାମିଲ ହୋଇଥିଲେ ମୋର ମଧ୍ୟମ ଶାଳକ ଡକ୍ଟର ରଣଜିତ୍ ଓ ତାଙ୍କର ପତ୍ନୀ ମେରୀ ସମେତ ତାଙ୍କର ସମସ୍ତ ପରିବାର । ପୂର୍ବରୁ କହିଚି-- ରଣଜିତ୍‌ଙ୍କ ପତ୍ନୀ ଶ୍ରୀମତୀ ମେରୀ (ମିଡେନ୍‌ଡ୍ରଫ୍) ଗଥ ଏକ ଜର୍ମାନୀ ବଂଶଜ ରକ୍ଷଣଶୀଳ ରୋମାନ୍‌କାଥଲିକ୍ ଧର୍ମାବଲମ୍ବୀ ପରିବାରର କନ୍ୟା । ରଣଜିତ୍‌ଙ୍କୁ ବିବାହ ପରେ ମଧ୍ୟ ସେ ସ୍ୱଧର୍ମ ପରିବର୍ତ୍ତନ କରିନଥିଲେ । କିନ୍ତୁ ହିନ୍ଦୁ ଧର୍ମ ପ୍ରତି ତାଙ୍କର ସମ୍ମାନବୋଧ ରହିଥିବା ମୁଁ ଲକ୍ଷ୍ୟ କରିଆସିଥିଲି ତାଙ୍କ ସହିତ ପରିଚିତ ହେବାପରେ-- ପ୍ରାୟ ଚାରିଦଶନ୍ଧି ଧରି ।

୧୯୯୩ରେ ନ୍ୟାସ୍‌ଭିଲ୍ ହିନ୍ଦୁମନ୍ଦିରରେ ସର୍ବ ପ୍ରଥମେ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ଆରମ୍ଭ କରାଯିବା ସମୟରେ ମୁଁ ଲକ୍ଷ୍ୟ କରିଥିଲି ରଣଜିତ୍ ଓ ମେରୀ ସୁଦୂର ସିନ୍‌ସିନାଟି, ଓହାଇଓ ସହରରୁ ଆସିଥିଲେ କେବଳ ଆମକୁ ଭେଟିବାକୁ-- କିନ୍ତୁ ରଣଜିତ ଓ ମେରୀ ରଥ ଟାଣିବା ମୁଁ କେବେ ଦେଖିନଥିଲି । ଏହାପରେ ମୁଁ କେତେବାର ନ୍ୟାସ୍‌ଭିଲ୍‌ରେ ମୋ ଝିଅ ଜୋଇଁଙ୍କ ଘରକୁ ଆସିଚି ରଥଯାତ୍ରା ସମୟରେ-- କିନ୍ତୁ କୌଣସିଥର ସେମାନେ ଠାକୁରଙ୍କ ରଥ ଟାଣିବା ଦେଖିନଥିଲି । ଆଜି ୨୦୦୬ ବାହୁଡ଼ା ଉତ୍ସବରେ ଜଗନ୍ନାଥଙ୍କ ରଥ ଟଣାବେଳେ ଦେଖିଲି ଶହ ଶହ ଭାରତୀୟ ଅଣଭାରତୀୟ କଳାଗୋରା ଲୋକଙ୍କ ମେଳରେ ମେରୀ ରଣଜିତ୍ ଓ ତାଙ୍କ ପିଲାମାନେ ସମସ୍ତଙ୍କ ସାଥିରେ ମିଶି ରଥ ଟାଣୁଚନ୍ତି । ଘଣ୍ଟ ଘଣ୍ଟା ମୃଦଙ୍ଗର ତାଳ ସହିତ ହରିବୋଲ ହୁଳହୁଳି ଧ୍ୱନି ଆଉ ଆନନ୍ଦ-ମୁଖର କୋଳାହଳ ଭିତରେ ଜଗନ୍ନାଥଙ୍କ ରଥ ଦଉଡିକୁ ଟାଣିବାରେ ପ୍ରାଣଭରି ଉତ୍ସାହ ଓ ଉଲ୍ଲାସ ପ୍ରକାଶକରୁଥିବା ମେରୀ ଓ ରଣଜିତ୍‌ଙ୍କ ଉପସ୍ଥିତି ମତେ ବିସ୍ମିତ କରିଥିଲା ନିଶ୍ଚୟ ।

ରଥଟଣା ସରିଲାପରେ ମେରୀ ମୋ' ପାଖକୁ ଆସି କହିଲେ, "Bhaina, you must be wondering to find me pulling the chariot today. But there is a reason for this. Ask Ranjit about it. He will say as to what had happened to him in that dangerous Bombay slum area five days back."

ଘଟଣାଟା ଥିଲା ଏହିପରି : ମୋର ବଡଶଳା ପ୍ରଶାନ୍ତ କୁମାର ରଥଙ୍କର ଅକାଳ ବିୟୋଗ ଘଟିଥିଲା ଗଲା ମାସ, ଜୁନ୍ ୨୦ରେ । ତାଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେବାକୁ

ମୁଁ ଓ ନିରୁପମା ଭାରତ ଫେରିବାକୁ ସମର୍ଥ ହେଲୁନାହିଁ । ବର୍ତ୍ତମାନ ଆମେରିକାରେ ରହୁଥିବା ଆମ ପରିବାରର ସମସ୍ତଙ୍କ ପ୍ରତିନିଧିତ୍ୱ କରି ମୋର ମଝିଆ ଶାଳକ ଡଃ ରଣଜିତ ରଥ ଏକାକୀ ଭୁବନେଶ୍ୱର ଯାଇଥଲେ ଓ ସେଠାରେ ତାଙ୍କ କର୍ତ୍ତବ୍ୟ ସମ୍ପନ୍ନ କରିସାରି ଜୁଲାଇ ୫ରେ ଭୁବନେଶ୍ୱରରୁ ପ୍ଲେନ୍‌ରେ ବମ୍ବେ ବାଟେ ଆମେରିକା ଫେରୁଥିଲେ । ଗତ କେତେଦିନ ଧରି ଓଡିଶା ଓ ବମ୍ବେରେ ପ୍ରବଳ ବର୍ଷା ଲାଗି ରହିଥାଏ । ବମ୍ବେର ରାସ୍ତାଘାଟ ବର୍ଷାପାଣିରେ ଉବୁଟୁବୁ ହଉଥାଏ । ପ୍ଲେନ୍‌ରୁ ଓହ୍ଲାଇ ରଣଜିତ ବିମାନବନ୍ଦରରୁ ଗୋଟିଏ ଟ୍ୟାକ୍ସି ନେଇ ପୂର୍ବରୁ ରିଜର୍ଭ କରାଯାଇଥିବା ତାଙ୍କ ହୋଟେଲ୍‌କୁ ଯାଉଥିଲେ । ବାଟରେ ଟ୍ୟାକ୍ସି ଅଟକିଗଲା । ରାସ୍ତା ଉପରେ ଚାଲିଥିବା ପାଣି ସୁଅ କାଟି ଆଉ ଆଗେଇ ପାରିଲା ନାହିଁ । ଟ୍ୟାକ୍ସି ଡ୍ରାଇଭର୍ ରଣଜିତଙ୍କୁ ପରାମର୍ଶ ଦେଲା ଗୋଟିଏ ଅଟୋରିକ୍ସା ନେଇ ହୋଟେଲକୁ ଯିବାକୁ । ରଣଜିତଙ୍କୁ ନେଇ ଯାଉଥିବା ଅଟୋରିକ୍ସା ମଧ୍ୟ କିଛି ବାଟ ପାଣି କାଦୁଅ ଭିତରେ ଚାଲିବା ପରେ ଆଉ ଆଗେଇ ପାରିଲା ନାହିଁ । ଏହାପରେ ପାଦରେ ଚାଲିବା ଛଡା ଅନ୍ୟ ଗତି ନଥିଲା ତାଙ୍କର । ସୁଟ୍‌କେଶ୍‌ଟାକୁ ବୋହିବୋହି ଅଗତ୍ୟା ରଣଜିତ୍‌ଙ୍କୁ ଖୋଜିବାକୁ ହେଲା ହୋଟେଲ୍‌କୁ ରାସ୍ତା । ତାଙ୍କ ପାଖରେ ବେଶ୍ କିଛି ପରିମାଣ ନଗଦ ଟଙ୍କା ଓ ଡଲାର ଥାଏ । ବହୁ ସମୟଧରି ଯାକୁତାକୁ ପଚାରି ବାଟଚାଲିବା ଭିତରେ ସନ୍ଧ୍ୟାହୋଇଗଲା । ଝଡବର୍ଷା ଯୋଗୁ ବମ୍ବେର ରାସ୍ତା ବତୀଖୁଣ୍ଟରେ ଆଲୁଅ ଜଳୁନଥାଏ । ଚାରିଆଡ ଅନ୍ଧାର । ଅନ୍ଧାରରେ ବାଟ ହୁଡି ସେ କେତେବେଳେ ଯାଇ ପଶିଲେ ଏକ ସ୍ଲମ୍ ଅଂଚଳରେ । ପରିସ୍ଥିତି ସଂପର୍କରେ ଜାଣିଲା ପରେ ରଣଜିତଙ୍କ ମନରେ ଆତଙ୍କ ଖେଳିଲା ।

ବହୁ ବର୍ଷ ଆମେରିକାରେ ରହୁଥିବା ହେତୁ ରଣଜିତ୍ ପିଲାଦିନର କଟକୀ ହିନ୍ଦି କଥାବର୍ତ୍ତା କରିବା ଅଭ୍ୟାସ ଭୁଲିଯାଇଥିଲେ । ପୁଣି ତାଙ୍କର ଆମେରିକାନ୍ ଇଂରେଜୀ ଉଚ୍ଚାରଣ ଥିଲା ତାଙ୍କ ପାଇଁ ନିଶ୍ଚିତ ବିପଦର କାରଣ । ଦଳେ ବସ୍ତି ଟୋକା ତାଙ୍କର ଅସହାୟତା ଅନୁମାନ କରି ତାଙ୍କ ପିଛା କରିବା ଆରମ୍ଭ କରିଥାନ୍ତି । ରଣଜିତ ଆତଙ୍କିତହୋଇ ଉଠିଲେ ଓ ଏ ବିପଦଜନକ ପରିସ୍ଥିତିରେ କ'ଣ କରିବେ ଭାବି ପାରିଲେ ନାହିଁ ।

ସେତିକିବେଳେ ଦୁଇଜଣ ହାଫ୍‌ପ୍ୟାଣ୍ଟ ପିନ୍ଧା ଛୋଟପିଲା ଅନ୍ଧାର ଭିତରୁ କେଉଁଠୁ ବାହାରି ପଡିଲେ । ସେଦୁହେଁ ରଣଜିତଙ୍କୁ ପଚାରିଲେ "କିଧର୍ ଯାଏଁଗେ ସାହେବ ?"

ପିଲା ଦୁହିଁଙ୍କୁ ରଣଜିତ ତାଙ୍କ ହୋଟେଲ ନାଁ ବତେଇଲେ । ଏହାପରେ ସେମାନଙ୍କ ଭିତରୁ ଜଣେ ବଡପିଲା ରଣଜିତଙ୍କ ହାତରୁ ସୁଟକେଶ୍‌ଟା ନେଇଯାଇ କହିଲା, "ଚଲିୟେ. . ." ।

ରଣଜିତ ଭାବିଲେ– ଗଲା ! ସୁଟକେଶଟା ଚୋର ହାତରେ ପଡିଗଲା ପରେ ସେ ଆଉ କାହିଁକି ବାଟ ପଚାରିବ ? ବୋଧହୁଏ ସେ ତାଙ୍କୁ ଅବାଟରେ କୁଆଡେ ନାହିଁ କୁଆଡେ ନେଇଯାଇ ବାକି ଯାହା ଅଛି ପର୍ସରେ ସେତକ ବି ଆଦାୟ କରିନେବ ଠିକଣା ସମୟରେ ।

କିନ୍ତୁ ରଣଜିତଙ୍କ ଆଶଙ୍କା ଅମୂଳକ ପ୍ରମାଣିତ ହେଲା । ଅନେକ ସମୟ ପାଣି କାଦୁଅ ଭିତରେ ଲଟପଟ ହେଇ ଚାଲିବାପରେ ସେମାନେ ପହଞ୍ଚିଲେ ହୋଟେଲ ଗେଟ୍ ସାମ୍ନାରେ । ରଣଜିତ ଓ ତାଙ୍କ ସାଙ୍ଗେ ଆସିଥିବା ସ୍ଲମ୍ ପିଲା ଦୁଇଟାଙ୍କୁ ଦେଖି ଦରୱାନ୍ ସେମାନଙ୍କୁ ସନ୍ଦେହ କଲା । ପିଲା ଦୁଇଟାଙ୍କୁ ସ୍ଥାନୀୟ ଭାଷାରେ କ'ଣ ସବୁ ଜେରା କଲା । ହୋଟେଲ କର୍ତ୍ତୃପକ୍ଷ ଖବର ପାଇ ଆସିଲେ । ପାସ୍‌ପୋର୍ଟ ଇତ୍ୟାଦିରୁ ରଣଜିତଙ୍କ ପରିଚୟ ମିଳିଲା । କିନ୍ତୁ ସେମାନେ ତାଙ୍କ ସାଙ୍ଗେ ଆସିଥିବା ପିଲା ଯୋଡିଙ୍କୁ ନାନା ପ୍ରକାର ସନ୍ଦେହ କଲେ ଓ ଦୂରଦୂର ମାରମାର କଲେ ।

ରଣଜିତ ସେମାନଙ୍କୁ ବାରଣ କଲେ ପିଲାଯୋଡିଙ୍କୁ ବୃଥାରେ ହଇରାଣ ହରକତ ନକରିବାକୁ ଓ ପକେଟ୍‌ରୁ ପର୍ସକାଢି ସେମାନଙ୍କ ହାତକୁ ଗୋଟିଏ ପାଞ୍ଚଶହ ଟଙ୍କିଆ ନୋଟ୍ ବଢେଇଦେଲେ । ପିଲା ଦୁଇଟି ସେ ନୋଟଟିକୁ ଖୁସିରେ ନେଇଗଲେ । କିନ୍ତୁ ଯିବାପୂର୍ବରୁ ଜଣେ ରଣଜିତଙ୍କୁ ଆଖି ମାରିଲା ଭଳି ଅନେଇ କ'ଣ କିଛି ଇସାରା ଦେଲା ସତେକି । ପରେ ପରେ ସେ ଦୁହେଁ ଅନ୍ଧାରରେ ମିଶିଗଲେ ।

ଦରୱାନ୍ କହିଲା, ''ଆପ୍‌କା ତକ୍‌ଦୀର୍ ବହୁତ ଆଚ୍ଛା ହୈ ସାହେବ୍– ଜାନ୍ ବଚାକେ ନିକଲ୍ ଆୟେ ଆପ୍‌ଲୋଗ୍ ଏକ ବହୁତ ବଡା ଖତର୍‌ନାକ୍ ବସ୍ତି ଇଲାକେସେ । ଆପ କୋ ମାଲୁମ୍ ନେହିଁ ଆଜ୍ କ୍ୟା ହାଲତ୍ ହୋ ସକ୍ତା ଥା' ଆପ୍‌କା ୱହି ପ୍ଲେସ୍ ମେ ଯହିଁ ପର୍ ଆପ୍ ଫସ୍ ଗୟେ ଥେ ସାହାବ୍ ! ଭଗବାନ୍ ବଚାୟା ଆପକୋ ।''

ଆମେରିକାରେ ନିଜଘରେ ପହଞ୍ଚି ରଣଜିତ ମତେ ତାଙ୍କ ସିନ୍‌ସିନାଟି, ଓହାଇଓ ଘରୁ ଫୋନ୍‌କରି ସବୁକଥା କହିଲେ । ସବୁ ଶୁଣି ସାରି ମୁଁ ଓଲଟି ପଚାରିଲି, ''ସେ ପିଲା ଦୁଇଟାଙ୍କ ଚେହେରା ମନେଅଛି ତୋର ରଣଜିତ ? ଜଣେ ଗୋରା ଅନ୍ୟଟି କଳା ନିଶ୍ଚୟ !''

ହଠାତ୍ ରଣଜିତର ସ୍ୱର କାନ୍ଦ କାନ୍ଦ ଶୁଭିଲା । କହିଲା, ''ଭାଇନା ! ମୋ ରୁମ ଟାଙ୍କୁରି ଉଠୁଚି କହିଲାବେଳକୁ । ସତରେ ସେ ପିଲା ଦୁଇଟାରୁ–ଜଣେ ଗୋରା ଜଣେ କଳା ! ମୋର ଖିଆଲ ନଥିଲା । ଗୋରାଟି ବଡ ! କାଳିଆ ପିଲାଟି. . .'' ସ୍ୱର ଥର ଥର ଶୁଭିଲା ରଣଜିତର । ପରେ ପରେ ନିଜକୁ ସଂଭାଳିନେଇ ସେ କହିଲା, ''ଭାଇନା ! ଆମେ କାଲି ସକାଳେ ପହଞ୍ଚିବୁ ନ୍ୟାସ୍‌ଭିଲ୍‌ରେ ବୁଲବୁଲ ଘରେ । ସେଠି ଜଗନ୍ନାଥଙ୍କ ବାହୁଡାଯାତ୍ରା କାଲି ପରା ?''

ପରଦିନ ରଣଜିତ୍ ଓ ମେରି ଠିକ୍ ସମୟରେ ନ୍ୟାସ୍‌ଭିଲ୍ ହିନ୍ଦୁମନ୍ଦିରଠାରେ ପହଞ୍ଚି ଆମକୁ ଭେଟିଲେ । ସମସ୍ତେ ମିଶି ଠାକୁରଙ୍କ ରଥ ଟାଣିଲେ । ରଥ ପରିବାର ପକ୍ଷରୁ ଏକ ହଜାର ଡଲାର ଭେଟି ମଧ୍ୟ ପ୍ରାପ୍ତହେଲା ଆମେରିକାର ଜଗନ୍ନାଥ ସୋସାଇଟି ସେଦିନ ।

ଏଇ ଥିଲା ଆମ ସମସ୍ତଙ୍କ ପାଇଁ ଜଗନ୍ନାଥଙ୍କ ମହିମାର ପ୍ରତ୍ୟକ୍ଷ ଉପଲବ୍ଧି ସେଥର ୨୦୦୬, ନ୍ୟାସ୍‌ଭିଲ୍ ରଥଯାତ୍ରାରେ ।

## ଆମେରିକାର ଏକ ହାଇଓ୍ୱେର ନାଁ ବଡଦାଣ୍ଡ !

ତା ୨୩ ଜୁଲାଇ ୨୦୦୬, ରବିବାର । ସକାଳ ଆଠରେ ଫ୍ରାଙ୍କ୍‌ଲିନ୍‌ରୁ ବାହାରିଲୁ ହଣ୍ଟସ୍ ଭିଲ୍ ଅଭିମୁଖେ । ପ୍ରବୀର ଡ୍ରାଇଭ୍ କରୁଥାନ୍ତି ଓ ତାଙ୍କ କାର୍‌ରେ ସବାର ହୋଇଥାଉ ଆମେ ଚାରି– ବୁଲବୁଲ, ନିରୁପମା, ପ୍ରତୀକ ଓ ମୁଁ । ଗ୍ରୀଷ୍ମଋତୁ ଆମେରିକାରେ ଭ୍ରମଣପାଇଁ ଅତ୍ୟନ୍ତ ସୁଖକର– ପୁଣି ସକାଳ ସମୟ ସ୍ୱର୍ଗୀୟ । ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଟେନୀସୀ ରାଜ୍ୟକୁ କୁହାଯାଇପାରେ ଆମେରିକାର ନନ୍ଦନକାନନ । ବଣ ପାହାଡ ନଦୀ ନାଳ ହ୍ରଦମୟ ଏ ରାଜ୍ୟ ଅନେକଟା ଅମ ଓଡିଶାର ପୁରୁଣା କୋରାପୁଟ ପରି– ଗୋପୀନାଥ ମହାନ୍ତିଙ୍କ 'ପରଜା' ବା 'ଅମୃତର ସନ୍ତାନ' ଉପନ୍ୟାସରେ ବର୍ଣ୍ଣିତ କୋରାପୁଟ ପରି । ସେଇ ମାଧୁର୍ଯ୍ୟମଣ୍ଡିତ ପ୍ରାକୃତିକ ପରିବେଶ ଭିତରେ ପ୍ରାୟ ଦୁଇଘଣ୍ଟାର ଡ୍ରାଇଭ୍ ପରେ ଟେନିସୀ ରାଜ୍ୟ ସୀମା ପାରିହୋଇ ଆମେ ପଶିଲୁ ପଡୋଶୀ ରାଜ୍ୟ ଆଲାବାମାରେ । ସକାଳ ଦଶ ସୁଦ୍ଧା ଆମେ ପହଞ୍ଚିଲୁ ରାଜଧାନୀ ସହର ହଣ୍ଟସ୍‌ଭିଲ୍‌ରେ । ଏଠାରେ ପ୍ରବୀରଙ୍କ ଜଣେ ପୁରୁଣାବନ୍ଧୁ ଶ୍ରୀ ଦେବପ୍ରସାଦ ନନ୍ଦୀଙ୍କ ଘରେ ସେଦିନ ଆମର ବ୍ରେକ୍‌ଫାଷ୍ଟ୍ ଖାଇବା ସ୍ଥିର-ହୋଇଥାଏ । ଶ୍ରୀଯୁକ୍ତ ନନ୍ଦୀ ଓ ଶ୍ରୀମତୀ ଦୀପାଳୀ ନନ୍ଦୀ ପ୍ରବୀର ବୁଲୁବୁଲଙ୍କ ପୂର୍ବପରିଚିତ । ଉଭୟ ପରିବାର ଭିତରେ ଆତ୍ମୀୟତା ଗଢିଉଠିଥିଲା ବର୍ଷାଧିକ ଆଗରୁ । ସେମାନେ ଏକାଠି କାମକରୁଥିଲେ ଟେକ୍ସାସର କୌଣସି ଏକ ପରମାଣୁ ରିଆକ୍ଟର ନିର୍ମାଣ କଂପାନୀରେ ।

ବ୍ରେକ୍‌ଫାଷ୍ଟ୍ ଅନ୍ତେ ଆମେ ବାହାରିଲୁ ହଣ୍ଟସ୍‌ଭିଲ୍ ସହରରେ ଗତବର୍ଷ ପ୍ରତିଷ୍ଠା ପାଇଥିବା ଶ୍ରୀଜଗନ୍ନାଥଙ୍କ ମନ୍ଦିର ଦର୍ଶନରେ । ସହର ମଝିରେ ଲମ୍ବିଥିବା ଏକ ହାଇଓ୍ୱେରେ, ବେଶ୍ କିଛି ସମୟ ଡ୍ରାଇଭ୍ କଲା ପରେ, ରାସ୍ତାକଡରେ ନଜରକୁ ଆସିଲା ଗୋଟାଏ ସାଇନ୍‌ବୋର୍ଡ । ସେଥିରେ ଯାହା ଲେଖାଯାଇଥିଲା ତାହା ଦେଖିବା ଥିଲା ମୋ ପାଇଁ ସଂପୂର୍ଣ୍ଣ ଅପ୍ରତ୍ୟାଶିତ । "BADA DANDA" ସାଇନ୍‌ବୋର୍ଡଟା ଆମେରିକାର ହାଇଓ୍ୱେ କଡରେ ଦେଖି କୋଉ ଓଡିଆ ନଚମକନ୍ତା ? ଉଲ୍ଲସିତ ହୋଇଉଠିଲୁ ସମସ୍ତେ ।

ଝିଅ ବୁଲବୁଲ କହିଲା, "ଏ ସବୁ କାମ ଡାକ୍ତର ଭାଗବତ ସାହୁ ଓ ତାଙ୍କ ସ୍ତ୍ରୀ ପୁଷ୍ପାଲକ୍ଷ୍ମୀଙ୍କର । ଏ ପୁଷ୍ପା କିଏ ଜାଣିଚଟି ? ଓଡିଶାରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ ବିଜୟଲକ୍ଷ୍ମୀ ସାହୁ ଥିଲେ– ପୁଷ୍ପା ତାଙ୍କ ଭଉଣୀ । ତାଙ୍କ ଘର କଟକର ଚାଉଳିଆଗଞ୍ଜରେ । ଆଉ ଭାଗବତ ସାହୁ ହେଲେ କେନ୍ଦୁଝର ଅଂଚଳର । ବହୁବର୍ଷ ଧରି ଭାଗବତ ସାହୁ ଏଠି ହଣ୍ଟସ୍‌ଭିଲ୍‌ରେ ଅଛନ୍ତି– ଡାକ୍ତର । ଉଭୟ ସ୍ୱାମୀ ସ୍ତ୍ରୀ ଜଗନ୍ନାଥଙ୍କ ପରମ ଭକ୍ତ । ଏମାନେ ଆମ ଜଗନ୍ନାଥ ସୋସାଇଟି ଅଫ୍ ଆମେରିକାଜ୍ (JSA)ର ମୂଳ ସଭ୍ୟ । ହଣ୍ଟସ୍‌ଭିଲ୍‌ରେ ଜଗନ୍ନାଥ ମନ୍ଦିର ତିଆରି ହେବା ପୂର୍ବରୁ ସ୍ୱାମୀ ସ୍ତ୍ରୀ ଦୁହେଁ ନ୍ୟାସ୍‌ଭିଲ୍ ହିନ୍ଦୁମନ୍ଦିରରେ ଜଗନ୍ନାଥଙ୍କ ପ୍ରତିଷ୍ଠା ପାଇଁ ବହୁ ଉଦ୍ୟମ କରିଥିଲେ । ତେବେ ଜଗନ୍ନାଥଙ୍କ ପାଇଁ ଏକ ସ୍ୱତନ୍ତ୍ର ମନ୍ଦିର ତିଆରି କରିବାକୁ ସେମାନେ ମୂଳରୁ ବ୍ୟଗ୍ର

ଥିଲେ– ଏବେ ସେ ମନ୍ଦିର ଗଢାହେଲା ହଣ୍ଟସ୍‌ଭିଲ୍‌ରେ– ଦେଖିବ ଚାଲ । ଆଖି ଖୋସି-ହେଇପଡିବ ସେ ମନ୍ଦିର ଦେଖିଲେ ।''

ହାଇୱେରୁ ଗଡିଲା ଆମ କାର 'ବଡଦାଣ୍ଡ'ରେ । ବେଶ୍ କିଛ ବାଟ ଡ୍ରାଇଭ୍ କଲୁ । ଚାରିପାଖର ପାଇନ୍ ଜଙ୍ଗଲର ଗଭୀରତା ସହିତ ସ୍ଥାନଟିର ନିରବତା ଖୁବ୍ ଶାନ୍ତିପ୍ରଦ ମନେହେଉଥାଏ ।

ପଚାରିଲି, ''ଏ ସବୁ ଜମି କ'ଣ ଜଗନ୍ନାଥ ମନ୍ଦିରର ?''

ଶୁଣିବାକୁ ପାଇଲି, ''ହଁ– ମନ୍ଦିରକୁ ଦାନକରିଦେଇଚନ୍ତି ଡାକ୍ତର ସାହୁ...''

''ଏତେଗୁଡାଏ ଜମି ଦାନ କରିଦେଇଚନ୍ତି ସେ ଜଗନ୍ନାଥଙ୍କୁ !'' ମନରେ ସଂଭ୍ରମତା ଆସିଲା ଭଦ୍ରଲୋକଙ୍କ ପ୍ରତି ।

''ଖାଲି ଜମି ନୁହେଁ– ଚାଲ ଦେଖିବ'', ବୁଲବୁଲ କହିଲା, ''ତୁମର ମନେଅଛି– ୧୯୯୩ରେ ଆମ ନ୍ୟାସ୍‌ଭିଲ୍ ହିନ୍ଦୁ ମନ୍ଦିରରେ ଜଗନ୍ନାଥଙ୍କ ରଥଯାତ୍ରରେ ଗେଷ୍ଟ୍ ହେଇଥିଲ ? ମନ୍ଦିରକୁ ଦେଖି ଗୋଟାଏ ରିମାର୍କ କରିଥିଲ ତୁମେ– 'କାହିଁ' ଏ ମନ୍ଦିର ଉପରେ ତ ଦଧି-ନଉତି ନାହିଁ କି ନୀଳଚକ୍ର ନାହିଁ । ଏ ତ ଟିପିକାଲ୍ ଦକ୍ଷିଣ ଭାରତୀୟ ବୋଇତାଳ ମନ୍ଦିର । ଜଗନ୍ନାଥଙ୍କ ପାଇଁ ସିନା ଆମ ଓଡିଶାର ଟ୍ରାଡିସନାଲ୍ ରେଖଦେଉଳଟିଏ ଗଢାହେଇଥାନ୍ତା ! ତୁମ କଥାର ମର୍ମ ଆମେ ସେତେବେଳେ ବୁଝିପାରିନଥିଲୁ– କିନ୍ତୁ ଭାଗବତବାବୁ ବୁଝିଥିଲେ– ସେଇ ଅଭାବଟା ପୂରଣ କରିଦେଇଚନ୍ତି ସେ ତାଙ୍କ ହଣ୍ଟସ୍‌ଭିଲ୍‌ରେ ।''

ଆମେ ମନ୍ଦିର ଦିଗରେ ଆହୁରି କିଛି ଦୂର ଡ୍ରାଇଭ୍ କଲୁ । ଅଳ୍ପ ସମୟ ପରେ ଆଉ ଗୋଟିଏ ସାଇନ୍‌ବୋର୍ଡ ଦୃଷ୍ଟିକୁ ଆସିଲା । ସେଥିରେ ଲେଖାଥିଲା– ''ବିଷ୍ଣୁ ମାର୍ଗ ।''

''ଯା'ପରେ ନିଶ୍ଚୟ କୋଉଠି ଭେଟିବା ଆମେ ଗୋଟାଏ ରୋଡ୍ ସାଇନ : ଶଂଖତୀର୍ଥ !'' ଖୁସି ହେଇ କହିପକେଇଲି ।

''ଆଗରେ ଅଛି ସେ ସାଇନ୍‌ବୋର୍ଡ– ଚାଲନ୍ତୁ ଦେଖିବେ,''– ପ୍ରବୀର କହିଲେ ।

ଅଳ୍ପ ଦୂରରେ ଦୃଷ୍ଟିକୁ ଆସିଲା ସତକୁ ସତ ଗୋଟାଏ ସାଇନବୋର୍ଡ । ଇଂରେଜୀରେ ଲେଖାଯାଇଥିଲା ତା' ଉପରେ ''ଶ୍ରୀ-ପ୍ଲେସ୍'' । ବୁଲବୁଲ କୁରକୁର ହଉଥାଏ କ'ଣଟାଏ କହିବ କହିବ ବୋଲି । କହିଲା ସେ ''ଏ ହଣ୍ଟସ୍‌ଭିଲ୍ ଗୋଟାଏ ମହାଭୟଙ୍କର ଜାଗା ନନା ! ଏଇଟା ଆମେରିକାର ବ୍ୟାପ୍‌ଟିଷ୍ଟ୍ ଖ୍ରୀଷ୍ଟିୟାନ୍‌ମାନଙ୍କ ଗଡ, ମାନେ ହାର୍ଟଲାଣ୍ଡ ! ଏ ଯୋଉ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ହେଇଚି ଏ ଥିଲା ମୂଳରୁ ଗୋଟାଏ ବ୍ୟାପ୍‌ଟିଷ୍ଟ୍ ଚର୍ଚ୍ଚ ! ଭାଗବତବାବୁ ମହା ଆଡ୍‌ଭେଞ୍ଚରସ୍ ଲୋକ ! ସେଇ ପୁରୁଣା ବ୍ୟାପ୍‌ଟିଷ୍ଟ୍ ଚର୍ଚ୍ଚଟାକୁ କିଣିନେଇ ତା'ରି ଉପରେ ଏ ମନ୍ଦିରଟା ତିଆରିକରାଇଚନ୍ତି ।''

ବିସ୍ମିତ ହେଲି ଶୁଣି । ସେ ସଂପର୍କରେ ନିଜର ଏକ ଦୁଃଖଦ ଅଭିଜ୍ଞତା ମନେପକେଇଲା ବୁଲବୁଲ– ''ବ୍ୟାପ୍‌ଟିଷ୍ଟ୍‌ମାନେ କିଭଳି ଅର୍ଥୋଡକ୍ସ ଶୁଣିବ ? ସମସ୍ତେ ଜାଣନ୍ତି ସେମାନେ

ମୂର୍ତ୍ତିପୂଜା– Idolatryର ଘୋର ବିରୋଧୀ । ୧ ୯ ୯ ୭ରେ ଆମର ବର୍ତ୍ତମାନର ଘରଖଣ୍ଡକ ଫ୍ରାଙ୍କ୍‌ଲିନ୍‌ରେ ତିଆରିଚାଲିଥାଏ । ସେ ଘର ତିଆରିବେଳେ ପୂଜାଘରଟିଏ ତିଆରି କରିବାକୁ ମତେ ନାକେଦମ୍ କରିଦେଲେ ସେଠାକାର ବ୍ୟାପ୍‌ଟିଷ୍ଟ୍ ଧର୍ମର ୱର୍କର୍‌ମାନେ । ସେମାନେ କେମିତି ଖବରପାଇଗଲେ ଯେ ଘରଟା ହଉଚି ଜଣେ ପିତୁଳାପୂଜକ ହିନ୍ଦୁର– ସେ ଘରେ ହିନ୍ଦୁ ଠାକୁରମାନେ ପୂଜାପାଇବେ । ସାଙ୍ଗେସାଙ୍ଗେ ସେମାନେ କାମ ବନ୍ଦକରିଦେଲେ । ଯାଇ ପହଞ୍ଚିଗଲେ ସେମାନଙ୍କ ପାଦ୍ରୀଙ୍କ ପାଖେ । ପାଦ୍ରୀ ସବୁ ଶୁଣି ସେମାନଙ୍କୁ କହିଲେ– ଖବର୍‌ଦାର୍ ! ହିନ୍ଦୁ ଠାକୁରଙ୍କ ପାଇଁ ମନ୍ଦିର ତିଆରିକଲେ ସିଧାଯାଇ ପଡିବ ତମେମାନେ ନର୍କରେ ! ଏ କଥା ଶୁଣିଲାପରେ ୱର୍କର୍‌ମାନେ ଫିଟ୍‌କି ଗଲେ । ଆମ ଘର ତିଆରି କାମ ସେଇଠି ବନ୍ଦରହିଲା । ମାସମାସ ବିତିଲା । ମୁଁ କ'ଣ କରିବି ? ୱର୍କର୍‌ମାନଙ୍କୁ ବୁଝେଇବାକୁ ମୋ ଘରର ବିଲଡର୍‌କୁ କହିଲି । ସେ ନିଜେ ଜଣେ ଖ୍ରୀଷ୍ଟିୟାନ୍– ତେବେ ଲୋକଟା ଏଜୁକେଟେଡ୍ । ସେ ତା' ୱର୍କରମାନଙ୍କୁ ଡାକି ବହୁତ ବୁଝେଇଲା । କହିଲା, ''ଘର ପ୍ଲାନ୍‌ରେ ଅଛି ସେ ରୁମ୍‌ଟା ହବ ତାଙ୍କ ପିଲାଙ୍କ ପାଇଁ ନର୍ସରୀ ରୁମ୍ । ସେଠି ପିଲାଙ୍କ ଖେଳିବା ପାଇଁ ଖେଳନା କଣ୍ଢେଇ ରଖାଯିବ । ସେଥିପାଇଁ ଦରକାର କେତେଟା ଥାକ । ତମର ଡରିବାର ନାହିଁ କିଛି । ତମେ ପ୍ଲାନ୍ ଅନୁସାରେ ନର୍ସରୀ ରୁମ୍‌ଟିଏ ତିଆରିକରିଦିଅ !''

ଶେଷରେ ସେଇଆ ହେଲା । ଠାକୁରଘରକୁ ଏ ଦେଶରେ ନର୍ସରୀ କହିଲେ କ୍ଷତି ନାହିଁ, କିମ୍ବା ଠାକୁରଙ୍କ ମୂର୍ତ୍ତିକୁ ଖେଳନା କହିଲେ କ୍ଷତି ନାହିଁ । ଏଥର ଭାବିଦେଖ– ଏଠାକାର ଓଡିଆମାନେ ବ୍ୟାପ୍‌ଟିଷ୍ଟ୍‌ଙ୍କ ରାଜ୍ୟ ହଣ୍ଟସ୍‌ଭିଲ୍‌ରେ କେତେ କଷ୍ଟରେ ଏ ଜଗନ୍ନାଥ ମନ୍ଦିରଟିକୁ ଗଢାଇଥିବେ !'' ଝିଅର କଥା ଶେଷହେଲା ମନ୍ଦିରପାଖ କାର୍‌ପାର୍କିଂ ଜାଗାରେ ।

ପ୍ରବୀର କାର୍ ପାର୍କ କଲେ । ପୂର୍ବରୁ ଅନେକ ଗାଡି ସେଠି ରଖାଯାଇଥିବା ଲକ୍ଷ୍ୟ କଲି । ଗାଡିରୁ ଓହ୍ଲେଇ ବାହାରକୁ ଚାହିଁଦେବାକ୍ଷଣି ପ୍ରଥମେ ନଜରରେ ପଡିଲା ଗୋଟାଏ ମନ୍ଦିରର ଦଧିନଉତି– ତା'ଉପରେ ଏକ ଚକ୍ର– ଅବିକଳ ନୀଳଚକ୍ର । ପୁଣି ତା'ଉପରେ ଫର୍‌ଫର୍ ଉଡୁଥାଏ ଏକ ଲମ୍ବା ନାଲି ପତକା– ଜଗନ୍ନାଥଙ୍କ ବାନା । ସେଇ ବାନାକୁ ଅନାଇ ଅନେକ ସମୟ ଅଟକି ରହିଗଲି । ଆମେରିକା ମାଟିରେ ଗୋଟାଏ କଳିଙ୍ଗ ଶିଳ୍ପକଳା ଢାଞ୍ଚାର ମନ୍ଦିର ଦେଖିବି ବୋଲି ମୁଁ କଦାପି ଆଶାକରିନଥିଲି । କାରଣ– ଏ ଦେଶରେ ଅଦ୍ୟାବଧି ଯେତୋଟି ମନ୍ଦିର ଗଢିଛନ୍ତି ଏଠାକାର ଏନ୍.ଆର୍.ଆଇମାନେ ସେ ସବୁ ଥିଲା ଧନାଢ୍ୟ ଦକ୍ଷିଣଭାରତୀୟ ଲୋକଙ୍କ ଟଙ୍କାରେ ଗଢା ମନ୍ଦିର । ତେଣୁ ସେମାନେ ତାଙ୍କ ମନ ମୁତାବକ ନିଜର ଉପାସ୍ୟ ଦେବ ମୁଖ୍ୟତଃ ଗଣପତି ତିରୁପତି ଇତ୍ୟାଦିଙ୍କ ପାଇଁ ଗଢିଥିଲେ– ଦ୍ରାବିଡୀୟ ସ୍ଥାପତ୍ୟକଳାର ମନ୍ଦିର । କିନ୍ତୁ ଏ ମୁଁ ଏବେ ଦେଖୁଥିବା ମନ୍ଦିରଟି ଥିଲା ଓଡିଶୀ ଅର୍ଥାତ୍ କଳିଙ୍ଗ ସ୍କୁଲର ସ୍ଥାପତ୍ୟକଳାର ମନ୍ଦିର ।

ମନ୍ଦିରର ବେଢା ପରିକ୍ରମା ସାରି ଆମେ ଭିତରକୁ ପଶିଲୁ । ମନ୍ଦିରର ଅଭ୍ୟନ୍ତରକୁ

ଲକ୍ଷ୍ୟ କରି ଦେଖିଲି– ଆମେରିକାର ଅନ୍ୟ ସବୁ ହିନ୍ଦୁ ମନ୍ଦିର ପରି ଏହା ଦୁଇମହଲାବିଶିଷ୍ଟ । ଏହାର ତଳମହଲାରେ ସଭାସମିତି ପାଇଁ ସଭାଗୃହ, ଅଫିସ୍‌କୋଠରୀ, ରନ୍ଧନଶାଳା (କିଚନ୍), ଶୌଚାଳୟ (ଟୟଲେଟ୍) ଇତ୍ୟାଦି । ଉପର ମହଲାଟି ଯଥାର୍ଥରେ ମନ୍ଦିରର ଗର୍ଭଗୃହ । ଏ ଏକ ବିଶାଳ ହଲ୍ । ହଲ୍‌ର ଚାରିକାନ୍ଥକୁ ଲାଗି ଅନେକଗୁଡିଏ ସୁସଜ୍ଜିତ ମେଢ । ସେଇ ମେଢଗୁଡିକ ହିନ୍ଦୁଦେବଦେବୀଙ୍କ ପାଇଁ ଉଦ୍ଦିଷ୍ଟ ପୂଜା ମଣ୍ଡପ । ସେ ସବୁ ମେଢରେ ଜାଜ୍ୱଲ୍ୟମାନ ଭାବେ ବିରାଜମାନ ହୋଇଥାନ୍ତି ଗଣପତିଙ୍କ ସମେତ ହିନ୍ଦୁମାନଙ୍କ ପୂଜ୍ୟ ସମସ୍ତ ମୁଖ୍ୟ ଦେବଦେବୀଙ୍କ ବିଗ୍ରହ– ଶିବ, ପାର୍ବତୀ, ବିଷ୍ଣୁ, ଲକ୍ଷ୍ମୀ, ରାମ ଲକ୍ଷ୍ମଣ ସୀତା ହନୁମାନଙ୍କ ସମେତ ରାଧାକୃଷ୍ଣ ଏବଂ ବିଶେଷକରି ଦକ୍ଷିଣ ଭାରତରେ ଉପାସିତ ମୁଖ୍ୟ ଦେବତା ଶ୍ରୀ ତିରୁପତି, କାର୍ତ୍ତିକେୟ ଇତ୍ୟାଦି ପ୍ରାୟ ଚାଳିଶ ଠାକୁର ଠାକୁରାଣୀ ।

ତେବେ ଏ ମନ୍ଦିରର କେନ୍ଦ୍ରସ୍ଥଳରେ ବିରାଜମାନ କରୁଥାନ୍ତି ଶ୍ରୀଜଗନ୍ନାଥ– ଏହା ସ୍ପଷ୍ଟ ବୁଝାପଡିଯାଉଥାଏ ପ୍ରବେଶଦ୍ୱାର ନିକଟରୁ ସମ୍ମୁଖକୁ ଚାହିଁଦେବାମାତ୍ରେ । ସୁନ୍ଦର ଚିତ୍ରିତ ଗାଲିଚା ଆବୃତ ଗର୍ଭଗୃହର ଚଟାଣ ଉପରେ ପାଦ ଥାପିବାକ୍ଷଣି ଦୃଶ୍ୟମାନ ହେଲେ ସବା ପ୍ରଥମେ ସୁସଜ୍ଜିତ ରତ୍ନସିଂହାସନ ଉପରେ ଆସୀନ ଚତୁର୍ଦ୍ଧା ମୂର୍ତ୍ତି– ବଳଭଦ୍ର ସୁଭଦ୍ରା ଜଗନ୍ନାଥ ଏବଂ ସୁଦର୍ଶନ! ମୂର୍ତ୍ତିଗୁଡିକର ଆକାର ପ୍ରକାର ଦେଖି ଅବାକ୍ ହେଲି– ଠିକ୍ ପୁରୀ ମନ୍ଦିରର ଚାରିଠାକୁରମାନେ ସତେକି ମୋ ଆଖି ଆଗରେ ଉଭାହୋଇଛନ୍ତି ! ଏଭଳି ବୃହତାକାର ଓ ଜୀବନ୍ତ ବିଗ୍ରହ ମାନ ସାରା ଆମେରିକାରେ ଅନ୍ୟ କୌଣସି ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠା ପାଇଥିବା ମୋର ମନେହୁଏନା । ମୂର୍ତ୍ତିଗୁଡିକୁ ଦର୍ଶନ ଓ ପ୍ରଣିପାତ କଲାପରେ ଆଦୌ ଭାବିହେଲାନାହିଁ ଯେ ମୁଁ ଅଛି ଜଗନ୍ନାଥ ଧାମ ପୁରୀଠୁ ପନ୍ଦର ହଜାର ମାଇଲ୍ ଦୂର, ପୃଥିବୀ ଆରପାଖେ ଏ ଦେଶ ଆମେରିକାରେ !

ଏଇ ଭିତରେ ବହୁତ ଜନସମାଗମ ହୋଇସାରିଥାଏ ମନ୍ଦିର ଭିତରେ । ଆମକୁ ପାଛୋଟି ନେବାକୁ ଡାକ୍ତର ଭାଗବତ ସାହୁ ଆଗେଇଆସିଲେ, ତାଙ୍କର ସହଯୋଗୀ କେତେଜଣ ଏବଂ ମନ୍ଦିରର ଟ୍ରଷ୍ଟି ବୋର୍ଡର କେତେଜଣ ସଭ୍ୟଙ୍କ ସହିତ । ସେମାନଙ୍କ ସାଙ୍ଗେ ମତେ ପରିଚୟ କରାଇଦେଲେ ସେ । ଏହାପରେ ମନ୍ଦିରର ଇତିହାସ ସଂପର୍କରେ ଠିକେଠିକେ ସେ ଯାହା ସୂଚନାଦେଲେ ସେଥିରୁ ବୁଝିଲି ଏ ମନ୍ଦିରର ନାମ ହେଲା, ''ସର୍ବଜନ ମନ୍ଦିର''– (Sarvajan Mandir– HCNA) । ଏଠାରେ ହିନ୍ଦୁ ମାନଙ୍କ ପୂଜିତ ଗାଣପତ୍ୟ, ଶୈବ, ଶାକ୍ତ, ବୈଷ୍ଣବ, ସୌରମତର ମୁଖ୍ୟ କେତେକ ଦେବ-ଦେବୀ ଅଧିଷ୍ଠିତ ହୋଇ ପୂଜାପାଉଛନ୍ତି । ଆଲାବାମା ରାଜ୍ୟର ରାଜଧାନୀ ସହର ହଣ୍ଟସ୍‌ଭିଲ୍‌ର ଭାରତୀୟମାନଙ୍କର ଏଇ ଧାର୍ମିକ ଅନୁଷ୍ଠାନଟି ପ୍ରଥମେ ୧୯୯୫ରେ ରେଜିଷ୍ଟ୍ରିଭୁକ୍ତ ହୋଇଥିଲା । ପରେ ପରେ ଟ୍ରଷ୍ଟ ପକ୍ଷରୁ ଏ ସହରରେ ଏକ ଆଖିଦୃଷିଆ ହିନ୍ଦୁ ମନ୍ଦିର ନିର୍ମାଣ ପାଇଁ ସିଦ୍ଧାନ୍ତ ଗ୍ରହଣ କରାଗଲା ଏବଂ ସେଥିପାଇଁ ଆବଶ୍ୟକୀୟ ପାଣ୍ଠି ସୃଷ୍ଟି କରାଗଲା । ଏଯାବତ୍ ଏଇ ମନ୍ଦିର

ନିର୍ମାଣ ପାଇଁ ଅନ୍ୟୂନ ୫ (ପାଞ୍ଚ) ନିୟୁତ ଡଲାର ବ୍ୟୟ କରାଯାଇଛି ।

ସର୍ବସମ୍ମତ ସିଦ୍ଧାନ୍ତ ଅନୁସାରେ ଏ ମନ୍ଦିରଟି ଓଡିଶୀ ବା କଳିଙ୍ଗୀ ସ୍ଥାପତ୍ୟର ଅନୁସରଣରେ ନିର୍ମିତ ହୋଇଛି । ସେଥିପାଇଁ ଭାରତର ଚେନ୍ନାଇର ଜଣେ ଅଭିଜ୍ଞ ଆର୍କିଟେକ୍ଟଙ୍କୁ ଏ ମନ୍ଦିର ନିର୍ମାଣ ଦାୟିତ୍ୱ ଦିଆଯାଇଥିଲା । ତାଙ୍କ ନାମ ପଦ୍ମଶ୍ରୀ ମୁଥିଆ ସ୍ଥପତି । ଏ ମହାଶୟ ଅଦ୍ୟାବଧି ଅନ୍ୟୂନ ଅଶୀ ସଂଖ୍ୟକ ମନ୍ଦିର ଭାରତରେ ଏବଂ ଆମେରିକା ସମେତ ଅନ୍ୟ ଦେଶମାନଙ୍କରେ ନିର୍ମାଣ କରିଥିବା ଜଣାଯାଏ ।

ଶ୍ରୀ ମୁଥିଆ ତାମିଲନାଡୁର ଅଧିବାସୀ– ତେଣୁ ଦକ୍ଷିଣ ଭାରତୀୟ ସ୍ଥାପତ୍ୟ ଶିଳ୍ପ ସଂପର୍କରେ ତାଙ୍କ ଜ୍ଞାନ ଅତୁଳନୀୟ । କିନ୍ତୁ ହଣ୍ଟସ୍‌ଭିଲ୍‌ର ଏଇ ମନ୍ଦିରଟି କଳିଙ୍ଗ ସ୍ଥାପତ୍ୟରେ ନିର୍ମିତ ହେବ– ଏ ସିଦ୍ଧାନ୍ତ ବିଷୟରେ ତାଙ୍କୁ ଜଣାଇଦିଆଯିବାପରେ ସେ ଓଡିଶାର ମନ୍ଦିର ଗଠନକଳା ବିଷୟର ଅଧିକ ଜ୍ଞାନ ଅର୍ଜନ କରିବାକୁ ବାରମ୍ବାର ଓଡିଶା ଭ୍ରମଣରେ ଗଲେ ଏବଂ ଓଡିଶାର କେତେକ ପ୍ରସିଦ୍ଧ ଶିଳ୍ପୀ, ସ୍ଥପତି ଏବଂ ବ୍ୟକ୍ତି ବିଶେଷଙ୍କ ପ୍ରତ୍ୟକ୍ଷ ସଂପର୍କରେ ମଧ୍ୟ ଆସିଲେ । ସେମାନଙ୍କ ଭିତରେ ମୁଖ୍ୟ ଓଡିଶାର ପଦ୍ମଶ୍ରୀ ସୁଦର୍ଶନ ସାହୁ, ପଦ୍ମଭୂଷଣ ରଘୁନାଥ ମହାପାତ୍ର, ଗଜପତି ମହାରାଜା ଦିବ୍ୟସିଂହ ଦେବ, ରମେଶ ଚନ୍ଦ୍ର ରାଜଗୁରୁ, ମୁକ୍ତିମଣ୍ଡପର କେତେକ ଶାସ୍ତ୍ରଜ୍ଞ ପଣ୍ଡିତ ।

ତଥାପି ଆମେରିକା ମାଟିରେ ନିର୍ମିତ ହେବାକୁ ଥିବା ଏଇ ମନ୍ଦିରଟିକୁ ମଧ୍ୟ ଏଠାକାର ସ୍ଥାନୀୟ ଜଳବାୟୁ ଏବଂ ପରିବେଶ ସହିତ ଖାପଖୁଆଇବା ଉଚିତ୍ ମନେକରାଗଲା । ତେଣୁ ଏହାର ନିର୍ମାଣରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସ୍ଥାପତ୍ୟର ମିଶ୍ରଣ କରାଗଲା । ସେଇ କାରଣରୁ ମନ୍ଦିରଟି ନିର୍ମିତ ହେଲା ଏକ ଦ୍ୱିତଳ ପ୍ରାସାଦ ଢାଞ୍ଚାରେ । ଆମେ ଦେଖୁଥିବା ମନ୍ଦିରଟି ହେଲା ସେଇ ମିଶ୍ରିତ ପ୍ରାଚ୍ୟ ପାଶ୍ଚାତ୍ୟ ସ୍ଥାପତ୍ୟ ଓ ଶିଳ୍ପ ରୀତିର ପରିପ୍ରକାଶ ।

ଡାକ୍ତର ସାହୁ ମନ୍ଦିର ନିର୍ମାଣ ସଂପର୍କରେ ସଂକ୍ଷେପରେ ସେସବୁ ସୂଚନା ଦେବା ପରେ ମନ୍ଦିରର ପ୍ରମୁଖଦେବତା ଜଗନ୍ନାଥଙ୍କ ମୂର୍ତ୍ତିନିର୍ମାଣ ସଂପର୍କରେ ମଧ୍ୟ ସୂଚନା ଦେଲେ । କହିଲେ ‘‘ଏଠି ଯୋଉ ଚାରିମୂର୍ତ୍ତି ଠାକୁରଙ୍କୁ ଆପଣ ଦେଖୁଛନ୍ତି ସେ ମୂର୍ତ୍ତିଗୁଡିକ କୋଉଠି ତିଆରି ହେଇଚନ୍ତି ଜାଣନ୍ତି– ଓଡିଶାରେ, ପୁରୀରେ । ବିଶ୍ୱକର୍ମାଙ୍କ ନାଁ ଘନଶ୍ୟାମ ମହାପାତ୍ର । ସେ ପୁରୀର ଲୋକ । ମୂର୍ତ୍ତି ଗଠନଲାଗି ଦାରୁ ଠାବ କରାଯାଇଥିଲା ଅବିକଳ ନବକଳେବର ପାଇଁ ଦାରୁ ଠାବକରିବା ନୀତି ନିୟମ ଅନୁସାରେ । ପୂରା ଚଉଦଟି ଲକ୍ଷଣଯୁକ୍ତ ଦାରୁର ସନ୍ଧାନ କରାଯାଇଥିଲା । ସେ ଦାରୁରେ ଶଂଖ-ଚକ୍ର ଗଦା ପଦ୍ମ ଉପବୀତ ଇତ୍ୟାଦି ଚିହ୍ନ ଆମେ ନିଜ ଆଖିରେ ଦେଖିଚୁ । ମୂର୍ତ୍ତିଗଢାଯିବାପରେ ସେଗୁଡିକୁ ଆମେରିକା ଅଣାଯାଇଚି ଜାହାଜରେ ।

‘‘କିନ୍ତୁ ଏତେ ବାଟ ବହନକରି ଅଣା ଯିବା ପରେ ଏଇଠି ମନ୍ଦିର ସାମନାରେ ଟ୍ରକ୍‌ରୁ ଅନ୍‌ଲୋଡ୍ ହେବା ପରେ ଆମକୁ ହଠାତ୍ ହତାଶ କରିଦେଲେ ଏ ଠାକୁରମାନେ !’’– ଡାକ୍ତର ସାହୁ ଅଦୂରରେ ରତ୍ନସିଂହାସନରେ ବସି ଟହଟହ ହସୁଥିବା ଜଗନ୍ନାଥ ବଳଭଦ୍ରଙ୍କ

ଆଖିକୁ ଅନାଇ ଥରଥର ଗଳାରେ କହିଲେ, ''ଶୁଣିବେ– ଏ ଯୋଉ ଚାରିମୂର୍ତ୍ତି ଦେଖୁଚନ୍ତି ସେଠି ରତ୍ନସିଂହାସନ ଉପରେ, ସେଦିନ୍ ସେମାନେ ଯୋଉ ଲୀଳା କଲେ– ବିଶେଷକରି ଆମର ଏ ଲୀଳାମୟ ଜଗନ୍ନାଥ ! ଆସୁ ଆସୁ ଏକା ଜିଦି ଧରି ଅଡି ବସିପଡିଲେ । ତାଙ୍କୁ ମନ୍ଦିର ଭିତରକୁ ନେବାକୁ ଯେତେ ଚେଷ୍ଟା କରାଗଲା କିଛି ଶୁଣିଲେ ନାହିଁ। ସେଦିନ ଆମେ ଶହଶହ ଲୋକ ଏଠି ମନ୍ଦିର ସାମ୍ନାରେ ତାଙ୍କ ଆସିବାକୁ ଅପେକ୍ଷା କରିଥାଉ । ଠାକୁରମାନଙ୍କର ମୂର୍ତ୍ତି ସବୁ ଟ୍ରାନ୍ସ ପାସିଫିକ୍ ଭଏଜ୍ ପରେ ଟ୍ରକ୍‌ରେ ଲୋଡ୍ ହେଇ ଆସୁଥାନ୍ତି କାଲିଫର୍ଣ୍ଣିଆରୁ ଏଠିକି ଟ୍ରକ୍‌ରେ ବସି । ଏଠି ପହଞ୍ଚିଲା ପରେ ୱର୍କର୍‌ମାନେ ଏମାନଙ୍କୁ ଟ୍ରକ୍‌ରୁ ଅନ୍‌ଲୋଡ୍ କରିଦେଲେ ସୁରଖୁରୁରେ । ସେମାନେ ଚାଲିଗଲା ପରେ ମନ୍ଦିର ଭିତରକୁ ନିଆଯିବା ସମୟକୁ ଆରମ୍ଭ ହେଲା ଖେଳ ! ବିଶ୍ୱାସ କରନ୍ତୁ ଆଜ୍ଞା– ଆମେ ହଜାରେ ଲୋକ ଯେତେ ପ୍ରକାରେ ଚେଷ୍ଟାକଲୁ ଜଗନ୍ନାଥଙ୍କୁ ଭୂଇଁ ଉପରୁ ଇଞ୍ଚେବି ଉପରକୁ ଟେକି ପାରିଲୁ ନାହିଁ ! ଅଚଳ ମହାମେରୁ ପାଲଟି ଗଲେ ସେ !

''ତାପରେ ମୁଣ୍ଡ ଖରାପ ହେଇଗଲା ସମସ୍ତଙ୍କର । କିଏ କିଏ କହିଲେ ଘୋର ଅନୀତି କରାଯାଇଚି ନିଶ୍ଚେ ଠାକୁରମାନଙ୍କ ପ୍ରତି ସେମାନଙ୍କୁ ଜାହାଜରେ ଅଣାଗଲା ବେଳେ । ସେ ସବୁ ଅନେକ କଥା ଆଜ୍ଞା ! ପରେ ପରେ ବହୁ ପୂଜା ପ୍ରାର୍ଥନା କରାଗଲା । ଶେଷରେ ଶୂନ୍ୟବାଣୀ ହେଲା– Use a crane !

''ଗୋଟାଏ ସ୍ପେସାଲ୍ କ୍ରେନ୍ ଅଣାଗଲା । ସେଇ କ୍ରେନ୍ ଚଢି ଠାକୁରେ ମନ୍ଦିର ପ୍ରବେଶ-କଲେ । ତାଙ୍କୁ ରତ୍ନସିଂହାସନ ଉପରେ ବସାଯାଇଚି ସେଇ କ୍ରେନ୍‌ରେ ! ବର୍ତ୍ତମାନ ଆମର ସମସ୍ୟା ଏମାନଙ୍କର ରଥଯାତ୍ରା ହେବ କେମିତି ? କିଏ ଟେକିବ୍ ଏମାନଙ୍କୁ ଏଠୁ ରଥକୁ ?''

''ପରେ ପରେ ମୂର୍ତ୍ତି ପ୍ରତିଷ୍ଠା ଉତ୍ସବ– ଦଶଦିନ ଧରି ପୁରୀରୁ ଆସିଥିବା ମୁକ୍ତିମଣ୍ଡପ ପଣ୍ଡିତମାନେ ଯଜ୍ଞକଲେ । ଦଶଦିନଯାକ ଯଜ୍ଞରେ ଉପସ୍ଥିତ ଥିଲେ ଓଡିଶାର ଗଜପତି ଦିବ୍ୟସିଂହ ଦେବ ଓ ମହାରାଣୀ ସୂର୍ଯ୍ୟମଣି ଦେବୀ । ଯଜମାନ ହେଲେ ଏଠି ଆମ ଆମେରିକାର ଜଣେ ପ୍ରସିଦ୍ଧ ହିନ୍ଦୁଧର୍ମ ଗୁରୁ– ତାଙ୍କ ନାମ ସ୍ୱାମୀ ଦୟାନନ୍ଦ ସରସ୍ୱତୀ । ଦଶଦିନ ଯଜ୍ଞ ଚାଲିବା ଭିତରେ ଏ ଅଂଚଳଟା ପବିତ୍ର ବୈଦିକ ମନ୍ତ୍ରୋଚ୍ଚାରଣ ଭିତରେ ଆଚ୍ଛନ୍ନ ହେଇଗଲା । ଯଜ୍ଞ ଆରମ୍ଭରୁ ଆମେ ଲକ୍ଷ୍ୟକରିଥିଲୁ ଗୋଟାଏ ବିଶାଳକାୟ ଗୋଲ୍‌ଡେନ୍ ଇଗଲ୍ କୁଆଡୁ ଆସିଲା ଆଉ ମନ୍ଦିରର ଦଧିନଉତିକୁ କେନ୍ଦ୍ରକରି ଅନବରତ ଘୁରି ବୁଲିଲା ! ଦିନ ପରେ ଦିନ ପୂରା ଦଶଦିନ କାଳ ଯଜ୍ଞ ଚାଲିବା ଭିତରେ ସେ ପକ୍ଷୀକୁ ମନ୍ଦିର ଉପରେ ସେମିତି ଚକର୍ କାଟିବା ଦେଖିଚୁ ଆମେ । ପଣ୍ଡିତମାନେ କହିଲେ ସେ ହେଲେ ବିଷ୍ଣୁଙ୍କ ବାହନ ସ୍ୱୟଂ ଗରୁଡ ! ଆଶ୍ଚର୍ଯ୍ୟ କଥା ଯଜ୍ଞରେ ପୂର୍ଣ୍ଣାହୂତି ଦିଆଯିବା ପରେ ପରେ ଗୋଟାଏ ଅସରା ଅଦିନିଆ ବର୍ଷା ହେଇଗଲା– ପରେ ପରେ ସେ ପକ୍ଷୀ ଅଦୃଶ୍ୟ ହୋଇଗଲା ।''

## ହଣ୍ଟସ୍‌ଭିଲ୍, ଜଗନ୍ନାଥ ମନ୍ଦିରରେ ଉଦ୍‌ବୋଧନ

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ସେଦିନ ଏଇ ମନ୍ଦିରରେ ଗୋଟିଏ ସାଧାରଣ ସଭାର ଆୟୋଜନ କରାଯାଇଥାଏ । ଏ ସଭାରେ ହିନ୍ଦୁଧର୍ମର ସର୍ବଧର୍ମ ସମନ୍ୱୟତା ଏବଂ ଜଗନ୍ନାଥ ସଂସ୍କୃତିର ବିଶ୍ୱବ୍ୟାପକ ସଂବେଦନ ବିଷୟକୁ ନେଇ ଏକ ବକ୍ତୃତା (Talk) ଦେବାପାଇଁ ମତେ ପୂର୍ବରୁ କୁହାଯାଇଥିଲା । ମୁଁ ସେଥିପାଇଁ ପ୍ରସ୍ତୁତ ହୋଇ ଆସିଥାଏ । ମନ୍ଦିରର ପ୍ରଶସ୍ତ ଗୋପୁରର କାର୍ପେଟ ଆଚ୍ଛାଦିତ ଚଟାଣରେ ସେତେବେଳକୁ ଶତାଧିକ ନାରୀ ପୁରୁଷ ସଂପୂର୍ଣ୍ଣ ଭାରତୀୟ ରୀତିରେ ଚକାପକାଇ ବସିସାରିଥାନ୍ତି । ସେମାନଙ୍କ ଚେହେରାରୁ ଜାଣିହେଉଥାଏ ତାହା ମୁଖ୍ୟତଃ ଦକ୍ଷିଣ ଭାରତୀୟ ଲୋକଙ୍କର ଏକ ସମାବେଶ । ସେମାନଙ୍କ ଭିତରେ ଅବଶ୍ୟ ଥା'ନ୍ତି ମୁଷ୍ଟିମେୟ ଓଡିଆ ।

ମୋର ବକ୍ତୃତା ବିଧିବଦ୍ଧ ଭାବେ ଆରମ୍ଭ ହେବା ପୂର୍ବରୁ ଶ୍ରୋତାମାନଙ୍କ ଆଗରେ ମୋର ପରିଚୟ ପ୍ରଦାନକଲେ ଉଦ୍ୟୋକ୍ତା ଡାକ୍ତର ଭାଗବତଚନ୍ଦ୍ର ସାହୁ । ପରେ ପରେ ଶ୍ରୋତାମାନଙ୍କର ପରିଚୟଦେବା ଛଳରେ ସେ କହିଲେ, "Here is present a section of the best brains of Indian Scientists and Technocrats of the present NRI community living in USA today. Some of them are top ranking Scientists and Engineers working here in the Huntsville centre of NASA and other Scientific Organizations."

ପରେ ପରେ ମୁଁ ମୋର ବକ୍ତବ୍ୟର ଶିରୋନାମା ଘୋଷଣା କଲି ଓ କହିଲି– ବନ୍ଧୁଗଣ, ଆଜି ମୁଁ ଆପଣମାନଙ୍କ ସମ୍ମୁଖରେ କେତୋଟି ସଂପୂର୍ଣ୍ଣ ଅଭାବିତ ବିଷୟ ଉପରେ ଆଲୋକପାତ କରିବି ଯାହା ନିଶ୍ଚିତ ଭାବେ ଆପଣମାନଙ୍କୁ ବିସ୍ମିତ କରିବ– ହୁଏତ ସନ୍ଦିହାନ ମଧ୍ୟ କରିପାରେ. . . । ଆଜିର ବକ୍ତବ୍ୟର ବିଷୟଟି ହେଲା– The Omnipresent Jagannath and the Ubiquitous Hindus"

ମୋତେ ଦିଆଯାଇଥିବା ସମୟ ସୀମା ମାତ୍ର କୋଡିଏ ମିନିଟ୍ । ସେଇ ସମୟ ସୀମାକୁ ଦୃଷ୍ଟିରେ ରଖି ମୁଁ ଖୁବ୍ ସଂକ୍ଷେପରେ ମୋର ପ୍ରସ୍ତୁତ ହୋଇଆସିଥିବା ବିଷୟଟି ଉତ୍ଥାପନ କଲି । କହିବା ବାହୁଲ୍ୟ ଏ ଦେଶରେ ଖାଣ୍ଟି ଓଡିଆମାନଙ୍କର ସଭାରେ ମଧ୍ୟ ଇଂରେଜୀରେ ବକ୍ତୃତା କରିବାକୁ ହୁଏ । ପୁଣି ଯେଉଁଠି ସର୍ବଭାରତୀୟ ଶ୍ରୋତା ଉପସ୍ଥିତ ଥା'ନ୍ତି ସେଠାରେ ଇଂରେଜୀ ଛଡା ଅନ୍ୟ ଗତି ନାହିଁ । ସେ ସଭାରେ ସେଦିନ ମୁଁ ଯାହା କହିଲି ତାର ସଂକ୍ଷିପ୍ତ ସୂଚନା ଏଠାରେ ଦେଉଚି–

ପ୍ରଥମେ ଆଜିର ବୈଜ୍ଞାନିକ ଓ ବୈଷୟିକ ଯୁଗରେ ଜନମାନସରେ ଜଗନ୍ନାଥ ତଥା କୃଷ୍ଣ ଚେତନାର ବିଶ୍ୱବ୍ୟାପୀ ଆଦୃତି ଓ ତାର ପୃଷ୍ଠଭୂମିରେ ରହିଥିବା ଆଧ୍ୟାତ୍ମିକ କ୍ଷୁଧା

ସଂପର୍କରେ କିଂଚିତ ସୂଚନା ଦେଲି । ସେଇ ମର୍ମରେ ଆଜିର ଆମେରିକାରେ ଦ୍ରୁତବେଗରେ ଗଢିଉଠୁଥିବା 'ଇସ୍‌କନ୍' ମୁଭ୍‌ମେଣ୍ଟ ଏବଂ ପରେ ପରେ ହିନ୍ଦୁ ମନ୍ଦିରମାନଙ୍କରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା, ବିଶେଷକରି ରଥଯାତ୍ରାର ବ୍ୟାପକ ପ୍ରଚଳନର ଅନ୍ତର୍ନିହିତ ତାତ୍ପର୍ଯ୍ୟ ବିଷୟରେ ମଧ୍ୟ କିଂଚିତ ଆଲୋକପାତ କଲି । କିନ୍ତୁ ମୋର ଆଜିର ଆଲୋଚ୍ୟ ବିଷୟଟି କେବଳ ସେତିକିରେ ସୀମିତ ନରଖି ଏହାକୁ ଆହୁରି ମୌଳିକ ଦୃଷ୍ଟିକୋଣରୁ ଉପସ୍ଥାପିତ କଲି । ମୋର ବକ୍ତବ୍ୟର ଲକ୍ଷ୍ୟ ଥିଲା– ଐତିହାସିକ ଦୃଷ୍ଟିରୁ ଆମେରିକାରେ ହିନ୍ଦୁ ଉପସ୍ଥିତି ଯଥାର୍ଥରେ ପ୍ରାକ୍-କଲମ୍ବସୀୟ ଏବଂ ଏ ଦୁଇ ମହାଦେଶରେ ଦାରୁବ୍ରହ୍ମ ଅର୍ଥାତ୍ ଜଗନ୍ନାଥଙ୍କ ଉପାସନା ଆହୁରି ପ୍ରାଚୀନ; ଏହି ଦୁଇତତ୍ତ୍ୱର ଅବତାରଣା । ପ୍ରଥମେ ଆମେରିକାରେ ଜଗନ୍ନାଥ ଉପାସନାର ମୌଳିକତା ବିଷୟ ପ୍ରମାଣ ନେଇ ମୋର ନିଜସ୍ୱ ଅଭିଜ୍ଞତା ବିଷୟ ଏଠାରେ ଉଲ୍ଲେଖ କରୁଚି ।

୧୯୯୭ରେ, ଆମେରିକା ଭ୍ରମଣ ସମୟରେ ମୁଁ ସେଦିନ ଏକ ଆଶ୍ଚର୍ଯ୍ୟଜନକ ଦୃଶ୍ୟ ଦେଖିବାକୁ ପାଇଥିଲି । ସେଇ ଆଖିଦେଖା ଦୃଶ୍ୟ ସଂପର୍କରେ ମୁଁ ମୋର ଏକ ଭ୍ରମଣୋପନ୍ୟାସ ''ତୃଷ୍ଣା– ଏକ ଅନାବିଷ୍କୃତ ଆମେରିକା'' ବହିରେ ପୂର୍ବରୁ ଉଲ୍ଲେଖ କରିଛି । ସେଦିନ ଜୁଲାଇ ୧୯ ତାରିଖ । ସେତେବେଳେ ମୁଁ ଓ ମୋର ପତ୍ନୀ ନିରୁପମା କନେକ୍ଟିକଟ୍‌ର ଗ୍ଲାସଟନ୍‌ବରି ସହରରେ ମୋ ମଝିଆଁ ଝିଅ ଜୋଇଁ ମହେଶ ଓ ନିବେଦିତା (ସୁଲୁ)ଙ୍କ ଘରେ ଥାଉ । ଶୁଣିଲି– ରାଜ୍ୟର ଏକ ଉପାନ୍ତ ଅଂଚଳରେ ଚାଲିଚି ଗୋଟିଏ ପାରମ୍ପରିକ ଆମେରିକାନ୍ ଆଦିବାସୀ (ରେଡ୍ ଇଣ୍ଡିଆନ୍)ଙ୍କ ମେଳା । ସେ ମେଳା ଦେଖିବାକୁ ମୋର ଆଗ୍ରହ ଜନ୍ମିଲା । ଆମେ ବାହାରିଲୁ । ସେ ମେଳା କନେକ୍ଟିକଟ୍‌ର ରାଜଧାନୀ ସହର ହାର୍ଟଫୋର୍ଡର ପ୍ରାୟ ଦେଢଶହ ମାଇଲ୍ ଦକ୍ଷିଣ ପଶ୍ଚିମାଂଚଳରେ, ଓ୍ୱାସିଂଟନ୍ ନାମକ ଏକ ଆରଣ୍ୟକ ଗ୍ରମାଞ୍ଚଳରେ, ପ୍ରତିବର୍ଷ ଗ୍ରୀଷ୍ମଋତୁରେ ଆନୁଷ୍ଠାନିକ ଭାବେ ସାତଦିନ ବ୍ୟାପୀ ଚାଲେ । ଆମେ ମେଳାରେ ପହଞ୍ଚିଲୁ । ଶୁଣିଲୁ ସେଦିନ ମଧ୍ୟ ଆମେରିକାର ଆଦିବାସୀମାନଙ୍କର ଏକ ସଂଗୀତ ଆସର ଗହନ ପାଇନ୍‌ବନ ଭିତରେ ଠାଏ କୋଉଠି ଚାଲିଛି । ଆମେ ବାଟ ଖୋଜିଖୋଜି ସଂଗୀତଆସରରେ ପହଞ୍ଚିଲୁ ।

ଦେଖିଲୁ ସେଠାରେ ଆମ ଓଡିଶାର ଆଦିବାସୀଙ୍କ ଢେମ୍‌ସା ବାଦ୍ୟପରି ବିଶାଳାକୃତି ଚାରୋଟି ଡ୍ରମ୍ ରଖାଯାଇଚି । ସେଗୁଡିକୁ ତାଳ ଲୟ ସହକାରେ ବଜାଉଚନ୍ତି ଚାରିଜଣ ଆମେରିକାନ ଆଦିବାସୀ ଯୁବକ ଆଉ ସଂଗୀତର ସ୍ୱର ବାହାରୁଚି ଚାରିଜଣ ବଂଶୀବାଦକଙ୍କ ବଂଶୀରୁ । ସେମାନଙ୍କର ମିଳିତ ବଂଶୀବାଦନର ସ୍ୱରରୁ ବୁଝାପଡୁଥାଏ, ତାହା ସାଧାରଣ ଆଦିବାସୀ ସୁଲଭ କୌଣସି ସଂଗୀତର ଧୂନ ନହୋଇପାରେ । ପଚରାପଚରି ପରେ ବୁଝାପଡିଲା ତାହା ଥିଲା ବଲିଭିଆ ଦେଶର ଏକ ନିର୍ଦ୍ଦିଷ୍ଟ ଜାତିର ପକ୍ଷୀସ୍ୱରର ଅନୁକରଣରୁ ସୃଷ୍ଟ ଧୂନ ଯାହାକୁ ସେମାନେ ବଂଶୀରେ ବଜାଉଥିଲେ । ଏଠାକାର ଆଦିବାସୀମାନେ

ସଚରାଚର ଆରଣ୍ୟକଜ ସଂସ୍କୃତିର ଲୋକଙ୍କ ପରି ପ୍ରକୃତି ଉପାସକ । ସେମାନେ ବୃକ୍ଷ ବା ଦାରୁ ପୂଜା କରନ୍ତି ଏବଂ ନଦୀ ପର୍ବତ ପ୍ରଭୃତି ସମସ୍ତ ପ୍ରାକୃତିକ ବସ୍ତୁକୁ ଐଶ୍ୱରିକ ଇଂଗିତ ମନେକରି ଉପାସନା କରନ୍ତି– ଠିକ୍ ଆମ ହିନ୍ଦୁମାନଙ୍କ ପରି । ସେମାନେ ମଧ୍ୟ ନିର୍ଦ୍ଦିଷ୍ଟ ପାହାଡ ପର୍ବତକୁ ଦେବଭୂମି ଭାବେ ସେଗୁଡିକୁ ତୀର୍ଥସ୍ଥଳ ମନେକରନ୍ତି ଏବଂ ସେଠାରେ ପରଲୋକଗତ ପିତୃପରୁଷଙ୍କ ଆତ୍ମାକୁ ଆବାହନ କରି ଫୁଲ ଫଳ ଅର୍ପଣକରି ପୂଜା ପ୍ରାର୍ଥନା କରନ୍ତି ।

ସେଦିନ ଆମେ ସେଇ ମନୋରମ ପରିବେଶରେ ଚାଲିଥିବା ସଂଗୀତ ଆସରରେ ପ୍ରାୟ ଘଣ୍ଟାଏ ସମୟ କଟେଇଥିଲୁ । ଦିନ ଦି'ପହରେ ସୁଦ୍ଧା ମୁଣ୍ଡ ଉପରୁ ଝରିପଡୁଥିବା ସୂର୍ଯ୍ୟାଲୋକ ସେଇ ଗ୍ରୀଷ୍ମକାଳୀନ ଘନ ସବୁଜ ପାଇନ୍‌ବଣର ଅଭ୍ୟନ୍ତରକୁ ସଂପୂର୍ଣ୍ଣ ଭେଦକରିପାରୁନଥାଏ । ପ୍ରାୟ ତିରିଶ ଚାଳିଶ ଫୁଟ୍ ଉଚ୍ଚରେ ଡାଳକୁ ଡାଳ ଛନ୍ଦାଛନ୍ଦି ହୋଇ ଏକ ଚିତ୍ରିତ ଚାନ୍ଦୁଆ ଭଳି ଟଙ୍ଗାହୋଇଥିବା ବୃକ୍ଷବିତାନ ତଳର ସ୍ଥାନଟି ପରିଣତ ହୋଇଥାଏ ଅବିକଳ ପୂର୍ଣ୍ଣମୀ ରାତିର ଜ୍ୟୋତ୍ସ୍ନା ପ୍ଳାବିତ ବୃନ୍ଦାବନ ପରି ! ସେ ବୃନ୍ଦାବନ ଆହୁରି ରମଣୀୟ ହୋଇଯାଇଥାଏ ବଂଶୀସ୍ୱନର ପ୍ରଭାବରୁ ।

ଆଖିବୁଲେଇ ଦେଖିଲି ଶତାଧିକ ନାରୀପୁରୁଷ ଜଙ୍ଗଲ ଭିତରେ ପଡିଥିବା ବଡବଡ କାଠଗଣ୍ଡିମାନଙ୍କ ଉପରେ ଯେ ଯାହା ଜାଗାରେ ବସି ନିବିଷ୍ଟ ଚିତ୍ତରେ ସଂଗୀତ ଉପଭୋଗ କରୁଥାନ୍ତି । ସେମାନେ ଆମଭଳି ବିଦେଶୀ ପର୍ଯ୍ୟଟକ ଏବଂ ସ୍ଥାନୀୟ ଆମେରିକାନ୍ ଲୋକ ।

ଆମ ହାତରେ ସମୟ ଥିଲା ସୀମିତ । ସଂଗୀତ ଆସରରୁ ଆମେ ବାହାରିଲୁ ମେଳା ଦେଖିବାକୁ । ଜଙ୍ଗଲ ବାହାରେ ଏକ ଖୋଲା ପଡିଆରେ ପହଞ୍ଚି ଦେଖିଲୁ ସେଠାରେ ଅନେକଗୁଡିଏ ପ୍ରଦର୍ଶନୀ ମଣ୍ଡପ ଓ ଦୋକାନ ବଜାର ବସିଚି । ପ୍ରଦର୍ଶନୀ ପଡିଆ ଦିଶୁଥାଏ ଆମ ଓଡିଶାର ଏକ ଆଦିବାସୀ ପ୍ରଦର୍ଶନୀ ପରି । ସେଠାରେ ରେଡ୍‌ଇଣ୍ଡିଆନ୍‌ମାନଙ୍କର ବହୁ ପ୍ରକାର ହସ୍ତଶିଳ୍ପ ସାମଗ୍ରୀ ପ୍ରଦର୍ଶିତ ଏବଂ ବିକ୍ରୀ ହେଉଥାଏ । ସେଗୁଡିକ ସବୁ ଆଦିବାସୀଙ୍କ ଆର୍ଟ-କ୍ରାଫ୍ଟ ଏବଂ କୁଟୀରଶିଳ୍ପ ସାମଗ୍ରୀ । ସେସବୁ ଭିତରେ ଆଖିଦୃଷ୍ଟିଆ ହୋଇପଡୁଥାଏ– ଲୋମଶ ପ୍ରାଣୀମାନଙ୍କର ଚମଡାର ପୋଷାକ, ସ୍କାର୍ଫ ଟୋପି ଇତ୍ୟାଦି ଏବଂ ବିଚିତ୍ର ରଙ୍ଗବେରଙ୍ଗ ପକ୍ଷୀ ପରରେ ନିର୍ମିତ ଶିରସ୍ତ୍ରାଣ ଏବଂ ଅନ୍ୟାନ୍ୟ ସାମଗ୍ରୀ ।

ପ୍ରଦର୍ଶନୀ ପଡିଆରେ ବୁଲୁବୁଲୁ ଅନେକ ଲୋହିତ ଭାରତୀୟ ସ୍ତ୍ରୀ ପୁରୁଷଙ୍କୁ ଭେଟିଲୁ । ସେମାନଙ୍କ ସହିତ କଥାବାର୍ତ୍ତାବେଳେ ଜାଣିଲି ସେମାନେ ଭାରତୀୟ ଲୋକଙ୍କୁ ଭଲପାଆନ୍ତି । ଏ ଲୋକମାନେ ବେଶ୍ ପରିହାସ ପ୍ରବଣ । ପରିଚୟ ହେଉନହେଉଣୁ ଜଣେ ମତେ କହିଲେ, ''ତମେମାନେ ହେଲ ପ୍ରକୃତ ଇଣ୍ଡିୟାନ୍ ଆଉ ଆମେ ହେଲୁ କଲମ୍ବସ୍‌ର ବୋକଟାବୁଦ୍ଧା ଇଣ୍ଡିୟାନ୍'' ।

କଥାବାର୍ତ୍ତା ଜମିବା ଭିତରେ ଲକ୍ଷ୍ୟକଲି ଦୋକାନ ଭିତରେ ଜଣେ ଲୋହିତ ଭାରତୀୟ ବୁଢ଼ୀ ବସିଚନ୍ତି ଆଉ ଆନମନା ହେଇ ଅନାଇ ରହି ସିଗାରେଟ୍ ଟାଣି ଚାଲିଚନ୍ତି । ପଚାରିଲି ସେ କିଏ ? ଉତ୍ତର– ସେ ଜଣେ ସର୍ବଜ୍ଞ ଯାହାଙ୍କୁ ଆପଣ କହନ୍ତି ୱିଚ୍ ବା ମ୍ୟାଜିସିଆନ୍ । (She is our seer whom you know as witch or magician) । ପଚାରିଲି, "ଆପଣମାନେ ୱିଚ୍‌କ୍ରାଫ୍ଟ ପ୍ରାକ୍ଟିସ୍ କରୁଚନ୍ତି– ଏବେବି ?" ଉତ୍ତରମିଳିଲା– "ନିଶ୍ଚୟ ! ଏହା ଆମର ଜାତୀୟ ସଂସ୍କୃତି । ଏହା ଭୁଡୁ ମ୍ୟାଜିକ୍ ନୁହେଁ– ରିଏଲ୍ ଥିଙ୍ଗ୍ ।"

ଲୋକଟିର ଚେହେରା ଦେଖି ମନେହେଲା ସେ ଦେଖିବାକୁ ପୂରା ଆମ ଭାରତୀୟମାନଙ୍କ ପରି । ଏମାନଙ୍କ ଉଚ୍ଚତା ଆମରି ପରି, ଶରୀରର ରଙ୍ଗ ମଧ୍ୟ ବାଦାମୀ, ନାକ ଦଣ୍ଡା ସଳଖ, ମୁଣ୍ଡବାଳ ଓ ଆଖିର ରଙ୍ଗ କଳା, ଓଠ ପତଳା, ମୁହଁରେ ନିଶ ଦାଢ଼ି ସ୍ୱାଭାବିକ; ମଙ୍ଗୋଲୀୟମାନଙ୍କ ପରି ପତଳା ନୁହେଁ । ସ୍ତ୍ରୀଲୋକମାନେ ଲମ୍ବା ବେଣି ବାନ୍ଧନ୍ତି । ଏହା ନିଶ୍ଚିତ ଯେ ଏହି ଚେହେରାର ଲୋକମାନଙ୍କୁ ପ୍ରଥମେ କାରିବୀୟ ଅଂଚଳର କୌଣସି ଦ୍ୱୀପରେ ୧୪୯୨ରେ ଆବିଷ୍କାର କରଥିଲେ ଖ୍ରୀଷ୍ଟୋଫର୍ କଲମ୍ବସ ଏବଂ ସେମାନଙ୍କୁ ଚିହ୍ନଟ କରିଥିଲେ ଭାରତୀୟ ଅଧିବାସୀ ଅର୍ଥାତ୍ 'ଇଣ୍ଡିୟାନ୍' ନାମରେ ।

ଏଇଠି ପ୍ରଶ୍ନ ଉଠିବ– ଆମେରିକାର ଆଦିମଅଧିବାସୀଙ୍କ ସଂପର୍କରେ ଯେଉଁ ପ୍ରଚଳିତ ଐତିହାସିକ ତଥ୍ୟ ପାଠ୍ୟପୁସ୍ତକମାନଙ୍କରେ ପଢାଯାଏ ଯେ ସେମାନେ ମୂଳତଃ ଏସିଆର ଅଧିବାସୀ, ଯେଉଁମାନେ ପ୍ରାକ୍ ଐତିହାସିକ କାଳରେ ଆଲାସ୍କା ବାଟେ ପ୍ରଥମେ ଉତ୍ତର ଆମେରିକା ମହାଦେଶରେ ପ୍ରବେଶ କରିଥିଲେ– ତାହା କେତେଦୂର ସତ୍ୟ ? ପୁଣି ଅନ୍ୟ ଏକ ନୃତାତ୍ତ୍ୱିକତତ୍ତ୍ୱ ଏମାନଙ୍କ ସଂପର୍କରେ ରହିଚି । ତାହା ହେଲା– କେତେକ ପଣ୍ଡିତଙ୍କ ମତରେ ବାଇବେଲ୍ ବର୍ଣ୍ଣିତ ପ୍ରାଚୀନ ଇହୁଦୀଜାତିର ଦଶଟି ଶାଖା ଭିତରୁ ଯେଉଁ ଶାଖାଟି ହଜିଯାଇଛି ବୋଲି କୁହାଯାଏ ତାହା ଏଇ ଆମେରିକାନ୍ ଇଣ୍ଡିୟାନ୍ ଜନଜାତିର ଲୋକ । କିନ୍ତୁ ତାହା ମଧ୍ୟ କେତେ ସତ୍ୟ ?

କିନ୍ତୁ ଏଇସବୁ ତଥାକଥିତ ଐତିହାସିକ, ନୃତାତ୍ତ୍ୱିକ ମତାମତ ସବୁ ମୋ ମୁଣ୍ଡରୁ ସେଦିନ ପୋଛିହେଇଗଲା ଗୋଟିଏ ସଂପୂର୍ଣ୍ଣ ଆକସ୍ମିକ ଆବିଷ୍କାର ଫଳରେ । ତାହାହେଲା– ସେଦିନ ସେଇ ଆରଣ୍ୟକ ପରିବେଶ ଭିତରେ ଆମେରିକାନ୍ ଆଦିବାସୀଙ୍କ ମେଳା ବୁଲା ପର୍ଯ୍ୟାୟରେ ମୁଁ ସେ ଯୋଉ ଅଭାବିତ ଦୃଶ୍ୟଟି ଦେଖିବାକୁ ପାଇଥିଲି !

ମେଳାର ଲୋକମାନଙ୍କ ସାଙ୍ଗେ କଥାବାର୍ତ୍ତାବେଳେ ଜାଣିବାକୁ ମିଳିଲା ସେମାନଙ୍କର ଏକ ସାଂସ୍କୃତିକ ସଂଗ୍ରହାଳୟ ଏବଂ ପୁସ୍ତକ ଦୋକାନ ଏହି ମେଳା ନିକଟରେ ଅଛି । ସଂଗ୍ରହାଳୟଟିର ପରିଚାଳନା ହୁଏ ଏକ ସରକାରୀ ଅନୁମୋଦିତ ସଂସ୍ଥା ଦ୍ୱାରା– "Institute for American Indian Studies"

ଆମେ ଚାଲିଲୁ ସେଇ ସଂସ୍ଥା ପରିଚାଳିତ ସଂଗ୍ରହାଳୟ ଦେଖିବାକୁ । ଆମେ ସଂଗ୍ରହାଳୟରେ ପଶିବାକୁ ମୁଖ୍ୟ ପ୍ରବେଶଦ୍ୱାର ପାଖରେ ପହଞ୍ଚିଲୁ । ପ୍ରବେଶ ଦ୍ୱାରର ବିରାଟ ଚଉକାଠ ଉପର କାନ୍ଥରେ ଆଖି ପଡିବା ମାତ୍ରେ ଦେଖିଲି ଗୋଟିଏ ପ୍ରତିମୂର୍ତ୍ତି କାନ୍ଥ ଉପରୁ ଆମକୁ ବଡବଡ ଗୋଲଗୋଲ ଆଖି ଦୁଇଟାରେ ଅନାଇଛି ! ସେ ଆଖି ଦୁଇଟା ଆଉ ପ୍ରତିମୂର୍ତ୍ତିଟିର ସ୍ୱରୂପ ଦର୍ଶନମାତ୍ରେ ଆମେ ସମସ୍ତେ ଏକାବେଳକେ ଚମକି ଉଠିଲୁ, କାରଣ ତାହା ଥିଲା ସ୍ୱୟଂ ଜଗନ୍ନାଥଙ୍କ ଆଖି ଓ ଅବିକଳ ପ୍ରତିମୂର୍ତ୍ତି !

ପ୍ରକୃତିସ୍ଥ ହୋଇ ଦେଖିଲୁ ସେଇ ପ୍ରତିମୂର୍ତ୍ତି ତଳେ ଲେଖାଯାଇଥିଲା– "The House Deity of American Indians" ଅର୍ଥାତ୍ ଆମେରିକାର ଆଦିବାସୀମାନଙ୍କର ପୂଜିତ ଗୃହଦେବତା ଅର୍ଥାତ୍ ''ଇଷ୍ଟଦେବ'' !

ଆମେ ଓଡିଶାବାସୀ ଜଗନ୍ନାଥଙ୍କୁ କେବଳ ମନ୍ଦିରରେ ପୂଜା କରୁନା । ଜଗନ୍ନାଥ ମଧ୍ୟ ପୂଜାପାଆନ୍ତି ଖଟୁଲୀ ଉପରେ ଆମ ଠାକୁର ଘରେ । ସେ ଆମ ଓଡିଆଙ୍କ ଇଷ୍ଟଦେବ । ଆମ ଓଡିଆଙ୍କ ଇଷ୍ଟଦେବ ପୁଣି ପୃଥିବୀ ଆରପଟ ଦେଶ ଆମେରିକାର ବଣଜଙ୍ଗଲରେ ବସବାସ କରୁଥିବା ଆଦିବାସୀଙ୍କର ଇଷ୍ଟଦେବ ପାଲଟିଲେ କିପରି ? ତା'ର ଅର୍ଥ ଜଗନ୍ନାଥଙ୍କ ରୂପ ବା 'ଇମେଜ୍' କେବଳ ଓଡିଶାର ଆଦିମ ଜନଜାତିଙ୍କ ପୂଜିତ ପରିକଳ୍ପନାଟିଏ ବୋଲି ଯାହା କୁହାଯାଏ ତାହା ତେବେ ସତ୍ୟ ନୁହେଁ? ଜଗନ୍ନାଥ ତାଙ୍କ ନାମର ଅର୍ଥ ଅନୁସାରେ ସତରେ ତେବେ ଜଗତରନାଥ ଆଉ ସେ ସର୍ବବ୍ୟାପୀ ଏବଂ ବିଶ୍ୱବ୍ୟାପୀ– ଏହା କ'ଣ ତେବେ ଜଗନ୍ନାଥ ଉପାସନାର ମୂଳ ସତ୍ୟ ?

ଏହା ପରେ ମୁଁ ଆମେରିକାର ଆଦିମଅଧିବାସୀଙ୍କ ଉପରେ ଅଧିକ ଜାଣିବାକୁ ଚାହିଁଲି । ସେମାନଙ୍କର ସାହିତ୍ୟ ଓ କଳା ସଂପର୍କରେ ଆହୁରି ଜାଣିବାକୁ ସେଦିନ ସେଇ ସଂଗ୍ରହାଳୟ ସଂଲଗ୍ନ ବହିଦୋକାନରୁ ଦୁଇଖଣ୍ଡ ବହି କିଣିଲି । ସେ ବହି ଦୁଇଟି ହେଲା– "The Primal Mind" *by* Jamake Highwater & "The Witch of Going Snake and other stories" *by* Robert J. Conely ଉଲ୍ଲେଖନୀୟ ହେଲା ସେ ଦୁଇଜଣଯାକ ଲେଖକ ଆମେରିକାର ଆଦିମ ଅଧିବାସୀ ସଂପ୍ରଦାୟର ଏବଂ ଉଭୟ ଆମେରିକାନ୍ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷାପ୍ରାପ୍ତ ନିର୍ଭରଯୋଗ୍ୟ ସ୍କଲାର୍ ।

ବହି ଦୁଇଟି ପାଠକଲାପରେ ଏ ଦେଶର ଆଦିମ ଅଧିବାସୀଙ୍କ ପ୍ରତି ମୋର ଧାରଣା ସଂପୂର୍ଣ୍ଣ ବଦଳିଗଲା । ପୂର୍ବରୁ ମୁଁ ବିଭିନ୍ନ ପୁସ୍ତକରୁ ଏମାନଂକ ସଂପର୍କରେ ଯାହା ସବୁ ପଢିଥିଲି ସେସବୁ ଯେ ଏକତରଫା ଉପନିବେଶବାଦୀ ଚିନ୍ତାଧାରାର ଐତିହାସିକଙ୍କ ଯୁକ୍ତି ଥିଲା ତାହା ବେଶ୍ ହୃଦୟଙ୍ଗମ କରିହେଲା । ଏହି ବହି ଭିତରୁ ପ୍ରଥମଟି ଥିଲା ଆମେରିକାର ଆଦିବାସୀଙ୍କ ଅନ୍ତଶ୍ଚେତନାର ତାତ୍ତ୍ୱିକ ଅନୁଶୀଳନ ଯାହା ବାଖ୍ୟା କରୁଥିଲା ଏଦେଶର ଆଦିମ ଅଧିବାସୀମାନଙ୍କ ମନସ୍ତତ୍ତ୍ୱର ମୂଳକଥା ସଂପର୍କରେ । ସେମାନେ କାହିଁକି କୌଣସି ପଦାର୍ଥର

ରୂପକୁ ଫଟୋଗ୍ରାଫିକ୍ ଦୃଷ୍ଟିରୁ ନଦେଖି ତାର ଅନ୍ତଃସ୍ୱରୂପକୁ ଦେଖିପାରନ୍ତି ତାର ବହୁତ ମନସ୍ତାତ୍ତ୍ୱିକ ବିଚାର ଥିଲା ସେ ବହିରେ । ସେଥିପାଇଁ ସେମାନେ ପଦାର୍ଥର ବାହ୍ୟରୂପ ପରିବର୍ତ୍ତେ ଅନ୍ତଃରୂପ ବା Occult Image ଛବିରେ ଆଙ୍କନ୍ତି ତା'ର ବିଶଦ ବ୍ୟାଖ୍ୟା ରହିଥିଲା ସେ ପୁସ୍ତକରେ । ବର୍ତ୍ତମାନ ବୁଝିଲି ଯେ ଆମେରିକାର ଆଦିମ ଅଧିବାସୀ ଅବିକଳ ଆମ ଓଡିଶାର ଆଦିବାସୀଙ୍କ ଶାବର ସଭ୍ୟତାର ଲୋକ ଯେଉଁମାନେ ସେମାନଙ୍କ ଆରାଧ୍ୟ ଦେବତାଙ୍କୁ ଜଗନ୍ନାଥଙ୍କ ରୂପରେହିଁ ଉପଲବ୍ଧି କରିଛନ୍ତି । ତେଣୁ ସେମାନେ ଜଗନ୍ନାଥଙ୍କୁ ମଣିଷ ରୂପରେ (Anthromorphic form) ନଗଢି ଠାକୁରଙ୍କୁ ଗଢିଚନ୍ତି ସେମାନଙ୍କର ଅନ୍ତଶ୍ଚେତନାରେ ପ୍ରତିଭାତ ଏପରି Occult ମୁଖାକୃତିରେ । ଏହାହିଁ ପ୍ରମାଣକରେ ଜଗନ୍ନାଥ ମଣିଷର ସର୍ବବ୍ୟାପୀ ସଚରାଚର ଆଧ୍ୟାତ୍ମିକ ଚେତନାର ଏକ ମୌଳିକ ସତ୍ୟ । ତେଣୁ ଜଗନ୍ନାଥ ସର୍ବବ୍ୟାପୀ ବା Ubiquitous କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହାପରେ ଆମେରିକାରେ ପ୍ରାକ୍ କଲମ୍ବସୀୟ ଯୁଗରେ ହିନ୍ଦୁମାନଙ୍କର ଉପସ୍ଥିତି ସଂପର୍କରେ ମୁଁ କେତେକ ମୌଳିକ ତତ୍ତ୍ୱର ସୂଚନା ଦେଲି । କହିଲି– ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହୋଇପାରନ୍ତି ଯଦି ମୁଁ କହେ ଯେ କଲମ୍ବସ୍‌ଙ୍କ ଆମେରିକା ଆଗମନର ବହୁ ବହୁ ଶତାବ୍ଦୀ ପୂର୍ବରୁ ଏ ମହାଦେଶର ଏକ ବିରାଟ ଅଂଚଳରେ ବୈଦିକ ହିନ୍ଦୁ ସଭ୍ୟତା ବ୍ୟାପିରହିଥିଲା । ଏହା ତିନୋଟି ଶାଖାରେ ବିଭକ୍ତ ହୋଇ ରହିଥିଲା । ସେ ଗୁଡିକ ହେଲା ମୟ (ମାୟା), ଆସ୍ତିକ (ଆଜ୍‌ଟେକ୍) ଓ ଇନ୍‌କା (Maya, Astec and Inca) ପାତାଳନିବାସୀ ବୋଲି ବର୍ଣ୍ଣନାକରିଚନ୍ତି । ପୁରାଣର ପାତାଳ କହିଲେ ବର୍ତ୍ତମାନ ବୁଝିବାକୁ ହେବ ଆମେରିକା । ସେହିପରି ଆସ୍ତିକ ଜଣେ ପ୍ରସିଦ୍ଧ ଋଷି । ଶ୍ରୀମଦ୍ ଭାଗବତରେ ଏ ଋଷିଙ୍କ ନାମ ଉଲ୍ଲେଖଅଛି ପାଣ୍ଡବବଂଶର ବିଖ୍ୟାତ ରାଜା ପରିକ୍ଷିତଙ୍କ ପୁତ୍ର ଜନ୍ମେଜୟଙ୍କ ସର୍ପଯଜ୍ଞ ସମୟରେ ତକ୍ଷକଙ୍କ ପ୍ରାଣରକ୍ଷାକାରୀ ଋଷି ଭାବେ । ଆସ୍ତିକଙ୍କୁ ନାଗବଂଶର ରାଜପୁରୋହିତ ଭାବେ ବରଣ କରିଥିଲେ ନାଗରାଜ ତକ୍ଷକ । ନାଗମାନେ ପାତାଳନିବାସୀ ଏହା ଆମେ ଭାରତୀୟମାନେ ଜାଣିଛୁ ।

ସେହିପରି 'ଇନ୍‌କା' ସଭ୍ୟତା ପେରୁରେ ପ୍ରଚଳିତ । ଏ ସଭ୍ୟତାର ଲୋକେ ସୌର ସଂପ୍ରଦାୟର, ଅର୍ଥାତ୍ ସେମାନେ ସୂର୍ଯ୍ୟ ପୂଜା କରନ୍ତି । ''ଇନ୍'' ଏକ ସଂସ୍କୃତଶବ୍ଦ । ଏହା ସୂର୍ଯ୍ୟଙ୍କ ଅନ୍ୟ ଏକ ନାମ । ରାମାୟଣରେ ରାମଚନ୍ଦ୍ରଙ୍କୁ ଇନ୍ ବା ସୂର୍ଯ୍ୟବଂଶର ସନ୍ତାନ ବୋଲି ନାମିତ କରାଯାଏ । ପେରୁରେ ସେଇ ଇନ୍ ବା ସୂର୍ଯ୍ୟ ପୂଜା ଏପର୍ଯ୍ୟନ୍ତ ନିଜର ଅସ୍ତିତ୍ୱ ବଜାୟ ରଖିପାରିଚି । ଆଧୁନିକ କାଳରେ ମାୟା ଓ ଆସ୍ତିକ ସଭ୍ୟତାର ମନ୍ଦିରମାନଙ୍କର ପ୍ରତ୍ନତାତ୍ତ୍ୱିକ ଧ୍ୱଂସାବଶେଷ ମେକ୍ସିକୋ ତଥା କେନ୍ଦ୍ର ଆମେରିକାର ବିସ୍ତୃତ ଅଂଚଳରୁ ଉଦ୍ଧାର କରାଯାଇଚି । ମେକ୍ସିକୋର ସରକାରୀ ସଂଗ୍ରହାଳୟରେ ସଂଗୃହୀତ ହୋଇଥିବା ହିନ୍ଦୁମାନଙ୍କର ଉପାସ୍ୟ ବହୁ ଦେବଦେବୀ ଯଥା– ଶିବ ପାର୍ବତୀ ଗଣେଶ ହନୁମାନ ଇନ୍ଦ୍ର ବରୁଣ ପ୍ରଭୃତିଙ୍କ

ଭଗ୍ନ ପଥର ମୂର୍ତ୍ତି ସେ ସବୁର ପ୍ରମାଣ । ତେଣୁ ଆମେରିକାହିଁ ଯଥାର୍ଥରେ ହିନ୍ଦୁମାନଙ୍କର ଦେଶ । ଆପଣମାନେ ଆମେରିକା ଆସିବାର ଅନ୍ତତଃ ଦୁଇ ହଜାର ବର୍ଷ ପୂର୍ବରୁ ଆପଣମାନଙ୍କର ପୂର୍ବ ପୁରୁଷ ଏ ଦେଶରେ ତିନିତିନୋଟି ସଭ୍ୟତା ପ୍ରତିଷ୍ଠା କରିଥିଲେ ଓ ସେମାନେ ଆଜି ବି ଏ ଦେଶର ମୂଳ ଅଧିବାସୀ ରୂପେ ଏଠାରେ ବାସବାସ କରନ୍ତି ।

ମୋ ବକ୍ତୃତା ଶେଷ ହେବା ପରେପରେ ସଭାରେ ଉପସ୍ଥିତ କେତେକ ଶ୍ରୋତା ମତେ ପ୍ରଶ୍ନ-ପଚାରିବାକୁ ଅନୁମତି ମାଗିଲେ । ସେମାନଙ୍କ ପ୍ରଶ୍ନର ଯଥାଯଥା ଉତ୍ତର ଦେବା ପାଇଁ ମୁଁ ପୂର୍ବରୁ ପ୍ରସ୍ତୁତ ହୋଇଥିଲି ।

ପ୍ରଥମ ପ୍ରଶ୍ନ ହେଲା– ''ହିନ୍ଦୁମାନେ ଆମେରିକାକୁ କୋଉ ବାଟେ ଆସିଥିଲେ ? ସ୍ଥଳପଥରେ ପ୍ରାଚୀନ ଯୁଗରେ ଆଲାସ୍କା ବାଟେ ସେମାନେ ଏସିଆରୁ ଆମେରିକା ଆସିବା କଥା ସତ ନୁହେଁ କି ?''

ବିନୀତଭାବେ କହିଲି, ''ନା, ସେମାନେ ସୁଦୀର୍ଘ ସମୁଦ୍ର ପଥରେ ପ୍ରଶାନ୍ତ ମହାସାଗର ପାରିହୋଇ ଭାରତର ପୂର୍ବଉପକୂଳ ଦେଶମାନଙ୍କରୁ ଆସିଛନ୍ତି ବିଭିନ୍ନ ସମୟରେ. . .''

– ''ଏହା କ'ଣ ସଂଭବ ? ସେତେବେଳେ କ'ଣ ସେଭଳି ଶକ୍ତିଶାଳୀ ପୋତ ବା ଜାହାଜ ନିର୍ମିତ ହୋଇଥିଲା ? ପ୍ରମାଣ କ'ଣ ?''

ଉତ୍ତରରେ ମୁଁ ମୋ ହାତ ବ୍ୟାଗ୍‌ରୁ ଖଣ୍ଡେ ମୋଟା ବହି କାଢ଼ିଲି । ତାକୁ ପ୍ରଶ୍ନକର୍ତ୍ତାଙ୍କୁ ଦେଖାଇ କହିଲି, ''ପ୍ରମାଣ ରହିଚି ଏ ବହିରେ । ଏଥିରୁ ଆପଣ ପାଇବେ ମେକ୍ସିକୋର ଆଧୁନିକ ଇତିହାସ । ଏ ବହିରେ ମେକ୍ସିକୋ ସରକାରଙ୍କ ପ୍ରକାଶିତ 'ହିଷ୍ଟ୍ରି ଅଫ୍ ମେକ୍ସିକୋ' ପୁସ୍ତକରୁ ଏଇ ବାକ୍ୟଟି ପଢୁଚି ଆପଣମାନଙ୍କ ଅବଗତି ନିମିତ୍ତ । ପରେ ଆପଣମାନେ ଏ ବହିଟିକୁ ନେଇ ପରୀକ୍ଷା କରିପାରିବେ ।

ବହି ଖୋଲି ପଢ଼ିଲି– "Those who first arrived on the continent, later to be known as America, were groups of men driven by that mighty current that set-out from India towards the East" (History of America, Mexican Government publication, p-3)

ଏ କଥାଟା ବୋମା ପଡିଲା ଭଳି ହୁଏତ ଶୁଣାଗଲା ଗୃହରେ ଉପସ୍ଥିତ ଶତାଧିକ ପ୍ରବାସୀ ଭାରତୀୟ ବୈଜ୍ଞାନିକ ଇଂଜିନିୟର୍ ଡାକ୍ତର ପ୍ରଫେସର୍‌ଙ୍କ ଭଳି ବିଜ୍ଞ ଶ୍ରୋତାଙ୍କ କାନକୁ । ସମସ୍ତେ ସ୍ତବ୍ଧ ହୋଇଗଲେ କିଛି ସମୟ ପାଇଁ । ପରେ ପରେ ଛାଡ଼ିଲି ଦ୍ୱିତୀୟ ଅସ୍ତ୍ରଟି–

"The Maya human types are like those of India. The irreprochable technique of their reliefs, the pompous head dress and ostentatious buildings on high, the system of construction, all

speak of India and the Oriental."– (Professor Raman Mena, Curator of the National Museum of Mexico) । ଏ ଦୁଇଟି ତଥ୍ୟ ଥିଲା ଯଥେଷ୍ଟ ବିଜ୍ଞ ଶ୍ରୋତୃମଣ୍ଡଳୀର ବୌଦ୍ଧିକ କୌତୂହଳ ଜାଗରଣ ପାଇଁ । ସେମାନେ ମତେ ଘେରିଗଲେ ଆଉ ଜାଣିବାକୁ ଚାହିଁଲେ ଏ ସବୁ ତଥ୍ୟ ମୁଁ କୋଉ ପ୍ରାମାଣିକ ଗ୍ରନ୍ଥରୁ ସଂଗ୍ରହକରିଚି । ସେମାନଙ୍କର କୌତୂହଳ ମେଣ୍ଟାଇବା ପାଇଁ ମୁଁ ମଧ୍ୟ ପୂର୍ବରୁ ପ୍ରସ୍ତୁତ ଥିଲି । ମୁଁ ଯୋଉ ବହିଟିରୁ ଉପରୋକ୍ତ ଉଦ୍ଧୃତି ଦୁଇଟି ଦେଇଥିଲି ସେ ବହିଟିକୁ ମୋ ହାତରୁ ପ୍ରାୟ ଛଡେଇନେଲା ପରି ସେମାନେ ବ୍ୟଗ୍ରତାର ସହିତ ବହିର ନାଁ ଓ ଲେଖକ ପ୍ରକାଶକ ପ୍ରଭୃତିଙ୍କ ଠିକଣା ଇତ୍ୟାଦି ଖୋଜିପକାଇଲେ ଏବଂ ପରେ ସେମାନଙ୍କର ଅଭିଭୂତ କଣ୍ଠସ୍ୱର ଏବଂ ମନ୍ତବ୍ୟ ମତେ ଗଡଜିଣିବା ଭଳି ସୁଖକର ଲାଗିଲା । ଅନେକ କହିବା ଶୁଣିଲି– "I must search the internet and place orders with the Amazons today."

ସେ ବହିଟି ଥିଲା ବହୁ ବର୍ଷ ତଳେ ଆମେ ଭାରତରେ ପଢିଥିବା ଖଣ୍ଡିଏ ଇଂରେଜୀ ବହି, "The Hindu America by Bhikhyu Chamanlal"– ଏ ପୁସ୍ତକଟି ୧୯୫୬ରେ ପ୍ରକାଶିତ ହୋଇଥିଲା । ଏହାର ମୁଖବନ୍ଧ ଲେଖିଥିଲେ ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଏବଂ ତତ୍କାଳିନ ମହାନ୍ ନେତୃବୃନ୍ଦ ମହାତ୍ମାଗାନ୍ଧି, ଜବାହାର୍‌ଲାଲ୍ ନେହେରୁ, ପଣ୍ଡିତ ମଦନମୋହନ ମାଲବ୍ୟ ଆଦି ।

ଚମନ୍‌ଲାଲ୍‌ଙ୍କ ଲିଖିତ ସେଇ ''ହିନ୍ଦୁ ଆମେରିକା'' ପୁସ୍ତକଟି ସଭାସ୍ଥଳରେ କିଛି ସମୟ ପାଇଁ ଏକ ଦୁର୍ଲଭ ଦର୍ଶନୀୟ ବସ୍ତୁ ପରି ହାତରୁ ହାତ ହେଇ ହେଇ ବୁଲିଚାଲିଲା । ଏଥର ଆମେରିକା ଯାତ୍ରା ପୂର୍ବରୁ କାହିଁକି କେଜାଣି ଏଇ ପୁସ୍ତକଟି ସାଙ୍ଗରେ ନେବା କଥା ମୋ ମନକୁ ଆସିଥିଲା । କିନ୍ତୁ ବହିଟି ମୋ ପାଖରେ ନଥିଲା । ବହୁ ଖୋଜାଲୋଡା ପରେ ଶେଷରେ ଓଡିଆସାହିତ୍ୟର ଗବେଷକ ଶ୍ରୀସୁରେନ୍ଦ୍ର ନାଥ ମହାରଣାଙ୍କଠାରୁ ଏହାକୁ ସଂଗ୍ରହ କରିଥିଲି । ତାହା ଥିଲା ବାସ୍ତବିକ୍ ଏକ ଅପର୍ବ ଯୋଗାଯୋଗ ।

## 'ବାକ୍‌ଶ୍ରୀ' ଉପାଧିପ୍ରାପ୍ତି–

ଏହା ପରେ ମନ୍ଦିର ପରିଚାଳନା ସଂସ୍ଥା ପକ୍ଷରୁ ଆହୂତ ସେଇ ସାଧାରଣସଭାରେ ମୋତେ ସଂବର୍ଦ୍ଧନା ଜଣାଇବା ସହିତ ଏକ ସମ୍ମାନ ସୂଚକ ଉପାଧି ପ୍ରଦାନ କରାଗଲା । ସେଥିରେ ଉଲ୍ଲେଖଥିଲା ମୋର ଆଜୀବନ ସାହିତ୍ୟ ସାଧନା, ବିଶେଷକରି ଆମେରିକାରେ ହିନ୍ଦୁଧର୍ମ ତଥା ଶ୍ରୀ ଜଗନ୍ନାଥ ସଂସ୍କୃତିର ପ୍ରସାର ଲାଗି ନିଷ୍ଠାପର ବୌଦ୍ଧିକ ଉଦ୍ୟମ ଲାଗି ମୋତେ ହଣ୍ଟସ୍‌ଭିଲ୍ ସର୍ବଧର୍ମ ମନ୍ଦିର ପରିଚାଳନା ସଂସ୍ଥା ପକ୍ଷରୁ ''ବାକ୍ ଶ୍ରୀ'' ଉପାଧିରେ ଭୂଷିତ କରାଗଲା ।

ଏ ସଭାରେ ଅନ୍ୟ ଜଣେ ବିଶିଷ୍ଟ ବ୍ୟକ୍ତି ପଦ୍ମଶ୍ରୀ ମୁଥିଆ ସ୍ଥପତିଙ୍କୁ ମଧ୍ୟ ସମ୍ମାନିତ କରାଗଲା । ଏ ମହାଶୟଙ୍କର ପରିଚୟ ସଂପର୍କରେ ମୁଁ ପୂର୍ବରୁ ସୂଚନା ଦେଇଚି । ଶ୍ରୀ ମୁଥିଆ ଭାରତର ଚେନ୍ନାଇ (ମାନ୍ଦ୍ରାଜ) ଅଧିବାସୀ ଏବଂ ବୃତ୍ତିରେ ସେ ଜଣେ ସ୍ଥାପତ୍ୟ ବିଜ୍ଞାନ (ଆର୍କିଟେକ୍ଟ) ବିଶାରଦ ସ୍ଥପତି । ଏ ମହାଶୟ ଭାରତ ଏବଂ ଭାରତ ବାହାରେ ଆମେରିକା ସମେତ ବିଭିନ୍ନ ଦେଶରେ ଅନ୍ୟୁନ ୮୦ (ଅଶି)ଟି ହିନ୍ଦୁମନ୍ଦିର ନିର୍ମାଣ କରିସାରିଛନ୍ତି । ଜଣେ ଶୁଦ୍ଧ ସରଳ ବିନୟୀ ବ୍ୟକ୍ତି ପଦ୍ମଶ୍ରୀ ମୁଥିଆଙ୍କ ପରିଚୟ ପାଇ କୃତାର୍ଥ ଅନୁଭବରେ ମୋର ପ୍ରାଣ ପୂରିଗଲା । ଏହି ମହାନ୍ ବ୍ୟକ୍ତିଙ୍କୁ ସମ୍ମାନିତ କରିବା ଦାୟିତ୍ୱ ମନ୍ଦିର କର୍ତ୍ତୃପକ୍ଷ ମୋତେ ଅର୍ପଣ କରିବା ଯୋଗୁ ମୁଁ ଆହୁରି ଗୌରବାନ୍ୱିତ ହେଲି ।

ମନ୍ଦିରରେ ସଭା ଅନ୍ତେ ଆମେ ସେଠାରେ ଉପସ୍ଥିତ କେତେଜଣ ଓଡ଼ିଆ ଅଣଓଡ଼ିଆ ପ୍ରବାସୀ ଭାରତୀୟଙ୍କୁ ଭେଟି ଆଳାପ ଆଲୋଚନା କଲୁ । ସେମାନଙ୍କ ଭିତରେ ଥିଲେ ଖୋର୍ଦ୍ଧାର ଶ୍ରୀ ଶରତ ପ୍ରହରାଜ ଓ ଶ୍ରୀମତୀ ମିନି ପ୍ରହରାଜ । ଶ୍ରୀ ପ୍ରହରାଜ ସ୍ଥାନୀୟ "ନାସା" ମହାକାଶ ଗବେଷଣା କେନ୍ଦ୍ରର ଇଂଜିନିୟର୍ । ସେମାନଙ୍କ ସହିତ କଥାବାର୍ତ୍ତାରୁ ବୁଝିଲି ଏଇ ହଣ୍ଟସ୍‌ଭିଲ୍ ଜଗନ୍ନାଥ ମନ୍ଦିର ନିର୍ମାଣରେ ସେମାନଙ୍କର ମଧ୍ୟ ବହୁ ଅବଦାନ ରହିଚି । ତେବେ ମନ୍ଦିର ନିର୍ମାଣ ଦିଗରେ ଏମାନଙ୍କର ଅବଦାନକୁ ସେଭଳି ଗୁରୁତ୍ୱ ଦିଆନଯିବା କାରଣରୁ ସେମାନେ ଅସନ୍ତୁଷ୍ଟ ।

ହଣ୍ଟସ୍‌ଭିଲ୍‌ରେ ଆହୁରି କେତେଜଣ ପ୍ରମୁଖ ଓଡ଼ିଆ ପ୍ରବାସୀ ବାସକରନ୍ତି । ସେମାନଙ୍କର ମଧ୍ୟ ଏଠାର ଜଗନ୍ନାଥ ମନ୍ଦିର ନିର୍ମାଣ ଦିଗରେ ଢେର୍ ଅବଦାନ ରହିଚି । ସେଭଳି ଜଣେ ମୁଖ୍ୟ ପ୍ରବାସୀ ଓଡ଼ିଆ ହେଲେ ଡକ୍ଟର ଦେବୀ ପ୍ରସାଦ ମିଶ୍ର । ଡଃ ମିଶ୍ର ହେଲେ ଓଡ଼ିଶାର ପ୍ରସିଦ୍ଧ ନ୍ୟାୟାଧୀଶ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ରଙ୍କ ପୁତ୍ର । ସେ ଓ ତାଙ୍କର ପତ୍ନୀ ସରଳା ମିଶ୍ର ମୋର ପୂର୍ବପରିଚିତ । ଡଃ ମିଶ୍ର ଜଣେ ପ୍ରବୀଣ ଚିକିତ୍ସକ ଏବଂ ବହୁବର୍ଷ ପୂର୍ବରୁ ସେ ଆମେରିକା ଆସିଚନ୍ତି ଓ ଚିକିତ୍ସା ବିଦ୍ୟାରେ ଉଚ୍ଚତର ବିଶ୍ୱବିଦ୍ୟାଳୟ ଡିଗ୍ରୀ ଲାଭକରି ଏଇ ହଣ୍ଟସ୍‌ଭିଲ୍‌ରେ ପ୍ରାକ୍ଟିସ୍ କରିଆସୁଚନ୍ତି ।

ସେଦିନ ଅପରାହ୍ଣରେ ଆମେ ଡକ୍ଟର ଭାଗବତ ଚନ୍ଦ୍ର ସାହୁ ଓ ତାଙ୍କ ପତ୍ନୀ ଶ୍ରୀମତୀ ପୁଷ୍ପା ସାହୁଙ୍କ ଘରେ ମଧ୍ୟାହ୍ନ ଭୋଜନ କଲୁ । ସନ୍ଧ୍ୟାରେ ଫ୍ରାଙ୍କଲିନ ଫେରିଲୁ ।

ଏହି ସାହୁ ପରିବାର ଶ୍ରୀ ଜଗନ୍ନାଥଙ୍କ ପ୍ରତି ସଂପୂର୍ଣ୍ଣ ସମର୍ପିତ । ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ ଏଇ ଜଗନ୍ନାଥପ୍ରେମୀ ପରିବାରଟି ଆମେରିକାର ଦାକ୍ଷିଣାତ୍ୟ ରାଜ୍ୟ ଆଲାବାମାର ରାଜଧାନୀ ସହର ହଣ୍ଟସ୍‌ଭିଲ୍‌ରେ ନିର୍ମିତ ସେଇ ବିଶାଳ ଜଗନ୍ନାଥ (ସର୍ବଜନ) ମନ୍ଦିର ପ୍ରତିଷ୍ଠାର ମୂଳ ପ୍ରେରଣାର ଉତ୍ସ ଏବଂ ନ୍ୟାସ୍‌ଭିଲ୍ ସହରରେ ୧୯୯୩ରେ ଆରମ୍ଭ ହୋଇଥିବା "ଜଗନ୍ନାଥ ସୋସାଇଟି ଅଫ୍ ଆମେରିକାଜ୍"ର ରଥଯାତ୍ରା ଉତ୍ସବର ପ୍ରାଣପ୍ରତିଷ୍ଠା ଦିଗରେ ଏମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ ।

## ପ୍ରତୀକର ଗ୍ରାଜୁଏସନ୍ ଉତ୍ସବ

ଫ୍ରାଙ୍କ୍‌ଲିନ୍, ତା. ୨୯ ଜୁଲାଇ, ୨୦୦୬–

ବହୁ ପ୍ରତୀକ୍ଷିତ ଦିନଟି ଶେଷରେ ପହଞ୍ଚିଲା । ଏଥରର ଆମ ଆମେରିକା ଭ୍ରମଣର ପ୍ରଧାନ ଉଦ୍ଦେଶ୍ୟ ଫଳବତୀ ହେବାର ଶୁଭ ମୁହୂର୍ତ୍ତଟି ଶେଷରେ ହାତପାହାନ୍ତିରେ ପହଞ୍ଚିଲା । ସେଇଟି ହେଲା ନାତି ପ୍ରତୀକର ''ହାଇସ୍କୁଲ୍ ଗ୍ରାଜୁଏସନ୍'' ଉତ୍ସବ । ପୂର୍ବରୁ କହିଚି ଏ ଦେଶରେ ପିଲାଙ୍କ ସ୍କୁଲ ଶିକ୍ଷାକୁ ସାମାଜିକ ସ୍ତରରେ ବହୁ ଉଚ୍ଚମର୍ଯ୍ୟାଦା ଦିଆଯାଏ । ତେଣୁ ପିଲାଟି ହାଇସ୍କୁଲ୍ ଶିକ୍ଷା ଶେଷକରିବାକୁ ଏ ଦେଶରେ ପରିବାର ପକ୍ଷରୁ ବିଶେଷ ଗୁରୁତ୍ୱ ଦିଆଯାଏ, ଯେମିତି ଆମ ଦେଶରେ ବ୍ରାହ୍ମଣ ପିଲାଙ୍କ ବ୍ରତୋପନୟନକୁ ଏକ ସଂସ୍କାର କର୍ମକର୍ମାଣି କରାଯାଏ ଓ ବଡ ଧରଣର ବିଚାରରୁ ସାମାଜିକ ବନ୍ଧୁମିଳନ ହୁଏ ।

ପ୍ରତୀକ ଏବର୍ଷ ସ୍ଥାନୀୟ ଫ୍ରାଙ୍କ୍‌ଲିନ୍ ହାଇସ୍କୁଲ୍‌ରୁ ତାର ବାରବର୍ଷର ଶିକ୍ଷା ସମାପ୍ତ କଲା । ଆମ ଦେଶରେ ବର୍ତ୍ତମାନ ପ୍ଲସ୍ ଟୁ କୋର୍ସ ଯାହା ସେଠି ଆମେରିକାରେ ହାଇସ୍କୁଲ୍ ପାଠ ସେଇଆ– ଯା' ପରେ ବିଶ୍ୱଦ୍ୟାଳୟ ଶିକ୍ଷାରମ୍ଭ । ତେବେ ସବୁ ପିଲାଙ୍କ ପାଇଁ ଉଚ୍ଚଶିକ୍ଷା ଆମ ଭାରତ ପରି ଏତେ ସହଜ ନୁହେଁ ଏ ଦେଶରେ । ଏକେତ ଉଚ୍ଚଶିକ୍ଷା ଆର୍ଥିକ ଦୃଷ୍ଟିରୁ ବେଶ୍ ମହଙ୍ଗା, ପୁଣି ଅଧିକାଂଶ ବାପା ମା' ଚାହାନ୍ତିନାହିଁ ଖର୍ଚ୍ଚାନ୍ତ ହେଇ ପିଲାଙ୍କୁ ଅଧିକ ପାଠପଢେଇବାକୁ । ତା'ଛଡା ଏ ଦେଶର ଆଇନ୍ ଅନୁସାରେ ପିଲାକୁ ଅଠର ପୂରିଗଲେ ସେ ସ୍ୱାଧୀନ– ବାପାମା ଆଉ ସେମାନଙ୍କ ମତ ଜାହିର କରି ପାରିବେ ନାଇଁ ପିଲାଙ୍କ ରୁଚି ଉପରେ । ତେଣୁ ବାପମା' ପିଲାର ଭାଗ୍ୟଡୋରିକୁ ଆଉ ହାତରେ ଭିଡି ନଧରି ହୁଗୁଳା କରିଦିଅନ୍ତି । ଯା'ପରେ ଆମେରିକାନ୍ ପିଲା ସ୍ୱାଧୀନ ! ସେ ଯାହା ଚାହିଁବ ଆକ୍ଷରିକ ଅର୍ଥରେ ତା' କରିବ ।

ଆମର ପ୍ରତୀକ ତଥାପି ତାର ଭାରତୀୟ ପରମ୍ପରାରୁ ବାହାରି ଯାଇ ନଥିଲା । ତାର ଉଚ୍ଚତର ଶିକ୍ଷାର ବ୍ୟବସ୍ଥା କରାସରିଥାଏ । ନିଜ ମେରିଟ୍ ଅନୁସାରେ ସେ ଆମେରିକାର କେତେକ ଭଲ ଭଲ ଟେକ୍‌ନିକାଲ୍ ବିଶ୍ୱବିଦ୍ୟାଳୟରେ ନାମ ଲେଖେଇବା ପାଇଁ କଲ୍ ଲେଟର୍ ପାଇଥାଏ । ସେ ସବୁ ଭିତରୁ ତାର ପସନ୍ଦଯୋଗ୍ୟ ହେଇଥାଏ ଆଟ୍‌ଲାଣ୍ଟାର ଜର୍ଜିଆ ଟେକ୍ ବିଶ୍ୱବିଦ୍ୟାଳୟ । ଆଗାମୀ ଅକ୍ଟୋବରରେ ସେଠି ନାମ ଲେଖେଇବା ବ୍ୟବସ୍ଥା କରାଯାଇଥାଏ । ସେଇ ଅବସରରେ ବହୁ ପ୍ରତୀକ୍ଷିତ ଗ୍ରାଜୁଏସନ୍ ଉତ୍ସବର ଆୟୋଜନ ହୋଇଥାଏ ।

ଉତ୍ସବ ଉପଲକ୍ଷେ ପରିବାରର ସଂପର୍କିତ ବନ୍ଧୁବାନ୍ଧବମାନେ ଦୂରଦୂରାନ୍ତ ସହରରୁ ଆସି ପ୍ରବୀରଙ୍କ ଫ୍ରାଙ୍କ୍‌ଲିନ୍ ଘରେ ଠୁଳ ହେଇସାରିଥାନ୍ତି । ତା'ଛଡା ପ୍ରତୀକର ସ୍କୁଲ୍

ଶିକ୍ଷକମାନେ– ପ୍ରାଥମିକଠାରୁ ହାଇସ୍କୁଲ୍ ଯାକେ ଯେଉଁମାନେ ତାର ଶିକ୍ଷକ ଥିଲେ– ଏ ଉତ୍ସବରେ ଯୋଗଦେବାକୁ ସମସ୍ତେ ଆସିଥାନ୍ତି । ତାର ବହୁ ସହପାଠୀ, ଶୁଭେଚ୍ଛୁ ଗୁଣଗ୍ରାହୀ ବନ୍ଧୁ ଓ ବାନ୍ଧବୀମାନେ ବହୁସଂଖ୍ୟାରେ ପହଞ୍ଚି ଯାଇଥାନ୍ତି । ସେମାନଙ୍କ ଭିତରେ ବିଶେଷ ଉଲ୍ଲେଖନୀୟ ହେଲେ ଜଣେ ଆମେରିକାନ୍ ଭଦ୍ରଲୋକ ମିଃ. ମାର୍କ ପେରୀ । ଏ ମହାଶୟ ପ୍ରତୀକର ସଂଗୀତ ଶିକ୍ଷକ । ସେ ତାକୁ ୱେଷ୍ଟର୍ଣ୍ଣ ସଂଗୀତ ପଦ୍ଧତିରେ ତାଲିମ୍ କରାଇଥିଲେ । ପ୍ରତୀକ ଜଣେ "ଜାଜ୍" ଗାୟକ । ତାର କଣ୍ଠସ୍ୱରରେ କିଛି ବିଶେଷତ୍ୱ ଲକ୍ଷ୍ୟ କରି ମାର୍କ ପେରୀ ତାକୁ ସ୍ୱତନ୍ତ୍ରଭାବେ ଟ୍ରେନିଂ ଦେଇଥିଲେ ଆମେରିକାର ପ୍ରସିଦ୍ଧ "ଗ୍ରାମୀ-ପୁରସ୍କାର" ଉତ୍ସବରେ ଗୀତ ବୋଲିବା ପାଇଁ, ପ୍ରତିବର୍ଷ ଦେଶବ୍ୟାପୀ ଯେଉଁ ପ୍ରତିଯୋଗିତା କରାଯାଏ ସେଇ ପ୍ରତିଯୋଗିତାରେ ଯୋଗଦେବା ପାଇଁ । ଏଠାରେ ଉଲ୍ଲେଖନୀୟ– ପ୍ରତୀକ ୨୦୦୫ ଓ ୨୦୦୬ ଦୁଇବର୍ଷ ଲାଗଲାଗ ଏ ପ୍ରତିଯୋଗିତାରେ କୃତିତ୍ୱ ହାସଲ କରିପାରିଥିଲା । କାଲିଫର୍ଣ୍ଣିଆର ଲସ୍‌ଆଂଜେଲେସ୍ ସହରରେ ଅନୁଷ୍ଠିତ ଗ୍ରାମୀ ପୁରସ୍କାର ଉତ୍ସବରେ ସେ ଏକକ (ସୋଲୋ) ଏବଂ ସମବେତ (କୋରସ୍) କଣ୍ଠଶିଳ୍ପୀ ଭାବେ ସଂଗୀତ ପରିବେଷଣ କରିବାର ଗୌରବ ହାସଲ କରିସାରିଥିଲା । ଏ ଉତ୍ସବର କାର୍ଯ୍ୟକ୍ରମ ଟିଭି ଏବଂ ଅନ୍ୟାନ୍ୟ ଗଣ ମାଧ୍ୟମ ଜରିଆରେ ସାରା ଆମେରିକାରେ ପରିବେଷଣ ହେବା ଫଳରେ ପ୍ରତୀକ ଦାଶ ଜଣେ ଉଦୀୟମାନ୍ କଣ୍ଠଶିଳ୍ପୀ ସଂଗୀତଜ୍ଞ ଭାବେ ଦେଶବ୍ୟାପୀ ପରିଚିତ ହୋଇସାରିଥିଲା । ତାର ଗୀତର ସିଡି ବଜାରରକୁ ଆସିଯାଇଥାଏ । ଏହା ବ୍ୟତୀତ "ୟୁ ଟ୍ୟୁବ୍"ଭଳି କେତେକ ଇଣ୍ଟରନେଟ୍ ୱେବ୍ ପେଜ୍‌ରେ ମଧ୍ୟ ତାର ବିସ୍ତୃତ ପରିଚୟ ସହିତ କେତେକ ସଂଗୀତ ପ୍ରକାଶିତ ହୋଇଥାଏ ।

ଆଜିର ସଂବର୍ଦ୍ଧନା ସଭା ପାଇଁ ସ୍ଥାନୀୟ "କଲେଜ ଗ୍ରୋଭ୍ ହାଇସ୍କୁଲ" ଅଡିଟୋରିୟମ୍ ନିର୍ଦ୍ଧାରିତ ହୋଇଥାଏ । ଦିନମାନ ଲାଗି ଆମର ଅନ୍ୟ ଦୁଇ ନାତି ଅମୃତ ଓ ମନୀଶ ଏବଂ ପ୍ରତୀକର ସାଙ୍ଗମାନେ ସଜେଇ ଥା'ନ୍ତି ବହୁ ପରିମାଣର ରଙ୍ଗୀନ୍ ଫୁଲ, ଫେଷ୍ଟୁନ୍ ଓ ଆଲୋକମାଳାରେ । ସନ୍ଧ୍ୟାବେଳେ ସଂବର୍ଦ୍ଧନା ସଭା ଯଥାବିଧି ଅନୁଷ୍ଠିତ ହେଲା । ଅଭିଭାବକ, ବନ୍ଧୁ ଏବଂ ବହୁ ଶୁଭେଚ୍ଛୁଙ୍କ ଘଣ୍ଟା ବ୍ୟାପୀ ଶୁଭେଚ୍ଛା ପ୍ରଦାନ ବକ୍ତୃତା ପରେ ବେଶ୍ କିଛି ସମୟ ସଂଗୀତ ଆସର ଚାଲିଲା । ଶେଷରେ ଡିନର୍ ! ଏ ଡିନର୍ ପାଇଁ ନ୍ୟାସଭିଲ୍‌ର ଗୋଟିଏ ନାମୀ ଇଣ୍ଡିୟାନ୍ ରେସ୍ତରାଁକୁ ବରାଦ ଦିଆଯାଇଥିଲା । ଡେର୍ ଡେରି ରାତି ପର୍ଯ୍ୟନ୍ତ ଡିନର୍ ଚାଲିଲା । ବହୁ ହସ ଖୁସି ଗପସପ ଥଟ୍ଟା ପରିହାସର ବାତାବରଣ ଭିତରେ ପ୍ରତୀକର ବହୁ ପ୍ରତୀକ୍ଷିତ ଗ୍ରାଜୁଏସନ୍ ଉତ୍ସବ ସେଦିନ ବିଳମ୍ବିତ ରାତିରେ ସମାପ୍ତ ହେଲା ।

## ବଲ୍‌ଟିମୋର୍ (ମେରିଲ୍ୟାଣ୍ଡ) ଯାତ୍ରା

ତା ୭ ଅଗଷ୍ଟ ୨୦୦୬– ଜୁନ୍ ତିରିଶ ତାରିଖରେ ଆମେ ଭାରତରୁ ଆସି ପହଞ୍ଚିଥିଲୁ ବଡଝିଅ ବୁଲବୁଲ ଘରେ, ଫ୍ରାଙ୍କ୍‌ଲିନ୍, (ଟେନିସୀ)ରେ । ଯା'ପରେ ପାଳି ପଡିଲା ସାନଝିଅ ଜୋଇଁ ଜୁଲି ଓ ଅଭିଜିତ୍‌ଙ୍କର । ସେଠିକାର ବଡ ଆକର୍ଷଣ ହେଲେ– ଦୁଇ ନାତୁଣୀ ଅଙ୍କିତା ଓ ଅପର୍ଣ୍ଣା (ଆନୁ) । ଆଜି ସନ୍ଧ୍ୟାରେ ନ୍ୟାସ୍‌ଭିଲ୍ ବିମାନବନ୍ଦରରୁ ମୋର ପ୍ଲେନ୍ ଧରିବା କଥା ବଲ୍‌ଟିମୋର୍‌କୁ । ଦୁଇଦିନ ଆଗରୁ ନିରୁପମାଙ୍କୁ ଜୁଲି ଅଭିଜିତ୍ ଆସି ନେଇଯାଇଥିଲେ ଫ୍ରାଙ୍କ୍‌ଲିନ୍‌ରୁ ସେମାନଙ୍କ କାର୍‌ରେ ବଲ୍‌ଟିମୋର୍ । ସେମାନେ ପ୍ରତୀକର ଗ୍ରାଜୁଏସନ୍ ଉତ୍ସବରେ ଯୋଗଦେବାକୁ ଏଠାକୁ ଆସିଥିଲେ ଗଲା ସପ୍ତାହରେ । ବଲ୍‌ଟିମୋର୍‌ରୁ ଫ୍ରାଙ୍କ୍‌ଲିନ୍– ନ'ଦଶଘଣ୍ଟା ଡ୍ରାଇଭିଂ ! ପ୍ରାୟ ହଜାରେ ବାରଶହ କିଲୋମିଟର ।

ସନ୍ଧ୍ୟା ସାଢେପାଞ୍ଚରେ ମୁଁ ନ୍ୟାସ୍‌ଭିଲ୍ ଏୟାର୍‌ପୋର୍ଟରେ ପ୍ଲେନ୍ ଧରିଲି । ଘଣ୍ଟାଏ ପଞ୍ଚଚାଳିଶ ମିନିଟ୍‌ର ଉଡାଣ । କିନ୍ତୁ ମଝିରେ ଖବର ମିଳିଲା ବଲ୍‌ଟିମୋର୍ ଅଞ୍ଚଳରେ ପ୍ରବଳ ଝଡତୋଫାନ୍ । ତେଣୁ ପ୍ଲେନ୍ ବାଟ ଭାଙ୍ଗି ଲ୍ୟାଣ୍ଡ କଲା ନର୍ଥକାରୋଲିନାରେ । ସେଠି ଦୁଇ ଅଢେଇ ଘଣ୍ଟା ଅପେକ୍ଷା ପରେ ପ୍ଲେନ୍‌କୁ ଅନୁମତି ମିଳିଲା ଆଗେଇବାକୁ । ବଲ୍‌ଟିମୋର୍ ବିମାନବନ୍ଦରରେ ଅଭିଜିତ ଅପେକ୍ଷା କରିଥିଲେ ମତେ ପାଛୋଟିନେବାକୁ । ତାଙ୍କ ଘରେ ପହଞ୍ଚୁ ପହଞ୍ଚୁ ରାତି ସାଢେ ଦଶ ।

ଜୁଲି ଅଭିଜିତ୍ ଏଇଲେ ରହୁଚନ୍ତି ଗୋଟିଏ ଭଡାଘରେ– ବଲ୍‌ଟିମୋର୍ ସହରର "Elk Ridge" ଅଂଚଳର ଏକ ନୂଆକରି ଗଢିଉଠୁଥିବା କଲୋନିରେ । ଏ ଅଂଚଳର ନାଁ "ଏଲ୍‌କ୍ ରିଜ୍" । ଶୁଣିଲା ପରେ ଜାଣିଲି– ଏ ଜାଗା ପୂର୍ବରୁ ନିଶ୍ଚୟ ଏକ ଅରଣ୍ୟ ଥିଲା ଯୋଉଠି ବଡବଡ ହରିଣଜାତୀୟ ପ୍ରାଣୀ ଅର୍ଥାତ୍ "ମୁଜ"ମାନଙ୍କ ଭଳି ଏଇ ଏଲକ୍‌ମାନଙ୍କ ବାସସ୍ଥଳୀ ଥିଲା । ତା'ମାନେ ସେଠି ନିଶ୍ଚୟ ବଣଜଙ୍ଗଲରେ ଏଇଲେ ବି ସେ ଜନ୍ତୁମାନେ ତଥାପି ରହୁଥିବେ । ସକାଳ ହେଲେ ସ୍ଥାନଟିର ଆଖପାଖ ବଣ ଜଙ୍ଗଲ ବୁଲି ଦେଖିବାକୁ ମନେମନେ ଭାବିନେଲି । ଅଧରାତି ପର୍ଯ୍ୟନ୍ତ ପିଲାମାନଙ୍କ ସାଙ୍ଗେ ଗପସପ ହସଖୁସିରେ କଟିଲା ।

ବଡ ନାତୁଣୀ ଅଙ୍କିତାର ବୟସ ଏଇଲେ ବାର । ସେ ବଡହେଇଗଲାଣି । ଓଡିଶୀନୃତ୍ୟରେ ତାର ରୁଚି ପ୍ରକଟିତ ହେବାରୁ ଜୁଲି ତାକୁ ଗୋଟିଏ ଡ୍ୟାନ୍ସ ସ୍କୁଲ୍‌ରେ ଭର୍ତ୍ତି କରିଦେଇଚି । ସେ ସ୍କୁଲରେ ନୃତ୍ୟ ଶିଖାନ୍ତି ଜଣେ ଭାରତୀୟ ଭଦ୍ରମହିଳା ଯେ ଓଡିଶୀନୃତ୍ୟ ଶିକ୍ଷାକରିଥିଲେ ନୃତ୍ୟଗୁରୁ କେଳୁଚରଣ ମହାପାତ୍ରଙ୍କ ଭୁବନେଶ୍ୱର ଅନୁଷ୍ଠାନରୁ ।

ବଲ୍‌ଟିମୋର୍ ଆମେରିକାର ପୂର୍ବ ଉପକୂଳର ମେରିଲ୍ୟାଣ୍ଡ ରାଜ୍ୟର ଏକ ବିଶାଳ ମେଟ୍ରୋପଲିସ୍ । ଏହାର ଅବସ୍ଥିତି ଆଟ୍‌ଲାଣ୍ଟିକ୍ ମହାସାଗରର "ଚେସାପେକୋ ଉପସାଗର"

ରେ ପଡିଥିବା ଏକ କୁଆରିଆ ନଦୀ ମୁହାଣରେ । ଏ ଏକ ପ୍ରକାଣ୍ଡ ଓସାରିଆ ଓ ଗହୀରିଆ ନଦୀ । ନଦୀର ନାଁ ''ପଟାପାକୋ'' । ଚେସାପେକୋ, ପଟାପାକୋ ଇତ୍ୟାଦି ନାମକରଣରୁ ସ୍ପଷ୍ଟ ବୁଝାଯାଏ ପୂର୍ବେ ଏ ସବୁ ଅଂଚଳ ଥିଲା ଏ ଦେଶର ମୂଳ ଅଧିବାସୀ ଲୋହିତ ଭାରତୀୟଙ୍କ ବାସସ୍ଥାନ । ସେ ସବୁ ଲୋକମାନେ ବର୍ତ୍ତମାନ ଆଉ ଏ ଅଂଚଳରେ କ'ଣ ସାରା ଆମେରିକାର କେତେକ କ'ଣବାଡିଆ ବଣଜଙ୍ଗଲ ବା ଅଗମ୍ୟ ପାହାଡିଆ ଜାଗା ଛଡା ସେମାନଙ୍କୁ କ୍ୱଚିତ୍ କୋଉଠି ଦେଖିବାକୁ ମିଳେ । କିନ୍ତୁ ସେମାନେ ଯେ ଦିନେ ଆଜିର ଏଇ ପୂର୍ବ ଉପକୂଳର ବଲ୍‌ଟିମୋର୍, ୱାସିଂଟନ୍ ଭଳି ପ୍ରମୁଖ ଧନାଢ୍ୟ ଅଂଚଳମାନଙ୍କରେ ବସବାସ କରୁଥିଲେ ତାର ପ୍ରମାଣ ରହିଯାଇଚି ଏଇ ସବୁ ନଦୀ ହ୍ରଦ ସମୁଦ୍ର ଅରଣ୍ୟ ଏବଂ ପାର୍ବତ୍ୟ ସ୍ଥାନମାନଙ୍କର ନାମ ଭିତରେ ।

ବଲ୍‌ଟିମୋର୍ ସହର ପ୍ରତିଷ୍ଠା ପାଇଥିଲା ୟୁରୋପରୁ ଆଗତ ଗୋରା ଉପନିବେଶ-ବାଦୀମାନଙ୍କ ଆଗମନ ପରେ ଖ୍ରୀ: ୧୭୨୯ରେ । ଏହାର ପ୍ରତିଷ୍ଠାତା ଲର୍ଡ ବଲ୍‌ଟିମୋର୍ ଜଣେ ଆୟାର୍‌ଲ୍ୟାଣ୍ଡ ନିବାସୀ । ୟୁରୋପରୁ ଆଗତ ବିଦେଶୀମାନେ ପୂର୍ବ ଉପକୂଳର ଯେଉଁ ସବୁ ପ୍ରଧାନ ପ୍ରଧାନ ସ୍ଥାନକୁ ଉପନିବେଶ ପାଇଁ ବାଛିଥିଲେ ସେସବୁ ଭିତରେ ବଲ୍‌ଟିମୋର୍ ଥିଲା ସେମାନଙ୍କର ଦ୍ୱିତୀୟ ମନୋନୀତ ପ୍ରବେଶ ସ୍ଥଳ । ମାତ୍ର ଦୁଇଶହ ବର୍ଷ ଭିତରେ ଏ ସହର ପାଲଟିଥିଲା ଆମେରିକାର ସର୍ବ ବୃହତ୍ ବାଣିଜ୍ୟ ଏବଂ ସାଂସ୍କୃତିକ କେନ୍ଦ୍ରାଞ୍ଚଳ ।

ସହରଟା ଏତେ ବଡ ଯେ ଏହାକୁ ଦିନେ ବା ସପ୍ତାହେ, ଏପରିକି ମାସକ ଭିତରେ ବୁଲି ଦେଖିବା ଥିଲା ଜଣେ ଅନୁସନ୍ଧିତ୍ସୁ ପର୍ଯ୍ୟଟକ ପକ୍ଷରେ ବିଡମ୍ବନା ମାତ୍ର । ତେଣୁ ସ୍ଥିର କରିନେଲି ପ୍ରତିଦିନ କିଛି ସମୟ ପାଇଁ ଏହାର ଚତୁଃସୀମା ପରିକ୍ରମା ସହିତ କିଛିକିଛି ମୁଖ୍ୟ ଅନୁଷ୍ଠାନ ବୁଲି ଯାହା କିଛି ଜ୍ଞାନ ଅର୍ଜନ କରିହେବ ସେତିକିରେ ସନ୍ତୁଷ୍ଟ ରହିବା ପାଇଁ । ଏ ଭ୍ରମଣ କାର୍ଯ୍ୟରେ ସହାୟକ ପୁଣି ହେବେ କିଏ ? ଏ ସହରକୁ ନୂଆ କରି ଆସି କର୍ମ ସଂସ୍ଥାନ ପାଇଁ ଏଠାର ପ୍ରଧାନ ବିଶ୍ୱବିଦ୍ୟାଳୟ ମେରିଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟର କେମିଷ୍ଟ୍ରି ବିଭାଗରେ ପୋଷ୍ଟ୍ ଡକ୍ଟରେଟ୍ ଗବେଷଣା ଆରମ୍ଭ କରିଥିବା ଝିଅ ଜୋଇଁ । ସକାଳ ପହରୁ ସନ୍ଧ୍ୟା ପର୍ଯ୍ୟନ୍ତ ଚାକିରି ଖଟୁଥିବା ପିଲା ଦୁହେଁ ଯେତିକି ବଳକା ସମୟ ପାହାନ୍ତିରେ ପାଆନ୍ତି ସେଇ ସମୟ ଭିତରେ ଆମର ସହର ବୁଲା ଯେତିକି ସଂଭବ ସେଇ ହେଲା ଏ ବିଶାଳ ସହର ସଂପର୍କରେ ଆମର ଜ୍ଞାନଲାଭର ସୁଯୋଗ ।

ସେଇ ସୁଯୋଗ କ୍ରମେ ଆମେ ପ୍ରଥମେ ବୁଲି ବାହାରିଲୁ ସେମାନଙ୍କର କର୍ମସ୍ଥଳ ମେରିଲାଣ୍ଡ ବିଶ୍ୱଦ୍ୟାଳୟ ଦେଖିବାକୁ ସେଦିନ । ଘରୁ ବାହାରି ହାଇଓ୍ୱରେ ଅନେକ ବାଟ ଯିବା ପରେ ବାଟରେ ପଡେ ଏକ ବଡ ନଦୀ– ଯାହା ଭିତରେ ବହୁ ସଂଖ୍ୟାରେ ଜାହାଜ ଚଳ-ପ୍ରଚଳ ହେବା ଦେଖି ଆମେ ଜାଣିପାରିଲୁ ଏଇ ନିଶ୍ଚୟ ସେଇ ପଟାପାକୋ

ନଦୀ ଯାହା ବିଷୟରେ ଶୁଣିଥିଲୁ ଆଗରୁ । ନଦୀ ଉପର ପୋଲ ପାରି ହେଲାବେଳେ ମନେପଡିଲା ପୂର୍ବ ଥର ୨୦୦୩ରେ ଆମେରିକା ଭ୍ରମଣ ବେଳେ ଆମେ ହୁଏତ ଏଇ ପୋଲ ପାରିହେଇ ଅଭିଜିତ୍‌ଙ୍କ କାର୍‌ରେ ଡ୍ରାଇଭ କରିଥିଲୁ ନ୍ୟୁଜର୍ସିରୁ ଓସିଂଟନ । ସେତେବେଳେ ଜୁଲି ଅଭିଜିତ ଚାକିରି କରୁଥିଲେ ନ୍ୟୁଜର୍ସିର ରଟଗର ୟୁନିର୍ଭସିଟିରେ । ଆମେରିକାର ପୂର୍ବ ଉପକୂଳର ଅଧିକାଂଶ ନଦୀ ସମୁଦ୍ର ମୁହାଣରେ ଏଇଭଳି ଅତି ବିଶାଳ ଏବଂ ଏ ସମସ୍ତ ନଦୀକୁ ପାରିହେବା ପାଇଁ ବିରାଟ ବିରାଟ ଆଧୁନିକ ବ୍ରିଜ ଏ ଦେଶର ପ୍ରଧାନ ସଂଯୋଯକ ଜୀବନ ନାଟିକା ।

ନଦୀ ପାରିହୋଇ ଆମ କାର୍ ମୁହେଁଇଇଲା ସହର ଭିତରକୁ । କ୍ରମଶଃ ଟ୍ରାଫିକ୍‌ର ମାତ୍ରା ଛଅ ଲେନ୍‌ରେ ରାସ୍ତାରେ ଘନେଇବାକୁ ଆରମ୍ଭ କଲା । ଜାଣିଲୁ ଆମେ ପଶିଲୁ ମେଟ୍ରୋପଲିସ୍‌ର ହୃତ୍‌ପିଣ୍ଡ ଅଂଚଳକୁ । ରାସ୍ତାର ଦୁଇ ପାଖରେ ବେଶ୍ ଛଡାଛଡାରେ ବିରାଟ ବିରାଟ ସ୍କାଇସ୍କ୍ରେପର୍‌ମାନ ମେଟ୍ରୋପଲିସ୍‌ର ସ୍କାଇଲାଇନ୍‌କୁ ସଂକୁଚିତ କରିବାରେ ଲାଗିଲା । ଏହାପରେ ମନେହେଲା ଆମେ ଏକ ଗୋଲକଧନ୍ଦାରେ ପଡିଚୁ । ବିଭିନ୍ନ ଦିଗକୁ ଖୋଲିଯାଇଥିବା ମାର୍ଗଗୁଡିକ ଭିତରୁ କୋଉଟିକୁ କିପରି ଚିହ୍ନଟ କରି ଅଭିଜିତ ନିର୍ଭୟରେ ଚାଲିଚନ୍ତି ଆଖିବୁଜା ତାହା ମତେ ''ଆଲିସ୍ ଇନ୍ ଦ ଓଣ୍ଡରଲ୍ୟାଣ୍ଡ୍'' ଗପର ବିସ୍ମୟକର ଅଭିଯାନ ଭଳି ଅନୁଭବ ଦେଲା ।

ହଠାତ୍ ଘୋଷଣା କଲେ ଅଭିଜିତ ଡ୍ରାଇଭିଂ ସିଟ୍‌ରୁ, ''ନନା ! ଏ ଅଂଚଳଟା ହେଲା ଡାଉନ୍ ଟାଉନ୍– ବଲ୍‌ଟିମୋର୍‌ର ଡାଉନଟାଉନ ! ଏଠି ଅଛି ଗୋଟିଏ ପ୍ରଧାନ ଦର୍ଶନୀୟଜାଗା କଣ ଜାଣନ୍ତି ?''

ଆମେ କାର ଝରକାରୁ ଏପାଖ ସେପାଖ ଉଣ୍ଡିଲୁ ।

''ଏଡଗାର୍ ଆଲାନ୍ ପୋ'ଙ୍କ କବରସ୍ଥଳ ଏଇଠି''– କହି ଅଭିଜିତ୍ କାର୍ ପାର୍କିଂ କଲେ ।

''କାହାର ?'' ବଡ ପାଟିରେ ପଚାରିଲି ଆଉଥରେ, ''ଏଡଗାର୍ ଆଲାନ୍ ପୋ' ?– ତୁମେ କହୁଚ Edgar Allan Poe ଙ୍କ ସମାଧିସ୍ଥଳ ଏଇଠି ?''

କାର୍‌ରୁ ଧଡପଡ ହେଇ ଓହ୍ଲେଇପଡିଲି– ମୋ ପଛେପଛେ ଅନ୍ୟ ସମସ୍ତେ । ସଦଳବଳେ ଚାଲିଲୁ ସେଇ ପବିତ୍ର ସାରସ୍ୱତ ପୀଠକୁ । ଅଙ୍କିତା ମୋ ହାତକୁ ଭିଡି ଧରିଥାଏ । ମୁହୂର୍ତ୍ତେ ବି ମତେ ଏକୁଟିଆ ଛାଡିଦେବାକୁ ଭରସିପାରୁନଥାଏ ସେ ଏଇ ଟ୍ରାଫିକଜାମ୍ ବଲ୍‌ଟିମୋର୍ ଡାଉନ୍ ଟାଉନ୍‌ରେ ।

## ଏଡଗାର୍ ଆଲାନ୍ ପୋ'ଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଂଜଳି

ପୋଙ୍କ କବରସ୍ଥଳ ଏକ ସୁରକ୍ଷିତ ହତା ଭିତରେ ଅବସ୍ଥିତ । ମାର୍ବଲ୍‌ର ଚଉତରା ଉପରେ ପୋଙ୍କ ଏକ ମାର୍ବଲ ପ୍ରତିକୃତି ସହିତ ପାଖକୁ ଲାଗି ତାଙ୍କ ପତ୍ନୀ ଭର୍ଜିନିଆ କ୍ଲେମ୍‌ଙ୍କ କବରସ୍ଥଳ ଓ ପ୍ରତିକୃତିକୁ ଲକ୍ଷ୍ୟକଲି । ପୋଙ୍କ ଷ୍ଟାଚ୍ୟୁ ତଳେ ଲେଖାଯାଇଥିଲା ଜନ୍ମ ୧୮୦୮ ଓ ମୃତ୍ୟୁ ୧୮୪୮ । ସୂଚନା ଅନୁସାରେ ସେ କେବଳ ଚାଳିଶ ବର୍ଷ ମାତ୍ର ବଞ୍ଚିଥିଲେ । ସେହିପରି ତାଙ୍କ ପତ୍ନୀ ଭର୍ଜିନିଆ କ୍ଲେମ୍‌ଙ୍କ ଜନ୍ମ ଓ ମୃତ୍ୟୁ ବର୍ଷ ଲେଖା ଥିଲା (୧୮୨୨-୧୮୪୭) । କ୍ଲେମ୍ ପୋଙ୍କ ଠାରୁ ୧୩ବର୍ଷ ସାନ ଥିଲେ ଓ ସଂପର୍କରେ ସେ ଥିଲେ ପୋଙ୍କ କକେଇ ବା ମାଉସୀଝିଅ ଭଉଣୀ । ଉଭୟ ସ୍ୱାମୀସ୍ତ୍ରୀ ଥିଲେ ସ୍ୱଳ୍ପାୟୁ । କ୍ଲେମ୍ ଯକ୍ଷ୍ମା ରୋଗରେ ମରିଥିଲେ । ଆଉ ପୋଙ୍କ ମୃତ୍ୟୁର କାରଣ କ'ଣ ତାହା ଏଯାଏଁ ଏକ ଅସମାହିତ ପ୍ରଶ୍ନ । କେହି କେହି କହନ୍ତି ସେ ଅତ୍ୟଧିକ ମଦ୍ୟପାନ କରୁଥିଲେ ଯାହା ତାଙ୍କ ମୃତ୍ୟୁର ଏକ କାରଣ ହୋଇଥାଇପାରେ । କିନ୍ତୁ ଗବେଷକମାନେ କହନ୍ତି ତାଙ୍କର ସେଇ ଅକାଳ ମୃତ୍ୟୁର କାରଣ ଅନ୍ୟ କିଛି ହୋଇଥାଇ ପାରେ ଯଥା– କୌଣସି ମସ୍ତିଷ୍କ ବ୍ୟାଧି ବା କୁକୁରକାମୁଡାରୁ ଜଳାତଙ୍କ ରୋଗ ଅଥବା ଆତ୍ମହତ୍ୟା !

ତେବେ ଏଡଗାର ଆଲାନ ପୋଙ୍କୁ ଜଗତ ମନେରଖିଚି ତାଙ୍କର ସ୍ୱଳ୍ପ ଜୀବନକାଳ ଭିତରେ ସେ ସୃଷ୍ଟିକରିଯାଇଥିବା ଏକ ଅଭିନବ କାବ୍ୟିକ ଚିନ୍ତନ ଶୈଳୀର ଜନକ ଭାବେ । ସେ ହିଁ ସବା ପ୍ରଥମେ ଗଳ୍ପସାହିତ୍ୟରେ ଅଦ୍‌ଭୁତ ଏବଂ ଅସଂଭବକୁ ମଣିଷ ଜୀବନର ମୌଳିକ ରସବୋଧର ଗୌରବ ପ୍ରଦାନ କରିଥିଲେ । ତାଙ୍କର ଲୋମହର୍ଷକ ମନସ୍ତାତ୍ତ୍ୱିକ ଗଳ୍ପଗୁଡିକ ପାଠକଲାବେଳେ ଏବେ ମଧ୍ୟ ଆଧୁନିକ ସାହିତ୍ୟର ପାଠକ ଏକ ଅନନ୍ୟ ରସରେ ଆପ୍ଲୁତ ହୋଇପଡେ । ଆତଙ୍କ (ହରର୍) ଏବଂ ମରଣ ତ୍ରାସ୍ (ଡ୍ରେଡ୍), ଯାହାକୁ ବିଶ୍ୱଯୁଦ୍ଧ ପରବର୍ତ୍ତୀ କାଳରେ ଆମେ ଅସ୍ତିତ୍ୱବାଦ ନାମରେ ସାହିତ୍ୟ ଚିନ୍ତନରେ ପ୍ରାଧାନ୍ୟ ଦେଇଆସିଚୁ, ତାର ଢେର୍ ବର୍ଷ ପୂର୍ବରୁ ଏଡଗାର୍ ଆଲାନ୍ ପୋ ଏହି ଅସ୍ତିତ୍ୱବାଦୀ ମାନବିକ ଅନୁଭବ ଗୁଡିକୁ ନିଜ କବିତା ଏବଂ ଗଳ୍ପରେ ରୂପାୟିତ କରିଥିଲେ । ସେ ଦୃଷ୍ଟିରୁ ପୋ ହିଁ ପରବର୍ତ୍ତୀ କାଳର ଏଲିଅଟ, କାଫ୍‌କା, କାମ୍ୟୁ, ସାର୍ତ୍ରେ ପ୍ରଭୃତିଙ୍କ ପୂର୍ବସୁରୀ ।

ପୋଙ୍କୁ ମଧ୍ୟ କୁହାଯାଏ ଆଜିର ଡିଟେକ୍ଟିଭ୍ ଉପନ୍ୟାସର ଜନ୍ମଦାତା, ଏବଂ ବୈଜ୍ଞାନିକ ଫିକ୍‌ସନ୍‌ର ପିତା । ତାଙ୍କୁ ପାଶ୍ଚାତ୍ୟ ସାହିତ୍ୟରେ ରହସ୍ୟବାଦ ଓ ନବ-ରୋମାଣ୍ଟିସିଜମ୍‌ର ପ୍ରତିଷ୍ଠାତାର ଗୌରବ ଦିଅନ୍ତି ସମାଲୋଚକମାନେ । ତାଙ୍କର "Tales of Mystery and Macabre"– ଏହି ଧାରାର ଗଳ୍ପ-ସାହିତ୍ୟ ପରମ୍ପରାର ପ୍ରଥମ ପଦକ୍ଷେପ । ତାଙ୍କର କବିତା ଗ୍ରନ୍ଥ– "Tamerlane and other Poems" (1927)କୁ ସେଇ ରହସ୍ୟବାଦୀ ଉଚ୍ଚାରଣର ଆଦ୍ୟ ସ୍ୱର ରୂପେ ଧରାଯାଏ ।

ଏଡଗାର ଆଲାନ୍ ପୋଙ୍କ ଜନ୍ମସ୍ଥାନ ଯୁକ୍ତରାଷ୍ଟ୍ର ଆମେରିକାର ଏକ ପ୍ରମୁଖ ସହର ବଷ୍ଟନ୍, ମାସ୍‌ଚ୍ୟୁସେଟ୍‌ସ୍‌ରେ । ଶୈଶବରୁ ପିତାମାତାଙ୍କ ବୈବାହିକ ବିଚ୍ଛେଦ ଏବଂ ପରେ ମାତୃବିୟୋଗ ଅନ୍ତେ ସେ ପିତୃମାତୃହୀନ ଶିଶୁଭାବେ ନିଃସହାୟ ହୋଇପଡିଥିଲେ । ପରେ ବଲ୍‌ଟିମୋର୍‌ରେ ରହୁଥିବା ଜଣେ ସଂପର୍କୀୟଙ୍କ ଆଶ୍ରିତ ଭାବେ ବଡହୋଇଥିଲେ । ଏଇ ପରିବାରର ସାଙ୍ଗିଆ ‘‘ଆଲାନ୍’’କୁ ଗ୍ରହଣ କରିଥିଲେ ନିଜ ପିତୃଦତ୍ତ ନାଁ ସହିତ । ତାଙ୍କର ଜୀବନକାଳର ମୁଖ୍ୟ ଭାଗ ବିତିଥିଲା ବଲଟିମୋର୍ ସହରରେ । ଏହି ସହରର ସେ ଉଚ୍ଚଶିକ୍ଷା ଲାଭକରିଥିଲେ । ଲେଖକ ଜୀବନରେ ସିଦ୍ଧିପ୍ରାପ୍ତ ହୋଇ ଏଇ ବଲ୍‌ଟିମୋର୍‌ରେ ଏବଂ ମାତ୍ର ଚାଳିଶବର୍ଷ ବୟସରେ ଶେଷନିଶ୍ୱାସ ତ୍ୟାଗ କରିଥିଲେ । ସହରର ଏକାଧିକ ଅଂଚଳରେ ବିଭିନ୍ନ ଘର ବଦଳେଇ ସେ ଜୀବନ ବିତେଇଥିଲେ । ତାଙ୍କର ଏକ ମାତ୍ର ଜୀବିକା ଥିଲା ସାହିତ୍ୟ । କେବଳ ବହି ଲେଖି ବିକ୍ରୀଲବ୍ଧ ଧନରେ ନିଜ ଜୀବିକା ଚଳାଇବାର ସଂକଳ୍ପ ନେଇ ଏକ ଆହ୍ୱାନପୂର୍ଣ୍ଣ ଜୀବନ ଯାପନ କରିଥିଲେ । ଯେଉଁ ସବୁ ଘରେ ସେ ସେତେବେଳେ ସାମୟିକ ବସବାସ କରିଥିଲେ ସେ ସମସ୍ତ ଗୃହ ବର୍ତ୍ତମାନ ବଲଟିମୋର ସହରର କୃତଜ୍ଞ ଜନସାଧାରଣଙ୍କ ଆର୍ଥିକ ଅନୁଦାନଦ୍ୱାରା ପରିଚାଳିତ ଏକ ଏକ ପୋ’ ସ୍ମାରକୀ ସଂଗ୍ରହାଳୟ ବା ମ୍ୟୁଜିୟମ୍ ।

## ମେରିଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟରେ ଝିଅ ଜୁଲିର କର୍ମସ୍ଥଳୀ

ଏଡଗାର ଆଲାନ୍ ପୋଙ୍କ ସମାଧିର ଖୁବ୍ ପାଖରେ ମେରିଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍ । ଏଠି ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ସେପରି ଏକ ନିର୍ଦ୍ଦିଷ୍ଟ ହତା ଭିତରର ଥିବା କୋଠାବାଡିକୁ ବୁଝାଏନାହିଁ । ଏ ସମଗ୍ର ଅଂଚଳଟା ହେଲା ୟୁନିର୍ଭସିଟି କ୍ୟାମ୍ପସ୍ । ତା ଭିତରେ ବିଭିନ୍ନ ଫ୍ୟାକଲ୍ଟିକୁ ନେଇ ବିଭିନ୍ନ ବିଭାଗ ବା ସ୍କୁଲ ଅଫ୍ ଷ୍ଟଡିଜ୍‌ର କୋଠାବାଡି ଏବଂ ଗବେଷଣାଗାର ମାନ ଅବସ୍ଥିତ । ଯୁଆଡେ ଆଖି ବୁଲେଇଲେ ରାସ୍ତା ଦୁଇ କଡେ ବଡବଡ ବହୁତଳ ପ୍ରାସାଦ ଆଖିରେ ପଡେ । ଏସବୁ କୋଠାବାଡିର ନିର୍ମାଣ କେବଳ ଇଟାରେ । ବିଲ୍‌ଡିଂ ଗୁଡିକର ଢାଉଆ ନାଲି ରଙ୍ଗ ଦେଖିଲା କ୍ଷଣି ସ୍ୱତଃ ମନେପଡିଲା ରେଭେନ୍ସା କଲେଜ । ତେବେ ଏଇ ସବୁ ବିଶାଳ ପ୍ରାସାଦ ଗୁଡିକ ଥିଲା ଏଠାକାର ଏଇ ବିଶ୍ୱ-ବିଦ୍ୟାଳୟର ବିଭିନ୍ନ ସ୍କୁଲ ଅଫ୍ ଷ୍ଟଡିଜ୍‌ର କଲେଜ, ଗବେଷଣାଗାର ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମର କେନ୍ଦ୍ର । ଯା’ରି ଭିତରେ ଠାଏ ଜୁଲିର ଅଫିସ୍ । ସେଇ ଅଫିସ୍ ସାମନାରେ କାର ଅଟକେଇଲେ ଅଭିଜିତ । ଆମକୁ ଗାଡିରୁ ଓହ୍ଲେଇଦେଇ ସେ ଚାଲିଲେ ନିଜ ଅଫିସ୍‌କୁ ଆଉ କୋଉ ଗୋଟାଏ ଅଂଚଳର ବିଲ୍‌ଡିଂରେ ।

ଜୁଲି ଆମକୁ ନେଇ ପହଞ୍ଚିଲା ତା ଅଫିସ୍ ବିଲ୍‌ଡିଂର ପୋର୍ଟିକୋରେ । ଛୁଟିଦିନ ହୋଇଥିବାରୁ ବେଶୀ ଲୋକ ଚଳପ୍ରଚଳ ନଥାଏ । ସେ ଆମକୁ ନେଇଗଲା ଲିଫ୍ଟ ପାଖକୁ ।

ଲିଫ୍ଟ ଅପରେଟର୍ ଏଠି ବୋଧହୁଏ ଦରକାର ହୁଏନା । ପର୍ସରୁ ନିଜର ଆଇଡେନ୍‌ଟିଟି କାର୍ଡ ବାହାରକରି ସେ ଲିଫ୍ଟ କଡର କୌଣସି ଏକ ସ୍ଲଟ୍ ଭିତରେ କାର୍ଡଟାକୁ ପୂରେଇ ବାହାରକରି ଆଣିଲା । ପରେ ପରେ ଲିଫ୍ଟର ଦ୍ୱାର ଖୋଲିଗଲା । ଆମେମାନେ ପଶିଲୁ ଲିଫ୍ଟରେ । କେତେ ମହଲା ଉପରକୁ ଗଲାପରେ ଲିଫ୍ଟର କବାଟ ଖୋଲିଲା, ଲିଫ୍ଟରୁ ବାହାରି ଆମେ ଚାଲିଲୁ ଜୁଲିର ରୁମ୍‌କୁ ଓ ପରେପରେ ତା କର୍ମସ୍ଥଳ ବା ଲ୍ୟାବ୍ ଦେଖିବାକୁ ।

ଯାହା ଦେଖିଲି ଏଠାରେ ତାର ସବିଶେଷ ବର୍ଣ୍ଣନା ଅନାବଶ୍ୟକ । ଜଣେ ରସାୟନବିଦ୍ୟା ଛାତ୍ର ଭାବେ ଛାତ୍ରାବସ୍ଥାରେ ବା ଅଧ୍ୟାପନା ସମୟରେ ମୁଁ ଯେଉଁ ସବୁ ଛୋଟବଡ ଲାବୋରେଟୋରି ଗୁଡିକରେ କାମ କରିଥିଲି ସେସବୁ ସହିତ ଆଜିର ସର୍ବାଧୁନିକ ଲାବୋରେଟୋରିମାନଙ୍କର ତୁଳନା କରାଯାଇପାରେନା । କାରଣ ବର୍ତ୍ତମାନର ଲାବୋରେଟୋରି ଗୁଡିକର ବାହ୍ୟ ରୂପ ଜଣେ ସାଧାରଣ ଦର୍ଶକ ଆଖିରେ କେବଳ ଏକ ଜଟିଳ ଯନ୍ତ୍ରଶାଳା ବ୍ୟତୀତ ଅନ୍ୟ କିଛି ଗୂଢ ଅର୍ଥ ବହନ କରିବାକୁ ଅସମର୍ଥ । ଏଇ ଯାନ୍ତ୍ରିକ ପରିବେଶ ଭିତରେ ବିଶାଳ ଯନ୍ତ୍ରମୟ କକ୍ଷ ସବୁକୁ ଗୋଟିକ ପରେ ଗୋଟିଏ ପରିକ୍ରମା କରିସାରି ଶେଷରେ ଆମେ ପହଞ୍ଚିଲୁ ଗୋଟାଏ ପ୍ରକାଣ୍ଡ ଶୀତତାପ ନିୟନ୍ତ୍ରିତ କକ୍ଷରେ ଯେଉଁଠି ଜୁଲି କାମ କରେ ବୋଲି ଜାଣିଲି । ସେ କକ୍ଷର ନାଁ Mass Spectrography Section । ଏଇଠି ସାରା ଲାବୋରେଟୋରିରେ ଚାଲିଥିବା ଅନେକ ଗୁରୁତ୍ୱପୂର୍ଣ୍ଣ ରାସାୟନିକ ଅନୁଶୀଳନ କରାଯାଏ । ବିଶ୍ୱର ଅଧିକାଂଶ ଆଧୁନିକ କେମିଷ୍ଟ୍ରି ଲାବୋରେଟୋରିରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ କାମ ହେଲା ରାସାୟନିକ ଅଣୁ (ମଲିକ୍ୟୁଲ୍) ଗୁଡିକର ଆଭ୍ୟନ୍ତରୀଣ ଗଠନ ପ୍ରଣାଳୀର ଅନୁସନ୍ଧାନ । ଲାବୋରେଟୋରି ମାନଙ୍କରେ ଦୀର୍ଘ ସମୟ ଧରି ଅତ୍ୟନ୍ତ ବ୍ୟୟସାପେକ୍ଷ ଗବେଷଣା ମାଧ୍ୟମରେ ନିର୍ମିତ ରାସାୟନିକ ପଦାର୍ଥର ଚିହ୍ନଟ ନରାଯାଏ ସେସବୁ ପଦାର୍ଥର ମଲିକ୍ୟୁଲାର୍ ଗଠନର ଆଭ୍ୟନ୍ତରୀଣ ଛବି ମାଧ୍ୟମରେ ! ମାସ୍‌ସ୍ପେକ୍‌ଟ୍ରୋଗ୍ରାଫ୍ ଯନ୍ତ୍ରଦ୍ୱାରା ସେଇ ସବୁ ଛବି ଗବେଷକର ହସ୍ତଗତ ହୁଏ ।

ଏଇ ଯନ୍ତ୍ରର କାର୍ଯ୍ୟକାରିତା ପାଇଁ ଦରକାର ପଡେ ହିମାଙ୍କଠାରୁ ଢେର୍ ନିମ୍ନରେ (-) ୧୮୦ଡିଗ୍ରୀ ସେଣ୍ଟିଗ୍ରେଡ୍ ତାପମାତ୍ରା ! ଏତେ ନିମ୍ନ ତାପମାତ୍ରା ସୃଷ୍ଟିପାଇଁ ଆବଶ୍ୟକ ତରଳ ନାଇଟ୍ରୋଜେନ୍ । ସେ ଲାବୋରେଟୋରିରେ ତରଳ ନାଟ୍ରୋଜେନ୍ ଗ୍ୟାସ୍ ପ୍ରସ୍ତୁତି ପାଇଁ ଏକ ବୃହଦାକାର : "Liqufied Nitrogen Plant" ବସିଥିବା ଲକ୍ଷ୍ୟ କଲି । ଜଣେ ଗବେଷକ ପକ୍ଷରେ ଏ ସବୁ ଆଧୁନିକ ଯନ୍ତ୍ରପାତିର ପରିଚାଳନା ପାଇଁ ଦରକାର ହୁଏ ସ୍ୱତନ୍ତ୍ର ତାଲିମ । କିଛି ମାସ ପୂର୍ବରୁ ବିଶ୍ୱବିଦ୍ୟାଳୟ ପକ୍ଷରୁ ଜୁଲିକୁ ବଛାଯାଇଥିଲା ସେଇ ତାଲିମ ନେବାକୁ । ସେଥିପାଇଁ ଆମେରିକାର ଅନ୍ୟ ଏକ ବିଶ୍ୱବିଦ୍ୟାଳୟକୁ କିଛି ସପ୍ତାହ ପାଇଁ ଡେପୁଟେସନରେ ତାକୁ ପଠାଯାଇଥିଲା ।

ଜୁଲିର କର୍ମସ୍ଥଳ ଦେଖିବା ପରେ ଆମେ ତା ଲାବୋରେଟୋରିର ଅନ୍ୟ କେତେକ ସ୍ଥାନ ବୁଲି ଦେଖିଲୁ । ଏଇ ବିଶାଳ ବିଶ୍ୱବିଦ୍ୟାଳୟର ଅନ୍ୟ କୌଣସି ଅଙ୍ଗରେ କାମ କରୁଥିଲେ ଅଭିଜିତ । ତାଙ୍କ ଲାବୋରେଟୋରି ଦେଖିବା ପାଇଁ ସମୟର ଅଭାବ ଥିଲା ଆମ ହାତରେ– ତେଣୁ ସେ କାମ ସ୍ଥଗିତ ରହିଲା ଅନ୍ୟ କୌଣସି ଦିନକୁ ।

ଅଭିଜିତ୍ ତାଙ୍କ କାମ ସାରି ଯଥା ସମୟରେ ଫେରିଲେ । ଆମେ ସମସ୍ତେ ଜୁଲିର ଅଫିସ୍‌ରୁ ବାହାରକୁ ଆସିଲୁ ଏକାଠି । ବିଶ୍ୱବିଦ୍ୟାଳୟର ପରିକ୍ରମା ସାରି ଫେରିବା ବାଟରେ ଅଭିଜିତ୍ କହିଲେ, "ଆପଣ ଶୁଣି ଖୁସିହେବେ ନିଶ୍ଚୟ– ଏ ବିଶ୍ୱବିଦ୍ୟାଳୟରେ ବର୍ତ୍ତମାନ ସାରା ପୃଥିବୀର ସର୍ବାଧୁନିକ ରିସର୍ଚ୍ଚ କାମ ସବୁ ଚାଲୁଚି । ଏଠି କାମ କରିଥିବା ଅନେକ ସାଇଣ୍ଟିଷ୍ଟ ନୋବେଲ୍ ପ୍ରାଇଜ୍ ପାଇଚନ୍ତି– ସେ ଭିତରେ ଆମ ଭାରତର ହରଗୋବିନ୍ଦ ଖୁରାନା ଜଣେ । ଏଠି ଡକ୍ଟର ଯୋଗେଶ ପତି ମଧ୍ୟ ଗତ ବର୍ଷ ପର୍ଯ୍ୟନ୍ତ ଗବେଷଣା କରୁଥିଲେ । ମୁଁ ତାଙ୍କୁ ଭେଟିଚି ଏଇ କ୍ୟାମ୍ପସ୍‌ରେ. . ."

ଡକ୍ଟର ଯୋଗେଶଚନ୍ଦ୍ର ପତି ବିଶ୍ୱବିଖ୍ୟାତ ଫିଜିସିଷ୍ଟ । ଆମ ପରିବାର ପାଇଁ ତାଙ୍କର ଏକ ବିଶେଷ ପରିଚୟ ଅଛି । ସେ ହେଲେ ମୋ ମଝିଆଁ ଜୋଇଁ ଡକ୍ଟର ମହେଶ ପତିଙ୍କ ବଡଭାଇ । ତାଙ୍କର ଜନ୍ମ ସ୍ଥାନ ମୟୂରଭଂଜର ବାରିପଦା ସହରରେ । ୧୯୮୨ରେ ଆମର ମଝିଆଁ ଝିଅ ନିବେଦିତା (ସୁଲୁ) ସହିତ ମହେଶଙ୍କର ବିବାହ ସଂପାଦନ ହୋଇଥିଲା ।

## ଏଲକ୍‌ନେକ୍ ଷ୍ଟେଟ୍ ପାର୍କରେ ବଣଭୋଜି

– ଶନିବାର ତା ୧୨ ଅଗଷ୍ଟ ୨୦୦୬, ବଲ୍‌ଟିମୋର୍ ।

ବଲ୍‌ଟିମୋର୍ ଆସିବା ଆଗରୁ ମୋର ଗୋଟିଏ ନିଜସ୍ୱ ପ୍ରୋଗ୍ରାମ ଥିଲା– ମେରିଲ୍ୟାଣ୍ଡ ଓ ୱ୍ୟାସିଂଟନ୍‌ରେ ରହୁଥିବା କିଛି ପ୍ରବାସୀ ଓଡିଆଙ୍କୁ ଭେଟିବା । ଏଠି ପହଞ୍ଚିସାରି ଜାଣିଲି ବଲ୍‌ଟିମୋର୍ ୱାସିଂଟନ୍‌ର ଅତି ପାଖରେ– ମାତ୍ର ଘଣ୍ଟାଏ ଡ୍ରାଇଭିଂ ଦୂରତାରେ । ତେଣୁ ୱିକ୍‌ଏଣ୍ଡ ଛୁଟିରେ ଅଭିଜିତ୍ ବୁଲି ଯାଆନ୍ତି ସେମାନଙ୍କ ଘରକୁ ବା ସେମାନେ ଆସନ୍ତି ୟା'ଙ୍କ ଘରକୁ । ଶୁକ୍ରବାର ଶନିବାର ସନ୍ଧ୍ୟାଗୁଡାକ କଟେ ବନ୍ଧୁମିଳନରେ । ଆଜି ଯେହେତୁ ଶନିବାର ଅଭିଜିତ ମତେ ସକାଳୁ ସକାଳୁ ଜଣେଇଲେ, "ନନା ! ଟିକେ ଜଲ୍‌ଦି ରେଡି ହେଇଯିବେ– ଯିବା ଗୋଟାଏ ଫରେଷ୍ଟ୍ ପାର୍କକୁ ନାଇଟ୍ ଆଉଟ୍ କ୍ୟାମ୍ପିଂ ପ୍ରୋଗ୍ରାମ୍‌ରେ । ରାତିରହଣି ସେଇଠି ଜଙ୍ଗଲ ଭିତରେ. . ."

ମୁଁ ଚଞ୍ଚଳ ଗାଧୁଆପାଧୁଆ ସାରି ପ୍ରସ୍ତୁତ ହେଇଗଲି । ଘରର ଅନ୍ୟମାନେ ବି ।

କିଛି ସମୟ ପରେ ଗୋଟିଏ ପରିବାର ସେମାନଙ୍କ କାର୍‌ରେ ଆସି ପହଞ୍ଚିଲେ । କାର୍‌ରୁ ଓହ୍ଲେଇଲେ ତିନିଜଣ– ହଲେ ୟଙ୍ଗ ବାପମା' ଆଉ ତାଙ୍କ ଛୋଟ ପୁଅ । ଜୁଲି

ଚିହ୍ନା କରେଇଦେଲା– ଏ ହେଲେ ସନ୍ଦୀପ ପଟ୍ଟନାୟକ ଆଉ ଏ ତାଙ୍କ ସ୍ତ୍ରୀ ମୌସୁମୀ । ଦୁହେଁ ଇଂଜିନିୟର୍ । ଏମାନେ ଏବେ· ଏବେ ଆସିଚନ୍ତି ଆମେରିକା । କାମ କରନ୍ତି ବଡବଡ କଂପାନୀରେ । ଏମାନେ ଭୁବନେଶ୍ୱରର ବାସିନ୍ଦା । ଆମେ ସାଙ୍ଗହୋଇ ଯିବା ''ଏଲ୍ଲକ୍‌ନେକ୍ ଷ୍ଟେଟ୍ ପାର୍କ''କୁ । ବାଟରେ ଆଉ କେତୋଟି ଓଡିଆ ପରିବାର ମଧ୍ୟ ଆସିବେ । ସମସ୍ତେ ଆଜି ରାତିରେ ଜଙ୍ଗଲ ଭିତରେ ରହିବେ ତମ୍ବୁରେ । ଖୁବ୍ ମଜା ହବ... ।''

ଯା'ପରେ ଚାଲିଲା ପ୍ରସ୍ତୁତି ଘମାଘୋଟ । ଗୋଟାଏ ରାତି ଘର ବାହାରେ ଜଙ୍ଗଲ ଭିତରେ ତମ୍ବୁ ପକେଇ ରହଣି ନିଶ୍ଚିତ ଭାବେ ଏକ ଅନନ୍ୟ ଅନୁଭୂତି । କିନ୍ତୁ ପିଲାଛୁଆ ନେଇ ବଣକୁ ରାତି ରହଣି ପାଇଁ ବାହାରିବା ସହଜ କଥା ନୁହଁ– ସେଥିପାଇଁ ସାରା ସପ୍ତାହର ପ୍ରସ୍ତୁତି ଦରକାର । ପ୍ରଥମ କଥା– ପ୍ରତି ପରିବାର ପାଇଁ ''ପୋର୍ଟେବ୍ଲ ଟେଣ୍ଟ''ଠୁ ଆରମ୍ଭକରି ଶେଯ ତକିଆ କମ୍ବଳ, ରୋଷେଇ ପାଇଁ ଗ୍ରୋସେରି କିଣା, ପନିପରିବା ଆଉ ଅନ୍ୟାନ୍ୟ ଉପକରଣ. ବଜାରରୁ କିଣାକିଣି, ପୁଣି ବାଟରେ ସ୍ନାକ୍‌ସ୍ ଆଉ ସଫ୍‌ଟ୍ ଡ୍ରିଙ୍କ୍‌ସ୍ । ଘରଯାକ ଜମା ହେଇ ସାରିଥାଏ ସେସବୁ ପ୍ୟାକେଟ୍ । ଗଦାଗଦା ଟିନଡ୍ ଫୁଡ୍, ବିସ୍କିଟ୍ ଚକୋଲେଟ୍ ପ୍ୟାକେଟ୍, ଆଉ କ୍ରେଟ୍ କ୍ରେଟ୍ କୋକ୍ ପେପସି, ଆଇସ୍ ବକ୍ସ ଭର୍ତ୍ତି ବରଫ ଆଉ କେତେ କ'ଣ ! ସେ ସବୁ ଜିନିଷ ଚାଲିଥାଏ ଲୋଡିଂ କାର୍ ଡିକିରେ । ନିରୁପମା ଲାଗିପଡିଥାନ୍ତି ସାରା ରାତି ପରଟା ଆଳୁଦମ ଆଉ ଆମ ଓଡିଆ ପିଠା– ନଡିଆପୁରଦିଆ ଭଜା ମଣ୍ଡା (ନାନାମାନ) କାକରା ଛାଣିବାରେ । ମଝିରେ ମଝିରେ ଘର ଭିତରୁ ଶୁଭୁଥାଏ ଚିତ୍କାର– ''ଆନୁ, ଅଙ୍କିତା ! କିରେ ଗାଧେଇସାରିଲଣି ? ଜଲ୍‌ଦି ବାହାର ବାଥ୍ ରୁମ୍‌ରୁ । ତମ ପାଇଁ ପୋଷାକ ସଜଡା ହେଇ ରହିଚି ଏଠି । ଜାଣିଚଟି ସାରା ରାତି ରହିବାକୁ ପଡିବ ବଣ ଭିତରେ । ଭାରି ମଶା । ଏ ଅଧାନଙ୍ଗୁଳି ସମର ଡ୍ରେସ୍ ଚଳିବନାଇଁ । ରାତିରେ ଭାରି ଥଣ୍ଡା ଜାଣିଥାଅ. . .'' ଆଇଙ୍କ ବାରମ୍ବାର ତାଗିଦା ସତ୍ତ୍ୱେ ଆନୁ ଅଙ୍କିତା ଶେଷରେ ନିଜନିଜ ରୁଚି ମୁତାବକ ଖରାଦିନିଆ ଛୋଟ ହାଲୁକା ପୋଷାକ ପିନ୍ଧି ପଦାକୁ ବାହାରିଲେ ଘର ବାହରକୁ ।

ଘର ବାହାରପଟ ଛୋଟ ବାରଣ୍ଡାରେ ମୁଁ ପ୍ରସ୍ତୁତହେଇ ବସିଗଲିଣି କେତେବେଳୁ । କୁନି ନାତୁଣୀ ଆନୁ ଆସି ବସିପଡିଲା ମୋ'କୋଳରେ । ବଣରେ ରାତ୍ରିଯାପନ ଶୁଣିଲାବେଳୁ ତା'ମୁଣ୍ଡରେ ପଶିଯାଇଥାଏ ଅନେକ ସ୍ୱପ୍ନ । କୋଳରେ ବସିପଡିବାମାତ୍ରେ ପଚାରିଲା– ''ଅଜା ! ଯଦି ରାତିରେ ଆମ ଟେଣ୍ଟ୍ ଭିତରକୁ ଗୋଟାଏ ଟେଡି ବିଅର ଛୁଆ ପଶିଯିବ ତେବେ ଆମେ ତାକୁ ଧରି ଆଣି ପାରିବା ? ମତେ ଟେଡିବିଅର୍ ଭାରି ଭଲଲାଗନ୍ତି । ମୋର ଦଶଟା ଟେଡି ଅଛନ୍ତି– କିନ୍ତୁ ସେଗୁଡାକ ଟୟ । ମୋର ଦରକାର ଗୋଟେ ଲିଭିଂ ରିଏଲ୍ ଟେଡି କବ୍ ! ତୁମେ ମତେ ସାହାଯ୍ୟକରିବ ଟେଡିଛୁଆ ଧରିବାରେ ?''

ବଡ ନାତୁଣୀ ଅଙ୍କିତାର ବୟସ ବାର । ସେ ଏଇ ଗଲା ତିନିବର୍ଷ ଭିତରେ ବେଶ୍ ସିରିୟସ୍ ହେଇଗଲାଣି । ୨୦୦୩ରେ ମୁଁ ତାଙ୍କର ନ୍ୟୁଜର୍ସୀ ଘରେ ଅତିଥି ହେଇଥିବାବେଳେ ସେ ତାର ସେଇ ପିଲାଦିନର ମିଆଁଗପ, ଦେବୀନଦୀର ବଉଳା ଶଂଖା କୁମ୍ଭୀରଙ୍କ ଗପ ଶୁଣିବାକୁ ଅଥୟ କରିପକାଉଥିଲା ମତେ । କିନ୍ତୁ ଏଥର ସେ ମତେ ତା' ନିଜ ଗପ ଶୁଣେଇଲା । କହିଲା, "ଅଜା ! ଜାଣିଚ– ଆମର ଏଠାକା ଫରେଷ୍ଟରେ ତମ ସେଠାକା ଫରେଷ୍ଟ ପରି ଟାଇଗର୍ ନାହାନ୍ତି ଅବଶ୍ୟ– କିନ୍ତୁ ଅଛନ୍ତି ଗନ୍‌ମେନ୍ ! ଗନ୍‌ମେନ୍ କିଏ ଜାଣ ? ଅବିକଳ ତମେ ଯୋଉ ମିଆଁଗପ କୁହ ସେଇ ଭଳିଆ ଡ୍ରେଡଫୁଲ୍ ଲୁକିଂ, କିନ୍ତୁ ମିଆଁ ଆମର ଖୁବ୍ ଭଲ ଏମାନଙ୍କ ତୁଳନାରେ । ଏମାନେ ବିନା କାରଣରେ ବନ୍ଧୁକ ଚଳେଇଦେବେ ମଣିଷଙ୍କ ଉପରକୁ । ଗଲାବର୍ଷ କଲାରେଡୋର ଗୋଟାଏ ସ୍କୁଲ୍‌ରେ ପଶି ଗନ୍‌ମ୍ୟାନ୍ ମାରିପକେଇଲା ଦଶଟା ପିଲା ଆଉ ଜଣେ ମିସ୍‌କୁ । ଆମେ ଯୋଉ ଫେରଷ୍ଟକୁ ଯାଉଚେ ସେଠି ଯେ ଗନ୍‌ମେନ୍ ନଥିବେ କ'ଣ ଗ୍ୟାରେଣ୍ଟି ଅଛି ? ମନେକର ସେମିତି ସିଚୁଏସନ୍ ଯଦି ହୁଏ ଆମେ କ'ଣ କରିବା ?"

ସେଇ ସମୟରେ ପହଞ୍ଚିଲା ସନ୍ଦୀପ ବାବୁଙ୍କ ଦଶବର୍ଷର ପୁଅ ସୋନୁ । ଅଙ୍କିତା ଆଜୁ ମୋ ସାଙ୍ଗେ କ'ଣ ଗପୁଚନ୍ତି ଶୁଣିବାକୁ ସେ କିଛିବେଳ ଚୁପ୍‌ଚାପ୍ ବସିଲା । ଟିକେ ପରେ ସୋନୁର ମୁହଁ ଖୋଲିଲା । ସେ ମତେ ଇଂରେଜୀରେ ଯାହା ପଚାରିଲା ତାହା ହେବ ଏହିପରି, Uncle ! You are from India. I heard you are a great writer. I have a question for you. Do you think the outsourcing of jobs from USA might harm America– India relationship in future ?

– ମୁଁ ଚମକିପଡିଲି । ଗୋଟିଏ ନଅଦଶ ବର୍ଷର ପିଲା ମୁହଁରୁ ଏଭଳି ଗମ୍ଭୀର ତାତ୍ତ୍ୱିକ ପ୍ରଶ୍ନ କିଏ ବା ଆଶା କରିପାରିଥାନ୍ତା ? ସେ ମତେ ପଚାରୁଥିଲା ସେତେବେଳର ଗ୍ଲୋବାଲାଇଜେସନ୍ ନୀତି ଯୋଗୁ କଂପାନୀ ଚାକିରି ଗୁଡିକ ଆମେରିକାରୁ ଭାରତ, ଚୀନ ଇତ୍ୟାଦି ଦେଶକୁ ଦେଶାନ୍ତରୀ, ଅର୍ଥାତ୍ "ଆଉଟ୍‌ସୋର୍ସିଂ" ହୋଇଯିବା ଯୋଗୁ ଉପୁଜିଥିବା ଆମେରିକାରେ ଭାରତ ବିରୋଧୀ ମନୋଭାବର ରାଜନୈତିକ ପରିଣତି କ'ଣ ହେବ– ସେଇ ବିଷୟରେ । ମୁଁ ସେ ପିଲାଟିକୁ ବେଶ୍ କିଛି ସମୟ ନିର୍ବାକ୍ ଅନେଇ ରହିଲି । ଆଖିଦୃଷ୍ଟିଆ ଭାବେ ସୁସ୍ଥସବଳ ସେଇ ସାବନା ରଙ୍ଗର ଛୋଟ ପିଲାଟିର ବଡବଡ ଆଖିର ଡୋଳା ଦୁଇଟିର ଅସମ୍ଭବ ସ୍ଥିର ଲୟର ଚାହାଣି କହୁଥିଲା ସେ ଜଣେ ସାଧାରଣ ବାଳକ ନୁହେଁ । ପିଲାଟିକୁ ମନେମନେ ଗଭୀର ଆଶୀର୍ବାଦ ଦେଲି– ଖୁବ୍ ବଡ ମଣିଷ ହବୁରେ ବାବୁ ! ତୋ ଭିତରେ ଜିନିୟସ୍ କଥା କହୁଚି ଜାଣିଲି । ପରେ ପଚାରିଲି, "ତମେ କ'ଣ ଭାବୁଚ ଆମେରିକାରେ ବର୍ତ୍ତମାନ ଆମ ଭାରତୀୟ ଲୋକଙ୍କୁ ଏଠାକାର ଲୋକେ

ଈର୍ଷା କରୁଚନ୍ତି– ଭାରତର 'ଫାଷ୍ଟ୍ ଏକ୍‌ନମିକ୍ ଗ୍ରୋଥ୍ ଯୋଗୁ ? ଏ ଦେଶର ବଡବଡ କଂପାନୀ ସବୁ ଗ୍ଲୋବାଲ୍‌ଇଜେସନ୍ ପରେ ସେମାନଙ୍କ କଂପାନୀ ମାନ ଏଠୁ ଇଣ୍ଡିଆକୁ ଉଠେଇନଉଚନ୍ତି ବୋଲି ଏମାନେ ଭୟଭୀତ କି ?''

– ମୋ ପ୍ରଶ୍ନର ଯଥାଯଥ ଉତ୍ତର ଶୁଣି ବୁିଝିଲି ତାର ପ୍ରଶ୍ନ ଉପରଠାଉରିଆ ନଥିଲା ।

ସେଦିନ ଆମର ବଣଭୋଜି ପ୍ରୋଗ୍ରାମ୍‌ରେ ଏଇ ବିସ୍ମୟ ବାଳକଟିକୁ ସାଙ୍ଗରେ ଧରି ଆମେ ଘରୁ ବାହରିଲୁ ସଦଳବଳେ । ବାଟରେ ଆହୁରି କେତୋଟି ଓଡିଆ ପରିବାର ମିଶିଲେ ଆମ ସାଙ୍ଗରେ । ସେମାନଙ୍କ ଭିତରେ ଥିଲେ ପୁରୀ ସାକ୍ଷୀଗୋପାଳର ବାସିନ୍ଦା ଏକ ପ୍ରବାସୀ ଓଡିଆ ପରିବାର ଶ୍ରୀ ବିମଳ ମିଶ୍ର, ତାଙ୍କ ପତ୍ନୀ ଲୀନା ଓ ଦୁଇ ବର୍ଷର ଶିଶୁ କନ୍ୟା ସିମୋନି । ବିମଳ ଓ ଲୀନା, ସନ୍ଦୀପ ଓ ମୌସୁମୀଙ୍କ ପରି ଦୁଇ ଯୁବ ଇଂଜିନିୟର୍ । ଆମେରିକା ଆସିଥିଲେ ଅଳ୍ପ କେଇ ବର୍ଷ ତଳେ– କାମ କରନ୍ତି ଏଠାକାର କୌଣସି ବଡ କଂପାନୀରେ ।

ବେଶ୍ ଗୋଟାଏ ଲମ୍ବା ରାସ୍ତା ଡ୍ରାଇଭ୍ ପରେ ପହଞ୍ଚିଲୁ 'ଏଲକ୍‌ନେକ୍ ଷ୍ଟେଟ୍ ପାର୍କ'ରେ । ଏଇଟି ଗୋଟିଏ ସଂରକ୍ଷିତ ଅରଣ୍ୟ ମେରିଲ୍ୟାଣ୍ଡ ରାଜ୍ୟ ସରକାରଙ୍କର । ବେଶ୍ ବିରାଟ– ପ୍ରାୟ ୨,୦୦୦ ଏକରର ପ୍ରାକୃତିକ ଅରଣ୍ୟ । ଭିତରେ ପହଞ୍ଚି ଲକ୍ଷ୍ୟକଲି ବଣ ଭିତରେ ଠାଏଠାଏ ବଣଭୋଜି ଉଦ୍ଦେଶ୍ୟରେ ରୋଷେଇବାସ ପାଇଁ ବାର୍ବେକ୍ୟୁ ଚୁଲିର ବ୍ୟବସ୍ଥା ସହିତ ଖାଇବାଜାଗାରେ ଟେବଲ୍ ବେଞ୍ଚମାନ ପଡିଚି । ଏ ସବୁ ଟେବୁଲ୍ ବେଞ୍ଚ୍ ଜଙ୍ଗଲ ଜାତ କାଠଗଡକୁ ଆର୍ଟିଷ୍ଟିକ୍ ପ୍ରଣାଳୀରେ ଖଂଜା ଯାଇ ତିଆରି କରାଯାଇଥାଏ ।

ଏ ଦେଶରେ ଭ୍ରମଣ ଏକ ପ୍ରମୁଖ ଜୀବନ ଯାପନ ଶୈଳୀ । ସପ୍ତାହାନ୍ତ ଦୁଇ ଦିନ ଛୁଟି ଓ ଅନ୍ୟ ସବୁ ଛୁଟିରେ ଘରେ ବସିବସି ବା କ୍ଲବ୍ ଇତ୍ୟାଦି ଚିତ୍ତବିନୋଦନ କେନ୍ଦ୍ରରେ ଆଳସ୍ୟପରାୟଣ ଜୀବନ ଅପେକ୍ଷା ମୁକ୍ତ ଜୀବନ ଯାପନ ପାଇଁ ଟ୍ରେକିଂ, ସ୍ୱିମିଂ, କ୍ୟାମ୍ପିଂ ବୋଟିଂ, ଫିସିଂ, ମାଉଣ୍ଟେନିୟରିଂ ଇତ୍ୟାଦି ବହୁବହୁ ପ୍ରକାର ବାହ୍ୟ ଖେଳକୁଦ ଏ ଦେଶର ସାଧାରଣ ଲୋକଙ୍କ ପ୍ରିୟ ଆମୋଦ ପ୍ରମୋଦର ପନ୍ଥା ଏବଂ ସଂସ୍କୃତି । ତେଣୁ ଦେଶ ତମାମ୍ ଏପରି ବାହ୍ୟ ଆମୋଦ ପ୍ରମୋଦର ବ୍ୟବସ୍ଥା ଯୋଗାଇ ଦିଆଯାଇଥାଏ ସରକାରଙ୍କ ପକ୍ଷରୁ । ଅରଣ୍ୟ ପର୍ବତ ନଦ ନଦୀ ହ୍ରଦ ଇଲାକାର ପ୍ରାକୃତିକ ସୌନ୍ଦର୍ଯ୍ୟଭରା ସ୍ଥାନମାନଙ୍କରେ ଭ୍ରମଣକାରୀମାନଙ୍କ ରାତ୍ରିରହଣି ବ୍ୟବସ୍ଥା ସହିତ ଆନୁଷଙ୍ଗିକ ସୁବିଧା ସୁଯୋଗ ସୃଷ୍ଟି ଏ ଦେଶର ଶାସନ ବ୍ୟବସ୍ଥାର ଏକ ଅବିଚ୍ଛେଦ୍ୟ ଅଙ୍ଗ ।

ସେଦିନ ରାତିରେ ଏଇ ପାର୍କ ଭିତରେ ଆମେ ତିନି ଚାରୋଟି ପ୍ରବାସୀ ଓଡିଆ ପରିବାର ରାତ୍ରି ଯାପନ ପାଇଁ ପ୍ରସ୍ତୁତ ହୋଇ ଘରୁ ବାହାରିଥିଲୁ । କ୍ୟାମ୍ପ୍ ସ୍ଥଳରେ ପହଞ୍ଚିବା ପରେ 'ପରବର୍ତ୍ତୀ ପର୍ବ ଆରମ୍ଭ ହେଲା । ପ୍ରଥମେ ଟେଣ୍ଟ ଟଣା– ରାତି ରହଣି ପାଇଁ

ପ୍ରତ୍ୟେକ ପରିବାର ନିଜନିଜ ସାଙ୍ଗରେ ହାଲୁକା ପଲିଥିନ୍ ତମ୍ବୁ ଆଣିଥିଲେ । ପୁଣି ଶଯ୍ୟା ପାଇଁ ପବନ ଭରିବା ଗଦି ତକିଆ ଇତ୍ୟାଦି । ତମ୍ବୁ ଟଣା ଓ ମୁହଁରେ ଫୁଙ୍କି ଗଦି ତକିଆ ତିଆରି କରିବା ସମୟସାପେକ୍ଷ ଓ କଷ୍ଟସାଧ୍ୟ କାମ । ଏଥିରେ ସମସ୍ତେ ସମସ୍ତଙ୍କୁ ସାହାଯ୍ୟକଲେ କାମ ଶୀଘ୍ର ଶେଷହେଇଯାଏ । ତେଣୁ ସମସ୍ତେ ଏକାବେଳକେ ଲାଗିପଡି ସେ କାମ ଶୀଘ୍ର ଶେଷ କରିଦେଲେ । ଯା'ପରେ ଚୁଲି ତିଆରି– ସନ୍ଧ୍ୟାରେ ଡିନର ରନ୍ଧା ଆଉ ଚୁଲିକୁ ଘେରି ବସି ନିଆଁ ପୋଇଁବା ସାଙ୍ଗକୁ ଗପ ଲମ୍ବେଇବା ପାଇଁ ।

ଚୁଲି ସଜଡା ହେଇଯିବା ପରେ କିଏ ଜଣେ ଡାକ ମାଇଲା– "ଆରେ ପିଲେ ! ଯାଅ ବଣରୁ ବୋହିଆଣ ଜାଳ । ଦେଖ ଶୁଖିଲା ପାଇନ ଡାଳସବୁ ଏଇ ଆଖପାଖରେ ପଡିଚି ଏଣେତେଣେ– ଗୋଟେଇ ଆଣିବ ଯାଅ ତ !"

ପିଲେ ଦଉଡିଲେ । ଖେଦିଗଲେ ବଣକୁ । ବୋହି ଆଣିଲେ ଜାଳ ଜଙ୍ଗଲ ଭିତରୁ । ବଡବଡମାନେ ବୋହି ଆଣିଲେ କାଠ ଗଣ୍ଡି– କ୍ୟାମ୍ପ ଫାୟାର୍ ପାଇଁ । ଏଠି ରାତିରେ ଭାରି ଶୀତ ହୁଏ ଖରା ଦିନେ ବି, ତେଣୁ ରାତିସାରା ନିଆଁ ଜଳେଇ ଜାଗା ଟାକୁ ଉଷୁମ ରଖାଯିବା ଦରକାର । ପୁଣି ଜଳନ୍ତା ନିଆଁର ଆବଶ୍ୟକତା ରହିଚି– ଭାଲୁ ଉପଦ୍ରବରୁ ନିରାପତ୍ତା ସୃଷ୍ଟି ପାଇଁ । ଏଠିକା ବଣ ଜଙ୍ଗଲରେ ବାଘ ନାହାନ୍ତି ଅବଶ୍ୟ, କିନ୍ତୁ ଭାଲୁ, ଗଧିଆ କୟୋଟ୍ ରାକୁନ୍ ଇତ୍ୟାଦି ଜନ୍ତୁ ଭୟ ଥାଏ । ତା'ଛଡା ବଣରେ ହରିଣ ଭର୍ତିହେଇଚନ୍ତି– ବଡବଡ ଶିଙ୍ଗାଳ ହରିଣ ବା ମୁଜ୍ ବି । କ୍ୟାମ୍ପରେ ରୋଷେଇ ଗନ୍ଧ ପାଇ ଏ ସବୁ ଜନ୍ତୁ ଆକୃଷ୍ଟ ହୁଅନ୍ତି ଓ ରାତି ଅଧରେ କ୍ୟାମ୍ପରେ ପଶିବାର ଭୟ ଥାଏ । ପୁଣି କାଗଜରେ ବାହାରିଚି– ରାକୁନ କାମୁଡାରେ ଆହତ ହେଇ କେତେ ଲୋକ ଜଳାତଙ୍କ (ରାବିଜ୍) ଭୋଗି ମଲେଣି । ରାକୁନ୍ କୋକିଶିଆଳୀ ଭଳି ଦେଖିବାକୁ । ସହର ଭିତରେ ବି ଏମାନେ ଜନବସତି ଆଖପାଖରେ ବୁଲନ୍ତି । ରାତିରେ ଘର ପଛପଟ ଅଳିଆ ଡବାରୁ ଅଇଁଠା ଗୋଟେଇ ଖାଅନ୍ତି । ଏ ଜନ୍ତୁ ବିଲୁଆ କୁକୁର ପରି ଖରାଦିନେ ପାଗଳ ହେଇ ମଣିଷଙ୍କୁ କାମୁଡିଲେ ବେଳେବେଳେ ଜଳାତଙ୍କ ରୋଗ ହୁଏ । ସେଥିପାଇଁ ଦେଶ ତ୍ମାମ୍ ଏଇ ଖରାଦିନେ ରାକୁନ ପ୍ରତି ସାବଧାନ ରହିବାକୁ ଜନସାଧାରଣଙ୍କୁ ସ୍ୱାସ୍ଥ୍ୟ-ବିଭାଗ ପକ୍ଷରୁ ସତର୍କ କରାଇଦିଆଯାଏ । ତେଣୁ ରାତିରେ ସାବଧାନତା ଅବଲମ୍ବନ ପାଇଁ କ୍ୟାମ୍ପ୍ ଏରିଆରେ ନିଆଁ ଜଳେଇ ରଖିବା ଦରକାର । କିନ୍ତୁ ନିଆଁ ପ୍ରତି ଏକାନ୍ତ ସାବଧାନତା ଅବଲମ୍ବନ ମଧ୍ୟ କ୍ୟାମ୍ପରମାନଙ୍କର ନିଜ ଦାୟିତ୍ୱ । ଏଠାକା ପବ୍ଲିକ୍ ପାର୍କର ଗୋଟିଏ ବଡ ନିୟମ– କ୍ୟାମ୍ପ୍ ଛାଡିବା ପୂର୍ବରୁ କ୍ୟାମ୍ପରମାନେ ନିଜନିଜ ଚୁଲିରେ ପାଣି ଢାଳି କୁହୁଳା ନିଆଁକୁ ପୂରାପୂରି ଲିଭେଇ ଦେଇଯିବେ, ନଚେତ ଦଣ୍ଡନୀୟ ଅପରାଧ ପାଇଁ ଦାୟୀ ରହିବେ ।

ସ୍ନାକ୍ସ ଓ କୋକ୍‌ପର୍ବ ପରେପରେ ଆରମ୍ଭହେଲା ଜଙ୍ଗଲବୁଲା । ସହରରୁ ଆସିଥିବା

ପିଲାମାନଙ୍କର ଜଙ୍ଗଲ ପ୍ରତି ଭୟ ଜନ୍ମଗତ । ସେ ଭୟ ଛଡେଇବା ପାଇଁ ମା' ବାପାମାନେ ପିଲାମାନଙ୍କୁ ସାଙ୍ଗରେ ଧରି ଖୁବ ସତର୍କତା ସହିତ ଜଙ୍ଗଲ ଭିତରେ ବୁଲେଇ ଦେଖେଇବାକୁ ବାହାରିଲେ ।

ଆମ କ୍ୟାମ୍ପ୍ ଚାରିପାଖ ଜଙ୍ଗଲର ଗୋଟିଏ କଡକୁ, ଖୁବ୍ ପାଖରେ, ଚେସାପେକ୍ ଉପସାଗର । ପୁଣି ଏଇଠି ସମୁଦ୍ରରେ ପଡିଚି ଗୋଟିଏ ନଦୀ– 'ଏଲ୍‌କ୍‌ନେକ୍ ରିଭର୍' । ସମୁଦ୍ରରେ ମିଶୁଥିବା ନଈ ମୁହାଣ ଜାଗାଟା ଦିଶୁଥାଏ ପୁରୀର ନୂଆନଈ ମୁହାଣ ପରି ଭାରି ସୁନ୍ଦର ଓ ଓଡିଆଙ୍କ ପାଇଁ ଖୁବ୍ ଆପଣାର ଏକ ପ୍ରାକୃତିକ ଦୃଶ୍ୟଭରା ଅଞ୍ଚଳ । ଜଙ୍ଗଲବୁଲା ସାରି ପିଲାଛୁଆଙ୍କୁ ଧରି ବଡମାନେ ଜୁଟିଗଲେ ସେଇ ସମୁଦ୍ର କୂଳେ । ନିଜନିଜ ବ୍ୟାଗ୍‌ରୁ ପିଲାଙ୍କର ଓ ନିଜର ସ୍ୱିମିଂ ପୋଷାକ ବାହାରକରି ପିନ୍ଧିଲେ ସମସ୍ତେ– ଚାଲିଲେ ଗାଧୋଇବା ପାଇଁ । ପିଲାମାନଙ୍କୁ ମା ବାପାମାନେ ସମୁଦ୍ର ସନ୍ତରଣର ଅନୁଭବ ଶିଖେଇଲେ । ସମୁଦ୍ରରେ ପହଁରିବା କେତେ ମଜା ଆଉ କେତେ ବିପଦଜନକ– ଏଇକଥା ଶିଖେଇବା ସାଙ୍ଗେ ସାଙ୍ଗେ ନିଜେ ମଧ୍ୟ କିଛି ମଜା ଉଠେଇବା ପାଇଁ ବଡମାନେ ବହୁତ ସମୟ ପଡିଲେ ପାଣିରେ । ପିଲା ଆଉ ବଡଙ୍କ ହସଖୁସି ପାଟିତୁଣ୍ଡ କୋଳାହଳରେ ସମୁଦ୍ର କୂଳ କମ୍ପମାନ ହଉଥାଏ ।

ଏ କୋଳାହଳଠାରୁ ଦୂରରେ ରହିବାକୁ ମୁଁ ଚାଲିଲି ଏକା ଏକା ଜଙ୍ଗଲର ଏକ ନିଛାଟିଆ ଅଞ୍ଚଳକୁ । ପୂର୍ବରୁ କହିଚି– ଗ୍ରୀଷ୍ମ ଋତୁରେ ଆମେରିକାର ବନଭୂମି ଏକାନ୍ତ ରମଣୀୟ । ମୋ ପାଇଁ ଅରଣ୍ୟର ଆକର୍ଷଣ ଚିରନ୍ତନ । ସ୍କୁଲରେ ଅଧ୍ୟୟନ ବେଳୁ ଏକାଏକା ଅରଣ୍ୟ ବିହାରର ଅନନ୍ୟ ସୁଖ ମୁଁ ଅନୁଭବ କରିଶିଖିଥିଲି । ଅରଣ୍ୟ ମୋ ଅନ୍ତର୍ନିହିତ ନୈସର୍ଗିକ ଉପଲବ୍ଧିକୁ ଐଶ୍ୱରିକ ଉପଲବ୍ଧିରେ ରୂପାୟିତ କରିଆସିଚି ଚିରଦିନ । ଏ ଉପଲବ୍ଧି ନିଗୂଢ ହେବା ପାଇଁ ଏକାନ୍ତ ଆବଶ୍ୟକ ପରିବେଶର ନିର୍ଜନତା । ସେଇ ନିର୍ଜନ ପରିବେଶର ସନ୍ଧାନରେ ଚାଲୁ ଚାଲୁ କେତେବେଳେ କ୍ୟାମ୍ପ୍ ଏରିଆର ବେଶ୍ କିଛି ଦୂରକୁ ଚାଲିଆସିଥାଏ । କିଛି ଦୂର ଗଲା ପରେ ଗୋଟିଏ ନିର୍ଜନ ଛାୟା ଶୀତଳ ସ୍ଥାନ ମୋ' ନଜରରେ ପଡିଲା । ଚାରିଆଡେ ବିଶାଳ ସ୍ତମ୍ଭାକୃତି ପାଇନ ବୃକ୍ଷ ଘେରା ଏଇ ମନୋରମ କୁଞ୍ଜ ମଝିରେ ଗୋଟିଏ ପିଣ୍ଡି ଭଳି ପଥର ପଡିଥିବା ଦେଖି ସେଇ ପଥର ଉପରେ ଚକା ପକେଇ ବସିପଡିଲି । ମୋର ଅଭ୍ୟସ୍ତ ଗୋଡ ଦୁଇଟି ପରସ୍ପର ସହିତ ଛନ୍ଦିହେଇଗଲା ଓ ପଦ୍ମାସନରେ ପରିଣତ ହେଲା । ଆଖି ବୁଜିହେଇଗଲା ଓ କ୍ଷଣକ ଭିତରେ ମୁଁ ଧ୍ୟାନମଗ୍ନ ହେଇଗଲି । କ୍ରମେ ଧ୍ୟାନ ଗଭୀର ହେବାକୁ ଲାଗିଲା । ହଠାତ୍ ଏକ ଅଦ୍ଭୁତ ଶିହରଣ ମେରୁଦଣ୍ଡରେ ଅନୁଭୂତ ହେଲା । ସେଇ ଅନୁଭବ ପରିଣତ ହେଲା ଏକ ସ୍ୱପ୍ନ ପରି ଦୃଶ୍ୟରେ । ସେ ଦୃଶ୍ୟ ଭିତରେ ମୁଁ ଯାହା ଦେଖୁଥିଲି ତାହା ବର୍ଣ୍ଣନାତୀତ । ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ଥାଇ ସୃଷ୍ଟିର ଆରମ୍ଭରୁ (ବିଗବ୍ୟାଙ୍ଗ୍ ମୁହୂର୍ତ୍ତରୁ) ଅଦ୍ୟାବଧି ବିତିଯାଇଥିବା ପ୍ରାୟ ୧୪ ବିଲିୟନ୍‌ବର୍ଷର ଅତୀତ କାଳକୁ ମାତ୍ର କେତୋଟି ମୁହୂର୍ତ୍ତ ମଧ୍ୟରେ ପରିକ୍ରମା କରିବା

ଯଦି କାହାରି ପକ୍ଷରେ ସମ୍ଭବ ହୁଅନ୍ତା ଆଉ ତାର ପ୍ରଭାବ ଯେପରି ଅଭିଭୂତ କରିପକାନ୍ତା ସେଇ ଭାଗ୍ୟବାନ୍ ଅଭିଯାତ୍ରୀଟିକୁ ମୋର ଅବସ୍ଥା ଠିକ୍ ସେଇଭଳି ହୋଇପଡୁଥିଲା ବୋଲି ବର୍ତ୍ତମାନ ଏ ବିଷୟଟି ସଂପର୍କରେ ଲେଖିଲା ବେଳକୁ ମତେ ଜଣାପଡୁଚି ।

ସେଇ ଅବସ୍ଥାରେ ମୁଁ କେଜାଣି କେତେ ସମୟ ରହିଗଲି ମନେପଡୁନାହିଁ । କିନ୍ତୁ ଆଖି ଖୋଲିଲା ବେଳକୁ ଦେଖିଲି ମୋ ଆଗରେ ଠିଆହଇଚି ସେଇ ଶ୍ୟାମଳ ବର୍ଣ୍ଣର କିଶୋର ସୋନୁ । ଚମକିପଡିଲି । କିଛି ସମୟ ଲାଗିଲା ସ୍ୱପ୍ନର ପ୍ରଭାବରୁ ମୁକ୍ତ ହେବା ପାଇଁ ।

ମତେ ସମୁଦ୍ର କୂଳରେ ଅନ୍ୟମାନଙ୍କ ମେଳରେ ନଦେଖି ସୋନୁ ମତେ ଖୋଜି ଖୋଜି ଜଙ୍ଗଲର ସେଇ ନିର୍ଜନ ସ୍ଥାନ ପର୍ଯ୍ୟନ୍ତ ଚାଲିଆସିଥିଲା । ମୁଁ ତା ମୁହଁକୁ ଅନାଇ ବେଶ୍ ବୁଝିପାରିଲି ତା ମନୋଭାବ । ସେ ସତେକି ଭାବୁଥିଲା ମୁଁ ଜଣେ ଅଲଗା ପ୍ରକାରର ମଣିଷ ଯେ ଦଳଗତ ଜୀବନଠାରୁ ପୃଥକ୍ ଏକ ଭିନ୍ନ ପ୍ରକାର ମଣିଷ ।

ସୋନୁକୁ ସାଥିରେ ଧରି ଫେରିଆସିଲି କ୍ୟାମ୍ପକୁ । ସେତେବେଳକୁ ଅନ୍ୟ ସମସ୍ତେ ବୁଲାବୁଲି ସାରି ଫେରିଆସିଥାନ୍ତି । ସୂର୍ଯ୍ୟାସ୍ତର ବହୁତ ପୂର୍ବରୁ ଜଙ୍ଗଲ ଭିତର ଆଉ ଅନ୍ଧାର ଆଉ ଶୀତ ମାଡିଆସୁଥାଏ । କ୍ୟାମ୍ପ ଚୁଲିକୁ ଶୁଖିଲା ଡାଳ ପତ୍ର ମୁହେଁଇଦେଇ ଦିକଦିକ ଜଳୁଥିବା ନିଆଁକୁ ହୁତହୁତ କରି ଜଳେଇଦିଆଗଲାଣି ସେତେବେଳକୁ । ଚୁଲି ଚାରିପାଖେ ପଡିଥିବା ଚଉକି ଗୁଡିକରେ କ୍ୟାମ୍ପରମାନେ ଆରାମରେ ବସି ଜଳଖିଆ ଖାଉଥାନ୍ତି, କୋକ୍ ପିଉଥାନ୍ତି । କାହାରି କାହାରି ଦରକାର ଚା' କଫି । ଥର୍ମୋସ୍‌ରୁ ଘରୁ ଆଣିଥିବା ଚା' କଫି ଢାଳି ଗୃହିଣୀମାନେ ଚା' କଫି ପରସୁଥା'ନ୍ତି । ରୋଷେଇ ବିଶେଷଜ୍ଞମାନେ ଲାଗିପଡିଥାନ୍ତି ଡିନର୍ ବନେଇବାରେ– ରୋଷ୍ଟେଡ୍ ଚିକେନ୍ ଆଉ ରୋଟି ସେକିବାରେ । ସ୍ଥାନଟା ମହକି ଉଠୁଥାଏ ଇଣ୍ଡିୟାନ୍ ଷ୍ଟାଇଲ୍ କୁକିଂ ରୋଷେଇଶାଳରୁ ବାହାରୁଥିବା ଗରମ ମସଲା ବାସ୍ନାରେ ।

ରାତି ଆସିଗଲା । ଅନ୍ଧାର ଗାଢ଼ ହେବାକୁ ଲାଗିଲା । ସେଇ ଆରଣ୍ୟକ ଅନ୍ଧାର ଭିତରେ ଜଳନ୍ତା ଚୁଲିର ନିଆଁ ଆଖପାଖ ଏକ ଅତ୍ୟନ୍ତ ନିରାପଦ ଜାଗା ମନେକରି ଛୋଟବଡ ସମସ୍ତେ କ୍ରମଶଃ ନିକଟେଇ ଆସୁଥାନ୍ତି ପରସ୍ପରର, ଆଉ ନିଆଁକୁ ବେଢିଗଲେଣି ଦୀପ ଚାରିପାଖେ ପତଙ୍ଗ ପରି ।

ହଠାତ୍ ଅନୁଭବ କଲି ମୋ କୋଳରେ ବସିଚି ସିମୋନି– ବିମଳ ମିଶ୍ର ଓ ଲୀନାଙ୍କ ସେଇ ତିନି ବର୍ଷର ଛୋଟ ଝିଅଟି । କିନ୍ତୁ ମୋର ଏ କୋଳଟା ଯେ ମୋ ଦୁଇନାତୁଣୀ ଆନୁ ଅଙ୍କିତାଙ୍କ ଇସ୍ତମରାରି ପଟ୍ଟା ! ଦେଖିଲି ସିମୋନିର ଖାତିର ନଥାଏ ସେ କଥାକୁ । ଅନୁ ଅଙ୍କିତାଙ୍କୁ ବେଦଖଲ କରିଦେଇଚି ସିମୋନି ଆଜି ସନ୍ଧ୍ୟାରେ । କିନ୍ତୁ ଆନୁ ଅଙ୍କିତା ପୂରାପୂରି ନିରାଶ ହୋଇନଥାନ୍ତି । ସେମାନେ ଦୁଇଟା ଚେୟାର ଟାଣିଆଣି ମୋ ଦେହକୁ ଲାଗି ବସିପଡିଲେ ବାଁ ଡାହାଣରେ । ପରେପରେ ଦେଖାଗଲା ଆଉ ଏକ ଚେୟାରକୁ ଠିକ୍ ମୋ ମୁହଁ ସାମନାରେ ଥାପିଦେଇ ବସିପଡିଲା ସୋନୁ ।

ପିଲାମାନଙ୍କ ଘେରରେ ବନ୍ଦୀ ହେଇଗଲାପରେ ସେମାନଙ୍କର ମିଳିତ ପ୍ରସ୍ତାବଟା ଆଗତ କଲା ଅଙ୍କିତା– ''ଅଜା ! ଆମକୁ ଗପ କୁହ ।''

– ''କି ଗପ? ମିଆଁ ଗପ ?''

''ନା, ନା– ଘୋଷ୍ଟଗପ ! ଆପଣ ପରା କୁଆଡେ ଘୋଷ୍ଟ ଦେଖିଚନ୍ତି କରଂଜିଆରେ ? ଆମେ ପଢ଼ିଚୁ ଆପଣଙ୍କ ସେ ବହି– କରଂଜିଆ ଡାଏରି ।'' ମୋ ହାତକୁ ଗୋଟାଏ ପେପର୍ ପ୍ଲେଟ୍‌ରେ ମୁଣ୍ଡାଏ ତହ ତହ ତାତିଲା ଚିକେନ୍ ରୋଷ୍ଟ ବଢେଇଦେଇ ମହିଳା ଜଣେ କହିଲେ, ''ଅଙ୍କଲ୍ ! ସେ ବହିରେ ଯାହା ଲେଖିଚନ୍ତି ସେ ସବୁ କ'ଣ ସତ ?।''

ଦେଖିଲି ଭୂତଗପ ଶୁଣିବାକୁ ପିଲାମାନଙ୍କ ସାଙ୍ଗେ ବଡମାନେ ମଧ୍ୟ ମିଶିଗଲେଣି ପିଲାଙ୍କ ସାଙ୍ଗରେ ।

ଅରଣ୍ୟ ଏକ ରହସ୍ୟମୟ ସ୍ଥାନ ଯାହା ମଣିଷର ଆଦିମ ସ୍ମୃତି ଉଦ୍ରେକ କରାଏ । ପୁଣି ଅରଣ୍ୟରେ ରାତ୍ରୀକାଳ ଆହୁରି ରହସ୍ୟମୟ । ସେ ସମୟରେ ମଣିଷର ପ୍ରାଗୈତିହାସିକ ମନ ଚେତନଶୀଳତାର ସମସ୍ତ ବାହ୍ୟ ଆବରଣକୁ ଫଟେଇଦେଇ ବାହରିଆସେ ପଦାକୁ । ମଣିଷ ଯେତେ ପାଠୁଆ ଆଧୁନିକ ହେଲେ ବି ଅରଣ୍ୟର ରାତ୍ରିକାଳୀନ ନିର୍ଜନତା ତାର ଅବଚେତନକୁ ବିଦାରଣ କରି ମୂଳ ଅସ୍ତିତ୍ୱକୁ ମନର ଅତଳଗର୍ଭରୁ ବାହାରକୁ ଭିଡିଆଣେ ।

ସେଦିନ ରାତିରେ ବହୁତ ସମୟ ପାଇଁ ମୁଁ ସେମାନଙ୍କୁ ଶୁଣେଇଲି ମୋ ଅଙ୍ଗେ ନିଭା କେତେକ ସତ୍ୟ ଘଟଣା– ଯାହା ବିଜ୍ଞାନର ସମସ୍ତ ନିୟମକୁ ଅମାନ୍ୟ କରି ବିଭିନ୍ନ ସମୟରେ ଘଟିଯାଇଥିଲା । ସେସବୁର କେତେକ ଉଲ୍ଲେଖ ରହିଚି ମୋର ଆତ୍ମଜୀବନୀ ପୁସ୍ତକରେ ।

ରାତି ଢେର୍ ବଢିଯାଇଥାଏ । ପିଲାମାନେ ଶୋଇଗଲେଣି ଅନେକ ବେଳୁ । ସେମାନଙ୍କୁ କାଖ କରି ମା' ବାପାମାନେ ନେଇଗଲେ ଯେ ଯାହାର ତମ୍ବୁକୁ ।

ରାତିଟା ସୁରୁଖୁରୁରେ କଟିଗଲା । ସକାଳୁ ସକାଳୁ ଡେରା ଭାଙ୍ଗିଲା । ବ୍ରେକ୍‌ଫାଷ୍ଟ୍ ପରେ କ୍ୟାମ୍ପ୍ ଚୁଲିରେ ପାଣି ଢାଳି ଦିକ୍‌ଦିକ୍ ହେଇ ଜଳୁଥିବା ଅଙ୍ଗାର ନିଆଁକୁ ସଂପୂର୍ଣ୍ଣଭାବେ ଲିଭାଇଦିଆଗଲା । ଏହା ପରେ ନିଜନିଜ ଗାଡିରେ କ୍ୟାମ୍ପିଂ ସାଜସରଂଜାମ ଗୁଡିକୁ ଲଦି ସମସ୍ତେ ଫେରିଲେ ଘରମୁହାଁ ।

## ବଲ୍‌ଟିମୋର – ୱାସିଂଟନ୍ ଭ୍ରମଣ –

ତା ୧୯ ଅଗଷ୍ଟ ୨୦୦୬, ଶନିବାର । ଆଗରୁ ସୂଚନା ଦେଇଚି– ମେରିଲ୍ୟାଣ୍ଡର ବଲ୍‌ଟିମୋର୍ ସହର ଯୁକ୍ତରାଷ୍ଟ୍ର ଆମେରିକାର ଏକ ପ୍ରଧାନ ମେଟ୍ରୋପଲିଟାନ୍ ସିଟି । ଏହାର ଦକ୍ଷିଣ ଦିଗକୁ, ବେଶ୍ ନିକଟରେ, ଆମେରିକାର ରାଜଧାନୀ– ୱାସିଂଟନ୍ (ଡିସି) । ବଲ୍‌ଟିମୋର୍ ଓ ଓ୍ୟାସିଂଟନ୍ ପାଖାପାଖି ହେଇଥିବାରୁ ଏ ଦୁଇ ସହରର ବାସିନ୍ଦାମାନେ ପରସ୍ପର ସହିତ ନିକଟତମ ସଂପର୍କ ରକ୍ଷାକରି ଚଳନ୍ତି । ଉଭୟ ସହରରେ ପ୍ରବାସୀ

ଓଡିଆମାନେ ବହୁସଂଖ୍ୟାରେ ବସବାସ କରନ୍ତି । ଏମାନେ ସମସ୍ତେ ବଡବଡ କଂପାନୀ ଓ ସରକାରୀ ସଂସ୍ଥାମାନଙ୍କରେ ଚାକିରି କରନ୍ତି– ବେଶ୍ ବଡବଡ ପଦପଦବୀରେ ମଧ୍ୟ । ମୋର ବଲ୍‌ଟିମୋର୍ ରହଣି ସମୟରେ ମୁଁ ଏଇ ଦୁଇ ସହରର କେତେକ ପ୍ରବାସୀ ଓଡିଆ ବୁଦ୍ଧିଜୀବୀଙ୍କ ସହିତ ପରିଚିତ ହେବାର ସୁଯୋଗ ପାଇଥିଲି । ସେମାନଙ୍କର କେତେକ ସାମାଜିକ ଉତ୍ସବ ଏବଂ ବୌଦ୍ଧିକ ଆଲୋଚନାଚକ୍ରରେ ପ୍ରଧାନ ଅତିଥି ଭାବେ ନିମନ୍ତ୍ରିତ ହୋଇ ବୌଦ୍ଧିକ ଚିନ୍ତା ଆଦାନ ପ୍ରଦାନର ସୁଯୋଗ ମଧ୍ୟ ପାଇଥିଲି ।

ସେଦିନ ଏମିତି ଏକ ସୁଯୋଗ ପ୍ରଥମ କରି ମିଳିଲା ଓ୍ୟାସିଂଟନର ଏକ 'ଇସକନ୍' ମନ୍ଦିରର ପ୍ରେକ୍ଷାଳୟରେ । ପ୍ରବାସୀ ଓଡିଆମାନଙ୍କର ଏକ ସଭାରେ ଆଜି ସନ୍ଧ୍ୟାରେ ଭାଷଣ ପାଇଁ ମତେ ଆୟୋଜକମାନେ ପୂର୍ବରୁ ନିମନ୍ତ୍ରଣ ଜଣାଇଥାନ୍ତି । ଆମେ ନିର୍ଦ୍ଧାରିତ ସମୟରେ ଇସକନ ମନ୍ଦିରରେ ପହଞ୍ଚିଲୁ ।

ଓ୍ୟାସିଂଟନର ସେ ଇସକନ ମନ୍ଦିରରେ ସ୍ଥାନୀୟ ଓଡିଆମାନେ ବର୍ଷର ବିଭିନ୍ନ ସମୟରେ ଜଗନ୍ନାଥଙ୍କ ଦର୍ଶନ ପାଇଁ ଏକାଠି ହୁଅନ୍ତି । ବାହାରୁ ଆସୁଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଡାକି ଏ ମନ୍ଦିରର ମିଟିଂ ହଲରେ ଧର୍ମୀୟ ତଥା ବୌଦ୍ଧିକ ଆଲୋଚନା ପାଇଁ ସଭାସମିତି ମଧ୍ୟ କରିଆସୁଥିଲେ । ସେସବୁ ସଭା ସମିତି ପାଇଁ ମନ୍ଦିର କର୍ତ୍ତୃପକ୍ଷଙ୍କ ପୂର୍ବ ଅନୁମତି ଲୋଡା । ଆଜିବି ଆୟୋଜକମାନେ ସଭା ପାଇଁ ମନ୍ଦିରର ପରିଚାଳକ ଶ୍ରୀ ଅଦ୍ୱୈତ ମହାରାଜଙ୍କଠାରୁ ଅନୁମତି ବିଧିବଦ୍ଧଭାବେ ନେଇଥା'ନ୍ତି । ମହାରାଜ ଜଣେ ମଧ୍ୟବୟସ୍କ ଗୋରା ଆମେରିକାନ୍ ଇସ୍‌କନ୍‌ପନ୍ଥୀ ବାବାଜୀ । ଆଜି ସଭାରେ ଆଲୋଚ୍ୟ ବିଷୟ– "The concept of Jagannath in the context of Indian Philosophy" ପ୍ରତି ଆଗ୍ରହାନ୍ୱିତ ହୋଇ ସେ ନିଜେ ସଭାରେ ଉପସ୍ଥିତ ରହିବେ ବୋଲି ପୂର୍ବରୁ ଉଦ୍ୟୋକ୍ତାମାନଙ୍କୁ କହିଥିଲେ । ତେଣୁ ଯଥେଷ୍ଟ ସମୟ ଆଗରୁ ସେ ମନ୍ଦିରକୁ ଆସିଯାଇଥିଲେ ଏବଂ ନିଜ ତତ୍ତ୍ୱାବଧାନରେ ମନ୍ଦିରର ସେବାକାରୀଙ୍କଦ୍ୱାରା ଠାକୁରମାନଙ୍କର ସାନ୍ଧ୍ୟ ପୂଜା ଆଳତି ଇତ୍ୟାଦି କରାଇସାରିଥିଲେ । ମନ୍ଦିର ସେବାକାରୀ ଜଣେ ଭାରତୀୟ ଗୁଜୁରାଟି ଲୋକ । ପୂର୍ବରୁ ଏ ମନ୍ଦିରରେ ଜଣେ ଓଡିଆ ସେବାକରି ପୂଜକ ନିଯୁକ୍ତି ପାଇଥିଲେ– କିନ୍ତୁ ଅଳ୍ପ ଦିନ ତଳେ ସେଇ ଓଡିଆ ପୂଜକଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇ ଗୁଜୁରାଟି ପୂଜକଙ୍କୁ ନିଯୁକ୍ତି ଦିଆଯାଇଥାଏ ବୋଲି ଶୁଣିଥିଲି । ସେ ଯାହାହେଉ, ଆମେ ମନ୍ଦିରରେ ଯଥା ସମୟରେ ପହଞ୍ଚିଲୁ ଓ ସଭା କାର୍ଯ୍ୟ ଆରମ୍ଭ ହେଲା ।

ସନ୍ଧ୍ୟା ପ୍ରାୟ ସାଢେ ଛ'ରେ ସଭା କାର୍ଯ୍ୟ ଆରମ୍ଭହେଲା । ମନ୍ଦିର ଭିତରେ ବେଶ୍ କିଛି ସଂଖ୍ୟାର ଶ୍ରୋତା ସମବେତ ହୋଇସାରିଥିଲେ । ଜାଣିବାକୁ ପାଇଲି ସେମାନେ ସମସ୍ତେ ଉଚ୍ଚବୃତ୍ତିଧାରୀ ପ୍ରବାସୀ ଓଡିଆ । ବଡବଡ ଚାକିରିରେ ଏଠି ଓ୍ୱାସିଂଟନ୍ ଓ ବଲଟିମୋର୍‌ର ସରକାରୀ ବେସରକାରୀ ସଂସ୍ଥାମାନଙ୍କରେ ଅବସ୍ଥାପିତ । ଏମାନଙ୍କ ଭିତରୁ

କେତେକ ଗବେଷଣା କରନ୍ତି 'ନାସା'ର ଗବେଷଣାଗାରରେ ବା ଆଣବିକ କେନ୍ଦ୍ରମାନଙ୍କରେ । ସାମ୍ନାରେ ଏତେ ସଂଖ୍ୟାରେ ପ୍ରବାସୀ ଓଡ଼ିଆ ବୈଜ୍ଞାନିକ, ଇଂଜିନିୟର ଡାକ୍ତରମାନଙ୍କୁ ଶ୍ରୋତା ଭାବେ ପାଇ ମୁଁ କୃତକୃତ୍ୟ ଅନୁଭବକଲି ।

ସଭାର ଉଦ୍ୟୋକ୍ତା ଡକ୍ଟର ନରେଶ ଦାସ ଓ ତାଙ୍କ ପତ୍ନୀ ଡକ୍ଟର ବିଜ୍ଞାନୀ ଦାସ ଉଭୟ ମୋ ପାଖରେ ବସିଥାନ୍ତି । ନରେଶ ଫିଜିକ୍ସ ଓ ବିଜ୍ଞାନୀ ମ୍ୟାଥ୍‌ମ୍ୟାଟିକ୍‌ସ୍‌ରେ ପି.ଏଚ୍‌ଡି । ନରେଶ ଯୁକ୍ତରାଷ୍ଟ୍ର ଆମେରିକାର ଆର୍ମି ରିସର୍ଚ୍ଚ ଲ୍ୟାବ୍‌ର ବୈଜ୍ଞାନିକ । ବିଜ୍ଞାନୀ ନାସାର ସାଇଣ୍ଟିଷ୍ଟ୍ ।

ନରେଶବାବୁ ସଭା କାର୍ଯ୍ୟ ଆରମ୍ଭ କଲେ । ପ୍ରଥମେ ଅତିଥି ପରିଚୟ ପରେ ସେ ଘୋଷଣାକଲେ ଆଜିର ଆଲୋଚ୍ୟ ବିଷୟ– "The concept of Jagannath in the light of Indian Philosophy" । ବିଷୟର ପୃଷ୍ଠଭୂମିର ସୂଚନା ଦେଇ କହିଲେ– "ବନ୍ଧୁଗଣ ! ଆଜିର ବିଜ୍ଞାନ ଯୁଗରେ ଯେତେବେଳେ ଧର୍ମକୁ ଏକ ମଧ୍ୟଯୁଗୀୟ କୁସଂସ୍କାର ବୋଲି ମନେକରାଯାଏ ସେଇ ସମୟରେ ଆମେ ଲକ୍ଷ୍ୟକରୁଛୁ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ସାରା ବିଶ୍ୱରେ ନାହିଁନଥିବା ଲୋକପ୍ରିୟତା ଅର୍ଜନ କରିଚାଲିଚି । ବିଶ୍ୱ ଜନମାନସ ଉପରେ ଶ୍ରୀ ଜଗନ୍ନାଥଙ୍କ ଏଭଳି ବିସ୍ମୟକର ଯାଦୁକରୀ ପ୍ରଭାବର କାରଣ କ'ଣ ତାହା ଆମଭଳି ଜଡବାଦୀ ବୈଜ୍ଞାନିକମାନଙ୍କୁ ବିସ୍ମିତ କରୁଚି ।

ଏହା ପରେ ନରେଶବାବୁ କହିଲେ– ''ମୁଁ ପ୍ରଥମେ ଅନୁରୋଧ କରୁଚି ଏ ଇସ୍‌କନ୍ ମନ୍ଦିରର ବାବାଜୀ ଶ୍ରୀ ଅଦ୍ୱୈତ ମହାରାଜଙ୍କୁ ଆମ୍ଭମାନଙ୍କର ଏ ସଭାରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ସଂପର୍କରେ ତାଙ୍କ ନିଜର ଅନୁଭୂତିରୁ କିଛି କହନ୍ତୁ ।''

ଅଦ୍ୱୈତ ମହାରାଜ ଆମ୍ଭମାନଙ୍କୁ ସ୍ୱାଗତ ଜଣାଇ ନିଜ ଅଭିଜ୍ଞତାରୁ ଏକ ସଂକ୍ଷିପ୍ତ ଭାଷଣ ଦେଲେ । ସେ କହିଲେ କିଛି ବର୍ଷ ତଳେ ମହାପ୍ରଭୁ ଶ୍ରୀ ଚୈତନ୍ୟ ଦେବଙ୍କ ପଞ୍ଚଶତ ଜୟନ୍ତୀ ପାଳନ ଉପଲକ୍ଷ୍ୟେ ଇସ୍‌କନ୍ ପକ୍ଷରୁ ଏକ ଦୀର୍ଘ ପଦଯାତ୍ରା ଭାରତରେ ଅନୁଷ୍ଠିତ ହୋଇଥିଲା । ସେ ପଦଯାତ୍ରା ରାଜମହେନ୍ଦ୍ରିରୁ ଆରମ୍ଭହୋଇ ପୁରୀ ବାଟ ଦେଇ ନଦିୟା ପର୍ଯ୍ୟନ୍ତ ଗତିକରିଥିଲା । ସେଇ ପଦଯାତ୍ରାରେ ସେ ଅଂଶ ଗ୍ରହଣ କରିଥିଲେ । ସେଇ ସ୍ମୃତିଚାରଣ କ୍ରମେ ସେ କେତେକ ଐତିହାସିକ ଭ୍ରମ ସୃଷ୍ଟିକଲା ଭଳି ମତ ପ୍ରକାଶ କଲେ । କହିଲେ– ରାଜମହେନ୍ଦ୍ରିଠାରେ ଅବସ୍ଥାପିତ ରାମାନନ୍ଦ ରାୟ ଜଣେ ବଙ୍ଗାଳୀ । ଚୈତନ୍ୟଙ୍କ ଆବିର୍ଭାବ ପୂର୍ବରୁ ଜଗନ୍ନାଥ ମନ୍ଦିରରେ ବୈଷ୍ଣବୀୟ ପରମ୍ପରା ଆଦୌ ପ୍ରଚଳିତ ନଥିଲା । ଜଗନ୍ନାଥ ସ୍ୱୟଂ ଶ୍ରୀକୃଷ୍ଣ– ସେ ଅନ୍ୟ କୌଣସି ଗଡ୍ ବା ଡେମିଗଡ ନୁହନ୍ତି । ପୁଣି ସାକ୍ଷୀଗୋପାଳର ଗୋପୀନାଥଙ୍କୁ ସେ ରେମୁଣାର କ୍ଷୀରଚୋରା ଗୋପୀନାଥ ବୋଲି ତାଙ୍କ ବକ୍ତବ୍ୟରେ ବାରମ୍ବାର ଉଲ୍ଲେଖ କଲେ ।

ଇସ୍‌କନ୍ ବାବାଜୀଙ୍କ ବକ୍ତବ୍ୟ ପରେ ମୋ ପାଳି ପଡ଼ିଲା ।

## ମୋ ବକ୍ତବ୍ୟ ମଝିରେ ବାବାଜୀଙ୍କ ବାଧା –

ସଭାପତିଙ୍କ ନିର୍ଦ୍ଦେଶ କ୍ରମେ ମୁଁ ମୋ ବକ୍ତବ୍ୟ ଆରମ୍ଭ କଲି । ପୂର୍ବ ନିର୍ଦ୍ଧାରିତ ବିଷୟ ବସ୍ତୁ– The Concept of Jagannath in the light of Indian Philosophyକୁ ଦୃଷ୍ଟିରେ ରଖି ମୁଁ ମୋ' ବକ୍ତବ୍ୟ ଆରମ୍ଭକଲି । ବକ୍ତବ୍ୟଟି ଇଂରେଜୀରେ ପ୍ରାୟ କୋଡିଏ ମିନିଟ୍ ହେବା ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ପ୍ରାୟ ପାଞ୍ଚ ଛ' ମିନିଟ୍ ନଯାଉଣୁ ଜଣେ କାହାର "ନୋ ନୋ ନୋ" ଚିତ୍କାରରେ ମୋର ଧ୍ୟାନ ଭାଙ୍ଗିଗଲା । ଆଖି ବୁଲେଇ ଦେଖିଲି ସେ ଆଉ କିଏ ନୁହେଁ ଖୋଦ ଅଦ୍ୱୈତବାବା । ଅବାକ୍ ହେଇ ଚାହିଁଲି ସେଇ ଗେରୁଆ ବସ୍ତ୍ରଧାରୀ ଗୋରା ଆମେରିକାନ୍ ଚେହେରାର ଲୋକଟାର ମୁହଁକୁ ।

ମୁଁ ଚୁପ୍ ହେଇଗଲା ପରେ ତାଙ୍କ ସତର୍କବାଣୀ ଶୁଣିବାକୁ ମିଳିଲା– "ବନ୍ଦକରନ୍ତୁ– ଏଠି ସେସବୁ କଥା ଚଳିବ ନାହିଁ !"

"କୋଉ କଥା ?" – ତାଙ୍କ କଥା ବୁଝିନପାରି ପଚାରିଲି, "ଦୟାକରି କହନ୍ତୁ କୋଉ କଥା ଚଳିବ ନାଇଁ ଏଠି ? ମୁଁ ତ ଅନ୍ୟ କିଛି କହିନାହିଁ– କହିଚି ଶ୍ରୀ ଜଗନ୍ନାଥ ସର୍ବଧର୍ମ ସମନ୍ୱୟବାଦର ପ୍ରତୀକ । ତାଙ୍କୁ ଏକାଧାରରେ ଗଣପତି, ନାରାୟଣ, ଶିବ, ଶକ୍ତି ଏବଂ ଭାସ୍କର ଅର୍ଥାତ୍ ସୂର୍ଯ୍ୟନାରାୟଣ ଭାବେ ପୂଜାକରାଯାଏ । ଏ ତ ମୋ ନିଜର ମନଗଢା କିଛି ନୁହେଁ– ସାରା ଭାରତର ଲୋକ ଏକଥା ଜାଣନ୍ତି । ସେଥିପାଇଁ ପୁରୀକୁ ଜଗନ୍ନାଥଙ୍କ ଦର୍ଶନପାଇଁ ସବୁ ହିନ୍ଦୁ ସଂପ୍ରଦାୟର ଲୋକ ତୀର୍ଥ କରିବାକୁ ଆସନ୍ତି । ଏ କିଛି ନୂଆ କଥା ନୁହେଁ । ଆପଣ ଏତିକି ଶୁଣି ଏପରି ଅତର୍ଛ ହେଇଗଲେ କାହିଁକି ?"

ମୋ ପ୍ରଶ୍ନର ଉତ୍ତର ଦେଲେ ସେ ଏଇ ଭଳି– "Remember in Iscon philosophy Jagannath is only Sri Krishna, nothing else. He cannot be mixed up with your demigods like Shiva Shakti etc. You are desecerting this temple with all such rubbish talks. You better talk about Vishnavism with Sri Krishna as the central theme or stop your lecture"

ଏହା ପରେ ଚୁପ୍‌ଚାପ୍ ଉଠିଆସିବା ଛଡା ମୋର ଆଉ କଣ ଚାରା ଥିଲା ? ଯେତେହେଲେ ମୁଁ ଏ ଦେଶରେ ଜଣେ ବିଦେଶୀ । ତଥାପି ବକ୍ତୃତା ବନ୍ଦ କରିବା ପୂର୍ବରୁ ମୁଁ ଗୋଟିଏ ବୈଧାନିକ ପ୍ରଶ୍ନ ପଚାରିବା ଉଚିତ୍ ମନେକଲି । ପଚାରିଲି, "ଠିକ୍ ଅଛି । କିନ୍ତୁ ମହାରାଜ ମନେରଖନ୍ତୁ ମୁଁ ଆପଣଙ୍କ ନିମନ୍ତ୍ରଣ ପାଇ ଏ ସଭାରେ ବକ୍ତୃତା ଦେବାକୁ ଆସିନାହିଁ । ମତେ ଯୋଉମାନେ ଡାକିଚନ୍ତି ସେମାନେ ସମସ୍ତେ ଓଡିଆ ପୁଣି ବିଶିଷ୍ଟ ବୈଜ୍ଞାନିକ ଗବେଷକ ଇଂଜିନିୟର୍ ଡାକ୍ତର । ସେମାନେ ମୋ ସାମ୍ନାରେ ବସିଚନ୍ତି । ବର୍ତ୍ତମାନ ଏ ସଭା ଚାଲିବ ନା ବନ୍ଦ ହେବ ସେମାନେ କହନ୍ତୁ ।"

ମୋ' ପ୍ରଶ୍ନ ଶୁଣିବା ମାତ୍ରେ ସଭାରେ ଗୋଟାଏ ସମ୍ମିଳିତ ଗୁଂଜରଣ ସୃଷ୍ଟିହେଲା । ପରେ ପରେ ଏକାବେଳକେ ସମସ୍ତେ କହି ଉଠିଲେ, "Please go on speaking । We want you to continue your talk, Please continue ।"

ଅଦ୍ୱୈତବାବା ଆବାକାବା ହେଇ ତାଙ୍କ କାନକୁହା ଗୁଜୁରାଟି ଲୋକଟିକୁ ବଲବଲକରି ଅନାଇଲେ । ଲୋକଟା ତାଙ୍କ କାନରେ କଣ ପୁଣି କହିଲା କେଜାଣି ବାବାଜି ଚୁପ୍‌ହେଇ ବସିଗଲେ ।

ପରେ ପରେ ମୁଁ ଆହୁରି ଅଧଘଣ୍ଟାଏ କାଳ ମୋ ବକ୍ତୃତାର ଅବଶିଷ୍ଟ କହି ମୋ ବକ୍ତବ୍ୟ ସଂପୂର୍ଣ୍ଣ କଲି । ମୋ ବକ୍ତବ୍ୟର ସାରାଂଶ ହେଲା– ହିନ୍ଦୁଧର୍ମ ଅବତାରବାଦ ଉପରେ ପ୍ରତିଷ୍ଠିତ । ଏ ବିରାଟ ବିଶ୍ୱ ଏକାଦିନକେ ବା ସାତଦିନରେ ଗଢାଯାଇନାହିଁ । ଏହି ସୃଷ୍ଟି କ୍ରମବିକାଶର ପରିଣତି । ଏ ଦୃଷ୍ଟିରୁ ହିନ୍ଦୁମାନେ ଆଜିର ବୈଜ୍ଞାନିକଙ୍କ ବିଗବ୍ୟାଙ୍ଗ୍ ଥିଓରିକୁ ରିଜେକ୍ଟ କରନ୍ତି ନାହିଁ । କାରଣ ଶୈବ ଦର୍ଶନରେ ଏ ବ୍ରହ୍ମାଣ୍ଡର ଉତ୍ପତ୍ତି ଏକ ବିରାଟ ସ୍ପନ୍ଦନ ସହିତ ମହାରବରୁ ଜାତ ବୋଲି ସ୍ପଷ୍ଟଭାବେ ବ୍ୟାଖ୍ୟା କରାଯାଇଚି ।

ବ୍ରହ୍ମତତ୍ତ୍ୱ ଅନୁସାରେ ବ୍ରହ୍ମାଣ୍ଡର ଉତ୍ପତ୍ତି ଏକ ବିନ୍ଦୁର ବିଷ୍‌ଫୋରଣରୁ ବୋଲି ସ୍ପଷ୍ଟ ଭାବେ ଉପନିଷଦ୍ ମାନଙ୍କରେ ବର୍ଣ୍ଣିତ ହୋଇଚି । ବିଷ୍ଣୁପୁରାଣରେ କୁହାଯାଇଚି ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ଏକ ଶହ ଅର୍ଥାତ୍ ଏକ ପରା (ପରା କହିଲେ ଦଶରେ ଚଉତିରିଶଟି ଶୂନ୍) ବୟସ ହେଲେ ଏ ସୃଷ୍ଟି ବିଲୟ ପ୍ରାପ୍ତ ହେବ । ଏହି ସମୟ କାଳର ଅବଧି ପ୍ରାୟ ତିନିହଜାର ଟ୍ରିଲିଅନ୍ ବର୍ଷ । ଏହି ସମୟ ଗଣନାକୁ ପରୀକ୍ଷା କରି ଦେଖାଯାଇଚି ଏହା ଷ୍ଟିଫେନ୍ ହକିଂଙ୍କ ବିଗ୍‌ବ୍ୟାଙ୍ଗ ତତ୍ତ୍ୱର ସମୟ ଆକଳନର ନିକଟତମ ସଂଖ୍ୟା ।

ପୁଣି ଏଇ ପ୍ରକଟିତ ବିଶ୍ୱ ଏକ କ୍ରମବିକାଶରୁ ଉତ୍ପନ୍ନ ବୋଲି ହିନ୍ଦୁ ଦର୍ଶନ ଦୃଢ ଭାବେ କହେ । ଭଗବାନ୍ ବିଷ୍ଣୁଙ୍କ ଦଶ ଅବତାର ଏହାର ଗୋଟିଏ ଆଂଶିକ ଉଦାହରଣ କେବଳ । ବିଷ୍ଣୁ ଏକଦା ମତ୍ସ୍ୟ, କଚ୍ଛପ, ଶୂକର, ନରସିଂହ ଇତ୍ୟାଦି ଅବତାର ହେଇ ଆବିର୍ଭୂତ ହୋଇଥିଲେ ବିପଦ କାଳରେ ସୃଷ୍ଟି ଉଦ୍ଧରିବା ପାଇଁ । ସେ ଦୃଷ୍ଟିରୁ ହିନ୍ଦୁମାନେ ଡାରୱିନ୍‌ବାଦକୁ ପ୍ରତ୍ୟାଖ୍ୟାନ କରନ୍ତି ନାହିଁ । ଅବତାରବାଦରେ ଦେଖିବା କଥା– ବିଷ୍ଣୁ ସପ୍ତମ ଅବତାରରେ ରାମ, ଅଷ୍ଟମରେ କୃଷ୍ଣ ବଳରାମ ଏବଂ ନବମରେ ବୁଦ୍ଧ ଅର୍ଥାତ୍ ଜଗନ୍ନାଥ ଅବତାର ନେଲେ । ଏଥିରୁ ସ୍ପଷ୍ଟ ହୁଏ ଜଗନ୍ନାଥ ହେଲେ ମୂଳ ଈଶ୍ୱର ବା ବିଷ୍ଣୁ ବା ବ୍ରହ୍ମଙ୍କର କ୍ରମ-ବିକାଶର ପରିଣତି । ଜଗନ୍ନାଥ ଏକ କ୍ରମବିବର୍ତ୍ତିତ ବ୍ରହ୍ମଙ୍କର ରୂପ କହିଲେ କେହି ଅପମାନିତ ହେବା ଏକ ଅପ୍ରାସଙ୍ଗିକ ବା ଅବୈଜ୍ଞାନିକ ଯୁକ୍ତି ।

ଏ ସବୁ ଉପରେ ଆସୁଚି ଜଗନ୍ନାଥ ମୂଳତଃ କେଉଁମାନଙ୍କର ଉପାସ୍ୟ ଦେବତା । ସେ ଯେ ଜଗତର ନାଥ ଏଥିରେ ଦ୍ୱିମତ ହେବାର ନାହିଁ । କିନ୍ତୁ ସେ ହେଉଚନ୍ତି ଓଡିଆମାନଙ୍କର ଇଷ୍ଟଦେବ ଆଉ ଓଡିଆମାନେ ତାଙ୍କୁ ଏପରି ଆପଣାର ବୋଲି ମାନନ୍ତି

ଯେ ଓଡିଆ ପରିବାରର ବିବାହ ବ୍ରତ ପ୍ରଭୃତି ଶୁଭ କାର୍ଯ୍ୟରେ ସେମାନେ ତାଙ୍କୁ ସର୍ବ ପ୍ରଥମ ବରେଣ୍ୟ ଅତିଥି ରୂପେ ନିମନ୍ତ୍ରଣକରନ୍ତି । ଏହାର ପ୍ରମାଣ ଯଦି କେହି ଚାହୁଁଚନ୍ତି ତେବେ ମୋ ସାମ୍ନାରେ ବସିଥିବା ମୋର ଏଇ ଝିଅ ଜୁଲି ଓ ଜାମାତା ଅଭିଜିତଙ୍କୁ ଚାହାନ୍ତୁ । ୧୯୯୨ରେ ଏମାନଙ୍କ ବିବାହ ଉପଲକ୍ଷେ ଯୋଉ ନିମନ୍ତ୍ରଣ ପତ୍ର ଛାପିଥିଲି ତାକୁ ପ୍ରଥମେ ଅର୍ପଣ କରାଯାଇଥିଲା ପୁରୀମନ୍ଦିରରେ ଶ୍ରୀ ଜଗନ୍ନାଥଙ୍କୁ । ଓଡିଆଙ୍କ ଛଡା ଅନ୍ୟ କୌଣସି ପ୍ରଦେଶ, ଦେଶ ବା ବିଦେଶରେ ଏପରି ବିଧିର ପ୍ରଚଳନ ନାହିଁ । ଜଗନ୍ନାଥ ଓଡିଆଙ୍କର ଏକାନ୍ତ ଅନ୍ତରଙ୍ଗ ଆପଣାର ଯାହାଙ୍କୁ ଆର୍ତ୍ତ ମୁହୂର୍ତ୍ତରେ ପ୍ରାର୍ଥନା କରୁକରୁ ଏକାନ୍ତ ଅଭିମାନରେ ଜଣେ ଉତ୍କଳୀୟ ଭକ୍ତ ଅଭିମାନରେ ଦୋଷଦେଇପାରେ । ସେଥିରେ ହିନ୍ଦୁ ଧର୍ମର ହାନି ହୋଇଯାଏନାହିଁ । ଏହାକୁ ଅନ୍ୟ ଧର୍ମାବଲମ୍ବୀମାନେ କହିପାରନ୍ତି "ବ୍ଲାସ୍‌ଫେମି" । ହଁ, ହିନ୍ଦୁ ଧର୍ମରେ ଏପରି ବ୍ଲାସ୍‌ଫେମିର ସ୍ଥାନ ଅଛି ।

ଶେଷରେ ଓଡିଆଙ୍କ ଜଗନ୍ନାଥ ସଂପର୍କରେ ଆହୁରି ଏକ ସତ୍ୟ ସମସ୍ତେ ଉପଲବ୍ଧି କରିବା ଉଚିତ୍ । ଦୁନିଆ ସାରା ଲୋକ ଜାଣନ୍ତି ଜଗନ୍ନାଥଙ୍କୁ ଜଣେ ରାଜାଧିରାଜର ସମ୍ମାନ ଦିଆଯାଏ । ପାହାନ୍ତ ପହରରୁ ରାତି ଅଧ ଯାଏ ପୁରୀମନ୍ଦିରରେ ଶ୍ରୀ ଜଗନ୍ନାଥଙ୍କ ପାଇଁ ରାଜକୀୟ ନୀତି ନିୟମ ବହୁ ଓ ବିଧିବିଧାନ ପୂର୍ବକ ପାଳନକରାଯାଏ, ଯାହା ଉପନିବେଶବାଦ ସମୟରେ ଇଂଲାଣ୍ଡର ବକିଂହାମ ପ୍ୟାଲେସ୍‌ରେ ମଧ୍ୟ ଅସଂଭବ । ଏ ରାଜକୀୟ ବିଧି-ବିଧାନ ଖ୍ରୀଷ୍ଟାବ୍ଦ ଦ୍ୱାଦଶ ଶତାବ୍ଦୀରୁ ଆଜିର ଏକବିଂଶ ଶତାବ୍ଦୀ ଯାକେ ନିରନ୍ତର ପାଳନ କରାଯାଇ ଆସୁଚି । ଯାର କାରଣ ହେଲା ଜଗନ୍ନାଥଙ୍କ ପାଦତଳେ ସେଇ ଦ୍ୱାଦଶ ଶତାବ୍ଦୀର ଜଣେ ଓଡିଆ ସମ୍ରାଟ ଅନଙ୍ଗଭୀମଦେବ ତାଙ୍କର ଗଙ୍ଗାଠାରୁ ଗୋଦାବରୀ ନଦୀ ବ୍ୟାପୀ ବିଶାଳ ସାମ୍ରାଜ୍ୟକୁ ଅର୍ପଣ କରିଦେଇଥିଲେ ଏବଂ ନିଜକୁ ଜଗନ୍ନାଥଙ୍କ ସେବକ ବୋଲି ପରିଚିତ କରିଥିଲେ । ସେଇ କାଳରୁ ଏ ରାଜକୀୟ ପ୍ରଥା ଚାଲିଆସୁଚି । ଜଗନ୍ନାଥ ହେଲେ ଓଡିଶାର ପ୍ରକୃତ ରାଜା ଆଉ ରାଜା ଯେ ହୁଅନ୍ତୁ ନା କାହିଁକି ସେ ତାଙ୍କର ପ୍ରଥମ ସେବକ । ଏଇହେଲା କାରଣ– ଐତିହାସିକ କାଳରେ ଓଡିଶାକୁ ବାରମ୍ବାର ଆକ୍ରମଣକରୁଥିବା ବିଦେଶୀ ସ୍ୱଦେଶୀ ଶତ୍ରୁମାନଙ୍କର ରାଜ୍ୟ ଜୟ ପରେ ଜଗନ୍ନାଥ ମନ୍ଦିର ଲୁଣ୍ଠନ ସମେତ ଜଗନ୍ନାଥଙ୍କୁ ଗାଦିଚ୍ୟୁତ କରିବାକୁ, ତାଙ୍କୁ ନିର୍ବାସିତ କରିବା ବା ତାଙ୍କ ମୂର୍ତ୍ତିକୁ ଦଗ୍ଧ କରିଦେବାର ଅପଚେଷ୍ଟା । ଜଗନ୍ନାଥ ଜଣେ ବାସ୍ତବ ରାଜା ପରି ନିଜ ରାଜ୍ୟରୁ ବାରମ୍ବାର ନିର୍ବାସିତ ହୋଇଛନ୍ତି ଏବଂ ଆତ୍ମଗୋପନ କରିଛନ୍ତି । ଏହା ଓଡିଶାର ରାଜନୈତିକ ଇତିହାସର ଏକ ପ୍ରାମାଣିକ ସତ୍ୟ । ଏହି ଦୃଷ୍ଟିରୁ ଜଗନ୍ନାଥ ଏକ ଐତିହାସିକ ଚରିତ୍ର । ବିଶ୍ୱଇତିହାସରେ ଏହାର ପଟାନ୍ତର ନାହିଁ । ସେଇ କାରଣରୁ ଓଡିଆମାନେ ନିଜ ଇତିହାସ ଅଧ୍ୟୟନ କଲାବେଳେ ଜଗନ୍ନାଥଙ୍କୁ ବାରମ୍ବାର ଭେଟନ୍ତି । ସେମାନେ ଏହାଙ୍କୁ କେବଳ ଏକ ଧାର୍ମିକ ବା ଦାର୍ଶନିକ ସତ୍ୟ ଭଳି ନଦେଖି ଜଣେ

ଜୀବନ୍ତ ସତ୍ତା ଭାବେ ଦେଖନ୍ତି । ତାଙ୍କ ସହିତ ଜୀବନ୍ତ ମଣିଷ ଭଳି ଓଡିଆଙ୍କ ବ୍ୟବହାରର ଅର୍ଥ ଓଡିଆ ବ୍ୟତିରେକେ ଅନ୍ୟମାନେ ଉପଲବ୍ଧି କରିପାରିବେ ନାହିଁ । ଜଗନ୍ନାଥ ଓଡିଆଙ୍କର ବ୍ୟକ୍ତିଗତ ବନ୍ଧୁ, ଦାର୍ଶନିକ ଏବଂ ପରମ ତ୍ରାଣକର୍ତ୍ତା ଈଶ୍ୱର । ସେ ମଧ୍ୟ ଏକ ନୈର୍ବ୍ୟକ୍ତିକ (ଆବ୍‌ଷ୍ଟ୍ରାକ୍ଟ) ସତ୍ତା ଯାହାଙ୍କୁ ଦାର୍ଶନିକ ଭାଷାରେ କୁହାଯିବ ଅଲେଖ ନିରଂଜନ ଶୂନ୍ୟ ଏବଂ ସ୍ୱୟଂସଂପୂର୍ଣ୍ଣ ବ୍ରହ୍ମ ବା ପରଂବ୍ରହ୍ମ ।

ହିନ୍ଦୁର ମହାମନ୍ତ୍ର ହେଲା– ଏକରେ ଅନେକ ଏବଂ ଅନେକରେ ଏକ । ଏଇ ମନ୍ତ୍ରକୁ ସଚିତ୍ରଭାବେ ରୂପାୟିତ କରାଯାଇଚି ମନ୍ଦିରର ରତ୍ନସିଂହାସନରେ ଆମେ ଦେଖୁଥିବା ଚତୁର୍ଦ୍ଧା ମୂର୍ତ୍ତି ଭିତରେ । ଏହି ଚତୁର୍ଦ୍ଧା ମୂର୍ତ୍ତିକୁ ଚାରି ଠାକୁର ଭାବେ ଦେଖନ୍ତି ହିନ୍ଦୁମାନେ ।

ବଳଭଦ୍ରଙ୍କୁ ଶିବ, ସୁଭଦ୍ରାଙ୍କୁ ଶକ୍ତି, ଜଗନ୍ନାଥଙ୍କୁ ବିଷ୍ଣୁ ଏବଂ ସୁଦର୍ଶନଙ୍କୁ ବିଷ୍ଣୁଙ୍କ ଆୟୁଧ ରୂପରେ ସାଧାରଣ ହିନ୍ଦୁ ଦେଖେ । ପୁଣି ଜଗନ୍ନାଥଙ୍କୁ ଗଣେଶ ଉପାସକମାନେ ଗଣପତି ରୂପେ ମାନନ୍ତି । ପ୍ରତିବର୍ଷ ଦେବସ୍ନାନ ପୂର୍ଣ୍ଣମୀରେ ଠାକୁରମାନେ ଗଣପତିଙ୍କ ରୂପ ଧାରଣ କରନ୍ତି । ପୁଣି ତନ୍ତ୍ର ମତରେ ଜଗନ୍ନାଥ ପରମ ଭୈରବ । ତାଙ୍କର ଭୈରବୀ ହେଲେ ବିମଳା । ଆହୁରି ମଧ୍ୟ ବୌଦ୍ଧମାନେ କହନ୍ତି ଜଗନ୍ନାଥ ବୁଦ୍ଧ । ଜୈନମାନେ ମାନନ୍ତି ଜଗନ୍ନାଥ ସେମାନଙ୍କର ଆରାଧ୍ୟ ଜୀନନାଥ– ଯେଉଁ କାରଣରୁ ଜଗନ୍ନାଥଙ୍କ ନାମକରଣ– ଜଗନ୍ନାଥ । ଏହା ବ୍ୟତୀତ ଆହୁରି ଅନେକ ମତରେ ଜଗନ୍ନାଥଙ୍କୁ ଦେଖନ୍ତି ସର୍ବସାଧାରଣ । କିନ୍ତୁ ଜଗନ୍ନାଥ ଏଇ ଅନେକ ଭିତରେ ଏକ ପରଂବ୍ରହ୍ମ !

ମୋ ଉତ୍ତର ଶୁଣି ସେ ବିସ୍ମିତ ହେଲେ । କଥାଟାର ଅର୍ଥ ବୁଝେଇ ଦେବାକୁ କହିଲି, ''ବାବାଜି ମହାଶୟ, ଭାରତର ଅଧିକାଂଶ ଆଂଚଳିକ ଭାଷା ସଂସ୍କୃତରୁ ଉଦ୍‌ଭବ । ମୋ' ମାତୃଭାଷା ସଂସ୍କୃତର ଏତେ ପାଖାପାଖି ଯେ ଆମେ ଶୁଦ୍ଧ ଓଡିଆରେ କଥାହେଲେ ଶୁଭେ ସଂସ୍କୃତ ପରି । ଏଇ ଶୁଦ୍ଧ ଓଡିଆ ଭାଷାକୁ କୁହାଯାଏ ତତ୍‌ସମ ଅର୍ଥାତ ସଂସ୍କୃତ ପରି ଭାଷା ।''

– ମୋ ଉତ୍ତରକୁ ସେ ଗ୍ରହଣକଲେ ସନ୍ଦିହାନ ହେଲା ପରି ।

ସେଇ ସୁଯୋଗରେ ମୁଁ ତାଙ୍କୁ ଆଉ କେତୋଟି କଥା ଶୁଣେଇଲି । କହିଲି– ''ବାବାଜି ମହାଶୟ, ଆଜି ସଭାରେ ଆପଣଙ୍କ ମନ୍ତବ୍ୟ ମନଦେଇ ଶୁଣିଚି । ଆପଣ କହୁଥିଲେ ରାୟ ରାମାନନ୍ଦଙ୍କୁ ଚୈତନ୍ୟଦେବ ବୈଷ୍ଣବତତ୍ତ୍ୱ ଶୁଣାଇ ପ୍ରଥମେ ଦୀକ୍ଷିତ କରିଥିଲେ । ପ୍ରକୃତରେ ତାହା ନୁହେଁ– ବରଂ ବିପରୀତ– ଚୈତନ୍ୟ ଦେବଙ୍କୁ ରାୟ ରାମାନନ୍ଦ ବୈଷ୍ଣବ ଦର୍ଶନର କେତେକ ଗୂଢତତ୍ତ୍ୱ ଶିକ୍ଷାଦେଇଥିଲେ । ପୁଣି ଆପଣ କହିଲେ ରାୟ ରାମାନନ୍ଦ ଜଣେ ବେଙ୍ଗଲି । ରାମାନନ୍ଦଙ୍କ ପୂରା ନାମ ହେଲା– ରାମାନନ୍ଦ ପଟ୍ଟନାୟକ, ରାୟ ଥିଲା ତାଙ୍କର ରାଜଦତ୍ତ ଉପାଧି । କାରଣ ସେ ଥିଲେ ତତ୍‌କାଳୀନ କଳିଙ୍ଗ ବା ଓଡିଶା ସାମ୍ରାଜ୍ୟର ସୀମାନ୍ତଅଂଚଳର ରାଜ୍ୟ ରାଜମହେନ୍ଦ୍ରିର ଶାସକ ବା

ଗଭର୍ଣ୍ଣର । ସେମିତି ଆପଣଙ୍କ ମନରେ ଅନ୍ୟ ଏକ ବିଭ୍ରାନ୍ତି ସୃଷ୍ଟି କରାଯାଇଚି ଓଡିଶାରେ ବୈଷ୍ଣବ ଧର୍ମର ଇତିହାସ ସଂପର୍କରେ । ଆପଣଙ୍କ ଜାଣିବା ପାଇଁ କେବଳ ଏତିକି ବର୍ତ୍ତମାନ କହୁଚି– ଚୈତନ୍ୟଦେବଙ୍କ ଓଡିଶା ଅଗମନର ବହୁ ପୂର୍ବରୁ ଜଗନ୍ନାଥ ମନ୍ଦିରକୁ କେନ୍ଦ୍ରକରି ପାଞ୍ଚଜଣ ପ୍ରସିଦ୍ଧ ବୈଷ୍ଣବକବି ସମ୍ରାଟ୍ ପ୍ରତାପରୁଦ୍ରଙ୍କ ଦରବାରରେ ପ୍ରତିଷ୍ଠା ପାଇସାରିଥିଲେ । ସେମାନଙ୍କୁ କୁହାଯାଏ ପଞ୍ଚସଖା । ସେମାନଙ୍କ ଭିତରେ ଓଡିଆ ଭାଗବତର ରଚୟିତା ଜଗନ୍ନାଥ ଦାସ ଚୈତନ୍ୟ ଦେବଙ୍କ ଘନିଷ୍ଠତମ । ଚୈତନ୍ୟ ପୁରୀରେ ପହଞ୍ଚିବା ପୂର୍ବରୁ ଜଗନ୍ନାଥ ଦାସ ବ୍ୟାସଙ୍କ ଶ୍ରୀମଦ୍ ଭାଗବତର ମାର୍ମିକ ଅନୁବାଦ କରି ଓଡିଶା ଓ ବଙ୍ଗଳାରେ ବିଖ୍ୟାତ ହୋଇଥିଲେ । ଚୈତନ୍ୟ ଦେବ ସେ ଭାଗବତ ଶୁଣି ଜଗନ୍ନାଥ ଦାସଙ୍କୁ 'ଅତିବଡି' ଉପାଧି ଦେଇଥିଲେ । ପୁଣି ଆପଣ ଜାଣିବା ଉଚିତ୍ ଚୈତନ୍ୟ ଦେବଙ୍କ ପିତାମହ ଜଗନ୍ନାଥ ମିଶ୍ର ଥିଲେ ଜଣେ ଖାଣ୍ଟି ଓଡିଆ । ତାଙ୍କ ଘର ଓଡିଶାର ଯାଜପୁର । ପରିସ୍ଥିତିର ଆବଶ୍ୟକତା ଦୃଷ୍ଟିରୁ ଜଗନ୍ନାଥ ମିଶ୍ର ବଙ୍ଗ ଦେଶକୁ ଚାଲିଯାଇଥିଲେ ।''

– ବାବାଜୀ ଚୁପ୍ ରହିଲେ । ବିଳମ୍ବିତ ରାତିରେ ଆମେ ବଲଟିମୋର୍ ଫେରିଆସିଲୁ ।

କିନ୍ତୁ ଅଦ୍ୱୈତବାବାଙ୍କ ମନର ଓରିମାନା ମେଣ୍ଟିବାର ନୁହେଁ । ପ୍ରାୟ ପନ୍ଦର ଦିନ ଭିତରେ ସେ ଆଉ ଏକ କାଣ୍ଡ କରିବସିଲେ । ସେଦିନ ସେଇ ଇସ୍‌କନ୍ ମନ୍ଦିରରେ ଓଡିଆ ସମାଜ ପକ୍ଷରୁ ଆୟୋଜିତ ହୋଇଥିଲା ଏକ ସଂଗୀତ ସନ୍ଧ୍ୟା । ସେ ଆସରରେ ଜଣେ ପ୍ରତିଷ୍ଠିତା ଓଡିଆ ଏନ୍.ଆର୍.ଆଇ ଭଦ୍ରମହିଳା ହିନ୍ଦୁସ୍ଥାନୀ କ୍ଲାସିକାଲ୍ ସଂଗୀତ ପରିବେଷଣ କରୁଥିଲେ । ସଙ୍ଗିତ ମଝିରେ ହଠାତ୍ ଅଦ୍ୱୈତ ବାବା ପୁଣି ହସ୍ତକ୍ଷେପ କଲେ । ସେ ଚିତ୍କାରକଲେ– ''ଷ୍ଟପ୍ ଷ୍ଟପ୍ ଷ୍ଟପ୍ !''

ବିଚାରୀ ଭଦ୍ରମହିଳା ଅଧାରୁ ଗୀତବୋଲା ବନ୍ଦକରି ଆବାକାବା ହେଇ ଚାହିଁଲେ । ତାଙ୍କୁ କୁହାଗଲା– ଇସ୍‌କନ୍ ମନ୍ଦିରରେ କେବଳ କୃଷ୍ଣ ଭଜନ ଛଡା ଅନ୍ୟ କିଛି ସଂଗୀତ ବୋଲା ଯାଇ ପାରିବ ନାହିଁ ।

ଯା'ପରେ ଓଡିଆମାନେ ଆଉ କେବେ ବି ସେ ଇସ୍‌କନ୍ ମନ୍ଦିର ମାଡିନାହାନ୍ତି ବୋଲି ଶୁଣିଲି । ସେମାନେ ମିଳିମିଶି ପରେ ଗୋଟିଏ ଜଗନ୍ନାଥ ମନ୍ଦିର ନିର୍ମାଣ କଲେ ଯୋଉଠି ଏଣିକି ସେମାନଙ୍କର ସଭାସମିତି ନିୟମିତ ଚାଲିଆସୁଚି ସେଇ ୨୦୦୬ରୁ ଏଯାକେ ।

## ଓଡିଆସମାଜ ପକ୍ଷରୁ ମୋତେ 'ପ୍ରଜ୍ଞାଜ୍ୟୋତି' ସମ୍ମାନ ପ୍ରଦାନ–

– ତା ୧୦ ସେପ୍ଟେମ୍ବର ୨୦୦୬, ମେରିଲ୍ୟାଣ୍ଡ ।

ମେରିଲ୍ୟାଣ୍ଡ ଓ ଓ୍ୟାସିଂଟନରେ ପ୍ରବାସୀ ଓଡିଆମାନଙ୍କର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନ ରହିଚି । ସେଠାରେ ବିଭିନ୍ନ ସାଂସ୍କୃତିକ ସମସ୍ୟା ଉପରେ ବୌଦ୍ଧିକ ଆଲୋଚନାଚକ୍ରମାନ

ଅନୁଷ୍ଠିତ ହୁଏ । Jagannath Organization for Global Awareness (JOGA) ଏହିପରି ଏକ ଅନୁଷ୍ଠାନ । ଏହାର ମୁଖ୍ୟ ଉଦ୍ୟୋକ୍ତା ହେଲେ ପୂର୍ବୋକ୍ତ ଡକ୍ଟର ନରେଶ ଦାସ ଓ ତାଙ୍କର ପତ୍ନୀ ଡକ୍ଟର ବିଜ୍ଞାନୀ ଦାସ । ନରେଶ ଫିଜିକ୍ସ ଓ ବିଜ୍ଞାନୀ ମ୍ୟାଥେମାଟିକ୍ସ ସ୍କଲାର୍ । ନରେଶ ଆମେରିକା ସରକାରଙ୍କ ସାମରିକ ବିଭାଗର ବୈଜ୍ଞାନିକ, ବିଜ୍ଞାନୀ ''ନାସା''ର ବୈଜ୍ଞାନିକ । ନରେଶଙ୍କ ଜନ୍ମସ୍ଥାନ ଭଦ୍ରକର ତାଳପଦା ସନ୍ନିକଟ ଏକ ଗାଁ । ତାଳପଦା ନାଁ ଶୁଣିଲା ମାତ୍ରେ ନରେଶଙ୍କ ସାଂସ୍କୃତିକ ପୃଷ୍ଠଭୂମି କଣ ହୋଇଥାଇପାରେ ଅନେକଟା ବୁଝାପଡିଗଲା । ଓଡିଶାର ପ୍ରସିଦ୍ଧ ବୈଷ୍ଣବକବି କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଗାଁର ଏହି ବ୍ୟକ୍ତି ଜଣକ ନିଶ୍ଚୟ ଜଣେ ବୈଷ୍ଣବୀୟ ଚେତନାର ହୋଇଥାଇପାରନ୍ତି– ଏଇ ଧାରଣା ତାଙ୍କ ବିଷୟରେ ମନରେ ଜାତହୋଇସାରିଥିଲା ତାଙ୍କୁ ଓ୍ୟାସିଂଟନର ସେଇ ଇସକନ ମନ୍ଦିରରେ ଭେଟିବା ସମୟରୁ ।

ସେଦିନ ଝିଅ ଜୁଲି ମତେ ଖବରଦେଲା, ''ନନା, ନରେଶଭାଇନା ଆଉ ବିଜ୍ଞାନୀନାନୀ ଇ-ମେଲ୍‌ରେ ଖବର ଦେଇଚନ୍ତି ତାଙ୍କ ଅନୁଷ୍ଠାନ ''ଜୋଗା'' ପକ୍ଷରୁ ଗୋଟିଏ ସଭାର ଆୟୋଜନ ହେଇଚି ଏମାସ ଦଶ ତାରିଖରେ । ସେ ସଭାରେ ତୁମକୁ ଆମର ଏଠାକାର ପ୍ରବାସୀ ଓଡିଆମାନେ ସମ୍ବର୍ଦ୍ଧନା ଜଣେଇବେ ।''

ପଚାରିଲି, ''ମୁଁ ଏକା ନା ମୋ ସାଙ୍ଗରେ ଅନ୍ୟ କାହାକୁ ବି ସମ୍ବର୍ଦ୍ଧନା କରାଯିବ ?''

''ଓଡିଶାର ସଂଗୀତଗୁରୁ ଡକ୍ଟର ଦାମୋଦର ହୋତାଙ୍କୁ ବି । ସେ ଆସିଚନ୍ତି । ଏଠି ଓ୍ୱାସିଂଟନରେ ତାଙ୍କ ପୁଅ ଝିଅ ଚାକିରି କରନ୍ତି । ତାଙ୍କର ଝିଅ ମଧ୍ୟ ହିନ୍ଦୁସ୍ଥାନୀ କ୍ଲାସିକାଲ୍ ସିଙ୍ଗର୍ । ତୁମ ଦି'ଜଣଙ୍କୁ ସଂବର୍ଦ୍ଧନା କରାଯିବ ।''

ନିର୍ଦ୍ଧାରିତ ଦିନ ଆମେ ବାହାରିଲୁ ନରେଶବାବୁଙ୍କ ଘରକୁ । ରବିବାର ଛୁଟି– ସେଦିନ ମଧ୍ୟାହ୍ନରେ ସଭା ଆୟୋଜିତ ହେଇଥାଏ । ଜୁଲି-ଅଭିଜିତଙ୍କ ଘର 'ଏଲକ୍‌ରିଜ'ରୁ ବାହାରି ଆମେ ଡ୍ରାଇଭ୍ କଲୁ ପ୍ରାୟ ଘଣ୍ଟାକରୁ ବେଶି ରାସ୍ତା· ନରେଶ ବାବୁଙ୍କ ଘର ଠିକଣାରେ । ପାଗ ଚମତ୍କାର । ଅରଣ୍ୟ ଉପରେ ଶରତ ଋତୁର ପ୍ରଥମ ପ୍ରଭାବ 'ଫଲ୍'ର ସ୍ପଷ୍ଟ ଛବି ଦିଶୁଥାଏ ବାଟ ସାରା । ବଣ ସାରା ସ୍ଥାନେ ସ୍ଥାନେ କିମିୟା କଲାଭଳି ଗଛମାନେ ରାତାରାତି ବଦଳେଇଦେଲେଣି ରଙ୍ଗ । ସେମାନଙ୍କର ଗାଢ ସବୁଜ ପତ୍ର ପାଲଟି ଯାଇଥାଏ ମନଲୋଭା ହରରଙ୍ଗୀ-ଲାଲ୍ ହଳଦିଆ ନାରଙ୍ଗୀ– ସତେକି ପ୍ରକୃତି ମାତା ଶାକାମ୍ବରୀରୁ ଶ୍ୱେତାମ୍ବରୀ ହେବା ପୂର୍ବରୁ ତାଙ୍କ ଓ୍ୟାର୍ଡରୋବ୍‌ରୁ ସବୁତକ ଲୋଭନୀୟ ରଙ୍ଗର ପାଟଶାଢି କାଢିପକେଇ ଗୋଟାକ ପରେ ଗୋଟାଏ ପିନ୍ଧି ଫୋପାଡୁଥାନ୍ତି ଆକାଶରୁ ତଳକୁ । ଏ ଦେଶରେ 'ଫଲ୍' ପରେ ପରେ ଆସିଯାଏ ପ୍ରଚଣ୍ଡ ଶୀତଋତୁ । ଅନବରତ ତୁଷାରପାତ ଯୋଗୁ ଚାରିଆଡ ଦିଶେ ଧଳା– କେବଳ ଗୋଟିଏ ରଙ୍ଗ ଧଳା ! ଯହିଁରେ ଗଛରେ ପତ୍ରଟିଏ ବି ବଞ୍ଚିରହିବା ଅସଂଭବ । ତେଣୁ ଫଲ୍‌ର ରଙ୍ଗ କ୍ଷଣସ୍ଥାୟୀ ହେଲେ ବି ଅତ୍ୟନ୍ତ

ବୈଚିତ୍ର୍ୟମୟ ଏବଂ ଉପଭୋଗ୍ୟ ହୋଇପଡେ ଏସବୁ ଦେଶରେ ।

ଆମ କାର୍ ଏଇ ଭଳି ଚିତ୍ରିତ ଅରଣ୍ୟ ଭିତରେ ଗତିକରୁଥାଏ– ହେଲେ ବି ବାସ୍ତବରେ ଆମେ ଏକ ଆରଣ୍ୟକ ଆମେରିକାକୁ ଭେଟୁନଥାଉ– ଭେଟୁଥାଉ ଆମେରିକାର ଖୋଦ୍ ରାଜଧାନୀ ସହର ୱାସିଂଟନକୁ ହାଇୱେ କଡେକଡେ । ରାସ୍ତା କଡରେ ଦୃଶ୍ୟମାନ ହେଉଥାଏ ଖୁବ୍ ବଡବଡ ବିଲଡିଂ ଆଉ ତା ଉପରେ ଲେଖାଯାଇଥାଏ ଏହିପରି ଶବ୍ଦସବୁ FBI Head Quarters NASA, CIA ବା ସେଇଭଳି ଅନେକ ଶବ୍ଦ ଯେଉଁ ସବୁ ଶବ୍ଦ ଅମେ ଭାରତରେ ପଢୁ ଖବରକାଗଜରେ । ଏମିତି ସବୁ ନାମାବଳୀ ପଢିପଢି, ହାଇୱେର ସିଆର୍ ସିଆର୍ ହେଇ ଛ' କି ଆଠ ସିଆର ଧଳା ଗାର କଟା ଯାଇଥିବା ରାସ୍ତାରେ ସାଇଁ ସାଇଁ ଚାଲିଥିବା ଟ୍ରାକର ସୁଅ ଭିତରେ ପହଁରୁ ପହଁରୁ ଆମେ ଶେଷରେ ପହଞ୍ଚିଲୁ ଗୋଟାଏ ଜାଗାରେ ଯୋଉଠି କାର ବାଙ୍କିଲା ଗୋଟାଏ ବଡ ହତା ଭିତରକୁ ।

ଅଭିଜିତ୍ କାର୍ ପାର୍କ କଲେ ସେଇ ହତା ଭିତର ପାର୍କିଂ ପ୍ଲେସ୍‌ରେ ଆଉ ଘୋଷଣା କଲେ– "This is the empire of Dr. Naresh Das. This whole area measuring some seven acres of forest land of all those tall big oaks, maples, cedar etc. and that huge fish tank that you see over there everything belongs to him."

ୱାସିଂଟନ୍ ସହର ଭିତରେ ଜଣେ ଓଡିଆ ଲୋକର ସେତେବଡ ଭୂସଂପତ୍ତି ଆଉ ତା' ଭିତରେ ପ୍ରାସାଦ ପରି ଦିଶୁଥିବା ସେଇ ଧଳା ଚକ୍‌ଚକ୍ ବିଲଡିଂଟାକୁ ଅନେଇ ମୁଁ କିଛି ସମୟ ଅଭିଭୂତ ଅବସ୍ଥାରେ ରହିଗଲି । ଜଣେ ଓଡିଆ ଲୋକ ଆମେରିକାରେ ଏଭଳି ସମ୍ପତ୍ତିର ମାଲିକ ହୋଇପାରିଚି– ଏଇ ଥିଲା ମୋର ଗର୍ବ ଓ ଆନନ୍ଦର କାରଣ । ଅବଶ୍ୟ ଏହା ପୂର୍ବରୁ ମୁଁ ଏହିଭଳି ବା ଯା'ଠାରୁ ବଡ ଜାଗା ଓ ପ୍ରାସାଦ ଦେଖିଥିଲି ଆମ ପ୍ରବାସୀ ଓଡିଆଙ୍କର– ସେସବୁର ବର୍ଣ୍ଣନା ଦେଇଚି ଅନ୍ୟତ୍ର । କିନ୍ତୁ ସେସବୁ ଜାଗା ଦେଖିଥିଲି ଟେନିସୀ ବା ଇଣ୍ଡିୟାନା ଭଳି ଦେଶର ଭିତିରି ପ୍ରଦେଶ ମାନଙ୍କରେ କେବଳ । ମାତ୍ର ଏଇଟା ଯେ ଖୋଦ ରାଜଧାନୀ ଆମେରିକାର ହୃତ୍‌ପିଣ୍ଡ ୱାସିଂଟନ !

ସେତେବେଳକୁ ପାର୍କିଂ ଏରିଆରେ ଗୋଟାକ ପରେ ଗୋଟାଏ କରି କାର୍ ଲାଗିବା ଆରମ୍ଭ ହୋଇଗଲାଣି । ଏମାନେ ସବୁ ଆସୁଥାନ୍ତି ନିଶ୍ଚୟ ଆଜିର ସଭାକୁ । ସମସ୍ତଙ୍କ ସାଥିରେ ସେମାନଙ୍କ ପରିବାର । ଯୋଉ ସବୁ ପରିବାର କାରରୁ ଓହ୍ଲାଉଥିଲେ ସେମାନଙ୍କ ଭିତରୁ କେତୋଟି ଚିହ୍ନା ମୁହଁ ଦେଖିବାକୁ ପାଇଲି । ସେମାନଙ୍କୁ ଦେଖିଥିଲି ସେଦିନ ସେଇ ଇସକନ ମନ୍ଦିର ସଭାରେ ଯୋଉଠି ସେ ଇସକନ ବାବାଜୀ ଅଦ୍ୱୈତ ମହାରାଜ ମୋ ବକ୍ତୃତାକୁ ଭଣ୍ଡୁର କରିବାକୁ ପ୍ରୟାସ କରିଥିଲେ । ସେମାନଙ୍କ ଭିତରୁ ସ୍ପଷ୍ଟ ଚିହ୍ନିପାରିଲି ଡକ୍ଟର ଶଶଧର ମହାପାତ୍ରଙ୍କୁ । ଏ ମହାଶୟ ଜଣେ 'ଫିଜିସିଷ୍ଟ୍– ଆମେରିକାର ସ୍ୱାସ୍ଥ୍ୟ-

ବିଭାଗର ରେଡିଓଲଜି ବିଭାଗର ମୁଖ୍ୟ । ଚିହ୍ନିଲି ମଧ୍ୟ ଡକ୍ଟର ନୃସିଂହ ମିଶ୍ରଙ୍କୁ । ଯାଙ୍କୁ ମୁଁ ଜାଣିଥିଲି ସେ ରେଭେନ୍ସା କଲେଜରେ କେମିଷ୍ଟ୍ରି ପୋଷ୍ଟଗ୍ରାଜୁଏଟ୍ ଛାତ୍ର ଥିବା ବେଳୁ । ଏ ମହାଶୟ ମଧ୍ୟ ସେଇ ଭଳି ଆମେରିକାର କୌଣସି ଗୁରୁତ୍ୱପୂର୍ଣ୍ଣ ସରକାରୀ ସଂସ୍ଥାରେ କାର୍ଯ୍ୟ କରନ୍ତି । ପୁଣି ତାଙ୍କ ସ୍ତ୍ରୀ ବନ୍ଦିତା । ବନ୍ଦିତାଙ୍କ ପରିଚୟ ମିଳିଲା ଆମ ଗାଁ ସିଦ୍ଧେଶ୍ୱରପୁର ସୂତ୍ରରୁ । ସେ ନିଜର ପରିଚୟ ଦେଲେ ଆମ ବଂଶର ପ୍ରସିଦ୍ଧ ମୁରଲୀ ଧର ଆଚାର୍ଯ୍ୟଙ୍କ ନାତୁଣୀ ଭାବରେ । ମୁରଲୀ ଆଚାର୍ଯ୍ୟ ଥିଲେ ବିଜୁପଟ୍ଟନାୟକଙ୍କ ସମସାମୟିକ ଓ ତାଙ୍କରି ଚରିତ୍ରର ଜଣେ ଅତି ଦୁଃସାହସିକ ବ୍ୟକ୍ତି ।

ମୁରଲୀଧର ଆଚାର୍ଯ୍ୟ ଥିଲେ ଓଡିଶାରେ ଶିଳ୍ପବିପ୍ଳବର ଆବାହକ । ଜଣେ ପାୟୋନିୟରିଂ ସ୍ପିରିଟ୍‌ର ଆଧୁନିକ ମଣିଷ ଯେ ଓଡିଶାରେ ବୈଷୟିକ ଭାବେ ବିଦ୍ୟୁତ୍ ଉତ୍ପାଦନ ଓ ଯୋଗାଣ ବ୍ୟବସ୍ଥାର ଆରମ୍ଭ ପର୍ଯ୍ୟାୟରେ ସମ୍ବଲପୁର ଇଲେକଟ୍ରିକ୍ ସପ୍ଲାଇ କମ୍ପାନୀ ନାମକ ଏକ ସଂସ୍ଥାର ଜେନେରାଲ୍ ମ୍ୟାନେଜର୍ ଥିଲେ । ଦ୍ରୁତବେଗରେ କାର୍‌ଚାଳନା ଥିଲା ଆମ ମୁରଲୀ ବାପାଙ୍କର ଆଉ ଏକ ବଡ ସଉକ । ନିଜ ଜୀବନକାଳ ଭିତରେ ସେ ଅନ୍ୟୂନ ପାଞ୍ଚପାଞ୍ଚଥର ଆପାତତଃ ଇଚ୍ଛାକୃତ କାର୍ ଆକସିଡେଣ୍ଟ କରି ମୃତ୍ୟୁ ମୁଖରୁ ସୂତା ଛିଏରେ ବଞ୍ଚିଥିଲେ ଓ ଶେଷରେ ଷଷ୍ଠଥର ସେଇ କାର ଦୁର୍ଘଟଣାର ଶିକାର ମଧ୍ୟ ହେଇଥିଲେ । ଆମେ ଗାଁପିଲାମାନେ ତାଙ୍କୁ ଗୁରୁ ମାନିଥିଲୁ ନାନାଦି ଦୁଃସାହସିକ କାର୍ଯ୍ୟର ପ୍ରେରଣାର ଉତ୍ସ ଭାବେ । ବନ୍ଦିତାଙ୍କୁ ଦେଖି ମତେ ସେଦିନ ଖୁବ୍ ଖୁସିଲାଗିଲା ।

ଏହା ପରେ ଭେଟ ହେଲା ସଭାକୁ ଆସିଥିବା ଆମର ପୂର୍ବପରିଚିତ ପାରିବାରିକ ବନ୍ଧୁ ଡକ୍ଟର ସିଦ୍ଧାର୍ଥ ଦାସ (ରଂଜୁ) ଓ ତାଙ୍କର ପତ୍ନୀ ଅଞ୍ଜନା ଦାସ (ରୀନା)ଙ୍କ ସଙ୍ଗେ । ସାଙ୍ଗରେ ଥିଲେ ସେମାନଙ୍କର ଝିଅ ଦିବ୍ୟା (୧୧) ଓ ଶିଶୁପୁତ୍ର ଦେବ (୬) । ସିଦ୍ଧାର୍ଥ ଓଡିଶାର ରାଉରକେଲା ରିଜଓନାଲ୍ ଇଂଜିନିୟରିଂ କଲେଜରୁ ଡିଗ୍ରୀ ପ୍ରାପ୍ତ ଜଣେ ପ୍ରବୀଣ ଇଂଜିନିୟର୍– ବର୍ତ୍ତମାନ ସେ ଭର୍ଜିଆନାର ଏକ ବିଶ୍ୱବିଦ୍ୟାଳୟର ପ୍ରଫେସର । ତାଙ୍କର ମୂଳ ପରିଚୟ– ସେ ହେଲେ କଟକର ରେଭେନ୍ସା କଲିଜିଏଟ୍ ସ୍କୁଲର ପୂର୍ବତନ ପ୍ରସିଦ୍ଧ ଶିକ୍ଷକ ସ୍ୱର୍ଗତ ଶରତଚନ୍ଦ୍ର ବସୁଙ୍କ କନ୍ୟା ରମୋଲା (ମନି) ଓ ଜାମାତା ରାଧାନାଥ ଦାସଙ୍କ ପୁଅ । ମନି ନିରୁପମାଙ୍କ ଘନିଷ୍ଠ ବାନ୍ଧବୀ ଏବଂ ରାଧାନାଥ ବାବୁ ମୋର ବନ୍ଧୁ । ସେ ମଧ୍ୟ କଲିଜିଏଟ ସ୍କୁଲର ଛାତ୍ର ଭାବେ ମୋର ପରିଚିତ । ସେ ରାଉରକେଲା ଇସ୍ପାତ କାରଖାନାର ଜଣେ ବରିଷ୍ଠ ଇଲେକ୍‌ଟ୍ରିକାଲ୍ ଇଂଜିନିୟର୍ ଏବଂ ପ୍ରଶାସକ ଭାବେ ଦୀର୍ଘ ସମୟ କାର୍ଯ୍ୟ କରି ଅବସର ନେଇଥିଲେ ।

ଏମାନଙ୍କ ପରେ ଭେଟିଲି ଡାକ୍ତର ଅଜିତ ଦାସ ଓ ତାଙ୍କ ପତ୍ନୀ ଶୋଭାଙ୍କୁ । ଡାକ୍ତର ଦାସ ଏଠାର ଓଡିଆମାନଙ୍କ ଭିତରେ ଖୁବ୍ ଜନପ୍ରିୟ ଏବଂ ମଧ୍ୟ ଜଣେ ନାମଯାଦା ଡାକ୍ତର ।

ଅନ୍ୟ ଜଣେ ପ୍ରବାସୀ ଓଡିଆଙ୍କୁ ଆଜି ସଭା ଆରମ୍ଭରୁ ଚିହ୍ନିଲି– ସେ ହେଲେ ଡକ୍ଟର

ପ୍ରଦୀପ୍ତ ବେହେରା, ୱାସିଂଟନ ୟୁନିର୍ଭସିଟିର ଇଂଜିନିୟରିଂ ବିଭାଗର ପ୍ରଫେସର୍ । ଏହାଙ୍କ ବ୍ୟତୀତ ଥିଲେ ଶ୍ରୀ ବିମଳ ମିଶ୍ର ଓ ପତ୍ନୀ ଲୀନା, ଶ୍ରୀ ସନ୍ଦୀପ ପଟ୍ଟନାୟକ ଓ ପତ୍ନୀ ମୌସୁମୀ । ଏମାନଙ୍କୁ ମୁଁ କିଛି ଦିନ ଆଗରୁ, ଏକଲନେକ୍ ପାର୍କରେ ବଣଭୋଜି ବେଳୁ ଚିହ୍ନିଥିଲି । ବିମଳ ଲୀନାଙ୍କ ସେଇ କୁନୁମୁନିଆ ଦୁଇ ବର୍ଷର ଝିଅ ସିମୋନୀ ଆଉ ସଂଦୀପ ଓ ମୌସୁମୀଙ୍କ ସେଇ ଆଠବର୍ଷିଆ ବିଚକ୍ଷଣ ପୁଅ ସୋନୁ ବି ଆସିଥାନ୍ତି ଆଜି ମତେ ସଂବର୍ଦ୍ଧନା ଜଣାଇବାକୁ ଉଦ୍ଦିଷ୍ଟ ସଭାରେ ଯୋଗଦେବାକୁ ।

ଏମାନଙ୍କ ବ୍ୟତୀତ ଆହୁରି କେତେଜଣ ଓହ୍ଲେଇଲେ ନିଜନିଜ କାର୍‌ରୁ । ସେମାନଙ୍କ ସାଙ୍ଗେ ପରିଚୟ ହେଲା । ସେମାନଙ୍କ ଭିତରେ ପ୍ରମୁଖ କେତେଜଣ ହେଲେ– ଡକ୍ଟର ବଭ୍ରୁବାହନ ସାମଲ । ଏ ଭଦ୍ରଲୋକଙ୍କୁ ଦେଖି ମନେହେଲା ତାଙ୍କୁ ମୁଁ ରେଭେନ୍ସା କଲେଜର କେମିଷ୍ଟ୍ରି ଡିପାର୍ଟମେଣ୍ଟରେ କେବେ ଦେଖିଥିଲି । ସେ ମୋର ବହୁତ ଜୁନିୟର । ଜୁଲି ଅଭିଜିତ୍‌ଙ୍କ ଠାରୁ ଶୁଣିଥିଲି ଡକ୍ଟର ସାମଲ ଆମେରିକାର ବୈଜ୍ଞାନିକ ମହଲରେ ବେଶ୍ ଖ୍ୟାତି ଅର୍ଜିଛନ୍ତି । ତାଙ୍କ ସଙ୍ଗେ ଅନ୍ତରଙ୍ଗ ହେବା ପରେ ଜାଣିଲି ସେ ଜଣେ ଭଲ କବି ମଧ୍ୟ– ଇଂରେଜୀରେ କବିତା ଲେଖନ୍ତି । ତାଙ୍କର ଆହୁରି ବିଶେଷ ସୁଖ୍ୟାତି– ସେ ଜଣେ ଉଚ୍ଚକୋଟୀର ଫଟୋଗ୍ରାଫର୍ ମଧ୍ୟ । ପ୍ରତ୍ୟେକ ଫଙ୍କସନ୍‌ରେ ଫଟୋ ଉଠେଇବା ଓ ସେଗୁଡ଼ିକୁ ୱେବ୍‌ସାଇଟରେ ବିଜ୍ଞାପିତ କରିବା ଡକ୍ଟର ସାମଲଙ୍କ ଏକ ବଡ ସଉକ ।

ଅନ୍ୟ ଅତିଥିମାନେ ହେଲେ– ଶ୍ରୀ ବିନୋଦ ନାୟକ ଓ ତାଙ୍କ ପତ୍ନୀ ବନ୍ଦିତା । ବିନୋଦ ଓଡିଶାର ପ୍ରସିଦ୍ଧ ଔପନ୍ୟାସିକ ସ୍ୱର୍ଗତ ଲକ୍ଷ୍ମୀଧର ନାୟକଙ୍କ ପୁଅ । ସେ ୱାର୍ଲଡ୍ ବ୍ୟାଙ୍କର ଜଣେ ପଦସ୍ଥ ଅଫିସର୍ । ତାଙ୍କ ଭିଣୋଇ ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି– ଓଡିଆ କବି, ସାହିତ୍ୟିକ ଓ ରେଭେନ୍ସା କଲେଜର ପୂର୍ବତନ ଅଧ୍ୟକ୍ଷ ।

ଏମାନଙ୍କ ବ୍ୟତୀତ ଭେଟିଲି ଅନ୍ୟ ଜଣେ ଭଦ୍ରଲୋକଙ୍କୁ– ଡକ୍ଟର କନେଟି ରାଓ । ଡକ୍ଟର ରାଓ ୱାସିଂଟନ୍‌ରେ ଜଣେ ପ୍ରତିଷ୍ଠିତ ବୈଜ୍ଞାନିକ । ସେ ତେଲୁଗୁ ଲୋକ ହେଲେବି ତାଙ୍କ ପରିଚୟ ମିଳିଲା ପୂର୍ବତନ ଛାତ୍ରଭାବେ, ବି.ଜେ.ବି କଲେଜରେ ମୋର ଅଧ୍ୟାପନା (୧୯୬୧ ରୁ ୧୯୬୯) ସମୟର ।

ଅନ୍ୟ ଦୁଇଜଣ ବ୍ୟକ୍ତି ଯାହାଙ୍କୁ ଚିହ୍ନିଲି ସେଦିନ, ହେଲେ– ମେରିଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟର ଅର୍ଥବିଭାଗର ନିୟନ୍ତ୍ରକ ଶ୍ରୀ ନଳୀନାକ୍ଷ ମହାପାତ୍ର ଓ ତାଙ୍କ ପତ୍ନୀ ବିଜୟଲକ୍ଷ୍ମୀ ।

ଆମେ ଏକାଠି ହୋଇ ଡକ୍ଟର ନରେଶ ଦାସଙ୍କ ପ୍ରାସାଦ ଭିତରକୁ ପଶିଲୁ । ନରେଶ ବାବୁ ଓ ତାଙ୍କ ପତ୍ନୀ ବିଜ୍ଞାନୀ ଆମକୁ ସ୍ୱାଗତ କଲେ ।

ନରେଶଙ୍କ ପାରିବାରିକ ଇଷ୍ଟଦେବ ହେଲେ ଶ୍ରୀ ଲକ୍ଷ୍ମୀନାରାୟଣ । ନରେଶ ନିଜେ ଜଣେ ସିଦ୍ଧହସ୍ତ ମୃଦଙ୍ଗ ବାଦକ ଏବଂ ଗାୟକ । ନରେଶଙ୍କ ବିଷୟରେ ମୋ ଡାଏରିରେ ଯାହା ସେଦିନ ଟିପିଥିଲି ତାହା ଏହିପରି– ଶାରୀରିକ ଦୃଷ୍ଟିରୁ ଏ ଭଦ୍ରବ୍ୟକ୍ତି ଜଣେ

କ୍ଷୀଣ-ତନୁ, ସଦାଚଞ୍ଚଳ, ମଧ୍ୟମ ଉଚ୍ଚତାର, ସାମାନ୍ୟ ଚନ୍ଦା, ଅତ୍ୟଧିକ କାର୍ଯ୍ୟତତ୍ପର ବ୍ୟକ୍ତି। ପତ୍ନୀ ବିଜ୍ଞାନୀ ମଧ୍ୟମ ଉଚ୍ଚତାର ହସମୁଖୀ ସ୍ୱାସ୍ଥ୍ୟବତୀ ସୁଗୃହିଣୀ, ଗମ୍ଭୀର ସ୍ୱଭାବର ନାରୀ। ନରେଶଙ୍କ ଯଥାର୍ଥ ସହଧର୍ମିଣୀ ଭାବେ ସେ ସ୍ୱାମୀଙ୍କର ସଂଗୀତ ଓ ସଂକୀର୍ତ୍ତନ ରୁଚି ସହିତ ହାର୍ଦ୍ଦିକ ସହଯୋଗ କରୁଥିବା ଲକ୍ଷ୍ୟକଲି । ସୁଲଳିତ କଣ୍ଠରେ ଶୁଦ୍ଧ ଉଚ୍ଚାରଣ ସହିତ ସଂସ୍କୃତ ଶ୍ଳୋକ ଆବୃତ୍ତି ଏବଂ ବୈଷ୍ଣବୀୟ ପଦ୍ଧତିର ନବଧା ଭକ୍ତିର ଷୋଡଶ ଉପଚାର ସହିତ ସେ ତାଙ୍କ ଇଷ୍ଟଦେବ ଲକ୍ଷ୍ମୀନାରାୟଣ ଏବଂ ଶ୍ରୀ ଜଗନ୍ନାଥଙ୍କୁ ପୂଜା କରନ୍ତି। ବିଜ୍ଞାନ ଓ ଧର୍ମ ଏମାନଙ୍କ ସଂସ୍କାରରେ ଏକାନ୍ତ ପରିପୂରକ ।

ଦାସଦମ୍ପତିଙ୍କର ପରିବାର ଏକ ସୁଖୀ ଲକ୍ଷ୍ମୀବନ୍ତ ପରିବାର । ସେମାନଙ୍କର ତିନୋଟି କନ୍ୟା ଏବଂ ସମସ୍ତେ ବ୍ରିଲିୟାଣ୍ଟ୍ ଛାତ୍ରୀ ବୋଲି ଜାଣି ଖୁବ୍ ଖୁସିହେଲି । ପ୍ରଥମା କନ୍ୟା ଏଇ ବର୍ଷ (୨୦୦୬) ହାଇସ୍କୁଲ ଗ୍ରାଜୁଏସନ୍ ପରେ କାଲିଫର୍ଣ୍ଣିଆର ବିଖ୍ୟାତ ଷ୍ଟାନ୍‌ଫୋର୍ଡ ବିଶ୍ୱବିଦ୍ୟାଳୟରୁ ସ୍କଲାର୍‌ସିପ୍ ପାଇ ପ୍ରବେଶ କରିଛନ୍ତି । ଅନ୍ୟ ଦୁଇ କନ୍ୟା ସ୍କୁଲ୍‌ରେ ପଢୁଚନ୍ତି ଓ ଭଲ ପଢନ୍ତି ।

ଆଜିର ସଭା ଆରମ୍ଭ ପୂର୍ବରୁ ନରେଶ ଓ ବିଜ୍ଞାନୀ ଆମକୁ ଅନୁରୋଧ କଲେ ସେମାନଙ୍କ ଘରର ବେସମେଣ୍ଟରେ ଥିବା ପ୍ରାର୍ଥନା ଗୃହ ଦେଖି ଅସିବା ପାଇଁ। ଅନୁରୋଧ ରକ୍ଷାକରି ଆମେ ସମସ୍ତେ ସେଠିକି ଚାଲିଲୁ। ସେଠି ପହଞ୍ଚି ଯାହା ଦେଖିଲି ମତେ ଲାଗିଲା ମୁଁ ସତେ ବା ଆମେରିକାରେ ନାହିଁ ! ଦେଖିଲି– ବିଶାଳ ବେସ୍‌ମେଣ୍ଟଟି ଗୋଟିଏ ନିତ୍ୟବୃନ୍ଦାବନ ପାଲଟିଚି। ସେଠାରେ ନାନାଦି ବୃକ୍ଷଲତା ଓ ଫୁଲମାଳରେ ଶୋଭିତ ବିବିଧ ତୋରଣ ମଣ୍ଡିତ କୁଂଜ ସବୁ ରହିଚି। ଏହାର କେନ୍ଦ୍ରରେ ନିର୍ମିତ ହୋଇଚି ମାର୍ବଲ୍ ପଥରର ଏକ ମଣ୍ଡପ। ମଣ୍ଡପ ଉପରେ ଏକ ପିପିଲି ଚାନ୍ଦୁଆ ଆଲୁଅରେ ଝିଲମିଲ ଝଟକୁ ଥାଏ । ତା'ରି ତଳେ ଇଷ୍ଟଦେବ ଲକ୍ଷ୍ମୀନାରାୟଣଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ପାଇଥାନ୍ତି। ଆହୁରି ଲକ୍ଷ୍ୟ କଲି ଗୋଟିଏ ସ୍ଥାନରେ ଗଚ୍ଛିତ ହୋଇଚି ନାନାଦି ବାଦ୍ୟ ଯନ୍ତ୍ର– ଏକାଧିକ ମୃଦଙ୍ଗ, ପଖଉଜ, ଗିନି ଝାଂଜ ଏବଂ ହାରମୋନିୟମ୍ । ''ଏ ଗୋଟାଏ ଭାଗବତ ଟୁଙ୍ଗୀ ଆମର''– କେହି ଜଣେ କହିଲେ, ''ଏଠି ଭାଗବତ ସପ୍ତାହ ବସେ। ସବୁ ହିନ୍ଦୁ ପର୍ବପର୍ବାଣି ପାଳିତହୁଏ । କାର୍ତ୍ତିକମାସର ପଞ୍ଚକ ସମୟରେ ଏଇ ବେସ୍‌ମେଣ୍ଟରେ ଚବିଶଘଣ୍ଟା ଧରି ନାମ ସଂକୀର୍ତ୍ତନ ହୁଏ ଅର୍ଥାତ୍ ଅଷ୍ଟପ୍ରହରୀ କରାଯାଏ. . .

''ଭାବନ୍ତୁ ତ ! ଅଷ୍ଟପ୍ରହରୀ ବେଳେ ଦିନ ରାତି ଚବିଶ ଘଣ୍ଟା ନାମ କୀର୍ତ୍ତନ ଆଉ ଝାଂଜ ମୃଦଙ୍ଗ ବାଜୁଥିବା ବେଳେ ଏ ଘର କେମିତି ମୁଖରିତ ହେଉଥିବ ? ଆଖପାଖରେ ବହୁତ କ୍ରିଷ୍ଟିୟାନ୍ ଲୋକଙ୍କ ଘର । ସୌଭାଗ୍ୟକୁ ଏ ଜାଗାଟା ଗୋଟାଏ ବେସ୍‌ମେଣ୍ଟ ଆଉ ଯା'ର ହତା ହେଲା ସାତ ଏକର ! ଏଠୁ ସାଉଣ୍ଡ୍ ୱେଭସ୍ ବାହାରକୁ ଯିବାକୁ ଚାରା ନାହିଁ। ନହେଲେ ଆମେରିକାନ୍ ପୋଲିସ ...'' ହସିଲେ ଭଦ୍ରଲୋକ।

ମୁଁ ବି ହସିଲି ଆଉ ଖୁବ୍ ଖୁସିହେଲି । ମନେପଡିଲା ପିଲାଦିନେ ଏଇ ଭଳି ଗୋଟିଏ ଜମିଦାରିଆ ଘର ଦେଖିଥିଲି ବାଙ୍କି ସୁବର୍ଣ୍ଣପୁର ଗାଁ ସ୍କୁଲରେ ପଢୁଥିଲାବେଳେ । ଯେ ଘର ଥିଲା ସେ ଗାଁର ବୈଷ୍ଣବ ଜମିଦାର ଶ୍ରୀ ରାଜେନ୍ଦ୍ର ମୋହନ ପଟ୍ଟନାୟକଙ୍କର । ରାଜେନ୍ଦ୍ରବାବୁ ହେଲେ ଓଡିଶାର ବିଖ୍ୟାତ ସଂଗୀତଜ୍ଞ କୋକିଳକଣ୍ଠୀ ଓଡିଶୀ ଗାୟିକା ଶ୍ୟାମାମଣି ପଟ୍ଟନାୟକଙ୍କର ପିତା ।''

ବେସମେଣ୍ଟ୍ ଗୃହର ଚାରିଆଡକୁ ପୁଣି ଆଖିବୁଲେଇଲି । ଦେଖିଲି ଗୋଟିଏ ଜାଗାରେ ରଖାହେଇଚି ଅନେକ ଗୁଡିଏ ବଡବଡ କଟ୍ଆଉଟ୍ । ସେସବୁ ଭିତରେ ଦୃଶ୍ୟମାନ ହେଲା– କୋଣାର୍କ ମନ୍ଦିର ଗାତ୍ରର ଓଡିଶୀ ନୃତ୍ୟ ଶୈଳୀରେ ନୃତ୍ୟରତା ଏକାଧିକ ଲାର୍ଜ ସାଇଜ୍ କଟ୍ଆଉଟ୍ ଏବଂ କେତେକ ବଡ଼ ଆକାରର ତୋରଣ । ସେସବୁ ତୋରଣ ଉପରେ ଇଂରେଜୀ ହରଫରେ ଲେଖାଯାଇଥାଏ "Orissa Society of Americas – 2006, Washington."

''ଏଗୁଡିକହେଲା ଏ ବର୍ଷ ୱାସିଂଟନ୍‌ରେ ଆମେ ହୋଷ୍ଟିଂ କରିଥିବା 'ଓସା'ର କଟ୍ଆଉଟ୍'', ନରେଶ ଗଦ୍‌ଗଦ କଣ୍ଠରେ କହିଲେ, ''ଏସବୁ କାହାର ଅବଦାନ ଜାଣନ୍ତି– ଆପଣଙ୍କ ଝିଅ ଜୋଇଁ ଜୁଲି ଓ ଅଭିଜିତ୍‌ଙ୍କର ! ସେମାନଙ୍କ ଅକ୍ଲାନ୍ତ ପରିଶ୍ରମର ଫଳ । ବଡବଡ କାଠ ଗଣ୍ଡି ବଜାରରୁ କିଣି, ନିଜ ହାତରେ କରତରେ ଚିରି, ଫ୍ରେମ୍ ବନେଇ ଏ ତୋରଣ ଗୁଡାକୁ ସେ ଦୁହେଁ କରିଚନ୍ତି । ବାକି ଚିତ୍ର ଆଙ୍କିବା ଜୁଲିର କାମ । ଏ ସମସ୍ତ ଛବିର କଟ୍ଆଉଟ୍ ଆଙ୍କିଚି ଆପଣଙ୍କର ଏ ଝିଅ ଜୁଲି । ଏଇ ସବୁ ମୂଲ୍ୟବାନ୍ କଟ୍ଆଉଟ୍ ଗୁଡିକୁ କନ୍‌ଫରେନ୍ସ ସରିବା ପରେ ନଷ୍ଟହେଇଯିବାକୁ ନଦେଇ ଆମେ ସେଗୁଡିକୁ ଘେନିଆସିଚୁ ଏଠି ସଂପାଦି ରଖିବାକୁ. . .

ପାଖରେ ଠିଆହେଇଥିବା ଜୁଲି ଅଭିଜିତଙ୍କ ପ୍ରତି ଏଭଳି ପ୍ରଶଂସା ଅଜାଡି ଦେବା ପରେ ନରେଶ ଆମମାନଙ୍କୁ ପାଛୋଟିନେଲେ ଉପର ମହଲାରେ ଆଜି ଅନୁଷ୍ଠିତ ହେବାକୁ ଥିବା ସଭା ଗୃହକୁ । ସମସ୍ତେ ଆସିଲୁ ଉପର ମହଲାକୁ । ''ଜୋଗା'' ଅନୁଷ୍ଠାନ ପକ୍ଷରୁ ଆୟୋଜିତ ସମ୍ମାନ ପ୍ରଦାନ ଉତ୍ସବର ଆୟୋଜନ କରାଯାଇଥାଏ ଏକ ବଡ ହଲରେ । ବକ୍ତୃତାପାଇଁ ଏକ ସୁସଜ୍ଜିତ ମଣ୍ଡପ ଏବଂ ମାଇକ ସେଟ୍ ଇତ୍ୟାଦି ସବୁର ବ୍ୟବସ୍ଥା ହୋଇଥାଏ । ମନେହେଉଥାଏ ଏହା କୌଣସି ଏକ ଘରୋଇ ଉତ୍ସବ ନୁହେଁ ।

ସଭା କାର୍ଯ୍ୟ ଆରମ୍ଭ ହେଲା ଯଥା ରୀତି । ପିଲାଛୁଆଙ୍କୁ ମିଶେଇ ପ୍ରାୟ ପଚାଶ ଷାଠିଏ ଜଣ ଶ୍ରୋତାଙ୍କ ଉପସ୍ଥିତିରେ ସଭା ଚାଲିଲା । ପ୍ରଥମେ ଆବାହନୀ ସଂଗୀତ ପରିବେଷଣ କରାଗଲା । ନରେଶ ବାବୁଙ୍କ ସଭାପତିତ୍ୱରେ ସଭା ଆରମ୍ଭ ହେଲା । ସମ୍ମାନିତ ହେବାକୁ ନିମନ୍ତ୍ରିତ ଆମ ଦୁଇଜଣ ଅତିଥିଙ୍କର ପରିଚୟ ପ୍ରଦାନ କରାଗଲା । ଡକ୍ଟର ଦାମୋଦର ହୋତାଙ୍କୁ ଅନୁରୋଧ କରାଗଲା ସଂଗୀତ ପରିବେଷଣ ପାଇଁ । ହୋତା

ମହାଶୟ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ଶୈଳୀରେ ଚମତ୍କାର ଖେୟାଲ ପରିବେଷଣ କଲେ ।

ଏହା ପରେ ସଭାପତିଙ୍କ ନିର୍ଦ୍ଦେଶ ପାଇ ବିଜ୍ଞାନୀ କହିଲେ– "ମୁଁ ମଉସାଙ୍କର ଏକ ଉପନ୍ୟାସ 'ତୃଷ୍ଣା– ଏକ ଅନାବିଷ୍କୃତ ଆମେରିକା' ବହି ପଢିଥିଲି ଜୁଲି ଅଭିଜିତଙ୍କୁ ଜାଣିବାପୂର୍ବରୁ । ସେ ଉପନ୍ୟାସରେ ଆମେରିକାରେ ବାସକରୁଥିବା ଆମଭଳି ପ୍ରବାସୀ (ଏନ.ଆର.ଆଇ) ଓଡିଆ ତଥା ଭାରତୀୟ ପରିବାରଙ୍କର ସନ୍ତାନ ଅର୍ଥାତ୍ ସେକେଣ୍ଡ ଜେନେରସନ୍ ପିଲାଙ୍କର ବର୍ତ୍ତମାନର ବଡ ସମସ୍ୟା Culture Shock ବିଷୟରେ ମଉସା ଏକ ନୂଆ ଥେସିସ୍ ଦେଇଚନ୍ତି । ମୁଁ ମଉସାଙ୍କୁ ଅନୁରୋଧ କରୁଚି ସେଇ ପ୍ରସଙ୍ଗ ଉପରେ କିଛି ଆଲୋକପାତ କରିବାକୁ । ପରେ ଏଠାରେ ଉପସ୍ଥିତ ଶ୍ରୋତାମାନେ ଇଚ୍ଛାକଲେ ତାଙ୍କୁ ସେ ବିଷୟରେ ପ୍ରଶ୍ନ ପଚାରିପାରିବେ ।"

ସମ୍ମାନ ପ୍ରଦାନ ଉତ୍ସବ ପରେପରେ ପ୍ରାୟ ଏକଘଣ୍ଟା ଧରି ମୋର ସେଇ ବକ୍ତୃତା ଓ ପ୍ରଶ୍ନୋତ୍ତରର ଆଲୋଚନା ଚାଲିଲା । ଖୁବ୍ ସରଗରମ ଆଲୋଚନାରେ ଅଧିକାଂଶ ଅତିଥି ଭାଗନେଇ ମତେ ଅନେକ ତାତ୍ତ୍ୱିକ ପ୍ରଶ୍ନ ପଚାରିଲେ ।

ଆଲୋଚନା ପରେ ପରେ ଡକ୍ଟର ହୋତା ଏବଂ ମୋତେ ୱାସିଂଟନର ପ୍ରବାସୀ ଓଡିଆସମାଜ "ଜୋଗା" ଅନୁଷ୍ଠାନ ପକ୍ଷରୁ "ପ୍ରଜ୍ଞାଜ୍ୟୋତି" ସମ୍ମାନରେ ସମ୍ମାନିତ କରାଗଲା ।

ଲକ୍ଷ୍ୟକଲି ମୋର ବକ୍ତୃତା ଏଠାକାର ଯୁବବୈଜ୍ଞାନିକ ବନ୍ଧୁମାନଙ୍କୁ ଅତିମାତ୍ରାରେ ପ୍ରଭାବିତ କରିପାରିଥିଲା, ଯାହା ଫଳରେ ସେମାନେ ମୋ ପ୍ରତି ବିଶେଷ ଅନୁରକ୍ତି ପ୍ରକାଶ କଲେ । ମୋର ଏଥର ଆମେରିକା ଭ୍ରମଣର ସାର୍ଥକତା ମୁଁ ଖୁବ ଶୀଘ୍ର ଅନୁଭବ କଲି । ପରବର୍ତ୍ତୀ ସମୟରେ ସେମାନଙ୍କର ଅନ୍ୟ ସବୁ ଘରୋଇ ବନ୍ଧୁମିଳନ ଏବଂ ଉତ୍ସବମାନଙ୍କୁ ମତେ ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ କରାଗଲା । ସେସବୁ ବୈଠକ କେବଳ ବୌଦ୍ଧିକ ଚର୍ଚ୍ଚା ପାଇଁ ମୁଖ୍ୟତଃ ଉତ୍ସର୍ଗିକୃତ ହୋଇଥିଲା । ବଲଟିମୋରରେ ମୋର ଦୁଇ ମାସ ରହଣି ଭିତରେ ମୁଁ ଅନେକ ଥର ଏଇପରି ବୈଠକରେ ଯୋଗଦେଇଥିଲି ଏବଂ ଆତ୍ମୀୟତା ଅର୍ଜନ କରିଥିଲି ।

## ବଲ୍‌ଟିମୋର୍‌ରୁ ଗ୍ଲାସ୍‌ଟନ୍‌ବରି–

ବଲଟିମୋର୍ (ମେରିଲ୍ୟାଣ୍ଡ)ରେ ପ୍ରାୟ ଦୁଇମାସ ରହଣି ସାରି ସେଦିନ (ତା ୮ ସେପ୍ଟେମ୍ବର, ୨୦୦୬) ମୁଁ ଆଉ ନିରୁପମା ବାହାରିଲୁ ଆମର ଅନ୍ୟ ଝିଅ ଜୋଇଁ ସୁଲୁ-ମହେଶଙ୍କ ଘର-କନେକ୍ଟିକଟର ଗ୍ଲାସଟନ୍‌ବରିକୁ– ପଇଁଚାଳିଶ ମିନିଟ୍‌ର ଉଡାଣ ।

କନେକ୍ଟିକଟ୍ ମେରିଲ୍ୟାଣ୍ଡର ଉତ୍ତରକୁ– ଯୁକ୍ତରାଷ୍ଟ୍ର ଆମେରିକାର ଏକ ଐତିହାସିକ ପ୍ରଦେଶ । ପୂର୍ବରୁ କହିଚି ଏଇ ରାଜ୍ୟକୁ ଆମେରିକାରେ କୁହାଯାଏ "କନ୍‌ଷ୍ଟିଚ୍ୟୁସନ୍ ଷ୍ଟେଟ୍" । ଏଠାକାର ଲୋକେ ନିଜ କାର୍‌ର ନମ୍ବର ପ୍ଲେଟ୍‌ରେ ଏଇ ଶବ୍ଦ ଯୋଡିକ

ବଡବଡ ଅକ୍ଷରରେ ଲେଖି ବିଜ୍ଞାପିତ କରିବାକୁ ଗର୍ବ ଅନୁଭବ କରନ୍ତି, କାରଣ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ଏଇ କନେକ୍ଟିକଟ୍‌ରେ ହିଁ ପ୍ରଣୀତ ହୋଇଥିଲା ।

ଗ୍ଲାସ୍‌ଟନ୍‌ବରିରେ ସୁଲୁ ମହେଶଙ୍କର ଏଇ ୧୦୫, ଆସ୍‌ପେନ୍ ଡ୍ରାଇଭ୍ ଘରକୁ ଆସିବା ଏ ଥିଲା ଆମର ଦ୍ୱିତୀୟ ବାର । ଏ ଘରକୁ ୨୦୦୩ରେ ଆମେରିକା ଭ୍ରମଣ ସମୟରେ ଆମେ ଅସିଥିଲୁ ପ୍ରଥମେ । ପୂର୍ବରୁ ଏମାନେ ରହୁଥିଲେ ଏଇ ଗ୍ଲାସଟନବରୀ ସହରର ଅନ୍ୟ ଏକ ଅଂଚଳରେ, ନିପଜିକ ରୋଡରେ, ସେମାନଙ୍କର ନିଜ ଘରେ । ସେ ଘରଟିକୁ ବିକ୍ରୀ କରି ସେମାନେ ଏଠି ନିଜ ପସନ୍ଦର ଏଇ ନୂଆ ଘରଟିକୁ ତିଆରି କରାଇଥିଲେ । ବେଶ୍ ବଡ ଆଉ ଆଖିଦୃଷ୍ଟିଆ ଭାବେ ଗୋଟିଏ ସୁନ୍ଦର ଘର ଏଇଟି ବି । ତେବେ ନିପ୍‌ଜିକ୍ ରୋଡର ସେଇ ପୁରୁଣା ଘରର ଜାଙ୍ଗଲିକ ପରିବେଶ ଏ ଘରେ ନଥିଲା । ଆମର ପୂର୍ବ ଦୁଇବାରର ଆମେରିକା ଭ୍ରମଣ ବେଳେ ସୁଲୁ-ମହେଶଙ୍କ ସେଇ ନିପ୍‌ଜିକ୍ ରୋଡ୍ ଘରେ ଆମର ରହଣି ଥିଲା ଅତ୍ୟନ୍ତ ସ୍ମରଣୀୟ । ଔପନ୍ୟାସିକ ଗୋପୀନାଥ ମହାନ୍ତି ଥରେ ତାଙ୍କର ଆମେରିକା ଭ୍ରମଣ ସମୟରେ ବୁଲିବାକୁ ଆସି ସେ ଘରେ ଦୁଇ ଦିନ ଅତିଥି ହୋଇଥିଲେ । ଘରର ପରିବେଶକୁ ଦେଖି ସେ ଏପରି ମୁଗ୍ଧ ହୋଇଥିଲେ ଯେ ଆମେରିକାରୁ ଫେରିଯାଇ ମତେ ଗଦ୍‌ଗଦ କଣ୍ଠରେ କହିବା ମନେଅଛି, "ଶାନ୍ତନୁବାବୁ! ଆପଣଙ୍କ ଝିଅ ଜୋଇଁ ଏଇଲେ ଆମେରିକାରେ କୋଉଠି ରହୁଚନ୍ତି ଜାଣନ୍ତି ? ରାମାୟଣରେ ବର୍ଣ୍ଣିତ ପଞ୍ଚବଟୀରେ ! ଯାଆନ୍ତୁ ନା ଥରେ ନିଜ ଆଖିରେ ଦେଖି ଆସନ୍ତୁ !"

ସେ ବିଷୟ ମୁଁ ଲେଖିଚି ଏ ବହିରେ ଆଗରୁ । ୧୯୯୩ରେ ଆମେରିକା ଆସି ଆମେ ସେଇ ପଞ୍ଚବଟୀ ଆଶ୍ରମ ଦେଖି ଥିଲୁ ପ୍ରଥମ ଥର । ପରେ ୧୯୯୭ରେ ଆଉଥରେ ଆମେରିକା ବୁଲିବା ବେଳେ ମଧ୍ୟ ଆମେ ସେ ଘରେ ରହିଥିଲୁ ମାସାଧିକ ସମୟ । ସେ ଘରର ଠିକ୍ ବାଡି ପଟେ ଥିଲା ଏକ ବିରାଟ ପ୍ରାକୃତିକ ଅରଣ୍ୟ ଯାହାର ଗୋଟାଏ ଅଂଶକୁ ଏକ ପାର୍କରେ ପରିଣତ କରାଯାଇଥିଲା । ସେ ପାର୍କଟି ଥିଲା ମୋର ନିତ୍ୟ ବିହାର ସ୍ଥଳ ଯୋଉଠି ମୁଁ ଆତ୍ମଗୋପନ କରେ ଗ୍ରୀଷ୍ମକାଳୀନ ଆମେରିକାର ଅପୂର୍ବ ପ୍ରାକୃତିକ ଶୋଭା ସୌନ୍ଦର୍ଯ୍ୟର ଉପାସନା ପାଇଁ । ସେଇ ପାର୍କରେ ମୁଁ ଅନୁଭବ କରିଥିଲି ନାଟାଲିୟା ନାମକ ଜଣେ ବୃକ୍ଷପରୀ ବା "ନିମ୍ଫ" ବା ଶାଳଭଂଜିକାର । ସେଇ ଅନୁଭବକୁ ନେଇ ଲେଖିଥିଲି "ନାଟାଲିଆର ଓଁକାର" ଶୀର୍ଷକ ଏକ କ୍ଷୁଦ୍ରଗଳ୍ପ । ସେଇ ଗଳ୍ପଟି ଆମେରିକାର ଓଡିଆ ସମାଜ (ଓସା)ର ବାର୍ଷିକ ଉତ୍ସବର ମୁଖପତ୍ରରେ ମଧ୍ୟ ପ୍ରକାଶିତ ହୋଇଥିଲା । ପୁଣି ଏଇଟି ମଧ୍ୟ ମୋର ଅନ୍ୟତମ ଗଳ୍ପ ସଂକଳନ "ନାଟାଲିଆର ଓଁକାର"ରେ ସ୍ଥାନିତ ହୋଇଛି ।

ଏଥର ଏଇ ଘରକୁ ଆସି ଦେଖିଲି ପରିସ୍ଥିତି ସଂପୂର୍ଣ୍ଣ ଭିନ୍ନ । ୧୯୯୦-୯୧ ଶୀତଳଯୁଦ୍ଧ ଅବ୍‌ସାନ ପରବର୍ତ୍ତୀ ଆମେରିକାର ଆର୍ଥନୈତିକ ଡିପ୍ରେସନ୍‌ର ପ୍ରଭାବ ଗଲା

ଶୋହଳ ବର୍ଷ ଭିତରେ ଆହୁରି ସାଂଘାତିକ ଆକାର ଧରି ନେଇ ସାରିଥାଏ । ତା' ସାଙ୍ଗକୁ ୨୦୦୧ର ୯/୧୧ ବିପଦର ମନସ୍ତାତ୍ୱିକ ଧକ୍କା ସାରା ଦେଶଟାକୁ ପ୍ରାୟ ପୂରାପୂରି ଆବୋରି ନେଇ ସାରିଥିବାରୁ ସେ ଧକ୍କାର ସର୍ବାଧିକ ପ୍ରଭାବ ଅନୁଭୂତ ହେଉଥାଏ ଏଇ ''କନଷ୍ଟିଚ୍ୟୁସନ ଷ୍ଟେଟ୍'' ବା କନେକ୍ଟିକଟ୍‌ରେ । ଅନେକ କଂପାନୀ ବନ୍ଦହେଇଯାଇଥାଏ ଏ ଶୋହଳ ବର୍ଷ ଭିତରେ– ଆହୁରି ଅନେକ ବନ୍ଦ ହେବା ଉପରେ । ସେଇ ଆଶଙ୍କା ଏଠି ଏମାନଙ୍କୁ ମଧ୍ୟ ଗ୍ରାସକରିଥାଏ । ମହେଶ ସେତେବେଳେ ବିଶ୍ୱବିଖ୍ୟାତ ଆଇ.ବି.ଏମ କଂପାନୀର ଜଣେ ଉଚ୍ଚ କର୍ମକର୍ତ୍ତା ହୋଇଥିଲେ ବି ତାଙ୍କ ମନର ଆଶଙ୍କା ବାରିହେଇପଡୁଥାଏ । ସେତେବେଳେ ଆମେରିକାରେ ରାଜନୈତିକ ତୁହା ବଡ ପ୍ରବଳ ଭାବେ ଶୁଣାଯାଉଥାଏ– ଆଉଟ୍ ସୋର୍ସିଂ ବିରୁଦ୍ଧରେ । ଗଣମାଧ୍ୟମରେ ଭାରତ ବିରୋଧୀ ଖବରମାନ ପ୍ରକାଶ ପାଉଥିବା ଦେଖିଲୁ ଏଥର ଯାହା ଆମକୁ ମଧ୍ୟ ଆଶଙ୍କା ଭିତରକୁ ଠେଲିନେଉଥାଏ । ଶୁଣିଲୁ ବଡବଡ କଂପାନୀ ମାଲିକମାନେ ସେମାନଙ୍କର କଂପାନୀମାନ ଆମେରିକାରୁ ଉଠେଇ ଭାରତ ଓ ଚୀନକୁ ନେଇଗଲେଣି ବା ନେବାର ମସୁଧା ଚଳେଇଚନ୍ତି । ଏହା ବିରୁଦ୍ଧରେ ରାଜନୈତିକ ନେତାମାନେ ଜୋରସୋର ପ୍ରଚାର ଆରମ୍ଭ କରିସାରିଥାନ୍ତି ।

ତତ୍‌କାଳୀନ ଆମେରିକାର ରାଷ୍ଟ୍ରପତି ଜର୍ଜ ବୁସ୍‌ଙ୍କ ସରକାର ପହଞ୍ଚିସାରିଥାଏ ତାଙ୍କର ଦ୍ୱିତୀୟ ଟର୍ମ ଶାସନ କାଳର ଏକ ମାରାତ୍ମକ ସନ୍ଧିକ୍ଷଣରେ । ତେଣେ ଇରାକ ଯୁଦ୍ଧରେ ଆମେରିକା ନାକଯାକେ ବୁଡିସାରି ଦେବାଳିୟା ହୋଇ ଆକତାମାକତା ହବାକୁ, ଏଣେ ବିରୋଧୀ ଡିମୋକ୍ରାଟିକ ଦଳ ଜୋରସୋର ଉଠୋଉଥାଏ ତୁହା ''ଆଉଟ୍ ସୋର୍ସିଂ'' ବିରୁଦ୍ଧରେ । ଆମେରିକାର ପ୍ରବାସୀ ଭାରତୀୟ ମହଲରେ ଚାଲିଥାଏ ସେଇ ସେଇ ବିଷୟ ଉପରେ ଚର୍ଚ୍ଚା ଘମାଘୋଟ । ଲକ୍ଷ୍ୟ କଲି ଯୋଉଠି ଯୋଉଠି କେତେଜଣ ଭାରତୀୟ ଏକାଠି ହେବାର ସୁଯୋଗ ଆସୁଥାଏ ସେଠି କେବଳ ଏଇ ଚର୍ଚ୍ଚା : ଚାକିରି ରହିବ ନା ରାତାରାତି ଚାଲିଯିବ !

ସେଦିନ (୮ ସେପ୍ଟେମ୍ବର, ୨୦୦୬) ଆମେ ଆମେରିକାରେ ପହଞ୍ଚିବା ପରେ ପରେ ଗୋଟାଏ ଖବର ମିଳିଲା– ଆମେରିକା ସିନେଟ୍‌ର ମଧ୍ୟବର୍ତ୍ତୀ ନିର୍ବାଚନରେ ଡିମୋକ୍ରାଟ୍‌ମାନେ ରିପବ୍ଲିକାନ୍‌ମାନଙ୍କୁ ବହୁ ସଂଖ୍ୟାରେ ପରାସ୍ତକରି ହାଉସ୍‌ରେ ସଂଖ୍ୟା ଗରିଷ୍ଠତା ହାସଲ କରିସାରିଛନ୍ତି ! ଏହାର ପରିଣତି କୁଆଡକୁ ଗତି କରୁଥାଏ ତାହା ସହଜେ ଅନୁମାନ କରିହେଉଥାଏ । କାରଣ ଡିମୋକ୍ରାଟମାନେ ସେତେବେଳେ ରିପବ୍ଲିକାନ୍ ପାର୍ଟିର ନେତା ପ୍ରେସିଡେଣ୍ଟ୍ ଜର୍ଜ ବୁସ୍‌ଙ୍କ ଇରାକ ଆକ୍ରମଣର ଅବିମୃଶ୍ୟକାରିତାର ଘୋର ନିନ୍ଦା ସାଙ୍ଗକୁ ରିପବ୍ଲିକାନ ମାନଙ୍କ ଆଉଟସୋର୍ସିଂ ନୀତିକୁ ଗୋଡେ ଗୋଡେ ବିରୋଧ କରୁଥାନ୍ତି । ସେମାନେ ଆମେରିକାର ଶ୍ରମିକମାନଙ୍କ ସପକ୍ଷବାଦୀ ଏହା ଜଣାଶୁଣା । କିନ୍ତୁ ଆଉଟ୍‌ସୋର୍ସିଂ ନୀତି ତ ଏକ ରାଜନୈତିକ ପଲିସି ଉପରେ ନିର୍ଭର କରୁନଥାଏ– ତାହା ଥିଲା ବିଶ୍ୱ-

ବାଣିଜ୍ୟ ଚୁକ୍ତି ଅନ୍ତର୍ଗତ ଏକ ଆର୍ଥନୈତିକ ଆବଶ୍ୟକତା । ଏହା ଫଳରେ ଆମେରିକାର ବଡବଡ କଂପାନୀମାନେ ଭାରତ ଓ ଚୀନରେ ପୁଂଜି ଲଗାଣ କରିସାରିଥାନ୍ତି ବହୁ ବର୍ଷ ଆଗରୁ । ସେଥିଯୋଗୁ ଆମେରିକାର ବହୁ ଛୋଟବଡ ଚାକିରି ବିଦେଶକୁ ଦେଶାନ୍ତରୀ ହୋଇସାରିଥାଏ । ଫଳରେ ଆମେରିକାରେ କଂପାନୀମାନ ଗୋଟାକ ପରେ ଗୋଟାଏ ବନ୍ଦ ହେବାରେ ଲାଗିଥାଏ ଆଉ ବଡସାନ ସବୁ ଶ୍ରେଣୀର ଚାକିରିଆ ଚାକରିରୁ ଛଟେଇ ହେଇ ଘରେ ବସିବାକୁ ବାଧ୍ୟହେଉଥାନ୍ତି ଦଳଦଳ ସଂଖ୍ୟାରେ ।

ଡିମୋକ୍ରାଟ୍‌ମାନେ ନିର୍ବାଚନରେ ଜିଣି ସାରି ହାଉସ୍ ମେଜରିଟି ପାଇବା ପରେ ପରେ ଘୋଷଣା ଜାହିର କରିସାରିଥାନ୍ତି ଯେ ସେମାନେ କ୍ଷମତାକୁ ଆସିଲେ ଆଉଟସୋର୍ସିଂ ବନ୍ଦକରିଦେବେ । କଂପାନୀମାନଙ୍କୁ ବାଧ୍ୟ କରାଯିବ ଚାକିରି ଗୁଡାକୁ ଭାରତ ଓ ଚୀନ୍‌ରୁ ଫେରାଇ ଆଣିବାକୁ ଆମେରିକାକୁ । କିନ୍ତୁ ସେ ସମୟ ତ ଯାଇ ଆଉ ଦୁଇବର୍ଷ ପରେ– ୨୦୦୮ର ରାଷ୍ଟ୍ରପତି ନିର୍ବାଚନ ପରେ । ଏଇ ଦୁଇ ବର୍ଷ ଭିତରେ କୋଉ ଚାକିରିଆ କୋଉଦିନ ଯେ ଚାକିରିରୁ ଛଟେଇ ହୋଇ ବେକାର ନହେବ କିଏ କହିବ ! ଏଇ ଆଶଙ୍କା ସେଦିନ ଅଧିକାଂଶ ଭାରତୀୟଙ୍କୁ ଆଚ୍ଛନ୍ନ କରିଦେଇଥାଏ ।

ମେରିଲ୍ୟାଣ୍ଡରେ ଦୁଇମାସ କାଳ ପ୍ରବାସୀ ଓଡିଆଙ୍କ ସାଙ୍ଗେ ଘନିଷ୍ଠ ମିଳାମିଶା କଥାବାର୍ତ୍ତା ଆଲୋଚନା ଭିତରେ ମୁଁ ସେଠିକାର ପ୍ରବାସୀ ଭାରତୀୟଙ୍କ ମନୋଭାବକୁ ଲକ୍ଷ୍ୟ କରିଥିଲି ବହୁ ନିକଟରୁ । କେଜାଣି କାହିଁକି ଓ୍ୟାସିଂଟନ ବା ବଲ୍‌ଟିମୋର ଭଳି ଦେଶର ହୃତ୍‌ପିଣ୍ଡ ଅଂଚଳରେ ବାସକରୁଥିବା ପ୍ରବାସୀ ଓଡିଆମାନଙ୍କ ମନରେ ଏପରି ଆତଙ୍କବୋଧ ମତେ ଆଦୌ ଜଣାପଡିନଥିଲା । କିନ୍ତୁ କନେକ୍ଟିକଟ୍ ଓ ଆଖପାଖ ମାସାଚୁସେଟ୍‌ସ୍ ଭଳି ଧନାଢ୍ୟ ଆଉ ମୁଖ୍ୟତଃ ଧଳାଲୋକଙ୍କ ବସତି ବହୁଳ ରାଜ୍ୟରେ ବାସକରୁଥିବା ଆମ ପ୍ରବାସୀ ଭାରତୀୟଙ୍କ ତୀବ୍ର ଅସୁରକ୍ଷିତ ମନୋଭାବ ମତେ ବିସ୍ମିତ କରିଥିଲା । କେବଳ ବିସ୍ମିତ ନୁହେଁ, ଆମେରିକାରେ ରହୁଥିବା ମୋର ତିନି ଝିଅ ଜୋଇଁ ଏବଂ ସେମାନଙ୍କର ପୁଅ ଝିଅଙ୍କ ଭବିଷ୍ୟତ ଲାଗି ଆଶଙ୍କିତ ହେଇପଡିଲି ।

## ଗ୍ଲାସ୍‌ଟନ୍‌ବରିର ସାଇସେଣ୍ଟର୍‌ରେ ବକ୍ତୃତା

– ତା ୯, ସେପ୍ଟେମ୍ବର ୨୦୦୬, ଗୁରୁବାର ।

କୁହାଯାଏ ହତାଶାର ଅନ୍ତଃସ୍ଥଳରେ ଆଶାର ଘର । ଗ୍ଲାସଟନବରିରେ ପହଞ୍ଚି ଆମେରିକାରେ ପ୍ରବାସୀ ଭାରତୀୟଙ୍କ ଭବିଷ୍ୟତ ବିଷୟରେ ନାନା ଆଶଙ୍କାପ୍ରଦ କଳ୍ପନା-ଜଳ୍ପନା ଶୁଣି ମ୍ରିୟମାଣ ହେବା ଭିତରେ ହଠାତ୍ ଶୁଣାଗଲା, "ନନା ! ଜାଣିଚ– ଆମର ଏ ସହରରେ ଗୋଟାଏ ସାଇବାବା ସେଣ୍ଟର୍ ଅଛି । ଚାଲ ଯିବା ସେଠିକି ଆଜି ସନ୍ଧ୍ୟାରେ", ସୁଲୁ ମୁହଁରୁ ଏ ଖବର ମତେ ସତରେ ଟିକେ ବିସ୍ମିତକଲା । କାରଣ ପୂର୍ବରୁ ଆମେରିକା

ତିନିତିନି ବାର ବୁଲି ଆସି ବହୁ ଜାଗା ବୁଲି, ବହୁ ପ୍ରବାସୀ ଭାରତୀୟ ବୁଦ୍ଧିଜୀବୀଙ୍କୁ ଭେଟିଥିଲେ ବି ସେ ଭିତରେ କୌଣସି ଥର ସାଇବାବା ସେଣ୍ଟର୍ ନାଁ ଶୁଣାନଥିଲା କେବେ । ବରଂ ସାଇବାବାଙ୍କୁ ନେଇ ପ୍ରବାସୀ ଭାରତୀୟ ଇଂଜିନିୟର୍, ଡାକ୍ତର ଓ ବୈଜ୍ଞାନିକ ମହଲରେ ଥଟ୍ଟା ପରିହାସ ଶୁଣିଥିଲି କେତେଥର । ମଣିଷର ଅଲୌକିକ ଶକ୍ତି ନାଁ ଶୁଣିଲେ ସେମାନେ ଫିଡକୁଥିଲେ । ସେଗୁଡାକ ଆଦିମ (ପ୍ରିମିଟିଭ୍) ଅନ୍ଧବିଶ୍ୱାସ ବୋଲି କହୁଥିଲେ ସେମାନେ । ଏହାର ନାମ ବ୍ଲାକ୍‌ମ୍ୟାଜିକ୍ ଆଉ ଇଣ୍ଡିଆର ସାଇବାବା ଜଣେ ବ୍ଲାକ୍‌ମ୍ୟାଜିସିଆନ୍ ଛଡା ଅନ୍ୟ କିଛି ନୁହନ୍ତି ଏଇ ଥିଲା ସେମାନଙ୍କର ବଦ୍ଧମୂଳ ଧାରଣା– ନହେଲେ ଖାଲି ହାତରୁ ସୁନାହାର ହୀରା ମୁଦି କାଢିବା କୋଉ ଫିଜିକ୍ସ ବା କେମିଷ୍ଟ୍ରି ବିଦ୍ୟାରେ ସଂଭବ ? ସେମାନଙ୍କ ଭିତରୁ କେତେକ ମୋ କରଂଜିଆ ଡାଏରି ବହି ପଢିଥିଲେ । ମୋ ସହିତ ସେ ବହି ଉପରେ ବହୁ ଯୁକ୍ତିତର୍କ କରୁଥିଲେ । କହୁଥିଲେ ସେଗୁଡାକ ନିଶ୍ଚୟ ମୋର ମନଗଢା ଗପ ।

ସେ ଯାହାହେଉ, ଏଥର ପରିସ୍ଥିତି ଥିଲା ସଂପୂର୍ଣ୍ଣ ଭିନ୍ନ । ଆନ୍ତର୍ଜାତିକ ଅର୍ଥନୈତିକ ପରିସ୍ଥିତି ଏଇ କେତେ ବର୍ଷ ଭିତରେ ପୂରା ବଦଳିସାରିଥାଏ । ମୁକ୍ତ ବାଣିଜ୍ୟ ବା ଗ୍ଲୋବାଲାଇଜେସନ୍ ଆରମ୍ଭ ହେବା ପରେପରେ ଭାରତବର୍ଷର ଦ୍ରୁତ ଆର୍ଥନୈତିକ ଅଭିବୃଦ୍ଧିର ପ୍ରଭାବ ଆମେରିକା ଉପରେ ପଡିଥାଏ ବଡ ଜୋର୍ । ଗଣମାଧ୍ୟମରେ ଅବିରତ ଆଲୋଚନା ଚାଲିଥାଏ– ଆଗାମୀ ୨୦୨୦ ସୁଦ୍ଧା ଭାରତ ହୋଇସାରିଥିବ ବିଶ୍ୱର ଅନ୍ୟତମ ଧନାଢ୍ୟ ରାଷ୍ଟ୍ର ଆଉ ଆମେରିକା ଲୋକେ ଯିବେ ଭାରତରେ ଚାକିରି ଖୋଜି !

ସେଦିନ ସନ୍ଧ୍ୟାରେ ମହେଶ ସୁଲୁ ନିରୁପମା ଓ ମୁଁ ବାହାରିଲୁ ମହେଶଙ୍କ କାର୍‌ରେ ସାଇ ସେଣ୍ଟର୍ । ଘରଠୁଁ ପ୍ରାୟ ଘଣ୍ଟାଏ ଡ୍ରାଇଭ୍ ରାସ୍ତା । ଏ ସେଣ୍ଟର୍‌ରେ ପ୍ରତି ଗୁରୁବାର ସନ୍ଧ୍ୟାରେ ଧ୍ୟାନ ଓ ସାଇ ଭଜନ ହୁଏ । ସେଣ୍ଟର୍‌ଟି ଚାଲିଥାଏ ଜଣେ ପ୍ରବାସୀ ଭାରତୀୟ ଗୁଜୁରାଟି ଭଦ୍ରଲୋକଙ୍କ ଘରେ । ତାଙ୍କ ନାମ ଜୟ ପଟେଲ । ତାଙ୍କ ସ୍ତ୍ରୀ କଞ୍ଚନା ପଟେଲ ଜଣେ ଯୋଗ ଗୁରୁ । ବହୁ ବର୍ଷ ହେବ ସେ ଆମେରିକାର କେତେକ ସହରରେ ଭାରତୀୟ ପାତଂଜଳି ଯୋଗର ପ୍ରଚାର ପ୍ରସାର କରିଆସୁଛନ୍ତି ଯୋଗ ସ୍କୁଲ୍ ମାଧ୍ୟମରେ । ସେ ଜଣେ ସାଧିକା ଏବଂ ନିଷ୍ଠାପର ସାଇ ଭକ୍ତ ମଧ୍ୟ ।

ମହେଶ କାର୍ ପାର୍କ କଲେ ଜୟ ପଟେଲଙ୍କ ଘର ସାମ୍‌ନାରେ । କାର୍‌ରୁ ଓହ୍ଲେଇ ଆମେ ଚାରିଜଣ ଚାଲିଲୁ ଘର ଭିତରକୁ । ଏ ଦେଶର ଆଧୁନିକ ଘରମାନଙ୍କର ଦାଣ୍ଡ ବାରଣ୍ଡା ନଥାଏ । ଦାଣ୍ଡ କବାଟ ବଦଳରେ ଗ୍ୟାରେଜ୍ ବାଟ ଦେଇ ଯିବାକୁ ହୁଏ ଭିତରକୁ । ଗ୍ୟାରେଜ୍‌ରୁ ପଶିବାକୁ ହୁଏ ରୋଷେଇ ଘର (କିଚନ୍) ଦେଇ ଅନ୍ଦର ମହଲକୁ । ଏଠାର ଅଧିକାଂଶ ହିନ୍ଦୁଲୋକଙ୍କ ଘରେ ବ୍ୟବସ୍ଥା ଅନୁସାରେ ଘର ଭିତରକୁ ପଶିବା ପୂର୍ବରୁ ଗୋଡରୁ ଜୋତା ଖୋଲି ରଖିଦେବାକୁ ହୁଏ । ଆମେ ଜୋତାଷ୍ଟାଣ୍ଡ୍‌ରେ ଜୋତା ରଖୁରଖୁ ଦେଖିଲୁ ବହୁ ହଳ ଜୋତା ଷ୍ଟାଣ୍ଡ୍‌ରେ ଓ ବାହାରେ ଜମା ହେଇ ସାରିଲାଣି– ତା'ମାନେ

ବହୁତ ଲୋକ ଢେର୍ ଆଗରୁ ଆସି ପହଞ୍ଚିଗଲେଣି । ଆମେ ତରତର ହେଇ ଜୋତା ଚଟି ଗୋଡରୁ ଖୋଲିପକେଇ ଚାଲିଲୁ ।

ଜୋତା ଖୋଲୁଖୋଲୁ ଶୁଣିଲି, ''ନନା, ଆଜି ତୁମକୁ ଏମାନେ ବୋଧହୁଏ ରିକ୍ୱେଷ୍ଟ କରିପାରନ୍ତି କିଛି କହିବାକୁ, କାରଣ ତୁମେ ନୂଆକରି ଆସିଚ ଏ ସେଣ୍ଟରକୁ । ମୁଁ ସେମାନଙ୍କୁ ଫୋନ୍‌ରେ କହିସାରିଚି– ମୋ ବାପା ଇଣ୍ଡିଆର ଜଣେ ବଡ ଲେଖକ– ଏକାଡେମୀ ପ୍ରାଇଜ୍ ପାଇଚନ୍ତି । ତେଣୁ ସେମାନେ ନିଶ୍ଚୟ ତୁମକୁ କହିବେ କିଛି କହିବାକୁ ।''

ଝିଅ ମୁହଁରୁ ଏକଥା ଶୁଣି ମୁଁ ଟିକେ ହତବତେଇଗଲି । ଏ କଥା ମତେ ଟିକେ ଆଗରୁ ହେଲେ କହିନଥାନ୍ତା ! ମନେ ମନେ ଝିଅ ଉପରେ ଟିକେ ଚିଡିଲି ବି । ପୁଣି ଭାବିଲି– କ'ଣ କହିବି ? ହଠାତ୍ କିଛି ବିଷୟ ମନକୁ ନ ଆସିବାରୁ ସ୍ଥିର କରିନେଲି ଯେ ମେଡିଟେସନ୍ ସମୟରେ ପଚାରିବି ବାବା କ'ଣ କହିବାକୁ ମତେ ଡକେଇଚନ୍ତି ଏଠିକି ? କ'ଣ ଅପ୍ରସ୍ତୁତ କରିବା ପାଇଁ ଡାକିଚନ୍ତି ସେ ମତେ ଆଜି ଏ ସେଣ୍ଟର୍‌କୁ ନା କ'ଣ !

ସୁଲୁମା ଆଗେ ଆଗେ ଚାଲୁଥାଏ ବାଟ କଢେଇ । ହଠାତ୍ ଗୋଟିଏ ରୁମ୍‌ର ବନ୍ଦ କବାଟ ପାଖରେ ସେ ଅଟକିଗଲା । ଫୁସ୍‌ଫୁସ୍ କରି କହିଲେ, ''ଏ ସେଣ୍ଟର୍‌ଟା ଆମ ଇଣ୍ଡିୟାନ୍ ଲୋକର ଘରେ ହେଉଥିଲେ ବି ପ୍ରକୃତରେ ଏ ଗୋଟାଏ ଆମେରିକାନ୍ ଲୋକଙ୍କ ମେଡିଟେସନ୍ ସେଣ୍ଟର ଜାଣିଥାଅ । ଯା'ର ପ୍ରେସିଡେଣ୍ଟଙ୍କ ନାମ ଚକ୍– ଭଲ ନାମ ଚାର୍ଲସ୍ ଡି ଫାଜିଓ, ଇଟାଲିୟାନ୍ ଅରିଜିନର ଲୋକ । ଏ ରୁମ୍‌ରେ ପଶିବା ପରେ ଦେଖିବ ତଳେ ଗାଲିଚା ଉପରେ ବହୁ ଲୋକ ବସିଥିବେ । କାନ୍ଥ କଡକୁ ପଡିଚି କେତୋଟି ଚେୟାର୍ । ସେଥିରୁ ଗୋଟିଏ ପ୍ରେସିଡେଣ୍ଟ ଚକ୍‌ର । ତୁମେ ବାବାଙ୍କୁ ଜୁହାର ହେଇ ବସିବ ଗୋଟିଏ ଚେୟାର୍‌ରେ । ପ୍ରଥମେ ପ୍ରେୟାର୍ ମିଟିଂ– ପରେ ଭଜନ– ଯା'ପରେ ମେଡିଟେସନ୍ । ତା'ପରେ ଚକ୍ ମତେ କହିବ ମମି ଓ ତୁମକୁ ଇଣ୍ଟ୍ରୋଡ୍ୟୁସ କରିବାକୁ । ତୁମକୁ ଯଦି ଚକ୍ ରିକ୍ୱେଷ୍ଟ କରେ ସ୍ପିଚ ଦବାକୁ ତେବେ ତୁମେ ପାଞ୍ଚ ମିନିଟ ପାଇଁ କହିବ– ନିଶ୍ଚୟ କହିବ, ନହେଲେ ମତେ ଖରାପ ଲାଗିବ । ମୁଁ ସେମାନଙ୍କୁ କହିସାରିଚି ତମେ ଜଣେ ଅରେଟର୍ !''

କବାଟ ଠେଲିଧରିଲା ସୁଲୁମା ଆମେ ପ୍ରେୟାର ହଲକୁ ପଶିବାକୁ । ଆମେ ଭିତରକୁ ପଶିଲୁ । ହଠାତ୍ ମୋ ଆଖିରେ ପଡିଲା ଶ୍ରୀ ସତ୍ୟସାଇ ବାବାଙ୍କ ଏକ ବିଶାଳ ଫଟୋଗ୍ରାଫ୍ ! ଏକ ସୁସଜ୍ଜିତ ପୂଜା ମଣ୍ଡପ ଉପରେ ଫୁଲ ଚନ୍ଦନ ଧୂପଦୀପର ସାଜସଜ୍ଜା ମଝିରେ ବାବାଙ୍କ ହସହସ ମୁହଁ ଏବଂ ଅଭୟ ମୁଦ୍ରାରେ ଦଣ୍ଡାୟମାନ ରୂପ ସେଇ ସ୍ତିମିତ ଆଲୋକିତ କୋଠରୀଟିକୁ ସଂପୂର୍ଣ୍ଣଭାବେ ଆଚ୍ଛନ୍ନ କରି ରଖିଥାଏ । ଆମେ ଚାରିଜଣ ନବାଗତ ସେଇ ଆଚ୍ଛନ୍ନତା ଭିତରେ ନିଜକୁ ଲୀନକରିଦେଲୁ ।

ଆରମ୍ଭ ହେଉଥାଏ ପ୍ରାଥମିକ ପୂଜା ପଦ୍ଧତି । ଜଣେ ଭାରତୀୟ ଭଦ୍ରମହିଳା ମଣ୍ଡପ ସମ୍ମୁଖରେ ଚକାପକେଇ ବସି ପୂଜା ବ୍ୟବସ୍ଥାର ଦାୟିତ୍ୱ ନେଇଥାନ୍ତି । ପୂରାପୂରି ଭାରତୀୟ

ଦେବମନ୍ଦିରର ବାତାବରଣ । ରୁମ୍ ଚଟାଣରେ କାର୍ପେଟ୍ ଉପରେ ଚକାପକେଇ ଆଖିବୁଜି ହାତ ଯୋଡି ପ୍ରାୟ କୋଡିଏ ପଚିଶ ଜଣ ନାରୀ ପୁରୁଷ କିଶୋର କିଶୋରୀ ଧ୍ୟାନସ୍ଥ ହେଇ ବସିଥାନ୍ତି । ଗୋଟାଏ ପାଖେ କାନ୍ଥ କଡକୁ ଲାଗି କେତେଗୁଡିଏ ଚେୟାର୍‌ରେ ବସିଥାନ୍ତି କେତେଜଣ ବୁଢା ବୁଢୀ । ସମସ୍ତେ ଗୋରା ଲୋକ । ଗୋଟାଏ ଚେୟାର୍‌ରେ ଅଲଗା ହେଇ ବସିଥାନ୍ତି ଜଣେ ପ୍ରୌଢ ବ୍ୟକ୍ତି– ସେଇ ବୋଧହୁଏ ପ୍ରେସିଡେଣ୍ଟ୍ ଚକ୍ । ମୁଁ ଗୋଟାଏ ଖାଲି ଚେୟାର୍ ଦେଖି ବସିଲି । ସମସ୍ତେ ଆଖି ବୁଜିଥାନ୍ତି– କିନ୍ତୁ ମୁଁ ଆଖି ଖୋଲି ଦେଖିବାରେ ଲାଗିଲି ସେ ରୁମ୍‌ରେ କ'ଣ ସବୁ ଚାଲିଚି– ତା'ରି ବିବରଣୀ ସବୁକୁ ।

ଦେଖିଲି– ପୂଜା ମଣ୍ଡପ ଉପରେ ସାଇବାବାଙ୍କ ଫଟୋ ପାଖରେ ରଖାଯାଇଥାଏ ଆଉ କେତେକ ମୂର୍ତ୍ତି ଓ ଫଟୋଗ୍ରାଫ୍ । ସେସବୁ ଭିତରେ ପ୍ରଥମ ହେଲେ ଶ୍ରୀଗଣେଶ । ଏହା ସହିତ ରହିଥାଏ ସୁନାପରି ଝଟକୁଥିବା କୌଣସି ଧାତୁ ନିର୍ମିତ ପଦାର୍ଥର 'ଓଁ'-ଫଳକଟିଏ । ପୁଣି ଆଖିରେ ପଡ଼ିଲା– ପୂଜା ଆସ୍ଥାନରେ ପ୍ରତିଷ୍ଠା ପାଇଚି ଶରିଡ଼ି ସାଇବାବାଙ୍କ ଏକ ପ୍ରତିକୃତି । ତା'ମାନେ ଏଠି ଶିରିଡ଼ିବାବାଙ୍କୁ ଏମାନେ ଗ୍ରହଣ କରିନେଇଚନ୍ତି ଯାହା ଭାରତରେ କେତେକ ସତ୍ୟସାଇ ଭକ୍ତ ବିରୋଧ କରନ୍ତି । ମନେହେଲା ଏମାନେ ସେମିତି "କ୍ଲୋଜ ମେଂଟାଲିଟି" ବା ସଂକୀର୍ଣ୍ଣମନା ଲୋକ ନୁହନ୍ତି ନିଶ୍ଚୟ । ଏ ବିଷୟରେ ମୁଁ ହୁସିଆର୍ ହେବା ଦରକାର ଥିଲା ନିହାତି । ନଚେତ୍ ସେଦିନ ୱାସିଂଟନ୍ ଇସ୍କନ୍ ମନ୍ଦିରରେ ସେ ବାବାଜୀ ଯେଉଁଭଳି ଅସଂଗତ ବ୍ୟବହାର କରିଥିଲେ ମୋ ବକ୍ତୃତା ମଝିରେ ଅବସ୍ଥା ସେପରି ନହେଉ ଏଇ ଥିଲା ମୋ ସାବଧାନତାର କାରଣ ।

ଯା' ପରେ ଯଥା ରୀତି ପୂଜାର୍ଚ୍ଚନା ଇତ୍ୟାଦି ଚାଲିଲା । ପରେପରେ ଧ୍ୟାନ ପାଇଁ ରୁମ୍‌ର ଲାଇଟ୍‌କୁ ସ୍ତିମୀତ କରିଦିଆଗଲା । ପ୍ରାୟ ପାଞ୍ଚ ମିନିଟ୍ ଧ୍ୟାନ ସମୟ ଅତିବାହିତ ହେବା ପରେ ରୁମ୍ ଭିତର ଆଲୋକକୁ ଉଜ୍ଜ୍ୱଳ କରିଦିଆଗଲା । ଆଖି ବୁଲେଇ ଚାହିଁଲି ଧ୍ୟାନରତ ଅନ୍ୟସବୁ ସାଇ ଭକ୍ତଙ୍କ ମୁହଁକୁ । ଦେଖିଲି– ସେମାନେ ପ୍ରାୟ ସମସ୍ତେ ବିଦେଶୀ ଲୋକ । ସେମାନଙ୍କ ଭିତରେ ଆମେ ଦୁଇଟି ପରିବାର ମାତ୍ର ଭାରତୀୟ– ଜୟ ଓ କଞ୍ଚନା ପଟେଲ ଏବଂ ଆମ ପରିବାର ।

ଏହାପରେ ଗୋଟିଏ କଡକୁ ଅଲଗା ହେଇ ପଡିଥିବା ଏକ ଚେୟାର୍ ଉପରେ ଆସୀନ ସେଇ ପ୍ରୌଢ ଆମେରିକାନ୍ ବ୍ୟକ୍ତି ନୀରବତା ଭଙ୍ଗକଲେ ଓ ମତେ ଲକ୍ଷ୍ୟ କରି କହିଲେ, "Welcome Professor Acharya to our Sai Centre. I am Charles De Fazio. You may call me Chuk. As per our custom here we request our new guest to introduce him or herself and give a short speech. Would you please."

ମୁଁ ଠିଆ ହେଲି । ସେଦିନ ମୁଁ ଥିଲି ସଂପୂର୍ଣ୍ଣ ଅପ୍ରସ୍ତୁତ । କିନ୍ତୁ ହଠାତ୍ ମନେପଡ଼ିଲା–

ମୁଁ ଜଗତସିଂହପୁର କଲେଜରେ ପ୍ରିନ୍ସିପାଲ୍ ଥିବା ସମୟର ଏକ ଅଦ୍ଭୁତ ଘଟଣା । ସେଇ ଘଟଣାକୁ ଆଧାର କରି ମୁଁ ଏକ ସଂକ୍ଷିପ୍ତ ବକ୍ତବ୍ୟ ସେଦିନ ସନ୍ଧ୍ୟାର ସାଇ ସେଣ୍ଟର୍ ପାଠଚକ୍ରରେ ପରିବେଷଣକଲି ।

୧୯୮୫ର ଘଟଣା । ସେତେବେଳେ ମତେ ବାଉନ ବର୍ଷ ବୟସ । ହଠାତ୍ ମୁଁ ହାଡଫୁଟି (chicken pox) ରୋଗର ଶିକାର ହେଲି । ମୁଁ ଶଯ୍ୟାଶାୟୀ ହେଇଗଲି ତିନି-ସପ୍ତାହ କାଳ । ହାଡଫୁଟି ଏକ ଅସହ୍ୟ ଯନ୍ତ୍ରଣା ଦାୟକ ରୋଗ । ପ୍ରଥମେ ଜ୍ୱର, ପରେ ପରେ ଦେହସାରା ଫୁଟି ଉଠେ ଫୋଟକା । କାହାର ଦେହରେ କମ୍ ଫୋଟକା ବାହାରେ ତ କାହା ଦେହରେ ଛତୁ ଫୁଟିଲା ଭଳି ବାହାରିଯାଏ ବଡବଡ ଫୋଟକା । ମୋ ଦେହରେ ବାହାରିଲା ଏତେ ବେଶୀ ଓ ଏଡ଼େ ବଡ଼ବଡ଼ ଫୋଟକା ଯେ ଦେଖିବା ଲୋକେ ପ୍ରଚାର କଲେ ବସନ୍ତ ହୋଇଗଲା ମତେ । ଦେହ ମୁହଁ ପେଟ ପିଠି ଚାରିଆଡ଼େ ଫୁଟି ଉଠିଲା ହାଡଫୁଟି । ଭୟଙ୍କର ଯନ୍ତ୍ରଣାଦାୟକ ଏ ଭାଇରାଲ୍ ରୋଗର ଉପଶମ ପାଇଁ କୌଣସି ଔଷଧ ନଥିଲା । ମୁଁ ଶଯ୍ୟାଶାୟୀ ହେଲି । ସେତେବେଳେ ମୁଁ ଏକା ରହୁଥାଏ କଲେଜ କ୍ୟାମ୍ପସ୍‌ରେ ମୋର ଅଫିସିଆଲ୍ କ୍ୱାଟର୍‌ସ୍‌ରେ । ପରିସ୍ଥିତିର ଚାପ ବଶତଃ ମୋ ସ୍ତ୍ରୀ, କଲେଜପଢୁଆ ଝିଅ ଓ ଅସୁସ୍ଥ ବାପା ରହୁଥାନ୍ତି ଦୂରରେ ଭୁବନେଶ୍ୱରରେ । କେବଳ ଜଣେ କଲେଜ ପିଅନ୍ ମୋର ହେପାଜତ କରୁଥାଏ ।

ରୋଗ ଆରମ୍ଭରୁ ମତେ ଜଣେ ଡାକ୍ତର ପରୀକ୍ଷା କରି ଘୋଷଣା କଲେ– ଆପଣଙ୍କୁ ଚିକେନ୍-ପକ୍ସ ହେଇଚି । ଆ'ର କିଛି ମେଡିସିନ୍ ନାହିଁ । ଆପଣ ଏ ଘୋର ଯନ୍ତ୍ରଣାଦାୟକ ରୋଗ ପ୍ରକୋପକୁ କେବଳ ଦିହେ ଦିହେ ସହ୍ୟକରି କୌଣସି ପ୍ରକାରେ ଅନ୍ତତଃ ତିନିସପ୍ତାହ କ୍ୱାରେଂଟାଇନ୍‌ରେ ରହିବେ, ଏଇଠି, ଏଇ କ୍ୱାଟର୍‌ସ୍‌ରେ । ଏ କ୍ୱାଟର୍‌ସ୍ ଛାଡ଼ି ଅନ୍ୟ କୁଆଡ଼େ ଯାଇ ପାରିବେ ନାହିଁ । ଏ ରୋଗ ସାଂଘାତିକ ଭାବେ ସଂକ୍ରାମକ । ତେଣୁ ବିଶେଷ ଜରୁରୀ ନଥିଲେ କେହି ଲୋକ ଆପଣଙ୍କୁ ଦେଖା କରିବା ପାଇଁ ଏଠାକୁ ନଆସିବା ଉଚିତ୍ ।

ଏହା ପରେ ମୁଁ ଭାଗ୍ୟକୁ ଆଦରିପଡିରହିଲି ଖଣ୍ଡେ ଖଟିଆ ଉପରେ ଆବଦ୍ଧ ଅବସ୍ଥାରେ ବେଡ ରୁମ୍‌ରେ । ରୋଗର ଅସହ୍ୟ ଯନ୍ତ୍ରଣା ସହିସହି ସେଇ ଖଟିଆ ଖଣ୍ଡକ ଉପରେ ମୁଁ ସେ ତିନି ସପ୍ତାହ କେମିତି କାଟିବି ଏଇ ଚିନ୍ତାରେ ପଡ଼ିଗଲି । ଦୁଇ ତିନିଦିନ ଶେଯରେ ପଡ଼ିଲା ପରେ ହଠାତ୍ ମୋ ମନରେ ସନ୍ଦେହ ଜାତ ହେଲା– ମତେ ଏ ରୋଗ କାହିଁକି ଗ୍ରାସ କଲା ? ଭାରତରେ ଆବହମାନ କାଳରୁ ଏକ ପ୍ରକାର ରୋଗ– ବସନ୍ତ ହାଡଫୁଟି କଲେରା ଇତ୍ୟାଦିକୁ ମଣିଷ ଶରୀରରେ ଠାକୁରାଣୀଙ୍କ ଆବିର୍ଭାବ ଅର୍ଥାତ୍ କୌଣସି ଦୈବୀ ବା ଆଧିଭୌତିକ କାରଣ ସମ୍ଭୂତ ବୋଲି ଏକ ଧାରଣା ପ୍ରଚଳିତ ରହିଚି । ସେପରି ଧାରଣାର କାରଣ କଣ ହୋଇଥାଇପାରେ ? ଅନ୍ୟାନ୍ୟ ରୋଗକୁ କାହିଁକି ସେପରି ଦୈବୀ ନାମକରଣ ଦିଆଯାଇନାହିଁ ? ଏହିପରି ଚିନ୍ତା କରୁକରୁ ହଠାତ୍ ମତେ ଜଣାଗଲା ମୁଁ ଏ

ରୋଗକୁ ମୋ ଶରୀରରୁ ମୋ ନିଜର ଦୃଢ଼ ଇଚ୍ଛାଶକ୍ତି ବଳରେ ନିକାଳି ଦେଇ ପାରିବି । କିଛି ନହେଲେ ବି ମୁଁ ନିଜେ ଏ ଦୁର୍ବିସହ ରୋଗର ଯନ୍ତ୍ରଣାକୁ ଇଚ୍ଛାଶକ୍ତି ବଳରେ ଆୟତ୍ତ କରିନେଇପାରିବି । ଜଣେ ମଣିଷ ହୋଇ ଏ ରୋଗର କାରଣ ଏକ ତୁଚ୍ଛ ଅର୍ଦ୍ଧକୋଷୀ ପ୍ରାଣୀ ବା ଭାଇରସ୍ ନିକଟରେ କଦାପି ମୁଣ୍ଡ ନୁଏଇଁ ହାର ମାନିବି ନାହିଁ । ମୋ ଶରୀର ଭିତରେ ଏ ଜୀବାଂଶ ପ୍ରବେଶ କରିଛି ମତେ ଯନ୍ତ୍ରଣା ଦେଇ ସାଧ କରିବା ଉଦ୍ଦେଶ୍ୟରେ । ଯଦି ତାହା ହୋଇଥାଏ ତେବେ ମୁଁ ମଧ ସଂକଳ୍ପବଦ୍ଧ ଏହି ଶାରୀରିକ ଯନ୍ତ୍ରଣାକୁ ଆଦୌ ସ୍ୱୀକାର ନକରିବାକୁ । କିଛି ସମୟ ଏହିପରି ଭାବିବା ଭିତରେ ମୁଁ ନିଜ ଅନ୍ତରରେ ଏକ ଦିବ୍ୟଶକ୍ତି ସଞ୍ଚାର ହେବା ପରି ଉଲ୍ଲାସ ଅନୁଭବ କଲି ।

ଠିକ୍ ସେତିକିବେଳେ ମୋ ଭିତରେ କିଏ କହିଲା– "Ask your Atma to detach itself from the body and command your sense organs not to feel any pain physically !"

କିଏ ମୋ ଅନ୍ତର ଭିତରୁ ସେ ବାକ୍ୟଟା କହିଲା ବୁଝିନପାରି ମୁଁ କାନ ଡେରିଲି ଆଉ କିଛି କଥା ହୁଏତ ଶୁଣିବି ବୋଲି । ଏହା ପରେ ମୁଁ ମୋର ଅନ୍ତରାତ୍ମାକୁ ପଚାରିଲି, "ଏହା କିପରି ସଂଭବ ? ଆତ୍ମାକୁ କିପରି ଅଲଗା କରିହେବ ଶରୀରଠାରୁ ? ଦେହର ଯନ୍ତ୍ରଣା କେମିତି ମନ ଅନୁଭବ ନକରିବ ? ମୁଁ ତ ଯୋଗୀ ନୁହେଁ ଯେ ଇଚ୍ଛା ଅନୁସାରେ ଆତ୍ମାକୁ ମୋ ଅନ୍ତରରୁ ଅଲଗା କରିଦେଇପାରିବି ?"

ଏଠାରେ ସେ ପ୍ରସଙ୍ଗର ଅଧିକ ବାଖ୍ୟା କରିବାକୁ ଯାଉନାହିଁ । କେବଳ ଏତିକି କହୁଚି– ତାପରେ ମୁଁ ମୋ ସେବାକାରୀକୁ ପାଖ ପଡ଼ିଶା ଘରୁ କିଛି ଅଧ୍ୟାତ୍ମ ବିଷୟ ସମ୍ପର୍କିତ ପୁସ୍ତକ ମାଗିଆଣିବାକୁ ପଠାଇଲି । ସେ ପ୍ରଫେସର୍ କଲୋନୀକୁ ଯାଇ ଜଣେ ଶୁଭେଚ୍ଛୁ ସହକର୍ମୀ ବନ୍ଧୁଙ୍କଠାରୁ ମୋ ପାଇଁ ଦୁଇ ଖଣ୍ଡ ବହି ସଂଗ୍ରହ କରି ଆଣିଲା । ସେ ଦୁଇଖଣ୍ଡ ବହିର ଲେଖକ ଥିଲେ ଦୁଇଜଣ ବଦେଶୀ ବ୍ୟକ୍ତି– ଜଣେ ଅଷ୍ଟ୍ରେଲିୟାର ହାୱାର୍ଡ ମର୍ଫେଟ (Howard Murphet) ଓ ଅନ୍ୟଜଣକ ଥିଲେ କାଲିଫର୍ଣ୍ଣିଆର ସାଇକିଆଟ୍ରିଷ୍ଟ ସାମୁଏଲ୍ ସ୍ୟାଣ୍ଡୱେସ୍ (Samuel Sandweiss) । ଏଇ ଦୁଇ ବିଦେଶୀ ଲେଖକଙ୍କ ନାମ ମୁଁ ପୂର୍ବରୁ ଶୁଣିନଥିଲି । ବହି ଦୁଇଟିର ମୁଖବନ୍ଧରୁ ଦେଖିଲି ସେମାନେ ପ୍ରଥମତଃ ଭାରତକୁ ଆସିଥିଲେ ପାଶ୍ଚାତ୍ୟ ସଂଶୟବାଦୀ ବୁଦ୍ଧିଜୀବୀମାନଙ୍କ ପରି ଜଣେ ଭାରତୀୟ ସିଦ୍ଧ-ପୁରୁଷଙ୍କ ସିଦ୍ଧିକୁ ବୈଜ୍ଞାନିକ ଦୃଷ୍ଟିରୁ ପରୀକ୍ଷା କରିବା ଲକ୍ଷ୍ୟରେ । କିନ୍ତୁ ପରବର୍ତ୍ତୀ ସମୟରେ ସେଇ ଦୁଇ ସଂଶୟବାଦୀ ବୁଦ୍ଧିଜୀବୀ ଉକ୍ତ ଭାରତୀୟ ସିଦ୍ଧପୁରୁଷଙ୍କ ଅଲୌକିକ ସିଦ୍ଧିରେ ପ୍ରଭାବିତ ହୋଇ ତାଙ୍କର ଶିଷ୍ୟତ୍ୱ ଗ୍ରହଣକରିଛନ୍ତି ଏବଂ ସେ ସମ୍ପର୍କରେ ନିଜର ଅଭିଜ୍ଞତା ଲିପିବଦ୍ଧ କରିଛନ୍ତି । ସେଇ ସିଦ୍ଧ ପୁରୁଷଙ୍କ ନାମ ହେଲା ଶ୍ରୀ ସତ୍ୟସାଇ ବାବା । ଏଠାରେ ଉଲ୍ଲେଖ କରିବି ମୁଁ ଜଣେ ବିଜ୍ଞାନ ବିଷୟର ଛାତ୍ର ଓ ଜଣେ ଆଜୀବନ ସାହିତ୍ୟ ସାଧକ ଭାବେ

ମାନବିକତାର ଚରମ ବିକାଶକୁ ଆଧ୍ୟାତ୍ମିକତା ରୂପରେ ଗ୍ରହଣ କଲେ ମଧ୍ୟ ଗୁରୁବାଦକୁ ଗ୍ରହଣ କରେନାହିଁ । ମୁଁ ଏଯାବତ୍ କୌଣସି ସିଦ୍ଧପୁରୁଷଙ୍କଠାରୁ ଦୀକ୍ଷା ଗ୍ରହଣ କରିନାହିଁ ମଧ୍ୟ । ଏଠାରେ ଉଲ୍ଲେଖନୀୟ– ପୁସ୍ତକ ଦୁଇଟି ମୋତେ ଏପରି ଆଚ୍ଛନ୍ନ କରି ରଖିଲା ଯେ ଦୀର୍ଘ ତିନିସପ୍ତାହ କାଳ ସେଇ ରୋଗଶଯ୍ୟାରେ ପଡିରହି ସୁଦ୍ଧା ମୁଁ ମୋର ଶାରୀରିକ ଯନ୍ତ୍ରଣାକୁ ସାମାନ୍ୟ ମାତ୍ରାରେ ବି ଅନୁଭବ କରିପାରି ନଥିଲି । ଏହା ମୋ ପାଇଁ ଥିଲା ଏକ ଶିକ୍ଷା ଯାହା କୌଣସି ଶିକ୍ଷାନୁଷ୍ଠାନର ପାଠ୍ୟ ପୁସ୍ତକରୁ ମିଳେନା । ମୋର ବକ୍ତବ୍ୟ ଶେଷ ହେଲା ।

ରୁମ୍ ଭିତରେ କିଛି ସମୟ ନିରବତା ରାଜୁତିକଲା । ଶେଷରେ ସଭାପତି ଚକ୍ ମୁହଁ ଖୋଲିଲେ । କହିଲେ, "We invite you Sir to be our permanent guest hereafter. Kindly come to our prayer meetings as long as you are in this city."

ଗ୍ଲାସ୍‌ଟନ୍‌ବରିରେ ମୋର ଦୁଇମାସ ରହଣି ଭିତରେ ମୁଁ ପ୍ରତି ଗୁରୁବାର ସନ୍ଧ୍ୟାରେ ସେଠାକାର ସାଇସେଣ୍ଟର୍‌କୁ ଯାଉଥିଲି । ସେଠାରେ ମୁଁ ସେ କେନ୍ଦ୍ରର ଇତିହାସ ଓ କାର୍ଯ୍ୟକଳାପ ସଂପର୍କରେ ଅନେକ ତଥ୍ୟ ସଂଗ୍ରହ କରିଛି । ତା' ସହିତ କେନ୍ଦ୍ରର ସଭ୍ୟସଭ୍ୟାମାନଙ୍କ ସହିତ ଅନ୍ତରଙ୍ଗ ଆଳାପ ଅଲୋଚନା କରି ସେମାନଙ୍କର ବ୍ୟାକୁଳ ଆଧ୍ୟାତ୍ମିକ ଅନୁସନ୍ଧିତ୍ସା ସଂପର୍କରେ ଅବଗତ ହୋଇଛି । ଦେଖିଲି ଏ ସେଣ୍ଟର୍‌ର ଅନେକ ସଭ୍ୟ ମେକ୍ସିକୋ ବା ଗୁଏଟାମାଲା ଭଳି କେନ୍ଦ୍ର ଆମେରିକାର ଦରିଦ୍ର ଦେଶମାନଙ୍କରୁ ଚାକିରି ଅନୁସନ୍ଧାନରେ ଆମେରିକା ଚାଲିଆସିଥିବା ନାରୀ ପୁରୁଷ ଯେଉଁମାନଙ୍କୁ ଏ ଦେଶରେ ତାଚ୍ଛଲ୍ୟକର ଭାଷାରେ ନାମିତ କରାଯାଏ 'ଲାଟିନୋ' ବା 'ହିସ୍‌ପାନିକ୍' । ଏମାନେ ସ୍ପାନିସ୍ ଭାଷାରେ କଥାବାର୍ତ୍ତା ହୁଅନ୍ତି । ସାଧାରଣତଃ ଏଇ ଦରିଦ୍ର ବାସ୍ତୁହରା ହିସ୍ପାନିକ୍‌ମାନେ ଅତ୍ୟାଚାରିତ, ଭଗ୍ନପାରିବାରିକ ପୃଷ୍ଠଭୂମିର ଲୋକ । ଏସବୁ ଉପରେ ଅଧିକାଂଶ ଯୌନ-ପ୍ରପୀଡିତ ମଧ୍ୟ । ଏ ଶ୍ରେଣୀର ଲୋକେ ମାନସିକ ଅବସାଦର ଶିକାର ହେବା ଅତ୍ୟନ୍ତ ସ୍ୱାଭାବିକ । ସେମାନେ ମୁଖ୍ୟତଃ କାଥଲିକ୍ ଧର୍ମାବଲମ୍ବୀ । କିନ୍ତୁ ନିଜ ଧର୍ମରେ ମିଳୁଥିବା ଆଧ୍ୟାତ୍ମିକ ଆଶା ଆଶ୍ୱାସନା ସେମାନଙ୍କର ମାନସିକ ଅବସାଦକୁ ଦୂର କରିବାକୁ ଯଥେଷ୍ଟ ନହେବା କାରଣରୁ ସେମାନେ ଶେଷରେ ଆଶ୍ରୟ ଲୋଡିଚନ୍ତି ଭାରତର ଏଇ ବିଚିତ୍ରକର୍ମା-ଯୋଗୀ ଶ୍ରୀ ସତ୍ୟସାଇ ବାବାଙ୍କ ନିକଟରେ ଏବଂ ତାର ଆଶୁ ସୁଫଳ ମଧ୍ୟ ପ୍ରାପ୍ତ ହୋଇଛନ୍ତି ।

ଏଭଳି ସୁଫଳପ୍ରାପ୍ତ ଜଣେ ମୁଖ୍ୟ ବ୍ୟକ୍ତି ହେଲେ ଏ ସଂଘର ସଭାପତି ସ୍ୱୟଂ ଚକ୍ (ଚାର୍ଲସ୍ ଡି ଫାଜିଓ) । ସେ ମୂଳତଃ ଜଣେ ଇଟାଲୀୟ ବଂଶଧର ହୋଇଥିବା ଜାଣି ମୁଁ ତାଙ୍କର ଧାର୍ମିକ ଓ ଆଧ୍ୟାତ୍ମିକ ମନୋଭାବ ସଂପର୍କରେ ଅଧିକ କିଛି ଜାଣିବା ଲକ୍ଷ୍ୟରେ ବହୁ ଉଖାରି ଉଖାରି ଅନେକ ତଥ୍ୟ ସଂଗ୍ରହ କରିପାରିଥିଲି । ସେ ଓ ତାଙ୍କ ପତ୍ନୀ କାହିଁକି ସାଇବାବାଙ୍କ ଭକ୍ତ ହେବାକୁ ମୂଳରୁ ମନ ବଳାଇଲେ ସେକଥା ଜାଣି ଆଶ୍ଚର୍ଯ୍ୟ ହେଲି ଯେ

ଗ୍ରୀସ୍ ଓ ଇଟାଲୀ ଦେଶ ଭଳି ଭୂମଧ୍ୟସାଗରୀୟ ଅଞ୍ଚଳର ଲୋକେ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ହିନ୍ଦୁମାନଙ୍କ ଭଳି ରହସ୍ୟବାଦ ପ୍ରତି ପ୍ରବଳ ଅନୁରକ୍ତ । ସେମାନେ ମଣିଷର ଦୈବୀଶକ୍ତି ଏବଂ ଅଲୌକିକ କ୍ଷମତାର ସଂଭାବନାକୁ ଅବିଶ୍ୱାସ ବା ଅସ୍ୱୀକାର କରନ୍ତି ନାହିଁ, ବରଂ ସେଭଳି ମଣିଷଙ୍କୁ ସେମାନେ ଦେବଦେବୀ ଜ୍ଞାନରେ ଉପାସନା କରିବାକୁ କୁଣ୍ଠିତ ନୁହନ୍ତି । ସାଇବାବାଙ୍କ ଅଲୌକିକ କ୍ଷମତା ଏମାନଙ୍କୁ ଆକୃଷ୍ଟ କରେ । ତେଣୁ ଦକ୍ଷିଣ ୟୁରୋପୀୟ ଲୋକଙ୍କ ଭିତରେ ସାଇବାବାଙ୍କର ଲୋକପ୍ରିୟତା ଯଥେଷ୍ଟ । ଚକ୍ ସେଇ ଜାତିର ଜଣେ ଅଧ୍ୟାତ୍ମବାଦୀ ଅଲୌକିକତାରେ ବିଶ୍ୱାସୀ ଦକ୍ଷିଣ ୟୁରୋପୀୟ ଲୋକ । କଥା ଛଳରେ ସେ ଥରେ ମତେ କହିଥିଲେ, ''ଦେଖନ୍ତୁ! ମୁଁ ଜନ୍ମଜନ୍ମାନ୍ତର ବିଶ୍ୱାସୀ । ପୂର୍ବଥର ମୁଁ ଭାରତରେ ହିଁ ଜନ୍ମ ହେଇଥିଲି ।''

ଏଭଳି ଏକ ଭାରତୀୟ ଆଧ୍ୟାତ୍ମିକ ଶିକ୍ଷା କେନ୍ଦ୍ର ଯେ ବିଗତ ୨୫ ଧରି କନେକ୍ଟିକଟ୍ ଭଳି ଆମେରିକାର ବୁନିୟାଦି ରାଜ୍ୟ ଅର୍ଥାତ୍ ''କନ୍‌ଷ୍ଟିଚ୍ୟୁସନ୍ ଷ୍ଟେଟ୍''ରେ ପରିଚାଳିତ ହୋଇଆସୁଚି ତାହା ବାସ୍ତବରେ ମୋ ପାଇଁ ଥିଲା ଏକ 'ନୂଆ ଉପଲବ୍ଧି ।

## ମିଲ୍‌ଫୋର୍ଡ (ମାସାଚ୍ୟୁଟେସ୍)ରେ କୁମାରପୂର୍ଣ୍ଣମୀ ଉତ୍ସବ–

ମିଲ୍‌ଫୋର୍ଡ, ୪, ନଭେମ୍ବର, ୨୦୦୬ ।

କନେକ୍ଟିକଟରେ ରହଣି ସମୟରେ ଦିନେ ଗୋଟିଏ ଟେଲିଫୋନ୍ କଲ୍ ପାଇଲି, ''ନମସ୍କାର– ମୁଁ ସତ୍ୟବ୍ରତ କହୁଚି''...

ସତ୍ୟବ୍ରତ ମିଶ୍ରଙ୍କୁ ମୁଁ ପୂର୍ବରୁ ଚିହ୍ନେ । ସେ ଓ ତାଙ୍କ ବଡଭାଇ ନିତ୍ୟାନନ୍ଦ ଏବଂ ସେମାନଙ୍କର ଭଉଣୀ ଭିଣୋଇ ଓ ବହୁ ବନ୍ଧୁବାନ୍ଧବ ଆମେରିକାରେ ରହନ୍ତି ପ୍ରବାସୀ ଭାରତୀୟ (NRI) ଭାବେ । ସେମାନେ ଆମ ପରିବାର ସହିତ ଅନ୍ତରଙ୍ଗ ଭାବେ ପରିଚିତ । ସତ୍ୟବ୍ରତଙ୍କ ବାପା ସ୍ୱର୍ଗତ ଭାବଗ୍ରାହୀ ମିଶ୍ର (ଅବସରପ୍ରାପ୍ତ ଆଇ.ଏ.ଏସ୍) ଓଡିଶାର ଜଣେ ବିଶିଷ୍ଟ ବ୍ୟକ୍ତି । ମୋ ଶଶୁର, ରେଭେନ୍ସା କଲିଜିଏଟ୍ ସ୍କୁଲର ପୂର୍ବତନ ପ୍ରଧାନଶିକ୍ଷକ ନନ୍ଦକିଶୋର ରଥ ଥିଲେ ଭାବଗ୍ରାହୀବାବୁଙ୍କର ଘନିଷ୍ଠ ବନ୍ଧୁ । ଭାବଗ୍ରାହୀ ବାବୁଙ୍କ ଦୁଇପୁଅ ନିତ୍ୟାନନ୍ଦ ଓ ସତ୍ୟବ୍ରତ ଉଭୟ ମଧ୍ୟ ଥିଲେ ରେଭେନ୍ସା କଲିଜିଏଟ୍ ସ୍କୁଲ୍‌ର ଛାତ୍ର । ପୂର୍ବତନ ପ୍ରଧାନଶିକ୍ଷକଙ୍କ ପ୍ରତି ବିଶେଷ ଅନୁରକ୍ତିରୁ ଏ ଦୁଇଭାଇ ମୋ ପତ୍ନୀ ନିରୁପମାଙ୍କୁ ବଡଭଉଣୀ ଖାତିରରେ ଡାକନ୍ତି ନାନୀ । ପ୍ରତିଥର ଆମେରିକା ଭ୍ରମଣରେ ଯିବା ସମୟରେ ଆମେ ଦୁହେଁ କନେକ୍ଟିକଟ୍‌ରେ ଅଛୁ ଶୁଣିଲେ ସେମାନେ ଆମକୁ ତାଙ୍କ ଘରକୁ ନିମନ୍ତ୍ରଣ କରନ୍ତି ବା ଆମକୁ ଭେଟିବାକୁ ଆସନ୍ତି ।

କିନ୍ତୁ ସେଦିନ ସତ୍ୟବ୍ରତ ମତେ ଡାକିଥିଲେ ଗୋଟିଏ ବିଶେଷ ନିମନ୍ତ୍ରଣ ଦେବାକୁ । ନିମନ୍ତ୍ରଣର ଉଦ୍ଦେଶ୍ୟ ହେଲା 'ମାସାଚ୍ୟୁସେଟ୍‌ସ୍'ର ସ୍ଥାନୀୟ ଓଡିଆ ଆସୋସିଏସନ୍ ପକ୍ଷରୁ

ମିଲଫୋର୍ଡ ସହରରେ ସେ ବର୍ଷର କୁମାରପୂର୍ଣ୍ଣିମା ଉତ୍ସବରେ ମୁଖ୍ୟଅତିଥି ହେବାକୁ । ତା ସହିତ ସେ ମଧ୍ୟ ଅନୁରୋଧ କଲେ ସେଠାର ପ୍ରବାସୀ ଓଡିଆମାନଙ୍କୁ କୁମାରପୂର୍ଣ୍ଣମୀ ଉତ୍ସବର ତାତ୍ପର୍ଯ୍ୟ ବିଷୟରେ କିଛି କହିବାକୁ ।

ଉତ୍ସବଟି ଥାଏ ଆଜି ସନ୍ଧ୍ୟାରେ । ଦି'ପହରେ ଲଞ୍ଚପରେ ଆମେ ବାହାରିଲୁ ମିଲ୍‌ଫୋର୍ଡ । ଆମ ଦଳରେ ସାମିଲ ହେଇଥାନ୍ତି ଆମର ତିନି ଝିଅ, ତିନିଜୋଇଁ ଓ ନାତିନାତୁଣୀ ସମସ୍ତେ । ବଡଝିଅ, ଜୋଇଁ ଓ ନାତି ପ୍ରତୀକ ଆସିଥାନ୍ତି ଟେନୀସୀ ଫ୍ରାଙ୍କ୍‌ଲିନ୍‌ରୁ । ସାନଝିଅ ଜୋଇଁ ଜୁଲି ଅଭିଜିତ ଓ ତାଙ୍କ ଦୁଇଝିଅ– ଅଙ୍କିତା (୧୧) ଆନୁ (୬) । ଜୁଲି ଓ ଅଙ୍କିତାଙ୍କୁ ସତ୍ୟବ୍ରତବାବୁ ସ୍ୱତନ୍ତ ନିମନ୍ତ୍ରଣ ଦେଇ ଡାକିଆଣିଥିଲେ ବଲ୍‌ଟିମୋର୍‌ରୁ– ମିଲ୍‌ଫୋର୍ଡ କୁମାରପୂର୍ଣ୍ଣମୀ ସାଂସ୍କୃତିକ ଉତ୍ସବରେ ଭାଗନେବାକୁ ।

ଦୁଇଘଣ୍ଟା ଡ୍ରାଇଭ୍ ପରେ ଆମେ ପହଞ୍ଚିଲୁ ମିଲଫୋର୍ଡରେ । ମିଟିଂ ଜାଗାରେ ପହଞ୍ଚିଲୁ । ଆଶ୍ଚର୍ଯ୍ୟ ହେଲି, କାରଣ ସେ ଘରଟା କୌଣସି ସଭା ସମିତ ଘର ଭଳି ଦିଶିଲା ନାହିଁ । ଘର ଉପରେ ଗୋଟାଏ କ୍ରସ୍ ଆଉ ଝରକା କାଚରେ ବାଇବେଲ୍‌ର ଛବି ! ଏ ତ ଗୋଟିଏ ଚର୍ଚ୍ଚ୍ ! ବାସ୍ତବରେ ତାହା ଥିଲା ମିଲଫୋର୍ଡର ୟୁନିଟାରି ଚର୍ଚ୍ଚ ! ଗୋଟାଏ ଚର୍ଚ୍ଚରେ କୁମାରପୂର୍ଣ୍ଣମୀ ଉତ୍ସବ ? କଥାଟା କେମିତି କେମିତି ଲାଗିବା ସ୍ୱାଭାବିକ । ପରେ ଜାଣିଲି– ଆଜିକାଲି ଆମେରିକାରେ ଚର୍ଚ୍ଚ ସବୁ ପଡିଯାଇଚନ୍ତି ଅର୍ଥନୈତିକ ସମସ୍ୟାରେ । ସହଜେ ଆମେରିକା ସମେତ ସମସ୍ତ ପାଶ୍ଚାତ୍ୟଦେଶରେ ଧର୍ମବିଶ୍ୱାସରେ ଭଟ୍ଟା ପଡିସାରିଚି । ଚର୍ଚ୍ଚକୁ ଆସିବା ଲୋକଙ୍କ ସଂଖ୍ୟା କମିକମିଯାଉଚି । ତେଣେ ଦେଶରେ ଚାଲିଚି ଘୋର ଅର୍ଥନୈତିକ ମାନ୍ଦା ଅବସ୍ଥା ।

ବହୁ ସନ୍ତର୍ପଣରେ ଆମେ ପ୍ରାର୍ଥନା ଗୃହ ଭିତରକୁ ପଶିଲୁ । ବେଶୀ ବଡ ନହେଲେବି ହଲ୍‌ଟି ଆଖି ଦୃଷ୍ଟିଆ ଆଉ ଖୁବ୍ ପରିଚ୍ଛନ୍ନ ଲାଗିଲା । ଅନ୍ତତଃ ଦୁଇଶହ ଅତିଥିଙ୍କ ପାଇଁ ବେଞ୍ଚ ଡେସ୍କ ପଡିଥାଏ । କେତେଜଣ ଅତିଥି ପହଞ୍ଚିସାରିଥାନ୍ତି । ଉଦ୍ୟୋକ୍ତା ସତ୍ୟବ୍ରତ ଓ ତାଙ୍କ ବଡଭାଇ ନିତ୍ୟାନନ୍ଦ ଆମକୁ ସଂଖୋଳି ସ୍ୱାଗତ ଜଣାଇଲେ । ନିତ୍ୟାନନ୍ଦଙ୍କ ପତ୍ନୀ ନିହାର ଓ ସତ୍ୟବ୍ରତଙ୍କ ପତ୍ନୀ ବିଜୟଲକ୍ଷ୍ମୀ (ଡୋଲା) ଆମ ପରିବାରର ପୂର୍ବପରିଚିତ । ଡୋଲା ହେଲେ ପୁରୀର ଝିଅ । ସେ ବି ପୁରୀ ଜିଲ୍ଲାସ୍କୁଲର ତଦାନୀନ୍ତନ ପ୍ରଧାନଶିକ୍ଷକଙ୍କ ଝିଅ– ନିରୁପମା ସେମାନଙ୍କୁ ପାରିବାରିକ ଭାବେ ଚିହ୍ନିଥାନ୍ତି । ତେଣୁ ଆରମ୍ଭରୁ ହିଁ ମାସାଚ୍ୟୁସେଟରେ ରହୁଥିବା ପ୍ରବାସୀ ଓଡିଆଙ୍କ ସହିତ ଆମର ପାରିବାରିକ ବନ୍ଧୁମିଳନ ଘଟିଲା ।

କ୍ରମେ ଆହୁରି କେତେଜଣ ନିମନ୍ତ୍ରିତ ଅତିଥି ସଭାକୁ ଆସିଲେ । ସେମାନଙ୍କ ଭିତରେ ଥିଲା ମୋର ଗୋଟିଏ ଝିଆରୀ– ରାନୁ, ଭଲ ନାମ ଅଜିତା ଦାଶ– ମୋ ସଢୁ ଓ ଶାଳୀ ବୁଦ୍ଧଦେବ ଓ ଅନୁପମାଙ୍କ ଝିଅ । ରାନୁ ଅନେକବର୍ଷ ହେଲା ରହିଲାଣି ଆମେରିକାରେ । ଚିକାଗୋ ବିଶ୍ୱିଦ୍ୟାଳୟରୁ ପି.ଏଚ୍‌ଡି ସାରି ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ ପୋଷ୍ଟ୍‌ଡକ୍ କଲାପରେ

ଏବେ ଗୋଟାଏ ପ୍ରସିଦ୍ଧ ଆମେରିକାନ୍ କଂପାନୀର ଗବେଷକ– ବୈଜ୍ଞାନିକ । ସେ ଏଇ ସହରରେ ରହେ । ତାଙ୍କୁ ଦେଖି ଆମେ ଅତି ଖୁସି ହେଲୁ ।

ଏହାପରେ ଆସିଲେ ଆହୁରି କେତେକ ଚିହ୍ନା ପରିଚିତ ଓଡିଆ ଭଦ୍ରଲୋକଙ୍କ ପରିବାର । ସେମାନଙ୍କ ଭିତରେ ଥିଲେ ଭୁବନେଶ୍ୱରର ସାମ୍ବାଦିକ ବନ୍ଧୁ ବରେନ୍ଦ୍ର କୃଷ୍ଣ ଧଳଙ୍କ ଝିଅ ଜୋଇଁ । ଏମାନଙ୍କ ବ୍ୟତୀତ ଆହୁରି କେତେଜଣ ଯେଉଁମାନଙ୍କୁ ମୁଁ ବ୍ୟକ୍ତିଗତ ଭାବେ ଚିହ୍ନି ନଥିଲେ ବି ପରିଚୟରୁ ଜାଣିହେଲା । ଜଣେ ବୟସ୍କା ମହିଳା ଶ୍ରୀମତୀ ପ୍ରତିଭା ମହାନ୍ତି ମତେ ଭେଟି ପରିଚୟ ଦେଲେ । ସେ ହଉଚନ୍ତି ଓଡିଶାର ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ସରଳା ଦେବୀ ଓ ତାଙ୍କ ଭଉଣୀ ନିର୍ମଳା ଦେବୀଙ୍କ ସଂପର୍କୀୟା ।

ଅନ୍ୟ କେତେଜଣ ହେଲେ– ଶ୍ରୀମତୀ ସ୍ୱାତୀ ପଣ୍ଡା ଓ ତାଙ୍କ ସ୍ୱାମୀ ଇଂଜିନିୟର୍ ଶ୍ରୀ ଅପରାଜିତ ପଣ୍ଡା, ଡଃ ଅମରେଶ ମହାପାତ୍ର (ମାସାଚ୍ୟୁସେଟ୍‌ର ବିଖ୍ୟାତ ବିଶ୍ୱବିଦ୍ୟାଳୟ ଏମ୍.ଆଇ.ଟିର ପ୍ରଫେସର୍), ଶ୍ରୀମତୀ ସୁଧୀରା ମିଶ୍ର, ଡଃ କଳ୍ପନା ପାଢୀ (ପ୍ରଫେସର୍, ମ୍ୟାଥ୍‌ମ୍ୟାଟିକସ୍), ଡଃ ବୁଦ୍ଧିନାଥ ପାଢୀ, ଓ ଆହୁରି କେତେଜଣ । ଏମାନେ ସମସ୍ତେ କୁମାରପୂର୍ଣ୍ଣମୀ ଉତ୍ସବର ସାଂସ୍କୃତିକ କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ଭାବେ ଭାଗ ନେବା ଦେଖିଲି । ପିଲା ଛୁଆ ବଡ ମିଶି ପ୍ରାୟ ଶହେ ଦେଢଶହ ଲୋକ ହଲରେ ସମବେତ ହେବା ପରେ ସଭା ଆରମ୍ଭହେଲା ।

ସଭାନେତ୍ରୀ ଶ୍ରୀମତୀ ବିଜୟଲକ୍ଷ୍ମୀ ମିଶ୍ର (ସତ୍ୟବ୍ରତଙ୍କ ପତ୍ନୀ) ମୁଖ୍ୟଅତିଥି ଭାବେ ମୋର ଆନୁଷ୍ଠାନିକ ପରିଚୟ ଦେଲେ । ଏହା ପରେ ସେ ମତେ କହିଲେ, "Sir ! Today we are going to celebrate a Hindu festival called Kartik-Purnima. Please tell us who is Kartika and enlighetn us, particularly to our children gathered here, about the relevance of mythological knowledge in the age of modern science."

ମୁଁ ସେ ବିଷୟଟି କହିବାକୁ ପୂର୍ବରୁ ପ୍ରସ୍ତୁତ ହେଇ ଯାଇଥିଲି । ଜାଣିଥିଲି– ଏଠି ମୋର ପ୍ରଥମ କାମ ହେଲା ମୋ ସାମ୍ନାରେ ବସିଥିବା ଛୋଟ ଛୋଟ ପିଲାଙ୍କ ମୁଣ୍ଡରେ ପଶିଥିବା ଭୂତ ଛଡାଇବା । ସେ ଭୂତଟା ହେଲା– ଆମେରିକାରେ ଜନ୍ମିତ ଭାରତୀୟ ପିଲାଙ୍କ ମନରେ ବାସକରୁଥିବା ହୀନମନ୍ୟତା (Inferiority complex). ତେଣୁ ମୁଁ ସବା ପ୍ରଥମେ ଗୋଟିଏ ଆପ୍ତବଚନ ସେମାନଙ୍କୁ ଶୁଣାଇଲି । କହିଲି, "ଆପଣମାନେ ନିଶ୍ଚିତ ଭାବେ 'ହକଲ୍‌ବରି ଫିନ୍' ଉପନ୍ୟାସ ପଢିଥିବେ । ଏହା ଏକ ବିଶ୍ୱପ୍ରସିଦ୍ଧ ଉପନ୍ୟାସ । ଏହାର ଲେଖକ ହେଲେ ବିଖ୍ୟାତ ଆମେରିକାନ ସାହିତ୍ୟିକ "ମାର୍କ ଟ୍ୱେନ" । ମାର୍କଟ୍ୱେନ୍ ଥିଲେ ଜଣେ ଇଣ୍ଡିଆ ଲଭର୍ (ଭାରତ ପ୍ରେମୀ) । ସେ ଇଣ୍ଡିଆ ବିଷୟରେ କଣ କହିଚନ୍ତି ଶୁଣନ୍ତୁ–

– "India is the Cradle of the Human race
The birth place of human Speech
The mother of History
The grand mother of Legend
And the great grand mother of Tradition"– *(Mark Twain)*

ଏହା ପରେ ମୁଁ 'ହିଷ୍ଟ୍ରି' ଓ 'ଲିଜେଣ୍ଡ' ଶବ୍ଦ ଦୁଇଟିର ପାର୍ଥକ୍ୟ ବୁଝେଇ କହିଲି, ''ଆଜି ଆପଣମାନେ ସ୍କୁଲ କଲେଜରେ ଯୋଉ ହିଷ୍ଟ୍ରି ବା ଇତିହାସ ପଢୁଚନ୍ତି ସେଥିରେ ଲିଜେଣ୍ଡ ବା ପୁରାଣର ସ୍ଥାନ ନାହିଁ ବୋଲି କୁହାଯାଉଚି । କିନ୍ତୁ ପ୍ରକୃତରେ ଲିଜେଣ୍ଡ ହିଁ ହିଷ୍ଟ୍ରିର ଜେଜେମା, ଯାହାକୁ ମାର୍କଟ୍ୱେନ୍ କହୁଚନ୍ତି ଗ୍ରାଣ୍ଡ୍‌ମଦର୍ । ଭାରତରେ ଲିଜେଣ୍ଡକୁ କହନ୍ତି 'ପୁରାଣ' । ଆପଣମାନେ ରାମାୟଣ, ମହାଭାରତ ନାମକ ଦୁଇଟି ପ୍ରସିଦ୍ଧ ପୁରାଣର ନାମ ନିଶ୍ଚୟ ଶୁଣିଚନ୍ତି । ରାମାୟଣରେ ରାବଣ ଆଉ ମହାଭାରତରେ କଂସ– ଏ ଦୁଇଟି ଚରିତ୍ରକୁ କୁହାଯାଏ ରାକ୍ଷସ ବା ଅସୁର ଚରିତ୍ର । ଏମାନେ ଏଡେ ଶକ୍ତିଶାଳୀ ଥିଲେ ଯେ ସେମାନଙ୍କୁ ସେ ସମୟର କୌଣସି ବୀର ଜୟ କରି ପାରୁନଥିଲେ । ସେମାନଙ୍କୁ ବିନାଶ କରିବାକୁ ଦରକାର ପଡିଲା ସ୍ୱୟଂ ଭଗବାନ୍ ବିଷ୍ଣୁଙ୍କୁ ଅବତାର ଗ୍ରହଣ କରିବାକୁ । ରାମାୟଣରେ ସେ ଅବତାରଙ୍କ ନାମ ଶ୍ରୀ ରାମଚନ୍ଦ୍ର, ମହାଭାରତରେ ଶ୍ରୀକୃଷ୍ଣ ।

ଭାରତରେ ଏ ଦୁଇ ପୌରାଣିକ ସାହିତ୍ୟ ବା ମହାକାବ୍ୟ (ଏପିକ୍) ବ୍ୟତୀତ ଆହୁରି କେତେଗୁଡିଏ ପୁରାଣ ଅଛି । ସମୁଦାୟ ଅଠରଟି ପୁରାଣରେ ଭଗବାନ୍‌ଙ୍କର ବିଭିନ୍ନ ଅବତାରର ଉଲ୍ଲେଖ ଅଛି । ଶିବପୁରାଣ ହେଲା ଏଇ ଅଠରଖଣ୍ଡ ଭିତରୁ ଅନ୍ୟତମ ମୁଖ୍ୟ-ପୁରାଣ । ଏଥିରେ ବର୍ଣ୍ଣିତ ହୋଇଚି ଅତୀତର ଗୋଟିଏ ମହାପ୍ରତାପୀ ଅସୁରର କଥା । ସେ ଅସୁରର ନାଁ ହେଲା 'ତାରକା' । ସେ ଏଭଳି ପ୍ରତାପୀ ଅସୁର ଥିଲା ଯେ ତାକୁ ବ୍ରହ୍ମା ବିଷ୍ଣୁ ମହେଶ୍ୱର ମଧ୍ୟ ସାଧ୍ୟ କରିବାକୁ ଅସମର୍ଥ ହୋଇପଡିଲେ । ସେ ପ୍ରତାପୀ ଅସୁର ସ୍ୱର୍ଗ-ମର୍ତ୍ତ୍ୟ ପାତାଳ ତ୍ରିପୁର ଜୟକଲା ଆଉ ସ୍ୱର୍ଗଲୋକରୁ ଦେବତାମାନଙ୍କୁ ବିତାଡିତ କରିବା ସହିତ ପୃଥିବୀରୁ ସବୁ ସାଧୁ ସନ୍ଥ ଋଷିଙ୍କୁ ହତ୍ୟାକଲା । ତେଣୁ ତାକୁ ବଧ କରିବାକୁ ଜଣେ ସ୍ୱତନ୍ତ୍ର ଅବତାରଙ୍କୁ ଜନ୍ମ ନେବାକୁ ପଡିଲା । ତାଙ୍କରି ନାଁ ଭଗବାନ କାର୍ତ୍ତିକ । ସେ ଏକ ଲମ୍ବା କାହାଣୀ । କିନ୍ତୁ ବହୁକଷ୍ଟରେ ଶିବଙ୍କପୁତ୍ର କାର୍ତ୍ତିକ ସେଇ ପ୍ରବଳ ପ୍ରତାପୀ ତାରକାସୁରକୁ ବଧ କରିଥିଲେ ।

ତେବେ ମଜା କଥା ହେଲା– ଭଗବାନ୍ କାର୍ତ୍ତିକଙ୍କ 'ବାର୍ଥ-ଡେ' ଏଠି ମାସାଚୁସେଟ୍‌ସ୍ ଭଳି ଆମେରିକା ଦେଶର ହୃତ୍‌ପିଣ୍ଡ ଭଳି ଜାଗାର ଏକ ଖ୍ରୀଷ୍ଟିୟାନ୍ ଚର୍ଚ୍ଚରେ ଆଜି ସନ୍ଧ୍ୟାରେ ପାଳିତ ହେଉଚି ? ଭାରତରେ ଏ ଉତ୍ସବ ହିନ୍ଦୁମାନଙ୍କର ଏକ ପ୍ରଧାନ ଉତ୍ସବ । ତେବେ ଆଜିର ଆମେରିକାରେ ଏ ଉତ୍ସବର ତାତ୍ପର୍ଯ୍ୟ କିଛି କମ୍ ନୁହେଁ । କାରଣ ଆଜି ଆମେରିକା ଗୋଟିଏ ଭୟଙ୍କର ଅସୁରକୁ ନେଇ ମହାଚିନ୍ତାରେ ପଡିଯାଇଚି– ଏକଥା ଆମେ ସମସ୍ତେ

ଜାଣୁ । ସେ ଅସୁରକୁ ମାରିବା ପାଇଁ ଆମେରିକାର ପ୍ରେସିଡେଣ୍ଟ ଜର୍ଜ ବୁସ୍ ବିଲିୟନ୍ ବିଲିୟନ୍ ଡଲାର ରାଜକୋଷରୁ ଖର୍ଚ୍ଚ କରିସାରିଲେଣି । ହଜାରହଜାର ଆମେରିକାନ୍ ସୋଲଜର୍ଙ୍କ ଜୀବନ ଗଲାଣି । କିନ୍ତୁ ଅସୁରର ରୁମଟିଏ ବି ଉପୁଡା ଯାଇ ପାରି ନାହିଁ ଏ ଯାଏ । ଆପଣମାନେ କହିପାରିବେ କି ସେ ସେ ଅସୁରଟା କିଏ ?''

– ଚର୍ଚ୍ଚ ଗୃହ ପ୍ରକମ୍ପିତ ହୋଇ ଉଠିଲା– "Osama Bin Laden ! Osama Bin Ladsen."

– ଠିକ୍ ସେତିକିବେଳେ ଗୋଟିଏ ବିସ୍ମୟକର ଘଟଣା ଘଟିଲା । ଏକ ଉଜ୍ଜ୍ୱଳ ଅଲୋକ ଚର୍ଚ୍ଚର ଗୋଟିଏ ପାଖ କାନ୍ଥରେ ଜଳିଉଠିଲା । ଆଶ୍ଚର୍ଯ୍ୟହୋଇ ଦେଖିଲୁ ସମସ୍ତେ– ସେ କାନ୍ଥରେ କୁଆଁର-ପୂନେଇ ସନ୍ଧ୍ୟାର ପୂର୍ଣ୍ଣଚନ୍ଦ୍ର ସତେ ଯେମିତି ହଠାତ୍ ଉଦୟ ହୋଇଗଲା ! ତାହା ଥିଲା ପ୍ରକୃତରେ ଚର୍ଚ୍ଚ-କାନ୍ଥ ଉପରେ ଅଙ୍କାଯାଇଥିବା ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଏକ ପୂର୍ଣ୍ଣାଙ୍ଗ ଛବି । ଛବିର ମସ୍ତକ ପଛପଟେ ଅଙ୍କିତ ଏକ ବିଶାଳ ଚନ୍ଦ୍ରାକୃତି ଆଭାମଣ୍ଡଳ ବା ''ହାଲୋ'' ହଠାତ୍ ଅଲୋକିତ ହୋଇଉଠିଲା !

ମୋ ବକ୍ତବ୍ୟ ସେଇଠି ଶେଷହେଲା । ପରେ ପରେ ଉତ୍ସବର ଅନ୍ୟ କାର୍ଯ୍ୟକ୍ରମ ଚାଲିଲା । କେତେକ ସ୍ଥାନୀୟ ବକ୍ତା ଭାଷଣ ଦେଲେ । ପିଲାମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ସହିତ ଅଙ୍କିତାର ଓଡିଶୀ ନୃତ୍ୟ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା ।

## ଦେଶ ବାହୁଡା–

ଆମର ଏଥରର ଆମେରିକା ଭ୍ରମଣକାଳ ସରିଯିବାର ବେଳ ପାଖେଇ ଆସୁଥାଏ । ପାଞ୍ଚମାସ ତଳେ ମେ, ତିରିଶ ତାରିଖରେ ଆମେ ଆମେରିକାରେ ପହଞ୍ଚିବା ପରେ ପାସ୍‌ପୋର୍ଟ ଉପରେ ଦରଜ କରାଯାଇଥିବା ଛ'ମାସିଆ ଭିସା ସମୟ ସରିସରି ଆସୁଥାଏ । ନଭେମ୍ବର ୨୦ରେ ଇଣ୍ଡିଆ ଫେରିବା ପାଇଁ ପ୍ଲେନ୍ ଟିକେଟ୍ ପୂର୍ବରୁ କଟାଯାଇଥାଏ । ଆମର ଟିକେଟ୍ ଥିଲା ମୁମ୍ବେଇ– ଫ୍ରାଙ୍କ୍‌ଫର୍ଟ-ଚିକାଗୋ– ନ୍ୟାସ୍‌ଭିଲ୍ ଓ ସେଠୁ ସେଇ ବାଟରେ ଭାରତ ଫେରିବାକୁ । ସେଥିପାଇଁ ଆମକୁ ପୁଣି ଫେରିଯିବାକୁ ହେଲା ନ୍ୟାସ୍‌ଭିଲ୍‌କୁ । ତା ୧୬ ନଭେମ୍ବରରେ ଆମେ ପହଞ୍ଚିଲୁ ବଡଝିଅ ଜୋଇଁ ବୁଲବୁଲ-ପ୍ରବୀରଙ୍କ ଫ୍ରାଙ୍କ୍‌ଲିନ୍ ଘରେ । ସେଠି ମାତ୍ର ଚାରିଦିନ ରହଣି ପରେ ୨୦ ନଭେମ୍ବରର ଏକ ସୁନ୍ଦର ସୁନେଲି ଶୀତ ଅପରାହ୍ଣରେ ଭାରତ ଫେରନ୍ତି ଯାତ୍ରା ଆରମ୍ଭକଲୁ ନ୍ୟାସଭିଲ୍ ଏୟାରପୋର୍ଟରୁ । ଚିକାଗୋ ଆନ୍ତର୍ଜାତିକ ବିମାନ ବନ୍ଦରରେ ସେଦିନ ସନ୍ଧ୍ୟାରେ ଏୟାର୍ ଇଣ୍ଡିଆର ବମ୍ବେ-ଫେରନ୍ତା ପ୍ଲେନ୍ ଧରିଲୁ । ଆଠଘଣ୍ଟା ଲଗାତାର ଉଡାଣ ପରେ ପରଦିନ ଭୋର୍‌ବେଳେ ପହଞ୍ଚିଲୁ ଜର୍ମାନୀର ଫ୍ରାଙ୍କ୍‌ଫର୍ଟ ବିମାନ ବନ୍ଦରରେ । ସେଠାରେ କିଛି ଘଣ୍ଟା ବିଶ୍ରାମ ପରେ ପୁଣି ପ୍ଲେନ୍ ଧରିଲୁ ମୁମ୍ବାଇକୁ । ତା ୨୧ ନଭେମ୍ବର ବିଳମ୍ବିତ ସନ୍ଧ୍ୟାରେ ଆମ ପ୍ଲେନ୍

ଅବତରଣ କଲା ମୁମ୍ବାଇ ବିମାନ ବନ୍ଦରରେ । ରାତିକ ବମ୍ବେ ରହଣି ପରେ ପରଦିନ (ତା ୨୨ ନଭେମ୍ବର, ୨୦୦୬) ଭୁବନେଶ୍ୱରରେ ପହଞ୍ଚିଲୁ ।

ଏହିପରି ଆମର ଚତୁର୍ଥବାର ଆମେରିକା ଭ୍ରମଣ ପର୍ଯ୍ୟାୟ ସମାପ୍ତ ହେଲା । ଏହା ଥିଲା ମୋ' ଜୀବନର ଏକ ଅତ୍ୟନ୍ତ ଦୁର୍ଲଭ ଅଭିଜ୍ଞତା ଅର୍ଜନର ସମୟ । ଏଥରର ସର୍ବାଧିକ ସ୍ମରଣୀୟ ପ୍ରସଙ୍ଗ ହେଲା– କାଲଫର୍ଣିଆ ଭ୍ରମଣ । ପ୍ରଶାନ୍ତମହାସାଗରର ଭୀମକାନ୍ତ ରୂପ ଦର୍ଶନ ସହିତ ସାନ୍ତାକ୍ରୁଜ୍ ଉପକୂଳରେ ପିତୃପୁରୁଷଙ୍କୁ ଜଳ-ତର୍ପଣ ପାଇଁ ମୋର ଏକ ବହୁକାଂକ୍ଷିତ ଅଭିଳାଷ ଏଇଥରର ଭ୍ରମଣକାଳରେହିଁ ସାକାର ହୋଇପାରିଥିଲା । ଏହା ସହିତ ସାନ୍‌ଫ୍ରାନ୍‌ସିସ୍‌କୋର ବିଖ୍ୟାତ ''ଗୋଲଡେନ୍ ଗେଟ୍ ବ୍ରିଜ୍'' ଦର୍ଶନ ପାଇଁ ମୋର ବହୁକାଳର ଇଚ୍ଛା ମଧ୍ୟ ପୂରଣ ହୋଇଥିଲା । ପୁଣି, କାଲିଫର୍ଣିଆର ଆଭ୍ୟନ୍ତରୀଣ ମରୁ ଅଂଚଳ ଭ୍ରମଣ କାଳରେ ଅଦ୍ୱିତୀୟ ପ୍ରାଗ୍‌ଐତିହାସିକ ସ୍ଥାନ 'ଯଶୋମିତି ନ୍ୟାସ୍‌ନାଲ୍ ପାର୍କ' ଭ୍ରମଣ ଥିଲା ଏଥରର ଆମେରିକା ବୁଲିବା ସମୟର ଏକ ଶିକ୍ଷଣୀୟ ଅଭିଜ୍ଞତା ।

ପରେ ପରେ, ଏଥରର ଆମେରିକା ଭ୍ରମଣର ସର୍ବାଧିକ ସଫଳତା ମତେ ମିଳିଥିଲା ଆମର ମେରିଲ୍ୟାଣ୍ଡ ରହଣି ସମୟରେ । ସେଠି ଦୁଇମାସ ରହଣି ଭିତରେ ମୁଁ ସେଠାର ବହୁ ବଡବଡ ବ୍ୟାବସାୟିକ କଂପାନୀ ଏବଂ ଆମେରିକା ସରକାରଙ୍କ ବହୁ ଦାୟିତ୍ୱପୂର୍ଣ୍ଣ ପଦପଦବୀରେ ନିଯୁକ୍ତ ପ୍ରବାସୀ ଓଡିଆ ପରିବାରର ପ୍ରତ୍ୟକ୍ଷ ସଂପର୍କରେ ଆସିଥିଲି ଓ ସେମାନଙ୍କର ବହୁ ସାମାଜିକ, ସାଂସ୍କୃତିକ ଉତ୍ସବରେ ଯୋଗ ଦେବା ସହିତ ଅନେକ ଗୁରୁତ୍ୱପୂର୍ଣ୍ଣ ଆଲୋଚନାଚକ୍ରରେ ମୁଖ୍ୟସ୍ଥାନ ଅଧିକାର କରି ପ୍ରଭୂତ ଆତ୍ମ-ପ୍ରସାଦ ଲାଭକରିଚି । ସେ ଦୃଷ୍ଟିରୁ ଏଥରର ଆମେରିକା ଭ୍ରମଣ ମୋ ପାଇଁ ଥିଲା ସର୍ବାଧିକ ସ୍ମରଣୀୟ ଓ ସାର୍ଥକ ।

ସେଇ ସାର୍ଥକତାବୋଧରୁ ମନରେ ଜାତ ହୋଇଥିଲା ଅପୂର୍ବ ବିଶ୍ୱଚେତନା– ଯାହାର ପରିପ୍ରକାଶ ସଂଭବ ନିମ୍ନୋକ୍ତ ଶ୍ଳୋକରେ–

''ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ / ଆ ଯେ ଧାମାନି ଦିବ୍ୟାନି ତସ୍ଥୁଃ ।''
''ବେଦାହମେତଂ ପୁରୁଷଂ ମାହାନ୍ତ / ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ
ତମେବ ବିଦିତ୍ୱାଽତି ମୃତ୍ୟୁମେତି / ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।''
–(ଶ୍ୱେତାଶ୍ୱତର ଉପନିଷଦ୍ : ଅଧ୍ୟାୟ-୫, ମନ୍ତ୍ର-୨ ଓ ଅଧ୍ୟାୟ-୩, ମନ୍ତ୍ର-୮)

(Hear ! O children of immortality
Even those who dwell in the celestial worlds
I have realised the great effulgent Spirit
Beyond the darkness of ignorance
Knowing Him alone does one overcome
Death and become Immortal.
There is no other way.)

## ଅଧ୍ୟାୟ – ପାଞ୍ଚ

# ପଞ୍ଚମ ଆମେରିକା ଭ୍ରମଣ ଡାଏରୀ – ୨୦୦୮

ଆମେରିକା ଭ୍ରମଣଯୋଗ ପୁଣି ଥରେ ଆସିଲା ୨୦୦୮ରେ । ଏହା ହେଲା ମୋର ପଞ୍ଚମଥର ଭ୍ରମଣ ସୁଯୋଗ । ପୂର୍ବ ଚାରିଥରରେ ମୁଁ ସେ ଅଦ୍ଭୁତ ଦେଶର ଉତ୍ତର-ଦକ୍ଷିଣ-ପୂର୍ବ-ପଶ୍ଚିମ ଚାରିଦିଗରେ ଅନେକ ସ୍ଥାନ ଭ୍ରମଣ କରିଥିଲି । ଅନେକ ବିଚିତ୍ର ଜିନିଷ ଦେଖିଥିଲି । ସେ ଦେଶର ସଭ୍ୟତା ଓ ସଂସ୍କୃତିର ନିକଟତମ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲି । ସେଠାକାର ଆଦିମମାନବ ସମାଜର ପରିପ୍ରେକ୍ଷୀରେ ଆଜି ସେ ଦେଶରେ ଆଧିପତ୍ୟ ବିସ୍ତାର କରିଥିବା ସଭ୍ୟ ସୁଶିକ୍ଷିତ ପାଶ୍ଚାତ୍ୟ-ମାନବର ଅନେକ ମହୀୟାନ୍ କୀର୍ତ୍ତିସ୍ଥଳ ସ୍ୱଚକ୍ଷୁରେ ଦର୍ଶନ କରିଥିଲି । ସବୁଠୁ ବେଶୀ, ସେଠାର ବୈଚିତ୍ର୍ୟମୟ ପ୍ରକୃତି ଅନ୍ତରାଳରେ ଲୁକ୍କାୟିତ ବହୁ ବିସ୍ମୟକର ପ୍ରାକୃତିକ ଦୃଶ୍ୟର ଆଖିଦେଖା ବର୍ଣ୍ଣନା ପରିବେଷଣ କରିଚି ।

କିନ୍ତୁ ଏଥରକ ଆମେରିକା ଭ୍ରମଣ ମୋ ପାଇଁ ଥିଲା ବିଗତ ରାତିର କୌଣସି ଏକ ବିଚିତ୍ର ସ୍ୱପ୍ନ ପରି ସୁସ୍ପଷ୍ଟ ଅଥଚ ଅବର୍ଣ୍ଣନୀୟ । ସେଇ ଅବର୍ଣ୍ଣନୀୟ ଅନୁଭବ ଏବଂ ଅଭିଜ୍ଞତାର କେତେକ ଆଭାସ ଏଇ ଅଧ୍ୟାୟରେ ଲିପିବଦ୍ଧ କରୁଚି ।

### ବମ୍ବେରୁ ଆମ୍‌ଷ୍ଟରଡ୍ୟାମ୍

– ତା ୨୧ ଜୁନ୍, ୨୦୦୮ । ଭାରତୀୟ ସମୟ ରାତି ଘ.୧.୪୫ମି. ଅର୍ଥାତ୍ ୨୨ ଜୁନ୍, ବଡିଭୋର୍‌ରେ ଆମ ପ୍ଲେନ୍ ମୁମ୍ବାଇ ଛତ୍ରପତି ବିମାନବନ୍ଦର ଛାଡିଲା । ନିରୁପମା ଓ ମୁଁ ପୂର୍ବଦିନ ଭୁବନେଶ୍ୱରରୁ ଆସି ବମ୍ବେରେ ପହଞ୍ଚିଥାଉ । ଗୋଟାଏ ଦିନ ବମ୍ବେରେ ରହଣିପରେ ଆଜି ସନ୍ଧ୍ୟାରେ ଆମେରିକା ଯାତ୍ରା ଆରମ୍ଭ କଲୁ । ଆମ ପାଖରେ ଆମ ଦୁଇଜଣଙ୍କ ପାଇଁ ଗୋଟିଏ ଦୁଇପାଖିଆ ବିମାନ ଟିକେଟ୍ ଥାଏ ଛ'ମାସ ପାଇଁ । ଟିକେଟ୍ କରାଯାଇଥାଏ ଡଚ୍ ଏୟାର୍ ଲାଇନ୍‌ସ୍ କେ.ଏଲ୍.ଏମ୍ (KLM)ର ସହଯୋଗୀ ଆମେରିକାନ୍ କଂପାନୀ ନର୍ଥୱେଷ୍ଟର୍ଣ୍ଣର(NWA)ରେ– ମୁମ୍ବାଇରୁ ଆମ୍‌ଷ୍ଟର୍‌ଡ୍ୟାମ୍ ଏବଂ ସେଠୁ ଯୁକ୍ତରାଷ୍ଟ୍ର ଆମେରିକାର ଉତ୍ତରାଂଚଳ ରାଜ୍ୟ କନେକ୍ଟିକଟ୍‌ର ରାଜଧାନୀ ସହର ହାର୍ଟଫୋର୍ଡର ବ୍ରାଡ୍‌ଲେ ବିମାନବନ୍ଦର ପର୍ଯ୍ୟନ୍ତ ।

ଫ୍ଲାଇଟ୍– NW-97 ଟେକ୍‌ଅଫ୍ ନେଲା । ପ୍ଲେନ୍‌ଟା ଗୋଟାଏ ପ୍ରାୟ ଚାରିଶହ ସିଟ୍‌ବାଲା ବିଶାଳ ବୋଇଂ ଏୟାର୍ ବସ୍ । ଆକାଶମାର୍ଗରେ ନିଜ ଗତିପଥ ସ୍ଥିରକରିନେଇ ବିମାନ ସ୍ଥିତାବସ୍ଥାକୁ ଫେରିଆସିବା ପରେ ପରେ ଏୟାର୍‌ହୋଷ୍ଟେସ୍‌ମାନେ ଫୁଡ୍-ସର୍ଭିସ୍

ଆରମ୍ଭ କରିଦେଲେ । ଖିଆପିଆ କାମ ଖୁବ୍‌ଶୀଘ୍ର ସାରିଦେଇ ଯାତ୍ରୀମାନେ ଯେ ଯାହା ସିଟ୍‌ରେ କମ୍ବଳ ଘୋଡିହେଇ ଶୋଇଗଲେ । ପରେ ପରେ ପ୍ଲେନ୍ ଭିତରର ଆଲୋକ ସବୁ ଲିଭିଗଲା । ମୁହୂର୍ତ୍ତକ ଭିତରେ ପ୍ଲେନ୍ ଭିତରଟା ଏକ ପ୍ରାୟାନ୍ଧକାର ଭିତରେ ବୁଡିଗଲା । ସମସ୍ତେ ଶୋଇଗଲେ । ନିରୁପମା ଖୁବ୍ ଶୀଘ୍ର ଗଭୀର ନିଦରେ ଶୋଇଗଲେ । କିନ୍ତୁ ମୋ' ଆଖିକୁ ନିଦ ନଆସେ । ଆନ୍ତର୍ଜାତିକ ବିମାନ ଯାତ୍ରାରେ ମୋର ଚିରାଚରିତ ଅଭ୍ୟାସ ରାତି ଉଜାଗର ରହିବା । ସେଇ ଉଜାଗରର ପ୍ରଧାନ କାରଣ ହେଲା- ଭୂଗୋଳ । ଭୂଗୋଳ ମୋ କଳ୍ପନା ଶକ୍ତିକୁ ଜାଗ୍ରତ କରିଦିଏ ଏପରିଭାବେ ଯେ ଗୋଟିଏ ଭୌଗୋଳିକ ମ୍ୟାପ୍ ମୋ ଆଗରେ ଖୋଲିଦେବାମାତ୍ରେ ମୁଁ ତତ୍‌କ୍ଷଣାତ୍ ସେଇ ଜାଗ୍ରତ ଅବସ୍ଥାରେ ହିଁ ସ୍ୱପ୍ନ ଦେଖିବାକୁ ଆରମ୍ଭକରେ । ଆଉ, ପ୍ଲେନ୍‌ରେ ଗଲାବେଳେ ସେ ସ୍ୱପ୍ନକୁ ଖୋରାକ ଯୋଗାଏ ଆଜିକାଲି ସବୁ ଆନ୍ତର୍ଜାତିକ ଉଡାଣରେ ଯାତ୍ରୀମାନଙ୍କ ସିଟ୍ ସାମ୍ନାରେ ଖଂଜିଦିଆଯାଇଥିବା କଂପ୍ୟୁଟରଚାଳିତ ଜି.ପି.ଏସ୍ ସ୍କ୍ରିନ୍ ଖଣ୍ଡକ । ପ୍ଲେନ୍‌ର ଟେକ୍‌ଅଫ ଠାରୁ ଟ୯ ାଉନ୍ ପର୍ଯ୍ୟନ୍ତ ଭୂପୃଷ୍ଠର ଟିକିନିଖି ଭୌଗୋଳିକ ଛବି ସହିତ ଫ୍ଲାଇଟ୍ ସଂପର୍କିତ ଯାବତ୍ ବିବରଣୀ ସେଇ ସ୍କ୍ରିନ୍ ଉପରେ ଚଳଚ୍ଚିତ୍ରପରି ମୁହୂର୍ତ୍ତକୁ ମୁହୂର୍ତ୍ତ ଖେଳିଚାଲେ ତମାମ୍ ଯାତ୍ରାକାଳ । ସେ ଏକ ଅଲୌକିକ ଆନନ୍ଦ । ମନେହୁଏ ସ୍ୱୟଂ ଈଶ୍ୱର ପାର୍ବତୀଙ୍କ ବର ପାଇ ସେ ସମୟତକ ମିଳିଯାଇଥାଏ ମତେ ଗଗନବିହାର ନିମିତ୍ତ !

ପ୍ରତିଥର ପ୍ଲେନ୍‌ରେ ଆମେରିକା ଯାତ୍ରା ସମୟରେ ସେଇ ଜିପିଏସ୍ ସ୍କ୍ରିନ୍ ଉପରେ ଦୃଷ୍ଟି ନିବଦ୍ଧ କରି ସାରାରାତି ଉଜାଗର ରହିବା ମୋର ଅଭ୍ୟାସଗତ ହୋଇସାରିଥାଏ ସେତେବେଳକୁ । ଏଥରବି ସେ ଅଭ୍ୟାସର ବ୍ୟତିକ୍ରମ ହେବାର ନଥାଏ । ଉଡନ୍ତା ବିମାନରୁ ଭୂତଳର ଦ୍ରୁତ ପରିବର୍ତ୍ତନଶୀଳ ଭୌଗୋଳିକ ଚିତ୍ରାବଳିର ରୋମାଞ୍ଚକର ଦୃଶ୍ୟକୁ ଅଧ୍ୟୟନ କରୁ କରୁ କେତେବେଳେ ରାତି ପାହିଗଲା ।

ସେ ଭିତରେ କେତେବେଳେ ବିତିଯାଇଥାଏ ନଅଘଣ୍ଟା ସମୟ । ସ୍ୱପ୍ନ ବିଭୋର ଅବସ୍ଥାରେ ଥାଇ ଆକାଶରେ ପ୍ଲେନ୍‌ର ସ୍ଥିତିରେ ହଠାତ୍ ଦ୍ରୁତ ପରିବର୍ତ୍ତନ ଅନୁଭବ କଲି । ପଇଁତିରିଶ ହଜାର ଫୁଟ୍ ଉଚ୍ଚ ଆକାଶରୁ ପ୍ଲେନ୍‌ଟା ସତେକି ଗୋଟାଏ ଚିଲପରି ଗୋଡ୍‌ମାଡି ଖସିବାକୁ ଲାଗିଲା ତଳକୁ । ଉଡନ୍ତା ବିମାନର ସହସା ଉଚ୍ଚତା ପରିବର୍ତ୍ତନ ଅହେତୁକ ଆଶଙ୍କା ଉପୁଯାଇବା ପରି ଏକ ଦୈହିକ ଅନୁଭବ । ସେ ଅନୁଭବ ମଣିଷକୁ ଅସ୍ଥିର କରିବା ସ୍ୱାଭାବିକ । ସ୍ୱପ୍ନ ଭଙ୍ଗ ହେବା ପରେ ଜାଣିଲି ଆମ ପ୍ଲେନ୍ ପ୍ରାୟ ପହଞ୍ଚିଯାଇସାରିଲାଣି ଆମଷ୍ଟରଡ୍ୟାମ୍ ସହର ପାଖାପାଖି ଆକାଶରେ । ପ୍ଲେନ୍ ଭିତର ଆଲୋକିତ ହେଲା । ଯାତ୍ରୀମାନେ ସଜାଗ ହେଲେ ଲ୍ୟାଣ୍ଡିଂ ଟାଇମ୍ ଘୋଷଣାକୁ ଅପେକ୍ଷାକରି । ଏୟାର୍‌ହୋଷ୍ଟେସ୍‌ମାନେ ତରବର ହେଇ ବ୍ରେକ୍‌ଫାଷ୍ଟ୍ ଲଗେଇବା କାମ ଆରମ୍ଭ କରିଦେଲେ । ପରେ ପରେ ଆନାଉନ୍ସ କରାଗଲା ଲ୍ୟାଣ୍ଡିଂର ପୂର୍ବ ପ୍ରସ୍ତୁତି ପାଇଁ । ସମସ୍ତେ ନିଜନିଜର ବେଲ୍ଟ ବାନ୍ଧିନେଲେ । ଝରକା ବାଟେ

ଆମଷ୍ଟରଡ୍ୟାମ୍ ବିମାନ ବନ୍ଦରର ଦୃଶ୍ୟ ଦିଶିଲା । ବାହାରେ ସକାଳର କଅଁଳ ଖରା ପଡିଥାଏ । ଚାରିଆଡେ ସବୁଜିମାଭରା ୟୁରୋପୀୟ ଗ୍ରୀଷ୍ମଋତୁର ଜୀବନ୍ତ ଚିତ୍ର ମନୋମୁଗ୍ଧକର ଦିଶୁଥାଏ । ନିଜ ନିଜ ସିଟ୍‌ରେ ବେଲଟ୍‌ବାନ୍ଧି ଉକ୍ରଣ୍ଠିତ ଅବସ୍ଥାରେ ବସିଥାନ୍ତି ଯାତ୍ରୀମାନେ । ଏୟାରହୋଷ୍ଟେସ୍ ମାନେ ଏମର୍ଜେନ୍ସି ଏକ୍‌ଜିଟ୍ ଡୋର୍ ପାଖରେ ଜଗି ବସିଗଲେଣି ବିଧି-ପାଳନ ପୂର୍ବକ । ପ୍ଲେନ୍‌ଯାତ୍ରାର ଯୋଡିଏ ଦକ୍‌ଦକ୍ ମୁହୂର୍ତ୍ତ ହେଲା ଟେକ୍‌ଅଫ୍ ଆଉ ଲ୍ୟାଣ୍ଡିଂବେଳର "ଟଚ୍‌ଡାଉନ୍" । ସଚେତ ଯାତ୍ରୀର ସବୁଠୁ ବଡ ଡର ଏଇ ଯୋଡାକୁ । ତେଣୁ ସାଧାରଣତଃ ଏଇ ସମୟରେ ଦେଖାଯାଏ ଅଧିକାଂଶ ଯାତ୍ରୀ ଆଖି ବୁଜିଦେଇଥାନ୍ତି ଆଉ ମନେମନେ ଇଷ୍ଟ ସୁମରଣା କରୁଥାନ୍ତି ନିଶ୍ଚୟ । ଆମ ବିମାନଟି ସେଦିନ ବଡି ଭୋର୍‌ରେ ବେଶ ସୁରୁଖୁରୁରେ ଅବତରଣ କଲା ଆମଷ୍ଟରଡ୍ୟାମ୍ ବିମାନବନ୍ଦରରେ ।

## ଆମ୍‌ଷ୍ଟରଡ୍ୟାମ୍ ବିମାନବନ୍ଦରରେ ଚାରିଘଣ୍ଟା–

ସେତେବେଳେ ସ୍ଥାନୀୟ ସମୟ ଭୋର୍ ଘ.୬.୪୫ମି. (ଭାରତୀୟ ସମୟ ସକାଳ ୧୦.୪୫ମି.) । ପାଗ ଚମତ୍କାର । ଆମ୍‌ଷ୍ଟରଡ୍ୟାମ୍ ବିମାନବନ୍ଦର ଆଖପାଖର ମନୋରମ ପ୍ରାକୃତିକ ଦୃଶ୍ୟାବଳୀ ପ୍ଲେନ୍‌ର ଝରକା ଦେଇ ଅନେକ ଦୂର ପର୍ଯ୍ୟନ୍ତ ଦିଶୁଥାଏ । ଗ୍ରୀଷ୍ମକାଳର ୟୁରୋପର ସବୁଜିମାଭରା ବନ-ପର୍ବତ ଆଉ ବିସ୍ତୀର୍ଣ୍ଣ ଘାସପଡିଆର ଦୃଶ୍ୟ ସ୍ୱର୍ଗୀୟ । ସେପରି ଦୃଶ୍ୟ ଭାରତରେ ବିରଳ । ପୁଣି ହଲାଣ୍ଡର ଏଇ ସହର ଆମ୍‌ଷ୍ଟରଡ୍ୟାମ୍ ଏୟାର୍‌ପୋର୍ଟର ପରିବେଶଟି ମନେହେଲା ସ୍ୱତନ୍ତ୍ର ।

ଭୂଗୋଳରେ ପଢିଥିବା ଏଇ ଦେଶ ହଲାଣ୍ଡ ସଂପର୍କରେ ମୋର ଯାହା ଧାରଣା ଥାଏ· ତାର ସତ୍ୟାସତ୍ୟ ପରୀକ୍ଷା କରିହେଉଥାଏ ବାହାରର ଦୃଶ୍ୟରୁ । ଆମ୍‌ଷ୍ଟରଡ୍ୟାମ୍ ବିମାନବନ୍ଦର ଗୋଟାଏ ବିଶାଳ ଫାର୍ମଲ୍ୟାଣ୍ଡ ମଝିରେ ଥିଲାଭଳି ମନେହେଉଥାଏ । ଚାରିଆଡେ ଚାଷ ବିଲ । ମଝିରେ ମଝିରେ ବଡ ବଡ ଗୋପାଳନ କେନ୍ଦ୍ର ବା ର୍ୟାଞ୍ଚ୍ । ର୍ୟାଞ୍ଚ୍‌ମାନଙ୍କରେ ହଲାଣ୍ଡର ପ୍ରସିଦ୍ଧ ହଲ୍‌ଷ୍ଟିନ୍ ଜାତିର ଦୁଧିଆଳି ଗାଈ ପଲପଲ ଚରୁଥାନ୍ତି । ଅନ୍ୟ ଦିଗରେ ସଦ୍ୟ ହଳକରାଯାଇଥିବା ଚାଷ କ୍ଷେତଗୁଡିକର ମାଟିକୁ ଅନାଇ ଦେଖିଲି– ଏଠାକା ମାଟି ଓଦା ସନ୍ତସନ୍ତିଆ । ମନେପଡିଲା ହଲାଣ୍ଡର ଅନ୍ୟ ଭୌଗୋଳିକ ନାମ "ନେଦରଲ୍ୟାଣ୍ଡ"– ଅର୍ଥାତ୍ ନିମ୍ନଭୂମିର ଦେଶ । ଭୂଗୋଳରେ ପଢିଥିଲି ସମୁଦ୍ର ପତ୍ତନରୁ ଯଥେଷ୍ଟ ନିମ୍ନରେ ଥିବା ଏଦେଶର ସମଗ୍ର ଉପକୂଳ ଅଂଚଳକୁ ବାସୋପଯୋଗୀ କରାଯାଇପାରିଚି କେବଳ ମନୁଷ୍ୟ-କୃତ ଉପାୟରେ । ଉପକୂଳର ବେଳାଭୂମିକୁ ବଡବଡ ଡାଇକ୍ ବା ବନ୍ଧଦ୍ୱାରା ସମୁଦ୍ରଠାରୁ ପୃଥକ୍ କରାଯାଇ ହଲାଣ୍ଡ ଉପକୂଳର ଏଇ ବିସ୍ତୀର୍ଣ୍ଣ ଭୂସଂପତ୍ତି ସୃଷ୍ଟି କରାଯାଇପାରିଚି । ସମୁଦ୍ର ଏମାନଙ୍କର ସାମାଜିକ ଜୀବନ ତଥା ଇତିହାସ ଓ ରାଜନୀତିକୁ ବହୁମାତ୍ରାରେ ପ୍ରଭାବିତ କରିଆସିଛି । ସମୁଦ୍ର ଉପରେ ପ୍ରଭୁତ୍ୱ ଏମାନଙ୍କୁ ଏକଦା ଦେଇଥିଲା

ବିଶ୍ୱବ୍ୟାପୀ-ଉପନିବେଶ ପ୍ରସାରର ସୁଯୋଗ । ପଡୋଶୀ ରାଷ୍ଟ୍ର ଇଂଲାଣ୍ଡ, ଜର୍ମାନ୍, ନରୱେ, ସ୍ୱିଡେନ୍, ଡେନ୍‌ମାର୍କ ପରି ଡଚ୍‌ମାନେ ମଧ୍ୟ ନୌବାଣିଜ୍ୟରେ ଓସ୍ତାତ୍ । ଏମାନେ ମଧ୍ୟ ଏଇ ବାଣିଜ୍ୟ ଆଳରେ ସୁଦୂର ପ୍ରାଚ୍ୟର ଅନେକ ଦେଶରେ, ଯଥା– ଇଣ୍ଡୋନେସିଆରେ, ଉପନିବେଶ ସ୍ଥାପନକରିଥିଲେ । ଭାରତରେ ଏମାନଙ୍କୁ ଚିହ୍ନିତ କରାଯାଏ ଓଲନ୍ଦାଜ୍ ନାଁରେ । ଆମ ଓଡିଶାରେ ଏମାନଙ୍କର ଐତିହାସିକ ଉପସ୍ଥିତିର ଚିହ୍ନ ମିଳେ ବାଲେଶ୍ୱର, କେନ୍ଦ୍ରାପଡା, ଜଗତସିଂହପୁରର ଉପକୂଳ ଅଂଚଳରେ ।

ଲ୍ୟାଣ୍ଡିଂ ପରେ ପରେ ଆମ ବିମାନଟି ଗୋଟାଏ ଅସଂଭବ୍‌ଭାବେ ଲମ୍ବା ମନେହେଉଥିବା ରନ୍‌ୱେରେ ବହୁ ସମୟ ଧରି ଟ୍ୟାକ୍ସି କରିଚାଲିଥାଏ ବିମାନ ବନ୍ଦର ଦିଗରେ । ସେଇ ଭିତରେ ମୁଁ ଲକ୍ଷ୍ୟ କରୁଥାଏ ରନ୍‌ୱେ କଡେ କଡେ ଆଦିଗନ୍ତ ବ୍ୟାପି ଥିବା ସେଇ ଗାଢ-ସବୁଜ ବିଶାଳ ଘାସପଡିଆର ଦୃଶ୍ୟକୁ । ସେଇ ପଡିଆ ଭିତରେ ଆମ ରନ୍‌ୱେର ସମାନ୍ତରାଳ ଭାବେ ଆହୁରି କେତେଟା ଲମ୍ବା ରନ୍‌ୱେ ମଧ୍ୟ ଦେଖିଲି । ପ୍ରତ୍ୟେକଟା ରନ୍‌ୱେରେ ଧାଡିଧାଡି ହେଇ ଗୋଟାକ ପଛକୁ ଗୋଟାଏ କରି ଛୋଟ ବଡ ବିମାନ ଅନବରତ ଅବତରଣ କରୁଥାନ୍ତି ଓ ଉଡାଣ ନେଉଥାନ୍ତି । ରନ୍‌ୱେ ଗୋଟାକଯାକ ସ୍ଥାନେ ସ୍ଥାନେ ଧାଡିଧାଡି ହେଇ ଚଢେଇ ବସିଲାଭଳି ପ୍ଲେନ୍‌ଗୁଡିକ ନିଜ ନିଜ ଉଡାଣ ନେବା ପାଇଁ ଅପେକ୍ଷା କରିଥିବା ଦେଖିଲି । ଏଭଳି ଦୃଶ୍ୟ ମୁଁ ଦେଖିଥିଲି ପୂର୍ବରୁ ହିଥ୍‌ରୋ, ଫ୍ରାଙ୍କ୍‌ଫର୍ଟ, ନ୍ୟୁୟର୍କ, ଚିକାଗୋ ଭଳି ବଡ ବଡ ଆନ୍ତର୍ଜାତିକ ବିମାନ ବନ୍ଦରରେ । ସେ ଦୃଶ୍ୟ ଦେଖିଲା ପରେ ଜାଣିଲି ଯେ ଆମ୍‌ଷ୍ଟରଡ୍ୟାମ୍ ମଧ୍ୟ ସେଇ ଧରଣର ଏକ ପ୍ରକାଣ୍ଡ ଆନ୍ତର୍ଜାତିକ ବିମାନବନ୍ଦର ।

ଅନେକ ସମୟ ରନ୍‌ୱେରେ ଗଡି ଚାଲିବା ପରେ ଅବଶେଷରେ ଆମ ପ୍ଲେନ୍ ଲାଗିଲା ବିମାନ-ବନ୍ଦରରେ ନିର୍ଦ୍ଧାରିତ ପୋର୍ଟରେ । ଆମେ ଆମର ହ୍ୟାଣ୍ଡ୍‌ବ୍ୟାଗ୍ ଇତ୍ୟାଦି ନେଇ ଓହ୍ଲେଇ ଆସିଲୁ । ଏଠି ପ୍ଲେନ୍ ବଦଳି କରାଯିବ । ଆମକୁ ଅନ୍ୟ ଗୋଟାଏ ପ୍ଲେନ୍‌ରେ ବସିବାକୁ ହେବ ଆଉ ସେଥିପାଇଁ ଚାରିଘଣ୍ଟା ଅପେକ୍ଷା କରିବାକୁ ପଡିବ ଜାଣିଲା ପରେ ନିରୁପମା ଅସ୍ଥିର ହୋଇପଡିଲେ ।

ନିରୁପମାଙ୍କ ଆଣ୍ଠୁ ଦରଜ ଯୋଗୁ ତାଙ୍କ ପାଇଁ ପୂର୍ବରୁ ବରାଦ କରାଯାଇଥାଏ ହ୍ୱିଲ୍ ଚେୟାର୍ ସର୍ଭିସ୍ । ପ୍ଲେନ୍‌ରୁ ଓହ୍ଲାଇ ଅପେକ୍ଷାକରିବାକୁ ହେଲା ହ୍ୱିଲ୍‌ଚେୟାର୍ ଯୋଗାଡ ହେବାଯାକେ । କରିଡର୍‌ରେ ଠାଏ କିଛି ସମୟ ଅପେକ୍ଷା କଲା ପରେ ହ୍ୱିଲ୍ ଚେୟାର ନେଇ ଝିଅଟିଏ ଆସି ପହଞ୍ଚିଲା ଆମ ପାଖେ । ଆମକୁ ଭେଟିଲା କ୍ଷଣି ହସ ହସ ମୁହଁରେ ପଚାରିଲା– "Achariyas ? From India ?"– ଝିଅଟିର ବେଶ ପୋଷାକ ଆଉ ଚେହେରାରୁ ମନେହେଲା ସେ ଜଣେ ଡଚ୍ ଝିଅ । ଭଲ ଇଂଲିସ୍ କହୁଥାଏ । କଥାବର୍ତ୍ତାରେ ହସ ଆଉ ମୁକ୍ତ ହ୍ୟୁମର୍ ପ୍ରଚୁର । ତାର ବ୍ୟବହାର ଦେଖିଲାକ୍ଷଣି ଜଣାଗଲା ସେ ଜଣେ କଲେଜ

ଛାତ୍ରୀ । ଜାଣିଛି– ପଶ୍ଚିମ ଦେଶମାନଙ୍କରେ କଲେଜ ଛାତ୍ରାଛାତ୍ରୀମାନେ ଖରାଛୁଟିରେ ଘରେ ନ ବସି ଅର୍ଥ ଉପାର୍ଜନ ପାଇଁ ଦୋକାନ ବଜାର କାରଖାନା ଇତ୍ୟାଦିରେ ପାର୍ଟଟାଇମ୍ କାମକରନ୍ତି ଓ ନିଜ ଖର୍ଚ୍ଚ ସମେତ ଦୁର୍ମୂଲ୍ୟ କଲେଜ ପଢା ଖର୍ଚ୍ଚ ମଧ୍ୟ ଉଠାନ୍ତି ।

ନିରୁପମା ବସିଲେ ହ୍ୱିଲ୍-ଚେୟାର୍‌ରେ । ଆମେ ବାହାରିଲୁ ଆମ ଯାତ୍ରାପଥର ଆଗାମୀ ଉଡାଣ ପାଇଁ ନିର୍ଦ୍ଧାରିତ ବୋର୍ଡିଂଗେଟ୍ ସନ୍ଧାନରେ । ଠେଲାଗାଡି ଆଣିଥିବା ଡଚ୍ ଝିଅଟି ପୂର୍ବର ହସ ହସ ଆଖିରେ ମତେ ଅନାଇ ପଚାରିଲା ଇଂରେଜୀରେ– ''ହେଇଟି ମିଃ. ତମେ ଚାଲିପାରିବଟି ? ତମ ବୋର୍ଡିଂ ଏରିଆ ଏଠୁ ଦୁଇମାଇଲ୍ । ବସିପଡ ଏ ହ୍ୱିଲ୍ ଚେୟାର୍‌ରେ । ତମ ଦୁଇଜଣଙ୍କୁ ଏକ ଦଫାରେ ନେଇଯିବି ବୋର୍ଡିଂ ଏରିଆକୁ ।''

ତା' କଥା ମନେହେଲା ପରିହାସ ପରି । ସତେକି ମୋର ଚେହେରା ଦେଖି ଝିଅଟି ଜାଣି ପାରୁଥାଏ ମୁଁ ଜଣେ ଶାରୀରିକ ସକ୍ଷମ ମଣିଷ ହେଲେ ବି ଅଳସୁଆ ! ସେମିତି ଭାବିବାର କାରଣ ବି ଥିଲା । ଗଲାଥରମାନଙ୍କର ଆମେରିକା ଯାତ୍ରା ବେଳେ ଲକ୍ଷ୍ୟ କରିଥାଏ ଅନେକ ସୁସ୍ଥ ସବଳ ଯାତ୍ରୀ ନିଜ ସୁବିଧା ପାଇଁ ପୂର୍ବରୁ ଟିକେଟ୍ କାଟିବା ବେଳୁ ନିଜପାଇଁ ହ୍ୱିଲ୍ ଚେୟାର୍ ବରାଦ କରିଥାନ୍ତି । ସେ ଦିଗରେ ଆମ ଭାରତୀୟମାନଙ୍କର ବଦ୍‌ନାମ ଥାଏ ବହୁତ ।

ମୁଁ ସେ ଝିଅକୁ ହସିକରି ଉତ୍ତରଦେଲି, ''ଗୋଟାଏ କାମ କର– ବରଂ ତମେ ବସିପଡ । ମତେ ଖାଲି ବାଟ ଦେଖାଅ । ଆଉ ଦେଖ ମୁଁ କେମିତି ତମ ଦୁଇଜଣ ମହିଳାଙ୍କୁ ଏକାଥରେ ଉଠେଇନେବି ମୋ ଡେଣାରେ । ନାରୀମାନଙ୍କୁ ସମ୍ମାନ ଦେବା ଆମ ଭାରତୀୟ ମାନଙ୍କର ପାଞ୍ଚହଜାର ବର୍ଷର ଶିକ୍ଷା ଆଉ ସଂସ୍କୃତି । ତମେ ମହାଭାରତ ଏପିକ୍ ନାଁ ଶୁଣିଥିବ ? ସେ ଏପିକ୍‌ରେ ଅଛି– ଜଣେ ନାରୀର ସମ୍ମାନ ରକ୍ଷାପାଇଁ ଗୋଟାଏ ମହାଯୁଦ୍ଧ ହେଇଗଲା. ଯୋଉଥିରେ ଅସମ୍ମାନକାରୀ ବୀରପୁରୁଷ ଓ ତାଙ୍କ ଶହେଭାଇଙ୍କ ସମେତ ହଜାର ହଜାର ଲୋକ ବଳିପଡିଲେ– ଖାସ୍ ଜଣେ ନାରୀଙ୍କ ମର୍ଯ୍ୟଦା ରକ୍ଷା ପାଇଁ''–

ଝିଅଟି ମୁରୁକି ହସି କହିଲା, ''ସେ ତ ଆମ ଗ୍ରୀକ୍ କବି ହୋମରଙ୍କ ଇଲିୟାଡ୍‌ର କଥା– ଟ୍ରୋଜାନ୍ ୱାର୍ । ସୁନ୍ଦରୀ ଶିରୋମଣି ହେଲେନ୍‌ଙ୍କ ପାଇଁ କେତେ ବୀର ନମଲେ !''

ତତ୍‌କ୍ଷଣାତ୍ ବାହାରିଗଲା ମୁହଁରୁ ମୋର– ହୋମର୍ ତ ଖ୍ରୀଷ୍ଟଜନ୍ମର ମାତ୍ର ଆଠଶହ ବର୍ଷ ପୂର୍ବର୍ ଲୋକ ! ଆମ ମହାଭାରତ ରଚୟିତା ବ୍ୟାସଦେବ ପରା ଖ୍ରୀଷ୍ଟପୂର୍ବ ପନ୍ଦରଶହ କି ଆହୁରି ଆଗରୁ. . . !

ଝିଅଟି ହସିଦେଇ ସ୍ୱୀକୃତି ଦେଲା ମୋର୍ ଇତିହାସ ଜ୍ଞାନକୁ । ଏହାପରେ ଚାଲିଲା ଆଲୋଚନା ସଂପୂର୍ଣ୍ଣ ବୌଦ୍ଧିକ ସ୍ତରର । ବୁଝାପଡିଲା ଝିଅଟି ଗୋଟିଏ ସାଧାରଣ ବିମାନ କଂପାନୀ ପରିଚାରିକା ନୁହେଁ ବା କଲେଜରେ ନାଁକୁ ମାତ୍ର ପାଠପଢୁଥିବା ଏଣୁତେଣୁ ଛାତ୍ରୀ

ନୁହେଁ । ଖୋଳି ତାଡି ପଚାରିବୁଝିଲି ସତରେ ସେ ସ୍ଥାନୀୟ କୌଣସି ବିଶ୍ୱବିଦ୍ୟାଳୟର ପୋଷ୍ଟଗ୍ରାଜୁଏଟ୍ ଶ୍ରେଣୀର ମନସ୍ତତ୍ତ୍ୱ ବିଭାଗର ଜଣେ ଛାତ୍ରୀ । ନିରୁପମାଙ୍କୁ ହ୍ୱିଲ୍ ଚେୟାର୍‌ରେ ବସେଇ ଆମେ ଦୁହେଁ ଗପ କରିକରି ଆମଷ୍ଟରଡ୍ୟାମ୍ ବିମାନବନ୍ଦରର ଲମ୍ୱା କରିଡର୍‌ରେ ଚାଲିବା ଆରମ୍ଭ କଲୁ ।

ଆମ ସହିତ ଶହଶହ ଯାତ୍ରୀ ଚାଲିଥାନ୍ତି ଦଳଦଳ ହେଇ ଆମ ଆଗରେ ପଛରେ । ଆମ ଫ୍ଲାଇଟ୍ ପଛେପଛେ ଆହୁରି ଅନେକ ଯାତ୍ରୀବାହୀ ବିମାନ ଏଇ ଭିତରେ ନିଶ୍ଚୟ ଅବତରଣ କରିଥାନ୍ତି ସେ ବିମାନବନ୍ଦରର ବିଭିନ୍ନ ଉଡାଣ ଗୁଡିକରୁ । ସେମାନଙ୍କ ଚେହେରା କହୁଥାଏ ସେମାନେ ସମସ୍ତେ ବିଭିନ୍ନ ଦେଶର ନାଗରିକ । ବିଭିନ୍ନ ଭାଷାରେ କଥାବାର୍ତ୍ତା କାନରେ ପଡୁଥାଏ । ସେମାନେ ସମସ୍ତେ ସାମିଲ ହୋଇଥାନ୍ତି ଆମ ଦଳରେ । ବୁଝିଲୁ ଆମଷ୍ଟାରଡ୍ୟାମ୍ ଏୟାରପୋର୍ଟ ପୃଥିବୀର ସର୍ବବୃହତ୍ କାର୍ଯ୍ୟବ୍ୟସ୍ତ ବିମାନବନ୍ଦର ଭିତରେ ଅନ୍ୟତମ ।

ଅନେକ ସମୟ ଚାଲିବା ପରେ ଶେଷରେ ଗୋଟାଏ ରେସ୍ତୁରାଁ ସାମ୍ନାରେ ହ୍ୱିଲ୍ ଚେୟାର୍ ଅଟକେଇ ଝିଅଟି କହିଲା– ତମେ ସବୁ ଏଠି ଥାଅ– ମୁଁ ପୁଣି ଫେରିବି ତମମାନଙ୍କ ପ୍ଲେନ୍ ବୋର୍ଡିଂ ବେଳ ହେଲେ । ଆହୁରି ଚାରିଘଣ୍ଟା ସମୟ ଅଛି । ଆରାମରେ ଗାଧୁଆପାଧୁଆ କରିନିଅ । ଏଇ ପାଖରେ, ହେଇ ସେଠି ଟଏଲେଟ୍ ।

ନିରୁପମା ଟଏଲେଟ୍‌କୁ ଚାଲିଗଲେ । ମୁଁ ଜିନିଷପତ୍ର ଜଗି ରେସ୍ତୁରାଁ ସାମ୍ନା ଲାଉଂଜରେ ଟହଲ ମାରିଲି । ଆଖପାଖରେ ବହୁତ ଦୋକାନବଜାର । ସବୁ ଦୋକାନ ଝଲମଲ୍ କରୁଥାଏ ଆଲୋକ ସଜ୍ଜାରେ । ହରେକ ପ୍ରକାର ସାମଗ୍ରୀରେ ଭରପୂର୍ ସେ ସବୁ ଦୋକାନ । ତା' ଭିତରେ ଦେଖିଲି ଏକାଧିକ ବହିଦୋକାନ । ଥାକଗୁଡାକରେ ଡିସ୍‌ପ୍ଲେ ହେଇଥାଏ ଆକର୍ଷଣୀୟ ଭାବେ ବହୁପ୍ରକାର ବହୁ ପରିଚିତ ଅପରିଚିତ ଲେଖକଙ୍କ ନାମାଙ୍କିତ ବହି । ଗୋଟାଏ ବହିଦୋକାନର ଝରକାକୁ ଅନାଇଁ ଅଟକି ରହିଲି ଟିକେ ବେଳ । ସୋ'-ୱିଣ୍ଡୋରେ ରଖାଯାଇଥିବା ବହିଗୁଡାକର କଭର୍ ଉପରେ ଆଖି ପକାଇ ଦେଖିଲି– ଥାକ ଥାକ ବହି ଭର୍ତ୍ତିହେଇଚି । ଅଧିକାଂଶ ପାଞ୍ଚଶହ ଛ'ଶହ ପୃଷ୍ଠାର– ପୁଣି ସେଥିରୁ ଅଧିକାଂଶ ହେଲା ଉପନ୍ୟାସ ।

ଗତଥରମାନଙ୍କରେ ଆମେରିକା ଭ୍ରମଣ ସମୟରେ ବଡ ବଡ ମଲ୍‌ମାନଙ୍କରେ ବୁଲିବା ବେଳେ ମଧ୍ୟ ମୁଁ ଏଇ ଦୃଶ୍ୟ ଦେଖିଥିଲି ବାରମ୍ବାର । ମଲ୍‌ମାନଙ୍କର ବହିଦୋକାନରେ ଭର୍ତ୍ତିହେଇଥାଏ ପ୍ରଚୁର ସଂଖ୍ୟାର ବହି– ଅଧିକାଂଶ ସିରିୟସ୍ ଉପନ୍ୟାସ ବା ସିରିୟସ୍ ବିଷୟର ବହି ଯାହାକୁ କହନ୍ତି– ଅଣ-ଉପନ୍ୟାସ (Non Fiction) । ଆମେରିକାରେ ସାଧାରଣ ଲୋକଙ୍କ ବହି ପଢା ସଂସ୍କୃତି ମତେ ଆଶ୍ଚର୍ଯ୍ୟ କରିଥିଲା । କାରଣ ଆମ ଭାରତରେ ପ୍ରାୟ ଅଧିକାଂଶ ଶିକ୍ଷିତ ଲୋକ ପାଠ୍ୟ ବହି ବାହାରେ ଜ୍ଞାନ ଆହରଣ ପାଇଁ

ଅନ୍ୟ ବହି ପଢ଼ାକୁ ଭାବନ୍ତି ସମୟର ଅପଚୟ । ଏବେ ୟୁରୋପରେ ମଧ୍ୟ ଦେଖୁଚି ଅବିକଳ ସେଇ ଦୃଶ୍ୟ । ପାଶ୍ଚାତ୍ୟ ଲୋକେ କାହିଁକି ଭାରତକୁ ଦୀର୍ଘକାଳ ଧରି ପରାଧୀନ କରି ରଖିପାରିଥିଲେ ତାର କାରଣ ଖୋଜିଲେ ଜଣେ ଚିନ୍ତାଶୀଳ ଲୋକ ବେଶ୍ ବୁଝିପାରିବ ଇତିହାସର ସେଇ ଗୋପନ ସତ୍ୟଟିକୁ– ବହି ପଢ଼ା ପ୍ରତି ଯୁଗ ଯୁଗ ଧରି ସାଧାରଣ ଭାରତୀୟଙ୍କ ସହଜାତ ବିମୁଖତାହିଁ ସେମାନଙ୍କର ପରାଧୀନତାର ପ୍ରଧାନ କାରଣ ।

ସେଇ ବହିଦୋକାନ ଆଡୁ ଆଖି ଫେରେଇଆଣି ଏଥର ମୁଁ ଖୋଜିଲି ବିମାନବନ୍ଦର ଭିତରର ଅନ୍ୟାନ୍ୟ ଦର୍ଶନୀୟ ବସ୍ତୁକୁ । ଗୋଟାଏ ଜାଗାରେ ଦେଖିଲି ଏକ ବିଶାଳ ପ୍ରତିମୂର୍ତ୍ତି– ମଣିଷର ନୁହେଁ ଗାଈର ! ସେ ଗାଈଟି ପ୍ରଦର୍ଶିତ ହେଇଥାଏ ଏକ ସ୍ୱତନ୍ତ୍ର ସୁସଜ୍ଜିତ ମଣ୍ଡପରେ । ଏତେ ବଡ ଆନ୍ତର୍ଜାତିକ ବିମାନବନ୍ଦରରେ ଗୋଟାଏ ଗାଈର ପ୍ରତିମୂର୍ତ୍ତି କାହିଁକି ପ୍ରତିଷ୍ଠା କରାଯାଇଚି ତା'ର କାରଣ ଜାଣିବାକୁ ପାଖକୁ ଗଲି । ଦେଖିଲି– ଏ ସେଇ ହଲଷ୍ଟିନ୍ ଗାଈ ଯାହା ବୋଧହୁଏ ହଲାଣ୍ଡର ଜାତୀୟ ପଶୁ କି କ'ଣ । ନାଲି ହଳଦିଆ ପଟାପଟା ରଙ୍ଗବିଶିଷ୍ଟ ସେ ଗାଈର ପ୍ରତିମୂର୍ତ୍ତି ତିଆରିହେଇଥାଏ ପୋର୍‌ସିଲେନ୍‌ରେ । ଜୀବନ୍ତ ମନେହେଉଥିବା ସେ ହଲ୍‌ଷ୍ଟିନ୍ ଗାଈଟି ଥିଲା ଏକ କଳାତ୍ମକ ସୃଷ୍ଟି– ହୁଏତ କୌଣସି ଜଣେ ବିଖ୍ୟାତ ଡଚ୍ ଆର୍ଟିଷ୍ଟ୍‌ଙ୍କର । ହଲାଣ୍ଡ ଅନେକ ବିଶ୍ୱବିଖ୍ୟାତ କଳାକାରଙ୍କ ଜନ୍ମସ୍ଥାନ ବୋଲି ପଢ଼ିଥିଲି । ମନେପଡିଲେ ୟୁରୋପୀୟାନ୍ ଇମ୍ପ୍ରେସ୍‌ନିଜମ୍ ଯୁଗର ଆଦି ପୁରୁଷ ଭ୍ୟାନ୍‌ଗଗ୍ ଓ ତାଙ୍କ ସମସାମୟିକ ସେଇ ଦୁସ୍ଥ ଦରିଦ୍ର ମହାନ୍ କଳାକାରଗଣଙ୍କ ସଂଘର୍ଷମୟ ଜୀବନ ଯେଉଁଥିରୁ ଜନ୍ମ ଆଜିର ଆଧୁନିକ ୟୁରୋପ ।

ତା' ସହିତ ମନେପଡିଲା ମଧ୍ୟ ଲବ୍ଧ ଜ୍ଞାନ ଟିକକ– ହଲାଣ୍ଡ ପୃଥିବୀର ସର୍ବଶ୍ରେଷ୍ଠ ଦୁଗ୍ଧ ଉତ୍ପାଦନକାରୀ ଦେଶ । ମନେପଡିଲା ଆମ ପିଲାଦିନେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ (୧୯୩୯-୪୫) ପ୍ରଥମେ ପ୍ରଥମେ ବଜାରକୁ ଆସିଥାଏ କନ୍‌ଡେନ୍‌ସ୍‌ଡ୍ ମିଲ୍କର ଡବା ଯାହା ଉପରେ ଛପାହେଇଥାଏ ଏଇ ହଲ୍‌ଷ୍ଟିନ୍ ଗାଈର ଛବି ସହିତ ଜଣେ ଗୋପାଳୁଣୀ ଝିଅର ଛବି । ଡବା ଉପରେ ଲେଖାଯାଇଥାଏ ଟ୍ରେଡ୍‌ନେମ୍ "ମିଲ୍କମେଡ୍" । ସେ ଛବିରେ ଦେଖିଥିବା ମିଲ୍କମେଡ୍ ବା ଗୋପାଳୁଣୀର ଚେହେରା ମନେପଡିବାରୁ ହଠାତ୍ ମତେ ଲାଗିଲା ଆମ ହ୍ୱିଲ୍‌ଚେୟାର୍ ସେବାଦାତ୍ରୀ କଲେଜ ଝିଅଟି ପ୍ରକୃତରେ ସେଇ ଛବିରୁ ବାହାରିପଡିଥିବା ମିଲକ୍‌ମେଡ୍ ନୁହେଁ ତ ! ଦୁହିଁଙ୍କ ଚେହେରାର ସାମଂଜସ୍ୟ ମତେ ଆଶ୍ଚର୍ଯ୍ୟକର ମନେହେଲା । ହଲାଣ୍ଡର ମଣିଷମାନଙ୍କ ଜିନ୍‌ପୁଲ ଅନ୍ତରାଳରେ ଥିବା ଗୁଣସୂତ୍ର ଓ ତାର ପରିପ୍ରକାଶ ସେମାନଙ୍କର ଚେହେରାରେ ଖୋଜି ପାଇଗଲି ମୁଁ ତା'ରି ପରେପରେ– ଆମ୍‌ଷ୍ଟରଡ୍ୟାମ୍ ଏୟାର୍‌ପୋର୍ଟରେ କର୍ମରତ ଅଧିକାଂଶ ଲୋକଙ୍କ ଚେହେରାରେ ।

ସମୟ ଗଡିଚାଲିଲା । ଚାରିଘଣ୍ଟା କୁଆଡେ କେତେବେଳେ କଟିଗଲା । ଧଇଁସଇଁ ହେଇ ଆସି ପହଞ୍ଚିଲା ଝିଅଟି । କହିଲା– ଶୀଘ୍ର ଚାଲ । ତେଣେ ତମ ପ୍ଲେନ୍ ପାଇଁ ସିକ୍ୟୁରିଟି

ଚେକିଂର ଡାକରାପଡିଲାଣି । ଏହାପରେ ଆରମ୍ଭହେଲା ପୁଣି ଏକ ଲମ୍ବା ଧାଁଦଉଡ଼– କରିଡରରୁ କରିଡର୍ । ମନେହେଉଥାଏ ସେ ଏକ ବିମାନବନ୍ଦର ନୁହେଁ– ଇନ୍ଦ୍ରଜାଲ । ସତରେ ହ୍ୱିଲ୍‌ଚେୟାର୍‌ର ସାହାଯ୍ୟ ବିନା ଆଉ ସେ ଝିଅଟିର ଦିଗ୍‌ଦର୍ଶନ ଅଭାବରେ ଆମେ ସେଦିନ ନିଶ୍ଚୟ ବାଟ ବଣା ହେଇଥାନ୍ତୁ । ବୋଧହୁଏ ଏଇ କାରଣରୁ ଆନ୍ତର୍ଜାତିକ ବିମାନ-ଯାତ୍ରା ସମୟରେ ବୟସ୍କ ଯାତ୍ରୀମାନେ ବିମାନବନ୍ଦରରେ ହ୍ୱିଲ୍‌ଚେୟାର୍‌ର ସାହାଯ୍ୟକୁ ବହୁତ ଜରୁରୀ ମନେକରନ୍ତି । କିଛି ଧଇଁସଇଁ ଦଉଡାଧାପଡା ପରେ ଶେଷରେ ଆମେ ପହଞ୍ଚିଲୁ ନିର୍ଦ୍ଦିଷ୍ଟ ବୋର୍ଡିଂ ଗେଟ୍ ସାମ୍‌ନାରେ । ଝିଅଟି ଆମକୁ ଆମ ଆମେରିକା ଉଡାଣ ପାଇଁ ନିର୍ଦ୍ଦିଷ୍ଟ ପ୍ରସ୍ଥାନଦ୍ୱାର (ଏକ୍‌ଜିଟ୍ ଗେଟ୍) ପାଖରେ ପହଞ୍ଚେଇଦେଇ ବିଦାୟନେଲା । ବିଦାୟ ଦେଲା ବେଳେ ନିରୁପମା ତାକୁ କୁଣ୍ଢାଇପକାଇ ଛଳଛଳ ଆଖିରେ କହିଲେ– "ଝିଅ ! ଆମେ ତୋ ପ୍ରତି ସତରେ କୃତଜ୍ଞ । ତୁ ତ ଅବିକଳ ମୋ ବଡଝିଅ ବୁଲବୁଲ ଭଳି ଦିଶୁଚୁଲୋ ମା !"

– ଝିଅଟିଠାରୁ ବିଦାୟ ନେଲୁ ଆମେ– ପଶିଲୁ ସିକ୍ୟୁରିଟି ଚେକିଂ ଅଡା ଭିତରେ ।

ପରେ ପରେ ଚାଲିଲା ଦୀର୍ଘ ସମୟ ଧରି ସେଇ ବିରକ୍ତିକର ପ୍ରକ୍ରିୟା– କେବଳ ବିରକ୍ତିକର ନୁହେଁ, ଘୋର ଅପମାନଜନକ ମଧ୍ୟ । ଆନ୍ତର୍ଜାତିକ ବିମାନବନ୍ଦରରେ ଆଜିର ସିକ୍ୟୁରିଟି ଚେକିଂ ବ୍ୟବସ୍ଥା ବିଶ୍ୱବ୍ୟାପୀ ବିମାନଯାତ୍ରୀମାନଙ୍କ ପାଇଁ ଏକ ଅମାନବୀୟ ଉପଚାର ବ୍ୟତୀତ ଅନ୍ୟ କିଛି ନହୋଇପାରେ । ଆମେରିକା ଉପରେ ୯/୧୧ର ସେଇ ଜଘନ୍ୟ ଆତଙ୍କବାଦୀ ଆକ୍ରମଣ ପରେ ସମଗ୍ର ପୃଥିବୀର ମାନବସଭ୍ୟତାର କି ଅବକ୍ଷୟ ଘଟିସାରିଥାଏ ତାର ପ୍ରମାଣ ହେଲା ଏଇ ଘୃଣ୍ୟ ସନ୍ଦେହଶୀଳ ସିକ୍ୟୁରିଟି ଚେକିଂ ବ୍ୟବସ୍ଥା ଓ ତା' ପଛରେ ଲୁଚି ରହିଥିବା ଅମାନବୀୟ ମନସ୍ତତ୍ୱ ! କେବଳ ଏୟାରପୋର୍ଟମାନଙ୍କରେ ନୁହେଁ, ସିକ୍ୟୁରିଟି ଚେକିଂ ବ୍ୟବସ୍ଥା ବର୍ତ୍ତମାନ ବିଶ୍ୱବ୍ୟାପୀ ଏକ ଅପସଂସ୍କୃତିରେ ପରିଣତ ହୋଇସାରିଚି । ମଣିଷକୁ ମଣିଷ କେତେଦୂର ସନ୍ଦେହ କଲେ, ଘୃଣାକଲେ, ତାକୁ ଉଲଗ୍ନ-କରି ଦେହର ସର୍ବତ୍ର ହାତ ବୁଲେଇ ବୁଲେଇ ସର୍ଚ୍ଚ କରିବା ଦରକାରପଡେ ତାର ପ୍ରମାଣ ହେଲା ଏଇ ବ୍ୟବସ୍ଥା ଯାହାର ନାମ ସିକ୍ୟୁରିଟି ଚେକିଂ । ଏ ସନ୍ଦେହରୁ ନିସ୍ତାର ନଥାଏ କାହାରି– ଏପରିକି କୌଣସି ଦେଶର ରାଷ୍ଟ୍ରପତି ବା ପ୍ରଧାନମନ୍ତ୍ରୀଙ୍କର ନୁହେଁ ବି । ନିରୁପମାଙ୍କ ସିକ୍ୟୁରିଟି ଚେକିଂ ପୂର୍ବରୁ ତାଙ୍କୁ ଗୋଟାଏ ରୁମ୍‌କୁ ନିଆଗଲା । ତାଙ୍କ ପିନ୍ଧା ଶାଢୀ ସାୟା ତଳ ସର୍ଚ୍ଚ କରାଗଲା । ପୁଣି କୁହାଗଲା ହାତରୁ ସବୁତକ ଚୁଡି ବାହାର-କରିଦେବାକୁ । ସେ ଯେତେବେଳେ କହିଲେ ଜଣେ ହିନ୍ଦୁନାରୀଭାବେ ସେ ନିଜ ହାତ ଦୁଇଟିକୁ ଚୁଡ଼ିହୀନ କରିପାରିବେ ନାହିଁ ତାଙ୍କୁ ବହୁତ ସମୟ ଅଟକେଇ ରଖାଗଲା । ଶେଷରେ ତାଙ୍କରି ଜିଦ୍ ଅବଶ୍ୟ କାଏମ୍ ରହିଲା– କିନ୍ତୁ ବହୁ ଯୁକ୍ତିତର୍କ, ଧାର୍ମିକ ଏବଂ ଦାର୍ଶନିକ ତତ୍ତ୍ୱର ଦୁହାଇ ପରେ ।

ଶେଷରେ ଆମେ ବୋର୍ଡିଂ ପାସ୍ ପାଇଲୁ ଆଉ ପଶିଗଲୁ ଆମପାଇଁ ଉଦ୍ଦିଷ୍ଟ ଟ୍ରାନ୍ସ ଆଟ୍‌ଲାଣ୍ଟିକ୍ ଫ୍ଲାଇଟ୍– NWA 0033 ବିମାନ ଭିତରେ ।

## ହାର୍ଟଫୋର୍ଡ ବିମାନବନ୍ଦରରେ କଷ୍ଟମସ୍ ଚେକିଂ ହଟହଟା

ଏହାପରେ କ୍ରମିକ ସାତଘଣ୍ଟାର ବିମାନ ଯାତ୍ରା ଆଟ୍‌ଲାଣ୍ଟିକ୍ ମହାସାଗର ସେପାରି ଆମର ଗନ୍ତବ୍ୟସ୍ଥଳ ଯୁକ୍ତରାଷ୍ଟ୍ର ଆମେରିକାର ଉତ୍ତରାଂଚଳ ରାଜ୍ୟ କନେକ୍ଟିକଟ୍‌ର ରାଜଧାନୀ ସହର ହାର୍ଟଫୋର୍ଡ ଦିଗରେ । ସେଇଦିନ (୨୨ ଜୁନ୍) ସନ୍ଧ୍ୟା ଛ' ସୁଦ୍ଧା ପ୍ଲେନ୍ ଅବତରଣ କଲା ହାର୍ଟଫୋର୍ଡର ବ୍ରାଡ୍‌ଲେ ବିମାନ ବନ୍ଦରରେ । ଏ ବିମାନବନ୍ଦର ମୋ'ର ପୂର୍ବପରିଚିତ । ୧୯୯୩ରୁ ଆଜି ଭିତରେ ଅନ୍ତତଃ ଦଶବାର ଥର ଏ ବିମାନବନ୍ଦର ଦେଇ ଯାତ୍ରା କରିଥିବି । ଭାବିଥିଲି ଏଠି ପହଞ୍ଚିବା ପରେ ଆମକୁ ଆଉ କଷ୍ଟମସ୍ ଚେକିଂ ନେଇ ସେତେ ବେଶୀ ହଇରାଣ ହେବାକୁ ପଡିନପାରେ । କିନ୍ତୁ ମୋର ସେ ଧାରଣା ଥିଲା ସଂପୂର୍ଣ୍ଣ ଭ୍ରମାତ୍ମକ । ସେଦିନ ଆମକୁ ପୂର୍ବର ସବୁଥର ଅପେକ୍ଷା ଅଧିକ-କଠିନ କଷ୍ଟମସ୍ ଚେକିଂର ସମ୍ମୁଖୀନ ହେବାକୁ ପଡିଲା । କଷ୍ଟମ୍‌ସ୍‌ବାଲାଏ ଆମକୁ ଦେଖି କ'ଣ ସନ୍ଦେହ କଲେ କେଜାଣି ଆମର ସବୁତକ ଲଗେଜ୍‌କୁ ତନ୍ନତନ୍ନକରି ସର୍ଚ୍ଚକରାଗଲା । ସାଙ୍ଗରେ ନେଇଥିବା ସୁଟ୍‌କେଶ୍ ଚାରିଟାକୁ ଖୋଲି ଦିଆଗଲା । ଆରମ୍ଭ ହେଲା ତଦାରଖ ।

ଯାଞ୍ଚକାରୀ ହେଲେ ଜଣେ ମହିଳା ଅଫିସର୍ । ସୁଟ୍‌କେଶ୍ ଗୁଡାକୁ ଦରାଣ୍ଡି ଦରାଣ୍ଡି ଶେଷରେ ମହିଳା ଅଫିସର୍ ଆବିଷ୍କାରକଲେ ଆମର ଚାରିଟା ସୁଟ୍‌କେଶ୍ ଭିତରୁ ଦୁଇଟା ଅତ୍ୟନ୍ତ ଗର୍ହିତ ବା କଣ୍ଡାବ୍ରାଣ୍ଡ ଜିନିଷ । ପ୍ରଥମଟି ଗୋଟାଏ ଧାନମେଣ୍ଢା, ଆଉ ଦ୍ୱିତୀୟଟି ହେଲା ଗୋଟିଏ ଛୋଟ ଶିବଲିଙ୍ଗ । ଏ ଦୁଇଟି ଥିଲା କନେକ୍ଟିକଟ୍‌ରେ ରହୁଥିବା ଆମ ମଝିଆଁଝିଅ ନିବେଦିତା (ସୁଲୁ)ର ବରାଦ ତା' ଠାକୁରଘରପାଇଁ । ତା' ବରାଦ ଅନୁସାରେ ମୁଁ ଆମ ଗାଁ ବିଲରୁ ଧାନକଟା ବେଳେ କେତେଟା ଧାନକେଣ୍ଡା ସଂଗ୍ରହ କରାଇଥିଲି । ସେଥିରୁ ସୁନ୍ଦର ଧାନମେଣ୍ଢାଟିଏ ଜଣେ ଦକ୍ଷଲୋକର ହାତରେ ନିରୁପମା ବନାଇ ଥିଲେ ଓ ତାକୁ ଏକ ସ୍ୱଚ୍ଛ ପଲିଥିନ୍ ଖୋଳରେ ପ୍ୟାକିଂ କରାଇଥିଲେ ଯେପରି ସେଇଟି ଝିଅର ଠାକୁରଘର ଛାତରୁ ଟଙ୍ଗାଯାଇ ବହୁ ଦିନ ପର୍ଯ୍ୟନ୍ତ ଠାକୁରଘରର ଶ୍ରୀ ବୃଦ୍ଧି ସହିତ ଭାରତୀୟ ଘରର ସାଂସ୍କୃତିକ ଚେତନାକୁ ଆମେରିକା ମାଟିରେ ପୋତିବାର ବାଟ-ଖୋଲିଥାନ୍ତା । ଏ ଦେଶରେ ଜନ୍ମିତ ଆମର ତିନି ନାତି ଆଉ ପିଲାଦିନୁ ଆମେରିକା ଚାଲିଆସିଥିବା ଦୁଇ ନାତୁଣି କାଳେ ଭାରତକୁ ଭୁଲିଯିବେ ସେଇ ଭାବନାରେ ଆମର ଏ ଉଦ୍ୟମ । ସେଇ କାରଣରୁ ନିଜ ଘରେ ଏ ବର୍ଷ ମାର୍ଗଶିର ଗୁରୁବାର ଲକ୍ଷ୍ମୀପୂଜା ପାଳିବା ପାଇଁ ଧାନ-ମେଣ୍ଢାଟିଏ ଆମ ହାତରେ ମଗେଇଥିଲା ଝିଅ । କିନ୍ତୁ ହାୟ ! ସେଇ ଧାନମେଣ୍ଢା ପ୍ୟାକେଟ୍‌ଟିକୁ ଆଖର ଝିଅ ଘରେ ପହଞ୍ଚେଇ ପାରିଲୁ ନାହିଁ । ପ୍ୟାକେଟ୍‌ଟିକୁ ଦେଖିଲାମାତ୍ରେ

ହାର୍ଟଫୋର୍ଡ ବିମାନ ବନ୍ଦରର ମହିଳା କଷ୍ଟମସ୍ ଅଫିସର୍ ଭୂତ ଦେଖିଲା ଭଳି ବଡବଡ ଆଖିରେ ମତେ ଚାହିଁଲେ । ପରେ ପରେ ପ୍ୟାକେଟ୍‌ଟାକୁ ଜବତ କରିନେଇ ଫିଙ୍ଗିଦେଲେ ପାଖରେ ରଖାଯାଇଥିବା ଗୋଟାଏ ଟ୍ରାସ୍ କ୍ୟାନ୍ ଭିତରକୁ । ଯା'ପରେ ତାଙ୍କ ହାତରେ ପଡିଗଲା ନିରୁପମାଙ୍କ ସୁଟ୍‌କେଶ୍‌ର ଗୋଟାଏ କଣରେ ସାଇତାଯାଇଥିବା ସେଇ ଅନ୍ୟତମ ସନ୍ଦେହଜନକ ପଦାର୍ଥ– ଶିବଲିଙ୍ଗ ! ସେଇଟି ଥିଲା ମୟୂରଭଂଜର ଖିଚିଂରୁ ଅଣାଯାଇଥିବା ସବୁଜ ପଥରରୁ ନିର୍ମିତ ମାତ୍ର ଦୁଇଇଞ୍ଚର କୁନି ଶିବଲିଙ୍ଗଟିଏ । ସେଇ ଜିନିଷଟା ହାତରେ ପଡିଯିବାମାତ୍ରେ କଷ୍ଟମସ୍ ଚେକିଂ ମହିଳା ଅଫିସର୍ ପୁନର୍ବାର ହାଉଳି ଖାଇଉଠିଲେ– Oh my God ! What is this ?

ତାଙ୍କ ଚିତ୍କାର ଆଖପାଖ ତଦାରଖକାରୀ କର୍ମଚାରୀମାନଙ୍କୁ ଆମ ଆଡକୁ ସନ୍ଦେହୀ ଦୃଷ୍ଟିରେ କଟାକ୍ଷ ପାତ ପାଇଁ ପ୍ରୋତ୍ସାହିତ କଲା । ସେମାନେ ଅପେକ୍ଷାକଲେ ଉଦ୍‌ବିଗ୍ନ ଦୃଷ୍ଟିରେ ଜାଣିବାକୁ ମୁଁ କି ଧରଣର ଆତଙ୍କବାଦୀ ଜଣେ ଆଉ କି ବିପଦଜନକ ବିସ୍ଫୋରକ ସାମଗ୍ରୀ ନେଇ ମୁଁ ପ୍ରବେଶ କରିସାରିଚି ତାଙ୍କ ଦେଶ ଆମେରିକାରେ । ସେମାନଙ୍କର ଆତଙ୍କିତ ମନସ୍ତତ୍ୱକୁ ସାମାନ୍ୟ ଲଘୁ କରିବା ଲକ୍ଷ୍ୟରେ ମୁଁ କହିଲି, "Madam, there is no cause for fear. This piece of stone image is the image of our Lord Shiva. Indeed this is our Lord God Shiva, our personal God !" (ଭୟ କରିବାର କିଛି ନାହିଁ ମାଡାମ୍ ! ପଥରଖଣ୍ଡିଏ ଭଳି ମନେହେଉଥିବା ଏଇ ଆକୃତିଟି ଆମର ଆରାଧ୍ୟ ଦେବତା ଭଗବାନ୍ ଶିବଙ୍କର । ଏ ମଧ୍ୟ ଆମ ହିନ୍ଦୁଙ୍କର ଉପାସ୍ୟ ଦେବତା ।)

"What ? God ! Is this God ?" (ଏଁ ? ଭଗବାନ୍ ? ଏ ଜଣେ ଭଗବାନ୍ ?)

"Yes ! Our God !" (ହଁ ପରା ! ଏ ହେଲେ ଆମ ଭଗବାନ !)

ମୋର ଦୃଢକଣ୍ଠର ଉତ୍ତର ତାଙ୍କୁ ସତେକି ଭୟଭୀତ କଲା । ସେ ଚିତ୍କାର କରି ଅନ୍ୟ ଅଫିସର୍‌ମାନଙ୍କ ଦୃଷ୍ଟି ଆକର୍ଷଣ କଲେ । ତିନିଚାରିଜଣ ପୁରୁଷ ଅଫିସର୍ ଆମକୁ ବେଢିଗଲେ ।

ମହିଳା ଅଫିସର୍ ଜଣକ ଏ ଭିତରେ ଶିବଲିଙ୍ଗଟିକୁ ନିଜ ହାତକୁ ଉଠେଇନେଇ ସାରିଥାନ୍ତି । ସମସ୍ତଙ୍କୁ ଦେଖେଇ ବେଶ୍ ଟିକିଏ ପରିହାସ ପୂର୍ଣ୍ଣ ସ୍ୱରରେ ସେ ମତେ ପୁଣି ପଚାରିଲେ, "You say this is God ? But this is just a piece of stone as I find. Why do you say this to be God almighty ?"

(ଆପଣ କହୁଚନ୍ତି ଏ ହେଲେ ଈଶ୍ୱର ? କିନ୍ତୁ ଏ ତ ତୁଚ୍ଛ ପଥରର କାର୍ଭିଂ ହେଇଥିବା ଖଣ୍ଡେ କ'ଣ ଜିନିଷ ?)

ତାଙ୍କୁ ବୁଝାଇବା ପାଇଁ ମତେ ଫଳେଇ କହିବା ଦରକାର ଥିଲା । କହିଲି– "This piece of stone signifies God's cosmic power of creativity. Please

look at this figure a bit carefully. You will find that this is only the symbolic representation of a human male reproductive organ encircled by that of a female one, just as a woman holds her man in close embrace during the act of sacred love" ।

(ଏ ଖଣ୍ଡେ ପଥର ନୁହଁ; କିନ୍ତୁ ଏ ଏକ ପ୍ରତୀକ ପରମେଶ୍ୱରଙ୍କର ବିଶ୍ୱ-ସୃଜନୀ ଶକ୍ତିର । ଏଇ ଦେଖନ୍ତୁ ଏ ଜିନିଷଟିକୁ ଟିକେ ଧ୍ୟାନଦେଇ । ଆପଣ ଦେଖିପାରିବେ ଏଥିରେ ସୃଷ୍ଟିର ସଙ୍କେତ ରହିଚି– ଲିଙ୍ଗ ଓ ଯୋନୀର । ହେଇ– ଏଇ ଅଂଶଟି ହେଲା ଲିଙ୍ଗ ଆଉ ଏହାର ଚତୁଃର୍ପାଶ୍ୱରେ ଯେଉଁ ବୃତ୍ତ ରହିଚି ତାହା ଯୋନୀର ସଂକେତ । ସୃଜନ ପ୍ରକ୍ରିୟାରେ ନାରୀପୁରୁଷ ପରସ୍ପରକୁ ପ୍ରେମାଲିଙ୍ଗନ ବନ୍ଧନରେ ଧରିରଖିଥିବାର ଏ ସଙ୍କେତ ହିନ୍ଦୁର ପରମ ପବିତ୍ର ଆଧ୍ୟାତ୍ମିକ ସଂକେତ ।)

ମୋର ସେ ବାଖ୍ୟାଟା ମୁହଁରୁ ପୂରା ବାହାରିଯିବାପୂର୍ବରୁ କୋଠରୀରେ ଉପସ୍ଥିତ ପୁରୁଷ ଅଫିସର୍‌ଙ୍କ ପେଟଫଟା ହସରେ କଷ୍ଟମସ୍ ଚେକିଂର ଯାଞ୍ଚ କୋଠରୀଟା କମ୍ପିଗଲା । କିନ୍ତୁ ଯାଞ୍ଚକାରିଣୀ ମହିଳା ଅଫିସର୍‌ଟି ମୋ ଉତ୍ତର ଶୁଣି କ'ଣ ଭାବିଲେ କେଜାଣି ଶିବଲିଙ୍ଗଟିକୁ ନିଜ ହାତକୁ ଉଠାଇନେଲେ । ତାଙ୍କର ଲମ୍ବାଲମ୍ବା ସୁନ୍ଦର ସରୁସରୁ ଆଙ୍ଗୁଠି ଟିପରେ ଶିବଲିଙ୍ଗଟିକୁ ସ୍ପର୍ଶ କରି ପଚାରିଲେ, "Well you mean this part is the male creative organ ? Which part in this corresponds to that of the woman ?" (ଆଚ୍ଛା, ଆପଣ କହୁଚନ୍ତି ଏଇ ଅଂଶଟା ପୁରୁଷର ଜନନେନ୍ଦ୍ରିୟ ? ଏଥିରେ ନାରୀ ଅଂଶଟା ତେବେ କୋଉଠି ?)

ଏହାପରେ ମୁଁ ସେଇ ଶିବଲିଙ୍ଗଟିର ଚତୁର୍ପାଶ୍ୱକୁ ଘେରିରହିଥିବା ଶକ୍ତି ବଳୟଟିକୁ ନିର୍ଦ୍ଦେଶ କଲି । ତା' ସହିତ ଶୈବ ତତ୍ୱର ଆଧିଭୌତିକ ଏବଂ ଆଧ୍ୟାତ୍ମିକ ତତ୍ୱ ସଂପର୍କରେ ଚୁମ୍ବକରେ ବାଖ୍ୟା ଟିକିଏ ମଧ୍ୟ କଲି । କହିଲି, "ହିନ୍ଦୁଧର୍ମ ଦର୍ଶନରେ ନାରୀ ଓ ପୁରୁଷ ସର୍ବଦା ଅବିଛିନ୍ନ । ହିନ୍ଦୁମାନଙ୍କର ଉପାସ୍ୟ ଈଶ୍ୱର କେବଳ ପୁରୁଷ ନୁହନ୍ତି– ସେ ମଧ୍ୟ ନାରୀ । ଆମେ ତାଙ୍କୁ କହୁ ଅର୍ଦ୍ଧନାରୀଶ୍ୱର– "God is half male and half female. He is equally the father of the universe as well as the mother. Hinduism is founded on this basic truth" ।

ମତେ ବେଶ୍ ଜଣାଥିଲା ଅର୍ଦ୍ଧନାରୀଶ୍ୱର ପରିକଳ୍ପନା ବାଇବେଲ୍‌କୁ ମାନୁଥିବା ଧର୍ମାବଲମ୍ବୀଙ୍କ ପାଇଁ ଗୋଟିଏ ଭୟଙ୍କର ବ୍ଲାସ୍‌ଫେମି । କିନ୍ତୁ ସୌଭାଗ୍ୟକୁ ସେଇ ସମୟରେ ସମଗ୍ର ପାଶ୍ଚାତ୍ୟ ଜଗତରେ ଚହଳ ପକେଇଦେଇଥାଏ ଖଣ୍ଡେ ବହି – The Da-Vinchi Code, *by* Dan Brown ।

ସେ ଏକ ବିବଦମାନ ପୁସ୍ତକ ଯେଉଁଥିରେ ଯୀଶୁଖ୍ରୀଷ୍ଟଙ୍କ ପୁନରୁତ୍ଥାନକୁ ଅସ୍ୱୀକାର

କରାଯାଇଚି ଏବଂ କୁହାଯାଇଚି କ୍ରୁଶବିଦ୍ଧ ଯୀଶୁଙ୍କୁ ମୁମୂର୍ଷୁ ଅବସ୍ଥାରେ କ୍ରୁଶରୁ ଉଦ୍ଧାର କରାଯାଇଥିଲା ଏବଂ ଉଦ୍ଧାର କର୍ତ୍ତ୍ରୀ ଥିଲେ ଦୁଇଜଣ ନାରୀ । ଉଭୟଙ୍କ ନାମ ମେରୀ– ଜଣେହେଲେ ଯୀଶୁଙ୍କ ମା' ଏବଂ ଅନ୍ୟ ଜଣକ ହେଲେ କିଶୋର ଯୀଶୁଙ୍କ ବାଗ୍‌ଦତ୍ତା- ମେରୀ ମାଗାଡାଲେନ୍ । କ୍ରୁଶରୁ ଉଦ୍ଧାର ପାଇଥିବା ଯୀଶୁ ପରବର୍ତ୍ତୀ ସମୟରେ ମେରୀ ମ୍ୟାଗାଡେଲେନ୍‌ଙ୍କୁ ବିବାହକରିଥିଲେ ଏବଂ ସେମାନଙ୍କ ବଂଶ ଏଯାବତ୍ ପୃଥିବୀରେ ଜୀବିତ ଅଛନ୍ତି । ଏହି ମତର ସମର୍ଥକମାନେ ପ୍ରଭୁ ଯୀଶୁଙ୍କ ସହିତ ତାଙ୍କର ମାତା ମେରୀ ଏବଂ ଅର୍ଦ୍ଧାଙ୍ଗିନୀ ମେରୀଙ୍କୁ ଦେବୀ ରୂପେ ଉପାସନା କରନ୍ତି ।

ପାଶ୍ଚାତ୍ୟ ଧାର୍ମିକ ପରମ୍ପରାରେ ନାରୀକୁ ଐଶ୍ୱରୀୟ ମର୍ଯ୍ୟାଦା ପୂର୍ବକ ଦେବୀଙ୍କ ଆସ୍ଥାନରେ ରଖି ଆରାଧନା କରାଯିବାକୁ ନିଷିଦ୍ଧ କରାଯାଇଥିଲେ ମଧ୍ୟ ଡାନ୍ ବ୍ରାଉନ୍‌ଙ୍କ ପୁସ୍ତକଟି ପ୍ରକାଶ ପାଇବା ପରେ ପରେ ସେଇ ପାଶ୍ଚାତ୍ୟ ଜଗତ୍‌ରେ ହଠାତ୍ ଏକ ସଶକ୍ତ ଜନସଚେତନତା ସୃଷ୍ଟି ହୋଇସାରିଥାଏ । ସେମାନେ ଦାବୀ କରୁଥାନ୍ତି ପ୍ରଭୁ ଯୀଶୁଙ୍କ ସହିତ ମାତା ମେରୀଙ୍କୁ ମଧ୍ୟ ଧର୍ମୀୟ ଉପାସନାରେ ଉପଯୁକ୍ତ ଗୁରୁତ୍ୱ ଦିଆଯିବାକୁ ।

ମୋ ବକ୍ତବ୍ୟ ଶେଷ ହେବା ପୂର୍ବରୁ ଦେଖିଲି ନାରୀ ଅଫିସର୍ ଜଣକ ସଂପୂର୍ଣ୍ଣ ବିହ୍ୱଳିତ ଦୃଷ୍ଟିରେ ତାଙ୍କ ହାତରେ ଥିବା ଶିବଲିଙ୍ଗଟିକୁ ଅନାଇ ରହିଚନ୍ତି । ପରେ ପରେ ସେ ଶିବଲିଙ୍ଗଟିକୁ ଯଥା ସ୍ଥାନରେ ସମ୍ମାନ ସହକାରେ ରଖିଲେ ଓ କହିଲେ– ଧନ୍ୟବାଦ, ଆପଣମାନେ ଯାଇପାରନ୍ତି ।

ଆମେ କଷ୍ଟମ୍‌ସ୍‌ରୁ ବାହାରି ଆସିବା ପୂର୍ବରୁ ଦେଖିଲୁ ସେ ରୁମ୍‌ରେ ଚାଲିଚି ତଦାରଖ ଅନ୍ୟ ଦୁଇଜଣ ଯାତ୍ରୀଙ୍କ ଲଗେଜ୍– ସେମାନେ ମଧ୍ୟ ଏକ ଭାରତୀୟ ଦମ୍ପତି– ଅତ୍ୟନ୍ତ ବୃଦ୍ଧ ଓ ବୃଦ୍ଧା । ବୋଧହୁଏ ଇଂରେଜୀ କହିବୋଲି ପାରିବାର ବିଶେଷ ଅଭ୍ୟାସ ନଥାଏ ସେମାନଙ୍କର । ସେମାନଙ୍କ ଦୁର୍ଦ୍ଦଶା ଥିଲା ଆମଠୁଁ ଆହୁରି ବେଶୀ ଖରାପ । ସେମାନଙ୍କ ଲଗେଜର ତଦାରଖକାରୀ ଅଫିସର୍ ଥିଲେ ଜଣେ ଦୁର୍ଦ୍ଧର୍ଷ ଯୁବକ ଗୋରା ଅଫିସର୍ । ବୁଢାବୁଢୀଙ୍କର ଚାରିଟାଯାକ ସୁଟ୍‌କେଶ୍ ଆଁ କରି ପଡିଥାଏ ଏଣେତେଣେ । ସେ ସବୁରୁ ବିଞ୍ଚାଡିହେଇପଡିଥିବା ଜିନିଷପତ୍ର ସବୁ ବିଛେଇ ହେଇ ପଡିଥାଏ ଇତସ୍ତତଃ । ମନେହେଉଥାଏ ସେମାନେ ଏତେ କଷ୍ଟ କରି ଭାରତରୁ ଆଣିଥିବା ସାମଗ୍ରୀ ସବୁ ନିଶ୍ଚୟ ବାଜ୍ୟାପ୍ତ ହେଇସାରିଥାଏ । ସେମାନେ ନିଃସହାୟ ଭାବେ ଠିଆ ହେଇ ରହିଥାନ୍ତି ସେ ରୁମ୍‌ର ଗୋଟାଏ କଣରେ । ତାଙ୍କ ଅବସ୍ଥା ଜାଣିବାକୁ ହିନ୍ଦୀରେ ପଚାରିଲି– ଆପ୍‌କା ଏସା ହାଲତ୍ କ୍କୈସେ ହୁଆ ଜୀ ? ଯାହା ଉତ୍ତର ମିଳିଲା– ହୃଦୟ ବିଦାରକ ! ସେମାନେ ସାଙ୍ଗରେ ଆଣିଥିଲେ ନାତିନାତୁଣୀଙ୍କ ପାଇଁ କିଛି ଭାରତୀୟ ପିଠା ଓ ମିଠା । ତା' ସହିତ ଅନ୍ୟ କିଛି ଉପହାର ମଧ୍ୟ । ଯାବତୀୟ ଜିନିଷ ଜମାହେଇସାରିଥାଏ ଟେବ୍‌ଲ୍ ତଳ ଡଷ୍ଟ୍‌ବିନ୍‌ରେ ।

ଯାଞ୍ଚକାରୀ ଅଫିସର୍ ଜଣକ ଶୁଣେଇ ଶୁଣେଇ ସାଥି ମହିଳା ଅଫିସରଙ୍କୁ କହୁଥାନ୍ତି–

ଦେଖ ! ଆମର ଏ ହାର୍ଟଫୋର୍ଡ ବ୍ରାଡଲେ ଏୟାରପୋର୍ଟକୁ ମାତ୍ର ସପ୍ତାହେ ତଳେ ଆନ୍ତର୍ଜାତିକ ଏୟାରପୋର୍ଟର ସ୍ୱୀକୃତି ମିଳିଚି । ଯଦି ଆମେ ଠିକ୍ ଠିକ୍ କଷ୍ଟମ୍ସ୍ ଚେକିଂ ନକରିବା, ଦୟାମାୟା ଦେଖେଇ କଣ୍ଟ୍ରାବ୍ରାଣ୍ଡ ଜିନିଷ ଛାଡିଦେବା, ତେବେ ଅଥରିଟି ଆମକୁ ଦେଇଥିବା ଏତେବଡ ସୁଯୋଗକୁ ଆମଠୁଁ ଛଡେଇ ନନେବେ କାହିଁକି ? ବୁଝି ଖବରଦାର୍ ! ମୁଁ ତ ଭାବୁଚି ତମେ ସେ ପ୍ୟାସେଂଜରଟାର (ଆମକୁ ଦେଖେଇ) ସେଇ ଅଶ୍ଳୀଳ (ଅବ୍ସିନ୍) ଜିନିଷଟାକୁ ବାଜ୍ୟାପ୍ତ କରିନେବା ଉଚିତ୍ ହୋଇଥାନ୍ତା । ସେଇଟା ଯେ ଟେରରିଜମ୍ ପ୍ରଚାରର ଏକ ମାଧ୍ୟମ ଉପକରଣ ନହୋଇଥିବ କିଏ କହିବ ? ବରଂ ସେଭଳି ସନ୍ଦେହଜନକ ଜିନିଷ ଲଗେଜରେ ଆଣିବା ଲୋକଠାରୁ ତମେ ପେନାଲ୍‌ଟି ଆଦାୟ କରିପାରିଥାନ୍ତ– ଆମ ଏୟାର୍‌ପୋର୍ଟର କିଛି ରେଭେନ୍ୟୁ ବାହାରିଥାନ୍ତା । ସେମିତି ନକରି ଛାଡିଲ କାହିଁକି ? ବଡ ଭୁଲ୍ କରିଦେଲ ।" –ଏହା କାନରେ ପଡିଲାପରେ ଆମର ସେଠୁ ମାନେ ମାନେ ପଳେଇଯିବା ଛଡା ଅନ୍ୟ କର୍ତ୍ତବ୍ୟ ନଥିଲା ।

ଏଠାରେ କହିରଖେ ଠିକ୍ ମାସକ ପରେ ହାର୍ଟଫୋର୍ଡର ବ୍ରାଡ୍‌ଲେ ବିମାନବନ୍ଦରକୁ ମିଳିଥିବା ଆନ୍ତର୍ଜାତିକ ସ୍ୱୀକୃତି କୌଣସି କାରଣରୁ ରଦ୍ଦ କରିଦିଆଗଲା । ଫଳରେ ସେ ବର୍ଷ ଡିସେମ୍ବରରେ ଆମେ ଇଣ୍ଡିଆ ଫେରିଲାବେଳକୁ ଆମକୁ ଡେଟ୍ରିୟଟ୍ ବିମାନବନ୍ଦରକୁ ଯାଇ ସେଠାରୁ ଆନ୍ତର୍ଜାତିକ ଫ୍ଲାଇଟ୍ ନେବାକୁ ହେଲା ମୁମ୍ବାଇକୁ ।

ଜିନିଷ ପତ୍ର ଧରି ଆମେ ବିମାନବନ୍ଦର ବାହାରକୁ ଯଥାଶୀଘ୍ର ବାହାରିଆସିଲୁ । ଦେଖିଲୁ ବାହାରେ ଜୋଇଁ ମହେଶ ଆଉ ଝିଅ ସୁଲୁମା ବହୁବେଳୁ ଅପେକ୍ଷା କରୁଥାନ୍ତି ଆମକୁ । ସବୁ କଥା ଶୁଣି ସୁଲୁ ବ୍ୟସ୍ତହୋଇ କହିଲା, "ନନା ! କଷ୍ଟମ୍ସ୍ ଚେକିଂରେ ତମର କାହିଁକି ଏତେ ଡେରି ହଉଚି ଜାଣିବାକୁ ଜଣେ ବ୍ଲାକ୍ ପୋର୍ଟର୍‌କୁ ମୁଁ ଚୁପ୍ କିନା ପଚାରିଲି– ଭିତରେ କ'ଣ ସବୁ ଚାଲିଚିକି ? ସେଠି କେହି ଇଣ୍ଡିୟାନ୍ ଟୁରିଷ୍ଟଙ୍କୁ ଦେଖିଚକି ? ସେ କହିଲା, "ହଁ ହଁ– ଜଣେ ଇଣ୍ଡିୟାନ୍ ଆଉ ତାଙ୍କର ଶାଢିପିନ୍ଧା ସ୍ତ୍ରୀଙ୍କୁ ସେମାନେ ଘେରିଯାଇ ଜେରାକରୁଚନ୍ତି । ବୋଧହୁଏ କିଛି ଡ୍ରଗ୍‌ଫ୍ରଗ୍ ମିଳିଚି କି କ'ଣ ।" ତା' କଥା ଶୁଣି ମୋ ଛାତି ଥରିଗଲା । ଏ ଦେଶରେ ଡ୍ରଗ୍ ଗୋଟାଏ ଆତଙ୍କ ସୃଷ୍ଟିକାରୀ ଶବ୍ଦ । ତମେ କ'ଣ ଆଣିଚ କି ?"

ହୋ ହୋ ହେଇ ହସି କହିଲି– ଗୋଟାଏ ଧାନମେଣ୍ଟା ଆଣିଥିଲି ତୋ ଠାକୁରଘର ପାଇଁ ଯେ ତାକୁ ସେମାନେ ଟ୍ରାସ୍‌କ୍ୟାନ୍‌କୁ ଫିଙ୍ଗିଦେଲେ । ଆଉ ଗୋଟାଏ ଶିବଲିଙ୍ଗ ଆଣିବାକୁ ମହେଶ ବରାଦ କରିଥିଲେ ତ– ସେଇ ଶିବଲିଙ୍ଗଟିକୁ କଷ୍ଟମ୍ସ୍ ପାରିକରେଇବାକୁ ଏତେ ଡେରି । ଛାଡ ସେକଥା । ଶୀଘ୍ର ଚାଲ ତମ କାର୍ ପାଖକୁ । ଓହୋ ! ଭଲା ୯/୧୧ କଲେ ସେମାନେ ଯେ ଆମ ପ୍ରାଣ ଯାଉଚି ଏଣେ ସନ୍ଦେହମୋଚନ କରି କରି ଠାକୁ ଠା ଏୟାର୍‌ପୋର୍ଟ ମାନଙ୍କରେ !

ମହେଶଙ୍କ କାର୍‌ରେ ବାକ୍ସ ଚାରିଟାକୁ ତରବରରେ ବୋଝେଇକରିସାରି ଆମେ ସମସ୍ତେ ଶୀଘ୍ର ସେ ସ୍ଥାନ ଛାଡ଼ିଲୁ । ମହେଶ କାର୍ ଡ୍ରାଇଭ୍ କଲେ । ଆମେ ଛୁଟିଲୁ ଗ୍ଲାସ୍‌ଟନ୍‌ବରି ଅଭିମୁଖେ ।

## ଗ୍ଲାସ୍‌ଟନ୍‌ବରିରେ ଗ୍ରୀଷ୍ମଋତୁ

ସେଦିନ ସନ୍ଧ୍ୟା ଛ' ପାଖାପାଖି ଆମେ ଆସି ପହଞ୍ଚିଲୁ ଗ୍ଲାସ୍‌ଟନ୍‌ବରି ସହର ଉପକଣ୍ଠରେ । ଏ ସହରଟା ମୋର ପୂର୍ବପରିଚିତ । ଆମ କାର୍ ମୁଖ୍ୟରାସ୍ତାରୁ ଯେମିତି ବାଁକୁ ବଙ୍କେଇଲା "ହାଇ ଉଡ୍‌ସ୍" ରାସ୍ତାକୁ– ମୁଁ ଖୁସିରେ ପାଟିକରିଉଠିଲି, "ଆଚ୍ଛା ! ସୁଲୁମା ! ଏ ରାସ୍ତାର cul de sac ପାଖ ସେ ଗାଢ ପର୍‌ପ୍ଲ୍ ଜାପାନିଜ୍ ମ୍ୟାପ୍‌ଲ୍ ଗଛଟା ଅଛିଟି ? ଗଲା ଥର ୨୦୦୬ରେ ସେ ଯୋଉ ଅବସ୍ଥା ? ମୁଁ ମୋ ନୂଆ ଡିଜିଟାଲ୍ କ୍ୟାମେରାରେ ସେ ଗଛର ଗୋଟାଏ ଫଟୋ ନେଲା ପରେ କେମିତି ଅବସ୍ଥା ହେଲା ମନେପଡୁଚି ?"

ସୁଲୁମା ହସି ହସି ଲୋଟିପଡିଲା । ଘଟଣାଟା ଥିଲା କିନ୍ତୁ ବଡ ଗଂଭୀର । ସେଦିନ ଉପରଓଳି ଆମେ– ସୁଲୁ, ନିରୁପମା ଆଉ ମୁଁ– ସବୁ ଦିନ ପରି ସେଇ ରାସ୍ତାରେ ବୁଲି ବାହାରିଥାଉ । ଅଧବାଟରେ ଗୋଟାଏ ଲୋକର ଘର ସାମନା ବଗିଚାରେ ଗୋଟାଏ ଚମତ୍କାର ଦୃଶ୍ୟ ଦେଖି ମୋ ଆଖି ଲାଖିଗଲା । ବଗିଚା ମଝିରେ ଠିଆହେଇଥାଏ ଗୋଟାଏ ବିରାଟ ଜାପାନିଜ୍ ମ୍ୟାପ୍‌ଲ୍ ଗଛ । ତାର ଅଙ୍ଗ ପ୍ରତ୍ୟଙ୍ଗ ଚାରିଆଡ ଦିଶୁଥାଏ ରକ୍ତପରି ଲାଲ୍ ! ଗ୍ରୀଷ୍ମଋତୁରେ ଏ ଦେଶର ଉଦ୍ଭିଦ ଜଗତର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ । ଘାସ ବୁଦାଠୁ ଆରମ୍ଭ-କରି ମହୀରୁହ ପର୍ଯ୍ୟନ୍ତ ସବୁଠି ଦେଖିବାକୁ ମିଳେ ଏକ ବୈଦୂର୍ଯ୍ୟମୟ ସବୁଜ ଶ୍ୟାମଳିମା ଭରା ଦୃଶ୍ୟ ଯାହା ଆମ ଭାରତରେ ବିରଳ । କିନ୍ତୁ ସେ ଜାପାନିଜ୍ ମ୍ୟାପ୍‌ଲ୍ ବୃକ୍ଷଟିର ରଙ୍ଗ ଥିଲା ସଂପୂର୍ଣ୍ଣ ଭିନ୍ନ । ଗୋଟାଏ ସଂପୂର୍ଣ୍ଣ ଲାଲ୍‌ରଙ୍ଗର ବିଶାଳ ବୃକ୍ଷ ରାସ୍ତାକଡରେ ଦେଖି ମୁଁ ଲୋଭ ସଂବରଣ କରିପାରିଲି ନାହିଁ । ମୋ ପାଖରେ ଥିବା ଗୋଟିଏ କୁନି କୋଡାକ୍ ଡିଜିଟାଲ୍ କ୍ୟାମେରା ପକେଟ୍‌ରୁ ବାହାରକରି ଗଛଟାର କେତେଟା ଫଟୋ ଉଠାଇବା ପାଇଁ ଟିକେ ଅଟକିଗଲି । ସେତିକିବେଳେ ଦେଖିଲି ସେ ଘର ସାମନା ବଗିଚାରେ କେତୋଟି ସାନସାନ ପିଲା ଖେଳୁଥିଲେ । ଆମେ କେତେକ ଭାରତୀୟ ଲୋକ ତାଙ୍କ ଘର ଆଗରେ କାହିଁକି ଠିଆହେଇଚୁ ଆଉ ମୁଁ ଫଟୋ ଉଠେଉଚି ଦେଖି ସେ ପିଲାମାନଙ୍କ ଭିତରୁ ଜଣେ ପଟ୍‌କିନା ଦଳ ଭିତରୁ ବାହାରି ଦଉଡି ପଳେଇଲା ତାଙ୍କ ଘର ଭିତରକୁ । ପରେପରେ ଆମେ ସେଠୁ ଛାଡି ଆମ ଗନ୍ତବ୍ୟପଥରେ ଚାଲିବା ଆରମ୍ଭ କଲୁ । କିଛି ବାଟ ନଯାଉଣୁ ଜଣାଗଲା ଜଣେ ଆମେରିକାନ୍ ଭଦ୍ରଲୋକ ଆମକୁ ଅନୁସରଣ କରୁଚନ୍ତି ! ଆମେ ଅଟକିଗଲୁ । ସେ ଭଦ୍ରଲୋକ ଆମ ପଛରୁ ଆସି ଆମ ବାଟ ଓଗାଳି ଠିଆହେଇପଡିଲେ । ସନ୍ଦେହ ଚକ୍ଷୁରେ ଚାହିଁ ପଚାରିଲେ,– "any one of you took photographs of

my house ?" (କିଏ ଫଟୋ ଉଠେଇଥିଲା ମୋ' ଘରର) । ମୁଁ ସତରେ ଡରିଗଲି । ଡରିଡରି ମୁଁ ତାକୁ ମୋ ପରିଚୟ ଦେଲି ଯେ ମୁଁ ଜଣେ ବିଦେଶୀ ଭାରତୀୟ ନାଗରିକ । ଆପଣଙ୍କ ବଗିଚାରେ ଗୋଟିଏ ଅତି ସୁନ୍ଦର ଜାପାନିଜ୍ ପର୍‌ପଲ୍ ରଙ୍ଗର ମ୍ୟାପ୍ଲ ଗଛ ଦେଖି ମୁଗ୍ଧହେଲି । ଆମର ଗ୍ରୀଷ୍ମମଣ୍ଡଳୀୟ ଦେଶରେ ବହୁ ବିଚିତ୍ର ଜାତିର ବୃକ୍ଷ ସଂପଦ ଅଛି, କିନ୍ତୁ ଏଭଳି ରଙ୍ଗିନ୍‌ସିନ୍ଦୂର ଗଛ ଦେଖିନଥିଲି । ଏ ଦେଶର ସ୍ମୃତି ସାଇତିରଖିବାପାଇଁ ଆପଣଙ୍କ ବଗିଚାର ସେଇ ଜାପାନିଜ୍ ମ୍ୟାପ୍ଲ ଗଛଟିର କେତେଟା ଫଟୋ ଉଠାଇଚି । ଆପଣ କହିଲେ ସେ ଫଟୋଗୁଡ଼ିକୁ ଆପଣଙ୍କ ସାମ୍‌ନାରେ ନଷ୍ଟ (ଡିଲିଟ୍) କରିଦେବି ।

ମୋ କଥା ଶୁଣି ଭଦ୍ରଲୋକ ନରମିଯାଇ କହିଲେ– "ଠିକ୍ ଅଛି– ଫଟୋଗୁଡ଼ିକ ରଖନ୍ତୁ । ତେବେ ଜାଣିରଖନ୍ତୁ ବିନାନୁମତିରେ ଏ ଦେଶରେ କୌଣସି ଲୋକର ବା ତାର ଘରଦ୍ୱାର ସଂପତ୍ତିବାଡ଼ିର ଫଟୋ ଉଠାଇବା ନିଷେଧ । ଏ ଦେଶରେ ବ୍ୟକ୍ତିବିଶେଷଙ୍କ ପ୍ରାଇଭେସି ଉପରେ ହସ୍ତକ୍ଷେପ ମାରାତ୍ମକ ଅପରାଧ !"

ସେଇ କଥା ମନେପକେଇ ସୁଲୁ ହସିଲା । କହିଲା, "ସେ ଲୋକଟା ସେତେବେଳେ ଆମକୁ ଜାଣିନଥିଲା ଆମେ ତା' ପଡ଼ୋଶୀ ବୋଲି । କାଲି ଆମେ ଯିବା ସେ ରାସ୍ତାରେ । ହଁ ନନା ! ସେ ଜାପାନିଜ୍ ଲାଲ୍ ମ୍ୟାପ୍ଲ ଗଛଟା ସେଇଠି ସେମିତି ଅଛି । ମୁଁ ତ ସେ ଗଛଟାକୁ ଗଲାକାଲି ଦେଖିଚି. . ."

କହୁକହୁ ଆମ କାର୍ ବୁଲିଲା ବାଁକୁ । ମହେଶ କହିଲେ, ହେଇ ଆସିଗଲା ଆମ ଘର ରାସ୍ତା– ଆସ୍‌ପେନ୍ ଡ୍ରାଇଭ୍ ! ଏ ରାସ୍ତା ମୋର ପୂର୍ବ ପରିଚିତ ରାସ୍ତା । ଗଲା ତିନିଥରର ଆମେରିକା ଭ୍ରମଣରେ ଆସି ମୁଁ ଆଉ ନିରୁପମା ଆମର ଏଇ ଝିଅ ଜୋଇଁଙ୍କ ଘରେ ମାସମାସ ଧରି ରହିବା ଭିତରେ ଏଇ ରାସ୍ତାରେ ଆମେ ପ୍ରତି ଦିନ ସାନ୍ଧ୍ୟ ଭ୍ରମଣରେ ବୁଲିବାକୁ ଯାଉ । ରାସ୍ତାଟା ବେଶୀ ଲମ୍ୱା ନୁହେଁ– ପ୍ରାୟ ଏକ କିଲୋମିଟର ଲମ୍ୱା ଏଇ ରାସ୍ତାର ଦୁଇ-କଡେ ଅନେକଗୁଡ଼ିଏ ଆଧୁନିକ ଷ୍ଟାଇଲ୍‌ର ବଡବଡ ଘର ରହିଚି । ସେ ଭିତରୁ କେତେକ ଘରର ମାଲିକ ପ୍ରବାସୀ ଭାରତୀୟ । ସେମାନଙ୍କ ଭିତରୁ କେତେକଙ୍କ ସହିତ ମୋର ଚିହ୍ନା-ପରିଚୟ ହୋଇଥାଏ । ସେମାନେ ଏ କଲୋନୀର ପ୍ରଭାବବନ୍ତ ଧନିକ ଶ୍ରେଣୀର ଲୋକ ଭାବେ ପରିଚିତ । ସେମାନଙ୍କ ଭିତରେ ଜଣେ ଥିଲେ ରାଜସ୍ଥାନର ଅଧିବାସୀ । ତାଙ୍କ ସାଙ୍ଗିଆ– ମଦନ । ମଦନ ଜଣେ ଇଂଜିନିୟର୍ । ବହୁ ବର୍ଷ ତଳେ ଆମେରିକା ଆସିଥିଲେ ଚାକିରି କରିବାକୁ– ବର୍ତ୍ତମାନ ସେ ଜଣେ ଧନ କୁବେର, ବଡ ବ୍ୟବସାୟୀ । ତାଙ୍କ ପରିବାର ସୁଲୁ ମହେଶଙ୍କ ବେଶ୍ ଘନିଷ୍ଠ । ତାଙ୍କ ଘର ବାଟ ଦେଇ କାର୍ ପାସ୍ କଲାବେଳେ ସୁଲୁ କହିଲା– ମମି ! ଆଜି ମଦନଙ୍କ ସ୍ତ୍ରୀ ପଚାରୁଥିଲେ ତୁମେ ସବୁ କେତେବେଳେ ଆସିବ ?

କହୁକହୁ ଦେଖିଲୁ ମଦନଙ୍କ ଘର ସାମନା ଫୁଟପାଥରେ ଦୁଇ ତିନିଜଣ ଶାଢ଼ିସାଲୁଆର ପିନ୍ଧା ଭାରତୀୟ ଭଦ୍ରମହିଳା ସାନ୍ଧ୍ୟଭ୍ରମଣରେ ବାହାରିଚନ୍ତି । ସେମାନଙ୍କ ଭିତରେ ଥିଲେ

ଶ୍ରୀମତୀ ମଦନ । ମହେଶ ଫୁଟ୍‌ପାଥ୍ ଧାରକୁ ନେଇ କାର୍ ଅଟକେଇଲେ । ସୁଲୁ ବଡପାଟିରେ ଶ୍ରୀମତୀ ମଦନ ଓ ତାଙ୍କ ବାନ୍ଧବୀମାନଙ୍କୁ ଶୁଭସଂବାଦଟି ଜଣେଇଦେଲା, "ହେଇଟି ! ଆସିଗଲେ ସେମାନେ– ଖୋଜୁଥିଲ ପରା ?"

ମହିଳାମାନେ ଆମ ଗାଡିକୁ ଘେରିଯାଇ ସଂଖୋଳିଲେ ଆମକୁ । ପରେପରେ ନିରୁପମା ଗାଡିରୁ ଓହ୍ଲେଇପଡିଲେ । ତାଙ୍କ ପଛେପଛେ ସୁଲୁ ଓ ମୁଁ କାର୍‌ରୁ ବାହାରିପଡିଲୁ । କିଛି ସମୟ ପାଇଁ ଚାଲିଲା ହସଖୁସି ଗପସପ ବନ୍ଧୁମିଳନ ପର୍ବ ।

ଏହି ସମୟରେ ରାସ୍ତା ଆରପାଖ ଘର ଲନ୍‌ରେ ଚାଲୁଥିବା ଗୋଟାଏ ଘାସକଟା ଯନ୍ତ୍ରର ଘଁଘଁ ଶବ୍ଦ ଶୁଣାଗଲା । ସୁଲୁ ସେ ଘର ଆଡକୁ ଚାହିଁ ମତେ କହିଲା– ନନା ! ସେ ଘରଟା କାହାର ଜାଣ ? ତମର ଜଣେ ପୁରୁଣା ଛାତ୍ରୀର । ସେ ଏଠାର ଗୋଟାଏ ବଡ ଆନ୍ତର୍ଜାତିକ କଂପାନୀର ସାଂଇଟିଷ୍ଟ୍ । ମତେ ଅନେକ ସମୟରେ ଦେଖିଲେ ପଚାରେ ସେ ତମ କଥା ।

– "କିଏ ସେ ? କ'ଣ ନାଁ ? କେମିତି ଚେହେରାର ?"– ଜାଣିବାକୁ ଚାହିଁଲି ।

କିନ୍ତୁ ସୁଲୁର ଉତ୍ତରରୁ ମୁଁ କିଛି ଠଉର କରିପାରିଲିନାହିଁ ।

ଗ୍ଲାସ୍‌ଟନ୍‌ବରିରେ ବସବାସ କରୁଥିବା ଓଡିଆଙ୍କ ସଂଖ୍ୟା ବହୁତ କମ୍ ବୋଲି ଜାଣିଥିଲି । କିନ୍ତୁ, ସୁଲୁ କହିଲା, "ଜାଣିଚ ନନା ! ଏଇ ବର୍ଷ ଦିଇଟା ଭିତରେ ଏ ସହରରେ ଅନେକ ପ୍ରବାସୀ ଓଡିଆପରିବାର ଆସି ରହିଲେଣି– ଅଧିକାଂଶ ଆଇ.ଟି.ବାଲା । ଏଠି ଓଡିଆଙ୍କ ସଂଖ୍ୟା ଖୁବ୍ ବେଶୀ ନହେଲେ ବି ଗୋଟିଏ ଜଗନ୍ନାଥ ମନ୍ଦିର ଖୁବ୍ ଶୀଘ୍ର ତିଆରି ହବାକୁ ଯାଉଚି ଆମର ଏଇ ଗ୍ଲାସ୍‌ଟନ୍‌ବରିରେ ।"

ଶ୍ରୀମତୀ ମଦନ ଓ ତାଙ୍କ ସାଥୀମାନଙ୍କଠାରୁ ବିଦାୟନେଇ ଆମେ ଘରମୁହାଁ ହେଲୁ । ଜୁନ୍ ମାସରେ ସନ୍ଧ୍ୟାଟା ବେଶ୍ ମନୋରମ । ଆକାଶରୁ ସୂର୍ଯ୍ୟାଲୋକ ପୂରା ଲିଭିଯାଇନଥାଏ । ଖରାଦିନିଆ ଗୋଧୂଳି ଆଲୋକ ଏଠି ବହୁ ଡେରି ରାତିଯାକେ ରହେ । ମହେଶଙ୍କୁ ଗାଡିନେଇ ଆଗରେ ଚାଲିଯିବାକୁ କହି ଆମେ ତିନିହେଁ ଆସ୍‌ପେନ୍ ଡ୍ରାଇଭ୍‌ର ପ୍ରଶସ୍ତ ରାସ୍ତାକଡ ସିମେଣ୍ଟ ଫୁଟ୍‌ପାଥ୍‌ରେ ଚାଲିବାକୁ ପସନ୍ଦ କଲୁ । ନିର୍ଜନ ରାସ୍ତାକଡର ନଭଶ୍ଚୁମ୍ବୀ ଆସ୍‌ପେନ୍ ଓ ପାଇନ୍‌ଗଛର ସିଲ୍‌ହୋଟ୍ ଏକ ଚିତ୍ରପଟ ପରି ସନ୍ଧ୍ୟାଟିକୁ ଆହ୍ଲାଦମୟ କରୁଥାଏ ।

ହାତଘଡିକୁ ଚାହିଁ ଦେଖିଲି ସନ୍ଧ୍ୟା ସାଢେ ସାତ । ମନେପଡିଲା– ଚବିଶଘଣ୍ଟା ତଳର ସେ ଅନୁଭୂତି । ଆମେ ଥିଲୁ ପୃଥିବୀର ଠିକ୍ ବିପରୀତ ପାର୍ଶ୍ୱରେ, ଭାରତର ଏକ ଜନାକୀର୍ଣ୍ଣ ମହାନଗରୀ ବମ୍ବେର ରାଜରାସ୍ତାରେ । ଗମ୍‌ଗମ୍ ଝାଳ ଓ ଗରମରେ ସନ୍ତୁଳିତ ଅବସ୍ଥାରେ ଗୋଟିଏ ପୁରୁଣା ଧଡଡା ଟ୍ୟାକ୍ସିରେ ବସି ଆମେ ଆତଙ୍କିତ ଅବସ୍ଥାରେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଉ– ହେ ଈଶ୍ୱର, ରାସ୍ତାରେ ଭିଡ ନଥାଉ । ଆମ ଟ୍ୟାକ୍ସିଟା କେମିତିହେଲେ ସୁରୁଖୁରୁରେ ଛତ୍ରପତି ଶିବାଜୀ ଏୟାରପୋର୍ଟରେ ପହଞ୍ଚିଯାଉ । ଆଉ, ଚବିଶ ଘଣ୍ଟା ପରେ ବର୍ତ୍ତମାନ ଆମେ ଅଛୁ କୋଉଠି– ଦଶହଜାର ମାଇଲ ଦୂରରେ, ଗ୍ଲୋବ୍‌ର ଠିକ୍ ଆରପଟେ

ରହିଗଲାଣି ଜନାକୀର୍ଣ୍ଣ ବମ୍ବେ ସହର ।

କିଛି ବାଟ ଚାଲିବା ପରେ ପହଞ୍ଚିଲୁ ରାସ୍ତାର ଶେଷ ମୁଣ୍ଡ ଗୋଲେଇ ଚକରରେ ଯାହାକୁ ଏଠି କହନ୍ତି କୁଲ୍ ଡି ସ୍ୟାକ୍ (Cull de Sac) । ଏଇ ଚକର୍ ଉପରେ ସୁଲୁ-ମହେଶଙ୍କ ୧୦୫ ନମ୍ବର ଘରଟି ଦିଶୁଥାଏ ଗୋଟାଏ ଛବି ପରି ସୁନ୍ଦର । ଘର ସାମ୍ନା ସଜକଟା ଘାସପଡିଆ ଆଉ ବଗିଚା ଭିତରେ ଫୁଟିଥିବା ବହୁ ପ୍ରକାର ଖରାଦିନିଆ ଲିଲି ଆଉ ରଙ୍ଗବେରଙ୍ଗ ସିଜନାଲ୍ ଫୁଲଗଛର ଶୋଭା ଲାଗୁଥାଏ ଖୁବ୍ ମନଲୋଭା ।

ଏଇ ଘରେ ଆମେ ଏ ବର୍ଷର ଗ୍ରୀଷ୍ମଋତୁଟି କଟେଇଲୁ– ଜୁନ୍ ୨୨ରୁ ଅଗଷ୍ଟ ୪– ଅନ୍ତତଃ ଦେଢ଼ଟି ମାସ । ସେଇ ଦେଢମାସ ଭିତରେ ଆମକୁ କେତୋଟି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଇବାକୁ ଥାଏ । ସେ ଭିତରେ ସବୁଠୁ ବଡ ଦାୟିତ୍ୱଟି ଥିଲା– ଏବର୍ଷ ଜୁଲାଇ ୧୩ରେ ମିନିସୋଟାର ମିନିଆପଲିସ୍‌ରେ ହେବାକୁ ଥିବା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା । ସେ ଉତ୍ସବରେ ମୁଖ୍ୟ ଅତିଥି ହେବାକୁ ନିମନ୍ତ୍ରିତ ହୋଇଥିଲି କିଛିଦିନ ଆଗରୁ । ନିମନ୍ତ୍ରକ ଥିଲେ ସେଠାର ଜଣେ ବିଖ୍ୟାତ ପ୍ରବାସୀ ଓଡିଆ ଶିଳ୍ପପତି ଡକ୍ଟର୍ ସିତିକଣ୍ଠ ଦାଶ । ତାଙ୍କ ବିଷୟରେ ଯଥା ସମୟରେ କହିବି ।

କିନ୍ତୁ ମିନିସୋଟା, ମିନିଆପଲିସ୍ କୋଉଠି ? ଆମେରିକାର କୋଉ ଅଂଚଳରେ ? ସେଦିନ ସୁଲୁମା ଘରେ ତାଙ୍କ କମ୍ପ୍ୟୁଟର ଖୋଲିଲି । ଇଣ୍ଟରନେଟ୍ ଦେଖିଲି ମିନିସୋଟା ଆମେରିକାର ଉତ୍ତରାଂଚଳର ମଧ୍ୟ-ପଶ୍ଚିମାଂଚଳର ଏକ ଅତି ସମୃଦ୍ଧ ରାଜ୍ୟ । ଏହା ହେଲା ଆମେରିକାର ୩୨ତମ ରାଜ୍ୟ । ଏହାର ଉତ୍ତର ସୀମାରେ ଆମେରିକାର ପ୍ରସିଦ୍ଧ ପଞ୍ଚହ୍ରଦଙ୍କ ଭିତରୁ ସବୁଠୁ ବଡ ଲେକ୍ ସୁପିରିୟର୍ (Lake Superior) । ହ୍ରଦ ଆରପାଖେ ଉତ୍ତରଦିଗରେ କାନାଡାର ଅଣ୍ଟାରିଓ ଏବଂ ମିନିସୋଟା ରାଜ୍ୟ-ଦ୍ୱୟ । ମିନିସୋଟାର ପୂର୍ବପଟରେ ୱିସ୍‌କନ୍‌ସିନ୍, ପଶ୍ଚିମରେ ସାଉଥ୍ ଡାକୋଟା ଏବଂ ଦକ୍ଷିଣରେ ଆଇୟୋୱା (Iowa)– ଅନ୍ୟ ଦୁଇ ରାଜ୍ୟ । ତେବେ ମିନିସୋଟାର ସବୁଠୁ ଚମତ୍କାର ପରିଚୟ– ଏ ରାଜ୍ୟକୁ କୁହାଯାଏ ଦଶ ସହସ୍ର ହ୍ରଦର ରାଜ୍ୟ ! ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ ଗୋଟଏ ଦେଶରେ ଏମିତି ଏକ ରାଜ୍ୟ ଅଛି ଯୋଉଠି ଅଛି ଶହେ ନୁହେଁ କି ହଜାରେ ନୁହେଁ; ଏକାବେଳେ ଦଶହଜାର ହ୍ରଦ ! ପ୍ରକୃତରେ ଦଶହଜାର ବି ନୁହଁ; ଏ ସଂଖ୍ୟା ହେଲା– ୧୧,୮୪୨ ! ପୁଣି ଏ ରାଜ୍ୟର ନଦୀ ସଂଖ୍ୟା ହେଉଚି– ୬,୫୬୪ ! ଆଉ ଏ ନଦୀ-ମାନଙ୍କର ସମୁଦାୟ ଦୈର୍ଘ୍ୟ– ୧,୧୧,୦୦୦ କିଲୋମିଟର ! ପୁଣି ପୃଥିବୀର ଦୀର୍ଘତମ ନଦୀ ମିସିସିପିର ଉତ୍ପତ୍ତି ଏଇ ରାଜ୍ୟର ଗୋଟିଏ ବିଶାଳ ହ୍ରଦ ଇଟାସ୍କା (Itaska)ରୁ । ମିସିସିପି ଏଇଠୁ ବାହାରି ଲମ୍ବିଯାଇଚି ସିଧା ଦକ୍ଷିଣକୁ ହଜାର ହଜାର ମାଇଲ୍ ଦୂର ମେକ୍ସିକୋ ଉପସାଗର ପର୍ଯ୍ୟନ୍ତ । ମଝିରେ ଯା' ସାଙ୍ଗେ ପୁଣି ମିଶିଚି ଅନ୍ୟ ଏକ ବିଶାଳ ନଦୀ ମିସୋରି, ସୁଦୂର ଦାକ୍ଷିଣାତ୍ୟ ପ୍ରଦେଶ ମିସୋରିରେ !

ତେବେ ମିନିସୋଟା ରାଜ୍ୟର ନାମ ମିନିସୋଟା ହେଲା କାହିଁକି– ତାର ଉତ୍ତର ଇଣ୍ଟରନେଟ୍‌ରୁ ଯାହା ମିଳିଲା ସେଇଟା ବି ମତେ ଲାଗିଲା ଆହୁରି ଅଦ୍ଭୁତ । ସେ ବିଷୟରେ ଟିକେ ଅଧିକ ବ୍ୟାଖ୍ୟା ଲୋଡ଼ା । ନିମ୍ନରେ ତାର ବୃତ୍ତାନ୍ତ ଦେଖନ୍ତୁ–

## ଦଶସହସ୍ର ହ୍ରଦର ରାଜ୍ୟ ମିନିସୋଟା

ମିନିସୋଟା ଏକ କାବ୍ୟିକ ଶବ୍ଦ । ଏ ଶବ୍ଦ ସ୍ଥାନୀୟ ଆଦିମଅଧିବାସୀଙ୍କ କଥିତ ଭାଷାରୁ ସଂଗୃହୀତ । ଏହାର ଅର୍ଥ ହେଉଚି– ଜଳରେ ପ୍ରତିବିମ୍ବିତ ହେଉଥିବା ଆକାଶର ରଙ୍ଗ । ଗୋଟିଏ ରାଜ୍ୟର ଏପରି କାବ୍ୟିକ ନାମକରଣର କାରଣ ଖୋଜିଲେ ବିସ୍ମିତ ହେବାକୁହୁଏ । ସେଦିନ ଇଣ୍ଟରନେଟ୍‌ରୁ ଶବ୍ଦଟିର ଅର୍ଥ ଖୋଜି ପାଇଲି, The word Minnesota is carved out of a Dakota (American Indian Tribe) phrase meaning 'Sky stinted water' ।

ଏ ସଂପର୍କରେ ଇଣ୍ଟରନେଟ୍‌ରୁ ଆହୁରି ମଧ୍ୟ ଗୋଟାଏ ଆଶ୍ଚର୍ଯ୍ୟଜନକ କଥା ଖୋଜି ପାଇଲି । ଆମେରିକାର ଇତିହାସ କହେ ଯେତେବେଳେ ଗୋରା ଉପନିବେଶବାଦୀମାନେ ଏ ଅଂଚଳକୁ ଦଖଲକଲେ ସେ ସମୟରେ ଏ ରାଜ୍ୟଟି ଥିଲା ଆମେରିକାର ମୂଳ ଅଧିବାସୀମାନଙ୍କର ନିଜସ୍ୱ ବାସଭୂମି । ସେ ଅଧିବାସୀମାନେ ହେଲେ ଆମେରିକାରେ ଅଦ୍ୟାବଧି ଜୀବୀତ କର୍ମତତ୍ପର ଆଉ ନିଜ ଜାତିର ପରିଚୟ ପାଇଁ ଗର୍ବିତ ଶତାଧିକ ଆଦିମ ଅଧିବାସୀମାନଙ୍କ ଭିତରୁ ଗୋଟିଏ ପ୍ରସିଦ୍ଧ ଲଢୁଆ ଉପଜାତିର ବାସଭୂମି । ସେ ଉପଜାତିର ନାଁ– ଡାକୋଟା (Anishinabe Dakota Tribe) । ଉପନିବେଶବାଦୀମାନେ ଏଇ ଲଢୁଆ ଡାକୋଟା-ମାନଙ୍କୁ ପ୍ରତ୍ୟକ୍ଷ ଯୁଦ୍ଧ (୧୮୬୨ ଡାକୋଟା ୱାର୍)ରେ ପରାସ୍ତକରି ବିତାଡିତ କରିବା ପରେ ଏ ରାଜ୍ୟର ନାମ ମିନିସୋଟାର କାରଣ ଅନୁସନ୍ଧାନ କଲେ । ଜଣେ ସ୍ଥାନୀୟ ଲୋକକୁ ଧରିନେଇ ସେମାନେ ତା'ଠାରୁ ଉତ୍ତର ଚାହିଁଲେ । ଲୋକଟିକୁ ପଚରାଗଲା– ହେ ! ତମର ଏ ରାଜ୍ୟର ନାଁ କ'ଣ ? ସେ କହିଲା– ମିନିସୋଟା । ଏଭଳି ଏକ ଅଦ୍ଭୁତ ଶବ୍ଦ ଶୁଣି ସେମାନେ ହସିଲେ । ଖୋଳିତାଡ଼ି ଆହୁରି ପଚାରିଲେ– ଆରେ ଜଙ୍ଗଲି ! ଏ ମିନିସୋଟା ଜନିଷଟା କ'ଣ ?

ଡାକୋଟା ଲୋକଟି ଉତ୍ତରଦେଲା– ନଈକୂଳକୁ ଆସ ବୁଝେଇଦେବି । ଉପନିବେଶ-ବାଦୀମାନଙ୍କୁ ଲୋକଟି ବାଟକଢେଇ ନେଇଗଲା ଗୋଟିଏ ବିଶାଳ ନଦୀକୂଳକୁ । ଭରାନଈର ପାଣିକୁ ଇଙ୍ଗିତକରି ସେ ପଚାରିଲା, "ଏ ନଈ ପାଣିର ରଙ୍ଗ ଦେଖୁଚ– କେମିତି ଦିଶୁଚି ? ଏଇ ରଙ୍ଗକୁ ଆମେ କହୁ ମିନିସୋଟା । ଏଇ ରଙ୍ଗ ଅନୁସାରେ ଆମ ଏ ନଈର ନାଁ ଆଉ ଆମଦେଶର ନାଁ ହେଲା– ମିନିସୋଟା । ଏବେ ବୁଝିଲ ତ ?" ଉପନିବେଶବାଦୀମାନେ ତଥାପି ବୁଝିପାରିଲେ ନାହିଁ ଜଙ୍ଗଲି ଡାକୋଟା ଲୋକଟା ପ୍ରକୃତରେ କ'ଣ କହିବାକୁ ଚାହେଁ । କୋଉ ରଙ୍ଗ କଥା ସେ

କହୁଚି ବୁଝିନପାରି ସେମାନେ ଲୋକଟାକୁ ଆହୁରି ଥଟ୍ଟାକରି ପଚାରିଲେ, "ତମେ କହୁଚ ତମର ଏ ନଈଟା ତମ ମୁଣ୍ଡ ଉପରୁ ଗଳିପଡିଚି ସିଧା ଏଇଠି ଆକାଶରୁ ନା କ'ଣ ?"

ଲୋକଟି ପରିହାସର ମର୍ମ ବୁଝିଲା। ଭାବିଲା– ଏଭଳି ମୂର୍ଖଲୋକମାନେ ଏଣିକି ହେବେ ଆମ୍ଭର ଏ ଦେବଭୂମିର ଶାସକ ! ଏମାନେ ଆମ ସାହିତ୍ୟ ବୁଝନ୍ତି ନାହିଁ, ଆମ କଳା ବୁଝନ୍ତି ନାହିଁ। ଏମାନେ କ'ଣ ଆମର ଏ ଦେବଭୂମିର ଦେବଦେବୀ ରୂପେ ପୂଜାପାଉଥିବା ଏଇ ମହାନ୍ ପବିତ୍ର ନଦୀ ପର୍ବତ ଅରଣ୍ୟର ମର୍ଯ୍ୟାଦା ରକ୍ଷାକରିବାକୁ ଯୋଗ୍ୟତା ଅର୍ଜନ କରିଛନ୍ତି ? ତଥାପି ଲୋକଟି ସେମାନଙ୍କର ଉପାସ୍ୟ ନଦୀମାତୃକାର ନାମର ସାର୍ଥକତା ବାଖ୍ୟା କରିବା ଚେଷ୍ଟାରୁ ବିରତ ହେଲା ନାହିଁ। କହିଲା, "ହଉ ଠିକ୍ ଅଛି। ମୁଁ ତମମାନଙ୍କୁ ଏ ନଈର ନାଁ ବୁଝେଇଦଉଚି ।"

ହାଣ୍ଡିଟିଏ କୋଉଠୁ ଖୋଜିଆଣି ଲୋକଟି ତା'ପରେ ଗଲା ନଈକୂଳକୁ। ନଈରୁ ହାଣ୍ଡିରେ ପାଣି ନେଇ ଆସିଲା । ସେଇଠୁ ପାଖ କୁଡିଆକୁ ଯାଇ ସାଇର କାହା ଘରୁ ଗାଈ ଦୁଧ ଟିକିଏ ମାଗି ଆଣିଲା ।· ପାଣି ଉପରେ ଦୁଧଟିକକୁ ବୁନ୍ଦା ବୁନ୍ଦା କରି ପକାଇବାକୁ ଲାଗିଲା । ଦୁଧବୁନ୍ଦା ପାଣିରେ ଧୀରେ ଧୀରେ ସଂଚରିବାକୁ ଲାଗିଲା । ପାଣି ସହିତ ଦୁଧ ମିଶୁଥିବାବେଳେ ଯେଉଁ ନୀଳ ଧବଳ ରଙ୍ଗଟି ସୃଷ୍ଟି ହେଲା– ସେଇ ରଙ୍ଗକୁ ଦେଖାଇ ଦର୍ଶକମାନଙ୍କୁ ଆଦିମ ଅଧିବାସୀଟି କହିଲା– ଏ ଯୋଉ ରଙ୍ଗ ଦେଖୁଚ ଯା'କୁ ଆମେ ଆମ ମାତୃଭାଷାରେ କହୁ ମିନିସୋଟା।" ମିନିସୋଟା ଶବ୍ଦର ଅର୍ଥ ଯଥାର୍ଥରେ ସେଇଆ– ଯେତେବେଳେ ନଦୀ ଜଳରେ ନିଜ ମୁଖାବଲୋକନ ପାଇଁ ଏଠାର ଆକାଶ ତଳକୁ ଅନାଏ ତାର ପ୍ରତିବିମ୍ବଟି ଯେପରି ବର୍ଣ୍ଣ ଧାରଣକରେ ମିନିସୋଟା ନଦୀଜଳ ଦିଶେ ଅବିକଳ ସେଇପରି ମିନିସୋଟା !

ଏଇ ପ୍ରାକୃତିକ ଶୋଭାର ଭଣ୍ଡାର ମିନିସୋଟାର ରାଜଧାନୀ ହେଲା ସେଣ୍ଟ୍‌ପଲ୍। କିନ୍ତୁ ଏହା ଯଥାର୍ଥରେ ଆମ କଟକ ଭୁବନେଶ୍ୱର ପରି ଗୋଟାଏ ଯାଆଁଳା ସହର। ସେଣ୍ଟପଲ୍‌ର ଯାଆଁଳା ଭଉଣୀ ହେଲା ମିନିଆପଲିସ୍ ସହର। ଗମନାଗମନ, ଶିଳ୍ପ ବାଣିଜ୍ୟ, ଶିକ୍ଷା, ସଂସ୍କୃତି ଇତ୍ୟାଦି ଯାବତୀୟ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନଗୁଡିକର ସ୍ଥିତି ଦୃଷ୍ଟିରୁ ମିନିଆପଲିସ୍ ହେଉଛି ମିନିସୋଟା ରାଜ୍ୟର ହୃତ୍‌ପିଣ୍ଡ । ସମଗ୍ର ରାଜ୍ୟର ଶତକଡା ଷାଠିଏ ଭାଗ ଜନସଂଖ୍ୟା ଏଇ ମିନିଆପଲିସ୍‌ର ଅଧିବାସୀ। ପୁଣି ଏଇ ଅଧିବାସୀ ମାନଙ୍କର ସବୁଠୁ ବଡଭାଗ ହେଲା ବହିରାଗତ (ଇମିଗ୍ରାଣ୍ଟ)। ସେମାନଙ୍କ ଭିତରେ ଅଛନ୍ତି ବିଶ୍ୱର ବହୁ ଦେଶରୁ ସମୟକ୍ରମେ ଆଗତ ଜନଗୋଷ୍ଠୀ । ଏଥିରେ ଅଛନ୍ତି ଭାରତୀୟଙ୍କ ସମେତ ୟୁରୋପୀୟ, ଆଫ୍ରିକୀୟ, ଲାଟିନ୍ ଆମେରିକୀୟ, ଚାଇନିଜ୍, ଜାପାନିଜ୍ ଇତ୍ୟାଦି ବିଭିନ୍ନ ଗୋଷ୍ଠୀର ଲୋକ। ସେମାନଙ୍କ ଭିତରେ ଭାରତ ଭୂଖଣ୍ଡରୁ ଆଗତ ଭାରତୀୟଙ୍କ ସଂଖ୍ୟା ବେଶ୍ ଆଖିଦୃଷ୍ଟିଆ। ପୁଣି ପ୍ରବାସୀ ଭାରତୀୟଙ୍କ ଭିତରେ ଓଡିଆମାନଙ୍କର ସଂଖ୍ୟା ମଧ୍ୟ ନଗଣ୍ୟ ନୁହେଁ ।

ଏଇ ପ୍ରବାସୀଲୋକେ କିନ୍ତୁ ବର୍ଷାଧିକକାଳ ଆମେରିକାର ନାଗରିକତ୍ୱ ନେବା ସତ୍ତ୍ୱେ ମୂଳ ଦେଶରୁ ପରଂପରାକ୍ରମେ ପ୍ରାପ୍ତ ସାଂସ୍କୃତିକ ପରିଚୟକୁ ହଜାଇନଦେଇ ତାହାକୁ ସଜୀବ ସକ୍ରିୟ ଭାବେ ଜୀବିତ ରଖିଆସିଚନ୍ତି । ତେଣୁ ମିନିଆପଲିସ୍ ସହରରେ ପ୍ରତି ଏଥ୍‌ନିକ୍ ଗୋଷ୍ଠୀର ଧର୍ମାନୁଷ୍ଠାନ ସହିତ ସେମାନଙ୍କର ସ୍ୱତନ୍ତ ଭାଷା ସାହିତ୍ୟ ସଂସ୍କୃତିର ଚର୍ଚ୍ଚା ଓ ଅଭିବୃଦ୍ଧି ପାଇଁ ଉଦ୍ଦିଷ୍ଟ ଅନୁଷ୍ଠାନ ସବୁ ସର୍ବଦା ସକ୍ରିୟ । ଏ ଦିଗରେ ଭାରତୀୟମାନେ ମଧ୍ୟ ପଛରେ ପଡିନାହାନ୍ତି ।

## ମିନିଆପଲିସ୍ ଯାତ୍ରା

ସେଦିନ ୧୧ ଜୁଲାଇ, ୨୦୦୮ । ଅପରାହ୍ଣ ସାଢେତିନିରେ ନିରୁପମା ଓ ମୁଁ ହାର୍ଟଫୋର୍ଡରୁ ପ୍ଲେନ୍ ଧରିଲୁ ମିନିଆପଲିସ୍ ଯାତ୍ରା ପାଇଁ । ପ୍ରାୟ ଦୁଇଘଣ୍ଟାର ଫ୍ଲାଇଟ୍ । ଘରୁ ବାହାରିବାବେଳେ ମହେଶ କାର୍ ରେଡିଓ ଅନ୍ କଲେ । ହଠାତ୍ ଶୁଣାଗଲା, "weather conditions worsen in mid-western region. Cyclonic weather prevails in most parts of Minnesota disrupting power supply during last 24 hours..."

ଏ ଖବର ଶୁଣି ମହେଶ କହିଲେ– "ନନା ! ଶୁଣିଲେ ତ ! ମିନିସୋଟାରେ ଚବିଶଘଣ୍ଟା ହେଲାଣି ପାଓ୍ୱାର୍ କଟ୍ । ଆପଣମାନେ ମିନିଆପଲିସ୍‌ରେ ପହଞ୍ଚିଲାବେଳକୁ ସବୁଆଡ ଅନ୍ଧାର ହେଇଥିବ । ସେ ଅଞ୍ଚଳଟାର ଦସ୍ତୁର ଏଇଆ– ସାଇକ୍ଲୋନ୍ ପ୍ରୋନ୍ । ଖରାଦିନେ ସାଇକ୍ଲୋନ୍ ପୁଣି ଶୀତଦିନେ ଭୟଙ୍କର ବରଫ । – ଚାଲନ୍ତୁ ଟିକେଟ୍ କ୍ୟାନ୍‌ସେଲ୍ କରି ଘରକୁ ଫେରିଯିବା । ତାଙ୍କ ରଥଯାତ୍ରା ତ ୧୩ରେ– ଆଜି ନଯାଇ କାଲି ଗଲେ ବି ଚଳିବ ।"

ଯାତ୍ରା ଆରମ୍ଭରୁ ଏଭଳି ବିଘ୍ନ ଦେଖି ମନଟା ଟିକେ ଦବିଗଲା । ଭାବିଲି ଜଗନ୍ନାଥେ କ'ଣ ଚାହାନ୍ତି ନାଇଁ ଆମେ ତାଙ୍କ ରଥଯାତ୍ରାକୁ ଯାଉ ବୋଲି ? କିଛି ସମୟ ଗୁମ୍ ହେଇ ବସିଲି । ମହେଶ ମୋ ଉତ୍ତର ପାଇଁ ଅପେକ୍ଷା କରୁଥାନ୍ତି । ମନେମନେ ଜଗନ୍ନାଥଙ୍କୁ ପ୍ରାର୍ଥନା କଲା ପରେ କହିଲି, "ନା ! ବାହାରିଲେଣି ଯଦି ନିଷ୍ଚେ ଆଗେଇବା । ଆମ ଜଗନ୍ନାଥଙ୍କ ଖୋଇ ହେଲା ଏମିତି– ସେ ଆଗ ଟିକିଏ ଖେଳିବେ– ପରୀକ୍ଷା କରିବେ ଡମ ଦମ୍ଭ । ଏୟାର୍‌ପୋର୍ଟକୁ ଯାଇ ଦେଖିବା ଫ୍ଲାଇଟ୍ କାନ୍‌ସେଲ୍ କି ନା । ଯଦି କ୍ୟାନ୍‌ସେଲ୍ ନହେଇଥିବ ତେବେ ପୋଷ୍ଟ୍‌ପୋନ୍ କରିବା କାହିଁକି ? ଚାଲ ଶୀଘ୍ର ଯିବା. . ."

ଏୟାର୍‌ପୋର୍ଟରେ ପହଞ୍ଚି ମହେଶ ବୁଝାବୁଝି କଲେ ଫ୍ଲାଇଟ୍ ଷ୍ଟାଟସ୍ । ଫେରିଆସି କହିଲେ, "ଫ୍ଲାଇଟ୍ କ୍ୟାନ୍‌ସେଲ୍ ହେଇନି । ତଥାପି ଭାବନ୍ତୁ– ଟିକେଟ୍ ବଦଳେଇଦେଇହେବ ଏବେବି. ।"

କିନ୍ତୁ ମୁଁ ମନ ସ୍ଥିର କରିନେଇସାରିଥାଏ– ଯେକୌଣସି ପ୍ରକାରେ ଆମକୁ ଆଜି ହିଁ ଯିବାକୁ ହବ । ସିତିକଣ୍ଠବାବୁ ଖବର ପଠେଇଥିଲେ ପୂର୍ବରୁ ଯେ ସେ ନିଜେ ତାଙ୍କ କାର୍ ନେଇ ଆସୁଚନ୍ତି ଏୟାର୍-ପୋର୍ଟକୁ । ସେ ଜଣେ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ ଲୋକ । ଆମ ପାଇଁ ବାରମ୍ବାର ଏୟାରପୋର୍ଟକୁ କାର୍ ନେଇ ଆସିବା ଯିବା ପାଇଁ ତାଙ୍କୁ ବାଧ୍ୟ କରିବାକୁ ମନ ହେଲାନାଇଁ । ସେ ଯାହାହେଉ ନିର୍ଦ୍ଦିଷ୍ଟ ସମୟରେ ଆମେ ଦୁହେଁ ପ୍ଲେନ୍‌ରେ ବସିଲୁ– ମହେଶ ଫେରିଗଲେ ଘରକୁ ।

ପ୍ରାୟ ଦୁଇଘଣ୍ଟା ପ୍ଲେନ୍ ଜର୍ଣ୍ଣି ପରେ ପ୍ଲେନ୍ ଅବତରଣ କଲା ମିନିଆପଲିସ୍ ଏୟାରପୋର୍ଟରେ । ଆମେରିକାର ଏଇ ବିଶାଳ ଆନ୍ତର୍ଜାତିକ ବିମାନବନ୍ଦର ମିନିଆପଲିସ୍‌କୁ କୁହାଯାଏ "the main hub of international air-traffic" । ମନେପଡିଲା ୨୦୦୬ରେ ଆମେ କାଲିଫର୍ଣ୍ଣିଆ ଭ୍ରମଣରେ ଯିବା ରାସ୍ତାରେ ଏଇ ମିନିଆପଲିସ୍ ବିମାନ-ବନ୍ଦରରେ ଦୁଇଘଣ୍ଟା ଅଟକିଥିଲୁ ।

ବିମାନବନ୍ଦର ବାହାରେ ସିତିକଣ୍ଠ ଦାଶ ଆମକୁ ସଂଖୋଳିବା ପାଇଁ ଉପସ୍ଥିତ ଥିଲେ । ନିଜେ କାର୍ ଡ୍ରାଇଭ୍ କରି ସେ ଆମକୁ ଏୟାରପୋର୍ଟରୁ ତାଙ୍କ ଘରକୁ ନେଲେ । ପ୍ରାୟ ଘଣ୍ଟାକର ଡ୍ରାଇଭ୍ । ଘଡିକୁ ଅନେଇ ଦେଖିଲି ସମୟ ସାଢେ ପାଞ୍ଚ । ଏ ଦେଶରେ ଗ୍ରୀଷ୍ମଋତୁରେ ସୂର୍ଯ୍ୟାସ୍ତ ବହୁତ ଡେରିରେ ହେବାକଥା– କିନ୍ତୁ ଆଜି ସନ୍ଧ୍ୟା ଛ' ସାଢେ ଛ'ରୁ ଘୋଟିଥାଏ ଅନ୍ଧାର । କାର୍ ସହର ରାସ୍ତାରେ ଯେତେଯେତେ ଆଗଉଥାଏ ଆମକୁ ସ୍ୱାଗତ କରୁଥାଏ ଖାଲି ଅନ୍ଧାର ଆଉ ଅନ୍ଧାର ! ଗୋଟାଏ ମେଟ୍ରୋପଲିଟାନ୍ ସହରର ସେଭଳି ଅନ୍ଧକାରମୟ ବାହ୍ୟରୂପ ମୁଁ ଆମେରିକାରେ ଅନ୍ୟ କୋଉଠି କେବେ ଦେଖିନଥିଲି ।

"ଚବିଶ ଘଣ୍ଟା ହେଲାଣି ପାଓ୍ୱାର କଟ୍"– ସିତିକଣ୍ଠବାବୁ ସହରରେ ଘୋଟିଥିବା ଅନ୍ଧାରକୁ ଦେଖେଇ କହିଲେ । ଆମର ଏଠି କ୍ୱଚିତ୍ ଏମିତି ଅବସ୍ଥା ହୁଏ । ଭୀଷଣ ଝଡବାତ୍ୟାରେ ବହୁ ଅଂଚଳରେ ଗଛ ଉପୁଡି ପଡିଚି । ଇଲେକ୍‌ଟ୍ରିକ୍ ଖୁଣ୍ଟଗୁଡାକ ସମୂଳେ ଭୁଷୁଡି ପଡିଚି । ଟ୍ରାନ୍ସମିସନ୍ ପୂରା ବନ୍ଦ । ଆମେ ତ କାଲିଠୁ ପଡିଚୁ ଏଇ ଅନ୍ଧାରରେ । ଆଜି ଆପଣଙ୍କୁ କ୍ୟାଣ୍ଡଲ୍ ଲାଇଟ୍ ଡିନର୍ ସର୍ଭ କରିବେ କଳ୍ପନା ଦେବୀ । ଆପଣମାନେ ଆସିବେ ବୋଲି ବିଚାରୀ ବହୁ ପରିଶ୍ରମ କରି ରୋଷେଇବାସ କରିଚନ୍ତି ଦିନ ତମାମ୍ । ହେଲେ ସବୁତ ଥଣ୍ଡାହେଇସାରିବଣି । ପୁଣି ଫ୍ରିଜ୍ ବନ୍ଦ କାଲିଠୁ । ସେଣ୍ଟ୍ରାଲ୍ ହିଟିଂ ସିଷ୍ଟମ୍ ଅକାମି ହେଇପଡିଚି କାଲିରାତିରୁ । ଆପଣ ଆଜି ରାତିରେ ଶୋଇବେ. . . ଗରମରେ ।"

କିଟିକିଟି ଅନ୍ଧାର ଭିତରେ ଗାଡି ଚଳେଇ ସିତିକଣ୍ଠବାବୁ ଆମକୁ ପହଞ୍ଚେଇଲେ ଶେଷରେ ତାଙ୍କ ଘରେ । କାର୍‌ରୁ ଓହ୍ଲେଇ ଆମେ ପଶିଲୁ ତାଙ୍କ ଘରର ଗ୍ୟାରେଜ୍ ଡୋର୍ ଦେଇ ଘର ଭିତରେ । ଆମକୁ ସଂଖୋଳିବା ପାଇଁ ଅପେକ୍ଷା କରିଥାନ୍ତି ଶ୍ରୀମତୀ କଳ୍ପନା ଦାଶ, ସିତିକଣ୍ଠଙ୍କ ପତ୍ନୀ । ଭଦ୍ରମହିଳା ଆମକୁ ସ୍ୱାଗତ କରି କହିଲେ, "ମଉସା,

ଆପଣମାନେ ବଡ ହଇରାଣ ହେଲେ ଆଜି । ଏ ଅକାଳ ଝଡବର୍ଷା କୋଉଠି ଥିଲା କେଜାଣି– ଦେଖୁଚନ୍ତି ତ ଅବସ୍ଥା ।”

କଞ୍ଚନାଦେବୀଙ୍କୁ ମୁଁ ଆଗରୁ ଦେଖିଥିଲି । ସେ ଜଣେ କବି । ଲେଖା-ଲେଖି କରନ୍ତି କବିତା ଓ ଗପ ଓଡିଆରେ । ମତେ ସେଇ ପ୍ରଥମେ ଇ-ମେଲ୍‌ରେ ନିମନ୍ତ୍ରଣ ଜଣାଇଥିଲେ ରଥଯାତ୍ରାକୁ ତାଙ୍କ ଘରେ ଅତିଥି ହେବାକୁ ।

ତାଙ୍କୁ ଆଶ୍ୱାସନା ଦେବାକୁ କହିଲି, “ମାଡାମ୍ ! ଏ କି ଝଡିବର୍ଷା ଅନ୍ଧାର– ୧୯୯୯ରେ ଓଡିଶାର ସୁପର୍ ସାଇକ୍ଲୋନ୍ କଥା ଶୁଣିଥିବେ । ସାରା ଓଡିଶା ଅନ୍ଧାର ହେଇ-ଯାଇଥିଲା । ଆମେ ପନ୍ଦର ଦିନ ଘରୁ ବାହାରିପାରିନଥିଲୁ । ରାସ୍ତା ଉପରେ ଗଛମାନେ ରାସ୍ତାବନ୍ଦ ଆନ୍ଦୋଳନ କଲେ । ପନ୍ଦରଦିନ ଇଲେକ୍ଟ୍ରିକ୍ ବନ୍ଦ, ପାଣିସପ୍ଲାଇ ବନ୍ଦ । ଟେଲିଫୋନ୍ ଚାଲିଲା ମାସେପରେ ! ଆମର ଧାରଣା ଥିଲା ଆମେରିକାରେ ଏପରି ଝଡବାତ୍ୟା ହୁଏନା । ହେଲେ ବି ସାଇନ୍ସ ଆଣ୍ଡ୍ ଟେକ୍‌ନୋଲଜି ଅନେଇ ବସିଚି ଦେଶଟାକୁ ଦିନରାତି ଚବିଶଘଣ୍ଟା । ଯାହାହେଉ ଗୋଟାଏ ଭଲ ଏକ୍ସପିରିଏନ୍ସ ହେଲା । ଏ ଦେଶରେ ଯେ ବିଜୁଳି କଟେ ଚବିଶ ଘଣ୍ଟାରୁ ବେଶୀ ସମୟ– ଏ ହେଲା ଆମ ପାଇଁ ବଡ ଖବର । ଆପଣ ଚିନ୍ତା କରନ୍ତୁ ନାଇଁ ଜମାରୁ । ଖାଲି ଜାଣିବା କଥା ପଅରଦିନ କେତେବେଳେ ଆରମ୍ଭ ହବ ରଥଯାତ୍ରା । ସେଥିପାଇଁ ମତେ କେମିତି ପ୍ରସ୍ତୁତ ହେବାକୁ ପଡିବ. . .”

ପ୍ରାଥମିକ ଦେଖାସାକ୍ଷାତ୍ ପରେ ଗୋଟାଏ ଲମ୍ବା କରିଡର୍ ଦେଇ ଆମେ ଚାଲିଲୁ ଭିତରକୁ ଭିତରକୁ । ଘରଟାର ଆଡ୍‌ଡ଼ା ଚଉଡାରୁ ମନେହେଲା ବିରାଟ– ଆମେରିକାନ୍ ମାପରେ ବେଶ୍ ବଡ । ଆମେରିକାରେ ରହୁଥିବା ଜଣେ ପ୍ରବାସୀ ଓଡିଆଙ୍କ ସେଭଳି ଘରଦ୍ୱାର ଦେଖି ମନେମନେ ଗର୍ବିତ ହେଲି । ଯାହାହଉ ଓଡିଆମାନେ ଖୁବ୍ ଥାଟରେ ଅଛନ୍ତି ଏଠି ଏ ଦେଶରେ ଯାହାଙ୍କୁ ଏଠାକାର ଆମେରିକାନ୍ ଲୋକେ ବି ଈର୍ଷା କରନ୍ତି ବୋଲି ଶୁଣେ ଅନେକ ବେଳେ । ଏମିତି ଆଉ କେତେଜଣ ସଫଳ ପ୍ରବାସୀ ଓଡିଆଙ୍କୁ ମଧ୍ୟ ମୁଁ ବ୍ୟକ୍ତିଗତଭାବେ ପୂର୍ବରୁ ଚିହ୍ନିଥିଲି । ସେମାନଙ୍କ ଘରଦ୍ୱାର ବିଶାଳ ମ୍ୟାନ୍‌ସନ୍ ସବୁ ଦେଖିଚି । ସେଇ ଥାଟରେ ସିତିକଣ୍ଠ ମଧ୍ୟ କିଛି କମ୍ ଜଣାଗଲେନାହିଁ । ତେବେ ଅନ୍ୟମାନଙ୍କ ତୁଳନାରେ ସିତିକଣ୍ଠଙ୍କର ବିଶେଷତ୍ୱ ଥିଲା ଆଉ ଏକ ପ୍ରକାର । ତାଙ୍କର ଯଥାର୍ଥ ପରିଚୟ ବାବଦରେ ପଦେ ଏଇଠି କହିବା ଦରକାର–

**ସିତିକଣ୍ଠଙ୍କ ପରିଚୟ :** ସିତିକଣ୍ଠ ବାବୁଙ୍କ ବିଷୟରେ ଜାଣିଥିଲି ବହୁ ବର୍ଷ ପୂର୍ବରୁ । ତାଙ୍କ ସଙ୍ଗେ ମୋର ପ୍ରଥମ ଭେଟ ହେଇଥିଲା ୧୯୯୩ରେ ଟ୍ରୟ ମିସିଗାନ୍‌ରେ ବସିଥିବା ସେ ବର୍ଷ ଓଡିଶା ସୋସାଇଟି ଅଫ୍ ଆମେରିକା (ଓସା) ଅଧିବେଶନରେ । ମୁଁ ଥିଲି ଓଡିଶାରୁ ନିମନ୍ତ୍ରିତ ଅତିଥି, ପ୍ରଧାନବକ୍ତା ତାଙ୍କ ଉଦ୍‌ଘାଟନ ଉତ୍ସବର । ସିତିକଣ୍ଠ ସୋସାଇଟିର ଜଣେ ପ୍ରମୁଖ ସଭ୍ୟଭାବେ ଉପସ୍ଥିତ ଥିଲେ ସଭାରେ । ବ୍ୟକ୍ତିଗତ ଚିହ୍ନାପରିଚୟ କଥାବାର୍ତ୍ତାରୁ

ବୁଝିଲି ସେ କଟକ ଜିଲାର ପ୍ରସିଦ୍ଧ ଜମିଦାର ଭେଡା ଚଉଧୁରି ବଂଶର ରକ୍ତଗତ ସଂପର୍କ ଥିବା ଜଣେ ଉଦ୍‌ଯୋଗୀ ମଣିଷ । କେତେବର୍ଷ ତଳେ ଭୁବନେଶ୍ୱର କୃଷିବିଶ୍ୱବିଦ୍ୟାଳୟରୁ ଗ୍ରାଜୁଏଟ୍ ଡିଗ୍ରୀ ନେଇ ସେ ଆମେରିକା ଆସିଥିଲେ ଉଚ୍ଚତର ଅଧ୍ୟୟନ ଲକ୍ଷ୍ୟରେ । ଆମେରିକାର କୌଣସି ବିଶ୍ୱ-ବିଦ୍ୟାଳୟରୁ ପୋଷ୍ଟ୍‌ଗ୍ରାଜୁଏଟ୍ ଡିଗ୍ରୀ ହାସଲପାଇଁ କେତେବର୍ଷ ଗବେଷଣା ଭିତରେ ପିଏଚ୍.ଡି ଡିଗ୍ରୀ ହାସଲ ସହିତ ଗୋଟାଏ ନୂଆ ଆଇଡିଆ ମଧ୍ୟ ପାଇଥିଲେ । ଆଇଡିଆଟା ଥିଲା ନିଜ ଗବେଷଣାଲବ୍ଧ ଜ୍ଞାନକୁ ପାଟେଣ୍ଟ କରାଇ ଗୋଟାଏ ଇଣ୍ଡଷ୍ଟ୍ରି ଏଇ ଆମେରିକାରେ ଷ୍ଟାର୍ଟ କରାଇବା ନେଇ । ଯଥାସମୟରେ ସେ ତାଙ୍କ ଆଇଡିଆକୁ କାର୍ଯ୍ୟକାରୀ କରିଥିଲେ ମଧ୍ୟ ।

ବର୍ତ୍ତମାନ ଆମେ କୌଣସି ଔଷଧ ଦୋକାନରେ "ପ୍ରୋବାୟୋଟିକ୍" ନାମକ ଏକ ଔଷଧ ଖୋଜିଲେ ପାଇପାରୁ । ଏ ଔଷଧର ଆବଶ୍ୟକତା ପଡେ ଅତ୍ୟଧିକ ଆଣ୍ଟି ବାୟୋଟିକ୍ ଔଷଧ ସେବନ ଜନିତ ଶାରିରୀକ କ୍ଷତି ସହିଥିବା ରୋଗୀମାନଙ୍କର । ସେମାନଙ୍କୁ ଡାକ୍ତର ନିଶ୍ଚୟ ପରାମର୍ଶ ଦେବେ କିଛି ପ୍ରୋବାୟୋଟିକ୍ ଔଷଧ ସେବନ ନିମିତ୍ତ । ସେଇ ପ୍ରୋବାୟୋଟିକ୍ (ମଣିଷର ଅନ୍ତନଳୀରେ ସ୍ୱାଭାବିକ ବାସକରୁଥିବା ସାହାଯ୍ୟକାରୀ ବ୍ୟାକ୍ଟେରିଆ ଉତ୍ପାଦନରେ ସହାୟକ ଏକ ଔଷଧ) ପ୍ରସ୍ତୁତି ସଂପର୍କରେ ସେ କେତେକ ମୂଲ୍ୟବାନ୍ ତଥ୍ୟ ଲାଭ କରିଥିଲେ ତାଙ୍କ ଗବେଷଣା କାଳରେ । ନିଜ ଗବେଷଣାଲବ୍ଧ ଜ୍ଞାନକୁ ସେ ବିଧିବଦ୍ଧ ଭାବେ ପ୍ୟାଟେଣ୍ଟ କରାଇନେଲେ । ପରେ ପରେ ସେ କିଛି ବର୍ଷ ଆମେରିକାର ସାଉଥ୍ ଡାକୋଟା ଷ୍ଟେଟ୍‌ରେ "ଫୁଡ୍ ଆଣ୍ଡ ଡ୍ରଗ୍" ବିଭାଗର ନିର୍ଦ୍ଦେଶକ ଭାବେ ବେଶ୍ ମର୍ଯ୍ୟାଦାବନ୍ତ ସରକାରୀ ଚାକିରିଟିଏ ମଧ୍ୟ ପାଇଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସରକାରି ଚାକିରି ଛାଡି ଦେଇ ସେ ଆରମ୍ଭ କରିଥିଲେ ନିଜସ୍ୱ ଔଷଧ ଉତ୍ପାଦନ ଶିଳ୍ପ । ବର୍ତ୍ତମାନ ଏଇ ମିନିଆପଲିସ୍ ସହରରେ ତାଙ୍କର ସେଇ ଔଷଧ ନିର୍ମାଣ କାରଖାନାରୁ ଉତ୍ପାଦିତ "ପ୍ରୋବାୟୋଟିକ୍‌ସ୍" ଟ୍ରେଡ୍‌ମାର୍କ ପ୍ରାପ୍ତ ଔଷଧ ସାରା ବିଶ୍ୱବଜାରରେ ଉପଲବ୍ଧ ।

ଏ ଦୃଷ୍ଟିରୁ ସିତିକଣ୍ଠ ଜଣେ ଯଥାର୍ଥ ପାୟୋନିୟର୍ ଏନ୍.ଆର୍.ଆଇ ଓଡିଆ । ଅନ୍ୟମାନଙ୍କ ପରି କେବଳ ଖଣ୍ଡେ ଡିଗ୍ରୀ କାଗଜ ଓ ଚାକିରି ପାଇଁ ସେ ଆସିନଥିଲେ ଆମେରିକା । ସେ ନିଜ ଜ୍ଞାନକୁ କାମରେ ଲଗେଇ ଇଣ୍ଡଷ୍ଟ୍ରି ନିର୍ମାଣ ସହିତ ଆମେରିକାନ୍‌ଙ୍କ ପରି ବିଶ୍ୱବ୍ୟାପୀ ବ୍ୟବସାୟଟିଏ ମଧ୍ୟ ଚଳାଇପାରିଛନ୍ତି– ଏ କିଛି ସହଜ କଥା ନୁହେଁ ମୋ ବିଚାରରେ ।

ସିତିକଣ୍ଠବାବୁଙ୍କ ଘରେ ସେଦିନ ରାତ୍ରିଭୋଜନ ସତରେ ସମାପ୍ତ ହେଲା ମହମବତୀର ଆଲୁଅରେ । କଞ୍ଚନା ଦେବୀ ବହୁ ଯତ୍ନରେ ଡିନର୍ ରାନ୍ଧିଥିଲେ ଆମ ପାଇଁ । ଟେବୁଲ ଉପରେ ପ୍ରାୟ କୋଡିଏ ପ୍ରକାର ଡିସ୍ ସଜତା ହେଇ ରଖାଯାଇଥାଏ । ସେ ସବୁ ଉପରେ ଆଖି ବୁଲେଇ ଆଣି ନିରୁପମା ଅତ୍ୟନ୍ତ ସହାନୁଭୂତିଶୀଳ ସ୍ୱରରେ ପଚାରିଲେ କଞ୍ଚନାଙ୍କୁ– "ହଇଲୋ ମା ! ତୁ ଏସବୁ ଏତେ ପରିଶ୍ରମ କରି କାହାପାଇଁ ରାନ୍ଧିଚୁ ଲୋ ? ଆମ

ପାଇଁ ? ଆହା ! ଆରେ ମା, ମୁଁ ତ ମାଛ ମାଉଁସ ଖାଏନା । ମଉସା ବି ଛାଡିଦେଲେଣି ସେସବୁ । ପୁଣି ରାତିରେ ରୁଟି ଦି'ଖଣ୍ଡ ଆଉ ସନ୍ତୁଳା ଟିକିଏ ଖାଇବା ଲୋକ ଆମେ । ଆମ ପାଇଁ ଏତେ ପରିଶ୍ରମ କରି ତୁ କାହିଁକି ତିଆରି କରିଚୁ ଯା'କୁ ! ତହିଁକୁ ମୁଁ ଯାହା ଦେଖୁଚି ତୋ' ଦେହ ଭଲ ନାହିଁ କି ସାହାଯ୍ୟ କରିବାକୁ ଲୋକବାକ ନାହାନ୍ତି । ଆହା, ଦିନ ସାରା କେତେ ଖଟି ନଥିବୁ ତୁ ମା ! କାହିଁକି କଲୁ ଏତେ କଥା ?"

କଞ୍ଚନା ଜଣେ ଉଚ୍ଚ ଶିକ୍ଷିତା, ଅତ୍ୟନ୍ତ ରୁଚିଶୀଳା ପ୍ରବାସୀ ଓଡିଆଣୀ ଭଦ୍ର ମହିଳା ଯାହାଙ୍କ ଗୀତି-କବିତା ଓଡିଶାର ପତ୍ରପତ୍ରିକାରେ ସାମୟିକ ପ୍ରକାଶିତ ହେବା ଜାଣି ଥାଏ ମୁଁ । ତାଙ୍କ ଜନ୍ମସ୍ଥାନ ଢେଙ୍କାନାଳରେ । ସ୍ୱର୍ଗତ ପିତା ପ୍ରସିଦ୍ଧ ବସନ୍ତ କୁମାର ମହାପାତ୍ର ଥିଲେ ହାଇସ୍କୁଲ୍ ହେଡମାଷ୍ଟର୍ । ସିତିକଣ୍ଠଙ୍କୁ ବିବାହ କରିବା ପରେ କଞ୍ଚନା ଆମେରିକା ଆସିଥିଲେ । ଏ ଦେଶରେ ଉଚ୍ଚଶିକ୍ଷା ଲାଭକରିଚନ୍ତି । ବର୍ତ୍ତମାନ ସେ ତାଙ୍କ ସ୍ୱାମୀଙ୍କ ଶିଳ୍ପର ପରିଚାଳନାରେ ପ୍ରଧାନ ସହାୟିକା ।

କଞ୍ଚନାଙ୍କ ଭଳି ଜଣେ କାର୍ଯ୍ୟବ୍ୟସ୍ତ ମହିଳା ଯେ ଆମ ଭଳି ଦୁଇଟା ରୁଟି ସନ୍ତୁଳାଖିଆଙ୍କ ଅତିଥି ସତ୍କାର ପାଇଁ ସାରାଦିନ ଲାଗିପଡି ନିଜ ହାତରେ ଆମ ପାଇଁ ଏତେ ଗୁଡାଏ ଲୋଭନୀୟ ଖାଦ୍ୟ ଦ୍ରବ୍ୟ ରାନ୍ଧିଚନ୍ତି ଦେଖି ମୁଁ ବିସ୍ମିତ ଓ ଅଭିଭୂତ ହେଲି । ଯାହା ହେଉ ସେଦିନ ରାତି ଭୋଜନଟି ଆମ ପାଇଁ ଥିଲା ଏକ ଭୂରିଭୋଜନ । ରାତି ଖିଆ ସାରିଦେଇ ଆମେ ଦୁଇ ପରିବାର ବସିପଡିଲୁ ବେଶ୍ କିଛି ବେଳ ଘରୋଇ ଗପସପ ଉଦ୍ଦେଶ୍ୟରେ । ବିଜୁଳି ଲାଇନ୍ ତଥାପି ମୃତ । କାଚ ଝରକାକୁ ଚାହିଁଲେ ଦିଶୁଥାଏ କିଟିକିଟି ଅନ୍ଧାର । ଦୂରକୁ ଆଖି ପକେଇଲେ ବି ସେଇ ଘନ ଅନ୍ଧାର । ସେ ଅନ୍ଧାରକୁ ଆଖି ପୂରେଇ ଅନେଇଲେ ଦିଶିଯାଉଥାଏ ମୋ ପିଲାଦିନର ଆମ ଗାଁର ରାତିଗୁଡାକର ଛବି ଅବିକଳ । ସେତେବେଳେ ଅନ୍ଧାର ରାତିରେ ଭୂତ ପ୍ରେତ ଭଳି ଉଭା ହେଉଥିବା ବଡବଡ ଗଛ ବିଶେଷତଃ ଆମ ଘର ପଛପଟ ସେଇ ଝଙ୍କା ତେନ୍ତୁଳିଗଛଟାକୁ ଆବୋରି ଉଡୁଥିବା ପଲପଲ ଜୁଳୁଜୁଳିଆ ପୋକଙ୍କୁ ଦେଖି ଆମେ ପିଲାମାନେ ମନେକରୁଥିଲୁ ହୁଏତ ଲକ୍ଷଲକ୍ଷ ତାରା କେତେବେଳେ ଆକାଶରୁ ଓହ୍ଲେଇ ଆସି ଉଡି ବୁଲିଲେଣି ଆମ ଘର ଚାରିପଟେ ! ଆମ ଘର ଆମ ଗାଁକୁ ତାରାମାନଙ୍କର ଅଭିସାରର ଦୃଶ୍ୟ ସେଦିନ ଉଲୁସେଇ ଦଉଥିଲା ମୋର ସାରା ଦେହକୁ । ମନେହଉଥିଲା ବୋଧହୁଏ ତାରାମାନେ ଓହ୍ଲେଇନାହାନ୍ତି ଆକାଶରୁ, ଓଲଟା ଆମ ଗାଁଟା ଉଠିଚାଲିଯାଇଚି ସିଧା ଆକାଶର ତାରାମାନଙ୍କ ଗାଁଇଜକୁ । ଆଜି ଆମେରିକାରେ ଥାଇ ଝରକା ବାହାରେ ସିତିକଣ୍ଠଙ୍କ ବିରାଟ ବ୍ୟାକ୍‌ୟାର୍ଡରେ ବଡ ବଡ ଓକ୍ ମ୍ୟାପଲ୍ ଗଛଗୁଡାକୁ ଆବୋରି ଉଡିବୁଲୁଥିବା ଜୁଳୁଜୁଳିଆ ପୋକଙ୍କ ମେଳାର ଦୃଶ୍ୟ ମତେ ଘେନି ଚାଲିଗଲା ମୋର ସେଇ ସୁଦୂର ବାଲ୍ୟକାଳକୁ ।

ସିତିକଣ୍ଠଙ୍କ ପାରିବାରିକ ପୃଷ୍ଠଭୂମି ବିଷୟରେ ଆଉ ଟିକେ ଅଧିକା ସୂଚନା ପାଇଁ

ପଚାରିଲି, "ଆଚ୍ଛା ସିତିକଣ୍ଠ ବାବୁ ! ଆପଣଙ୍କ ପିଲାଦିନ କୁଆଡେ କଟିଥିଲା ଆମ ପଦିଲି କକେଇଙ୍କ ଶଶୁର ଘର ଭେଡା ଚଉଧୁରି ପରିବାରରେ ନା କ'ଣ ?"

ମୋ ପ୍ରଶ୍ନର ଉତ୍ତର ମିଳିଗଲା । ଜାଣିଲି ଏ ସିତିକଣ୍ଠ ତାହେଲେ ପ୍ରକୃତରେ ଆମ ପରିବାରର ସଂପର୍କୀୟ, କାରଣ ସେ ଥିଲେ ସେଇ ଚଉଧୁରି ପରିବାରର ଭଣଜା । ଭେଡା ଚଉଧୁରି ପରିବାର ଆମ ସିଦ୍ଧେଶ୍ୱରପୁର ଆଚାର୍ଯ୍ୟ ପରିବାରର ମଧ୍ୟ ରକ୍ତସଂପର୍କୀୟ । ମୋ କକେଇ ପଦ୍ମନାଭ ଆଚାର୍ଯ୍ୟ (ଆମ ଅଂଚଳର ବିଖ୍ୟାତ ହ୍ୟୁମରିଷ୍ଟ୍ ପଦିଲିବାବୁ)ଙ୍କ ଶଶୁର ମଧ୍ୟ ସେଇ ଚଉଧୁରି ପରିବାରର ।

କଞ୍ଚନାଙ୍କ ସଂପର୍କରେ ଖବରନେଇ ଜାଣିଲି ସେ ଢେଙ୍କାନାଳର ଜଣେ ପ୍ରଖ୍ୟାତ ହାଇସ୍କୁଲ ପ୍ରଧାନ ଶିକ୍ଷକଙ୍କ କନ୍ୟା । ଯେହେତୁ ମୋ ଶଶୁର ବି ସେଇଭଳି ଜଣେ ବିଖ୍ୟାତ ବ୍ୟକ୍ତି ଥିଲେ, ନିରୁପମା ତତ୍‌କ୍ଷଣାତ୍ କଞ୍ଚନାଙ୍କ ପ୍ରତି ଆକୃଷ୍ଟ ହେଲେ । ଏହାପରେ ଜମିଗଲା ସେଦିନ ରାତିର ପାରିବାରିକ ଆସର କଞ୍ଚନା ଓ ସିତିକଣ୍ଠଙ୍କ ମିନିଆପଲିସ୍ ଘରେ ଆମର । ରାତିଟାର ଅଧିକାଂଶ ସମୟ ଗପସପରେ କଟାଇ ଆମେ ଚାଲିଲୁ ଆମ ପାଇଁ ଉଦ୍ଦିଷ୍ଟ ବେଡରୁମ୍ ସନ୍ଧାନରେ । ଉପର ମହଲାର ଏକ ସୁସଜ୍ଜିତ କୋଠରୀରେ ପୂର୍ବରୁ ଆମ ପାଇଁ ଶଯ୍ୟା ପ୍ରସ୍ତୁତ କରିଦିଆଯାଇଥାଏ । ରୁମ୍‌କୁ ଆଲୋକିତ କରୁଥାଏ ମହମ ବତୀଟିଏ । ସିତିକଣ୍ଠ ଆମ ପାଇଁ ବେଡ୍ କଭର୍‌ଟାକୁ ଶେଯରୁ ବାହାରକରିଦେଲେ । ପରିହାସଭରା ସ୍ୱରରେ କହିଲେ, "Hope this candle-lit atmosphere in this room might remind you of the long forgotten honeymoon night of the past. Good night."

## ମିନିଆପଲିସ୍‌ର ପ୍ରସିଦ୍ଧ– 'ମଲ୍-ଅଫ୍-ଆମେରିକା ଆକ୍ୱାରିୟମ୍'

ପରଦିନ ସକାଳକୁ ସହରର ବିଦ୍ୟୁତ ସରବରାହ ସ୍ୱାଭାବିକ ହେଲା । ବ୍ରେକ୍‌ଫାଷ୍ଟ୍ ଟେବୁଲ୍‌ରେ ସିତିକଣ୍ଠବାବୁ ଯୋଗଦେଲେ ଆମ ସାଙ୍ଗେ । ପରେ ପରେ ସେ ବାହାରିଗଲେ ତାଙ୍କ କାମରେ ଅଫିସକୁ । ଯିବାପୂର୍ବରୁ କହିଗଲେ, "ଆପଣମାନେ ଆଜି ଏ ସହରର ଗୋଟାଏ ବିଖ୍ୟାତ ଦର୍ଶନୀୟ ଜାଗା ଦେଖିବେ ନିଶ୍ଚୟ । ଆମ ସହରର ଆକ୍ୱାରିୟମ୍ ଆମେରିକାର ନମ୍ବର ୱାନ୍ ଟୁରିଷ୍ଟ୍ ପ୍ଲେସ୍ । କଞ୍ଚନା ନେଇ ଯିବେ ଆଜି ଆପଣମାନଙ୍କୁ ସେ ଜାଗା ଦେଖେଇବାକୁ । ଆଜିଟା ସହର ବୁଲନ୍ତୁ– କାଲି ହେଲା ଆପଣଙ୍କ ପାଇଁ କାମର ଦିନ– ରଥଯାତ୍ରା ।"

ସକାଳ ଦଶଟା ସୁଦ୍ଧା କଞ୍ଚନାଦେବୀ ଆମକୁ ତାଙ୍କ କାର୍‌ରେ ବସାଇ ବାହାରିଲେ ମିନିଆପଲିସ୍ ସହର ବୁଲାଇ ଦେଖାଇବାକୁ । ଗତରାତିରୁ ସେ ଓ ନିରୁପମାଙ୍କ ବନ୍ଧୁତା ଗଢ଼ିଉଠୁଥାଏ ଆତ୍ମୀୟତା ଦିଗରେ । ସେ ଦୁହେଁ ଗପସପରେ ମଜ୍ଜିରହିଥାନ୍ତି । ମୁଁ ଆଖି

ବୁଲେଇ. ସହର ରାସ୍ତାର ଦୁଇପଟ କୋଠାବାଡି ଆଉ ଘର ଚାରିପାଖର ବୃକ୍ଷଲତା ଆଉ ଚିତ୍ତାକର୍ଷକ ଉଦ୍ୟାନ ଗୁଡିକର ଶୋଭା ଉପଭୋଗ କରୁଥାଏ । ଏ ଦେଶର ରାସ୍ତାର ଦୁଇ କଡର ଘାସ ପଡିଆ ବା ଲଅନ୍‌ଗୁଡିକ ବାସ୍ତବିକ୍ ଦର୍ଶନୀୟ ଜିନିଷ । ସାରା ଦେଶର ହଜାର ହଜାର ମାଇଲ୍ ହାଇୱେ ଷ୍ଟେଟ୍ ୱେ ଏପରିକି ପ୍ରାଇଭେଟ୍ ରାସ୍ତାଗୁଡିକରେ କଡକଡେ ଘାସପଡିଆ କରାଯିବା ବାଧ୍ୟତାମୂଳକ । ଖାଲି ଘାସପଡିଆ କରିଦେଲେ କାମ ସରି ଯାଏନା, ସେଗୁଡିକୁ ଠିକ୍ ସମୟରେ ଘାସକଟା ଯନ୍ତ୍ର ଦ୍ୱାରା ମୋଇଂ କରାଯିବା ଆଉ ସଫାରଖାଯିବା ମଧ୍ୟ ବାଧ୍ୟତାମୂଳକ । ତେଣୁ ଏ ଦେଶରେ ରାସ୍ତାରେ ଧୂଳି ଉଡେନା ବା ରାସ୍ତା କଡେ ଫୋପଡା ଯାଇଥିବା କାଗଜ ଟୁକୁରାଏ ବି ଆଖିରେ ପଡେନା । ପୁଣି ରାସ୍ତାକଡରେ ଉଭୟ ସରକାରି ପ୍ରଚେଷ୍ଟାରେ ଓ ବ୍ୟକ୍ତି ବିଶେଷଙ୍କ ପ୍ରଚେଷ୍ଟାରେ ଫୁଲଚାଷ କରାଯାଏ । ଖରାଦିନେ ହାଇୱେରେ ଡ୍ରାଇଭ୍ କଲାବେଳେ ରାସ୍ତାକଡର ଘାସ ପଡିଆର ସଜକଟା ସବୁଜ ରଙ୍ଗ ସାଙ୍ଗକୁ ସ୍ଥାନେସ୍ଥାନେ ସଜାଯାଇଥିବା ସିଜ୍‌ନାଲ ଫୁଲ୍ ପଟାଳି ଗୁଡିକର ମନଲୋଭା ବହୁରଙ୍ଗୀ ଦୃଶ୍ୟ ଦର୍ଶକକୁ ନାନ୍ଦନିକ ଆନନ୍ଦରେ ବିଭୋର କରିଦିଏ । ସହରମାନଙ୍କର ପ୍ରତି ବାସଗୃହ ସାମ୍‌ନାରେ ଘରର ବାସିନ୍ଦାମାନେ ନିଜଆଡୁ ନିଜେ ତିଆରି କରିଥାନ୍ତି ଗୋଲାପ ବାଟିକା ଯୋଉଥିରେ ହରେକ ରକମ ଗୋଲାପ ଚାଷ କରାଯାଇଥାଏ । ଏଠାକା ମାଟି ପାଣି ପବନରେ ଗୋଲାପ ଫୁଲଗୁଡାକ ଏତେ ଏତେ ବଡ ଆକାର ଧାରଣ କରିପାରେ ଦେଖି ଅବାକ୍ ହେବାକୁ ପଡେ ଆମ ଭଳି ଗ୍ରୀଷ୍ମ ଜଳବାୟୁର ଦେଶ ଭାରତରୁ ଆସିଥିବା ପର୍ଯ୍ୟଟକମାନଙ୍କୁ । ପୁଣି ସବୁଠୁ ଅଧିକ ଆଶ୍ଚର୍ଯ୍ୟର ବିଷୟ– ରାସ୍ତାକଡରେ ଫୁଟି ଲୋଟିଥିବା ଏତେ ସଂଖ୍ୟାର ଆଖିଦୃଷ୍ଟିଆ ଜାତିଜାତିର ଲାଲ୍ ଗୋଲାପି ହଳଦିଆ ରଙ୍ଗର ଗୋଲାପ ଫୁଲଗୁଡାକୁ ରାତାରାତି ଚୋରିକରି ନେଇ ପଳେଇବାକୁ ଏ ଦେଶରେ ଚୋର ନଥାନ୍ତି !

ରାସ୍ତାକଡର ସେଇ ଆନନ୍ଦଦାୟକ ଦୃଶ୍ୟ ଦେଖିଦେଖି ଯାଉଥିଲାବେଳେ କିନ୍ତୁ ମୋ ଆଖି ଖୋଜୁଥାଏ ଆଉ ଗୋଟାଏ ପ୍ରଶ୍ନର ଉତ୍ତର– ଏ ସହରର ମଣିଷମାନେ ମୁଖ୍ୟତଃ କେମିତିକିଆ ? ଅର୍ଥାତ୍ ଏ ସହରଟା ଖାଲି ଗୋରାଙ୍କର ନା ସେଥିରେ ଥା'ନ୍ତି କଳା ଆଉ ଆମ ଭାରତୀୟଙ୍କ ପରି ଦକ୍ଷିଣ ଏସିଆ, ଏସିଆର ଲୋକେ– ଯଦି ଅଛନ୍ତି ତେବେ ସେମାନଙ୍କ ସ୍ଥାନ କୋଉଠି– ରେସିଡେନ୍ସିଆଲ୍ ଏରିଆରେ ନା ଡାଉନ୍ ଟାଉନ୍ ଅର୍ଥାତ୍ ବଜାର ଇଲାକାରେ ? ରାସ୍ତାକଡର ଘରଗୁଡାକୁ ଅନାଇ ମୁଁ ଖୋଜୁଥାଏ ସେ ଘରଗୁଡାକର ଅଧିବାସୀ କେମିତିକିଆ ମଣିଷ ହୋଇଥିବେ । କିନ୍ତୁ ବହୁ ସମୟ ଅନିଷା କଲେବି ମଣିଷଟିଏ ନଦେଖି ମୁଁ ପଚାରିଲି କଳ୍ପନା ଦେବୀଙ୍କୁ, "କାଲି ରଥଯାତ୍ରାରେ ଲୋକ କେତେ ହେବେ ଭାବୁଚନ୍ତି ଆପଣ ? ଏ ସହରରେ କ'ଣ ବହୁତ ଆମର ଭାରତୀୟ ଅଛନ୍ତି ଯୋଉମାନେ ଆସିବେ ଠାକୁରଙ୍କ ରଥ ଦଉଡି ଧରି ଟାଣିବାକୁ ?"

ସେ କହିଲେ, "ଆମର ଏ ସହରରେ ପଚିଶବର୍ଷ ତଳେ ଗୋଟିଏ ହିନ୍ଦୁ ମନ୍ଦିର

ହୋଇଥିଲା– ସେ ମନ୍ଦିରଟା ଅବଶ୍ୟ କରାଯାଇଥିଲା ଗୋଟାଏ ପୁରୁଣା ଖ୍ରୀଷ୍ଟିୟାନ୍ ଚର୍ଚ୍ଚକୁ କିଣାଯାଇ ତାକୁ ରିମଡେଲିଂ କରାଯିବା ପରେ । ଗଲାବର୍ଷ ଆମେ ସେ ପୁରୁଣା ମନ୍ଦିରକୁ ଛାଡି ଗୋଟିଏ ଅର୍ଖ ନୂଆ ମନ୍ଦିର ନିର୍ମାଣ କରିଚୁ ଗୋଟାଏ ସୁନ୍ଦର ଓ ବଡ ଏରିଆରେ । ସେ ଜାଗା ନାମ ମ୍ୟାପ୍ଲ ଗ୍ରୋଭ୍ । ଦି'ବର୍ଷ ତଳେ ସେ ମନ୍ଦିରରେ ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି ପ୍ରତିଷ୍ଠା କରାହୋଇଥିଲା ଯେ ହେଲେ ସେ ବର୍ଷ ଘଟିଲା ଏକ ବିପ୍ଘାତ । ସହରର ଲୋଫରଶ୍ରେଣୀର କେତେକ ଟୋକା ରାତିଅଧରେ ମନ୍ଦିରରେ ପଶି ଭଙ୍ଗାରୁଜା କରିଦେଲେ– ଫଳରେ ସେ ବର୍ଷ ଠାକୁରଙ୍କ ରଥଯାତ୍ରା ବନ୍ଦରହିଲା । ପରେ ପରେ ସ୍ଥାନୀୟ ରାଜନୈତିକ ନେତାମାନଙ୍କୁ ବୁଝାଇ ଆମ ଭାରତୀୟ ଲୋକଙ୍କ ସାଙ୍ଗେ ସ୍ଥାନୀୟ ଲୋକଙ୍କର ଗୋଟାଏ ବୁଝାମଣା କରାଗଲା । ମନ୍ଦିରରେ ଠାକୁରମାନଙ୍କ ଅଭିଷେକ ହେବାର ଦ୍ୱିତୀୟବର୍ଷ, ମାନେ ଗତବର୍ଷ ବେଶ୍ ସୁରୁଖୁରୁରେ ରଥଯାତ୍ରା କରାହୋଇଚି ଏ ମନ୍ଦିରରେ । ଗଲାବର୍ଷ ରଥଯାତ୍ରାକୁ ହୋଇଥିଲା ନାହିଁ ନଥିବା ଭିଡ ଯାହା ଦେଖି ଚିଫ୍‌ଗେଷ୍ଟ ହୋଇଥିବା ଏଠାକା ଆମେରିକାନ୍ ଗୋରା ସିନେଟ୍‌ର ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେ ଆମକୁ ପ୍ରତିଶ୍ରୁତି ଦେଇଚନ୍ତି ସ୍ଥାନୀୟ ହିନ୍ଦୁମନ୍ଦିର କାମରେ, ବିଶେଷତଃ ରଥଯାତ୍ରାରେ, ସ୍ଥାନୀୟ ଲୋକେ ପୂର୍ଣ୍ଣମାତ୍ରାରେ ସହଯୋଗ କରିବେ । ମନେହୁଏ ଏ ବର୍ଷ ବହୁତ ଲୋକ ହେବେ । ଆପଣ ଦେଖିବେ ରଥ ଟାଣିବାକୁ କାଲି ବହୁତ ଭିଡ ହେବ ମନ୍ଦିରରେ । ଭାରତୀୟଙ୍କ ଛଡା ବହୁତ ଅଣଭାରତୀୟ ଅଛନ୍ତି ମିନିଆପଲିସ୍‌ରେ– ସେମାନେ ବି ଆସିବେ ଠାକୁରଙ୍କ ରଥଯାତ୍ରା ଦେଖିବାକୁ– ଅନେକ ବି ଟାଣିବେ ରଥ ବଡ ଆଗ୍ରହରେ ।"

ଏମିତି ଗପସପ ଭିତରେ ବେଶ୍ କିଛି ଲମ୍ବା ବାଟ ଡ୍ରାଇଭ୍ କଲା ପରେ ଆମେ ପହଞ୍ଚିଲୁ ଆମର ଗନ୍ତବ୍ୟ ସ୍ଥଳ– ମଲ୍‌ରେ । କଞ୍ଚନା ଗୋଟାଏ ସୁବିଧା ଜାଗାରେ ପାର୍କିଂ ପ୍ଲେସ୍ ଖୋଜି କାର୍ ରଖିଲେ । କହିଲେ, "ଏ ହେଲା ମିନିଆପଲିସ୍‌ର ଦ' ମଲ୍ ଅଫ୍ ଆମେରିକା । ଚାଲନ୍ତୁ ଥରେ ବୁଲି ଦେଇ ଆସିବା ମଲ୍ ଭିତରେ । ପୂରାଟା ତ ବୁଲି ପାରିବେ ନାହିଁ– ଏ ଏକ ବିଶାଳ କ୍ଷେତ୍ର, ଯା'କୁ ଥରକରେ ବୁଲି ଦେଖି ହେବ ନାହିଁ ଗୋଟାଏ ଦିନରେ– ତଥାପି ଟିକେ ଆଖି ପକାଇ ନିଅନ୍ତୁ । କୋଉଠି ଟିକେ ବସି କଫି ପିଇ ପାରିବା ଆମେ । ପରେ ବାହାରିବା– ଦ' ଅଣ୍ଡର୍ ୱାଟର୍ ୱାର୍ଲଡ୍ ଦେଖିବାକୁ । ସେଇଟା ଅଛି ଏ ମଲ୍‌ର ବେସ୍‌ମେଣ୍ଟରେ । ମଲ୍‌ର ପୂରା ବେସ୍‌ମେଣ୍ଟ ହେଲା– ଆକ୍ୱାରିୟମ୍ ।

ମଲ୍ ଭିତରକୁ ଗଲୁ । ପୂର୍ବଥର ଆମେରିକା ଭ୍ରମଣ ସମୟରେ ମୁଁ ବଡଛୋଟ କେତେଟା ସହରର ମଲ୍ ଭିତରେ ବୁଲିଚି– କିନ୍ତୁ ଏଭଳି ବିଶାଳ ମଲ୍ ଦେଖିନଥିଲି । ଏ ଦେଶର ମଲ୍‌ମାନେ ପ୍ରତ୍ୟେକ ଗୋଟାଏ ଗୋଟାଏ ଛୋଟ ସହର ଆଉ ସମଗ୍ର ସହରଟା ଗୋଟିଏ ମାତ୍ର ଛାତ ତଳେ ଥିବାରୁ ଏହାକୁ ଗୋଟାଏ ପ୍ରକାଣ୍ଡ ବାସଗୃହ କହିଲେ ଅତ୍ୟୁକ୍ତି ହେବ ନାହିଁ । ସମଗ୍ର ସ୍ଥାନଟି ଶୀତତାପ ନିୟନ୍ତ୍ରିତ । ଖରାଦିନେ ଏଠି ପ୍ରବଳ ଭିଡ ହୁଏ

ଲୋକଙ୍କର । ବେଶୀ ଭାଗ ଲୋକ ବୁଢାବୁଢୀ ଆଉ ଛୋଟ ପିଲା– ଗ୍ରୀଷ୍ମତାପରୁ ସାମୟିକ ରକ୍ଷାପାଇବାକୁ ସେମାନେ ଚାଲିଆସନ୍ତି ଏଇ ଶୀତତାପ ନିୟନ୍ତ୍ରିତ ଆଶ୍ରୟ ସ୍ଥଳକୁ । ଏଠି ମଧ୍ୟ ସେମାନଙ୍କ ଚିତ୍ତବିନୋଦନ ପାଇଁ ବହୁ ପ୍ରକାର ବ୍ୟବସ୍ଥା କରାଯାଇଥାଏ– ପାର୍କ, ଇନ୍‌ଡୋର୍ ଖେଳ ଜାଗା, କଂପ୍ୟୁଟର୍ ଗେମ୍ ସେଣ୍ଟର୍, ରେସ୍ତୁରାଁ ବ୍ୟତୀତ ଆରାମରେ ଗଛମୂଳେ ବସି ହାୱା ଖାଇବା ପାଇଁ ସ୍ୱତନ୍ତ୍ର ନିରୋଳା ଜାଗା ରଖାଯାଇଥାଏ । ସାମାନ୍ୟ ଦାମ୍‌ର ଟିକେଟ୍ ବା ମାଗଣାରେ ଏସବୁ ଜାଗାରେ ଚିତ୍ତବିନୋଦନ ପାଇଁ ବ୍ୟବସ୍ଥା କରାଯାଇଥାଏ ଏଠି ।

ତା'ଛଡା, ମଲ୍ ହେଲା ବ୍ୟବସାୟ ବାଣିଜ୍ୟର ପେଣ୍ଠ ଜାଗା । ବହୁ ପ୍ରକାର ଜିନିଷ ବିକ୍ରି ପାଇଁ ଦୋକାନ ବଜାରର କେନ୍ଦ୍ର ହେଲା ଏ ଦେଶର ମଲ୍‌ଗୁଡିକ । ଏଠିକା ବଜାରରେ ପିନ୍ କଣ୍ଟାଠୁ ଆରମ୍ଭ କରି ମୋଟର କାର, ଏପରିକି ପ୍ଲେନ୍ ହେଲିକପ୍ଟର୍ ପର୍ଯ୍ୟନ୍ତ ଜିନିଷ କିଣିବାକୁ ମିଳେ । ହୋଟେଲ ରେସ୍ତୁରାଁ ଆଗରେ ହରଦମ୍ ଭିଡ । ପ୍ରାୟ ସବୁଦେଶର ଖାଦ୍ୟ ଏବଂ ପାନୀୟ ଏଠାକାର ରେସ୍ତୁରାଁମାନଙ୍କରେ ମିଳେ । ଦିନତମାମ୍ ଗରାଖଙ୍କ ଭିଡ ଜମିଥାଏ ରେସ୍ତୁରାଁ ସାମ୍‌ନାରେ । ଆମେ ମଲ୍ ଭିତରେ ଟିକେ ବୁଲାବୁଲି କରି ଯାଇ ପହଞ୍ଚିଲୁ ରେସ୍ତୁରାଁ ଏରିଆରେ । ଦେଖିଲି ସବୁଠୁ ବେଶୀ ଭିଡ ଜମିଚି ଇଟାଲିୟାନ୍ ପିଜା ରେସ୍ତୁରାଁ ଆଗରେ । ଏହା ବ୍ୟତୀତ ଚାଇନିଜ୍, ମେକ୍ସିକାନ୍, ଇଣ୍ଡିଆନ୍ ଖାଦ୍ୟପେୟର ରେସ୍ତୁରାଁରେ ମଧ୍ୟ ଧୁମ୍ ବ୍ୟବସାୟ ଚାଲିଥାଏ । ଏସବୁ ବ୍ୟତୀତ ମନୋରଂଜନ ନିମିତ୍ତ ମଲ୍‌ରେ ବହୁ ପ୍ରକାର ବ୍ୟବସ୍ଥା କରାଯାଇଥାଏ । ସ୍ଥାନେ ସ୍ଥାନେ ମ୍ୟାଜିକ୍‌ବାଲାମାନେ ନିଜ କୌଶଳ ପ୍ରଦର୍ଶନ ସହିତ ବ୍ୟବସାୟ ଚଳାଇଥାନ୍ତି । ଚିତ୍ରକରମାନେ ଚିତ୍ର କରୁଥାନ୍ତି । ପୋଟ୍ରେଟ୍ ଆଙ୍କିବା ଶିଳ୍ପୀମାନେ ନିଜ ଗରାଖକୁ ସାମନାରେ ବସାଇ ପୋଟ୍ରେଟ୍ ଆଙ୍କି ଚାଲିଥାନ୍ତି । ହାତ ମୁହଁ ଦେଖି, ଶୁଆ ଥଣ୍ଟରେ କାର୍ଡ (ଟାରୋ କାର୍ଡ) ଉଠାଇ ଲୋକଙ୍କ ଭାଗ୍ୟ ଭବିଷ୍ୟତ କହୁଥିବା ଜ୍ୟୋତିଷମାନେ ମଧ୍ୟ ଏ ଦେଶର ବଡବଡ ମଲ୍‌ମାନଙ୍କରେ ଦେଖିବାକୁ ମିଳନ୍ତି । ମିନିଆପଲିସ୍ ମଲ୍‌ରେ ମଧ୍ୟ ସେ ସବୁର ଅଭାବ ନଥିଲା । ତା'ଛଡା ଥାଏ ପିଲାଙ୍କ ମନୋରଂଜନ ପାଇଁ ନାନା ପ୍ରକାର କଂମ୍ପ୍ୟୁଟର ଖେଳ ବ୍ୟବସ୍ଥା । ଗୋଟାଏ ଜାଗାରେ ଚାଲିଥାଏ ରୋଲର୍‌କୋଷ୍ଟର ରାଇଡ୍‌ସ୍ । ଏ ସବୁ ହେଲା ମେରିଗୋ-ରାଉଣ୍ଡର ପରବର୍ତ୍ତୀ ସଂସ୍କରଣ– ଟାଇମ୍ ମେସିନ୍‌ରେ ବସି ମାନବ ସଭ୍ୟତାର କ୍ରମବିକାଶ ବା ଇତିହାସ ପର୍ଯ୍ୟଟନ ଭଳି ଅଧ୍ୟୟନମୂଳକ ଅଭିଯାନ । ସେଭଳି ରୋଲର୍ କୋଷ୍ଟର ରାଇଡ୍ ଅଭିଜ୍ଞତା ଆମର ଥିଲା ପୂର୍ବରୁ । ୧୯୯୩ରେ ଫ୍ଲରିଡାର ଡିଜ୍‌ନିଲ୍ୟାଣ୍ଡର ଏପକ୍‌ଟ୍-ସେଣ୍ଟର୍‌ରେ ଆମେ ଏପରି ଅନେକ ରାଇଡ ନେଇଥିଲୁ, ତେଣୁ ଏଠାରେ ତାର ପୁନରା-ବୃତ୍ତିର ଆବଶ୍ୟକତା ନଥିଲା । ଚାଲିଲୁ ସିଧା ସେଇଠିକି ଯାହା ଦେଖିବା ଉଦ୍ଦେଶ୍ୟରେ ଆମେ ଆଜି ଘରୁ ବାହାରିଥିଲୁ ସେଇଠିକି ।

ଏଠାରେ ପ୍ରବେଶ ପୂର୍ବରୁ ପ୍ରଥମେ ଟିକେଟ୍ କରିବାକୁ ପଡେ । ଗୋଟିଏ ଟିକେଟ୍‌ର ଦାମ୍ ବହୁତ ବେଶୀ– ବୋଧହୁଏ ଚବିଶ ପଚିଶ ଡଲାର ! ଆମକୁ ଠାଏ ଠିଆକରିଦେଇ କଞ୍ଚନା ଦେବୀ ବାହାରିଗଲେ ଟିକେଟ୍ କାଟିବାକୁ । କାଉଣ୍ଟର ଆଗରେ ବେଶ୍ ବଡ ଭିଡ । ଅନେକ ସମୟ ପରେ ସେ ଆମ ତିନିଜଣଙ୍କ ପାଇଁ ଟିକେଟ୍ ନେଇ ଫେରି ଆସିଲେ । ଏହାପରେ ଆମ ଚାଲିଲୁ ଅଣ୍ଡରଗ୍ରାଉଣ୍ଡକୁ ଯାଇଥିବା ଗୋଟିଏ ଯାନ୍ତ୍ରିକ ସିଢି ବା ଏସ୍‌କାଲେଟର୍ ପାଖକୁ । ଏସ୍‌କାଲେଟର୍ ଆମକୁ ନେଇ ଚାଲିଲା– ବହୁ ତଳେ ଥିବା ମଲ୍‌ର ବେସ୍‌ମେଣ୍ଟକୁ । ସେଠି ଅପେକ୍ଷା କରିଥାଏ ଆଉ ଏକ ଚଳନ୍ତିଯାନ ଯାହାକୁ କୁହାଯାଏ The moving side walk । ଏଇ ଚଳନ୍ତି ଚଲାପଥରେ ଗୋଡ ଥୋଇବା ମାତ୍ରେ ତାହା ଆମକୁ ନେଇ ଚାଲିଲା ଗୋଟିଏ ନିର୍ଦ୍ଦିଷ୍ଟ ରାସ୍ତାରେ । ସେ ରାସ୍ତାର ଦୁଇପଟେ ଦଶଫୁଟ ଉଚ୍ଚର ମୋଟା କାଚ ତିଆରି କାନ୍ଥ । କାଚ କାନ୍ଥର ଭିତରକୁ ନିଘା ପକେଇବା ମାତ୍ରେ ଦର୍ଶକର ଦୃଷ୍ଟିଭୂମି ମୁହୂର୍ତ୍ତକ ଭିତରେ ରୂପାନ୍ତରିତ ହୁଏ ପାର୍ଥିବରୁ ସଂପୂର୍ଣ୍ଣ ଅପାର୍ଥିବକୁ । ଅବାକ୍ ଦର୍ଶକ ତା'ପରେ ସହଯାତ୍ରୀ ବନିଯାଏ ବିଚିତ୍ର ଆକାର ଆକୃତି ଆଉ ରଂଗର ସାମୁଦ୍ରିକ ପ୍ରାଣୀମାନଙ୍କର । ଖୋଟାଏ ସାମାନ୍ୟ କାଚକାନ୍ଥର ବ୍ୟବଧାନରେ ରହି ଦର୍ଶକ ଦେଖିବାକୁପାଏ କାନ୍ଥ ଆରପାଖେ ନିଶ୍ଚିନ୍ତରେ ସନ୍ତରଣରତ ପ୍ରକାଣ୍ଡକାୟ ଗୋଟାଏ ଟାଇଗର୍ ସାର୍କ ବା ଅକ୍ଟୋପସ୍‌ର । ଜନ୍ତୁଟା ସିଧା ଢଳଢଳ କରି ଅନେଇ ଥିବ ତମ ମୁହଁକୁ । ତା' ସାଙ୍ଗେ ଆଖିକୁ ଆଖି ମିଳେଇ ଚାହିଁଲେ ମନେହେବ ସେ ଜନ୍ତୁ ତମକୁ ଦିଶିବ ଭୂତପରି ଅଥଚ ଅବାସ୍ତବ ନୁହେଁ; ସଂପୂର୍ଣ୍ଣ ବାସ୍ତବ । ଛୋଟଛୋଟ ପିଲାମାନେ ସେ ଜନ୍ତୁମାନଙ୍କ ସାଙ୍ଗେ କଉତୁକପୂର୍ଣ୍ଣ ଆଳାପ କରିବା ସହିତ ସେମାନଙ୍କୁ ଗେଲ କରିବା ବି ଦେଖିଲି । ଶୁଣିଲି– ଏ ଆକ୍ୱାରିୟମ୍‌ରେ ଅଛନ୍ତି ପ୍ରାୟ ଦଶହଜାର ସାମୁଦ୍ରିକ ପ୍ରାଣୀ – ସାର୍କ ଠାରୁ ସ୍ରିମ୍ପ୍ ପର୍ଯ୍ୟନ୍ତ ! ଏହିପରି ବିବିଧ ଜାତି ପ୍ରଜାତିର ଜୀବନ୍ତ ସାମୁଦ୍ରିକ ଜୀବଙ୍କର ବୈଚିତ୍ର୍ୟମୟ ସାମୂହିକ ଜୀବନ୍ତ ପ୍ରଦର୍ଶନୀ ହେଲା ଏ ବିଶାଳ ଭୂତଳ ଆକ୍ୱାରିୟମ୍ ଯାହାକୁ ଦେଖିବାକୁ ଲାଗିଥାଏ ଲୋକଙ୍କ ମେଳା ଏଠିକାର ଏଇ ମଲ୍ ଅଫ୍ ଆମେରିକା ଆକ୍ୱାରିୟମ୍‌ରେ । ଏତେଗୁଡାଏ ଜୀବନ୍ତ ପ୍ରାଣୀଙ୍କୁ ସଂଗ୍ରହକରାଯିବା, ସେମାନଙ୍କ ପାଇଁ ଖାଦ୍ୟ ବ୍ୟବସ୍ଥାଠାରୁ ଆରମ୍ଭକରି ସେମାନଙ୍କର ଦୈନନ୍ଦିନ ଯତ୍ନନେବା ସହିତ ସ୍ୱାସ୍ଥ୍ୟ ସମସ୍ୟା ଇତ୍ୟାଦିର ସମାଧାନ କରିବା କିଛି ସହଜ କାମ ନୁହେଁ । ଏ ବିଶାଳ ଆକ୍ୱାରିୟମ୍‌ର ରକ୍ଷଣାବେକ୍ଷଣ କରୁଥିବା କର୍ମୀ ଓ ପରିଚାଳକଙ୍କ ଦାୟିତ୍ୱବୋଧ ପ୍ରତି ସମ୍ମାନ ଜଣାଇବା ପାଇଁ ମୁଣ୍ଡ ନଇଁଗଲା ମୋର ।

ସବୁଠୁ ଆଶ୍ଚର୍ଯ୍ୟଜନକ ହେଲା ଏ ଆକ୍ୱାରିୟମ୍‌ର ଆକାର । ଶୁଣିଲୁ – ମିନିଆପଲିସ୍ ମଲ୍‌ର ସାରା ବେସ୍‌ମେଣ୍ଟଟା ଯେତିକି ଏ ଆକ୍ୱାରିୟମ୍‌ର ଆକାର ସେତିକି । ଆଉ ମିନିଆପଲିସ୍ ମଲ୍‌ଟା ଯଦି ହେଲା ଧରାଯାଉ ଆମ ଭୁବନେଶ୍ୱରର ଶହୀଦନଗର, ଯୋଉଟା ଫାଷ୍ଟ୍

ଫ୍ଲୋର୍‌ରେ, ତେବେ ତା' ଗ୍ରାଉଣ୍ଡଫ୍ଲୋର୍‌ଟା ହେଲା– The Under Water World of the Mall of America ! ସେତିକି ପ୍ରକାଣ୍ଡ ଏ ମାନବକୃତ ସାମୁଦ୍ରିକ ପ୍ରାଣୀ ଜଗତ । ଧନ୍ୟ ଆମେରିକା ଆଉ ଧନ୍ୟ ତୋ' ବୈଷୟିକ ଜ୍ଞାନକୌଶଳର ପରାକାଷ୍ଠା !

ସେଦିନ ତମାମ୍ ଆମେ ବୁଲିଲୁ ସେ ମଲ୍‌ର ଚତୁର୍ଦ୍ଦିଗ । ଗୋଟାଏ ଇଟାଲିୟାନ୍ ରେଷ୍ଟୁରାଁ ସାମ୍‌ନା ମନୋରମ ପାର୍‌ଲର୍‌ରେ ବସି ପିଜା ଖାଇଲୁ ଆଉ କୋକ୍ ପିଇଲୁ । ସନ୍ଧ୍ୟାକୁ ଫେରିଲୁ ଘରକୁ । ଦେହ ଖରାପ ଥିବା ସତ୍ତ୍ୱେ କଞ୍ଚନାଦେବୀ ଆମ ସାଙ୍ଗେ ସାରା ଦିନ କଟାଇଲେ । ସନ୍ଧ୍ୟାରେ ସିତିକଣ୍ଠବାବୁ ଆମ ସାଙ୍ଗେ ଡିନର୍‌ରେ ମିଶିଲେ । ଏହାପରେ ଅନେକ ସମୟ କଟିଲା ତାଙ୍କ ସହିତ ଆଳାପ ଆଲୋଚନାରେ ।

## ମିନିଆପଲିସ୍‌ରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା

– ତା. ୧୩ ଜୁଲାଇ ୨୦୦୮ ।

ଆଜି ଏଠାକାର ହିନ୍ଦୁ ମନ୍ଦିରରେ ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଉତ୍ସବ । କହିରଖେ– ଏବର୍ଷ ପାଂଜିରେ ଏ ତିଥି ପଡିଥିଲା ଜୁଲାଇ ୪ତାରିଖରେ । ବୋଧହୁଏ ଆଜି ଜଗନ୍ନାଥଙ୍କ ବାହୁଡାଯାତ୍ରା ଚାଲିଥିବ ତେଣେ ପୁରୀରେ । ଏମିତି ବେତିଥିରେ ଏଠି ଆମେରିକାରେ କାହିଁକି ଠାକୁରଙ୍କ ରଥଯାତ୍ରା କରାଯାଉଚି ସେ ନେଇ ବହୁ ଅଭିଯୋଗ ଶୁଣାଯାଏ ଆମ ଓଡିଶାରେ । କିନ୍ତୁ ଯା'ର ମୂଳ କାରଣଟି ମତେ ଜଣାଥିଲା ବହୁ ବର୍ଷ ପୂର୍ବରୁ । ମୂଳ କାରଣ ହେଲା– ଛୁଟି । ବିନା ଛୁଟିରେ ବିଦେଶରେ ହିନ୍ଦୁମାନେ ଏକଜୁଟ୍ ହୋଇପାରନ୍ତି ନାହିଁ ମନ୍ଦିରରେ କୌଣସି ବିଶେଷ ପର୍ବପର୍ବାଣି ଉପଲକ୍ଷ୍ୟେ । ପୁଣି ରଥଯାତ୍ରା ଏଭଳି ଏକ ସାମଜିକ ଉତ୍ସବ ଯୋଉଠି ବହୁସଂଖ୍ୟାରେ ଜନସମାଗମ ଅନିବାର୍ଯ୍ୟ । ତେଣୁ ଆମେରିକାର ଓଡିଆମାନେ ଠାକୁର୍‌ଙ୍କ ରଥଯାତ୍ରା ପାଇଁ ପାଂଜିରୁ ତିଥି ଖୋଜିବା ବଦଳରେ ଅପେକ୍ଷା କରନ୍ତି ଗୋଟାଏ ସୁବିଧା ଦିନକୁ ଯୋଉଦିନ ହୁଏତ ସରକାରି ଛୁଟି ଥିବ ନଚେତ୍ – ୱିକ୍ ଏଣ୍ଡ୍ ! ଛୁଟିଦିନମାନଙ୍କରେ ଏଠାକର ହିନ୍ଦୁମାନେ ସାଧାରଣତଃ ସମସ୍ତେ ଆସନ୍ତି ସ୍ଥାନୀୟ ମନ୍ଦିରକୁ, ତେଣୁ ସେଇଦିନହିଁ ରଥଯାତ୍ରା ପାଇଁ ଦିନ ପ୍ରକୃଷ୍ଟ । ଆଜି ଠାକୁରଙ୍କ ବାହୁଡା ରଥଯାତ୍ରା ପଡୁଥାଏ ରବିବାରରେ । ତେଣୁ ଆଜିର ରବିବାରଟି ଥିଲା ପ୍ରକୃଷ୍ଟଦିନ ମିନିଆପଲିସ୍ ସହର ନିବାସୀ ପ୍ରବାସୀ ଭାରତୀୟଙ୍କ ରଥଯାତ୍ରା ଉତ୍ସବ ପାଳନ ଉପଲକ୍ଷ୍ୟେ ।

ବଡି ସକାଳୁ ସିତିକଣ୍ଠ ବାବୁ ଆମ ରୁମ୍ କବାଟ ଠକ୍‌ଠକ୍ କଲେ । କହିଲେ, ଆଜ୍ଞା, ଶୀଘ୍ର ପ୍ରସ୍ତୁତ ହେଇଯାଆନ୍ତୁ । ଗାଧୁଆପାଧୁଆ ସାରିଲେ ଆପଣଙ୍କ ସାଙ୍ଗେ ଆଉ ଗୋଟାଏ କାମ ଅଛି । ଦୟା କରି ମୋ ରୁମ୍‌କୁ ଆସନ୍ତୁ ।

ମୁଁ ଯଥା ସମୟରେ ଉପସ୍ଥିତ ହେଲି । ସିତିକଣ୍ଠବାବୁ ମତେ ବିସ୍ମିତକଲେ ଯେତେବେଳେ ମୋ' ପାଇଁ ରଖାଯାଇଥିବା ଗୋଟିଏ ସ୍ୱତନ୍ତ୍ର ସେଟ୍ ଡ୍ରେସ୍ ସାଙ୍ଗକୁ ଗୋଟିଏ

ମୁକୁଟ ମୋ ହାତକୁ ବଢେଇଦେଇ କହିଲେ, "ଆପଣ ଏ ପୋଷାକ ଓ ମୁକୁଟଟିକୁ ପିନ୍ଧିବେ । ଏ ହେଲା ପୁରୀ ରାଜାଙ୍କ ଛେରାପହଁରା ସମୟର ପୋଷାକ । ଆମର ଏଠି ଏଇ ବିଧି । ଯେ ହେବେ ମୁଖ୍ୟଅତିଥି ସେ ଆମ ଗଜପତିଙ୍କ ଭୂମିକା ତୁଲାଇବେ । ଗତବର୍ଷ ଆମ ରାଜ୍ୟର ସିନେଟର୍ ହେଇଥିଲେ ମୁଖ୍ୟଅତିଥି । ସେ ଜଣେ ଗୋରା ଆମେରିକାନ୍ । ସେ ଏଇ ବେଶରେ ଯେତେବେଳେ ଯାଇ ଠାକୁରଙ୍କ ରଥରେ ଛେରା ପହଁରା ପାଇଁ ଆବିର୍ଭୂତ ହେଲେ ଲୋକଙ୍କ ଭିତରେ ଖେଳିଗଲା ଗୋଟାଏ ନାହିଁ ନଥିବା ଉଚ୍ଚାଟନ । ଆମ ଓଡିଆଙ୍କ ଜୟଜଗନ୍ନାଥ, ଜୟ ଗଜପତି ଡାକରା ଆଉ ହୁଳହୁଳି ଶବ୍ଦ ଶୁଣି ଉପସ୍ଥିତ ଜନତା ଆଉ ସଂଭାଳି ପାରିଲା ନାହିଁ । ଜୟ ଜଗନ୍ନାଥ, ଜୟ ଗଜପତି ସ୍ଲୋଗାନ୍‌ରେ ଗଗନ ପବନ ହେଲା ପ୍ରକମ୍ପିତ !

ଆପଣ ଜାଣନ୍ତି ଏ ସହରରେ ସାରା ପୃଥିବୀର ବହୁଦେଶର ଲୋକ ରହନ୍ତି । ତେଣୁ ଏଠି ରଥଯାତ୍ରାକୁ ଜନସମାଗମ ହୁଏ ଯାହାଙ୍କ ଭିତରେ ବହୁ ଧର୍ମ ଓ ସଂପ୍ରଦାୟ ଏବଂ ବର୍ଣ୍ଣର ଲୋକ ଏକଯୁଟ ହୁଅନ୍ତି । ସେମାନଙ୍କ ଭିତରେ ଅଣହିନ୍ଦୁଙ୍କ ସଂଖ୍ୟା ବହୁତ । ଗଲାବର୍ଷ ଏଠି ଆମ ହିନ୍ଦୁମନ୍ଦିରରେ ରଥଯାତ୍ରା ବୋଲି କ'ଣ ଗୋଟାଏ ବିଚିତ୍ର ଉତ୍ସବ ହେଉଚି ଶୁଣି ସେମାନେ ଆସିଥାନ୍ତି ଦେଖିବାକୁ । ସେମାନେ ସମସ୍ତେ ତାଙ୍କ ଲୋକ ପ୍ରତିନିଧି ସିନେଟର୍‌ଙ୍କୁ ରଜାବେଶରେ ଦେଖି ଏମିତି ଉତ୍ସାହିତ ହୋଇପଡିଲେ ଯେ ରଥ ଟାଣିବାକୁ ଆମ ଓଡିଆଙ୍କୁ ବି ରଥ ଦଉଡି ଅଣ୍ଟିଲା ନାଇଁ । ଏଇଥିରୁ ବୁଝିବେ ଆଜି କୋଉ ଭୂମିକାରେ ଅବତୀର୍ଣ୍ଣ ହେବାକୁ ଯାଉଚନ୍ତି ଆପଣ । ତେଣୁ ଦୟାକରି ଏ ରାଜା ପୋଷାକଟିକୁ ସମସ୍ତ ମର୍ଯ୍ୟାଦା ଆଉ ଭାବ ଭକ୍ତି ବିନୟର ସହିତ ପିନ୍ଧିବେ । ଶହଶହ ଲୋକଙ୍କ ଆଖି ଆଜି ଖାସ୍ ଆପଣଙ୍କ ଉପରେହିଁ ଠୁଳହେବ । ଆମ ଓଡିଆମାନଙ୍କ ଗର୍ବ ଓ ଗୌରବର ସିମ୍ବଲ୍ ଗଜପତି ମହାରାଜାଙ୍କ ଭୂମିକା ତୁଲାଇବେ ପରା ଆପଣ ଆଜି ! ଆଚ୍ଛା, ତେବେ ମୁଁ ଚାଲିଲି । ମତେ ଏଇଲେ ବହୁ କାମ କରିବାକୁ ପଡିବ ସେଠି ମନ୍ଦିରରେ । କଳ୍ପନା ଆପଣମାନଙ୍କୁ ନେଇ ଠିକ୍ ସମୟରେ ସେଠି ପହଞ୍ଚେଇଦବ. . ."

ସିତିକଣ୍ଠବାବୁ ଚାଲିଗଲେ ମନ୍ଦିରକୁ ତାଙ୍କ କାର୍‌ରେ । ମୁଁ ଓ ନିରୁପମା ଶୀଘ୍ରଶୀଘ୍ର ପ୍ରସ୍ତୁତ ହେଇଗଲୁ । ପ୍ରାୟ ସାଢେ ନ'କୁ କଳ୍ପନା ଆମକୁ ସାଥିରେ ନେଇ ବାହାରିଲେ ତାଙ୍କ କାର୍‌ରେ ମନ୍ଦିର ଅଭିମୁଖେ ।

## ମିନିସୋଟା ହିନ୍ଦୁମନ୍ଦିର

ପ୍ରାୟ ଘଣ୍ଟାଏ ଡ୍ରାଇଭ୍ ପରେ ଆମେ ପହଞ୍ଚିଲୁ ସହରତଳି ଏକ ଇଲାକାରେ । ଜାଗାଟାର ନାମ ମ୍ୟାପ୍ଲଗ୍ରୋଭ୍ । ମ୍ୟାପ୍ଲଗ୍ରୋଭ୍ ନାଁଟି ଶୁଣିଲାବେଳୁ ମୋ ଭିତରେ ଏକ ରୋମାଞ୍ଚକର କଂପନ ଜାତ ହୋଇ ଯାଇଥାଏ– ସତେକି ମ୍ୟାପ୍ଲଗ୍ରୋଭ୍ ବା ମ୍ୟାପ୍ଲକୁଞ୍ଜ

ହେଲା ଏକ କୁଂଜବନ ! ଆମେ ଭାରତୀୟମାନେ କୁଂଜବନର ନାମବାଚକ ଧ୍ୱନି ସହିତ ଅତ୍ୟନ୍ତ ମାର୍ମିକଭାବେ ପରିଚିତ । କୁଂଜବନ ହିଁ ବୃନ୍ଦାବନ ଆମ ଚେତନାରେ । ସେ ଯାହାହେଉ, ମିନିସୋଟାର ପ୍ରବାସୀ ଭାରତୀୟମାନେ ପ୍ରତିଷ୍ଠା କରିଥିଲେ ଏଇ ମ୍ୟାପ୍ଲ କୁଂଜରେ ଗୋଟିଏ ନୂଆ ମନ୍ଦିର ଯାହାର ନାମ The Hindu Temple of Minnesota । ମନ୍ଦିରଟି ନୂଆ ହେଲେବି ଏହାର ଇତିହାସ ଆଧୁନିକ ଆମେରିକାରେ ହିନ୍ଦୁଧର୍ମର ପ୍ରସାର ପ୍ରଚାର ସହିତ ସଂପୃକ୍ତ ହେଲାଣି ପ୍ରାୟ ତିରିଶବର୍ଷ ତଳୁ । ୧୯୭୮ରେ ଏ ସହରର ପ୍ରବାସୀ ଭାରତୀୟମାନେ ମିନିଆପଲିସ୍‌ର ଗୋଟିଏ ଦୁଇଶହ ବର୍ଷର ପୁରୁଣା ଚର୍ଚ୍ଚକୁ ସ୍ଥାନୀୟ ଖ୍ରୀଷ୍ଟିୟାନ୍ ସଂପ୍ରଦାୟଠାରୁ ଖରିଦ୍ କରିନେଇ ସେଇଠି ପ୍ରତିଷ୍ଠା କରିଥିଲେ ଏକ ହିନ୍ଦୁମନ୍ଦିର । ଦୁଇବର୍ଷ ତଳେ ୨୦୦୬ରେ ସେମାନେ ସେଇ ପୁରୁଣା ମନ୍ଦିରଟିକୁ ପରିତ୍ୟାଗ କରି ଏଠି ମ୍ୟାପ୍ଲଗ୍ରୋଭ୍‌ର ଏଇ ବିସ୍ତୀର୍ଣ୍ଣ ଅଂଚଳରେ ପ୍ରତିଷ୍ଠା କରିଛନ୍ତି ଏଇ ହିନ୍ଦୁତୀର୍ଥ ଯାହାର ବାହ୍ୟ ରୂପକୁ ମୁଁ ଦେଖୁଥିଲି ସେତେବେଳେ ମୋ ଆଖି ଆଗରେ ସେଇ ବିଶାଳ ନୂଆ ମନ୍ଦିରର ଆବିର୍ଭାବ ସହିତ ।

ଗାଡିରୁ ଓହ୍ଲାଇବାମାତ୍ରେ ଆଖି ଆଗରେ ଉଭାହେଲା ମନ୍ଦିରର ପୂର୍ଣ୍ଣାଙ୍ଗ ରୂପ । ପ୍ରଥମଦେଖାରୁ ମନେହେଲା ଏ ମଧ୍ୟ ଗୋଟିଏ ଦକ୍ଷିଣ ଭାରତୀୟ ସ୍ଥାପତ୍ୟଶୈଳୀ (ଆର୍କିଟେକ୍‌ଚର୍)ରେ ଗଢା ମନ୍ଦିର । ଆମେରିକାର ଅଧିକାଂଶ ସହରର ହିନ୍ଦୁମନ୍ଦିର (କେବଳ ହଣ୍ଟସ୍‌ଭିଲ୍‌ର ଓଡିଶୀ ଷ୍ଟାଇଲ୍‌ର ଜଗନ୍ନାଥ ବା ସର୍ବଜନ ମନ୍ଦିର ବ୍ୟତୀତ) ଦକ୍ଷିଣଭାରତୀୟ ଶିଳ୍ପପଦ୍ଧତିରେ ଗଢା । ତାର କାରଣ ଅଧୁନା ଆମେରିକାରେ ପ୍ରବାସୀ ଭାରତୀୟଙ୍କ ଭିତରେ ଦକ୍ଷିଣଭାରତୀୟ ହିନ୍ଦୁମାନେ ହେଲେ ସର୍ବବୃହତ ଧନଶାଳୀ ଆଉ ସ୍ୱଧର୍ମ ସଂରକ୍ଷଣ ପାଇଁ ସର୍ବାଧିକ ସଂବେଦନଶୀଳ ଏଥିନିକ୍ ଗୋଷ୍ଠୀ । ଏମାନେ ବିଦେଶରେ ନିଜର ଧାର୍ମିକ ପରିଚୟ ପ୍ରତିଷ୍ଠା ପାଇଁ ସର୍ବଦା ଯତ୍ନଶୀଳ । ମନ୍ଦିର ଗଠନ ଦିଗରେ ଏମାନଙ୍କର ଆଶ୍ଚର୍ଯ୍ୟଜନକ ବଦାନ୍ୟତା ଓ ପୃଷ୍ଠପୋଷକତା ଏ ଦେଶର ଅନ୍ୟ ସମସ୍ତ ପ୍ରବାସୀ-ଭାରତୀୟଙ୍କ ପାଇଁ ଆଦର୍ଶ ପାଲଟି ସାରିଚି । ଫଳରେ ବର୍ତ୍ତମାନ ଆମେରିକାରେ ପ୍ରାୟ ପ୍ରତି ବଡ ସହରରେ ପ୍ରତିଯୋଗିତା ମୂଳକ ଭାବେ ହିନ୍ଦୁ ମନ୍ଦିର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିବା ଦୃଶ୍ୟ ମୁଁ ୧୯୯୩ରୁ ଅଦ୍ୟାବଧି ମୋର ପାଞ୍ଚଥରର ଆମେରିକା ଭ୍ରମଣ ସମୟରେ ଲକ୍ଷ୍ୟ କରି ଆସିଚି ।

ମନ୍ଦିର ଆଡକୁ ଅନାଇ ଠିଆହେଇଥିବା ଦେଖି କଳ୍ପନା ମୋତେ ପଚାରିଲେ, "ମଉସା ! କ'ଣ ଦେଖୁଚନ୍ତି ? ମନ୍ଦିରଟା ଆମ ଓଡିଶାର ପୁରୀ ମନ୍ଦିର ଭଳି ଦିଶୁନି ବୋଲି ମନ କଷ୍ଟ କରୁଚନ୍ତି କି ? କୁଆଡୁ ହବ ଯେ ? ଏ ସହରରେ ଆମ ଓଡିଆଙ୍କ ସଂଖ୍ୟା ପରା ଆଙ୍ଗୁଠିରେ ଗଣିଦେଇ ହବ । ଏଠି ସଂଖ୍ୟାଗରିଷ୍ଠ ହେଲେ ଦକ୍ଷିଣ-ଭାରତୀୟ । ତା' ତଳକୁ ହିନ୍ଦୁସ୍ଥାନୀ । ଗୁଜୁରାଟି ମଧ୍ୟ କମ୍ ନାହାନ୍ତି । ଆଉ, ଆପଣ

ଦେଖିଥିବେ ଆମେରିକାରେ ଏଇଲେ ଯେତେ ଯେତେ ନୂଆ ନୂଆ ହିନ୍ଦୁମନ୍ଦିର ଗଢାଚାଲିଚି ସେଠିକା ମନ୍ଦିରର ପୃଷ୍ଠପୋଷକ ହେଲେ ବେଶୀ ଭାଗ ଦକ୍ଷିଣଭାରତୀୟ । ଆପଣ ତ ଜାଣନ୍ତି ଦକ୍ଷିଣଭାରତୀୟମାନେ ଭାରି ରକ୍ଷଣଶୀଳ । ସେଇମାନେ ହିଁ ପ୍ରକୃତରେ ଭାରତରେ ଆଉ ଭାରତ ବାହାରେ ଆମ ହିନ୍ଦୁଧର୍ମକୁ ବଞ୍ଚେଇ ରଖିଚନ୍ତି ଆଜିର ଧର୍ମଛଡା ଯୁଗରେ ଯାହାକୁ କହୁଚନ୍ତି ମଡର୍ଣ୍ଣ-ଯୁଗ । ସେଇମାନେ ହିଁ ଯୁଆଡେ ଯାଆନ୍ତି ନିଜକୁ ହିନ୍ଦୁ ବୋଲି ନିଃସଂକୋଚରେ ଚିହ୍ନା କରାନ୍ତି ଆଉ ନିଜ ଭାଷା ସଂସ୍କୃତିକୁ ବଜାୟ ରଖନ୍ତି । ସେମାନେ ମନ୍ଦିର ନିର୍ମାଣ କରନ୍ତି ନିଜ ପଇସାରେ ଆଉ ନିଜ ଦେଶରୁ ଖାଣ୍ଟି ବ୍ରାହ୍ମଣ ପୂଜାରି (ପ୍ରିଷ୍ଟ) ଆଣି ସେମାନଙ୍କୁ ନିଯୁକ୍ତି ଦିଅନ୍ତି ଏଠି ଆମେରିକା ହଉ ବା ଯୋଉ ବିଦେଶ ଜାଗା ହଉ ସେଠାରେ । ଏଠି ଏ ମନ୍ଦିରଟି ବି ସେଇ ଦକ୍ଷିଣ ଭାରତୀୟମାନଙ୍କ ଉଦ୍ୟମରୁ ହେଇପାରିଚି ସଂଭବ । ତେବେ ଆପଣ ଶୁଣିଲେ ଖୁସିହେବେ ନିଶ୍ଚୟ ଯେ ଏ ମନ୍ଦିର ଭିତରେ ଏକ ବଢିଆ ନୂଆ ଓଡିଶୀ ଷ୍ଟାଇଲ୍ ମନ୍ଦିର ତିଆରିକରି ଆମେ ପ୍ରତିଷ୍ଠା କରିଚୁ ଆମ ଓଡିଆଙ୍କ ଉପାସ୍ୟ ଠାକୁର ଶ୍ରୀ ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି । ଆସନ୍ତୁ ଦେଖିବେ– ମନ୍ଦିର ଭିତରେ ପୂଜା ଆରମ୍ଭ ହେଇଗଲାଣି । ଶୁଣୁଚନ୍ତି ନା ଶଂଖ ମୃଦଙ୍ଗ ଝଂଜ ହରିବୋଲ ହୁଳହୁଳି ଚାଲିଲାଣି ! ଆଉ ଶୁଣନ୍ତୁ ଆମ ଓଡିଆଣୀମାନେ କେଡେ ଜୋର୍‌ରେ ହୁଳହୁଳି ପକାଉଚନ୍ତି ! ଚାଲନ୍ତୁ ଚାଲନ୍ତୁ, ତେଣେ ଖୋଜାପଡିବଣି ଆପଣଙ୍କୁ । ଆପଣ ପରା ଛେରାପହଁରା କରିବେ ? ଶୀଘ୍ର ଯାଇ ପୋଷାକ ପିନ୍ଧିପକାନ୍ତୁ । ସେ ମୁକୁଟଟା ଯୋଉଟା ଆପଣଙ୍କୁ ଇଏ ଦେଇଥିଲେ ଆଣିଚନ୍ତିଟି ? କୋଉଠି କାହିଁ ?”

ଆମେ ତରବର ହେଇ ଚାଲିଲୁ ଗୋଟାଏ ଲମ୍ବା ଅଳିନ୍ଦ (କରିଡର୍) ବାଟେ ମନ୍ଦିରର ବିଶାଳ ମୁଖଶାଳା ବା ଗୋପୁର ଭିତରକୁ । ଏ ଏକ ବିରାଟ ହଲ୍ ଯାହା ଭିତରେ ଦେଖିବାକୁ ମିଳିଲା ଧାଡିଧାଡି ହେଇ ନିର୍ମିତ ହୋଇଥିବା ଅନେକଗୁଡିଏ ସ୍ୱତନ୍ତ୍ର ମନ୍ଦିର । ଏଇ ମନ୍ଦିର ଭିତରେ ପ୍ରତିଷ୍ଠା ପାଇଥାନ୍ତି ଆମ ହିନ୍ଦୁମାନଙ୍କର ମୁଖ୍ୟ ଆରାଧ୍ୟ ଦେବଦେବୀଙ୍କ ସମେତ ଆହୁରି ଅନେକ ପାର୍ଶ୍ୱ-ଦେବତାଙ୍କ ବିଗ୍ରହ । ଏହା ସହିତ ମଧ୍ୟ ସ୍ୱତନ୍ତ୍ର ମନ୍ଦିରମାନଙ୍କରେ ବିରାଜମାନ ହୋଇଥିବା ଦେଖିଲି କେତେକ ହିନ୍ଦୁ ସନ୍ଥଙ୍କ ସମେତ ଜୈନମାନଙ୍କର ଆରାଧ୍ୟ ଶ୍ରୀ ମହାବୀରଙ୍କ ଏକ ପ୍ରତିମୂର୍ତ୍ତି । ଲକ୍ଷ୍ୟକଲି ସେଇ ବିରାଟ ହଲ୍ ଭିତରେ ପ୍ରତିଷ୍ଠାପାଇଛି ସମୁଦାୟ ୧୯ଟି ସ୍ୱତନ୍ତ୍ର ମନ୍ଦିର ଭିତରେ ୧୯ଟି ହିନ୍ଦୁବିଗ୍ରହ । ପାଠକମାନଙ୍କର ଗୋଚରାର୍ଥେ ସେସବୁର ଏକ ତାଲିକା ନିମ୍ନରେ ଉଲ୍ଲେଖ କରୁଚି–

## ମିନିସୋଟା ହିନ୍ଦୁମନ୍ଦିର, ଦେବଦେବୀ ଏବଂ ସନ୍ଥ ବିଗ୍ରହ

ପ୍ରଥମେ ମନ୍ଦିର ଭିତରେ ପହଞ୍ଚି ଗର୍ଭଗୃହରେ ପ୍ରତିଷ୍ଠିତ ଦେବଦେବୀଙ୍କ ବିଗ୍ରହମାନଙ୍କର ଦର୍ଶନ ଉଚିତ ମନେକଲି । ଏକ ବିଶାଳ ହଲ୍‌ର ଚାରିକାନ୍ଥକୁ ଆବୋରି ସ୍ୱତନ୍ତ୍ର ମେଢ

ଭିତରେ ଦେବ ବିଗ୍ରହମାନଙ୍କୁ ପ୍ରତିଷ୍ଠାକରାଯାଇଥାଏ । ପ୍ରଥମେ ଦର୍ଶନକଲି ଶ୍ରୀ ବରଦରାଜଙ୍କୁ । ଏ ହେଉଚନ୍ତି ଦକ୍ଷିଣ ଭାରତର କାଂଚିପୁରମ୍‌ର ଭଗବାନ୍ ଶ୍ରୀ ନାରାୟଣଙ୍କ ପ୍ରତିମୂର୍ତ୍ତି । ନାରାୟଣ ବା ବରଦରାଜ ହେଲେ ହେଲେ ମଧ୍ୟ ମନ୍ଦିରର ମୁଖ୍ୟ ଦେବତା । ଏହାଙ୍କ ଗୋଟିଏ ପାର୍ଶ୍ୱରେ ଅବସ୍ଥିତ ଶ୍ରୀଲକ୍ଷ୍ମୀ ବା ଶ୍ରୀଦେବୀଙ୍କ ପାଇଁ ଥାଏ ସ୍ୱତନ୍ତ୍ର ମନ୍ଦିର । ଅପରପାର୍ଶ୍ୱରେ ଭୂଦେବୀ ମନ୍ଦିର-ନାରାୟଣଙ୍କ ଅନ୍ୟତମ ପାର୍ଶ୍ୱଦେବୀ । ଦକ୍ଷିଣ ଭାରତରେ ଏହାଙ୍କ ନାମ– ଶ୍ରୀ ଅଣ୍ଡଲ । ପରବର୍ତ୍ତୀ ମନ୍ଦିର ଶ୍ରୀ ଗଣେଶ– । ଆମେରିକାର ଅନେକ ହିନ୍ଦୁ ମନ୍ଦିରରେ ଗଣେଶଙ୍କୁ ସର୍ବପ୍ରଧାନ ଦେବ ବିଗ୍ରହ ଭାବେ ପ୍ରତିଷ୍ଠା କରାଯିବା ଲକ୍ଷ୍ୟ କରିଥିଲି । ତେଣୁ ତାଙ୍କୁ କେନ୍ଦ୍ର କରି ସେସବୁ ମନ୍ଦିରରେ ଅନ୍ୟ ସମସ୍ତ ବିଗ୍ରହଙ୍କୁ ସ୍ଥାନିତ କରାଯାଇଥାଏ । କିନ୍ତୁ ଏଠାରେ ଲକ୍ଷ୍ୟକଲି ବ୍ୟତିକ୍ରମ । ମିନେସୋଟା ହିନ୍ଦୁମନ୍ଦିରରେ ଗଣେଶ ହେଲେ ନାରାୟଣଙ୍କ ପାର୍ଶ୍ୱ ଦେବତା । ଏହାର ଅର୍ଥ ଏଠି ଦକ୍ଷିଣ ଭାରତୀୟଙ୍କ ଅପେକ୍ଷା ହୁଏତ ଉତ୍ତର ଭାରତୀୟ ହିନ୍ଦୁମାନେ ହେଲେ ଅଧିକ ପ୍ରଭାବଶାଳୀ ।

ଏମାଙ୍କ ବ୍ୟତୀତ ସମାନ ଗୁରୁତ୍ୱପୂର୍ଣ୍ଣସ୍ଥାନ ଅଧିକାର କରିଛନ୍ତି ଆମ ହିନ୍ଦୁ ଉପାସ୍ୟ ଦେବଦେବୀମାନେ ଯଥା– ଶିବ, ପାର୍ବତୀ, ସୁବ୍ରମନିୟମ୍ (କାର୍ତ୍ତିକ), ରାମ, ସୀତା, ଲକ୍ଷ୍ମଣ, ହନୁମାନ, ଭେଙ୍କଟେଶ୍ୱର, ରାଧାକୃଷ୍ଣ, ଆୟାପ୍ପା (ଦକ୍ଷିଣ ଭାରତରେ ବହୁ ପ୍ରଭାବଶାଳୀ ଦେବତା ଯାହାଙ୍କ ଅନ୍ୟନାମ ହରିହରନ୍, ମଣିକାନ୍ତ, ଆୟାନାର୍, ଭୂତନାଥ ଇତ୍ୟାଦି), ସୂର୍ଯ୍ୟନାରାୟଣ, ଶ୍ରୀ ଦତ୍ତାତ୍ରେୟ, ସରସ୍ୱତୀ, ଦୁର୍ଗା, ଶ୍ରୀ ମହାବୀର (ଜୈନ), ନବଗ୍ରହ, ନନ୍ଦୀ ଓ ଗରୁଡ ।

ଉପରୋକ୍ତ ବିଗ୍ରହମାନଙ୍କଠାରୁ ସ୍ୱତନ୍ତ୍ର ଭାବେ ବାରି ହେଇ ପଡୁଥିଲେ ଅବଶ୍ୟ ଗୋଟିଏ ମନ୍ଦିର ଭିତରେ ମହାଆଡମ୍ବର ଆଉ ବାଦ୍ୟବାଜଣା ଭିତରେ ଚାଲିଥିବା ପୂଜା ଉପଚାରର କେନ୍ଦ୍ରରେ ବିରାଜିତ ଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତି ଯାହାଙ୍କ ଘୋଷଯାତ୍ରା ଉତ୍ସବ ଆଜି ଅନୁଷ୍ଠିତ ହେବାକୁ ଥାଏ ଅଳ୍ପ ସମୟ ପରେ । କଳ୍ପନା ମତେ ଆଉ ନିରୁପମାଙ୍କୁ ସାଥିରେ ନେଇ ଚାଲିଲେ ସେଇ ଦିଗକୁ । ସେଠାରେ– ପ୍ରବଳ ଜନ-ସମାଗମ । ଦେଖିଲି ସେ ଭିତରେ ଅଛନ୍ତି କେତେକ ଚିହ୍ନା ମୁହଁ ଯୋଉମାନଙ୍କୁ ଦେଖିଥିଲି ୨୦୦୬ରେ ୱାସିଂଟନ୍‌ରେ ମୋର ସେତେବେଳର ବଲ୍‌ଟିମୋର୍ ରହଣି ସମୟରେ । ଏହାଛଡା କେତେଜଣ ଓଡିଆ ବନ୍ଧୁ ବି ଆସିଥିଲେ ସୁଦୂର ଟେନିସୀ ନ୍ୟାସ୍‌ଭିଲ୍‌ରୁ ଏଠାକା ମିନିସୋଟା ହିନ୍ଦୁମନ୍ଦିରରେ ଏବର୍ଷ ପାଳିତ ହେଉଥିବା ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଦେଖିବାକୁ । ସେମାନଙ୍କ ସହିତ ଆଳାପ ଆଲୋଚନା କ୍ରମେ ବୁଝିଲି– ଆମେରିକାରେ ଏବର୍ଷ ଆହୁରି କେତେ କେତେ ସହରରେ ଚାଲିଚି ଜଗନ୍ନାଥଙ୍କ ରଥଯାତ୍ରା ।

ମୁଁ ଜାଣିଥିଲି ୨୦୦୮ ସୁଦ୍ଧା ଏ ଦେଶର ଏଗାରଟି ସହରରେ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ପାଳିତ ହେଉଥାଏ । ସେଗୁଡିକ ହେଲା– ନ୍ୟାସ୍‌ଭିଲ୍ (ଟେନିସୀ), ସିନ୍‌ସିନାଟି

(ଓହାଇଓ), ହଣ୍ଟସ୍‌ଭିଲ୍ (ଆଲ୍‌ବାମା), ଫିନିକ୍ସ (ଅରିଜୋନା), ଡାଲାସ୍ (ଟେକ୍ସାସ୍) ଓହ୍ମା (ନେବ୍ରାସ୍କା), କ୍ଲିଭ୍‌ଲ୍ୟାଣ୍ଡ (ଓହାଇଓ), ୱାସିଂଟନ୍ ଡି.ସି, ନ୍ୟୁଜର୍ସି, ସାନ୍‌ଫ୍ରାନସିସ୍‌କୋ (କାଲିଫର୍ଣ୍ଣିଆ) । ବର୍ତ୍ତମାନ ଏଠି ମିନିଆପଲିସ୍‌ର ରଥଯାତ୍ରାକୁ ମିଶାଇଲେ ସେ ସଂଖ୍ୟାଟି ହେବ ୧୧ (ଏଗାର) ।

ଓଡିଆ ବନ୍ଧୁମାନଙ୍କଠାରୁ ଆହୁରି ଜାଣିବାକୁ ମିଳିଲା– ଯଦିଚ ଏ ଦେଶକୁ ପ୍ରଥମେ ଇସ୍‌କନ୍ ଗୁରୁ ପ୍ରଭୁପାଦ ଜଗନ୍ନାଥଙ୍କୁ ଆଣି ତାଙ୍କୁ ଶ୍ରୀକୃଷ୍ଣଙ୍କ ଅବତାର ଭାବେ ପରିଚିତ କରାଇଥିଲେ ତଥାପି ଜଗନ୍ନାଥଙ୍କ ପ୍ରକୃତ ପରିଚୟ କରାଇପାରିଚନ୍ତି ଏଠାକାର ପ୍ରବାସୀ ଓଡିଆମାନେ । ଆମେରିକାର ମୁଖ୍ୟ କେତେକ ସହରର ହିନ୍ଦୁମନ୍ଦିରମାନଙ୍କରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରିପାରିଚନ୍ତି ଏଠାକାର ପ୍ରବାସୀ ଓଡିଆମାନେ ଅଧିକାଂଶ ହିନ୍ଦୁ ମନ୍ଦିରମାନଙ୍କରେ ମୁଖ୍ୟ ଆରାଧ୍ୟ ଦେବତା ରୂପରେ, ଏଇ ମାତ୍ର ବର୍ଷ କେତେଟା ଭିତରେ । ଏହି ସିଦ୍ଧିର ମୂଳରେ ରହିଚି ଓଡିଆ ଠାକୁରଙ୍କର ରଥଯାତ୍ରା ଉତ୍ସବ ! ରଥଯାତ୍ରା ଉତ୍ସବ ଅନ୍ୟ କୌଣସି ହିନ୍ଦୁ ଦେବଦେବୀଙ୍କ ପାଇଁ ସାଧାରଣତଃ ଅନୁଷ୍ଠିତ ହେବାର ପରଂପରା ନାହିଁ । ନଅଦଶ ଦିନ ଧରି ରାଜଦାଣ୍ଡରେ ଯେଉଁ ଲୀଳା ମୁଖରିତ ଉତ୍ସବର ବ୍ୟବସ୍ଥା ରହିଚି ଜଗନ୍ନାଥଙ୍କ ରଥଯାତ୍ରା ପାଇଁ ତାହା ଅନ୍ୟ କୌଣସି ଦେବଦେବୀଙ୍କ ପାଇଁ ହୁଏନା । ପୁଣି ରଥଯାତ୍ରା ବି ସହଜ ବ୍ୟାପାର ନୁହଁ । ମନ୍ଦିରରେ ଜଗନ୍ନାଥଙ୍କୁ ସ୍ଥାପନା କରିବା ଅର୍ଥ ଏକ ମହା ଧନ୍ଦା । ଦୈନନ୍ଦିନ ପୂଜାର୍ଚ୍ଚନା ସମେତ କେତେ ଆୟୋଜନ, କେତେ ମ୍ୟାନ୍‌ପାୱାର୍, ଆଉ ଅର୍ଗାନାଇ-ଜେସନାଲ୍ କୋଅର୍ଡିନେସନ୍ ଦରକାର ! ସେସବୁ ପାଇଁ କୋଉ ମନ୍ଦିର କର୍ତ୍ତୃପକ୍ଷ ରାଜି ହୁଅନ୍ତେ ସହଜରେ? କିନ୍ତୁ ଜଗନ୍ନାଥ ହେଲେ ଏକମାତ୍ର ଗଣଦେବତା ଯାହାଙ୍କୁ ସର୍ବ-ସାଧାରଣ ନିଜ ହାତ ପାହାନ୍ତିରେ ପାଇପାରନ୍ତି ରାଜଦାଣ୍ଡରେ ରଥଯାତ୍ରା ମହୋତ୍ସବ ମଉକାରେ । ସେ ବ୍ୟବସ୍ଥା ତ ଆଉ କୋଉ ଦେବଦେବୀଙ୍କ ପାଇଁ ହିନ୍ଦୁ ଶାସ୍ତ୍ରରେ ଲେଖାନାହିଁ ! ଠାକୁରଙ୍କର ବ୍ୟବସ୍ଥା ନଥାଏ । ସେଇ କାରଣରୁ ପ୍ରବାସୀ ହିନ୍ଦୁମାନେ ଆମେରିକାର ବଡ ବଡ ସହର ମାନଙ୍କରେ ନିର୍ମିତ ସେମାନଙ୍କର ମନ୍ଦିରରେ ଅନ୍ୟ ସମସ୍ତ ଦେବଦେବୀଙ୍କ ମଧ୍ୟରେ ଆମ ଓଡିଆଙ୍କ ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କୁ ପ୍ରମୁଖ ଅଗ୍ରଗଣ୍ୟ ସ୍ଥାନ ଅର୍ପଣ କରିଥାନ୍ତି ।

## ମିନିଆପଲିସ୍ ରଥଯାତ୍ରା

ମନ୍ଦିର ପରିକ୍ରମା ସାରି ମୁଁ ଚାଲିଲି ଜଗନ୍ନାଥଙ୍କ ପୂଜାସ୍ଥଳକୁ । ପ୍ରବଳ ଭିଡ ଠେଲି ଉପସ୍ଥିତ ହେଲି ପୂଜା ସ୍ଥଳରେ । ଦେଖିଲି ସିତିକଣ୍ଠ ବାବୁ ମଠା ଯୋଡ ପିନ୍ଧି ଚନ୍ଦନଚର୍ଚ୍ଚିତ ହୋଇ ବସିଚନ୍ତି କର୍ତ୍ତାଙ୍କ ଆସ୍ଥାନରେ । ଦୁଇ-ତିନିଜଣ ପୂଜକ ବ୍ୟସ୍ତ ରହିଥାନ୍ତି ଠାକୁରମାନଙ୍କ ନିତି-ନିୟମପୂର୍ବକ ପୂଜାର୍ଚ୍ଚନାରେ । ଠାକୁରମାନଙ୍କୁ ରଥ ଉପରକୁ ନେବାପାଇଁ ସବୁ ପ୍ରାରମ୍ଭିକ ଉପଚାର ପ୍ରାୟ ଶେଷ ପର୍ଯ୍ୟୟରେ ।

ମତେ ଦେଖିବାମାତ୍ରେ ସିତିକଣ୍ଠବାବୁଙ୍କ ବ୍ୟଗ୍ର ଇଙ୍ଗିତ ମିଳିଲା ମୋ ଉଦ୍ଦେଶ୍ୟରେ– ଛେରାପହଁରା ପାଇଁ ଶୀଘ୍ର ପରିଧାନ ପିନ୍ଧି ପ୍ରସ୍ତୁତ ହେଇଯିବାକୁ । ମୁଁ ମୋ ବ୍ୟାଗରୁ ବାହାରକଲି ସେଇ ରାଜକୀୟ ପୋଷାକ ଆଉ ରାଜମୁକୁଟ । ଗୋଟାଏ ପାଖ କୋଠରୀକୁ ଯାଇ ପୋଷାକ ବଦଳେଇ ଆବିର୍ଭୂତ ହେଲି ପୂଜା ସ୍ଥାନରେ । ହଠାତ୍ ସେଭଳି ରାଜବେଶରେ ଜଣେ ବ୍ୟକ୍ତିଙ୍କର ଆବିର୍ଭାବକୁ ଉପସ୍ଥିତ ଜନତା ସହଜରେ ଗ୍ରହଣ କରିନେଇନପାରି ମତେ ଘେରିଗଲେ ଆଉ ପ୍ରଗାଢ଼ ବିସ୍ମୟ ଏବଂ ଆହ୍ଲାଦମୟ ଦୃଷ୍ଟିରେ ମତେ ଆପାଦମସ୍ତକ ନିରୀକ୍ଷଣ କରିବା ସହିତ ଅଭିବାଦନ ଏବଂ ସ୍ୱାଗତ ଜଣାଇଲେ । ଏହା ପରେ ଶୁଣାଗଲା ପ୍ରବଳ ବାଦ୍ୟରୋଳ ଆଉ ହରିବୋଲ ହୁଳହୁଳି । ଏହାପରେ ଠାକୁରମାନଙ୍କର ପହଣ୍ଡି-ବିଜେ ଆରମ୍ଭ ହେଲା । ଗର୍ଭ ଗୃହସ୍ଥ ରତ୍ନସିଂହାସନରୁ ପ୍ରଥମେ ସୁଦର୍ଶନଙ୍କୁ ସାଗ୍ରହରେ ପହଣ୍ଡି କରାଇବା ପାଇଁ କେତେଜଣ ଭକ୍ତ ଏକାସାଙ୍ଗେ ହାତବଢେଇ ଆଗେଇ ଆସିଲେ । ପରେ ପରେ ସୁଦର୍ଶନଙ୍କୁ କାନ୍ଧରେ ବସାଇ ସେମାନେ ଘେନିଗଲେ ମନ୍ଦିର ବାହାରେ ଅପେକ୍ଷାରତ ଏକ ସୁସଜ୍ଜିତ ରଥ ଉପରକୁ ।

ଏଠାରେ ସୂଚନାଯୋଗ୍ୟ ଯେ ଆମେରିକାରେ ଯେଉଁଯେଉଁ ସହରରେ ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା କରାଯାଏ ସେଠାରେ ବ୍ୟବହୃତ ରଥ ଗୁଡ଼ିକ ସଂପୃକ୍ତ ସହରର ମ୍ୟୁନିସିପାଲ୍ କର୍ପୋରେସନ୍‌ର ଅନୁମୋଦନ ପ୍ରାପ୍ତ ହୋଇଥାନ୍ତି । ବିଶେଷ କରି ମଣିଷ ହାତ-ଟଣା ଯାନ ହେତୁ ରଥଗୁଡ଼ିକର ଗତି ନିୟନ୍ତ୍ରଣ ପାଇଁ ଆବଶ୍ୟକ ହାଇଡ୍ରଲିକ୍ ବ୍ରେକ୍ ବ୍ୟବସ୍ଥା ଏଠାରେ ବାଧ୍ୟତାମୂଳକ । ୧୯୯୩ରେ ନ୍ୟାସ୍‌ଭିଲ୍ ରଥଯାତ୍ରା ସମୟରେ ଲକ୍ଷ୍ୟ କରିଥିଲି ସେଠାର ଜଗନ୍ନାଥଙ୍କ ରଥରେ ସେଇ ଧରଣର ଯାନ୍ତ୍ରିକ ବ୍ୟବସ୍ଥା କରାଯାଇଥିଲା । ସେଥିପାଇଁ ସେଠାର ଉଦ୍ୟୋକ୍ତାମାନେ ତାଙ୍କ ମନ୍ଦିରର ରଥଟିକୁ ନିର୍ମାଣ କରାଇଥିଲେ ସ୍ୱତନ୍ତ୍ର ଭାବେ ଆମେରିକାର ବିଖ୍ୟାତ ଏମ୍.ଆଇ.ଟି ବିଶ୍ୱବିଦ୍ୟାଳୟର ଇଂଜିନିୟରିଂ କର୍ମଶାଳାରେ । ସମ୍ଭବତଃ ମିନିସୋଟା ହିନ୍ଦୁମନ୍ଦିରର ଏଇ ରଥଟି ମଧ୍ୟ ସେଇଭଳି କୌଣସି ବିଶେଷ ଅନୁଷ୍ଠାନର ଇଂଜିନିୟରିଂ କର୍ମଶାଳାରେ ନିର୍ମିତ ହୋଇଥିବ । ସେ ଯାହାହେଉ ଅବଶେଷରେ ମନ୍ଦିର ସମ୍ମୁଖରେ ଅପେକ୍ଷାରତ ସୁସଜ୍ଜିତ ରଥ ଉପରେ ଠାକୁମାନେ ବିଜେ କରିବା ସମୟ ଉପଗତ ହେଲା । ସୁଦର୍ଶନ ଦେବ ରଥାରୂଢ଼ ହେଲେ । ପରେପରେ ପାଳି ପଡ଼ିଲା ବଡ଼ଠାକୁର ବଳଭଦ୍ରଙ୍କର । ଏହା ପରେ ଦେବୀ ସୁଭଦ୍ରାଙ୍କର । ଲକ୍ଷ୍ୟକଲି ସୁଭଦ୍ରାଙ୍କୁ ରଥକୁ ନେବାପାଇଁ ନାରୀମାନଙ୍କର ପ୍ରବଳ ଆଗ୍ରହ ! ସେଥିପାଇଁ ଅପୂର୍ବ ଆଗ୍ରହ ପ୍ରକାଶକରି ମାଡ଼ି ଆସିଲେ ଶତାଧିକ ନାରୀ, କେବଳ ଓଡ଼ିଆଣୀ ନୁହନ୍ତି । ଭାରତର ଅନ୍ୟାନ୍ୟ ରାଜ୍ୟର ଏନ୍.ଆର୍.ଆଇ ମହିଳାଙ୍କ ଗହଣରେ ଉପସ୍ଥିତ ବହୁ ବିଦେଶିନୀ ମଧ୍ୟ ସେ କାର୍ଯ୍ୟରେ ସହଯୋଗ କରିବାକୁ ବ୍ୟାକୁଳତା ପ୍ରକାଶ କରୁଥିବାର ଦୃଶ୍ୟ ମତେ ଅଭିଭୂତ କଲା । ସମସ୍ତ ଶୃଂଖଳା ଭିତରେ ଦେବୀ ସୁଭଦ୍ରାଙ୍କୁ ରଥ ଉପରକୁ

ନିଆଯିବାବେଳେ ମହିଳାମାନଙ୍କର ସ୍ୱଭାବସୁଲଭ କଳରବ ସହିତ ସମ୍ମିଳିତ ହୁଳହୁଳି ସମଗ୍ର ପରିବେଶକୁ ଏକ ମାଧୁର୍ଯ୍ୟମୟ ଚମତ୍କାରିତା ଭିତରକୁ ଉତ୍ତୀର୍ଣ୍ଣ କରିବାରେ ସହାୟକ ହେଲା ।

ଶେଷରେ ଯେତେବେଳେ ଜଗନ୍ନାଥଙ୍କୁ ରଥ ଉପରକୁ ନେବାର ସମୟ ଉପସ୍ଥିତ ହେଲା ଦେଖିଲି ସାରା ମନ୍ଦିର ଉଚ୍ଛ୍ୱସିତ ଏବଂ ଉଲ୍ଲସିତ ହୋଇଉଠିଲା । ଏକ ମହା-ମାନବୀୟ ସମ୍ମିଳିତ 'ଜୟ ଜଗନ୍ନାଥ' 'ଜୟ ଜଗନ୍ନାଥ' ଉଦ୍‌ଘୋଷଣାରେ ମନ୍ଦିରର ପରିବେଶ ପ୍ରତିଧ୍ୱନିତ ହେଲା । ଆରମ୍ଭ ହେଲା ଜଗନ୍ନାଥଙ୍କ ପହଣ୍ଡି ଯାତ୍ରା । ଏକ ବଡ ଶୋଭାଯାତ୍ରାରେ ଠାକୁରଙ୍କୁ ମନ୍ଦିର ଭିତରୁ ନିଆଗଲା ରଥ ଉପରକୁ । କେତେକ ପୂଜା ଉପଚାର ଅନ୍ତେ ଜଗନ୍ନାଥ ମହାପ୍ରଭୁ ରଥାରୂଢ ହେଲେ ।

ପରବର୍ତ୍ତୀ କର୍ମାନୁଷ୍ଠାନ ରଥପୂଜା । ରଥପୂଜା ବିଧି ଭିତରେ ସମୟ ଅସିଲା ଛେରାପହଁରା ପାଇଁ । ସିତିକଣ୍ଠ ବାବୁ ମତେ ଅନୁରୋଧ କଲେ ରଥ ଉପରକୁ ଯିବାକୁ । ଚାରମାଳ ଉପର ଦେଇ ରଥ ଉପରକୁ ଉଠିବା ପାଇଁ ଉଦ୍ୟତ ହେଲି । ଏକ ଅଦ୍‌ଭୁତ ଶିହରଣ ମୋର ସର୍ବାଙ୍ଗରେ ବିଦ୍ୟୁତ୍ ବେଗରେ ଖେଳିଗଲା । ଠିକ୍ ଏହିପରି ଶିହରଣ ମୁଁ ଅନୁଭବ କରିଥିଲି ଏହା ପୂର୍ବରୁ ଆଉ ଥରେ– ୨୦୦୩ରେ । ତାହା ଥିଲା ନ୍ୟାସ୍‌ଭିଲ୍ ସହରର ହିନ୍ଦୁମନ୍ଦିରର ସେ ବର୍ଷର ରଥଯାତ୍ରାରେ ମୋତେ ଠିକ୍ ଏଇଭଳି ମିଳିଥିବା ଛେରା ପହଁରା କର୍ତ୍ତବ୍ୟ ପାଳନ ଅବସରରେ । ରଥ ଉପରେ ଜଣେ ପୂଜକ ମୋ ହାତରେ ଗୋଟିଏ ସୁନାରଙ୍ଗର ଜରିବନ୍ଧା ମାର୍ଜନୀ ଧରାଇଦେଲେ । ଏହାପରେ ମନ୍ତ୍ରପାଠ ସହିତ ଫୁଲ ଚନ୍ଦନ ଜଳ ଛିଂଚି ଛିଂଚି ଅନ୍ୟଜଣେ ପୂଜକ ମୋ ଆଗେଆଗେ ବାଟ କଢେଇ ଚାଲିଲେ ଏବଂ ମୁଁ ମୋ ହାତରେ ଧରିଥିବା ସୁବର୍ଣ୍ଣ ମାର୍ଜନୀ ଚାଳନା କରି ତାଙ୍କୁ ଅନୁସରଣ କରି ରଥ ପରିକ୍ରମା କରିବାରେ ଲାଗିଲି । ସେ ଏକ ଦିବ୍ୟ ମୁହୂର୍ତ୍ତ ମୋ ଜୀବନର ଯାହା ମୋର ଅନ୍ତର୍ଚେତନାକୁ ଜାଗ୍ରତ କରିଦେଲା ପୂର୍ଣ୍ଣମାତ୍ରାରେ । ମଣିଷ ଜୀବନକାଳ ଭିତରେ ଏଭଳି ମୁହୂର୍ତ୍ତ କ୍ୱଚିତ ଆସେ ଯେତେବେଳେ ମଣିଷ ସସୀମକୁ ମାତ୍ର ଗୋଟାଏ ଲମ୍ଫରେ ଅତିକ୍ରମ କରିଯାଇ ପହଞ୍ଚିଯାଏ ସିଧା ଅସୀମର ଆଲିଂଗନ ଭିତରେ । ସେଇଭଳି ଏକ ମୁହୂର୍ତ୍ତ ନିଶ୍ଚୟ ପହଞ୍ଚିଥିଲା ମହାଭାରତ ଯୁଦ୍ଧକ୍ଷେତ୍ର ମଝିରେ ଏକ ବିଷାଦଗ୍ରସ୍ତ ସଂଶୟୀ ଆତ୍ମା ଅର୍ଜୁନଙ୍କ ଜୀବନରେ ଯାହାଙ୍କ ସଂଶୟ ଦୂରକରିବାକୁ ଶେଷରେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଧାରଣ କରିବାକୁ ପଡିଥିଲା ତାଙ୍କର ସେଇ ଦିବ୍ୟ ରୂପ ଯାହାକୁ ଗୀତା କହେ ଭଗବାନ୍‌ଙ୍କ ବିଶ୍ୱରୂପ । ସୁନା ଝାଡୁ ଧରି ମନ୍ତ୍ରପାଠରତ ପୂଜକଙ୍କୁ ଅନୁସରଣ କରି ରଥ ପରିକ୍ରମା ଭିତରେ ମତେ ହଠାତ୍ ଲାଗିଲା ସତେକି ମୁଁ ସେଇ ମହାଭାରତ ଯୁଦ୍ଧକ୍ଷେତ୍ର ମଧ୍ୟ ସ୍ଥଳରେ ଅଟକି ଯାଇଥିବା ଏକ ରଥ ଉପରେ ମଥା ନତ କରିଥିବା ଅବସ୍ଥାରେ ରଥ ଉପରେ ଜଗନ୍ନାଥ ଉଭାହୋଇଚନ୍ତି ଅବିକଳ ସେଇ ବିଶ୍ୱରୂପ ପ୍ରଦର୍ଶନ ମୁଦ୍ରାରେ ।

ଏହା ପରେ ଯାହା ସବୁ ଘଟିଲା ସେସବୁ ଥିଲା ମୋ ଭଳି ଜଣେ ଅକିଂଚନ ପାଇଁ ପୂର୍ବଜନ୍ମର ବହୁପୁଣ୍ୟର ଫଳପ୍ରାପ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ । ଓଡିଆ ଜାତିର ପରମ ଆରାଧ୍ୟ ଠାକୁରମାନଙ୍କୁ ରଥାରୂଢ ଅବସ୍ଥାରେ ଦର୍ଶନ କରିବାକୁ ଯେଉଁମାନେ ଜୀବନର ଶେଷ ଆକଂକ୍ଷା ରୂପେ ଆଖ୍ୟାୟିତ କରି କହନ୍ତି– "ରଥେତୁ ବାମନଂ ଦୃଷ୍ଟ୍ୟା ପୁନର୍ଜନ୍ମ ନବିଦ୍ୟତେ"– ସେଭଳି ଜଣେ ସୌଭାଗ୍ୟପ୍ରାପ୍ତ ଓଡିଆଭାବେ ମୁଁ ସେଦିନ ମିନିସୋଟାର ହିନ୍ଦୁ ମନ୍ଦିର ସମ୍ମୁଖରେ ଅପେକ୍ଷମାଣ ରଥ ସମ୍ମୁଖରେ ମଥା ନତ କରି ମୋ ପାଇଁ ନିର୍ଦ୍ଦିଷ୍ଟ କରାଯାଇଥିବା ସେବା କର୍ତ୍ତବ୍ୟ ବା ଛେରାପହଁରା ଦାୟିତ୍ୱଟିକୁ ପରମ ଆହ୍ଲାଦ ଏବଂ କୃତଜ୍ଞତା ସହକାରେ ସଂପାଦନ କଲି ।

ଏହାପରେ ଆରମ୍ଭ ହେବ ରଥଟଣା । ସେତେବେଳକୁ ରଥ ଟାଣିବା ପାଇଁ ଉତ୍ସୁକ ଭକ୍ତମାନଙ୍କ ସଂଖ୍ୟା ପ୍ରବଳ ସଂଖ୍ୟାରେ ବଢିବାରେ ଲାଗିଥାଏ । ପ୍ରାୟ ହଜାରେ ସଂଖ୍ୟାର ନରନାରୀ ରଥର ଲମ୍ବା ଦଉଡିକୁ ନିଜନିଜ ହାତମୁଠାରେ ମୁଠେଇଧରି ଲମ୍ବା ଧାଡିରେ ଠିଆହେଇଗଲେଣି– ସେମାନେ କେବଳ ଅପେକ୍ଷା କରୁଥାନ୍ତି ରଥ ଉପରୁ ଏ ଯାତ୍ରାର ପରିଚାଳକ ବା ଡାହୁକଙ୍କ ତୂରୀବାଦନକୁ ।

ରଥ ଉପରେ ପୂଜା ଉପଚାର ଶେଷ ହେଲା । ନିୟନ୍ତକଙ୍କ ତୂରୀବାଦନ ଶବ୍ଦ ଶୁଣାଗଲା । ସେଇଠୁ ଶୁଣାଗଲା ଝାଂଜ ମୃଦଙ୍ଗ ତୂରୀ ଭେରୀର ସମ୍ମିଳିତ ଧ୍ୱନି ସହିତ 'ଜୟ ଜଗନ୍ନାଥ' ପହଲି ତୁହାକୁ ତୁହା । ଜୟ ବଳଭଦ୍ର, ଜୟ ସୁଭଦ୍ରା, ଜୟ ଜଗନ୍ନାଥ, ଜୟ ସୁଦର୍ଶନ ନାଦରେ ମିନିଆପଲିସ୍ ସହର ଉପକଂଠର ସମଗ୍ର ମ୍ୟାପ୍ଲଗ୍ରୋଭ୍ ଅଂଚଳ ମୁଖରିତ ହୋଇ ଉଠିଲା । ସେ ଡାକରେ ସମଗ୍ର ପରିବେଶଟା ଉଚ୍ଚାଟିତ ହୋଇଉଠିଲା । ହଠାତ୍ ଦେଖିଲି ଏ ପର୍ଯ୍ୟନ୍ତ ନିର୍ଜୀବ ଅବସ୍ଥାରେ ଠିଆ ହୋଇ ରହିଥିବା ନନ୍ଦିଘୋଷ ଜୀବନ୍ୟାସ ପାଇଗଲା ପରି ଗିଡଗାଡିଆ ହେଇ ଗଡିବାକୁ ଲାଗିଲା ।

ମନ୍ଦିରଟି ଗୋଟିଏ ବିସ୍ତୃତ କ୍ଷେତ୍ର ଉପରେ ପ୍ରତିଷ୍ଠିତ । ମନ୍ଦିର ସାମ୍ନାରେ ରଥଦାଣ୍ଡ, ଅର୍ଥାତ୍ ଗୋଟାଏ ଗୋଲାକାର ରାସ୍ତା । ବେଶ୍ ଲମ୍ୱା ରାସ୍ତା । ପ୍ରାୟ ମାଇଲିଏ ଲମ୍ବା ସେଇ ଗୋଲାକାର ପଥରେ ଠାକୁରମାନଙ୍କ ରଥ ସେଦିନ ପରିକ୍ରମା କରିବାକୁ ଅନ୍ତତଃ ଘଣ୍ଟାଏ ସମୟ ଲାଗିଲା । ଘଣ୍ଟାଏ କାଳ ଧରି ହଜାର ହଜାର ନରନାରୀ, କିଶୋର କିଶୋରୀ, ଏପରକି ଶିଶୁମାନେ ନିରାଟ ଗ୍ରୀଷ୍ମଋତୁର ଖରାରେ ଝାଳନାଳ ହେଇ ରଥ ଟାଣିଲେ । ସେ ଦୃଶ୍ୟ ଲକ୍ଷ୍ୟକରିବାକୁ ମୁଁ ମୋ ରାଜକୀୟ ମୁକୁଟଟିକୁ ମୁଣ୍ଡରୁ କାଢିଦେଲି ଆଉ ଜନତାର ସ୍ରୋତରେ ନିଜକୁ ସାମିଲ୍ କରିଦେଲି । ସେଇ ଭିତରେ ମୁଁ ଆହୁରି କେତେଜଣ ଓଡିଆ ଭଦ୍ରଲୋକଙ୍କ ସନ୍ଧାନ ପାଇଲି । ସେମାନଙ୍କ ଭିତରେ ଥିଲେ ମୋର କେତେଜଣ କଲେଜ ସହପାଠୀ ମଧ୍ୟ ରେଭେନ୍ସା କଲେଜରେ ଛାତ୍ର ସମୟର । ସେମାନେ ବହୁ ବର୍ଷ ପୂର୍ବରୁ ଆମେରିକାରେ ଚାକିରି ପାଇ ଆସିଥିଲେ, ଆଉ ବର୍ତ୍ତମାନ ଏ ସହରର ସ୍ଥାୟୀ ବାସିନ୍ଦା ।

ରଥଟଣା ସେଦିନ ପାଇଁ ଶେଷହେଲା । ରଥଦାଣ୍ଡ ପରିକ୍ରମା ଅନ୍ତେ ଠାକୁରମାନେ ମନ୍ଦିର ସଂଲଗ୍ନ ମାଉସୀମା ମନ୍ଦିର (ଏକ ବିରାଟ ହଲ୍)ରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ନିର୍ମିତ ଆସ୍ଥାନରେ ସ୍ଥାପିତ ହେଲେ । ଠାକୁରମାନେ ଏଇ ମାଉସୀମା ମନ୍ଦିରରେ ଆଗାମୀ ନଅ ଦିନ ପର୍ଯ୍ୟନ୍ତ ଅବସ୍ଥାନ କରିବାର ବ୍ୟବସ୍ଥା ମନ୍ଦିର ପକ୍ଷରୁ ହୋଇଥିବା ଜାଣିବାକୁ ମିଳିଲା । ସେଥିପାଇଁ ପ୍ରତିଦିନ ସେମାନଙ୍କର ପୂଜାବିଧି ପାଇଁ ମଧ୍ୟ ଉପଯୁକ୍ତ ବ୍ୟବସ୍ଥା କରାଯାଇଥିଲା । ବାହୁଡା ଦଶମୀ ଦିନ ଠାକୁରମାନଙ୍କୁ ପୁନର୍ବାର ରଥରେ ବସାଇ ମନ୍ଦିରକୁ ନିଆଯିବା ପର୍ଯ୍ୟନ୍ତ ଏଇ ସମସ୍ତ ଦିନ ଏଠାର ମ୍ୟାପ୍ଲଗ୍ରୋଭ ହିନ୍ଦୁ ମନ୍ଦିରଟି ଏହିପରି ଜନାକୀର୍ଣ୍ଣ ରହିବ ବୋଲି ଶୁଣିବାକୁ ପାଇଲି ।

## ସାନ୍ଧ୍ୟ ଅଧିବେଶନ

ସେଦିନ ସନ୍ଧ୍ୟାରେ ମନ୍ଦିର ପ୍ରେକ୍ଷାଳୟରେ ଏକ ସାଧାରଣ ସଭାର ଆୟୋଜନ କରାଯାଇଥାଏ । ସଭାମଞ୍ଚ ପ୍ରସ୍ତୁତ କରାଯାଇଥାଏ ସେଇ ହଲ୍‌ରେ ଯେଉଁଠି ଚାରିଠାକୁରଙ୍କୁ ପୂର୍ବରୁ ଏକ ସୁସଜ୍ଜିତ ମଣ୍ଡପରେ ସ୍ଥାପନା କରାଯାଇଥାଏ । ସଭାଗୃହ ସେତେବେଳକୁ ଭରପୂର୍ । ସିତିକଣ୍ଠବାବୁ ପୂର୍ବରୁ ପ୍ରଚାର କରିଦେଇଥାନ୍ତି ଯେ ଏବର୍ଷ ରଥଯାତ୍ରାର ମୁଖ୍ୟ ଅତିଥି ଭାବେ ଯାହାଙ୍କୁ ନିମନ୍ତ୍ରିତ କରାଯାଇଥାଏ ସେ ଜଣେ ସର୍ବଭାରତୀୟ ସ୍ତରର ବିଖ୍ୟାତ ସାହିତ୍ୟିକ ଔପନ୍ୟାସିକ ଇତ୍ୟାଦି ।

ମଞ୍ଚରେ ମୋ ପାଇଁ ରଖାଯାଇଥିବା ଗୋଟିଏ ଛୋଟ ଟେବ୍ଲ ଓ ମାଇକ୍ ଷ୍ଟାଣ୍ଡ ଆଗରେ ଠିଆହୋଇ ଲକ୍ଷ୍ୟକଲି– ହଲ୍ ଭରପୂର୍– ପ୍ରାୟ ଚାରି-ପାଞ୍ଚଶହ ଲୋକ । ଛୁଆ ପିଲା ସ୍ତ୍ରୀଲୋକ ମଧ୍ୟ ବେଶ୍ ସଂଖ୍ୟାରେ । ସାମ୍ନା ଧାଡିରେ ବସିଥାନ୍ତି ମନ୍ଦିରର ଟ୍ରଷ୍ଟି ଏବଂ ପ୍ରମୁଖ କାର୍ଯ୍ୟକାରୀ ସମିତି ସଭ୍ୟ କେତେଜଣ । ସେମାନଙ୍କ ଭିତରୁ ଜଣେ ଦୁଇଜଣଙ୍କ ସାଙ୍ଗେ ପରିଚୟ କରାଇଦେଇଥିଲେ ମତେ ସିତିକଂଠବାବୁ । ସେମାନେ ହେଲେ– ମନ୍ଦିର ଟ୍ରଷ୍ଟି ପରିଷଦର ଚେୟାରମ୍ୟାନ୍ ଡକ୍ଟର ଶଶୀକାନ୍ତ ସାନେ, ଶ୍ରୀମତୀ ସାନେ, ଭାଇସ୍ ଚେୟାରମ୍ୟାନ୍ ଶ୍ରୀ ଭେଦୁଚାରି ଓଗେର ସଭ୍ୟସଭ୍ୟାଗଣ ।

ଦେଖିଲି– ଅଡିଏନ୍ସ ଭିତରେ ଅଧିକାଂଶ ଚେହରା ଦକ୍ଷିଣଭାରତୀୟଙ୍କର । ଉତ୍ତର ଭାରତୀୟ ମଧ୍ୟ କମ୍ ନାହାନ୍ତି । ସେମାନଙ୍କ ଛଡା ବେଶ୍ କିଛି ସ୍ଥାନୀୟ ଅଧିବାସୀ ଗୋରା କଳା ଆମେରିକାନ୍‌ଙ୍କ ଉପସ୍ଥିତି ମଧ୍ୟ ଲକ୍ଷ୍ୟକଲି । ଗୋରାଙ୍କ ଭିତରେ ବି ଥିଲେ ଇସ୍‌କନ୍ ସଂପ୍ରଦାୟର କେତେଜଣ ନାରୀ ପୁରୁଷ ସନ୍ନ୍ୟାସୀ ।

ମୋ ବକ୍ତୃତାର ସମୟ ସୀମା ଥିଲା କୋଡିଏ ମିନିଟ୍ । ପୂର୍ବରୁ ଏ ମନ୍ଦିର ପକ୍ଷରୁ ଏବର୍ଷର ରଥଯାତ୍ରା ଉଦ୍ଦେଶ୍ୟରେ ପ୍ରକାଶ ପାଇବାକୁ ଥିବା ଏକ ସ୍ମରଣିକା ପାଇଁ ମତେ ଗୋଟିଏ ଲେଖା ଦେବାକୁ ସିତିକଂଠ ବାବୁ ଅନୁରୋଧ କରିଥିଲେ । ମୁଁ ସେ ଲେଖାଟି

ସିତିକଣ୍ଠ ବାବୁଙ୍କ ଠିକଣାରେ ଇ-ମେଲରେ ପଠାଇଥିଲି । ସେ ଲେଖାର ଶୀର୍ଷକ ହେଲା– The Uniqueness of Lord Jagannath । ସେ ଲେଖାଟି ମଧ୍ୟ ମନ୍ଦିର ତରଫରୁ ପ୍ରକାଶିତ ସ୍ମରଣିକାରେ ପ୍ରକାଶପାଇଥାଏ । ଲକ୍ଷ୍ୟକଲି ସେଇ ସ୍ମରଣିକାର (2008 Ratha Jatra– Hindu Temple Minnesota) ଗୋଟାଏ ଗୋଟାଏ କପି ସଭାରେ ଉପସ୍ଥିତ ଅଧିକାଂଶ ଶ୍ରୋତା ହାତରେ ଧରିଛନ୍ତି ।

ସମୟର ସ୍ୱଚ୍ଛତା ଦୃଷ୍ଟିରୁ ମୁଁ ସେ ଲେଖାଟିକୁ ପାଠ ନକରି ମୌଖିକ ବା Extempore ଭାବେ ପରିବେଷଣ କଲି । ଏହାର ମୁଖ୍ୟ ଲକ୍ଷ୍ୟ ଥିଲା– ଆଜିର ବିଶ୍ୱବ୍ୟାପୀ ଆର୍ଥନୈତିକ ଗ୍ଲୋବାଲାଇଜେସନ୍ ଯୁଗରେ ବସ୍ତୁବାଦର ଦ୍ରୁତ ସଂପ୍ରସାରଣ ସତ୍ତ୍ୱେ ଧର୍ମ ଓ ଧାର୍ମିକତା ପ୍ରତି ଆଧୁନିକ ମଣିଷ ତଥାପି କାହିଁକି ଏତେ ଅନୁରକ୍ତ ? ଈଶ୍ୱର ଓ ଐଶ୍ୱରିକ ମହିମାକୁ ମଣିଷ କାହିଁକି ଭୁଲିଯାଇପାରୁନାହିଁ ? କାହିଁକି ନିଜ ହୃଦୟରୁ ଈଶ୍ୱର ଚିନ୍ତା ଏବଂ ଭକ୍ତିଭାବକୁ ବିଦାୟ ଦେଇପାରୁନାହିଁ ? କାହିଁକି ମଣିଷ ଯୁଗେ ଯୁଗେ ଆଧ୍ୟାତ୍ମିକ ସାହିତ୍ୟ, ବିଶେଷକରି ପୌରାଣିକ ସାହିତ୍ୟ ପ୍ରତି ଏତେ ପ୍ରଗାଢଭାବେ ଅନୁରକ୍ତ ? ବିଜ୍ଞାନ ଓ ବୈଷୟିକତା ଭଗବାନ୍‌ଙ୍କ ବିରୁଦ୍ଧରେ ଦୀର୍ଘ ଚାରିଶହ ବର୍ଷ ଧରି ବିରୋଧ ଘୋଷଣା କରିଥିଲେ ମଧ୍ୟ ଈଶ୍ୱରବିଶ୍ୱାସକୁ ମଣିଷ ହୃଦୟରୁ ବିଲୁପ୍ତ କରାଯାଇପାରୁନାହିଁ କାହିଁକି ? ଭଗବାନ୍‌ଙ୍କ ସହିତ ମଣିଷର ସଂପର୍କ କେଉଁ ସ୍ତରର ? ସାଧାରଣ ମଣିଷର ଆଧିଭୌତିକ ଅନୁଭବ କେତେଦୂର ସତ୍ୟ ? ଆଧୁନିକ ମଣିଷ ନିଜର ଆଧିଭୌତିକ (Mystic) ଅନୁଭବ ଗୁଡ଼ିକୁ ଅବାସ୍ତବ କହି ଆଡେଇ ଦେଇ ପାରିବକି ? ଏଇ ପ୍ରଶ୍ନଗୁଡ଼ିକର ସମାଧାନ ହିନ୍ଦୁଧର୍ମର ସୂତ୍ର ସମୂହ ମାଧ୍ୟମରେ କରାଯାଇପାରେ କି ? ଏଇ ପରିପ୍ରେକ୍ଷୀରେ ଜଗନ୍ନାଥ ଚେତନାର ସ୍ଥାନ କେଉଁଠି ?

ଏତେଗୁଡାଏ ବିଷୟର ଆଲୋଚନା ଯେ ମୋତେ କୋଡ଼ିଏ ମିନିଟ୍ ଭିତରେ କେବେ ହେଲେ ସଂଭବ ତାହା ମୁଁ ନିଜେ ବିଶ୍ୱାସ କରି ପାରିଲି ନାହିଁ । କିନ୍ତୁ ମୋର ବକ୍ତୃତା ଶେଷ ହେବା ମାତ୍ରେ ଶ୍ରୋତାମାନଙ୍କ ଭିତରୁ କିଏ ଜଣେ ବଡପାଟିରେ ଘୋଷଣାକଲେ Just twenty minutes ! ପରେପରେ ଜୋର୍ କରତାଳିରେ ସଭାସ୍ଥଳ ପ୍ରତିଧ୍ୱନିତ ହେଲା । ସିତିକଂଠବାବୁ ଉଲ୍ଲସିତ ହୋଇଉଠିଲେ । ପାଖରେ ବସିଥିବା ମନ୍ଦିର ଟ୍ରଷ୍ଟି ବୋର୍ଡର ଚେୟାରମ୍ୟାନ୍ ଡକ୍ଟର୍ ସାନେଙ୍କୁ କ'ଣ ସବୁ କହିଲେ ସଂଭବତଃ ମୋ ବିଷୟରେ । ମୁଁ ମଞ୍ଚରୁ ଓହ୍ଲାଇ ଆସିଲା ପରେ ଡକ୍ଟର୍ ସାନେ ଓ ଶ୍ରୀମତୀ ସାନେଙ୍କ ସମେତ ବହୁ ପ୍ରବାସୀ ଭାରତୀୟ ମୋର ବକ୍ତବ୍ୟ ପାଇଁ ଧନ୍ୟବାଦ ଜଣାଇଲେ ।

ପରେ ପରେ ଆରମ୍ଭ ହେଲା ସାଂସ୍କୃତିକ ଉତ୍ସବ । ସ୍ଥାନୀୟ ଓଡିଆ ସମାଜ ପକ୍ଷରୁ ପରିବେଷଣ କରାଗଲା ଇଂରେଜୀରେ ଲିଖିତ ଏକ ନୃତ୍ୟନାଟିକା– "ଲଳିତା ଓ ବିଦ୍ୟାପତି" । ମଞ୍ଚ ଉପରେ ସ୍ଥାନୀୟ ଓଡିଆ ଯୁବକ ଯୁବତୀଙ୍କର ଅତ୍ୟନ୍ତ ହୃଦୟଗ୍ରାହୀ ଅଭିନୟ ଦେଖିବା

ସମୟରେ ହଲରେ ଘନଘନ କରତାଳି ଶୁଣି ମନେହେଲା– ଲଳିତା ଓ ବିଦ୍ୟାପତି ବର୍ତ୍ତମାନ ଆଉ ଓଡିଆ ସାହିତ୍ୟର ସଂପତ୍ତି ନୁହନ୍ତି– ସେ ବର୍ତ୍ତମାନ ବିଶ୍ୱସାହିତ୍ୟର ଅମାନତ ପାଲଟିଗଲେଣି ।

ପରେପରେ ପରିବେଷଣ କରାଗଲା ଓଡିଶୀ ନୃତ୍ୟ । ସେଥିପାଇଁ କଟକରୁ ନିମନ୍ତ୍ରିତ ହୋଇ ଆସିଥାନ୍ତି ଜଣେ ବିଶିଷ୍ଟ ନୃତ୍ୟାଙ୍ଗନା ଶ୍ରୀମତୀ ମୀନା ସାହୁ ।

ମିନିଆପଲିସ୍ ରଥଯାତ୍ରା ୨୦୦୮ ମୋ ପାଇଁ ଏକ ବିଶେଷ ସ୍ମରଣୀୟ ଅଭିଜ୍ଞତା । ଏ ଦୁର୍ଲଭ ଅଭିଜ୍ଞତା ସଂଭବ ହୋଇପାରିଥିଲା ଜଗନ୍ନାଥଙ୍କ କୃପାରୁ ଯାହାର ମାଧ୍ୟମ ହୋଇଥିଲେ ଏ ସହରର କେତେଜଣ ଜଗନ୍ନାଥ ସଂସ୍କୃତି ପ୍ରେମୀ ପ୍ରବାସୀ ଓଡିଆଙ୍କ ଅକ୍ଲାନ୍ତ ଉଦ୍ୟମ ଏବଂ ବଦାନ୍ୟତାରୁ । ଡକ୍ଟର ସିତିକଂଠ ଦାଶ ଏବଂ ତାଙ୍କର ସହଧର୍ମିଣୀ ଶ୍ରୀମତୀ କଳ୍ପନା ଦାଶ ଥିଲେ ସେମାନଙ୍କ ଅଗ୍ରଣୀ ।

ପରଦିନ ତା ୧୪ ଜୁଲାଇ ଅପରାହ୍ନ ଫ୍ଲାଇଟ୍‌ରେ ଆମେ ଫେରିଆସିଲୁ କନେକ୍ଟିକଟ୍ ହାର୍ଟଫୋର୍ଡ ବିମାନ ବନ୍ଦରକୁ ଆଉ ସେଠାରୁ ଗ୍ଲାସ୍‌ଟନ୍‌ବରିରେ ଝିଅ ଜୋଇଁଙ୍କ ଘରକୁ ।

## ମନୀଶର ଗ୍ରାଜୁଏସନ୍ ଉତ୍ସବ

– ତା. ୧୯ ଜୁଲାଇ, ୨୦୦୮ ।

ପୂର୍ବରୁ କହିଚି– ଆମେରିକାନ୍‌ଙ୍କ ସାମାଜିକ ବ୍ୟବସ୍ଥାରେ ଉଚ୍ଚଶିକ୍ଷାର ମର୍ଯ୍ୟାଦା ଆମ ଭାରତୀୟ ବ୍ୟବସ୍ଥା ତୁଳନାରେ ଢେର୍ ବେଶୀ । ତାର ପ୍ରମାଣ ମିଳେ ସେମାନଙ୍କ ପିଲାଟିଏ ହାଇୟର୍ ସେକେଣ୍ଡାରୀ (ବାରବର୍ଷ ହାଇସ୍କୁଲ୍) ପରୀକ୍ଷାରେ ପାଶ୍ କଲା ପରେ ଯେଉଁଭଳି ଉଚ୍ଛ୍ୱସିତ ଆନନ୍ଦ ପ୍ରକାଶ କରାଯାଏ ସେ ଦେଶର ସାମାଜିକ ବ୍ୟବସ୍ଥାରେ । ସେଇ ଆନନ୍ଦକୁ ସାମାଜିକ ରୂପ ଦେବାପାଇଁ ପିଲାର ବାପ ମା ଓ ଶୁଭେଚ୍ଛୁମାନେ ଅୟୋଜନ କରନ୍ତି ଏକ ବ୍ୟାପକ ବନ୍ଧୁମିଳନ । ଏ ମିଳନ ଉତ୍ସବକୁ ନିମନ୍ତ୍ରିତ ହେଇ ଆସନ୍ତି ପିଲାମାନଙ୍କର ନିକଟ-ସଂପର୍କୀୟଙ୍କ ସମେତ ସହରର ବହୁ ସମ୍ମାନିତ ଅତିଥି । ସାଇ-ପଡିଶା ଲୋକେ ଆଉ ପିଲାର ସ୍କୁଲ୍ ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ତାର ସାଙ୍ଗସାଥୀମାନଙ୍କ ଗହଣରେ କୃତୀ ଛାତ୍ରଛାତ୍ରୀଙ୍କୁ ସଂବର୍ଦ୍ଧିତ କରାଯାଏ । ସେ ଏକ ବିରାଟ ଆୟୋଜନ– ରୀତିମତ ଗୋଟାଏ ବାହାଘରିଆ ଆଡ଼ମ୍ବର ଆମ ଦେଶର ସାମାଜିକ ବିଚାରରେ । ଉଚ୍ଚଶିକ୍ଷାକୁ ଏଭଳି ସାମାଜିକ ଗୁରୁତ୍ୱ ଦେଉଥିବା ପାଶ୍ଚାତ୍ୟ ଦେଶମାନଙ୍କରେ ସେଇ କାରଣରୁ ସଂଭବତଃ ବିଶ୍ୱବିଦ୍ୟାଳୟ ଶିକ୍ଷାର ସ୍ଥାନ ଏବଂ ମାନ ସମାଜରେ ସର୍ବାଧିକ ।

ସେଦିନ ଆମେ ମିନେସୋଟା ରଥଯାତ୍ରା ଉତ୍ସବରେ ଯୋଗଦେଇ ମିନିଆପଲିସ୍‌ରୁ ହାର୍ଟଫୋର୍ଡ ବିମାନବନ୍ଦରରେ ପହଞ୍ଚିଲୁ । ମହେଶ ଆମକୁ ପାଛୋଟି ନବାପାଇଁ ସେଠାରେ ଅପେକ୍ଷା କରିଥାନ୍ତି । ସମସ୍ତେ ତାଙ୍କ କାର୍‌ରେ ଗ୍ଲାସଟନ୍‌ବରି ଫେରିଆସିଲୁ । ଘରେ ପହଞ୍ଚୁ

ନପହଞ୍ଚୁ ପ୍ରଥମେ ଶୁଣିଲୁ ଝିଅ ସୁଲୁମାର ଗୋଟାଏ କିଳିକିଳା ରଡି । ଘଟଣା କ'ଣ ! ଚମକିପଡିଲେ ନିରୁପମା ଆଉ ମହେଶ । କିନ୍ତୁ ଝିଅର ରଡି କରିବା ଢଙ୍ଗଢାଙ୍ଗରୁ ମୁଁ ବୁଝିନେଲି ବିପଦଟା ସମ୍ଭବତଃ ସେତେଦୂର ଆତଙ୍କପ୍ରଦ ନହେଇଥାଇପାରେ ।

ମହେଶ ଗ୍ୟାରେଜ୍‌ରେ କାର୍ ପୂରେଇବା ମାତ୍ରେ ଆମେ ଯେ ଯାହା ପାଖ ଡୋର୍ ଖୋଲି ଧାଇଁଲୁ ଘର ଭିତରକୁ । ଗ୍ୟାରେଜ୍‌ର ଭିତର ପାଖ କବାଟ୍‌ଟା ସିଧା ଖୋଲାଥାଏ ପ୍ୟାଣ୍ଟ୍ରି ଭିତରକୁ । ସେଠୁ ଗୋଟାଏ କବାଟ– କିଚନ୍‌କୁ । ଏ କିଚିନ୍‌ଟା ଗୋଟାଏ ଅତ୍ୟାଧୁନିକ ଆମେରିକାନ୍ ରୋଷେଇଘର– ବିଲକୁଲ ଗୋଟାଏ ଆଧୁନିକ ସାଇଣ୍ଟିଫିକ୍ ଲ୍ୟାବ୍ ଭଳି । ସେ ରୁମ୍‌ଟା ଏଡେ ବଡ ଆଉ ଏତେ ଯନ୍ତ୍ରପାତି ଖଂଜାଯାଇଥାଏ ଯେ ତା' ଭିତରେ ଆମ ଝିଅ କୋଉଠି ଅଛି ଜାଣିବା ମୁସ୍କିଲ୍ ।

ଯାହାହେଉ କିଛି ସମୟ ଅନ୍ୱେଷଣ ଅନ୍ତେ ସୁଲୁମାକୁ ଠାବକଲୁ ଆମେ ଗୋଟାଏ କଣରେ । ସେଠି ମୁଣ୍ଡରେ ହାତଦେଇ ବସି ଝିଅ ଆମର ବାହୁନୁଥାଏ କ'ଣପାଇଁ କେଜାଣି ! ମନେହେଉଥାଏ ଘରେ ସେତେବେଳେ ଅନ୍ୟ କେହି ନଥାନ୍ତି । ସେ ଯାହାହେଉ ଟିକିଏ ସମୟ ପରେ ପରିସ୍ଥିତିଟା ବୁଝାପଡିଲା । ସୁଲୁମାର ସେ ଦୁର୍ଦ୍ଦଶାର କାରଣ ଥିଲା ଏ ଘରର ଅନ୍ୟତମ ମୁଖ୍ୟ ସଭ୍ୟ ଡ୍ୟୁକ୍– ଅର୍ଥାତ୍ ଏ ଘରର ପୋଷା କୁକୁର– ଏକ ପ୍ରକାଣ୍ଡ ଲାବ୍ରାଡର୍ ଜାତିର ବିଲାତି କୁକୁର ।

ଏ କୁକୁରଟିକୁ ପିଲାଦିନୁ ବଡ ଗେହ୍ଲାରେ ପାଳିଥାଏ ନାତି ମନୀଶ । ସେ ମଧ୍ୟ ତାକୁ ବହୁ ପ୍ରକାର ଖେଳ (ଟ୍ରିକ୍) ଶିକ୍ଷାଦେଇଥାଏ ପିଲାଦିନୁ । ତାକୁ ପ' (paw) କହିଲେ ସେ ତା' ଡାହାଣଗୋଡ ଉଠେଇ ପାଦଟାକୁ ନେଇ ତୁମ ହାତ ଭିତରେ ଗୁଂଜି ଦବ । ତାକୁ ସିଟ୍ କହିଲେ ବସିବ, ଷ୍ଟାଣ୍ଡ କହିଲେ ଠିଆହବାଠୁ ଆରମ୍ଭ କରି ଆହୁରି ଅନେକ ଖେଳ ଶିକ୍ଷା ଦିଆଯାଇଥାଏ । ପୁଣି କୌଣସି ଗୋଟାଏ ଜିନିଷ ତା' ନାକରେ ମାରିଦେଇ ଜିନିଷଟାକୁ ଲୁଚେଇଦେଲେ ଏ ଚଲାଖ କୁକୁର ସେ ଜିନିଷଟାକୁ କୌଣସି ପ୍ରକାରେ ଖୋଜିଆଣି ତୁମ ପାଦତଳେ ଥୋଇଦେବ । ହେଲେ ଏତେ ସବୁ ଖେଳ ଜାଣିଥିଲେ ହେବ କ'ଣ ଏ ବିଲାତିକୁକୁରର କୁକୁରପଣିଆକୁ ଏଯାକେ ସଂପୂର୍ଣ୍ଣ ଆୟତ୍ତ କରାଯାଇ ପାରିନଥାଏ ଯେତେ ଚେଷ୍ଟା କଲେବି । ତାର ଗୋଟାଏ ବଡ ଦୁର୍ଗୁଣ ହେଲା ଚକଳାପଣିଆ । ଘରେ କେହି ନଥିଲାବେଳେ ସୁବିଧା ପାଇବାମାତ୍ରେ ଏ କୁକୁର ଯାଇ ହାଜର ହୋଇଯାଏ ଫ୍ରିଜ୍ ପାଖରେ । ତାକୁ କୌଶଳ ଜଣାଥାଏ ଫ୍ରିଜ୍ ଖୋଲିବାର । ଥୋମଣିରେ ଫ୍ରିଜ୍ ଡୋର ଖୋଲିଦେଇ ସେଥିରୁ ମନଇଚ୍ଛା ଯାହା ପାରେ ତାର ଗୋଟାଏ ବଡ ପ୍ୟାକେଟ୍ ସିଧା ଝିଙ୍କିନେଇ ପଳେଇବ ବେସ୍‌ମେଣ୍ଟର କୌଣସି ଏକ ଗୁପ୍ତ ଜାଗାକୁ । ଚୋରାମାଲକୁ ସେଇଠି ବସିବସି ଖାଇବା ତାର ଗୋଟାଏ ଖରାପ ଆଦତ୍ ପଡିଯାଇଥାଏ ଯୋଉଥିପାଇଁ ବେଳବେଳେ ମହା ସମସ୍ୟା ଉପୁଜେ ଘରେ । ଥରେ ଥରେ ଏଭଳି ଅଖାଦ୍ୟ ମଧ୍ୟ

ଚୋରିକରି ଖାଇଯାଏ ଯୋଉ କାରଣରୁ ତାକୁ ତତକ୍ଷଣାତ୍ ଭେଟେରିନାରି ଡାକ୍ତରଖାନାକୁ ନବା ଦରକାର ପଡେ । ଡାକ୍ତରଖାନାରେ ତା'ପେଟରୁ ସେଇ ସବୁ ଅଖାଦ୍ୟ ବାହାରକରାଇବାକୁ ଡାକ୍ତର ତାକୁ ବାନ୍ତିକରାନ୍ତି– ବାନ୍ତିରୁ ଧରାପଡେ ଜନିଷଟା କ'ଣ । ଥରେ ଗୋଟାଏ ବଡ ପଲିଥିନ୍ ଖୋଳସୁଦ୍ଧା ସେ ଗିଳିପକେଇଥିଲା ଗୋଟାଏ ବାର ଚକୋଲେଟ୍ ! ଡାକ୍ତର କହିଲେ ଏ ଜିନିଷ ଠିକ୍ ସମୟରେ ତା' ପେଟରୁ ବାହାରକରାନଯାଇଥିଲେ ବିଚରା ଡ୍ୟୁକ୍‌ର ମୃତ୍ୟୁ ଥିଲା ସୁନିଶ୍ଚିତ । ଆଉ ଥରେ ଏ ବଦ୍‌ମାସ୍ ସୁଲୁର ପଟେ ନାଇଲନ୍ ମୋଜା ଗିଳିପକେଇଥିବା ଜଣାପଡିଲା । ଡାକ୍ତର କହିଲେ ସେଇ ନାଇଲନ୍ ମୋଜାଟାକୁ ଠିକ୍ ସମୟରେ ବାନ୍ତି ନକରେଇଥିଲେ ଦରକାର ପଡିଥାନ୍ତା ପେଟ ଚିରା ଅପରେସନ୍– ଆଉ ସେ ଅପରେସନ୍‌ର କିମତ୍ ହେଇଥାନ୍ତା ପୂରା ଆଠଶହ ଡଲାର ! ସୌଭାଗ୍ୟକୁ ବାନ୍ତି କରେଇ ଡ୍ୟୁକ୍ ପେଟରୁ ବାହାରକରାଗଲା ସେଥର ସେ ମୋଜାଟା– ତଥାପି ଖର୍ଚ୍ଚ ହେଲା ଶହେ ଡଲାର ! ଏ ଦେଶରେ କୁକୁର ପାଳିବା ସଉକ ପାଇଁ ମାଲିକମାନଙ୍କୁ ବହୁ ଅର୍ଥ ବ୍ୟୟ ବା ବିନର୍ବ୍ୟୟ କରିବାକୁ ହୋଇଥାଏ । ଆଉ ଡ୍ୟୁକ୍ ସେଥିରେ ଓସ୍ତାଦ ।

କିନ୍ତୁ ସେଦିନ ଡ୍ୟୁକ୍ ସୁଲୁକୁ ଯୋଉ ବିନର୍ବ୍ୟୟ ବା ଫାଳଉତଣ୍ଡରେ ପକେଇଥାଏ ତାର ମୂଲ୍ୟ କଳନା କରିବା ଆଦୌ ସହଜ ନଥିଲା ।

ଘଟଣାଟା ଥିଲା ଏମିତି । ପୁଅର ଗ୍ରାଜୁଏସନ୍ ଫିଷ୍ଟ୍ ପାଇଁ ସୁଲୁ ମହେଶ ଯୋଉ ବଡ ତାଲିକାଟା ବହୁଦିନ ଆଗରୁ ବହୁତ ଭାବିଚିନ୍ତି ତିଆରି କରିଥିଲେ ସେଥିରେ ସାଲ୍‌ମନ୍ ମାଛର କଟ୍‌ଲେଟ୍ ଥିଲା ଗୋଟାଏ ବଡ ଆଇଟେମ୍ । ଗ୍ରାଜୁଏସନ୍ ଫିଷ୍ଟ୍ ପାଇଁ କାଟାରରକୁ ତ ଆଗତୁରା ବରାଦ ଦିଆଯାଇସାରିଥାଏ, ତା' ଛଡା ଘରେ ବନ୍ଧୁବାନ୍ଧବଙ୍କ ଚର୍ଚ୍ଚାପାଇଁ ସପ୍ତାହକ ପୂର୍ବରୁ ମାର୍କେଟିଂ ଆରମ୍ଭକରି ଦେଇଥାନ୍ତି ଦୁହେଁ । ମାସକ ଆଗରୁ ମାର୍କେଟ ଧାଁଧପଡ ଚାଲିଥାଏ । ବହୁ ପ୍ରକାର ଜିନିଷ କିଣାହେଇ ଅଣା ଚାଲିଥାଏ ଘରକୁ । ସେ ସବୁ ଜିନିଷ ଭିତରେ ଥାଏ ପନ୍ଦର କୋଡିଏ ପାଉଣ୍ଡ ଓଜନର ସାଲ୍‌ମନ୍ ମାଛର ସାଇଜକରା ପିସ୍ ସବୁ ଯାହାକୁ ସେଦିନ ସାରା ଲାଗିପଡି ଭଜାଭଜି କରି ଫ୍ରିଜ୍‌ରେ ସାଇତି ରଖିବା ଆୟୋଜନରେ ଲିପ୍ତଥାଏ ଝିଅ ଆମର ତା' କିଚନ୍‌ରେ । ସନ୍ଧ୍ୟା ସୁଦ୍ଧା ମାଛଭଜା କାମ ସରିଲା । ଭଜା ମାଛଗୁଡାକୁ ଗୋଟାଏ ବଡ ଟ୍ରେରେ ସଜାଡି ରଖୁଥାଏ ଝିଅ । ସେତିକିବେଳେ ଘଟିଲା ସେଇ ଦୈବୀ ବିପ୍ଳବ ! ସେ ପର୍ଯ୍ୟନ୍ତ କିଚନ୍ ଭିତରେ ଗୋଟାଏ କଣରେ ପଡିଥିବା ତା' ଶୋଇବା ଆସନ (ରଗ୍) ଉପରେ ଘାଲେଇ ପଡିଥାଏ ଡ୍ୟୁକ୍ । ହଠାତ୍ କ'ଣ ମନହେଲା ତାର ଉଠି ଠିଆହେଇପଡିଲା । ବିରାଟ ଡେଙ୍ଗା କୁକୁରଟା ଥୋଡି ବଢେଇଲେ ତା' ମୁହଁ ପାଇଯାଏ ଛ' ସାତ ଫୁଟ୍ ଉଚ୍ଚକୁ । ଦି'ଗୋଡରେ ଠିଆହେଇପଡି ଡ୍ୟୁକ୍ ତା' ଲମ୍ବା ଥୋଡିଟାକୁ ଲମ୍ବେଇଦେଲା ଚାରିଫୁଟ୍ ଉଚ୍ଚ କିଚନ୍ ଟେବ୍‌ଲ ଉପରକୁ । ସଦ୍ୟଭଜା ଗରମଗରମ ସାଲ୍‌ମନ୍ ମାଛର ଟ୍ରେରୁ ଏକାଥରକେ କେଇ ପିସ୍ ମାଛଭଜା

ଭିଡିନେଇ ଡିଆଁଟାଏ ମାରି ଆଖି ପିଛୁଳାକେ ଉଭାନ୍ ହେଇଗଲା ଡ୍ୟୁକ୍ । ଝିଅର ଆଖି ଆଗରେ ଘଟିଗଲା ସର୍ବନାଶ !

– ଯା'ପରେ ମୁଣ୍ଡପିଟି ବାହୁନିବା ଛଡା ଆଉ କ'ଣ କରିପାରିଥାନ୍ତା ବିଚାରି ଝିଅ !

ଆମକୁ ଦେଖି ତାର ବାହୁନାର ସ୍ୱର ବଦଳିଗଲା । ସବୁତକ ରାଗ ମହେଶଙ୍କ ଉପରେ ଅଜାଡିପକେଇଲା ସେ ଗୋଟାଏ ନିଶ୍ୱାସରେ । ଚିତ୍କାରକଲା– ତମକୁ କିଏ କହିଥିଲା ଏ ବଦ୍‌ମାସ କୁକୁରକୁ ଏ ଘରେ ଆଣି ପାଳିବାକୁ ? ମୂଳରୁ କହିଚି– ବ୍ରାହ୍ମଣଙ୍କ ଘରେ କୁକୁର ପାଳନ୍ତିନାହିଁ । ଦେଖିଲତ କେମିତି ସତ୍ୟାନାଶ କରିଦେଲା ! କୋଡିଏ ପାଉଣ୍ଡ ସାଲ୍‌ମନ୍ ଭଜା ଗଲା ଏଇଲେ ଗାର୍ବେଜକୁ ! ଏମିତି ଗାଲରେ ହାତଦେଇ ଦେଖୁଚ କ'ଣ ? ଆଗ ସେ ବଦ୍‌ମାସକୁ ଏ ଘରୁ ନିକାଲ– ତା' ପରେ ଯାଇ ପୁଅର ଗ୍ରାଜୁଏସନ୍ କି ଫ୍ରାଜୁଏସନ୍ କରିବ ! ମୁଁ ଦିନ ତମାମ୍ ଲାଗିପଡି ମାଛ ଭଜା ଛାଣିଛାଣି ନୟାନ୍ତ । ଆଉ ଏ ଚୋର ଏଇଠି ମୋ ପାଦ ପାଖରେ ଶୋଇଶୋଇ ସକାଳୁ ଓର ଉଣ୍ଡୁଥିଲା । ଯେମିତି ଭଜାଭଜି କାମ ସରିଲା ଆଉ ମୁଁ ଟ୍ରେଟାକୁ ଟିକେ ଛାଡିଦେଲି ଥଣ୍ଡାହବାକୁ ଏ ଅସୁର ଥିଲା ଥିଲା ଡେଇଁପଡି ଟ୍ରେରେ ମୁହଁ ପୂରେଇଦେଲା । ସବୁତକ ଜନିଷ ମୋର ମାରାକରିଦେଲା ମୁହୂର୍ତ୍ତକ ଭିତରେ । ସବୁତ ଗଲା ସରିଗଲା ମାରା ହେଇଗଲା । ମୁଁ ଏବେ କ'ଣ କରିବି କୁହ ? ଆଉ ତ ଯୋଡାଏ ମାତ୍ର ଦିନ ଆଗକୁ । କାଲିକୁ ପହଞ୍ଚିଯିବେ ଗେଷ୍ଟ୍‌ମାନେ । ପଚାଶଜଣ ବନ୍ଧୁବାନ୍ଧବ ରହିବେ ଏ ଘରେ । କ'ଣ ଦେବି ସେମାନଙ୍କୁ ଖାଇବାକୁ ?"

ଏଇ ସମୟରେ ପହଞ୍ଚିଲେ ମନୀଶ ଆଉ ତା' ଆମେରିକାନ୍ ସାଙ୍ଗ ଦି'ଜଣ । ଜଣକ ନାଁ ମାଇକେଲ୍ । ମାଇକେଲ୍‌କୁ ମୁଁ ଜାଣିଥାଏ ପନ୍ଦରବର୍ଷ ତଳୁ, ୧୯୯୩ରୁ । ସେତେବେଳେ ସେ ହେଇଥାଏ ଦୁଇତିନି ବର୍ଷର । ଭାରି ସୁନ୍ଦରିଆ ଇଟାଲିୟାନ୍ ପିଲା । ତା' ବାପମା' ସୁଲୁ ମହେଶଙ୍କ ସାଙ୍ଗ । ସେମାନେ ରହୁଥାନ୍ତି ସେତେବେଳେ ଏମାନଙ୍କ ପୂର୍ବ ବାସଗୃହ– ନିପ୍‌ଜିକ୍ ରୋଡ୍‌ରେ ପାଖାପାଖି ଘରେ । ମାଇକେଲ୍ ମନୀଶଙ୍କ ବନ୍ଧୁତା ସେଇ ପିଲାଦିନୁ । ଏବେ ବଡବଡ ହେଇଗଲେଣି ସେ ଦୁହେଁ । ଏକା ସାଙ୍ଗେ ପାଶ୍ କରିଥାନ୍ତି ହାଇସ୍କୁଲ୍ । ତେବେ ମାଇକେଲ୍ ଏଇ ପନ୍ଦରବର୍ଷ ଭିତରେ ମନୀଶଠୁ ଢେର୍ ବଡ କାଟର ଗୋଟାଏ ଭେଣ୍ଡା-ଯୁଆନ୍ ପାଲଟିଯାଇସାରିଥାଏ । ସେଇ ଯୁଆନ୍ ମାଇକେଲ୍‌କୁ ସାଙ୍ଗରେ ଧରି ମନୀଶ ପଶିଲା ଘର ଭିତରକୁ । କିଚନ୍‌ରେ କ'ଣ ପାଟିତୁଣ୍ଡ ହଉଚି ଶୁଣି ଉଭୟ ପଶି ଆସିଲେ ଘଟଣାସ୍ଥଳକୁ ।

ମାଇକେଲ୍ ଆଖିରେ ପଡିଲା– ମାଛଭଜା ଟ୍ରେଟା । ଟ୍ରେ ଭର୍ତ୍ତି ଭଜାମାଛତକ ଗାର୍ବେଜରେ ପଡିବାକୁ ଯାଉଚି ବୋଲି ଯେମିତି ତା' କାନରେ ପଡିଗଲା ହଠାତ୍ ମାଇକେଲ୍ ଚିରଚିରେଇ ଉଠିଲା– "Well, are you all here in your right sense ? Why are you going to throw away all this huge heap of fishfry ?"

ମହେଶ ଟ୍ରେଟାକୁ ଟେକିନେଉଥାନ୍ତି ଘର ବାହାରେ ରଖାଯାଇଥିବା ଗାର୍ବେଜକୁଣ୍ଡ ପାଖକୁ । ମାଇକେଲ୍‌ର ପ୍ରଶ୍ନର ଉତ୍ତର ଦବା ପାଇଁ ଟିକେ ଅଟକିଯାଇ କହିଲେ, "Well, this is spoilt. No more kosher as the jews would name it. The dog has spoilt the whole lot of it as you see !"

ମହେଶଙ୍କ କଥାକୁ ବିଶ୍ୱାସ କରିପାରିଲା ନାହିଁ ମାଇକେଲ୍ । ସେମାନଙ୍କ ଦେଶର ଚଳଣି ଅନୁସାରେ କୁକୁର ଏକ ଅପବିତ୍ର ପ୍ରାଣୀ ନୁହେଁ ଆଦୌ । ସେମାନେ ତ କୁକୁରକୁ କୋଳରେ ଧରି ବସନ୍ତି, ଖଟରେ ଶୁଆନ୍ତି ନିଜ ଶେଯରେ, ପୁଣି କୁକୁରକୁ ଗେଲକରି ତା' ମୁହଁରେ ମୁହଁ ମିଳେଇ ଚାଟନ୍ତି । ସେମାନଙ୍କ ପାଇଁ ହିନ୍ଦୁଙ୍କ ଏଇ ପବିତ୍ର ଅପବିତ୍ର ଭାବନା ନିଶ୍ଚୟ ଏକ ହାସ୍ୟାସ୍ପଦ ବ୍ୟାପାର ।

ବହୁ ଅଲୋଚନା ଚାଲିଲା ତା'ପରେ ହିନ୍ଦୁଙ୍କ ଖାଦ୍ୟ ଓ ତାର ପବିତ୍ରତା ସଂପର୍କରେ । ପିଲାମାନଙ୍କୁ ବୁଝେଇବାକୁ ଚେଷ୍ଟାକଲେ ମହେଶ ହିନ୍ଦୁଙ୍କ ଖାଦ୍ୟର ପବିତ୍ରତା ସଂପର୍କରେ । କହିଲେ– ହିନ୍ଦୁମାନଙ୍କ ପାଇଁ ଖାଦ୍ୟଦ୍ରବ୍ୟର ପବିତ୍ରତା ଗୋଟିଏ ବଡ ଧାର୍ମିକ ବିଚାର । ସେ ଖାଦ୍ୟ ଖାଦ୍ୟପଦବାଚ୍ୟ ନୁହେଁ ଯାହା ରୋଷେଇ କରାଯିବାବେଳେ ତାକୁ ଯଦି ଚାଖିବା-ଆଳରେ କେହି ନେଇ ମୁହଁରେ ମାରେ ବା ରୋଷେଇ ସରିବାପରେ ବି ପରିବେଷଣ ପୂର୍ବରୁ ତାକୁ କେହି ଅଇଁଠା କରିଦିଏ । ପୁଣି ସବୁଠୁ ବଡ କାରଣ ହେଲା– ହିନ୍ଦୁମାନେ ସାଧାରଣତଃ ଖାଦ୍ୟଭକ୍ଷଣ ପୂର୍ବରୁ ପ୍ରଥମେ ତାକୁ ନୈବେଦ୍ୟ ଭାବେ ଅର୍ପଣ କରନ୍ତି ସେମାନଙ୍କର ଗୃହ- ଦେବତାଙ୍କୁ । ତେଣୁ ପୂଜା ପାଇଁ ଉଦ୍ଦିଷ୍ଟ ଖାଦ୍ୟକୁ ଯଦି କେହି ଅଇଁଠା କରିଦିଏ ତେବେ ସେ ଖାଦ୍ୟ ମାରାହେଇଯାଏ– ମାନେ ପୂଜା ଯୋଗ୍ୟ ବିବେଚିତ ହୁଏନା । ଅବଶ୍ୟ ହିନ୍ଦୁମାନେ ହିଅଁ ଦେବାତଙ୍କୁ ମାଛ ମାଂସ (ଆମିଷ) ଭୋଗ ଦିଅନ୍ତି ନାହିଁ । ତଥାପି ଏ ମାଛ ଭଜା-ଗୁଡାକରେ କୁକୁର ମୁହଁ ମାରିଦେଇଥିବାରୁ ତାହା ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ମଧ୍ୟ ମଣିଷ ପାଇଁ ଅଖାଦ୍ୟ । ତେଣୁ ଏ ଗଦାକଯାକ ମାଛଭଜା କେବଳ ଗାର୍ବେଜକୁ ଯିବା ଛଡା ଯା'ର ଅନ୍ୟ ଗତି ନାସ୍ତି ।

ମାଇକେଲ୍ ମହେଶ ସ୍ୱାଁଇଙ୍କ ସବୁ ଯୁକ୍ତିତର୍କ ଶୁଣିଲା ମନଦେଇ । କିନ୍ତୁ କ'ଣ ଭାବି ସେ ଚଟ୍‌କିନା ଟ୍ରେରେ ହାତ ପୂରେଇ କେଇଖଣ୍ଡ ମାଛଭଜା ଉଠେଇନେଲା ଓ ଖଣ୍ଡେ ନିଜ ପାଟିରେ ପୂରେଇଦେଇ ବାକି କେଇଟାକୁ ବଢେଇଦେଲା ତା' ସାଙ୍ଗ ଆଡକୁ । ମନୀଶକୁ ମଧ୍ୟ ଯାଚିଲା ଖଣ୍ଡେ ମାଛ ଭଜା ନେଇ ଚାଖିବାକୁ । କିନ୍ତୁ ଦେଖାଗଲା ମନୀଶ ତା' ସାଙ୍ଗର ଅନୁରୋଧ ଖୋଲାଖୋଲି ରକ୍ଷା ନକରିପାରି ଖାଲି ହସିଦେଲା ଟିକେ ।

ଦୂରରେ ଥାଇ ଏ ଦୃଶ୍ୟ ଦେଖୁଥାଏ ମୁଁ । ଭାବୁଥାଏ ବୋଧହୁଏ ମନୀଶ ତା' ପିଲାଦିନର ସାଙ୍ଗ ମାଇକେଲ୍‌ର ଅନୁରୋଧକୁ ଉପେକ୍ଷା ନକରିପାରି ତାର ଅନ୍ୟ ଦୁଇ ଆମେରିକାନ୍ ସାଙ୍ଗଙ୍କ ପରି କୁକୁର ଅଇଁଠା ମାଛଭଜା ଖାଇବାର ଲୋଭ ସଂବରଣ

କରିପାରିବ ନାହିଁ । କିନ୍ତୁ ମନୀଶ ସେମାନଙ୍କ ସହିତ ମାଛଭୋଜିରେ ଯୋଗ ନଦେବା ଦେଖି ମୁଁ କିଛିଟା ଆଶ୍ୱସ୍ତ ଆଉ ଚିନ୍ତିତ ମଧ୍ୟ ହେଲି ମୋ ନାତି ମନୀଶର ଭବିଷ୍ୟତକୁ ନେଇ ।

ମନେପଡିଲା କିଛି ବର୍ଷ ପୂର୍ବରୁ ମୁଁ ଆମେରିକାରେ ଆମ ପ୍ରବାସୀ ଭାରତୀୟଙ୍କ ଗୋଟିଏ ବଡ ସମସ୍ୟାକୁ ନେଇ ଏକ ଦୃଷ୍ଟାନ୍ତମୂଳକ ଭ୍ରମଣୋପନ୍ୟାସ ଲେଖିଥିଲି । ବହିର ନାମ– 'ତୃଷ୍ଣା : ଏକ ଅନାବିଷ୍କୃତ ଆମେରିକା' । ସେ ବହିଟି ଆମେରିକାର ପ୍ରବାସୀ ଓଡିଆମାନଙ୍କ ଭିତରେ ବେଶ୍ କିଛି ହଲଚଲ ସୃଷ୍ଟି କରିବା ସହିତ ଲୋକପ୍ରିୟତା ମଧ୍ୟ ଅର୍ଜିଥିବା ଜାଣିଥିଲି । ସେଥିରେ ଆମେରିକାରେ ବାସକରୁଥିବା ସାଂପ୍ରତିକ ପ୍ରବାସୀ-ଓଡିଆମାନଙ୍କର ଏକ ମୁଖ୍ୟ ସମସ୍ୟା ଉପରେ ମୁଁ ଆଲୋକପାତ କରିଥିଲି– ସେ ସମସ୍ୟାଟି ହେଲା ଆମେରିକା ମାଟିରେ ଜନ୍ମିତ ଦ୍ୱିତୀୟପୀଢିର ଏନ୍.ଆର୍.ଆଇ. ଓଡିଆଙ୍କ ସାଂସ୍କୃତିକ ମୂଲ୍ୟବୋଧ ଜନିତ ସମସ୍ୟା । ସେମାନେ ନିଜକୁ ଆମେରିକାନ୍ ନାଗରିକ ଭାବିଲେ ମଧ୍ୟ ସେମାନଙ୍କର ସାଂସ୍କୃତିକ ରୁଚିବୋଧ ସେମାନଙ୍କ ପାଇଁ କି ଭୟଙ୍କର ସମସ୍ୟା ସୃଷ୍ଟି-କରିପାରେ ଭବିଷ୍ୟତରେ ତାହାହିଁ ଥିଲା ସେ ଉପନ୍ୟାସର ବିଷୟବସ୍ତୁ । ବାରମ୍ବାର ଆମେରିକା ଭ୍ରମଣ ସମୟରେ ମୁଁ ଏଇ ପ୍ରବାସୀ ମଣିଷଙ୍କ ପାଇଁ ସର୍ବାଧିକ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଉପୁଜାଇବାକୁ ଟାକିବସିଥିବା ସେଇ ମାରାତ୍ମକ ବିଷୟଟା ପ୍ରତି ମୂଳରୁ ସଚେତ ଥିଲି । ସେ ବିଷୟଟାର ସ୍ୱରୂପ ମୁଁ ଲକ୍ଷ୍ୟ କରିଥିଲି ଏ ଦେଶରେ ଜନ୍ମିତ ପୁଅ ଝିଅଙ୍କ ବିବାହ ବୟସ ପହଞ୍ଚିବା ସମୟରେ । ଲକ୍ଷ୍ୟ କରିଥିଲି– ଏ ଦେଶର ଅଧିକାଂଶ ଦ୍ୱିତୀୟ ପିଢି ପ୍ରବାସୀ ଭାରତୀୟ ସନ୍ତାନ ନିଜ ଏନ୍.ଆର୍.ଆଇ ଭାରତୀୟ ସଂପ୍ରଦାୟ ଭିତରେ ବିବାହ କରିବାକୁ ସଂପୂର୍ଣ୍ଣ ଅନିଚ୍ଛୁକ । ସେମାନେ ଚାହାନ୍ତି ଗୋରା ପୁଅ ଝିଅଙ୍କୁ ବାହାହେଇ ବୃହତ୍ତର ଆମେରିକାନ୍ ସମାଜ ସହିତ ମିଶିଯିବାକୁ । ଏହା ହୁଏତ ସ୍ୱାଭାବିକ । କିନ୍ତୁ ବାସ୍ତବରେ ଏ ବ୍ୟବସ୍ଥାର ସ୍ଥାୟିତ୍ୱ ହେଲା ସନ୍ଦେହଜନକ । ଅନେକ କ୍ଷେତ୍ରରେ ବିବାହ ପରେପରେ ଆସେ ବିବାହ ବିଚ୍ଛେଦର ଆହ୍ୱାନ । କାହିଁକି ? ମୋ ଉପନ୍ୟାସ ତୃଷ୍ଣାରେ ମୁଁ ଏ ମନସ୍ତତ୍ତ୍ୱର ନାଁ ଦେଇଚି– Culture Shock ।

– ସେ ଯାହାହେଉ ସ୍କୁଲର ଦିନଯାକର ପରିଶ୍ରମ ଶେଷରେ ଗଲା ଗାର୍ବେଜ୍‌କୁ ।

ପରେପରେ ମହେଶ ପୁଣି କାର୍‌ଧରି ବାହାରିଲେ ମଲ୍‌କୁ । ସେଇ ରାତିରେ ପୁଣି କିଣାହେଇ ଆସିଲା ପନ୍ଦର କିଲୋଗ୍ରାମ୍ ସାନି ସାଲ୍‌ମନ୍ ମାଛ ବଜାରରୁ । ରାତି ଅଧଯାକେ ମା' ଝିଅ ଲାଗିପଡିଲେ ମାଛଭଜା କାମରେ କିଚନ୍‌ରେ । ଏଇହେଲା ମନୀଶର ଗ୍ରାଜୁଏସନ୍ ଉତ୍ସବର ଅୟମାରମ୍ଭ !

ଉତ୍ସବଦିନ ସନ୍ଧ୍ୟାରେ ହାର୍ଟଫୋର୍ଡ ସହରର ପୂର୍ବ-ନିର୍ଦ୍ଧାରିତ କମ୍ୟୁନିଟି ସେଣ୍ଟର୍‌ରେ ଆମେ ସବାନ୍ଧବ ଉପସ୍ଥିତ ହେଲୁ । ତା'ପରେ ସମସ୍ତେ ଲାଗିପଡିଲେ ସମଗ୍ର କମ୍ୟୁନିଟି

ହଲ୍‌ଟିକୁ ଫେଷ୍ଟୁନିଂ କରିବା ସହିତ ଫୁଲରେ ମଣ୍ଡିବା କାମରେ । ହଲ ଭିତରେ ସ୍ଥାନେସ୍ଥାନେ ଗୋଟିଏ ଲେଖାଁ ଟେବୁଲ୍ ଏବଂ ଟେବୁଲ୍ ଚାରିପାଖେ ଚେୟାର୍ ସବୁ ସଜାଡ଼ି କରି ପକାଇ ଦିଆଗଲା । ପ୍ରାୟ ତିନିଶହ ଲୋକଙ୍କ ପାଇଁ ବ୍ୟବସ୍ଥା ।

ସନ୍ଧ୍ୟା ୫.୩୦ ବେଳକୁ ଅତିଥିମାନଙ୍କର ଆଗମନ ଆରମ୍ଭ ହେଲା । ଅଳ୍ପ ସମୟ ଭିତରେ ହଲ୍ ଭରପୂର୍ । ଏହାପରେ ନବ ଗ୍ରାଜୁଏଟ୍‌ଙ୍କ ପାଇଁ ସଂବର୍ଦ୍ଧନା ସଭାର ଆରମ୍ଭ । ଏ ସଭାର ମାଷ୍ଟର୍ ଅଫ୍ ସେରିମନି ହେଲେ ଶ୍ରୀମାନ୍ ଅମୃତ ପତି । ଅମୃତ ସ୍ୱୁଲୁ ମହେଶଙ୍କ ବଡ଼ପୁଅ– ଆମେରିକାର ପ୍ରସିଦ୍ଧ କାର୍ନେଗୀ ମେଲନ୍ ବିଶ୍ୱବିଦ୍ୟାଳୟର ପୂର୍ବବର୍ଷର ଗ୍ରାଜୁଏଟ୍ । ଅମୃତ ଘୋଷଣାକଲା ମାଇକ୍‌ରେ ଯେ ପ୍ରଥମେ ଏଠାରେ ଉପସ୍ଥିତ ସର୍ବମାନ୍ୟ ଗୁରୁଜନ ମୋର ଅଜା ଶାନ୍ତନୁ କୁମାର ଆଚାର୍ଯ୍ୟ ମନୀଶଙ୍କୁ ଆଶୀର୍ବାଦ କରିବେ । ଏହାପରେ ସଭାକାର୍ଯ୍ୟ ଯଥାବିଧି ଚାଲିବ ଏକ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ।

ମୁଁ ମଞ୍ଚ ଉପରକୁ ଗଲି ଓ ନାତି ଅମୃତ ହାତରୁ ମାଇକ୍ ନିଜ ହାତକୁ ନେଲି । କହିଲି– ବନ୍ଧୁଗଣ, ଆଜି ମୋ ସାନ ନାତି ମନୀଶ ପାଇଁ ଜୀବନର ଏକ ଐତିହାସିକ ଟର୍ଣ୍ଣିଂ ପଏଣ୍ଟ ମୁହୂର୍ତ୍ତ । ଆଜି ମନୀଶ ହାଇସ୍କୁଲ୍ ଗ୍ରାଜୁଏଟ୍ ଉପାଧି ପାଇଥିବାରୁ ତା' ପାଇଁ ଏ ଆନନ୍ଦମୁଖର ଉତ୍ସବ ପାଳନ କରାଯାଉଚି । ମୁଁ ତାର ଅଜା ହୋଇଥିବାରୁ ତାକୁ ପ୍ରଥମେ ଆଶୀର୍ବାଦ ଜଣାଇବାର ସୁଯୋଗ ମତେ ମିଳିଚି ନିଶ୍ଚୟ । ମୁଁ ତାର ସୁଖ ସ୍ୱାଚ୍ଛନ୍ଦ୍ୟମୟ ସୁଦୀର୍ଘ ଜୀବନ କାମନା କରୁଚି ।

ଏହା ସହିତ ଏ ସଭାରେ ମୁଁ କହିଦେବାକୁ ଚାହେଁ ଯେ ମୋର ଏ ନାତିଟି ପ୍ରକୃତରେ ଏ ଜନ୍ମରେ ଯଦିଚ ମନୀଶ ନାମରେ ପରିଚିତ ହେଉଚି, ତଥାପି ଏ ପିଲାର କେତେକ ଗୁଣ ଦେଖି ମୁଁ ଏହାର ପୂର୍ବଜନ୍ମର ନନ୍ଦକିଶୋର ନାମରେ ପରିଚିତ କରାଇବାକୁ ବର୍ତ୍ତମାନ ଏକ ତୀବ୍ର ବ୍ୟଗ୍ରତା କାହିଁକି କେଜାଣି ଅନୁଭବ କରୁଚି । ମୋ ମୁହଁରୁ ଏଭଳି ଅଦ୍ଭୁତ କଥା ଶୁଣି ଆପଣମାନେ ନିଶ୍ଚୟ ବିସ୍ମିତ ହେବାକୁ ଆରମ୍ଭ କରିବେଣି । କିନ୍ତୁ ବନ୍ଧୁଗଣ, ମୋ' ମୁହଁରୁ ଏ ବାଳକର ଜନ୍ମ-ରହସ୍ୟ ସଂପୂର୍ଣ୍ଣ ଶୁଣିବା ପରେ ନିଶ୍ଚୟ ଆପଣମାନଙ୍କର ସେଭଳି ଅହେତୁକ ବିସ୍ମୟର ଉପଶମ ଘଟିବ । ତେବେ ଶୁଣିବା ହୁଅନ୍ତୁ ସଂପୂର୍ଣ୍ଣ ବିବରଣୀ–

ସେଇ ରହସ୍ୟଜନକ ଘଟଣାଟି ହେଲା– ମୋର ଶଶୁର ସ୍ୱର୍ଗତ ନନ୍ଦକିଶୋର ରଥ ଥିଲେ ଆମ ସମୟର ଓଡ଼ିଶାର ସ୍ୱନାମଧନ୍ୟ ହେଡ୍‌ମାଷ୍ଟର । ସେ ଥିଲେ କଟକର ପ୍ରଖ୍ୟାତ ରେଭେନ୍ସା କଲିଜିଏଟ୍ ସ୍କୁଲର ପ୍ରବାଦପୁରୁଷ ହେଡ୍‌ମାଷ୍ଟର ଯାହାଙ୍କ ଛାତ୍ରଛାତ୍ରୀମାନେ ବର୍ତ୍ତମାନ ମଧ୍ୟ ଭାରତ ତଥା ୟୁରୋପ ଏବଂ ଆମେରିକାର ବହୁ ବଡ଼ବଡ଼ ବିଶ୍ୱବିଦ୍ୟାଳୟର ବିଜ୍ଞାନ ବିଭାଗର ପ୍ରଫେସର୍ ତଥା ଇଂଜିନିୟର୍ ଅଥବା ଉଚ୍ଚ ପଦପଦବୀରେ ଅଧିଷ୍ଠିତ । ସେ ଥିଲେ ଜଣେ ପ୍ରବୀଣ ମ୍ୟାଥେମାଟିସିଆନ୍ ଆଉ ବିଜ୍ଞାନ ଶିକ୍ଷକ । ୧୯୦୭ ନଭେମ୍ବର ଚଉଦରେ ଜନ୍ମିତ ଏହି ମହାତ୍ମାଙ୍କର ମହାପ୍ରୟାଣ ଘଟିଥିଲା ୧୯୮୯ ଫେବୃଆରି ୯

ତାରିଖରେ ଓଡିଶାର ରାଜଧାନୀ ଭୁବନେଶ୍ୱରର କ୍ୟାପିଟାଲ୍ ହସ୍‌ପିଟାଲ୍‌ରେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଅତି ଅହେତୁକ ଭାବେ ସେ ପ୍ରଳାପ ଆରମ୍ଭ କରିଦେଲେ ଏବଂ ଶଯ୍ୟାପାଖରେ ଉପସ୍ଥିତ ସେବାକାରୀଙ୍କୁ ବାରମ୍ୱାର କହିଲେ, "ମତେ ସୁଲୁ ମହେଶ ଘରକୁ ନେଇଯାଅ । ମୁଁ ସେଇଠି ଭଲହେଇଯିବି । ମୋ ଝିଅ ଜୋଇଁ ସୁଲୁ (ନିବେଦିତା) ମହେଶ ସେତେବେଳେ ରହୁଥାନ୍ତି ସେମାନଙ୍କର ପୂର୍ବ ବାସଗୃହ ଗ୍ଲାସଟନ୍‌ବରି ସହରର ନିପ୍‌ଜିକ୍‌ରୋଡ୍‌ରେ । ଶଶୁର ନନ୍ଦକିଶୋର ରଥ ମୃତ୍ୟୁଶଯ୍ୟାରେ ଥାଇ ସେଇ ଯେଉଁ ପ୍ରଳାପ ମାଧ୍ୟମରେ ସ୍ୱପ୍ନ ଦେଖିଲାଭଳି ବର୍ଣ୍ଣନା କରିବାକୁ ଲାଗିଲେ ନିପଜିକରୋଡ୍ ଅଂଚଳର ରାସ୍ତାଘାଟ ଆଉ ପ୍ରାକୃତିକ ପରିବେଶର ସୌନ୍ଦର୍ଯ୍ୟମୟ ଦୃଶ୍ୟଗୁଡିକୁ ତାହା ମୁଁ ନିଜେ ଶୁଣିଚି । ମୁଁ ଉପସ୍ଥିତ ଥାଏ ତାଙ୍କ ଶଯ୍ୟାପାଖରେ ଆଉ ତାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହେଉଥାଏ । କାରଣ ସେ କଦାପି ସୁଲୁ ମହେଶଙ୍କ ସେ ନିପ୍‌ଜିକ୍‌ରୋଡ୍ ଘର ଦେଖିନଥିଲେ । ଯଦିଚ ୧୯୮୧ରେ ସେ ଓ ମୋ ଶାଶୁ ଥରକପାଇଁ ଆମେରିକା ଭ୍ରମଣରେ ଆସିଥିଲେ ତଥାପି ସେ ମହେଶଙ୍କ ସେଇ ନିପଜିକ ରୋଡ ଘରକୁ ବୁଲି ଆସିବାର ସଂଭାବନା ମଧ୍ୟ ନଥିଲା ସେତେବେଳେ ମୂଳରୁ । କାରଣ ସେ ପର୍ଯ୍ୟନ୍ତ ମହେଶଙ୍କ ସାଙ୍ଗେ ମୋ ଝିଅ ନିବେଦିତାର ବିବାହ ସଂପନ୍ନ ହୋଇନଥାଏ । ସେମାନଙ୍କ ବିବାହ-ସଂପନ୍ନ ହୋଇଥିଲା ୧୯୮୨ରେ । ସେ ଯାହାହେଉ ସେଇ ରାତିରେ ଶଶୁରଙ୍କ ଦେହାନ୍ତ ହେଲା । ଏହାର ମାସକ ପରେ ଆମେ ଏକ ଶୁଭସଂବାଦ ପାଇଲୁ ଯେ ଆମ ଝିଅ ସୁଲୁମା ପୁନର୍ବାର ସନ୍ତାନସଂଭବା । ଏହାର ଠିକ୍ ନ'ମାସ ପରେ ଶୁଭସଂବାଦ ମିଳିଲା ମନୀଶ ଜନ୍ମର । ମନୀଶର ଜନ୍ମ ନଭେମ୍ବର ୧୪, ୧୯୮୯ । ସେଇ ନଭେମ୍ବର ୧୪ ଥିଲା ମଧ୍ୟ ଶଶୁର ନନ୍ଦକିଶୋର ରଥଙ୍କ ଜନ୍ମଦିନ । ଏ ତାରିଖର ଅନ୍ୟ ତାତ୍ପର୍ଯ୍ୟ ହେଲା– ଏହା ମଧ୍ୟ ଭାରତର ଅନ୍ୟତମ ଯୋଗଜନ୍ମା ଐତିହାସିକ ବ୍ୟକ୍ତିତ୍ୱ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁଙ୍କର ଜନ୍ମଦିନ ।

ମନୀଶର ପିଲାଦିନ ସାରା ମୁଁ ତାର ବହୁ ଲକ୍ଷଣ ଏବଂ ଆଚରଣ ଗୁଡିକୁ ଲକ୍ଷ୍ୟ-କରିଚି । ଛୋଟ ପିଲାଦିନୁ ଏ ବାଳକର ଅସାଧାରଣତ୍ୱ ଆମେ ଦେଖିଚୁ ତାର ଅହେତୁକ ଆକର୍ଷଣ ମେକାନିକାଲ୍ ମଡେଲ୍ ବିଲ୍‌ଡିଂ ପ୍ରତି । ବହୁ ଜଟିଳ ମେକାନିକାଲ୍ ମଡେଲ୍ ନିର୍ମାଣ କରି ସେ ଆମକୁ ତାର ବାଲ୍ୟକାଳ ସାରା ବିସ୍ମିତ କରି ଆସିଚି । ପରେ ପରେ ସ୍କୁଲ୍‌ରେ ନାଁ ଲେଖେଇବା ପରେ ତାର ଅସାଧାରଣତ୍ୱ ଲକ୍ଷ୍ୟକରିହେଲା ଅନ୍ୟ ପ୍ରକାରେ । ସ୍କୁଲ୍‌ରେ ତାର ସବୁଠୁ ପ୍ରିୟ ବିଷୟହେଲା– ମ୍ୟାଥେମାଟିକସ୍ ଆଉ ସାଇନ୍ସ । ତା'ଛଡା ସେ ଯେତିକି ଯେତିକି ବଡ ହଉଚି ଯାନ୍ତ୍ରିକ ଜଗତ ପ୍ରତି ତାର ବିଶେଷ ଆକର୍ଷଣ ମୋ' ଶଶୁରଙ୍କ ବ୍ୟକ୍ତିତ୍ୱର ସେଇ ବିଶେଷ ଗୁଣଟି ବିଷୟରେ ମତେ ସେତିକି ସେତିକି ଚେତେଇ ଦେଉଚି । ଏଇ ସମସ୍ତ କାରଣରୁ ଆମ ପରିବାରରେ ଏଇ ବିଶ୍ୱାସ ଦୃଢୀଭୂତ ହୋଇସାରିଚି

ଯେ ଆମର ଏ ନାତିଟି ହେଲା The Great Nandakishore Rath re-incarnate ! ଅର୍ଥାତ୍ ମନୀଶ୍ ହେଲା ନନ୍ଦକିଶୋର ରଥଙ୍କ ଦ୍ୱିତୀୟ ଅବତାର ।

ଆୟୁଷ୍ମାନ୍ ମନୀଶର ଅଜାଭାବେ ମୁଁ ତାର ଉତ୍ତରୋତ୍ତର ଉନ୍ନତି ଏବଂ ଦୀର୍ଘ-ଜୀବନ କାମନା କରିବା ସହିତ ମୋର ନିଜର ପୂର୍ବତନ ଶିକ୍ଷାଗୁରୁ ତଥା ଶଶୁର ନନ୍ଦକିଶୋର ରଥଙ୍କ ସ୍ମୃତି-ଉଦ୍ଦେଶ୍ୟରେ ଏ ପିଲାର ଆତ୍ମା-ପୁରୁଷଙ୍କୁ ପ୍ରଣାମ ଜଣାଉଚି ।"

ମୋର ସେଇ ସଂକ୍ଷିପ୍ତ ବକ୍ତବ୍ୟଟିର ମର୍ମାର୍ଥ ବୁଝିବା ପାଇଁ ସଭାସ୍ଥଳରେ ବହୁତ ଅତିଥି ଉପସ୍ଥିତ ଥିଲେ । ସେମାନଙ୍କ ଭିତରେ ଥିଲେ ନନ୍ଦବାବୁଙ୍କ ଦୁଇଜଣ ଅତି ଅନୁରକ୍ତ ପୂର୍ବତନ ଛାତ୍ର– ଶ୍ରୀ ନିତ୍ୟାନନ୍ଦ ମିଶ୍ର ଓ ତାଙ୍କ ଭାଇ ଶ୍ରୀ ସତ୍ୟବ୍ରତ ମିଶ୍ର । ସେମାନଙ୍କ ବାପା ସ୍ୱର୍ଗତ ଭାବଗ୍ରାହୀ ମିଶ୍ର ଥିଲେ ଜଣେ ଅବସରପ୍ରାପ୍ତ ଆଇ.ଏ.ଏସ୍ ଅଫିସର୍ । ଏ ଭାଇ ଦୁହେଁ ଥିଲେ କଲିଜିଏଟ୍ ସ୍କୁଲ୍ର ଛାତ୍ର ଆଉ ହେଡ୍ମାଷ୍ଟର୍ ନନ୍ଦକିଶୋର ରଥଙ୍କ ପ୍ରିୟ ଛାତ୍ର । ଭାଇ ଦୁହେଁ ପରବର୍ତ୍ତୀ ସମୟରେ ଆମେରିକା ଆସିଥିଲେ ଏବଂ ସମୟକ୍ରମେ ବଡବଡ କଂପାନୀର ଏକ୍ଜିକ୍ୟୁଟିଭ୍ ପଦବୀରେ ଆସୀନ ହେଲେ । ଏମାନେ ଦୁହେଁ ବର୍ତ୍ତମାନ ଆମେରିକାର ମାସାଚ୍ୟୁସେଟ୍ସ୍ର ଅଧିବାସୀ । ସେମାନଙ୍କ ବ୍ୟତୀତ ମୋ ଜାଣିବାରେ ସାରା ଆମେରିକାରେ ଥିଲେ ନନ୍ଦବାବୁଙ୍କର ବହୁବହୁ ପ୍ରାକ୍ତନ ଗୁଣମୁଗ୍ଧ ଅନୁରକ୍ତ ଛାତ୍ର ଛାତ୍ରୀ । ସେମାନଙ୍କ ଉଦ୍ଦେଶ୍ୟରେ ମୁଁ ସେଇ ସଂକ୍ଷିପ୍ତ ବକ୍ତବ୍ୟଟି ସେ ସଭାରେ ଉପସ୍ଥାପିତ କରିଥିଲି ।

ଏ ଉତ୍ସବରେ ଉପସ୍ଥିତ ଅନ୍ୟ କେତେଜଣ ଅତିଥିଙ୍କ ସହିତ ମୋର ପୂର୍ବ ପରିଚୟ ଥିଲା । ସେମାନେ ଅଧିକାଂଶ ଅଣ-ଓଡିଆ ପ୍ରବାସୀ-ଭାରତୀୟ । ସେଭଳି କେତେକ ବନ୍ଧୁଙ୍କ ନାମ ଏଠି ସ୍ମରଣ କରୁଚି ଯେଉଁମାନଙ୍କ ସହିତ ମୋର ଆତ୍ମୀୟତା ସମୟକ୍ରମେ ପ୍ରତିଷ୍ଠା ପାଇ-ପାରିଥିଲା । ସବା ପ୍ରଥମେ କହେ ଡକ୍ଟର ସୁରେଶ ସେନୟ ଏବଂ ତାଙ୍କର ପତ୍ନୀ ସୁଧାଙ୍କ କଥା । ଏ ଏକ ଆଦର୍ଶ ଏନ୍ଆର୍ଆଇ ପରିବାର ଯାହାଙ୍କୁ ନେଇ ଆମେ ଗର୍ବ କରିପାରିବା । ସେନୟ ପରିବାର କେତେବର୍ଷ ତଳେ କର୍ଣ୍ଣାଟକର ମାଙ୍ଗାଲୋରରୁ ଆମେରିକା ଚାଲିଆସିଥିଲେ । ସୁରେଶ ଓ ସୁଧା ନୈଷ୍ଠିକ କୋଙ୍କଣୀ ବ୍ରାହ୍ମଣ ପରିବାରର ସନ୍ତାନ । ସୁରେଶ ଜଣେ ଉଚ୍ଚ-ବେତନଭୋଗୀ ଇଂଜିନିୟର ଏବଂ କଂପାନୀ ପ୍ରଶାସକ ହେଲେ ବି ନିଜର କୌଳିକ ସଂସ୍କାର ଓ ସଂସ୍କୃତିରୁ ନିଜକୁ ଦୂରେଇଦେଇନାହାନ୍ତି । ତାଙ୍କ ମୁହେଁ ମୁହେଁ ବେଦ ଉପନିଷଦ୍ ଗୀତାର ସୂକ୍ତ, ଶ୍ଳୋକର ଶୁଦ୍ଧ ଉଚ୍ଚାରଣ ଶୁଣି ୧୯୯୩ରେ ମୁଁ ମୋର ପ୍ରଥମବାର ଆମେରିକା ଭ୍ରମଣ ସମୟରେ ଏଇଠି ସୁଲୁ ମହେଶଙ୍କ ଗ୍ଲାସ୍ଟନ୍ବରି ଘରେ ଏ ଭଦ୍ରଲୋକଙ୍କର ସନ୍ଧାନ ପାଇଥିଲି । ତାଙ୍କ ସହିତ ଆଳାପ ଆଲୋଚନା ଜମିବାପରେ ବୁଝିପାରିଲି ସେ ଜଣେ ସାଧାରଣ ବ୍ୟକ୍ତି ନୁହନ୍ତି । ପରେପରେ ତାଙ୍କ ସହିତ ବନ୍ଧୁତା ଗଭୀର ହେବାକୁ ଲାଗିଲା । ତାଙ୍କ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ (ଇ-ମେଲ୍

ସଂପର୍କ) ଆଲୋଚନାରୁ ବୁଝିଲି ସେ ବର୍ଷାଧିକ-କାଳ ଧରି ଆମେରିକାର କେତେକ ବଡବଡ ବିଶ୍ୱବିଦ୍ୟାଳୟରେ ହିନ୍ଦୁଧର୍ମର ତତ୍ୱଦର୍ଶନ ଉପରେ ବକ୍ତୃତା ଏବଂ ଆଲୋଚନାଚକ୍ର ପରିଚାଳନା କରିଆସୁଚନ୍ତି । ସାଂପ୍ରତିକ ଗ୍ଲୋବାଲାଇଜେସନ୍ ଯୁଗରେ ସାଧାରଣଲୋକମାନଙ୍କ ଧନୀହେବାର ଲାଳସା ବୃଦ୍ଧି ପାଉଥିବା ସମୟରେ ଆମେରିକାର ବୁଦ୍ଧିଜୀବୀ ମହଲରେ ହିନ୍ଦୁଧର୍ମ ପ୍ରତି ବୌଦ୍ଧିକ ଆକର୍ଷଣ ଖବର ତାଙ୍କ ମୁହଁରୁ ଶୁଣି ମୁଁ ଉତ୍ସାହିତ ହୋଇଥିଲି । ସୁରେଶ ସେନୟଙ୍କ ବିଷୟରେ ମୁଁ ବିଶେଷ ଆଗ୍ରହୀ ହେଲି ତାଙ୍କର ବିଦ୍‌ବତ୍ତା ଯୋଗୁ । ପ୍ରତିଥର ମୁଁ ଆମେରିକା ଯାଇ ମହେଶ ସୁଲୁଙ୍କ ଘରେ ରହିବା ସମୟରେ ସେ ମତେ କେତେକ ସିଡି ଉପହାର ଦିଅନ୍ତି । ସେ ଉପହାର ଭିତରେ ଥାଏ ଭାରତର ପ୍ରସିଦ୍ଧ ମନୀଷୀ ଏବଂ ଅଦ୍ୱୈତବାଦର ପ୍ରତିଷ୍ଠାତା ଆଚାର୍ଯ୍ୟ ଶଙ୍କରଙ୍କ ଜୀବନୀ ଆଧାରିତ କେତେକ ଡକ୍ୟୁମେଣ୍ଟାରୀ ଏବଂ ଦକ୍ଷିଣ ଭାରତର ପ୍ରସିଦ୍ଧ ଯୋଗଗୁରୁ ବି.କେ.ଏସ୍. ଆୟାଙ୍ଗାର୍‌ଙ୍କ ଦୁର୍ଲଭ ଯୋଗାସନ ପ୍ରଦର୍ଶନ ମୂଳକ କେତେକ ସିଡି ।

ସେନୟ ପରିବାର ଛଡା ଆଉ କେତେକ ବନ୍ଧୁଙ୍କ ସାନ୍ନିଧ୍ୟ ମିଳିଲା ମଧ୍ୟ ନାତିର ଏଇ ଗ୍ରାଜୁଏସନ୍ ଉତ୍ସବ ପରିବେଶ ଭିତରେ । ସେମାନେ ହେଲେ– ସୁଲୁ ମହେଶଙ୍କ ପାରିବାରିକ ଫିଜିସିୟାନ୍ ଡାକ୍ତର ମୁଜିବୁର ଚୌଧୁରୀ । ତାଙ୍କ ପତ୍ନୀ ବେଲା ସୁଲୁର ଜିଗିରଦୋସ୍ତ । ଏ ମୁସ୍‌ଲିମ୍ ପରିବାର ବହୁବର୍ଷ ଆଗରୁ ବାଙ୍ଗଲାଦେଶରୁ ଚାଲିଆସିଚନ୍ତି ଆମେରିକା । ବର୍ତ୍ତମାନ ସେ ଜଣେ ପ୍ରତିଷ୍ଠିତ ହାର୍ଟ ସର୍ଜନ ହାର୍ଟଫୋର୍ଡ ସହରରେ । ଚୌଧୁରୀ ପରିବାର ସୁଲୁ ମହେଶଙ୍କ ଅନ୍ତରଙ୍ଗ ଗୋଷ୍ଠୀର ଲୋକ । ବିଭିନ୍ନ ପାରିବାରିକ ଉତ୍ସବରେ ଏମାନଙ୍କର ଉପସ୍ଥିତି ମୁଁ ଲକ୍ଷ୍ୟ କରିଆସିଥିଲି ।

ଉତ୍ସବ ମାଧ୍ୟମରେ ବନ୍ଧୁଦର୍ଶନ ଲାଗିରହିଲା ସାରା ସନ୍ଧ୍ୟାଟାଯାକ । ସେମାନଙ୍କ ଭିତରେ ଥିଲେ ଝିଅଜୋଇଁଙ୍କର ଅନ୍ୟସବୁ ସାଙ୍ଗସାଥୀ ଯୋଉମାନେ ମତେ ଓ ନିରୁପମାଙ୍କୁ ଡାକନ୍ତି ମଉସା ମାଉସୀ । ସେମାନେ ହେଲେ– ସୁଲୁର ଖାସ୍ ସାଙ୍ଗ ନୂତନ । ବିହାର ରାଜ୍ୟରୁ କେତେବର୍ଷ ଆଗରୁ ଆସି ଗୋଟିଏ ପ୍ରଭାବଶାଳୀ ଝା ପରିବାରର ଆମେରିକାରେ ବିଭିନ୍ନ କର୍ମସଂସ୍ଥାନରେ ନିଜକୁ ନିୟୋଜିତ କରିବାକୁ ସମର୍ଥ ହୋଇଥିଲେ । ନୂତନ ସେଇ ପରିବାରର ଅଲିଅଳୀ ଝିଅ । ତାଙ୍କ ସ୍ୱାମୀ ଶ୍ରୀ ଅମର ଝା ମଧ୍ୟ ବିହାରରୁ ଆସିଛନ୍ତି । ସେ ମଧ୍ୟ ଏକ ପ୍ରଭାବଶାଳୀ ରାଜନୈତିକ ପରିବାରର ସନ୍ତାନ । ଏଇ ଚେହାରାବାନ୍ ଯୁବକ ଗୋଟାଏ ସମୟରେ ଚଳଚ୍ଚିତ୍ର ଜଗତ୍ ପ୍ରତି ଆକୃଷ୍ଟ ହୋଇ କିଛିବର୍ଷ ବମ୍ବେର ସିନେମା ନିର୍ଦ୍ଦେଶକଙ୍କ ସହିତ ମିଶୁଥିଲେ । ହିନ୍ଦୀ ସିନେମା ପାଇଁ ସ୍କ୍ରିପ୍ଟ ଲେଖା ଏବଂ ସାମ୍ବାଦିକତା ବ୍ୟାପାରରେ କିଛିକିଛି ଅଭିଜ୍ଞତା ମଧ୍ୟ ଅର୍ଜିଥିଲେ । କିନ୍ତୁ ସେ ସବୁଥିରେ ବିଫଳହେଇ କର୍ମ ସନ୍ଧାନରେ ଚାଲିଆସିଥିଲେ ଆମେରିକା । ଏ ଭଦ୍ରଲୋକଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ଆମର ପ୍ରଥମ ଆମେରିକା ଭ୍ରମଣବର୍ଷ ୧୯୯୩ରେ ।

ତା'ପରେ ପ୍ରତିଥର ଆମେ ଆମେରିକା ଭ୍ରମଣରେ ଆସିଲେ ଅମର ନିଶ୍ଚିତ ଭାବେ ମତେ ଦେଖାକରିବାକୁ ମହେଶଙ୍କ ଘରକୁ ଆସନ୍ତି । ସେ ମୋ ସହିତ ଘଣ୍ଟାଘଣ୍ଟା ଧରି ଭାରତର ସାଂପ୍ରତିକ ରାଜନୈତିକ ଅର୍ଥନୈତିକ ପ୍ରସଙ୍ଗରେ ଆଲୋଚନା କରନ୍ତି । ପରେ ସେ ମୋ' ଲେଖାର ଜଣେ ଫ୍ୟାନ୍ ପାଲଟି ଗଲେ । ମୋର ଏକ ଉପନ୍ୟାସ– Anoma's Daughter ଇଣ୍ଟରନେଟ୍‌ରୁ ପଢ଼ି ସେ ମୁଗ୍ଧ ହୋଇଚନ୍ତି ବୋଲି ସ୍ୱୀକାର କରନ୍ତି ।

ଆରମ୍ଭ ହେଲା ବହୁଅପେକ୍ଷିତ ସାଂସ୍କୃତିକ ଅନୁଷ୍ଠାନ– ପିଲାମାନଙ୍କ ନାଚ ଗୀତ । ପରିବେଶ ସଂଗୀତମୟ ହୋଇଉଠିଲା ଓଡ଼ିଆ ହିନ୍ଦୀ ବଙ୍ଗଳା ମରାଠି ଆଉ ଇଂରେଜୀ ଫୋକ୍ ପପ୍ କ୍ଲାସିକାଲ୍ ସଂଗୀତ ସହିତ ଜାଜ୍ ରକ୍ ର୍ୟାପ୍ ନୃତ୍ୟର ତାଳେ ତାଳେ । ରାତି ବାର ଗୋଟାଏ ପର୍ଯ୍ୟନ୍ତ ଚାଲିଲା ପାର୍ଟି । ତା'ରି ଭିତରେ ଖିଆପିଆ । ଏ ହେଲା ମୋଟାମୋଟି କାହାଣୀ ମୋ ନାତି ମନୀଶର ଗ୍ରାଜୁଏସନ୍ ଉତ୍ସବର ।

## କନେକ୍ଟିକଟରୁ ଟେନୀସୀ

– ତା. ୪ ଅଗଷ୍ଟ ୨୦୦୮ ।

ସେଦିନ ଦି'ପହରେ ଆମେ ଗୋଟିଏ ଦଳ ସାଙ୍ଗହେଇ ବାହାରିଲୁ ମହେଶ-ସୁଲୁଙ୍କ ଗ୍ଲାସ୍‌ଟନ୍‌ବରି ଘରୁ ହାର୍ଟଫୋର୍ଡ ବିମାନବନ୍ଦରକୁ । ସେଠାରୁ ପ୍ଲେନ୍‌ରେ ନ୍ୟାସ୍‌ଭିଲ୍ ବିମାନ-ବନ୍ଦର ଦୁଇଘଣ୍ଟାର ବାଟ । ଆମ ଦଳରେ ଆମେ ଥାଉ ଚାରିଜଣ– ନିରୁପମା, ମୁଁ ଓ ଆମର ଦୁଇ ନାତୁଣୀ– ଅଙ୍କିତା ଆଉ ଆନୁ । ମନୀଶର ଗ୍ରାଜୁଏସନ୍ ଉତ୍ସବ ପରେପରେ ସେମାନଙ୍କ ବାପା ମା'– ଜୁଲି ଅଭିଜିତ ନିଜ କର୍ମସ୍ଥଳ ୟୁଟାଃ ଫେରିଯାଇଥାନ୍ତି । ପ୍ରୋଗ୍ରାମ୍-ଅନୁସାରେ ଏ ଦୁଇ ନାତୁଣୀ ଆମ ସାଙ୍ଗେ ରହିବେ ସେମାନଙ୍କ ବଡ ମଉସା ମାଉସୀଙ୍କ ଫ୍ରାଙ୍କ୍‌ଲିନ୍ (ଟେନୀସୀ) ଘରେ ସାତଟି ଦିନ ଓ ସପ୍ତାହକ ପରେ ଚାଲିଯିବେ ତାଙ୍କ ବାପ ମା'ଙ୍କ ରହଣି ସ୍ଥାନ ୟୁଟାଃ ସଲଟ୍‌ଲେକ୍ ସିଟିକୁ । କିଛି ଦିନ ପରେ ଆମେ ସେମାନଙ୍କୁ ଅନୁସରଣ କରିବୁ ୟୁଟାଃକୁ ।

ନ୍ୟାସ୍‌ଭିଲ୍ ଏୟାର୍‌ପୋର୍ଟରେ ଆମକୁ ରିସିଭ୍ କରିବାକୁ ନାତି ପ୍ରତୀକ ଗାଡ଼ି ଧରି ଅପେକ୍ଷା କରିଥାଏ । ଅପରାହ୍ଣ ପାଞ୍ଚଟା ସୁଦ୍ଧା ଆମେମାନେ ଫ୍ରାଙ୍କ୍‌ଲିନ୍‌ରେ ତାଙ୍କ ଘରେ ପହଞ୍ଚିଲୁ । ପୂର୍ବ ଚାରିଥରର ଆମେରିକା ଭ୍ରମଣ ମାଧ୍ୟମରେ ଏ ରାଜ୍ୟର (ଟେନୀସୀ) ଏ ସହର ଦ୍ୱୟ (ନ୍ୟାସ୍‌ଭିଲ୍ ଓ ଫ୍ରାଙ୍କ୍‌ଲିନ୍) ଆଉ ପ୍ରବୀର-ବୁଲବୁଲଙ୍କ ନିଜସ୍ୱ ଏଇ ବାସଗୃହ ସମେତ ଆଖପାଖ ଅଂଚଳର ପରିବେଶ ମୋର ଅତ୍ୟନ୍ତ ପରିଚିତ ଆଉ ଆପଣାର ପାଲଟି ସାରିଥାଏ । ଏଠି ପହଞ୍ଚିଲା ପରେ ମୋର ନିତିଦିନିଆ କାମ ଥିଲା ଏ ଜାଗାରେ ମୋର ଅତି ପ୍ରିୟ ପରିଚିତ ନଈ ହରପେଥ୍ କୂଳେ କୂଳେ ନିତି ସକାଳେ ସଞ୍ଜରେ ଚାଲିଚାଲି ବୁଲିବା ।

ଫ୍ରାଙ୍କ୍‌ଲିନ୍‌ରେ ମୋର ସ୍ୱଳ୍ପ ସମୟ ରହଣି ଏଥରକ ମଧ୍ୟ ନିରର୍ଥକ୍ କାଳକ୍ଷେପଣ ନଥିଲା । ପାଖ ସହର ନ୍ୟାସ୍‌ଭିଲ୍‌ର ହିନ୍ଦୁ ମନ୍ଦିରରେ ପ୍ରତି ରବିବାର ସକାଳେ ଶ୍ରୀ ଜଗନ୍ନାଥ ଦର୍ଶନଠାରୁ ଆରମ୍ଭକରି ଏଠାରେ ବସବାସ କରୁଥିବା ଓଡିଆମାନଙ୍କର ବିଭିନ୍ନ ପାରିବାରିକ ତଥା ସାଂସ୍କୃତିକ ଅନୁଷ୍ଠାନରେ ଯୋଗଦେବା ପାଇଁ ମୁଁ ବରାବର ନିମନ୍ତ୍ରିତ ହେଉଥିଲି । ପୁରୁଣା ବନ୍ଧୁ ଡ. ପଞ୍ଚାନନ ଶତପଥୀ, ଡ. ଗୋପାଳ ପରିଜା, ଡ. ରାଧାକାନ୍ତ ମିଶ୍ର ପ୍ରଭୃତି ଏଠାର ପ୍ରମୁଖ ପ୍ରବାସୀ ଓଡିଆ ପରିବାରଙ୍କ ସମେତ ବହୁ ନବାଗତ ଏନ୍.ଆର୍.ଆଇ ଓଡିଆ ଯୁବକଯୁବତୀଙ୍କ ଗହଣରେ ମାସଟିଏ ସମୟ କୁଆଡେ କଟିଗଲା ।

ଏହାରି ଭିତରେ ଆସିଲା ଡାକରା ମୋ ସାନଝିଅ ଜୁଲିଠୁଁ– ନାନା ! ତମ ଦି'ଜଣଙ୍କ ପାଇଁ ଅଭିଜିତ ଆଜି ଆଡ୍‌ଭାନ୍ସ ଟିକେଟ୍ କିଣିଲେ ୟୁଟାଃ ଭ୍ରମଣ ପାଇଁ । ଶୀଘ୍ର ଆସ– ଏଠି ଆମ ଘର ସାମନା ପାହାଡ ଉପରେ ବରଫ ପଡିବା ଆରମ୍ଭ ହେଇଗଲାଣି । ଏ ଜାଗାଟାର ଦୃଶ୍ୟ ବିଲକୁଲ୍ ହିମାଳୟ ପରି । ଆମେ ଏଇଲେ ଅଛୁ ସମୁଦ୍ରପତ୍ତନରୁ ଆଠହଜାର ଫୁଟ୍ ଉଚ୍ଚ ସଲ୍‌ଟ୍‌ଲେକ୍ ସିଟିରେ– ରକିପର୍ବତମାଳାର ଏକ ଚମତ୍କାର ଉପତ୍ୟକାରେ । ଆମ ଏ ସହର ସଲ୍‌ଟ୍‌ଲେକ୍ ସିଟି ବିଲକୁଲ୍ ଇଣ୍ଡିଆର ହିମାଚଳ ରାଜ୍ୟର ସିମଲା ଭଳିଆ. . . ଶୀଘ୍ର ଆସ !

– ଏହାପରେ ଆରମ୍ଭ ହେଲା ଆମର ପ୍ରସ୍ତୁତି ୟୁଟାଃ ଭ୍ରମଣର ।

## ଟେନିସୀରୁ ୟୁଟାଃ

– ତା ୨୦ ସେପ୍ଟେମ୍ବର ୨୦୦୮

ସେଦିନ ଝିଅ ବୁଲବୁଲ ଆମ ଦି'ଜଣଙ୍କୁ ଡ୍ରାଇଭ୍ କରି ନେଇ ତାଙ୍କ ଘର ପାଖ ସହର ନ୍ୟାସ୍‌ଭିଲ୍ ଏୟାର୍‌ପୋର୍ଟରେ ପହଞ୍ଚେଇଲା– ଅପରାହ୍ନ ୨.୩୦ମି. ରେ ସଲ୍‌ଟ୍‌ଲେକ୍‌ସିଟିକୁ ଯାଉଥିବା ପ୍ଲେନ୍ ଧରିବାକୁ । ଠିକ୍ ସମୟରେ ମୁଁ ଓ ନିରୁପମା ପ୍ଲେନ୍‌ରେ ବସିଲୁ । ଯିବାପୂର୍ବରୁ ଝିଅର କାନ୍ଦୁରାମୁହଁ ଦେଖି ସଂଭାଳିବା ଆମ ପକ୍ଷରେ ଥିଲା ଅତ୍ୟନ୍ତ ବେଦନାଦାୟକ– ନିରୁପମା ତ ସହଜେ କାନ୍ଦୁରୀ । କାହିଁକି କେଜାଣି ମୁଁ ବି ଏଥର ବିଦାୟବେଳେ ଧୈର୍ଯ୍ୟ ରଖିପାରିଲିନାହିଁ । ତାର କାରଣ ତାହା ଥିଲା ଆମର ଏଥର ଆମେରିକା ଭ୍ରମଣର ଶେଷଭାଗ ଯାତ୍ରା– ୟା'ପରେ ଭାରତ ପ୍ରତ୍ୟାବର୍ତ୍ତନ ।

ଆମେ ତିନିଜଣ ପରସ୍ପରକୁ କୁଣ୍ଢେଇଧରି କିଛି ସମୟ ନିରବରେ ଅଶ୍ରୁପାତକଲୁ । ବାରମ୍ବାର ପ୍ଲେନ୍ ଛାଡିବା ଘୋଷଣା କାନରେ ପଡୁଥାଏ । ଶେଷରେ ପରସ୍ପରକୁ ବାହୁ-ବନ୍ଧନରୁ ମୁକୁଳେଇ ଆମେ ଟେକ୍‌ଅଫ୍ ପାଇଁ ପ୍ରସ୍ତୁତ ପ୍ଲେନ୍ ଭିତରକୁ ପଶିଲୁ । ସ୍ଥାନୀୟ ସମୟ ଅପରାହ୍ନ ୨.୩୦ମି.ରେ ସାଉଥ୍‌ୱେଷ୍ଟ୍ ଏୟାରଲାଇନସ୍‌ର ବୋଇଂ ପ୍ଲେନ୍ ନ୍ୟାସ୍‌ଭିଲ୍ ବିମାନବନ୍ଦରରୁ ଟେକ୍‌ଅଫ୍ କଲା । ତିନିଘଣ୍ଟା ଉଡାଣ ପରେ ସନ୍ଧ୍ୟା ୫.୩୦ମି.ରେ ପ୍ଲେନ୍

ଅବତରଣ କଲା ଫିନିକ୍ସ (Foenix) ବିମାନବନ୍ଦରରେ । ବାହାରଟା ଦିଶୁଥାଏ ମଧ୍ୟାହ୍ନ ଭଳି ଦାଉଦାଉ ସୂର୍ଯ୍ୟାଲୋକ । ସନ୍ଧ୍ୟା ପାଞ୍ଚଟା ତିରିଶରେ ବି ଏଠି ସୂର୍ଯ୍ୟାସ୍ତର ଚିହ୍ନବର୍ଣ୍ଣ ନାହିଁ ।

ଫିନିକ୍ସର ଭୌଗୋଳିକ ସ୍ଥିତି ହେଲା ଆମେରିକାର ଦକ୍ଷିଣ-ପଶ୍ଚିମର ଏକ ମରୁଭୂମି ପ୍ରଦେଶ ଆରିଜୋନାରେ । ପ୍ଲେନ୍‌ରୁ ବାହାରର ଯେତକି ପ୍ରାକୃତିକ ଦୃଶ୍ୟ ଦେଖିଥିଲି ସେ ଦୃଶ୍ୟ ସୂଚେଇସାରିଥାଏ ଯେ ଆରିଜୋନା ନିଶ୍ଚୟ ଗୋଟାଏ ବିସ୍ତୀର୍ଣ୍ଣ ମରୁଭୂମି । ବାଲି, ଶିଝୁ, ନାଗଫେଣିଆ (Cactus)ର କଣ୍ଟାବୁଦା ଛଡା କ୍ୱଚିତ୍ ଚଉଡାପତ୍ର ଥିବା ଗଛବୃକ୍ଷ ପଡୁଥାଏ ଆଖିରେ । ପୁଣି ଆଉ ଏକ ଅଦ୍ଭୁତ ଦୃଶ୍ୟ ମଧ୍ୟ ଦେଖିଲି ଯାହା ମତେ ଲାଗିଲା ଅସ୍ୱାଭାବିକ । ଏଠାକାର ପାହାଡପର୍ବତଗୁଡାକୁ କରତରେ ଫଡାଫଡା କରି କିଏ ସତେକି ଚିରିପକେଇଥାଏ ମୁଣ୍ଡରୁ ପାଦ ପର୍ଯ୍ୟନ୍ତ– ଅବିକଳ ଲଙ୍ଗଳରେ ଭୂଇଁ ଚଷିଲା ଭଳି ସିଆର ସିଆର କଟା ଦାଗ ପାହାଡ ଗୋଟାକଯାକ ଉପରୁ ତଳ ପର୍ଯ୍ୟନ୍ତ । ମନେହେଲା ସତେ ବା ମହାଭାରତ ଯୁଗରେ ବଳରାମ ତାଙ୍କ ଆୟୁଧ ଲଙ୍ଗଳ କାନ୍ଧରେ ପକେଇ ବିଶ୍ୱଭ୍ରମଣ କାଳରେ ପାତାଳ ଭ୍ରମଣରେ ଆସିଥିଲେ, ଆଉ ତାଙ୍କ ଗତିପଥକୁ ପ୍ରତିରୋଧ କରୁଥିବା ଅସୁରଗୁଡାଙ୍କୁ ଠିଆଠିଆ ଚିରି ପକେଇଚନ୍ତି– ସେଗୁଡାକ ହୁଏତ ପରେ ପରେ ପାଲଟିଯାଇଚନ୍ତି ପାହାଡ ପର୍ବତ !

ସେଇ ମହା ବିଦୀର୍ଣ୍ଣ ପର୍ବତମାଳା ଗୁଡିକୁ ଭୂଗୋଳରେ କୁହାଯାଏ– କେନିୟନ୍ (Canyons) । ଆମେରିକାର ଏଇ ପଶ୍ଚିମାଂଚଳର ରକିବେଲ୍ଟରେ କେନିୟନ୍ ଗୁଡିକର ଦୃଶ୍ୟ ଦର୍ଶକମାନଙ୍କ ପାଇଁ ଖୁବ୍ ଆକର୍ଷକ ବୋଲି ଶୁଣିଥିଲି– ସେ ଭିତରେ ସବୁଠୁ ବେଶୀ କଲୋରାଡୋର ଗ୍ରାଣ୍ଡ୍ କେନିୟନ୍ (Grand Canyon) । ସେଠିକି ପୃଥିବୀର ଚାରିଆଡୁ ବହୁ ପର୍ଯ୍ୟଟକ ଆସନ୍ତି ବୋଲି ଜାଣିଥିଲି ବି । କିନ୍ତୁ ଆମର ଏଥର ପ୍ରୋଗ୍ରାମ୍‌ରେ ନଥିଲା ଗ୍ରାଣ୍ଡ କେନିୟନ୍ ଦର୍ଶନ । ଅଭିଜିତ ଆମ ପାଇଁ ଏକ ସଂପୂର୍ଣ୍ଣ ଭିନ୍ନ ଟୁର୍ ପ୍ରୋଗ୍ରାମ୍ ପ୍ରସ୍ତୁତ କରିସାରିଥିଲେ । ସେଥିରେ ଥିଲା ଆଉ ଗୋଟାଏ କାନିୟନ୍‌ର ନାଁ ବ୍ରାଇସ୍ କେନିୟନ୍ (Bryce Canyon) । ତା'ଛଡା ଆଉ ଏକ ବିଶ୍ୱବିଖ୍ୟାତ ଟୁରିଜିମ୍ ଜାଗାର ନାମ– ୟେଲୋଷ୍ଟୋନ୍ ନ୍ୟାସ୍‌ନାଲ୍ ପାର୍କ (Yellow Stone National Park) !

ଫିଟିକ୍‌ସ ଗୋଟିଏ ବେଶ୍ ବଡ ବିମାନବନ୍ଦର । ଏଠି ପ୍ଲେନ୍‌ର ରହଣି ଥିଲା ପୂରା ଦୁଇଘଣ୍ଟା । ସେଠି ଦୁଇଘଣ୍ଟା କୌଣସି ପ୍ରକାରେ ବିତାଇଲା ପରେ ସନ୍ଧ୍ୟା ୭.୩୦ମି. ରେ ସଲଟ୍‌ଲେକ୍‌ସିଟିକୁ ଯାତ୍ରା ପାଇଁ ଘୋଷଣା ହେଲା । ଆମେ ଯାଇ ପ୍ଲେନ୍‌ରେ ପଶିଲୁ । ଠିକ୍ ସମୟରେ ଉଡାଣ ଆରମ୍ଭହେଲା । ଆଗକୁ ଥାଏ ଘଣ୍ଟାକର ଫ୍ଲାଇଟ୍ । ହଠାତ୍ କାହିଁକି କେଜାଣି ମୁଁ ଖୁବ୍ ଅସୁସ୍ଥ ଅନୁଭବ କଲି । ସେତେବେଳକୁ ମୋ ଅଜାଣତରେ ମୋର ରକ୍ତଚାପ ମାତ୍ରା ଯେ ଅସ୍ୱାଭିକ ପରିମାଣରେ ବଢିସାରିଥାଏ– ଏକଥା ଜଣାପଡିଲା ସଲଟ୍‌ଲେକ୍ ସିଟିରେ ଜୁଲି-ଅଭିଜିତଙ୍କ ଘରେ ପହଞ୍ଚିଲା ପରେ ।

ପ୍ଲେନ୍ ସଲଟ୍‌ଲେକ୍ ସିଟି ବିମାନବନ୍ଦରରେ ପହଞ୍ଚିଲା ସେଠାର ଲୋକାଲ୍ ଟାଇମ୍ ସନ୍ଧ୍ୟା ୮.୩୦ମି. ରେ ।

ଆମେ ପ୍ଲେନ୍‌ରୁ ବାହାରି ଲଗେଜ୍ ସଂଗ୍ରହ କରିବାକୁ ଯିବାବେଳେ ଆମକୁ ଭେଟିଲେ ଜୋଇଁ ଅଭିଜିତ ଆଉ ଦୁଇ ନାତୁଣୀ– ଅଙ୍କିତା, ଆନୁ । ନାତୁଣୀ ଦୁହେଁ ଆମ ବେକରେ ଓହଳିପଡି ଅଜା ଆଈଙ୍କୁ ତାଙ୍କର ସ୍ୱାଗତ ଜଣେଇଲେ । ପରେପରେ ଆମେ ସମସ୍ତେ ବିମାନବନ୍ଦରରୁ ବାହାରି ଅଭିଜିତଙ୍କ କାର୍‌ରେ ବସିଲୁ । ପଞ୍ଚଚାଳିଶ ମିନିଟ୍ ଡ୍ରାଇଭ୍ ଘର ପର୍ଯ୍ୟନ୍ତ । ବାଟରେ ବେଶ୍ ଅସରାଏ ବର୍ଷାହେଇଗଲା । ଉଚ୍ଚ ପାହାଡ ଉପର ହାଇୱେରୁ ବର୍ଷାମୁଖର ରାତିର ଅନ୍ଧାର ଭିତରୁ ସଲଟ୍‌ଲେକ୍‌ସିଟିର ଆଲୋକମାଳାର ଦୃଶ୍ୟ ମତେ ଲାଗିଲା ସ୍ୱପ୍ନପୁରୀ ପରି । ବିଳମ୍ବିତ ସନ୍ଧ୍ୟାରେ ଆମେ ଯାଇ ପହଞ୍ଚିଲୁ ଜୁଲି-ଅଭିଜିତଙ୍କ ଏଇ ନୂଆ କର୍ମଭୂମି ସଲଟ୍‌ଲେକ୍ ସିଟି ଭିତରେ, ସେମାନଙ୍କ ଆପାର୍ଟମେଣ୍ଟସ୍‌ରେ ।

ପରଦିନ ସକାଳେ ନିଦ ଭାଙ୍ଗିଲା ମାତ୍ରେ ମୁଁ ବାଲ୍‌କୋନିକୁ ବାହାରିଆସିଲି । ସେଠୁ ଦିଗ୍‌ବଳୟ ଉପରକୁ ଆଖି ପକେଇବା ମାତ୍ରେ ପ୍ରଥମେ ଆଖିରେ ପଡିଲା ଧାଡିଧାଡି ସାରିସାରି ପର୍ବତମାଳା– ବେଶୀ ଦୂରରେ ବି ନୁହେଁ, ଖୁବ୍ ନିକଟରେ ! ପାହାଡଗୁଡାକ ଦିଶୁଥାନ୍ତି ବାଦାମୀରଙ୍ଗର ଆଉ କନ୍ଦା ପଥର ନିଦା– ପୂରାପୂରି ତୃଣହୀନ ଓ ଲଣ୍ଡା ।

ଗୋଟାଏ ହାତୀମୁଣ୍ଡିଆ ପାହାଡ ଠିକ୍ ସାମ୍‌ନାରେ ଦିଶୁଥାଏ । ସେ ପାହାଡର ମୁଣ୍ଡଟା ମଝିରେ ଅଳ୍ପ ଦବିଯାଇ ଦିଶୁଥାଏ ହାତୀମୁଣ୍ଡ ଉପରର ଦୁଇ କଳସ ପରି । ପୁଣି ଟିକିଏ ନିଘା ପକେଇଲା ପରେ ହାତୀମୁଣ୍ଡର କଳସ ଦୁଇଟା ଦିଶିଗଲା ଜଣେ ସ୍ୱାସ୍ଥ୍ୟବତୀ ନାରୀର ବକ୍ଷଦେଶ ପରି । ପରେପରେ ଆଖିରେ ପଡିଲା– ପାହାଡ କଡରେ ଧାରଧାର ଦୁଧ ବୋହିଲା ପରି ପଟାପଟା ଧଳା ଦାଗ କେତେଟା । କ'ଣ ସେ ଧଳା ଦାଗ– ବରଫ ନୁହେଁ ତ ! ଦେହଟା ମୋର ଏକ ଅଦ୍ଭୁତ ଶିହରଣରେ ରୋମାଞ୍ଚିତ ହୋଇଗଲା । ତା' ମାନେ ତୁଷାରପାତ ଆରମ୍ଭ ହେଇସାରିଲାଣି– ଏଇ ସେପ୍ଟେମ୍ବର୍‌ରୁ ? ତା'ମାନେ ଶୀତଋତୁ ଆଉ ବେଶୀ ଡେରି ନାହିଁ ? ମନ ଖୁସିହେଇଗଲା । ପୂର୍ବଥର ଆମେରିକା ଭ୍ରମଣ ସମୟକୁ ଆମେ ଜଗିଥାଉ ଯେମିତି ଶୀତଋତୁର ହାବୁଡରେ ନପଡୁ ଏଇ ଭୟରେ । ସେଥିପାଇଁ ଆମେ ଅକ୍ଟୋବର ମଝିରେ ଭାରତ ଫେରିବା ସମୟକୁ ଚାହିଁ ପ୍ଲେନ୍ ଟିକେଟ୍ କାଟିଥାଉ । କିନ୍ତୁ ଏଥର ମୁଁ ମନ ଦୃଢ କରି ଆସିଥିଲି– ରହିବି ଡିସେମ୍ବର ଯାକେ । ରକି ପର୍ବତ ଉପରେ ଚାରିମାସ କଟେଇବା ଭିତରେ ଏ ଦେଶର ଶୀତଋତୁ କେମିତି ଲାଗିବ ଦେହକୁ ମନକୁ ସେଇ ଲକ୍ଷ୍ୟ ନେଇ ଆମେ ଏଥର ଆସିଥାଉ ଝିଅ ଜୋଇଁଙ୍କ ଘରକୁ ଏଠିକି ସଲଟ୍‌ଲେକ୍ ସିଟିକୁ ।

ପିଲାମାନେ ସେଯାକେ ନିଦରୁ ଉଠିନଥାନ୍ତି । କିଛି ସମୟ ପରେ ଝିଅ ଜୁଲିମା ନିଦ ମଳମଳ ,ଆଖିରେ ଆସି ପହଞ୍ଚିଲା ମୋ ପାଖରେ । ଦେଖିଲା ମୁଁ ତନ୍ମୟ ଦୃଷ୍ଟିରେ

ଚାହିଁରହିଚି ଦୂର ପର୍ବତଗୁଡ଼ାକୁ ।

ମୋ ପାଖରେ ଟିକେ ଚୁପ୍‌ଚାପ୍ ଠିଆହେଇ ସେଇ ଦିଗକୁ ଅନାଇ କହିଲା, "ନନା ! କ'ଣ ଦେଖୁଚ– ବରଫ ? ଆମେ ବହୁ ଆଗରୁ ଦେଖିଲୁଣି ଯା'କୁ । ଏଠି ପ୍ରାୟ ବର୍ଷସାରା ବରଫ ପଡେ ପାହାଡ ଉପରେ । ଏ ଯୋଉ ଦୋ'ମୁଣ୍ଡିଆ ପାହାଡ ଦେଖୁଚ ତା' ନାମ ହେଲା– ଅଲିମ୍ପସ୍ ମାଉଣ୍ଟେନ୍ । ଗ୍ରୀକ୍ ମିଥ୍‌ରେ ଅଲିମ୍ପସ୍ ହେଲା ସେମାନଙ୍କ ଦେବତାମାନଙ୍କ ବାସସ୍ଥାନ, ମାନେ ସ୍ୱର୍ଗ । ଏ ଏତେ ଉଚ୍ଚ-ପର୍ବତ୍ ଯେ ସହରରେ ତୁମେ ଯୋଉଠି ଥିଲେ ବି ଏଇ ଦୋ'ମୁଣ୍ଡିଆ ପର୍ବତ ନିଶ୍ଚ ଦେଖାପଡିବ ।"

ପଚାରିଲି– "ଯା'ର ଉଚ୍ଚତା କେତେ ? ଏ ପର୍ବତମାଳାର ରୂପ ତ ଦିଶୁଚି ଆମ ହିମାଳୟ ପରି– ଶିମିଲାରୁ ହିମାଳୟ ଯେମିତି ଦିଶେ. . . ।"

"ଠିକ୍ କହିଚ–" ଜୁଲିମା କହିଲା– ଏ ହେଲା ଏ ଦେଶର ହିମାଳୟ । ଖାଲି ଆମ ହିମାଳୟ ଲମ୍ବିଚି ପୂର୍ବ ପଶ୍ଚିମ ହେଇ, ଆଉ ରକିଜ୍ ଉତ୍ତରରୁ ଦକ୍ଷିଣକୁ । ଏ ସହର ସଲଟ୍‌ଲେକ୍ ସିଟିର ଅଲ୍‌ଟିଚ୍ୟୁଡ୍ ହେଲା ୮,୦୦୦ ଫୁଟ୍– ଠିକ୍ ଶିମିଲା ହାଇଟ୍ । ଅଲିମ୍ପିକ୍ ମାଉଣ୍ଟେନ୍‌ର ନିଜ ହାଇଟ୍ କେତେ ଜାଣେନା– କିନ୍ତୁ ତା' ଉପରେ ବର୍ଷସାରା ବରଫ ରହିଥାଏ । ତମକୁ ଆମେ ବୁଲେଇବୁ ଏ ଅଂଚଳ– ଖାଲି ତମ ଦେହ ଟିକିଏ ଭଲହେଇଯାଉ– ତମ ବି.ପି ନର୍ମାଲ୍ ହେଇଯାଉ ପ୍ରଥମେ ।"

ପହଞ୍ଚିଲେ ଜୋଇଁ ଅଭିଜିତ । ଆମର କଥାବାର୍ତ୍ତାରେ ଯୋଗଦେଇ କହିଲେ, "ନନା ! ଜିଓଲଜି ଶାସ୍ତ୍ର ଅନୁସାରେ ରକି ଆଉ ହିମାଳୟ ଏକାଜାତିର ମାଉଣ୍ଟେନ୍‌ସ୍ । ଆପଣ ଜାଣିଥିବେ ଏଗୁଡାକୁ କହନ୍ତି Young Fold Mountains ! ହିମାଳୟ ପରି ଏ ରକିଜ୍ ବେଲ୍ଟ ଗୋଟାକଯାକ ହେଲା ଭୂମିକମ୍ପ ପ୍ରବଣ ଅଂଚଳ– ଖାଲି ଆର୍ଥକ୍ୱେକ୍ ନୁହେଁ ଭଲ୍‌କାନିକ୍ ମଧ୍ୟ । ଜିଓଲଜିକାଲ୍ ଟାଇମ୍‌ରେ, ମାନେ, କୋଟି ବର୍ଷ ତଳେ ଏ ସାରା ଅଂଚଳ ଥିବ ନିଶ୍ଚେ ସମୁଦ୍ର ତଳେ– ହଠାତ୍ ଛିଟକିପଡିଚି ଉପରକୁ– ମାନେ ଆଠଦଶ ହଜାର ଫୁଟ୍ ଉଚ୍ଚତାକୁ । ଏଠି ଗୋଟାଏ ବିରାଟ ହ୍ରଦ ଅଛି– ଠିକ୍ ଓଡିଶାର ଚିଲିକା ହ୍ରଦ କି ତା'ଠୁ ବଡ, ଆଉ ପାଣି ତାର ଲୁଣିଆ । ସେଇଟା ସଲ୍‌ଟ୍‌ଲେକ୍ । ଭାବନ୍ତୁ ନା ଆଠ ହଜାର ଫୁଟ୍ ଉପରେ ଲୁଣିପାଣିର ହ୍ରଦ ଆସିଲା କୁଆଡୁ ? ତା'ମାନେ ସମୁଦ୍ରର ଗୋଟାଏ ଅଂଶ ଉଠିଆସିଚି ସିଧା ଏତେ ଉଚ୍ଚକୁ ଭୂମିକମ୍ପ ଫଳରେ । ସେଇ ହ୍ରଦର ନାଁ ଅନୁସାରେ ଏ ସହରର ନାଁ ହେଇଚି– Salt Lake City । ଆମେ ସେ ସବୁ ଜାଗା ଦେଖିବାକୁ ଯିବା । ପ୍ରଥମେ ଆପଣ ଟିକିଏ ଆରାମ କରିନିଅନ୍ତୁ । ଏଇ ରକି ଉପତ୍ୟକାରେ ଏଭଳି ଦୃଶ୍ୟ-ବହୁଳ ଅଦ୍ଭୁତ ସ୍ଥାନସବୁ ଅଛି ଯାହା ଆମେରିକାର ପୂର୍ବ-ଉପକୂଳ ୱାସିଂଟନ୍ ନ୍ୟୁୟର୍କ ପଟେ ଆପଣ ଦେଖିବାକୁ ପାଇବେ ନାଇଁ. . ."

## ସଲଟ୍‌ଲେକ୍-ସିଟି ପରିକ୍ରମା

ଦିନ ଚାରିପାଞ୍ଚଟା ବିଶ୍ରାମ ନେଲା ପରେ ମୋ ରକ୍ତଚାପ ନିୟନ୍ତ୍ରଣକୁ ଆସିଲା । ଡାକ୍ତର କହିଲେ– High altitude effect ଯୋଗୁ ବୟସ୍କ ଲୋକଙ୍କର ଏଠି ରକ୍ତଚାପ ବଢିବା ସ୍ୱାଭାବିକ କଥା– ଭୟର କାରଣ ନାହିଁ । ସେଥିପାଇଁ ଔଷଧ ବ୍ୟବସ୍ଥା କରିଦିଆଗଲା । ଟିକିଏ ସୁସ୍ଥ ହେବା ପରେ ଆମେ ବାହାରିଲୁ ସହର ଭ୍ରମଣରେ ।

ସଲ୍‌ଟ୍‌ଲେକ୍‌ସିଟି ନ୍ୟୁୟର୍କ ଚିକାଗୋ ଭଳି ବେଶୀ ବଡ ସହର ନୁହେଁ– କିନ୍ତୁ ବେଶ୍ ଆଧୁନିକ ସହର । ରକି ପର୍ବତ ଉପର ଏଇ ଉପତ୍ୟକାଟି ସାମଗ୍ରିକ ଭାବେ ଅତ୍ୟନ୍ତ ମନୋରମ । ତା' ଭିତରେ ୟୁଟାଃର ସଲ୍‌ଟ୍‌ଲେକ୍‌ସିଟି ହେଲା ଆହୁରି ମନୋରମ । ଅବିକଳ ଏକ ପାର୍ବତ୍ୟ ନିବାସ– ଅନେକଟା ଭାରତର ଶିମ୍‌ଲା ପରି । ସହର ଚାରିପାଖେ ଯୁଆଡେ ଆଖି ପାଇବ ସିଆଡେ ନଭଶ୍ଚୁମ୍ବୀ ପର୍ବତମାଳା । ତା' ମଝିରେ ସମଗ୍ର ଦୃଶ୍ୟପଟକୁ ନିୟନ୍ତ୍ରଣ କରୁଥାଏ ସେଇ ଦୁଇ କୁମ୍ଭ ବା ଦୋ'ମୁଣ୍ଡିଆ ପର୍ବତ ଯାହାର ନାମ ଅଲିମ୍ପସ୍ ମାଉଣ୍ଟେନ୍ । ଏ ଛୋଟ ସହରର ରାସ୍ତାଘାଟ ବେଶ୍ ପ୍ରଶସ୍ତ ଆଉ ପରିଷ୍କାର ପରିଚ୍ଛନ୍ନ । ବହୁତ ବେଶୀ ଗହଳିଆ ଯାନବାହନର ଚଳପ୍ରଚଳ ନଥାଏ ।

ଏ ସହରଟିର ମୁଖ୍ୟ ଜନସଂଖ୍ୟା ହେଲେ ମର୍ମନସ୍ (Mormons) । ମର୍ମନ୍‌ମାନଙ୍କର ଏକ ଟେମ୍ପଲ୍ ପାଖରେ କାର୍ ଅଟକେଇ ଅଭିଜିତ୍ ଆମକୁ କହିଲେ, "ଏ ହେଲା ମର୍ମନ୍‌ମାନଙ୍କର ଏରିଆ । ଏଇ ଦେଖନ୍ତୁ ସେମାନଙ୍କର ପ୍ରାର୍ଥନାଘର ଯାହାକୁ ସେମାନେ ଚର୍ଚ୍ଚ କହନ୍ତି ନାହିଁ, କହନ୍ତି ଟେମ୍ପଲ୍ । ଏମାନେ ଗୋଟାଏ ସଂପ୍ରଦାୟର ଖ୍ରୀଷ୍ଟିୟାନ୍ ଯୋଉମାନେ ବିଶ୍ୱାସ କରନ୍ତି ଯୀଶୁଖ୍ରୀଷ୍ଟଙ୍କୁ; କିନ୍ତୁ ସେମାନଙ୍କର ଜଣେ ପ୍ରଫେଟ୍ ଅଛନ୍ତି ଯାହାଙ୍କୁ ସେମାନେ ମାନନ୍ତି ଏ ସଂପ୍ରଦାୟର ମାର୍ଗଦର୍ଶକ ବା ଗୁରୁଭାବେ । ତାଙ୍କ ନାମ ଜୋସେଫ୍ ସ୍ମିଥ୍ । ଏ ହେଲେ ଊନବିଂଶ ଶତାବ୍ଦୀର ପ୍ରୋଟେଷ୍ଟାଣ୍ଟ୍ ପ୍ରଫେଟ୍ ଯେ ଖ୍ରୀଷ୍ଟଧର୍ମର ସଂସ୍କାର ଲକ୍ଷ୍ୟରେ ଏକ ନୂଆ ସଂପ୍ରଦାୟ ସୃଷ୍ଟିକରିଥିଲେ । ସେମାନଙ୍କୁ କୁହାଯାଏ ମର୍ମନ୍‌ସ । ଏମାନଙ୍କୁ ରକ୍ଷଣଶୀଳ ଖ୍ରୀଷ୍ଟିୟାନ୍‌ମାନେ ଆମେରିକାର ପୂର୍ବ ଉପକୂଳ ଦେଶ-ମାନଙ୍କରୁ ବିତାଡ଼ନ ପରେ ସେମାନେ ସାରା ମଧ୍ୟ-ଆମେରିକାର ଅଗମ୍ୟ ବଣ ପାହାଡ ଅତିକ୍ରମକରି ଶେଷରେ ପହଞ୍ଚିଲେ ଏଇ ରକି-ପର୍ବତ ଉପର ୟୁଟାଃ ଅଞ୍ଚଳରେ । ପରେ ପରେ ସେମାନେ ପ୍ରତିଷ୍ଠାକଲେ ଏଇ ସହର ସଲଟ୍‌ଲେକ୍ ସିଟି । ମର୍ମନ୍‌ମାନେ ସଂଖ୍ୟାରେ କିଛି କମ୍ ନୁହନ୍ତି । ୟୁଟାଃ ରାଜ୍ୟର ସମୁଦାୟ ଜନସଂଖ୍ୟା ପ୍ରାୟ ଏକ କୋଟି– ସେଥିରୁ ଶତକଡା ନବେ ପଂଚାନବେ ଭାଗ ମର୍ମନ୍‌ସ ।

ସେଦିନ ଅପରାହ୍ନରେ ସହର ପରିକ୍ରମା ଭିତରେ ଆମେ ଏ ସହରରେ ଥିବା ଏକ ହିନ୍ଦୁମନ୍ଦିର ଦେଖିବାକୁ ବାହାରିଲୁ । ଅଳ୍ପ ଅଳ୍ପ ବର୍ଷା ଆରମ୍ଭ ହୋଇଥାଏ । ବାହାରେ ଜୋର୍ ଥଣ୍ଡା ପବନ ବୋହୁଥାଏ ମନେହେଉଥାଏ ଶୀତଋତୁ ପାଖେଇ ଆସୁଥାଏ ଦ୍ରୁତବେଗରେ ।

## ସଲଟ୍‌ଲେକ୍‌ସିଟିର ହିନ୍ଦୁ ମନ୍ଦିର

ସେଦିନ ଅପରାହ୍ନରେ ସହର ପରିକ୍ରମା ଭିତରେ ଆମେ ଏ ସହରରେ ଥିବା ଏକ ହିନ୍ଦୁମନ୍ଦିର ଦେଖିବାକୁ ବାହାରିଲୁ । ଅଳ୍ପ ଅଳ୍ପ ବର୍ଷା ଆରମ୍ଭ ହୋଇଥାଏ । ବାହାରେ ଜୋର୍ ଥଣ୍ଡା ପବନ ବୋହୁଥାଏ– ମନେହେଉଥାଏ ଶୀତଋତୁ ପାଖେଇ ଆସୁଥାଏ ଦ୍ରୁତ ବେଗରେ । ପ୍ରାୟ ଦଶ ମାଇଲ୍ ଡ୍ରାଇଭ୍ କରି ଆମେ ପହଞ୍ଚିଲୁ ମନ୍ଦିରରେ । ମନ୍ଦିରଟି ବେଶ୍ ବଡ । ଦକ୍ଷିଣ-ଭାରତୀୟ ସ୍ଥାପତ୍ୟ ଶୈଳୀରେ ନିର୍ମିତ ଏ ପ୍ରକାର ମନ୍ଦିର ଆମେରିକାର ଅନ୍ୟ କେତେକ ସହରରେ ବି ଦେଖିଚି । ଏହାର ଗୋପୁର ଓ ଅଳିନ୍ଦ ଇତ୍ୟାଦି ଅତି ପ୍ରଶସ୍ତ । ମନ୍ଦିରରେ ପ୍ରମୁଖ ଦେବତା ହେଲେ ଶ୍ରୀ ଗଣେଶ (କେନ୍ଦ୍ରରେ) । ତାଙ୍କ ଦୁଇପାଖରେ ଶ୍ରୀତିରୁପତି (ବିଷ୍ଣୁ) ଏବଂ ଶିବ-ପାର୍ବତୀଙ୍କ ସ୍ୱତନ୍ତ୍ର ମନ୍ଦିର । ଏହାଛଡା ରାମ-ସୀତା, ହନୁମାନ, ଶ୍ରୀକୃଷ୍ଣ, ରାଧା ପ୍ରଭୃତି ଦେବଦେବୀଙ୍କ ମୂର୍ତ୍ତି ମନ୍ଦିରର ଗର୍ଭଗୃହରେ ସସମ୍ମାନ ପୂଜା ପାଆନ୍ତି । ପୂଜକମାନେ ହେଲେ ଦକ୍ଷିଣଭାରତରୁ ଅଣାଯାଇଥିବା ସୁନ୍ଦର ଚେହେରାର ସଂସ୍କୃତଜ୍ଞ କେତେଜଣ ବ୍ରାହ୍ମଣ । ଲକ୍ଷ୍ୟକଲି ଏଠି ଏ ମନ୍ଦିରରେ ଏପର୍ଯ୍ୟନ୍ତ ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା ହୋଇପାରିନାହିଁ । ମୂଳ କାରଣ– ଏଠି ଓଡିଆ ଲୋକ ବେଶୀ ନାହାନ୍ତି ପୃଷ୍ଠପୋଷକତା ପାଇଁ । ଏପର୍ଯ୍ୟନ୍ତ ଚାକିରି ବା ବ୍ୟବସାୟ ଉଦ୍ଦେଶ୍ୟରେ ଏଠିକି ଆସିଥିବା ଓଡିଆଙ୍କ ସଂଖ୍ୟା ନଗଣ୍ୟ । ବୋଧହୁଏ ଅଭିଜିତ୍ ଓ ଜୁଲି ହେଲେ ପ୍ରଥମ ଓଡିଆ ପରିବାର ଯେ ଏ ମନ୍ଦିରକୁ ନିୟମିତ ଆସିବା ଆରମ୍ଭକରନ୍ତି ଏଇ ବର୍ଷକ ଭିତରେ । ଦକ୍ଷିଣଭାରତୀୟମାନେ ଜୁଲିକୁ ଥରେ କୌଣସି ଉତ୍ସବରେ ଭଜନ ବୋଲିବା ପାଇଁ ଡାକିଥିଲେ । ତାହା ପରଠୁ ଏମାନେ ଏ ମନ୍ଦିରର ସାଂସ୍କୃତିକ କାର୍ଯ୍ୟକ୍ରମ ସହିତ ସପରିବାର ସଂପୃକ୍ତ ହୋଇପାରିଛନ୍ତି ।

## ୱାର୍ସ (Wastch) : ଜାତୀୟ ଉଦ୍ୟାନ

ସେଦିନ ମନ୍ଦିରରେ ଠାକୁର ଦର୍ଶନ ସାରି ଘରମୁହାଁ ଫେରିବା ବାଟରେ ମୋ ଆଖିରେ ପଡିଲା– ଦିଗ୍‌ବଳୟର ପର୍ବତଶୃଙ୍ଗଗୁଡିକ ଉପରେ ପ୍ରବଳ ତୁଷାରପାତ ଆରମ୍ଭ ହୋଇ ଯାଇଚି ! ଦୃଶ୍ୟଟା ମତେ ଏପରି ଅଭିଭୂତ କଲା ଯେ ମୁଁ ଅଭିଜିତ୍‌ଙ୍କୁ କହିଲି– ଚାଲ ଯିବା ସେ ପାହାଡ ଉପରକୁ– ନିକଟରୁ ଦେଖିବା ତୁଷାରପାତ କେମିତି ହେଉଚି ଏଇଲେ । ଅଭିଜିତ୍ ତତ୍‌କ୍ଷଣାତ୍ କାର୍‌ର ଗତିପଥ ବଦଳେଇଦେଲେ ଆଉ ଆମେ ଚାଲିଲୁ ସେଆଡକୁ ।

ପଚାରିଲି, "କେତେବାଟର ଡ୍ରାଇଭ୍ ?– ତୁମକୁ କଷ୍ଟ ହେବ ନାହିଁ ତ ?"

"ନା ନନା ! ସେ ଯୋଉ ପାହାଡ ଉପରକୁ ଆମେ ଯିବା ସେଇଟା ବେଶୀ ଦୂରରେ ନାହିଁ; କିନ୍ତୁ ଆମକୁ ଚଢିବାକୁ ହେବ ପ୍ରାୟ ୨,୦୦୦ ଫୁଟ୍ ଉପରକୁ । ପ୍ରକୃତରେ

ସେ ଜାଗାର ଅଲଟିଚ୍ୟୁଡ୍ ହେଲା ୭,୦୦୦ ଫୁଟ୍ । କିନ୍ତୁ ଆମେ ଯେହେତୁ ଅଛେ ସଲ୍ଟ୍‌ଲେକ୍‌ର ଅଲଟିଚ୍ୟୁଡ୍ ୫,୦୦୦ ଫୁଟ୍‌ରେ ତେଣୁ ଆଉ ଦି'ହଜାର ଫୁଟ୍ ପାହାଡ ଚଢା ଦରକାର" । ଡ୍ରାଇଭ୍ କରିବା ଭିତରେ ଅଭିଜିତ୍ ଆମକୁ ସେ ପର୍ବତଟା ବିଷୟରେ ବୁଝେଇ କହିଲେ–"ସେ ଜାଗାର ନାମହେଲା "Wastch National Park" । ସେଇଠି ଅଛି ବିଶ୍ୱପ୍ରସିଦ୍ଧ ଅଲ୍‌ଟା (Alta) ସ୍କିଇଙ୍ଗ୍ ସ୍କେଟିଂ (Skiing Skating) ରିଙ୍କ୍‌ସ୍ । ଏଠିକି ପ୍ରତି ଶୀତରତୁରେ ୟୁରୋପ ଆମେରିକାର ସ୍କିଇଙ୍ଗ୍‌ପ୍ରେମୀ ଖେଳାଳିମାନେ ଆସନ୍ତି । ସେମାନଙ୍କ ରହିବା ପାଇଁ ସ୍ୱତନ୍ତ୍ର ହଷ୍ଟେଲ୍ ଅଛି ସେ ପାହାଡ ତଳେ । ସେତେବେଳେ ଏ ଜାଗାଟା ଗୋଟାଏ ବଡ଼ ମେଳା ବସିବା ଭଳି ଜଣାପଡେ । ପୃଥିବୀ ସାରା ବିଭିନ୍ନ ଦେଶରୁ ଆସନ୍ତି ସ୍କେଟିଂ ଲଭର୍ସମାନେ । ଆମର ଏ ୟୁଟାଃ ସଲଟ୍‌ଲେକ୍‌ରେ ଆଉ ଗୋଟାଏ ସ୍କେଟିଂ ପାହାଡ ଅଛି ଯୋଉଠି ଗଲାବର୍ଷ ଓ୍ୱର୍ଲଡ୍ ଅଲିମ୍ପିକ୍‌ସ୍‌ର ସ୍କିଂ କମ୍ପିଟିସନ୍ ହେଇଥିଲା । ଆମେ ଯିବା ଅନ୍ୟ ଦିନେ ସେ ଜାଗା ଦେଖିବାକୁ ।"

ପାହାଡର ସବା ଉପର ପର୍ଯ୍ୟନ୍ତ ଯିବାପାଇଁ ସେଦିନ ସମୟ ନଥିଲା । ବରଫ ବୃଷ୍ଟି ସେମିତି ଚାଲିଥାଏ । ପାହାଡ ମଝାମଝି । ଗୋଟିଏ ପାର୍କିଂ ଏରିଆ ଦେଖି କାର୍ ଅଟକେଇଲେ ଅଭିଜିତ୍ । ଆମେ କାର୍‌ରୁ ବାହାରକୁ ବାହାରିବାକ୍ଷଣି ଥଣ୍ଡାରେ ଦେହର ମଂଜ ଥରିଗଲା । ଏକେତ ବରଫ ପଡୁଥାଏ, ପୁଣି ପ୍ରବଳ ଥଣ୍ଡା ପବନ ପିଟୁଥାଏ । ସେଇ ଥଣ୍ଡା ଦିହେ ଦିହେ ସହି ଆମେ କିଛି ସମୟ ବାହାରେ ବୁଲିଲୁ । ଘାଟି ରାସ୍ତାର ଠିକ୍ କଡକୁ ଲାଗି ଠିଆହେଇଥାଏ ଅଲଟା ପର୍ବତ । ସ୍କେଟିଂଖେଳାଳିମାନେ ସେମାନଙ୍କ ସାଜସରଂଜାମ ଧରି କିଛି ସଂଖ୍ୟାରେ ଆସି ପହଂଚିସାରିଥାନ୍ତି । ପାହାଡ କାନ୍ଥରେ ଦେଖିଲୁ ସେମାନଙ୍କର ରହଣିପାଇଁ ହଷ୍ଟେଲ୍ ଘରଗୁଡିକରେ ଲୋକ ଚଳପ୍ରଚଳ ଆରମ୍ଭ ହେଲା ଭଳି ଦିଶୁଥାଏ । ବ୍ୟବସ୍ଥାରୁ ମନେହେଉଥାଏ ସେ ଘରଗୁଡିକ ସାଧାରଣ ହଷ୍ଟେଲ ଘର ନୁହଁ– ରୀତିମତ ହୋଟେଲ ବ୍ୟବସ୍ଥା । ଏ ଦେଶରେ ସ୍ପୋର୍ଟସକୁ ବହୁତ ପ୍ରାଧାନ୍ୟ ଦିଆଯାଏ । ତା'ଛଡା ଏ ବି ଗୋଟାଏ ବଢିଆ ଟୁର୍ ବିଜିନେସ୍ । ପଇସା ଖର୍ଚ୍ଚରେ କାର୍ପଣ୍ୟ ନଥାଏ ଏଠି ।

କିଛି ସମୟ ପାହାଡ ଉପରେ କଟାଇ ଆମେ ଅନେକ ଫଟୋ ନେଲୁ ସେ ଜାଗାର । ସେଇଠୁ ଆରମ୍ଭହେଲା ପାହାଡରୁ ଅବତରଣ ଆଉ ଗୃହାଭିମୁଖେ ଯାତ୍ରା ।

ସଲଟ୍‌ଲେକ୍ ସିଟିର ଘରଗୁଡାକ ପ୍ରାୟ ଦୁଇ ବା ତିନି ମହଲା । ବେଶୀ ଉଚ୍ଚ ବହୁ ତଳ ବିଲଡିଂ କାଁଭାଁ ନଜରରେ ପଡେ । ତାର କାରଣ ରକି ପାର୍ବତ୍ୟ ଅଂଚଳଟା ଭୂମିକଂପ-ପ୍ରବଣ; ଠିକ୍ ହିମାଳୟର ପାର୍ବତ୍ୟ ଅଂଚଳର ରାଜ୍ୟ ଉତ୍ତରାଖଣ୍ଡ, ହିମାଚଳ, ସିକିମ୍ ପ୍ରଭୃତି ରାଜ୍ୟ ପରି । ହିମାଳୟ ଓ ରକିଜ୍ ଏକାଜାତିର ପାହାଡ ଭୂତତ୍ତ୍ୱ ଦୃଷ୍ଟିରେ– Young fold mountains – । ଏ ସବୁ ଅଂଚଳ ଭୂକମ୍ପପ୍ରବଣ ।

## ଆମେରିକାର ରାଷ୍ଟ୍ରପତି ନିର୍ବାଚନ–

– ତା ୬ ଅଗଷ୍ଟ ୨୦୦୮ ।

ଆମର ଏଥର ୟୁଟାଃ ଅବସ୍ଥାନ ସମୟରେ ଏ ବର୍ଷ ନଭେମ୍ବରକୁ ଥାଏ ଆମେରିକାର ରାଷ୍ଟ୍ରପତି ନିର୍ବାଚନ। ଆଜି ରାତି ନ'ରେ ଟି.ଭିରେ ଗୋଟାଏ ଭଲ ପ୍ରୋଗ୍ରାମ୍ ଥାଏ– ଡିମୋକ୍ରାଟିକ୍ ଦଳ ପ୍ରାର୍ଥୀ ବରାକ୍ ଓବାମା ଆଉ ରିପବ୍ଲିକାନ୍ ଦଳ ପ୍ରାର୍ଥୀ ଜନ୍ ମେକେନ୍‌ଙ୍କ ଭିତରେ ଡିବେଟ୍ । ଏଇଟା ହେଲା ଦ୍ୱିତୀୟ ରାଉଣ୍ଡ ଡିବେଟ୍ ଦୁଇପ୍ରାର୍ଥୀଙ୍କ ଭିତରେ । ନିର୍ଦ୍ଧାରିତ ସମୟରେ ଟି.ଭି ପ୍ରୋଗ୍ରାମ୍ ଆରମ୍ଭ ହେଲା । ଆଗରୁ ଡିମୋକ୍ରାଟିକ୍ ଦଳର ଆଭ୍ୟନ୍ତରୀଣ ନିର୍ବାଚନରେ ଦଳର ଦୁଇ ପ୍ରାର୍ଥିଙ୍କ ଭିତରେ ପବ୍ଲିକ୍ ଡିବେଟ୍ କେତେବାର ଦେଖିଥାଏ ଟି.ଭି.ରେ । ସେତେବେଳେ ଚାଲିଥିଲା ଡିବେଟ୍ ଡିମୋକ୍ରାଟିକ୍ ଦଳର ଦୁଇ ପ୍ରବଳ ପ୍ରଭାବଶାଳୀ ପ୍ରାର୍ଥୀ ଶ୍ରୀମତୀ ହିଲାରୀ କ୍ଲିଣ୍ଟନ୍ ଆଉ ବରାକ୍ ଓବାମାଙ୍କ ଭିତରେ। ଜଣେ ହେଲେ ଖାଣ୍ଟି ଶ୍ୱେତାଙ୍ଗ ଆମେରିକାନ୍ ଆଉ ଅନ୍ୟଜଣକ କୃଷ୍ଣକାୟ ଆଫ୍ରିକାନ୍ ଆମେରିକାନ୍ । ହିଲାରୀ କ୍ଲିଣ୍ଟନ୍ ପୂର୍ବତନ ପ୍ରେସିଡେଣ୍ଟ୍ ବିଲ୍ କ୍ଲିଣ୍ଟନ୍‌ଙ୍କ ବହୁ ଗୁଣ ସଂପନ୍ନା ପତ୍ନୀ ଯାହାଙ୍କ ସୁଖ୍ୟାତି ସାରା ବିଶ୍ୱରେ ତଦ୍‌ବଧି ବହୁ ପ୍ରତିଷ୍ଠା ଲାଭକରିସାରିଥାଏ । ସେଇ ତେଜସ୍ୱିନୀ ନାରୀଙ୍କ ସମ୍ମୁଖରେ ବାରାକ ଓବାମାଙ୍କ ଭଳି ଜଣେ ସ୍ୱଳ୍ପ-ପରିଚିତ ସାଧାରଣ ସିନେଟିୟର୍ ଯେ ତିଷ୍ଠିପାରିବେ ଏହା ସାରା ଆମେରିକାର ଜନତା ସ୍ୱପ୍ନରେ ବି ଚିନ୍ତା କରିବା ସଂଭବ ନଥିଲା । କିନ୍ତୁ ଇତିହାସ ଥରେ ଥରେ ଏଭଳି ଭେଲିକି ଦେଖାଏ ଯାହାକୁ ରାଜନୈତିକମାନେ ନାମ ଦିଅନ୍ତି ହାଓ୍ୱା ! କିନ୍ତୁ ସେମାନେ ଜାଣନ୍ତି ନାହିଁ ହାଓ୍ୱା ସୃଷ୍ଟିର ବିଜ୍ଞାନ। ରାଜନୈତିକ ହାଓ୍ୱାର ବହୁ କାରଣ ଭିତରୁ ପ୍ରଧାନ କାରଣ ହେଲା– ଇତିହାସ ନିଜେ ନିଜର କୃତକର୍ମର ଫଳକୁ ଅଗ୍ରାହ୍ୟ କରେ ଆଉ ନିଜ ଭୁଲ୍ ନିଜେ ସଜାଡେ। ଏ ସଂପର୍କରେ ବିଖ୍ୟାତ ଐତିହାସିକ ଦାର୍ଶନିକ ଟୟନ୍‌ବି କହିଯାଇଛନ୍ତି ଗୋଟିଏ ବଡ ତତ୍ତ୍ୱ। ସେ କହିଚନ୍ତି– ଆଜି ଯାହାକୁ ପାଦରେ ଦଳୁଚ ସେଇ ଦିନେ ବସିବ ତମ ମୁଣ୍ଡରେ– ଯେମିତି ଦଳିତ ଖ୍ରୀଷ୍ଟିୟାନ୍‌ମାନେ ବସିଲେ ଯିଶୁଖ୍ରୀଷ୍ଟଙ୍କୁ କ୍ରୁଶବିଦ୍ଧ କରାଇଥିବା ରୋମାନ୍‌ମାନଙ୍କ ମୁଣ୍ଡ ଉପରେ। ସେମିତି ବହୁ ଉଦାହରଣ ଅଛି ଟୟନ୍‌ବିଙ୍କ ବହିରେ। ସେଇ ନିୟମଟା ବୋଧହୁଏ ଏ ବର୍ଷ ଆମେରିକାର ରାଷ୍ଟ୍ରପତି ନିର୍ବାଚନରେ କାମ ଦେଖେଇବାର ଥାଏ। ପ୍ରଥମେ ଡିମୋକ୍ରାଟିକ୍ ପାର୍ଟି ନିଜ ଦଳର ଆଭ୍ୟନ୍ତରୀଣ ନିର୍ବାଚନରେ ସଂଖ୍ୟାଗରିଷ୍ଠ ବୋଲାଉଥିବା ଗୋରା ଆମେରିକାନ୍‌ଙ୍କ ପ୍ରତିନିଧି ହିଲାରି କ୍ଲିଣ୍ଟନ୍‌ଙ୍କୁ ପରାସ୍ତ କରାଇଲା ସଂଖ୍ୟାଲଘୁ କଳାଲୋକ ବାରାକ୍ ଓବାମାଙ୍କ ହାତରେ। ପରେ ପରେ ଓବାମାଙ୍କୁ ସମ୍ମୁଖୀନ କରାଇଲା ରିପବ୍ଲିକାନ୍ ପାର୍ଟିର ପ୍ରାର୍ଥୀ ଜନ୍ ମେକେନ୍‌ଙ୍କ ସହିତ ମୁହାଁମୁହିଁ ଲଢେଇରେ। ଏକଥା ଜଣାଶୁଣା ଯେ ରିପବ୍ଲିକାନ୍‌ମାନେ ହେଲେ ଆମେରିକାର ନିଆଁଗିଳା ଜାଠ ଦଳ।

ଏମାନେ ସଂଖ୍ୟାଗରିଷ୍ଠ ଧଳା ଆମେରିକାନ୍‌ଙ୍କ ଖାସ୍ ପ୍ରତିନିଧି ଆଉ ଆମେରିକାରେ ବର୍ଣ୍ଣବୈଷମ୍ୟ ତତ୍ତ୍ୱର ଗୁରୁ !

ଆଜି ଥାଏ ସେଇ ଲଢେଇର ଦ୍ୱିତୀୟ ପର୍ଯ୍ୟାୟ ଡିବେଟ୍ ଟିଭିରେ । ଦେଢଘଣ୍ଟାର ପ୍ରୋଗ୍ରାମ୍ । ହାତରେ ଡିନର୍ ପ୍ଲେଟ୍ ନେଇ ଆମେ ସମସ୍ତେ ବସିଗଲୁ ଟିଭି ସାମ୍‌ନାରେ । ଚାଲିଲା ଘମାଘୋଟ ଆଲୋଚନା– ପ୍ରବଳ ଯୁକ୍ତିତର୍କ ଓ କଥା କଟାକଟି । ଆଶ୍ଚର୍ଯ୍ୟ ହେଲି ଜଣେ କଳାଲୋକର ଜ୍ଞାନ ଗରିମା, କହିବା ଠାଣି ଆଉ ତାର ଅଦମ୍ୟ-ଆତ୍ମବିଶ୍ୱାସକୁ ଲକ୍ଷ୍ୟକରି– ସେ ଥିଲେ ଡିମୋକ୍ରାଟିକ୍ କ୍ୟାଣ୍ଡିଡେଟ୍ ବରାକ୍ ହୁସେନ ଓବାମା । ତାଙ୍କ କଥାବାର୍ତ୍ତାରୁ ଅନୁମାନ କରିହେଲା– ଏଇ ଲୋକ ହିଁ ଏବର୍ଷ ନଭେମ୍ବରକୁ ହେବାକୁ ଥିବା ରାଷ୍ଟ୍ରପତି ନିର୍ବାଚନରେ ସଫଳହେବେ !

ଇତିହାସ ନିଜ ବାଟରେ ଆମେରିକାର ଗୋରାଲୋକଙ୍କ ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଜାରି ରହିଥିବା ପ୍ରଭୁତ୍ୱକୁ ଖାତିର ନକରି ନିଜର ଭୁଲ୍ ନିଜେ ସଜାଡିବା ଉପକ୍ରମ କଲା । ସେଇ ଉପକ୍ରମକୁ ଆମେରିକାରେ ଥାଇ ଏଥର ପୂର୍ଣ୍ଣମାତ୍ରାରେ ପର୍ଯ୍ୟବେକ୍ଷଣ କରିବାର ସୁଯୋଗ ମତେ ମିଳିଥିଲା ।

## ରକି ପର୍ବତମାଳାର ରହସ୍ୟମୟ ଉପତ୍ୟକା :

## ପୀତପ୍ରସ୍ତର ଜାତୀୟ ଉଦ୍ୟାନ (Yellow Stone National Park)–

(ପୀତପ୍ରସ୍ତର ଜାତୀୟ ଉଦ୍ୟାନ ବା "ୟେଲୋ ଷ୍ଟୋନ୍ ନ୍ୟାସ୍‌ନାଲ୍ ପାର୍କ" ଉତ୍ତର ଆମେରିକାର ପଶ୍ଚିମରେ ସୁଦୀର୍ଘ ରକି ପର୍ବତମାଳା ଅନ୍ତର୍ଗତ ଏକ ବିସ୍ମୟକର ସ୍ଥାନ । ଏହାକୁ ଯୁକ୍ତରାଷ୍ଟ୍ର ଆମେରିକାର ଜାତୀୟଉଦ୍ୟାନର ମର୍ଯ୍ୟାଦା ଦିଆଯାଇଛି । ଏ ଦେଶର ବହୁ ସଂଖ୍ୟକ ଜାତୀୟଉଦ୍ୟାନ ଭିତରେ ୟେଲୋଷ୍ଟୋନ୍‌ପାର୍କର ସ୍ଥାନ ସ୍ୱତନ୍ତ୍ର । ଏ ସ୍ଥାନର ମର୍ଯ୍ୟାଦା କେବଳ ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ନୁହେଁ– ବରଂ ପ୍ରକୃତିର 'ବିଶ୍ୱରୂପ' ଦର୍ଶନ ପାଇଁ ଉଦ୍ଦିଷ୍ଟ । ଏଠାରେ ନାଏଗ୍ରା ଭଳି ବିଶାଳ ଜଳପ୍ରପାତର ରମଣୀୟ ଦୃଶ୍ୟ ବଦଳରେ ଦେଖିବାକୁ ମିଳେ ନିଆଁ ଧୂଆଁ ଆଉ ମାଇଲ୍‌ମାଇଲ୍ ବ୍ୟାପୀ ଚୋରାବାଲିର କ୍ଷେତ୍ର । ଏଠି ପ୍ରତି ପଦେପଦେ ଦିଆ-ଯାଇଥାଏ ବିପଦ ସଂକେତ– 'ସାବଧାନ! ପଥ ହୁଡ଼ିଲେ ସିଧା ପାତାଳ !')

## ଭ୍ରମଣ ଆରମ୍ଭ ସଲ୍ଟ୍‌ଲେକ୍ ସିଟି, ୟୁଟାଃରୁ

ଆଜି ଶନିବାର, ତା ୨୭, ସେପ୍ଟେମ୍ବର ୨୦୦୮–

ଗଲା ରାତିରୁ ଆମର ଜିନିଷପତ୍ର ସବୁ ବନ୍ଧାବନ୍ଧି ହୋଇ ଠିକ୍‌ଠାକ୍ । କଥାଥାଏ ଭୋର୍ ସାଢେ ପାଞ୍ଚଟାରେ ଆମେ ବସିବୁ କାର୍‌ରେ– ତା'ହେଲେ ଖରା ଟାଣ ହେବା ଆଗରୁ ସକାଳ ଦଶଟା ସାଢେଦଶଟାକୁ ଆମେ ଯାଇ ପହଞ୍ଚିପାରିବୁ ୟେଲୋଷ୍ଟୋନ୍ ପାର୍କରେ ।

ୟେଲୋଷ୍ଟୋନ୍ ପାର୍କ ଆମର ରହଣି ସ୍ଥାନ ସଲଟଲେକ ସିଟିରୁ ସାଢେ ତିନିଶହ ମାଇଲ– ପାଞ୍ଚଶହ କିଲୋମିଟର ଦୂର– ପ୍ରାୟ ପାଞ୍ଚ ଛଘଣ୍ଟାର କାର ଜର୍ଣ୍ଣି । ପ୍ରୋଗ୍ରାମ୍ ଅନୁସାରେ ଭୋର୍ ସାଢେ ପାଂଚରେ ଆମେ ଘର ଛାଡିଲୁ । କାର୍‌ରେ ଆମେ ଥାଉ ଛ'ଜଣ– ଅଭିଜିତ ଡ୍ରାଇଭିଂ ସିଟରେ, ଆଉ ସାମନା ପ୍ୟାସେଂଜର୍ ସିଟ୍‌ରେ ମୁଁ । ପଛ ସିଟ୍‌ରେ ଦୁଇ ନାତୁଣୀ ଅଙ୍କିତା, ଆନୁଙ୍କ ସାଥିରେ ଆଈ ନିରୁପମା ଓ ଜୁଲି । ଠିକ୍ ଭୋର୍ ସାଢେପାଞ୍ଚରେ ଆମେ ଆରମ୍ଭକଲୁ ଆଜିର ଯାତ୍ରା । ଅଧଘଣ୍ଟା ଭିତରେ ଆମ କାର୍ ସଲ୍‌ଟ୍‌ଲେକ୍ ସିଟିର ସୀମା ପାରିହେଇ ଚାଲିଲା ନ୍ୟାସନାଲ ହାଇଓ୍ୱେରେ ୟୁଟାଃ ରାଜ୍ୟର ଉତ୍ତର ସୀମା ଅଭିମୁଖେ । ୟୁଟାଃ ଗୋଟାଏ ପାହାଡିଆ ରାଜ୍ୟ । ରାସ୍ତା ଦୁଇପାଖରେ ରକି ମାଉଂଟେନ୍‌ର ସାରିସାରି ଢେଉଢେଉକା ପର୍ବତମାଳା ଦୃଷ୍ଟିଗୋଚର ହେଉଥାଏ । ଅନେକ ପର୍ବତଶୃଙ୍ଗ ଉପରେ ସ୍ଥାନେସ୍ଥାନେ ତୁଳା ଗଦା ଭଳି ବରଫ ପଡିବା ଦୃଶ୍ୟ ଦିଶୁଥାଏ । ମୁଁ ପଚାରିଲି ଅଭିଜିତଙ୍କୁ, ''ଏଠି ୟୁଟାଃରେ ସେପ୍ଟେମ୍ବର ମାସରେ ପାହାଡ ଉପରେ ବରଫ ଦିଶୁଚି । ତାହେଲେ ତିନିଶହ ମାଇଲ୍ ଉତ୍ତରକୁ ୟେଲୋଷ୍ଟୋନ୍ ପାର୍କ ଅଞ୍ଚଳରେ ତ ବେଶୀ ବରଫ ପଡୁଥାଇପାରେ ?''

ଅଭିଜିତ୍ କହିଲେ, ''ନାଇଁ ନନା, ଆମର ଏଠି ପର୍ବତ ଉପରେ ବରଫ କିଛିକିଛି ରହିଥାଏ ବର୍ଷର ବାରମାସ, କିନ୍ତୁ ପ୍ରକୃତ ବରଫ ପଡିବ ଯାଇ ନଭେମ୍ବର ଡିସେମ୍ବର ମାସରେ । ଅବଶ୍ୟ ୟେଲୋଷ୍ଟୋନରେ ବରଫ ପଡିଯାଏ ଆମଠୁଁ ଶୀଘ୍ର । ସେଥିପାଇଁ ଅକ୍ଟୋବର ମାସରୁ ସେଠାକୁ ଟୁରିଜିମ ବନ୍ଦ । ଏଇଲେ ପାଗ ଠିକ୍ ଥିବ ନିଶ୍ଚୟ'' ।

ମୁଁ ରାସ୍ତା କଡକୁ ଅନାଇ ରୋଡ ସାଇନ୍ ଗୁଡାକୁ ଲକ୍ଷ୍ୟକଲି । ନ୍ୟାସନାଲ୍ ହାଇଓ୍ୱେରେ ଯାନବାହନରେ ଚଳାଚଳ ଏପର୍ଯ୍ୟନ୍ତ ସେତେ ବେଶୀ ଗହଳ ହୋଇନଥାଏ । ଏଇ ରାସ୍ତାଟି ଆମେରିକାର ପଶ୍ଚିମାଞ୍ଚଳର ଏକ ପ୍ରଧାନ ଜାତୀୟ ରାଜପଥ । ତିନିହଜାର ମାଇଲ୍ ଦୀର୍ଘ ରକି ପର୍ବତର ଏମୁଣ୍ଡ ସେମୁଣ୍ଡ ଲମ୍ବିଥିବା ଏ ଜାତୀୟ ରାଜପଥ ଉତ୍ତରରେ କାନାଡା ଓ ଦକ୍ଷିଣରେ ନିଉମେକ୍ସିକୋ ସମେତ ଯୁକ୍ତରାଷ୍ଟ୍ର ଆମେରିକାର ବହୁ ଗୁରୁତ୍ୱପୂର୍ଣ୍ଣ ରାଜ୍ୟର ପ୍ରଧାନ ସହରସବୁକୁ ପରସ୍ପର ସହିତ ସଂଯୋଗ କରିଥାଏ । ଆମେ ସେ ପର୍ଯ୍ୟନ୍ତ ୟୁଟାଃ (Utah) ରାଜ୍ୟର ସୀମା ପାରିହୋଇନଥାଉ ।

ପ୍ରାୟ ଶହେ ମାଇଲ୍ ପରେ, ଅଭିଜିତ କାର୍‌ରେ ଖଞ୍ଜାଯାଇଥିବା ଜି.ପି.ଏସ୍ ସ୍କ୍ରିନ୍‌କୁ ଚାହିଁ କହିଲେ, ''ଆମେ ୟୁଟାଃ ଛାଡି ପଶିବା ପଡିଶା ରାଜ୍ୟ 'ଆଇଡାହୋ' (Idaho) ସୀମା ଭିତରେ । ତାପରେ ଆସିବ ୱୋମିଂ (Wyoming) ରାଜ୍ୟ । ତାର ଉତ୍ତରକୁ ମଂଟାନା (Montana) । ୟେଲୋଷ୍ଟୋନ ପାର୍କ ପ୍ରକୃତରେ ଏଇ ଶେଷ ତିନିଟା ରାଜ୍ୟ– ଆଇଡାହୋ, ୱୋମିଂ ଆଉ ମଂଟାନା ରାଜ୍ୟର ମଧ୍ୟବର୍ତ୍ତୀ ଏକ ବିଶାଳ ଇଲାକା । ଆମେରିକାର ଏ ସମସ୍ତ ରାଜ୍ୟର ଅବସ୍ଥିତି ସମୁଦ୍ର ପତ୍ତନରୁ ଅନ୍ତତଃ ଆଠରୁ ଦଶ ହଜାର

ଫୁଟ୍ ଉଚ୍ଚ ମାଉଂଟେନ ରେଂଜରେ । ଏ ଯୋଡ଼ ସାରିସାରି ପର୍ବତ ଗୁଡ଼ାକୁ ଆପଣ ରାସ୍ତା କଡ଼େକଡ଼େ ଦେଖିଦେଖି ଆସୁଚନ୍ତି ଘରୁ ବାହାରିବା ବେଳୁ ସେ ସବୁଗୁଡ଼ାକ ହେଉଚି ରକି ମାଉଂଟେନ ରେଂଜ !''

ଏହାପରେ କାର୍‌ର ଗ୍ଲୋଭ୍ କଂପାର୍ଟମେଂଟରୁ କିଛି ମ୍ୟାପ୍ ଓ ଲିଟ୍‌ରେଚର ବାହାରକରି ଅଭିଜିତ ମୋ ହାତକୁ ଦେଲେ । କହିଲେ, ''ଏଇ ମ୍ୟାପ୍ ଓ ଲିଟରେଚର୍ ଉପରେ ଆଖି ପକାନ୍ତୁ । ଏ ଅଞ୍ଚଳର ଭୂଗୋଳ ଓ ୟେଲୋଷ୍ଟୋନ ପାର୍କର ଅନେକ ବିବରଣୀ ଅଛି ଏଥିରେ ।''

ସେସବୁ ଉପରେ ଆଖି ବୁଲେଇଲି । ପ୍ରଥମେ ଦୃଷ୍ଟି ପଡ଼ିଲା ରକି ପର୍ବତମାଳାର ଭୂତାତ୍ତ୍ୱିକ ଗଠନ ପ୍ରଣାଳୀ ସଂପର୍କରେ କିଛି ବୈଜ୍ଞାନିକ ବିବରଣୀ ଉପରେ । ସେଥିରୁ ଜଣାଗଲା କାନାଡାର ଉତ୍ତର ପଶ୍ଚିମ ପାଖେ ଅବସ୍ଥିତ ବ୍ରିଟିଶ୍ କଲମ୍ବିଆ ଠାରୁ ଆରମ୍ଭ ହୋଇ ଏହି ପର୍ବତମାଳା ଦକ୍ଷିଣରେ ଯୁକ୍ତରାଷ୍ଟ୍ର ଆମେରିକାର ସୁଦୂର ନିଉ ମେକ୍ସିକୋ ରାଜ୍ୟ ପର୍ଯ୍ୟନ୍ତ ପ୍ରାୟ ୪,୮୦୦ କିଲୋମିଟର (୩,୦୦୦ ମାଇଲ) ପର୍ଯ୍ୟନ୍ତ ଲମ୍ବି ରହିଚି । ଏହାର ସର୍ବୋଚ୍ଚ ପର୍ବତ ଶୃଙ୍ଗ ମାଉଂଟ ଏଲ୍‌ବର୍ଟର ଉଚ୍ଚତା ହେଲା ୪,୪୦୧ ମିଟର ବା ୧୪,୪୦୦ ଫୁଟ୍ । ଏଠି ମନେରଖିବା କଥା ଯେ ରକି ପର୍ବତମାଳା ପ୍ରଶାନ୍ତ ମହାସାଗରର ଉପକୂଳର ସମାନ୍ତରାଳ ଭାବେ ରହିଥିବା ଅନ୍ୟ ଏକ ସୁଦୀର୍ଘ ପର୍ବତ ଶୃଙ୍ଖଳା ଠାରୁ ଭିନ୍ନ । ସେ ପର୍ବତମାଳାର ନାମ– 'ପାସିଫିକ୍ କୋଷ୍ଟାଲ୍ ରେଞ୍ଜ' । ଉଭୟ ରକି ଓ ପାସିଫିକ୍ କୋଷ୍ଟାଲ୍ ରେଞ୍ଜକୁ ମିଳିତ ଭାବେ କୁହାଯାଏ– 'ଉତ୍ତର ଆମେରିକାର ପ୍ୟାସିଫିକ୍ କର୍ଡିଲେରା' (Pacific Cordillera of North America) ।

## ୟେଲୋଷ୍ଟୋନର ଭୂତାତ୍ତ୍ୱିକ ବିବରଣୀ–

ଏହା ପରେ ରକି ପର୍ବତମାଳାର ସବୁଠାରୁ ଅଦ୍ଭୁତ ସେଇ ଭୂତାତ୍ତ୍ୱିକ ସ୍ଥାନ ୟେଲୋଷ୍ଟୋନ ନ୍ୟାସନାଲ ପାର୍କ କୁହାଯାଉଥିବା ଅଞ୍ଚଳଟି ବିଷୟରେ କିଛି ତାତ୍ପର୍ଯ୍ୟପୂର୍ଣ୍ଣ ବିବରଣୀ ଆଖିରେ ପଡ଼ିଲା । ସେଥିରେ ଥିଲା– ସେ ଅଞ୍ଚଳର ଶତକଡ଼ା ନବେ ଭାଗ ସ୍ଥାନ ଆଜିକୁ କୋଡ଼ିଏରୁ ପନ୍ଦର ହଜାର ବର୍ଷ ତଳେ ଥିଲା ସମ୍ପୂର୍ଣ୍ଣ ବରଫାବୃତ୍ତ । ସେ ସମୟକୁ କୁହାଯାଏ– ପାଇନ୍‌ଡେଲ୍ ତୁଷାର ଯୁଗ (Pinedale Ice age) । ସେଇ ଭୂତାତ୍ତ୍ୱିକ ଯୁଗରୁ ଏହି ବିଶାଳ ଅଞ୍ଚଳଟି ଉପରେ ଆଜି ପର୍ଯ୍ୟନ୍ତ ବାରମ୍ବାର ଘଟିଚାଲିଛି ପ୍ରବଳ ଭୂକମ୍ପ ଓ ଆଗ୍ନେୟଗିରିମାନଙ୍କରୁ କ୍ରମାଗତ ଅଗ୍ନି ଉଦ୍‌ଗୀରଣ ଜନିତ ପ୍ରଚଣ୍ଡ ଆଲୋଡ଼ନ । ତେବେ ଏ ସମସ୍ତ ଉତ୍ପାତ ସତ୍ତ୍ୱେ ଏ ଅଞ୍ଚଳରେ ଆଦିମ ମାନବ ବସତି ହଜାର ହଜାର ବର୍ଷ ପୂର୍ବରୁ ଗଢ଼ିଉଠିଥିବାର ପ୍ରମାଣ ରହିଚି । ଆଧୁନିକ କାଳରେ ୟେଲୋଷ୍ଟୋନ ଅଞ୍ଚଳଟି ୟୁରୋପୀୟ ଆମେରିକାନ୍‌ଙ୍କ ଦୃଷ୍ଟିକୁ ଆସିଲା ପ୍ରାୟ ଦୁଇଶହ ବର୍ଷ ତଳେ, ୧୮୦୫ରେ ।

ସେ ବର୍ଷ ଆମେରିକା ସରକାରଙ୍କଦ୍ୱାରା ଅନୁମୋଦିତ ହୋଇ ''ଲୁଇସ ଓ କ୍ଲାର୍କ'' ନାମକ ଏକ ଅଭିଯାତ୍ରୀ ଦଳ (Louis and Clarke Expedition) ରକି ପର୍ବତର ଏଇ ଦୁର୍ଭେଦ୍ୟ ଅଞ୍ଚଳର ବୈଜ୍ଞାନିକ ପର୍ଯ୍ୟବେକ୍ଷଣରେ ଆସିଥିଲେ । ସେମାନଙ୍କ ରିପୋର୍ଟରୁ ୟେଲୋଷ୍ଟୋନର ସାମ୍ପ୍ରତିକ ଏକ ବାସ୍ତବ ଚିତ୍ର ସମେତ ଏ ଅଞ୍ଚଳରେ ଆବହମାନ କାଳରୁ ବସବାସ କରିଆସୁଥିବା କେତେକ ଆମେରିକୀୟ ଆଦିବାସୀ ଗୋଷ୍ଠୀର ଲୋକଙ୍କର ପରିଚୟ ମିଳେ । ସେଇ ଆଦିମ ମାନବ ଗୋଷ୍ଠୀ ଗୁଡ଼ିକ ହେଲେ କ୍ରୋ (Crow), ବ୍ଲାକ୍‌ଫୁଟ (Blackfoot), ଶୋଶୋନ (Shoshone), ନେଜପର୍ସ (Nezperce) ଇତ୍ୟାଦି ।

## ୟେଲୋଷ୍ଟୋନ : ସଇତାନର ଘର !

ଲୁଇସ୍ ଓ କ୍ଲାର୍କ ରିପୋର୍ଟ ବ୍ୟତୀତ ୟେଲୋଷ୍ଟୋନ ଆବିଷ୍କାର ସମ୍ପର୍କରେ ଆହୁରି ଅନେକ ବିଚିତ୍ର କଥା ଏ ପର୍ଯ୍ୟନ୍ତ ଆମେରିକାର ଗୋରା ଅଧିବାସୀଙ୍କ ଭିତରେ ପ୍ରଚଳିତ ଅଛି । ସେଇଟି ହେଲା ଗୋରା ଖ୍ରୀଷ୍ଟିୟାନ୍ ଲୋକେ ୟେଲୋଷ୍ଟୋନ୍ ଅଞ୍ଚଳଟାକୁ ଅନେକ ବର୍ଷ ପର୍ଯ୍ୟନ୍ତ ମନେକରୁଥିଲେ ଯେ ରକି ପର୍ବତର ଏଇ ଅଞ୍ଚଳଟି ସେମାନଙ୍କ ବାଇବେଲ୍‌ରେ ବର୍ଣ୍ଣିତ Hell ଅର୍ଥାତ୍ 'ନରକ'ର ରାଜା Satan(ସଇତାନ)ର ଘର ବୋଲି । ସେମାନେ ବିଶ୍ୱାସ କରୁଥିଲେ ଏଇଠି ସଇତାନ ତା ଦଳବଳ ଭୂତପ୍ରେତଙ୍କୁ ନେଇ ବାସକରେ । ଏ ପ୍ରକାର ଅଦ୍ଭୁତ ଧାରଣାର କାରଣ ହେଲା ଜଣେ ପର୍ଯ୍ୟଟକଙ୍କ ଭ୍ରମଣ କାହାଣୀ ! ସେଇ ପର୍ଯ୍ୟଟକଙ୍କ ନାମ ଜନ କୋଲଟର (John Colter) । ସେ ଥିଲେ ପୂର୍ବୋକ୍ତ ''ଲୁଇସ୍ କ୍ଲାର୍କ'' ଅଭିଯାତ୍ରୀ ଦଳର ଜଣେ ସଦସ୍ୟ । ୧୮୦୫ରେ ଦଳର ଅନ୍ୟ ସଦସ୍ୟମାନଙ୍କ ସହ ମିଶି ସେ ୟୋଲୋଷ୍ଟୋନ୍ ଇଲାକା ପର୍ଯ୍ୟବେକ୍ଷଣରେ ଆସିଥିଲେ । କିନ୍ତୁ ଦଳର ଅନ୍ୟ ସଦସ୍ୟମାନେ ଅଭିଯାନ ଶେଷକରି ଫେରିଯିବା ପରେ ସୁଦ୍ଧା ସେ ସେମାନଙ୍କ ସାଙ୍ଗେ ଫେରିଗଲେନାହିଁ । ଉଦ୍ଦେଶ୍ୟ– ସ୍ଥାନୀୟ ବଣ୍ୟ ଜନ୍ତୁ ଶିକାର କରି ଜନ୍ତୁମାନଙ୍କର ମୂଲ୍ୟବାନ୍ ଚମଡା ଓ ଲୋମ ବ୍ୟବସାୟ କରୁଥିବା ଶିକାରୀ (ଫର୍-ଟ୍ରାପର) ଦଳ ସହିତ ସାମିଲ ହୋଇ ଭାଲୁ ଓ ଅନ୍ୟାନ୍ୟ ଲୋମଶ ପଶୁ ଶିକାର କରିବା ଓ ଲାଭଜନକ ପଶୁଲୋମ ବ୍ୟବସାୟ କରିବା । ୧୮୦୭ ରୁ ୧୮୦୮ ଭିତରେ ୟେଲୋଷ୍ଟୋନ୍ ଇଲାକାରେ ଘୂରିବୁଲିବା ବେଳେ ଏଇ ଶିକାରୀ ଜନ କୋଲ୍‌ଟର୍ ଆବିଷ୍କାର କରିଥିଲେ ଏକ ଭୟଙ୍କର ସ୍ଥାନ । ସେ ଦେଖିଲେ– ସେ ସ୍ଥାନରେ ମାଟିତଳୁ କାଦୁଅ ମିଶା ତରଳ ଗନ୍ଧକ (Sulphur) ପିଚକି ଉଠୁଚି ଓ ମାଟି ଉପରେ ନଦୀ ଭଳି ବୋହି ଚାଲିଚି । ସେଥିରୁ ପୋଡା ଗନ୍ଧକ ଧୂଆଁ (ସଲ୍‌ଫର୍ ଡାଇଅକ୍ସାଇଡ୍ ଗ୍ୟାସ୍) ଓ ଡହଡହ ତତଲା ପାଣିର ଫୁଆରା (ଗେଜର୍ ଓ ହଟ ସ୍ପ୍ରିଙ୍ଗସ୍) ମାନ ବହୁ ଉଚ୍ଚକୁ ପିଚକାରୀ ପରି ଫୁଟି ବାହାରୁଚି ଦେଖି ସେ ଭୟଭୀତ ହେଲେ । ସେଇ ଦୃଶ୍ୟ କୋଲଟରଙ୍କୁ ଖୁବ୍ ପ୍ରଭାବିତ କଲା ।

ତାଙ୍କର ଦୃଢ଼ ଧାରଣା ହେଲା– ଏ ଜାଗାଟା ନିଶ୍ଚେ ସଇତାନର ନିଜ ଘର ! କାରଣ ତାଙ୍କ ଧାର୍ମିକ ବିଶ୍ୱାସ ଅନୁସାରେ ସଇତାନର ବାସସ୍ଥାନ ବା ନରକ ସେଇଠି ଯୋଉଠି ମାଟିତଳୁ ପୋଡା ଗନ୍ଧକର ଦୁର୍ଗନ୍ଧ ବାହାରେ ।

ସେଇ ସମୟରେ ୟେଲୋଷ୍ଟୋନ ଇଲାକାରେ ବାସକରୁଥିବା ଦୁଇଟି ଆଦିବାସୀ ଗୋଷ୍ଠୀ-କ୍ରୋ (Crow) ଏବଂ ବ୍ଲାକ୍‌ଫୁଟଙ୍କ (Blackfoot) ଭିତରେ ଲାଗିଲା ଭୟଙ୍କର ଯୁଦ୍ଧ । କୋଲଟର୍ ସେ ଯୁଦ୍ଧରେ କୌଣସି ଏକ ପକ୍ଷରେ ଯୋଗଦେଇଥିଲେ ଓ ଗୁରୁତର ଭାବେ ଆହତ ହୋଇଥିଲେ । ତେବେ ଦୈବଯୋଗେ ସେ ମରୁମରୁ ବଞ୍ଚି ଯାଇଥିଲେ । ସେଇ ଅବସ୍ଥାରେ ବାଧ ହୋଇ ତାଙ୍କୁ ୟେଲୋଷ୍ଟୋନ୍ ଅଞ୍ଚଳରେ ବହୁ ଦିନ ରହିଯିବାକୁ ପଡ଼ିଲା । ଦୀର୍ଘ ସମୟ ରହଣି କାଳ ଭିତରେ, ୧୮୦୯ରେ ସେ ୟେଲୋଷ୍ଟୋନ୍ ଉପରେ ଏକ ଲେଖା ପ୍ରକାଶ କରିଥିଲେ । ସେଥିରେ ସେ ପ୍ରକାଶ କରିଥିଲେ ଯେ ଆମେରିକାରେ ଏମିତି ଗୋଟାଏ ଜାଗା ରହିଚି ଯୋଉଟା ସଇତାନର ଘର ବ୍ୟତୀତ ଅନ୍ୟ କିଛି ହୋଇ ପାରେନା ' ସେଠି ବଡ଼ବଡ଼ ନର୍କ କୁଣ୍ଡ ସବୁ ରହିଚି ଓ ତା ଭିତରେ ଡହଡହ ହେଇ ନିଆଁ ଜଳୁଚି । ପୁଣି ସେସବୁରୁ ''ଫାୟାର୍ ଆଣ୍ଡ ବ୍ରିମ୍‌ଷ୍ଟୋନ୍'' ଅର୍ଥାତ୍ ନିଆଁ ଓ ଚକିପଥର ବର୍ଷା ହେଉଚି ।

ଏ ଲେଖା ଆମେରିକାର ସଭ୍ୟସମାଜର ବିଶ୍ୱାସଯୋଗ୍ୟ ହେଉ ବା ନହେଉ ବହୁ ବର୍ଷ ପର୍ଯ୍ୟନ୍ତ କୋଲଟରଙ୍କ ଆବିଷ୍କୃତ ସଇତାନର ଘର ବା ୟେଲୋଷ୍ଟୋନ ଅଞ୍ଚଳ ଏକ ଭୟାବହ ସ୍ଥାନ ଭାବେ ଆମେରିକାରେ ପରିଗଣିତ ହେଲା ଓ ଏ ଅଞ୍ଚଳଟି ଗମନାଗମନ ପାଇଁ ବର୍ଜନୀୟ ହୋଇ ବହୁ ବର୍ଷ ରହିଗଲା । ପ୍ରାୟ ପଚାଶ ବର୍ଷ ପରେ, ୧୮୫୬ରେ, ଅନ୍ୟ ଜଣେ ଆମେରିକୀୟ ଗୋରା ଅଧିବାସୀ 'ଜନ ବ୍ରିଜ' ୟେଲୋଷ୍ଟୋନ ଅଞ୍ଚଳ ଉପରେ ଏକ ବିସ୍ତୃତ ରିପୋର୍ଟ ପ୍ରକାଶକଲେ । ସେ ଲେଖିଲେ ସେଇ ଅଞ୍ଚଳରେ ସତରେ ଗୁଡିଏ ଅତ୍ୟନ୍ତ ଅଦ୍ଭୁତ ଉଷ୍ଣପ୍ରସ୍ରବଣ (Geyser) ରହିଚି । ସେଥିରୁ ତରଳ ଗନ୍ଧକ (ସଲଫର୍)ର ଝରଣା ମାନ ଅନବରତ ବୋହିଚାଲିଚି । ଏ ରିପୋର୍ଟକୁ ମଧ ସଭ୍ୟ ଆମେରିକାନ ସମାଜ ଗୁଲିଖଟି ଗପ କହି ଏଡାଇଦେଲା । ଫଳରେ ୟେଲୋଷ୍ଟୋନ ତଥାପି ରହିଲା ଲୋକଲୋଚନର ଅଗୋଚରରେ ।

## ଶେଷରେ ସଇତାନ୍‌ର ଘରକୁ ଆମେରିକାନ୍ କଂଗ୍ରେସ୍ ଦେଲା ସ୍ୱୀକୃତି

ଶେଷରେ ୧୮୭୨ରେ ଆମେରିକାର କଂଗ୍ରେସ ବା ସେ ଦେଶର ସରକାର ଅନେକ ବର୍ଷତଳୁ ଆବିଷ୍କୃତ ''ସଇତାନ୍‌ର ଘର'' ବୋଲାଉଥିବା ୟେଲୋଷ୍ଟୋନ୍ ଅଞ୍ଚଳକୁ ଦେଲା ଅଫିସିଆଲ୍ ସ୍ୱୀକୃତି । ରକି ପର୍ବତମାଳା କୋଳରେ ଥିବା ତିନିତିନିଟା ଆମେରିକାନ୍ ରାଜ୍ୟ– ୟୋମିଂ (Wyoming), ଆଇଡାହୋ (Idaho) ଓ ମଂଟାନା (Montana) ଅନ୍ତର୍ଗତ

ଏକ ବିଶାଳ କ୍ଷେତ୍ରକୁ ଆମେରିକା ସରକାର ସେ ଦେଶର ଜାତୀୟ ଉଦ୍ୟାନ ରୂପେ ଘୋଷଣାକଲା । ଏ ଉଦ୍ୟାନର ସମୁଦାୟ କ୍ଷେତ୍ରଫଳ ହେଉଛି– ୨,୨,୧୯,୭୮୯ (ଦୁଇନିୟୁତ ଦୁଇଲକ୍ଷ ଉଣେଇଶ ହଜାର ସାତଶହ ଅଣାନବେ) ଏକର ! ସେଇ ୧୮୭୨ ମାର୍ଚ୍ଚ ମାସ ଏକ ତାରିଖ ଦିନଠାରୁ ଆମେରିକାର ଏହି ବିଶ୍ୱ-ବିଖ୍ୟାତ ୟେଲୋଷ୍ଟୋନ୍ ଜାତୀୟଉଦ୍ୟାନର ମର୍ଯ୍ୟାଦା ଲାଭ କରି ଆସିଛି ।

ପ୍ରତି ବର୍ଷ ଲକ୍ଷାଧିକ ଭ୍ରମଣକାରୀ ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ୟେଲୋଷ୍ଟୋନ୍ ଜାତୀୟ ଉଦ୍ୟାନ ଭ୍ରମଣରେ ଆସନ୍ତି । ଉଦ୍ୟାନର ରେକର୍ଡ ଅନୁସାରେ ୨୦୦୭ରେ ଅର୍ଥାତ୍ ଆମେ ଏଠାକୁ ଭ୍ରମଣରେ ଆସିବା ପୂର୍ବବର୍ଷ, ୩୧,୫୧,୩୪୪ (ଏକତିରିଶ ଲକ୍ଷ ଏକାବନ ହଜାର ତିନିଶହ ଚଉରାଳିଶ) ପର୍ଯ୍ୟଟକ ଏଠାକୁ ବୁଲି ଆସିଥିଲେ ।

ଏହି ଜାତୀୟ ଉଦ୍ୟାନକୁ ୧୯୭୮ରେ, ଆନ୍ତର୍ଜାତିକ ସ୍ତରରେ, 'ୱାର୍ଲଡ୍ ହେରିଟେଜ୍ ସାଇଟ୍' (World Heritage Site)ର ମର୍ଯ୍ୟାଦା ମିଳିଛି ।

କାଗଜ ଉପରୁ ଆଖି ଉଠେଇ ରାସ୍ତାକୁ ଚାହିଁ ଦେଖିଲି– ଆମ କାର୍ ସେଇମାତ୍ର ୟୁଟାଃ ରାଜ୍ୟର ସୀମା ପାରିହେଇ ପ୍ରବେଶକଲା ପଡ଼ିଶା ଆଇଡାହୋ ରାଜ୍ୟ ସୀମାରେ । ସେତେବେଳେ ସମୟ ସକାଳ ଆଠ– ଆମେ ଘରୁ ବାହାରିବା ପ୍ରାୟ ଅଢେଇଘଣ୍ଟା ବିତିଗଲାଣି ଯା' ଭିତରେ ।

'ଖରାର ତେଜ ଖୁବ୍ ପ୍ରଖର ହୋଇଯାଇଥାଏ । ଅଭିଜିତ କହିଲେ, ''ନନା ! ଏ ଆଇଡାହୋ ରାଜ୍ୟର ନାମ ସହିତ ଜଣେ ସାଇଂଟିଷ୍ଟଙ୍କ ନାମ ଯୋଡ଼ା ହୋଇ ରହିଚି ସାଇଂଟିଫିକ୍ ଲିଟ୍ରେଚର୍‌ରେ । ତାଙ୍କ ନାଁ ଲୁଥର୍ ବର୍‌ବ୍ୟାଙ୍କ୍ (Luther Burbank) । ତାଙ୍କ ସମ୍ମାନାର୍ଥେ ଆମେ ସମସ୍ତେ ଏ ରାଜ୍ୟକୁ ନମସ୍କାର କରିବା ଚାଲନ୍ତୁ ।'' ଆମେ ସମସ୍ତେ ହାତ ଯୋଡି ନମସ୍କାର କଲୁ ବିଶ୍ୱବିଖ୍ୟାତ କିମ୍ବଦନ୍ତୀ ପୁରୁଷ୍ ଉଦ୍ଭିଦ ବିଜ୍ଞାନୀ ଲୁଥର୍ ବର୍‌ବ୍ୟାଙ୍କ୍‌ଙ୍କ ଉଦ୍ଦେଶ୍ୟରେ । ଏଇ ପ୍ରସିଦ୍ଧ ବୈଜ୍ଞାନିକ ସୃଷ୍ଟି କରିଥିଲେ ଜଙ୍ଗଲି ଗୋଲଆଳୁର ବିଶାଳକାୟ ଆଳୁ ଯାହା ବର୍‌ବ୍ୟାଙ୍କ୍ ପଟାଟୋ ନାମରେ ବିଖ୍ୟାତ ଆଉ ସେ ବର୍‌ବ୍ୟାଙ୍କ ପଟାଟୋର ବ୍ୟାପକ ଚାଷ ହୁଏ ଏଇ ରକି ପର୍ବତ ଉପରସ୍ଥ ଉପତ୍ୟକାଞ୍ଚଳ ଆଇଡାହୋ ରାଜ୍ୟର ବହୁଳାଂଚଳରେ । ରାସ୍ତା ପାଖରେ ବହୁତ କୃଷିକ୍ଷେତ୍ରର ଦୃଶ୍ୟ ଦେଖିଦେଖି ଆମେ ଆଗେଇଚାଲିଲୁ ।

ପ୍ରାୟ ଦେଢ଼ଘଣ୍ଟା ଡ୍ରାଇଭିଂ ପରେ ଆମେ ଆଇଡାହୋ ରାଜ୍ୟ ସୀମା ପାରି ହେଇ ପଶିଲୁ ୱୋମିଂରାଜ୍ୟ ଭିତରକୁ । ରାଜ୍ୟସୀମା ଭିତରକୁ ପ୍ରବେଶ କରିବା ପରେ ଲକ୍ଷ୍ୟକଲି ରାସ୍ତା କଡର ଦୃଶ୍ୟପଟ ସମ୍ପୂର୍ଣ୍ଣ ବଦଳିଯାଇଚି । ଆଇଡାହୋର ଆଦିଗନ୍ତ ଖୋଲା ଚାଷଜମି ବଦଳରେ ରାସ୍ତା ଦିକଡେ ବଡବଡ ପାହାଡସବୁ ଉଭା ହେବାକୁ ଲାଗିଲା । ଆମ କାରକୁ ଏଥର ଘାଟି ରାସ୍ତାରେ ଯିବାକୁ ପଡିବ ଜାଣି ଅଭିଜିତ ସାବଧାନ ହେଇ ଗାଡି ଚଳେଇଲେ ।

ଏଥର ଚାଲିଲା ପାହାଡ ଚଢ଼ା । ଆସ୍ତେ ଆସ୍ତେ ଉଠାଣି ବଢ଼ିବଢ଼ି ଚାଲିଲା ।

''ଆମେ ଏଥର ୱୋମିଂର ହାର୍ଟଲ୍ୟାଣ୍ଡ ଭିତରକୁ ଭିତରକୁ ଆଗେଇଚାଲିଛେ,'' ସୂଚନା ଦେବା ସହିତ ଅଭିଜିତ କହିଲେ, ''ୱୋମିଂ ଶବ୍ଦର ଅର୍ଥ ଢେଉଢେଉକା । ଏ ଶବ୍ଦ ଆମେରିକାର 'ଡିଲାୱେୟାର୍' ଉପଜାତିର ଲୋକଙ୍କ ଭାଷାରୁ ଆସିଚି । ଦେଖୁଚନ୍ତି ତ ଏଠାକାର ଭୂଗୋଳ ? ସବୁଆଡେ ଢେଉଢେଉକା ପାହାଡମାଳା । ଆମକୁ ଏଇଠୁ ଆହୁରି ତିନି ଚାରି ହଜାର ଫୁଟ୍ ଉଚ୍ଚତାକୁ ଯିବାକୁ ଅଛି । ୟେଲୋଷ୍ଟୋନ୍ ନ୍ୟାସନାଲ୍ ପାର୍କ ଅଞ୍ଚଳ ଆସିଯିବ ୱୋମିଂ ପୂରା ପାରିନହଉଣୁ । ତେବେ ପ୍ରକୃତରେ ୟେଲୋଷ୍ଟୋନ୍ ପାର୍କର ଅବସ୍ଥିତି କେବଳ ୱୋମିଂ ଭିତରେ ସୀମିତ ନୁହେଁ; ୱୋମିଂ ଓ ତାର ଉତ୍ତର ଦିଗରେ ଥିବା ମଂଟାନା ରାଜ୍ୟର ମିଳିତ ଅଂଶ ଭିତରେ ଏ ବିଶାଳ ପାର୍କଟି ଅବସ୍ଥିତ ।''

## ଆମେ ପହଞ୍ଚିଲୁ ମାଡିସନ୍ ସହରରେ

ଏମିତି ଗପସପ ଭିତରେ ଆମ କାର୍ ପଶିଲା ଗୋଟାଏ ଛୋଟ ସହର ଭିତରକୁ । ସହରଟା ନାଁ ମାଡିସନ୍ । ସେ ସହର ଭିତରେ ଅଧିକାଂଶ ଘର ଛୋଟଛୋଟ ଓ ଏକ ମହଲିଆ । ଦୋକାନ ବଜାର ଥାଏ, ତେବେ ବଡବଡ ନୁହେଁ । ଅଭିଜିତ କହିଲେ, ''ଏ ଅଞ୍ଚଳରେ ଭୂମିକମ୍ପ ହେବାର ସମ୍ଭାବନା ଥାଏ ବହୁତ । ସାରା ୟେଲୋଷ୍ଟୋନ୍ କ୍ଷେତ୍ରଟା ଅତୀତରେ ଥିଲା ଏକ ସକ୍ରିୟ ଆଗ୍ନେୟଗିରି ଅଞ୍ଚଳ । ସେଠି ଭୂମିକମ୍ପ ଲାଗିରହିଥିଲା । ଏବେ ବି ଯେ କୌଣସି ସମୟରେ ଭୂମିକମ୍ପ ହେଇଯାଇପାରେ– ତେଣୁ ଏ ସହରରେ ବଡବଡ କୋଠାବାଡ଼ି ନାହିଁ । ତା'ଛଡ଼ା ଶୀତଦିନେ ଏ ଅଞ୍ଚଳରେ ପ୍ରବଳ ବରଫ ପଡେ । ବର୍ଷର ଛ ମାସ ଏ ପାର୍କ ବନ୍ଦ । ଟୁରିଷ୍ଟ ଆସନ୍ତି ନାହିଁ; ତେଣୁ ଦୋକାନ ବଜାର ବି ବନ୍ଦରହେ । ସେଇ କାରଣରୁ ଏଠି ଘରଦ୍ୱାର ବେଶୀ ନାହିଁ କି ବେଶୀ ଲୋକ ଏ ଜାଗାମାନଙ୍କରେ ରହିବାକୁ ପସନ୍ଦ କରନ୍ତି ନାଇଁ ।''

ରାସ୍ତାକଡର ଗୋଟାଏ ଦୋକାନ ଉପରେ ଆଖି ପଡ଼ିଗଲା । ଦେଖିଲି, ଦୋକାନ ସାମନାରେ ଏକ ବିଶାଳ ପ୍ରାଗୈତିହାସିକ ଭୟଙ୍କର ପ୍ରାଣୀର ମୂର୍ତ୍ତି ରଖାଯାଇଛି । ବୋଧହୁଏ ଏଇ ସେଇ ଜନ୍ତୁ 'ବାଇସନ୍' (Bison) ଯାହାର ଛବି ଦେଖିବାକୁମିଳେ ୟେଲୋଷ୍ଟନ୍ ପାର୍କ ସମ୍ପର୍କରେ ପ୍ରକାଶିତ ବିଭିନ୍ନ ପତ୍ରପତ୍ରିକାରେ ।

ବାଇସନ୍ ନାଁ ଶୁଣି ଢୁଳେଇପଡିଥିବା ନାତୁଣୀ ଦୁହେଁ ଚେଙ୍ଗା ହେଇ ଉଠିଲେ । ''କାହିଁ କାହିଁ ବାଇସନ୍ କାହିଁ ?'' ସେମାନେ କାର୍‌ର ଝରକା କାଚ ସେପାଖକୁ ଚାହିଁ ଅନୁସନ୍ଧାନ କଲେ । ପରେପରେ ଏକା ବେଳକେ ପାଟି କରି ଉଠିଲେ, ''ବାଇସନ୍ ! ବାଇସନ୍ !'' କିନ୍ତୁ ସେମାନେ ଭାବିଥିଲେ ବୋଧହୁଏ ସେଟା ଗୋଟାଏ ଜୀଅନ୍ତା ବାଇସନ୍ ! ଭୟରେ

କିଛି ସମୟ ଝାକଜୁକି ହେଇ ବସିବା ପରେ ଜାଣିଲେ ସେଟା ଜୀଅନ୍ତା ନୁହେଁ– ପଥର ମୂର୍ତ୍ତିଟାଏ କେବଳ । ଭୟ ଛାଡ଼ିଗଲା ପରେ ସାଙ୍ଗେ ସାଙ୍ଗେ ଚେଙ୍ଗା ହେଇଉଠିଲେ ଆଉ ଏକାସାଙ୍ଗେ ଚିତ୍କାର କଲେ, "ବାବା ! ବାବା ! କାର୍ ଅଟକାଅ ପ୍ଲିଜ.."

ଅଭିଜିତ କାର୍ ଅଟକେଇଲେ । ପିଲାମାନେ ଖପ୍‌ଖାପ୍ ଡେଇଁଲେ ପଦାକୁ । ଆଖି-ପୂରେଇ ସେଇ ଭୟଙ୍କର ଜନ୍ତୁଟାର ପ୍ରତିମୂର୍ତ୍ତି ଚାରିପାଖେ ବୁଲିବୁଲି ତଦାରଖ କଲେ କିଛି ସମୟ । କିନ୍ତୁ ତଥାପି ସେମାନଙ୍କ ମନରୁ ଭୟ ଛାଡୁନଥାଏ । ବାଇସନ୍‌ଟା ଦେଖିବାକୁ କଦାକାର ଆଉ ଦିଶୁଥାଏ ଭାରି ମାରଣା । ଅନେକଟା ବଣମଇଁଷି ପରି ଚେହେରାର ସେ ଜନ୍ତୁଟା କିନ୍ତୁ ସାଧାରଣ ବଣୁଆ ମଇଁଷି ନୁହେଁ । ତାର ଗୋଡ ଚାରିଟା ଛୋଟଛୋଟ ମୁଦ୍ଗର ଆକୃତିର, ମୋଟାମୋଟା କାଠଖମ୍ବ ଭଳି । ସିଙ୍ଗ ଯୋଡାକ ବୃହତ୍ ଓ ଭୟଙ୍କର । ତା' ସାଙ୍ଗକୁ ଜନ୍ତୁର କଟମଟ ଆଖି ଆଉ ଲମ୍ବା ମୁହଁ ଯୋଗୁ ଦିଶୁଥାଏ ଦୁର୍ଗାପୂଜା ମଣ୍ଡପରେ ଦେବୀ ଦୁର୍ଗାଙ୍କ ସାଙ୍ଗେ ଯୁଦ୍ଧକରୁଥିବା ପୌରାଣିକ ଅସୁର ମହୀଷାସୁରର ମୁହଁ ପରି । ପୁଣି ଥୋଡି ତଳକୁ ତାର ଓହଳିଥାଏ ଲମ୍ବା ଲମ୍ବା ଗୋଛାଏ ଦାଢି ! ଦାଢିର ଲମ୍ବ ମଧ୍ୟ କିଛି କମ୍ ନୁହଁ; ଲମ୍ବିଯାଇଥାଏ ମୁହଁ ତଳକୁ ସିଧା ମାଟି ପର୍ଯ୍ୟନ୍ତ ! ଏଭଳି ଜନ୍ତୁ କି ସାଂଘାତିକ ନହେଇଥିବ ଜୀଅନ୍ତାରେ ! ସବୁଠୁ ବେଶି ଭୟଙ୍କର ଦିଶୁଥାଏ ତା' ନାକପୁଡା ଦିଇଟା ! ବଡବଡ ଗାତ ଦୁଇଟା ଭିତରୁ ସତେ ଯେମିତି ଅଗ୍ନିଶିଖା ଛିଟକି ପଡୁଥାଏ ତାର ପ୍ରତିଟି ନିଶ୍ୱାସରେ !"

ଅଙ୍କିତା ଆନୁ ଦୁଇ ଭଉଣୀ ଭରସି କରି ପାଖ ପଶୁ ନଥାନ୍ତି ସେ ମୂର୍ତ୍ତିଟାର । ମୁଁ ସେମାନଙ୍କ ମନରୁ ଡର ଛଡେଇବାକୁ କହିଲି, "ତା ପିଠିରେ ବସ– ମୁଁ ତମର ଫଟୋ ଉଠେଇବି !" ଡରିଡରିକା ବଡଭଉଣୀ ଅଙ୍କିତା ସେଇ ବାଇସନ ମୂର୍ତ୍ତି ଆଡକୁ ଟିକେ ଆଗେଇବା ପରେ ସାନ ଆନୁର ସାହସ ଟିକେ ବଢିଲା । ସେ ବି ଏଥର ସାହସ କରି ବାଇସନ୍ ମୂର୍ତ୍ତି ଦେହରେ ହାତମାରିଲା । ଖାଲି ସେତିକି ନୁହେଁ, ବାଇସନର ଦାଢ଼ିକୁ ଆଙ୍ଗୁଠି ଟିପରେ ଛୁଇଁ ଟିକେ ପରୀକ୍ଷା ବି କଲା । ତା ଦେହ ଶିରଶିରେଇ ଉଠୁଥାଏ; କିନ୍ତୁ ଲକ୍ଷ୍ୟ କଲି ସେଇ ପ୍ରାଗୈତିହାସିକ ପ୍ରାଣୀଟି ପ୍ରତି ଶିଶୁଟିର ପ୍ରଗାଢ଼ କୌତୂହଳକୁ । ପିଲାମାନେ କାହିଁକି ଜୀବଜନ୍ତୁ, ବିଶେଷତଃ ବିଚିତ୍ର ବିରାଟ ମାରାତ୍ମକ ପ୍ରାଣୀମାନଙ୍କ ବିଷୟରେ ଗଳ୍ପ ଶୁଣିବାକୁ ଏକାନ୍ତ ଆଗ୍ରହ ପ୍ରକାଶ କରନ୍ତି ସେଇ ମନସ୍ତତ୍ୱର ନମୁନା ଲକ୍ଷ୍ୟ କରୁଥାଏ ମୁଁ ।

ଅଭିଜିତ୍ ଆମକୁ ସେଇଠି ଛାଡ଼ିଦେଇ କୁଆଡେ ଟିକେ ବାହାରିଗଲେ ଓ ଅଳ୍ପ ସମୟ ପରେ ଫେରିଆସିଲେ । କହିଲେ, "ହୋଟେଲ୍‌ରେ ରୁମ ରିଜର୍ଭେସନ୍ ହେଇସାରିଚି । ଯା'ପରେ ଚାଲନ୍ତୁ ଯିବା ସିଧା ୟେଲୋଷ୍ଟୋନ୍ ପାର୍କକୁ । ପାର୍କଟା ଏଠୁ ବେଶ୍ ଦୂର ।

ଆମର ଆଜିର ପ୍ରୋଗ୍ରାମ୍ ହେଲା ଆଜି ସାରାଦିନ ପାର୍କରେ ବୁଲିବା । ଏଠି ଅସଂଖ୍ୟ ଦର୍ଶନୀୟ ସ୍ଥାନ ଅଛି ଆଜି ଦିନସାରା ବୁଲି ଦେଖିବାକୁ । କିନ୍ତୁ ଏ ପାର୍କକୁ ଆପଣ ଦିନକରେ ବୁଲି ବିଶେଷ କିଛି ଦେଖି ପାରିବେ ନାହିଁ– ସପ୍ତାହେ ବୁଲିଲେ ବି ସବୁ ଜାଗା ଦେଖି ହେବନାହିଁ । ସେଇ ପାର୍କ ଭିତରେ ଲଞ୍ଚ୍ ଖାଇନେବା । ସନ୍ଧ୍ୟାକୁ ଫେରି ଆସିବା ଏଇଠିକି– ମାଡିସନ୍ ଟାଉନ୍‌କୁ । ହୋଟେଲ୍‌ରେ ରାତି ରହଣି । କାଲି ସମୟ ହେଲେ ପୁଣି ବୁଲିଯିବା ୟେଲୋଷ୍ଟୋନ୍ ପାର୍କ ଭିତରର ଅନ୍ୟ କିଛି ଦର୍ଶନୀୟ ସ୍ଥାନ ବୁଲି ଦେଖିବାକୁ ।''

ଏହାପରେ ଆମେ ବସିଲୁ କାର୍‌ରେ । ମାଡିସନ୍ ସହର ବାହାରକୁ କିଛି ଦୂର ଯିବା- ଭିତରେ ରାସ୍ତା ଦୁଇ ପାଖର ପ୍ରାକୃତିକ ଦୃଶ୍ୟ ଭିତରେ କିଛି ଅସ୍ୱାଭାବିକ ଦୃଶ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ଦେଖିଲି ରାସ୍ତାଠାରୁ ଦୂରକୁ ଦୂରକୁ ବ୍ୟାପିଥିବା ପ୍ରାକୃତିକ ପାଇନ୍ ଅରଣ୍ୟ ଭିତରେ ବହୁ ସ୍ଥାନରେ ଠିଆହୋଇରହିଥାଏ ଗୁଡାଏ ଦରପୋଡା ପାଇନ ବୃକ୍ଷର ଥୁଂଟା । ସେଇ ଦରପୋଡା ଥୁଂଟା ଗୁଡ଼ିକ ଦିଶୁଥାଏ ଗାଁମାନଙ୍କରେ ଘରପୋଡିର ପରବର୍ତ୍ତୀ ସମୟର ଦୃଶ୍ୟପରି ହତଶ୍ରୀ । ମନେପଡ଼ିଲା– ଏ ପାର୍କରେ ଗତବର୍ଷ ନିଆଁ ଲାଗି ବହୁତ କ୍ଷୟକ୍ଷତିର ସଚିତ୍ର ସମ୍ବାଦ ପ୍ରକାଶ ପାଇଥିଲା ଗଣମାଧ୍ୟମରେ । ପାର୍କ ଭିତରକୁ ପ୍ରବେଶ ନକରୁଣୁ ଆଖି ଆଗରେ ଦରପୋଡା ପାଇନ ବଣର ସେଇ ଅଲକ୍ଷଣା ଦୃଶ୍ୟ ଆମ ସମସ୍ତଙ୍କୁ ବିଶେଷ ଭାବେ ମର୍ମାହତ କଲା ।

କିଛି ବାଟ ଡ୍ରାଇଭ୍ କଲା ପରେ ଆସିଲା ଏକ ଚେକଗେଟ୍ ଯେଉଁଠି ଅଟକିଲା ଆମ କାର୍ । ଅଭିଜିତ କହିଲେ, ''ଏଇଠି ସିକ୍ୟୁରିଟି ଚେକିଂ ହେବ– ତା ପରେ ପାର୍କ ଭିତରକୁ ପ୍ରବେଶ ପାଇଁ ଟିକେଟ ଖର୍ଦ୍ଦିର ଅନୁମତି ମିଳେ'' । ଦେଖିଲି– ଆମ ଆଗରୁ ଆସିଥିବା ଶତାଧିକ ଯାନବାହନର ସିକ୍ୟୁରିଟି ଯାଞ୍ଚ ଚାଲିଥାଏ । ଆମ ଗାଡିର ସିକ୍ୟୁରିଟି ଯାଞ୍ଚ ପାଇଁ କିଛି ସମୟ ଅପେକ୍ଷା କରିବାକୁ ହେବ । କାର୍‌ରୁ ଓହ୍ଲାଇ ମୁଁ ବାହାରେ ବୁଲାବୁଲି ଭିତରେ ଚାରିଆଡକୁ ଦୃଷ୍ଟି ପକେଇଲି । ଜାଣିବାକୁ ମିଳିଲା ସେଇ ସ୍ଥାନଟି ହେଲା ୟେଲୋଷ୍ଟୋନ୍ ପାର୍କର ପଶ୍ଚିମ ପାଖର ମୁଖ୍ୟ ପ୍ରବେଶ ଦ୍ୱାର– ''ୱେଷ୍ଟ୍ ଏଂଟ୍ରାନ୍ସ'' । ଏ ପାର୍କର ଅନେକ ଗୁଡ଼ିଏ ପ୍ରବେଶ ଦ୍ୱାର ରହିଚି । ଆମ ପରି ୟୁଟାଃ ଆଇଡାହୋ ୟୋମିଂ ଭଳି ଦକ୍ଷିଣର ରାଜ୍ୟମାନଙ୍କରୁ ଆସୁଥିବା ଭ୍ରମଣକାରୀମାନଙ୍କ ପାଇଁ ଏଇ ୟୋମିଂ ରାଜ୍ୟରେ ଅବସ୍ଥିତ ପଶ୍ଚିମ ଦ୍ୱାରବାଟେ ପାର୍କ ଭିତରକୁ ପ୍ରବେଶ କରିଥାନ୍ତି । ଉତ୍ତର ଦିଗରୁ ଆସୁଥିବା ଭିଜିଟରମାନେ ସାଧାରଣତଃ ଉତ୍ତର ପାଖର ଗେଟ୍ ଦେଇ ପାର୍କଭିତରକୁ ପ୍ରବେଶ କରିବା ସୁବିଧାଜନକ । ସେଇ ଗେଟ୍‌ର ଅବସ୍ଥିତି ମଂଟାନା ରାଜ୍ୟରେ ।

ପ୍ରାୟ ଅଧଘଣ୍ଟାଏ ସମୟ ଅପେକ୍ଷା ପରେ ଚେକିଂ ଓ ଟିକେଟ୍ କିଣା ସରିଲା । ଏଥର ଆମକୁ ଅନୁମତି ମିଳିଲା ପାର୍କ ଭିତରକୁ କାର୍ ନେଇ ପ୍ରବେଶ ପାଇଁ ।

## ୟେଲୋଷ୍ଟୋନ୍ ଜାତୀୟ-ଉଦ୍ୟାନର ଆଭ୍ୟନ୍ତରୀଣ ଚିତ୍ର

ଚେକ୍‌ଗେଟ୍ ପାରିହୋଇ ପାର୍କ ଭିତରକୁ ଯାଇଥିବା ଏକ ଦୁଇପାଖିଆ (Two way) ରାସ୍ତାରେ କିଛି ବାଟ ଆଗକୁ ଯିବା ଭିତରେ ଆମକୁ ପ୍ରଥମେ ଏକ ମନୋରମ ପାହାଡ଼ୀ ନଦୀର ସେତୁ ଅତିକ୍ରମ କରିବାକୁ ହେଲା । ଶରତ ଋତୁର ସୁନୀଳ ଆକାଶ ତଳେ ପ୍ରବାହିତ ସେ ପାହାଡ଼ୀ ନଦୀର ଜଳଧାର ଦିଶୁଥାଏ ଅଦ୍ଭୁତ । ଅସ୍ୱାଭାବିକ ଭାବେ ଘନନୀଳ ନଦୀର ରଙ୍ଗ ଦେଖି ମନେହେଲା– ଏ ଜଳ ସାଧାରଣ ନଦୀ ବା କୌଣସି ପାହାଡ଼ୀ ଝରଣାର ଜଳ ନୁହେଁ ! ଏହାର ଅସଲ ତଥ୍ୟ ପରବର୍ତ୍ତୀ ସମୟରେ ଯାଇ ଜଣାପଡ଼ିଲା । ତେବେ ସାଧାରଣ ଦୃଷ୍ଟିରେ ନଦୀର ସ୍ୱଚ୍ଛ ନୀଳ ଜଳରାଶିକୁ ଦେଖି ଯେ କେହି ଭାବାଲୁ ଦର୍ଶକ ମନେକରନ୍ତା ସତେକି ପାହାଡ ଉପରେ ଅବସ୍ଥିତ କୌଣସି ଏକ ପ୍ରକାଣ୍ଡ ଦୁଆତରୁ ସେଇ ଘନନୀଳ ବର୍ଣ୍ଣର ସ୍ୟାହି ବୋହି ଆସୁଚି ପାହାଡ ତଳର ଏଇ ବିସ୍ତୀର୍ଣ୍ଣ ସବୁଜ ତୃଣଭୂମି ଉପରକୁ ଏକ ମନୋରମ ନଦୀ ରୂପରେ ! ପୁଣି ସେଇ ସ୍ୟାହି-ନଦୀର ଦୁଇ ପାଖର ପଠା ଉପରେ ସୁନେଲି ସୂର୍ଯ୍ୟ କିରଣରେ ଉଦ୍ଭାସିତ ସବୁଜ ଘାସର ପ୍ରାନ୍ତର ମାନ ଦିଶୁଥାଏ ମାଇଲ୍‌ମାଇଲ୍ ବ୍ୟାପୀ ବିଛାଇଦିଆଯାଇଥିବା ଏକ ସ୍ୱର୍ଣ୍ଣ-ସବୁଜ ରଙ୍ଗର ବହୁମୂଲ୍ୟ ଗାଲିଚା ପରି ଅଭିଜାତ ଏବଂ ଐଶ୍ୱର୍ଯ୍ୟମୟ ।

''ଆଃ କି ସ୍ୱର୍ଗୀୟ ! ଏଇଟା କେଉଁ ନଈ ?''

''ଏ ନଦୀର ନାମ ମାଡିସନ୍ (Madison river)''– ହାତରେ ମ୍ୟାପ୍ ନେଇ ପଛସିଟ୍‌ରେ ବସିଥାଏ ଝିଅ ଜୁଲି– ସେଇ ମୋ ପ୍ରଶ୍ନର ଉତ୍ତର ଦେଲା, ''ଏ ନଦୀ ଜଳର ଏଭଳି ଅସ୍ୱାଭିକ ନୀଳରଙ୍ଗର କାରଣ ହେଲା– ଏଠାକାର ସବୁ ନଦୀର ଉତ୍ସ ହେଲା କୌଣସି ନା କୌଣସି Geyser (ଉଷ୍ଣପ୍ରସ୍ରବଣ) । ୟେଲୋଷ୍ଟନ୍ ପାର୍କରେ ଅଛି ଅସଂଖ୍ୟ ଗୈଜର୍ । ଚାଲ ଦେଖିବା . . .''

ଏଥର ବୁଝାପଡ଼ିଲା ୟେଲୋଷ୍ଟୋନ୍ ପାର୍କ ଅଞ୍ଚଳରେ ଆମର ସ୍ଥିତି । ଆମକୁ ବର୍ତ୍ତମାନ ଏଇ ''ମ୍ୟାଡିସନ୍ ରିଭର୍'' କଡେକଡେ ଏକ ଲମ୍ବା ରାସ୍ତା ଅତିକ୍ରମ କରିବାକୁ ହେବ ପାର୍କର ଆଭ୍ୟନ୍ତରୀଣ ଅଞ୍ଚଳ ସବୁ ଦେଖିବାକୁ ।

କିଛି ବାଟ ଗଲା ପରେ ଅଭିଜିତ୍ କହିଲେ, ''ଆଗରେ ଆମକୁ ଡାହାଣ ପଟ ରାସ୍ତା ଧରିବାକୁ ପଡ଼ିବ । ସେପାଖେ ରହିଛି ଅନ୍ୟ ଗୋଟିଏ ପାହାଡ଼ୀ ନଦୀ– 'ଫାୟାର୍ ହୋଲ୍' (Fire Hole) ନଦୀ । ଏଇଲେ ଆମର ପ୍ରଧାନ ଗନ୍ତବ୍ୟ ସ୍ଥଳ ହେଲା ଏଇ ନଈ କୂଳେକୂଳେ ପ୍ରାୟ ପଚାଶ ଷାଠିଏ ମାଇଲ ଡ୍ରାଇଭ ପରେ ପହଞ୍ଚିବା ଯାଇ ଆମର ଆଜିର ମୁଖ୍ୟ ଦର୍ଶନୀୟ ସ୍ଥାନ ''ଦ' ଓଲଡ୍ ଫେଥ୍‌ଫୁଲ୍ ଗୈଜର'' (The Old Faithful Geyser) ପାଖରେ । ଆପଣମାନେ ଅବାକ୍ ହେବେ ଆଜି ପୃଥିବୀର ସେଇ ଅଦ୍ୱିତୀୟ

ବିସ୍ମୟକୁ ନିଜ ଆଖିରେ ଦେଖି । ଏ ଜାଗାକୁ ମୁଁ ଏହା ପୂର୍ବରୁ କେତେଥର ଆସିଚି- ତଥାପି ଏହାର ବିସ୍ମୟକୁ ମୁଁ ସମ୍ପୂର୍ଣ୍ଣ ଭାବେ ଜାଣିପାରିଛି ବୋଲି କହି ପାରିବି ନାହିଁ ।''

ଓଲଡ୍ ଫେଥ୍‌ଫୁଲ୍ ନାଁ ଶୁଣି ନାତୁଣୀ ଦୁହେଁ ହସିହସି ଗଡିଲେ । ଆନୁ ପଚାରିଲା, ''ବାବା ! ଓଲଡ୍ ଫେଥ୍‌ଫୁଲ୍ କ'ଣ ଗୋଟାଏ କୁକୁର ?''

''ନା ନା– ଏ ଏକ ବିଚିତ୍ର ଧରଣର ଗେିଜର । ଶହଶହ ବର୍ଷ ଧରି ବୈଜ୍ଞାନିକମାନେ ଲକ୍ଷ୍ୟ କରି ଆସୁଚନ୍ତି ଏଇ ଗେିଜରର ସମୟ ସଚେତନତା (ଟାଇମିଂ ସେନ୍ସ) । ସେଇ କାରଣରୁ ଯା ନାଁ ଦିଆଯାଇଚି ''ଦ' ଓଲଡ୍ ଫେଥ୍‌ଫୁଲ୍''. . .

ହଠାତ୍ ଆମ ସାମ୍ନାରେ ଚାଲିଥିବା ଧାଡ଼ିଏ ଗାଡି ଅଟକିଗଲା । ଆମ ଗାଡ଼ି ବି ଅଟକିଲା । ଆମ ଆଗ କାର୍‌ର ଡ୍ରାଇଭର୍ ଉଇଣ୍ଡୋ ବାହାରକୁ ବେକ ଲମ୍ବେଇ ଆମକୁ ଇସାରା ଦେଲା– ରାସ୍ତାକଡ ବଣ ଆଡକୁ ନିଘା ପକେଇବାକୁ ।

ଆମେ କାର୍ ଝରକା କାଚ ଖସେଇଦେଇ ବାହାରକୁ ଚାହିଁଲୁ । ସେତେବେଳକୁ ଦଳେ ଅରଣା ମଇଁଷି (ବାଇସନ୍) ରାସ୍ତା କଡର ଅନାବନା ବଣୁଆ ଘାସ ଓ ପାଇନ୍ ଜଙ୍ଗଲ ଆଢୁଆଳରୁ ପଦାକୁ ବାହାରି ଆସିଥାନ୍ତି ଖୋଲା ଜାଗାକୁ । ଆଖି ଆଗରେ ସେଇ ପ୍ରାଗୈ-ଐତିହାସିକ ଭୟଙ୍କର ପ୍ରାଣୀ ବାଇସନ ଦଳଟା ଠିଆହେଇଥିବା ଦେଖି ସେମାନଙ୍କର ଫଟୋ ଉଠେଇବା ପାଇଁ ୟେଲୋଷ୍ଟୋନ ଭ୍ରମଣରେ ଆସିଥିବା କେଉଁ ଦର୍ଶକ ପ୍ରଲୋଭିତ ନହେବ ? କାରଣ ଏଇ ବିରଳ ଜନ୍ତୁ ହିଁ ତ ୟେଲୋଷ୍ଟୋନ ପାର୍କର ଅନ୍ୟତମ ବିଶେଷ ଆକର୍ଷଣ । ଦଳଦଳ ଟୁରିଷ୍ଟ ନିଜନିଜ କାର୍‌ରୁ ବାହାରିପଡି ଫଟୋ ଉଠେଇବାରେ ଲାଗିଗଲେ ।

ଅଭିଜିତ୍ କାର୍‌ଟାକୁ ରାସ୍ତାର ଗୋଟାଏ କଡ଼ପଟିଆ ନିରାପଦ ଜାଗାକୁ ନେଇଗଲେ ଓ ପାର୍କିଂ କଲେ । ଏଇ ଭିତରେ ପିଲା ଦୁଇଟି ଆମର ଅଲକ୍ଷ୍ୟରେ କେତେବେଳେ କାର୍ ବାହାରକୁ କୁଦିପଡ଼ି ବାଇସନ୍ ଦଳଟାକୁ ଖୁବ୍ ପାଖରୁ ଦେଖିବା ମତ୍‌ଲବରେ ଚାଲିଯାଇଥାନ୍ତି ରାସ୍ତା ସେପାଖକୁ । ତାଙ୍କ-ସାଙ୍ଗରେ ମିଶିଯାଇଛନ୍ତି ଆହୁରି ଦଳେ ପିଲା– ବିଦେଶୀ ଟୁରିଷ୍ଟଙ୍କର ପୁଅ ଝିଅ ।

ବାଇସନ୍‌ମାନେ ଆହୁରି କିଛି ସମୟ ପର୍ଯ୍ୟନ୍ତ ଧୈର୍ଯ୍ୟଧରି ଆମକୁ ଦିବ୍ୟ ଦର୍ଶନ ଦେଇଥାନ୍ତେ, କିନ୍ତୁ ସେମାନଙ୍କ ଆଖି ସାମ୍ନାରେ ହୋହୋ ହେଇ ପାଟିତୁଣ୍ଡରେ ପ୍ରମତ୍ତ ମଣିଷଙ୍କ ହାତରେ ଘନଘନ ଫ୍ଲାସ୍ କରୁଥିବା ଶହଶହ କ୍ୟାମେରା ଗୁଡାକ ଯୋଗୁ ସମ୍ଭବତଃ ଜନ୍ତୁମାନେ ହୁରୁଡିଗଲେ । ସେମାନଙ୍କ ଦଳପତି ବର୍ତ୍ତମାନ କେଇ ପାଦ ଆଗେଇ ଆସିଲା । ପରେପରେ ଆଡି ପତେଇବା ଦେଖି ଟୁରିଷ୍ଟଦଳ ଭିତରେ ଆତଙ୍କ ଖେଳିଗଲା । କାର୍ ବାହାରେ ରହିଯାଇଥିବା ସମସ୍ତେ ନିରାପତ୍ତା ଦୃଷ୍ଟିରୁ ନିଜନିଜ କାର୍‌ଭିତରକୁ ଧାଇଁ ପଳେଇ ଆସିଲେ ।

ଆନୁ ଅଙ୍କିତା ଭଉଣୀ ଦୁହେଁ ଗଲେ କୁଆଡେ ବୋଲି ଖୋଜିଲା ବେଳକୁ ଦେଖାଗଲା

ପିଲା ଦୁଇଟା ତଥାପି କାଠ ଭଳି ଠିଆହେଇଚନ୍ତି ରାସ୍ତା କଡରେ । ସେମାନଙ୍କୁ କାର୍ ଭିତରକୁ ଭିଡି ଆଣିଲେ ଜୁଲି ଅଭିଜିତ । ପିଲାଙ୍କ ଦୁଃସାହସିକତାକୁ ତାରିଫ୍ କରିବା ବଦଳରେ ତାଗିଦ୍ କରିବା ପାଇଁ କିଛି ସମୟ ବିତିଗଲା ଆମର । ଏହା ପରେ ଆମ ସାମ୍ନାରେ ରାସ୍ତା ଅବରୋଧ କରିଥିବା ଟ୍ରାଫିକର ସ୍ରୁଅ ଆଗକୁ ଛୁଟିବା ଆରମ୍ଭ ହେଲା । ଆମ କାର୍ ବି ସେମାନଙ୍କ ପଛେପଛେ ଆଗେଇଲା ପାର୍କ ଅଭ୍ୟନ୍ତରକୁ ଯାଇଥିବା ଏକ ସରୁ ପାହାଡ଼ୀ ରାସ୍ତାରେ ।

କିଛି ପଥ ଅତିକ୍ରମ ପରେ ମୁଁ ଲକ୍ଷ୍ୟ କଲି ଆମ ରାସ୍ତାର ବାମ ପାଖରେ ଅନ୍ୟଏକ ନଦୀ ପ୍ରବାହିତ ହେଉଛି । ପୂର୍ବର ମାଡିସନ୍ ନଦୀ ପରି ଏହା ମଧ୍ୟ ସେମିତି ଗାଢ଼ ନୀଳ ଜଳରେ ଭରପୂର । ''ଏଇ ଆସିଗଲା ଫାୟାରହୋଲ୍ ରିଭର୍'', ଅଭିଜିତ୍ କାର୍‌ର ଗତି ଧୀମେଇ ଆଣି କହିଲେ, ''ଏ ଜାଗାର ପ୍ରାକୃତିକ ଦୃଶ୍ୟ ଅତୁଳନୀୟ । ଆପଣ ଏଠାକାର ଫଟୋଗ୍ରାଫିକ୍ ଛବି ନ୍ୟାସନାଲ୍ ଜିଓଗ୍ରାଫିକ୍ ମ୍ୟାଗାଜିନ୍‌ରେ ହୁଏତ ଦେଖିଥିବେ, ନନା ।''

ରାସ୍ତା କଡ଼ର ସୁନ୍ଦର ଦୃଶ୍ୟ ଓ ନଈ ପାଣିର ସ୍ୱଚ୍ଛ ନୀଳ ରଙ୍ଗ ଦେଖି ଜୁଲି କହିଲା, ''ସେ ଭୟଙ୍କର ବାଇସନଟାର ଆଡି ପଡେଇ ଆମ ଆଡକୁ ଅନେଇବା ଦୃଶ୍ୟଟା ଆଖିରୁ ଯାଉନାଇଁ ମୋର । ଗାଡି ରଖ । ମୁଁ ଟିକେ ବସି ଦମ୍ ମାରେ ଏ ନଈ କୂଳେ ।''

ଗାଡି ଅଟକି ରହିଲା ରାସ୍ତା କଡରେ । ସମସ୍ତେ ଓହ୍ଲେଇଲୁ । ଆଈ କିନ୍ତୁ ତାଙ୍କ ଜୀବଧନ ଆନୁ ଅଙ୍କିତାଙ୍କୁ ଜାବୁଡ଼ି ଧରିଥାନ୍ତି ଛାତିରେ । ତାଙ୍କର ଡର କାଳେ ପିଲା ଦୁହେଁ ପୁଣି କରିବସିବେ କିଛି କାଣ୍ଡ ! କାଳେ ପଶିଯିବେ ନଈ ପାଣିକୁ !

## ନଦୀରେ ବନ୍‌ସୀ ପକାଅ– କିନ୍ତୁ ମାଛ ମାରିଲେ ଜେଲଦଣ୍ଡ

ପିଲାମାନଙ୍କୁ ଜଗିରଖି ଆମେ ଗାଡ଼ିରୁ ଓହ୍ଲେଇଲୁ । ଜାଗାଟାର ଚାରିପାଖର ଦୃଶ୍ୟ ଅବର୍ଣ୍ଣନୀୟ ଭାବେ ସୁନ୍ଦର । ରାସ୍ତାର ଗୋଟାଏ କଡେ ଏକ ଦୁର୍ଗର କାନ୍ଥପରି ଠିଆ-ହେଇଥାଏ ଉଚ୍ଚ ପର୍ବତମାଳା । ଏ ପର୍ବତର ଚେହେରା କିନ୍ତୁ ଆମେ ଭାରତରେ ବା ଆମେରିକାରେ ଦେଖିଥିବା କୌଣସି ସ୍ଥାନର ପର୍ବତ ପରି ନୁହେଁ । ସତେବା ଆମେ ସମ୍ପୂର୍ଣ୍ଣ ଭିନ୍ନ କୌଣସି ଏକ ଜଗତରେ ଆସି ପହଞ୍ଚିସାରିଚୁ– ସେଇଭଳି ଅନୁଭବ ହେବାକୁ ଆରମ୍ଭ ହେଲା ମୋର ।

ଅଭିଜିତ୍ କହୁଥାନ୍ତି ସେ ପର୍ବତମାନଙ୍କର ଭୂତତ୍ତ୍ୱ ଯୁଗର ଇତିହାସ । ''ସେ ଯୁଗକୁ କହନ୍ତି ପ୍ଲିଷ୍ଟୋସନ୍. . . କେତେ ବିଲିୟନ୍ ବର୍ଷ ତଳେ ଏ ପର୍ବତମାନଙ୍କର ସୃଷ୍ଟି ।''

ଏଇ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବାରେ ମଜ୍ଜି ଥିବା ସମୟରେ ଦୁଇ ଭଉଣୀ ଅଙ୍କିତା ଓ ଆନୁ କେତେବେଳେ ଆମ ପାଖରୁ ଖସି ପଳାଇଯାଇଥାନ୍ତି ରାସ୍ତା କଡକୁ ଲାଗି କୁଳୁକୁଳୁ ହେଇ ବୋହିଯାଉଥିବା ସେଇ ଫାୟାର୍ ହୋଲ୍ ନଈ କୂଳକୁ । ସେମାନଙ୍କ ନଜର ଥାଏ

ନଈ ପାଖରେ ଠିଆହେଇ ବନ୍‌ସୀ ପକୋଉଥିବା ଜଣେ ଆମେରିକାନ୍ ଲୋକ ଉପରେ । ଲୋକଟି ପିଲାଦୁଇଟିଙ୍କୁ ନଈ କୂଳରେ ଠିଆହେଇଥିବା ଦେଖି ତାଙ୍କ ସାଥିରେ ଗପସପ ଜମେଇସାରିଥାଏ ମଧ୍ୟ । ସେଇ ଗପସପ ଭିତରେ ସେ ପିଲା ଦୁଇଟିଙ୍କୁ ୟେଲୋଷ୍ଟୋନ ପାର୍କ ସମ୍ପର୍କରେ କେତେ କଥା କହିସାରି ପଚାରିଲା– ତମେମାନେ ଭେକେସନିଂ ପାଇଁ ଆସିଚଟି ? ତେବେ ମଜା କରୁନା ? ପାଣିରେ ପଶ– ମାଛ ଧର– ନହେଲେ ପାଣିତଳୁ ବାଲିଗରଡା ଗୋଟାଅ । ଦେଖୁଚ ନା କେତେ ରଙ୍ଗର ବାଲିଗରଡ଼ା ନଈର କାଚପରି ନିର୍ମଳ ପାଣିତଳେ ଜକ୍‌ଜକ୍ କରୁଚି ? ସେଗୁଡ଼ାକ ତୁଚ୍ଛ ଗୋଡି ପଥର ନୁହେଁ; ମୂଲ୍ୟବାନ୍ ପଥର । ଏ ସବୁକୁ କହନ୍ତି ''ଜୁଏଲ୍ ଷ୍ଟୋନ୍‌ସ୍'' । ସେ ପଥର ସବୁ ଏଠିକାର ପ୍ରାଚୀନ ପର୍ବତମାଳାରୁ ବାହାରିଚନ୍ତି– ଗୋଟାଅ ସେସବୁକୁ । ନହେଲେ ଆସ ମୋ ପାଖକୁ– ମୁଁ ତମକୁ ଆଂଲି (ବନ୍‌ଶୀରେ ମାଛ ମାରିବା ବିଦ୍ୟା) ଶିଖେଇଦେବି ।''

ଏ ଭିତରେ ଭଉଣୀ ଦୁହେଁ ସାହସ କରି ନଈ ତୁଠରୁ ଓହ୍ଲେଇପଡ଼ିଥାନ୍ତି ପାଣି ଭିତରକୁ । ସେଠି ନଈ ପାଣି ମୋଟେ ବଳାଗଣ୍ଠିଏ– କିନ୍ତୁ ପାଣିର ସୁଅ ବେଶ୍ ଟାଣ । ଟାଣ ସୁଅ ଆନୁର କୁନିକୁନି ପାଦ ଦୁଇଟାକୁ ଟାଣିଲାରୁ ତାକୁ ସଲସଲ ଲାଗୁଥାଏ ବୋଧହୁଏ । ସେ ହସି ହସି ଆହୁରି ଆହୁରି ନଈ ଭିତର ଆଡକୁ ଚାଲିଗଲାଣି ପାଦେପାଦେ । ତା' ପଛେପଛେ ଆନୁ ଆନୁ ଡାକିଡାକି ପାଣିକୁ ପଶିଗଲାଣି ମଧ୍ୟ ବଡ଼ ଭଉଣୀ ଅଙ୍କିତା ।

ସେ ଦୃଶ୍ୟ ଆମ ଆଁଖିରେ ପଡ଼ିଲା ବେଳକୁ ପିଲାଦୁହେଁ ଯାଇ ମାଛ ଧରାଳି ଲୋକ ପାଖରେ ହାଜର । ମାଛ ଧରାଳି ପିଲାଦୁହିଁଙ୍କୁ ପାଖରେ ପାଇ ଭାରି ଖୁସି । ତାପରେ ସେ ପିଲା ଦୁହିଁଙ୍କୁ ବନଶୀ ପକେଇବା କୌଶଳ ଶିଖେଇବାରେ ଲାଗିଗଲା । ଆମେ ଚାରିଜଣ– ବାପ ମା ଅଜାଆଈ– କେବଳ କୂଳରେ ଠିଆ ରହି ଆନୁ ଅଙ୍କିତାଙ୍କ ଆଡଭେଂଚରକୁ ଦେଖି ମନେମନେ ହାଉଳିଖାଇବା ଛଡ଼ା ଆଉ କ'ଣ କରିପାରିଥାନ୍ତୁ ?

ଦେଖିଲୁ, ପ୍ରଥମେ ଅଙ୍କିତା ହାତକୁ ବନ୍‌ସୀଖଡାଟା ବଢେଇଦେଇ ସେ ଅଚିହ୍ନା ଲୋକଟା ତାକୁ କଣ କହିଲା । ପରେପରେ ଅଙ୍କିତା ଖୁବ୍ ଜୋର୍‌ରେ ବନ୍‌ସୀଖଡାଟାକୁ ଛାଟିଦେଲା । ସେଥିରେ ଲାଗିଥାଏ ଗୋଟାଏ ଲମ୍ବା ସୂତା– ସୂତା ଅଗରେ ଥୋପ । ଥୋପଟା ଛଟପଟ ହଉଥାଏ– ବୋଧହୁଏ ଛୋଟ ମାଛଟାଏ । କିନ୍ତୁ ନା– ପ୍ରକୃତରେ ସେଇଟା ମାଛ ନୁହେଁ– ପ୍ଲାଷ୍ଟିକ୍‌ର କିଛି ଗୋଟାଏ ଜିନିଷ । କିନ୍ତୁ ସେଟା ଜୀଅନ୍ତା ମାଛ ଭଳି ଛଟଛଟ ହଉଥାଏ । ସେଇ କୃତ୍ରିମ ଥୋପଟା ଛିଟିକି ଯାଇ ପଡ଼ିଲା ଅନ୍ତତଃ ପନ୍ଦର ଫୁଟ ଦୂରରେ, ନଈ ସୁଅ ବହିଯାଉଥିବା ଦିଗରେ । ଦେଖିଲି– ଥୋପଟା ପାଣିରେ ପଡୁପଡୁ ଗୋଟାଏ ବେଶ୍ ବଡ ମାଛ ପାଣି ଉପରକୁ ମୁହଁ ଟେକି ଥୋପଟାକୁ ପଟାକ କିନା ଗିଳିଦେଲା । ବନଶୀବାଲା ବଡ଼ପାଟିରେ ଅଙ୍କିତାକୁ କହିଲା– ମାର ମାର ମାର ଖାଂଚ । ଅଙ୍କିତା ସାଙ୍ଗେ ସାଙ୍ଗେ ମାଇଲା ଏକ ଜବର ଖାଂଚ !

ପିଲାଟା ତା ଅଜାଣତରେ ଏକ ମସ୍ତବଡ଼ ଟ୍ରାଉଟ୍ ମାଛ ଧରିସାରିଥାଏ ବନସୀରେ ।

ଲୋକଟା ଅଙ୍କିତାର ମାଛଧରା ଶୈଳୀକୁ ବହୁତ ପ୍ରଶଂସାକଲା । ତାପରେ ଶିଖେଇଲା କେମିତି ସେ ମାଛକୁ ଖେଳେଇ ଖେଳେଇ ପାଖକୁ ଟାଣି ଆଣିବାକୁ ହୁଏ । ଏହା ପରେ ଅଙ୍କିତା ଅନେକବେଳ ଯାକେ ମାଛକୁ ଖେଳେଇ ଖେଳେଇ ପାଖକୁ ଆଣିଲା । ବଡ଼ଭଉଣୀର ମାଛଧରା ଖେଳ ଦେଖି ସାନଭଉଣୀ ଆନୁର କାନ୍ଦ ଦେଖେ କିଏ ! ମାଛ ଧରାଳୀ ଭଦ୍ରଲୋକ ଆନୁକୁ ବୁଝେଇଶୁଝେଇ ଶାନ୍ତ କରୁଥାନ୍ତି । ତାକୁ କହୁଥାନ୍ତି ଯା ପରେ ଆସିବ ତୁମ ପାଳି । ଚୁପ୍ ହେଇ ଠିଆ ହୁଅ ଆଉ ଦେଖ– କେମିତି ବନ୍‌ଶୀରେ ମାଛ ଧରାଯାଏ । ମାଛ ଧରିବା ଏତେ ସହଜ ନୁହେଁ ଇତ୍ୟାଦି କହୁକହୁ ମାଛଟା ଆସିସାରିଥାଏ ଅଙ୍କିତା ହାତପାଖକୁ । କିନ୍ତୁ ମାଛଟାକୁ ହାତ ପାଖରେ ପାଇ ବି ସାହସ କୁଳୋଉ ନଥାଏ ଅଙ୍କିତାର ତା ଦେହରେ ହାତ ଲଗେଇବା ପାଇଁ । ଯା ପରେ ଲୋକଟା ତାକୁ ଶିଖେଇଲା କେମିତି ମାଛ ପାଟିରୁ ବନ୍‌ସୀ କଣ୍ଟା କଢ଼ାଯାଏ ତାର କୌଶଳ ।

ଏଥର ଅଙ୍କିତା ସାଥିରେ ସାନଭଉଣୀ ଆନୁ ମିଶିଗଲା । ଦି' ଭଉଣୀ ଲାଗିପାଡି ବହୁ କଷ୍ଟରେ ମାଛ ପାଟିରୁ କଣ୍ଟା କାଢ଼ିଦେଲେ । ଉଭୟ କିରିକିରି ହେଇ ହସିହସି ନଈ ପାଣିରେ ଲୋଟିପଡୁଥାନ୍ତି । ଦୁହେଁ ହେଲେଣି ଓଦା ସରସର । ଏଡ଼େ ବଡ଼ ଟ୍ରାଉଟ୍ ମାଛଟାକୁ ଦି' ଭଉଣୀ କଷ୍ଟେମଷ୍ଟେ ଟେକି ଧରି କୂଳରେ ଠିଆହେଇଥିବା ଆମ ସମସ୍ତ ଦର୍ଶକଙ୍କୁ ଦେଖେଇ ଗର୍ବରେ ଫୁଲିଉଠୁଥାନ୍ତି ଓ ଲୋକଟିକୁ ବାରମ୍ବାର ଧନ୍ୟବାଦ ଦେବାରେ ଲାଗିଥାନ୍ତି ।

ତା'ରି ପରେ ପରେ ଘଟିଲା ଏକ ଆଶ୍ଚର୍ଯ୍ୟଜନକ ଘଟଣା– ଲୋକଟା ପିଲାଦୁହିଁଙ୍କୁ କହିଲା, ''ଶୁଣ ପିଲେ, ଏଥର ମାଛଟାକୁ ଛାଡ଼ି ଦବାକୁ ପଡ଼ିବ ତମକୁ ପାଣିରେ– ''

''ଛାଡ଼ିଦବୁ ?'' ପ୍ରତିବାଦ କଲା ଅଙ୍କିତା, ''କାହିଁକି– ଆମେ ଏତେ କଷ୍ଟରେ ଧରିଲେ ଏ ମାଛଟାକୁ କ'ଣ ଛାଡ଼ି ଦବାକୁ ?''

''Sorry children'' – ଭଦ୍ରଲୋକ ହସିହସି ପିଲା ଦୁଇଟିଙ୍କୁ କହିଲେ, ''ଏଇଟା ହେଲା ୟେଲୋଷ୍ଟୋନ୍ ପାର୍କରେ ମାଛ ଧରାର ନିୟମ ! ଏଠି ତୁମେ ଲାଇସେନ୍ସ କରି ବନ୍‌ସୀ ପକେଇପାରିବ ପାର୍କର ନଈମାନଙ୍କରେ– କିନ୍ତୁ ମାଛ ଧରି ପାରିବ ନାହିଁ । ମାଛ ମାରିଲେ ଫାଇନ୍ ଓ ଜେଲ !''

ଆନୁ ଅଙ୍କିତା ଉଭୟ ବଲବଲ କରି କିଛି ସମୟ ଚାହିଁ ରହିଲେ ଭଦ୍ରଲୋକଙ୍କ ମୁହଁକୁ । ପିଲା ଦୁହେଁ ମୁଣ୍ଡ ଟୁଙ୍ଗାରିଲେ । କୂଳକୁ ଫେରିଆସିବା ପୂର୍ବରୁ ଆନୁ ପଚାରିଲା, ''ମିଃ.. ଆପଣଙ୍କ ଘର କ'ଣ ଏଇ ପାର୍କ ପାଖରେ ?''

ଭଦ୍ରଲୋକ ହସିଦେଲେ । କହିଲେ, ''ମୋ ଘର ଏଠୁ ଦୁଇଶହ ମାଇଲ ଦୂର– କାନାଡାରେ । ମୁଁ ପ୍ରତି ବର୍ଷ ଖରାଦିନେ ଆସେ ଏଠିକି– ଏଇ ୟେଲୋଷ୍ଟୋନ ପାର୍କରେ ନଈମାନଙ୍କରେ ବନ୍‌ସୀ ପକେଇବାକୁ । ବନ୍‌ସୀ ପକେଇବାରେ ମୋର ଭାରି ସଉକ–

କିନ୍ତୁ ମାଛ ଧରେନା । ଓକେ ବାଏ ଗାର୍ଲସ୍ !''

ଭଦ୍ରଲୋକଙ୍କଠାରୁ ବିଦାୟନେଇ ଆମେ କାର୍‌ରେ ବସିଲୁ । ଏହା ପରେ ଆରମ୍ଭ ହେଲା ଆମର ଅସଲ ଭ୍ରମଣ– ପାର୍କର ହାଇଡ୍ରୋଥର୍ମାଲ୍ ଏରିଆ ଭିତରକୁ ପ୍ରବେଶ ।

## ବିପଦଜନକ ହାଇଡ୍ରୋଥର୍ମାଲ୍ ଏରିଆକୁ ପ୍ରବେଶ

ୟେଲୋଷ୍ଟୋନ ପାର୍କର ଅସଲ ଦର୍ଶନୀୟ ସ୍ଥାନ ସବୁ ହେଲା ଏ ପାର୍କର ସବୁଠାରୁ ଅଧିକ ବିପଦପୂର୍ଣ୍ଣ ହାଇଡ୍ରୋଥର୍ମାଲ ଏରିଆ । ସେଠି ପଦେପଦେ ବିପଦ ଲୁଚିରହିଥିବା କଥା ଆମେ ଶୁଣିବାକୁ ପାଉଥାଉ– ତେବେ ସେ କଥାର ତାତ୍ପର୍ଯ୍ୟ କ'ଣ ସେ ପର୍ଯ୍ୟନ୍ତ ଜାଣିନଥିଲୁ । ଚେକ୍ ଗେଟ୍‌ରେ ଟିକେଟ୍ କିଣିବା ବେଳେ ପାର୍କ ପକ୍ଷରୁ ଆମକୁ କେତେକ ଜରୁରୀ କାଗଜପତ୍ର ଯୋଗେଇଦିଆଯାଇଥାଏ । ସେଥିରେ ଉଲ୍ଲେଖ ଥାଏ ପାର୍କ ଭିତରେ ଗୈଜର ଏରିଆ ଭିତରକୁ ବୁଲିବାକୁ ବାହାରିବା ପୂର୍ବରୁ ସେସବୁ କାଗଜପତ୍ରରେ ଥିବା ସୂଚନାଗୁଡିକୁ ନିଶ୍ଚିତ ଭାବେ ମନଦେଇ ପଢିବା ପାଇଁ । ସେଇ ସୂଚନାପତ୍ର ଗୁଡିକୁ ପଢିବା ସମୟରେ ଦେଖିଲି ସେଥିରୁ ଗୋଟିକରେ ବେଶ୍ ବଡବଡ ଅକ୍ଷରରେ ଛପା ହେଇଥାଏ, ''ସାବଧାନ ! ୟେଲୋଷ୍ଟୋନ୍ ପାର୍କ ଏକ ସାଧାରଣ ଭ୍ରମଣ ସ୍ଥାନ ନୁହେଁ; ଏଠାରେ ପଦେପଦେ ଦୁର୍ଘଟଣା ଏବଂ ପ୍ରାକୃତିକ ବିପଦର ଆଶଙ୍କା ଭରିରହିଚି । ଏ ସ୍ଥାନରେ ବୁଲି ବାହାରିବା ଆଗରୁ ତଳେ ଦିଆଯାଇଥିବା ବିଷୟଗୁଡିକୁ ପ୍ରଥମେ ଭଲ କରି ପଢିବାକୁ ଅନୁରୋଧ !''

ସେସବୁ ବିଷୟ ପଢି ମନରେ ଭୟ ସଞ୍ଚାର ହେବାର ଯଥେଷ୍ଟ କାରଣ ଥିଲା । ଭୟର କାରଣ ଗୁଡିକୁ ଆମ ଦଳର ପ୍ରତ୍ୟେକଙ୍କୁ ଜଣାଇବା ଗରୁତ୍ୱପୂର୍ଣ୍ଣ ମନେକରି ସୂଚନା ପତ୍ରଟିକୁ ବଡପାଟିରେ ପଢି ସମସ୍ତଙ୍କୁ ଶୁଣେଇଦେବା ଉଚିତ ମନେକଲି । ସେ ଭିତରେ ପ୍ରଥମ ଗୁରୁତ୍ୱପୂର୍ଣ୍ଣ ସତର୍କବାଣୀ ଥିଲା ''Beware of the Hydrothermal Areas in the Park'' ଏହାର ଆକ୍ଷରିକ ଅର୍ଥ ହେଲା ''ତପ୍ତପାଣି କ୍ଷେତ୍ର'' ପ୍ରତି ସାବଧାନ । କିନ୍ତୁ ୟେଲୋଷ୍ଟୋନ୍ ପାର୍କର ସେଇ ତପ୍ତପାଣି କ୍ଷେତ୍ରଟି ଆମ ଓଡିଶାର ଖୋର୍ଦ୍ଧା ବାଘମାରି ନିକଟ ଅତ୍ରୀ ଭଳି ଛୋଟ ଜାଗାଟିଏ ନୁହେଁ; ସେ ଏକ ବ୍ୟାପକ ଅଞ୍ଚଳ । ହଜାର ହଜାର ଏକର ବ୍ୟାପୀ ଏ ଅଞ୍ଚଳରେ ସ୍ଥାନେସ୍ଥାନେ ଏପରି ଜାଗାସବୁ ରହିଥାଏ ଯେଉଁଠି ବର୍ଷବର୍ଷ ଧରି ମାଟି ଆପଣା ଛାଏଁ କୁହୁଳୁଥାଏ ଆଉ ପୋଡା ଗନ୍ଧକର ଧଳା ଧୂଆଁ କୁଣ୍ଡଳୀମାନ ନିରବଚ୍ଛିନ୍ନ ଭାବେ ମାଟିରୁ ବାହାରୁଥାଏ । ଯାହାକୁ କହନ୍ତି ନିଆଁ ନଥାଇ ଧୂଆଁ– ଠିକ୍ ସେଇ ଅବସ୍ଥା ଏ ପାର୍କର ଚତୁର୍ଦ୍ଦିଗରେ ଦେଖିବାକୁ ମିଳେ । ସେ ସବୁ ସ୍ଥାନରେ ଯେକୌଣସି ମୁହୂର୍ତ୍ତରେ ହଠାତ୍ ଭୂତଳର ଫୁଟନ୍ତା ପାଣିର ଫୁଆରା ପ୍ରବଳ ବେଗରେ ଉପରକୁ ଛିଟିକି ଉଠିପାରେ । ଭ୍ରମଣକାରୀ ଅସାବଧାନତାରେ ସେ ସବୁ ସ୍ଥାନରେ ପାଦ୍ ଦେବା ମାତ୍ରେ

ହାଇଡ୍ରୋଥର୍ମାଲ୍ ବିପଦର ଶିକାର ହେବାର ସମ୍ଭାବନା ରହିଥାଏ । ଫୁଟନ୍ତା ପାଣିରେ ଶରୀର ଆଘାତ ପ୍ରାପ୍ତ ହେବା ସହିତ ପଥଚାରୀ ପାଦତଳର ଦଳଦଳ ଚୋରା ମାଟି ଭିତରକୁ ଧସିପଡି ମୃତ୍ୟୁମୁଖରେ ପଡିପାରେ । ସେଥିପାଇଁ ଭ୍ରମଣକାରୀମାନଙ୍କୁ ପ୍ରଥମରୁ ସାବଧାନ କରିଦିଆଯାଇଥାଏ– ପାର୍କରେ ଗାଡି ଚଳେଇବା ବେଳେ କିମ୍ବା ପାଦଚଲା ରାସ୍ତାଗୁଡିକରେ ଚାଲିଲାବେଳେ ନିର୍ଦ୍ଧାରିତ ମାର୍ଗରେ ଚାଲିବା ଦରକାର । ପାର୍କର ବିଭିନ୍ନ ଅଞ୍ଚଳମାନଙ୍କରେ କାଠ ପଟା ବିଛାଯାଇ ଚଲାରାସ୍ତା ମାନ ନିର୍ମାଣ କରାଯାଇଥାଏ । ସ୍ଥାନେସ୍ଥାନେ ଉଷ୍ଣପ୍ରସ୍ରବଣ ମାନଙ୍କରୁ ଝରିଆସୁଥିବା ଜଳପ୍ରବାହକୁ ଅତିକ୍ରମ କରିବା ଦରକାର ପଡେ । ସେଥିପାଇଁ ମଜଭୁତ୍ କାଠ ବାଡା ଦିଆଯାଇଥିବା ସେତୁ ମାନ ନିର୍ମିତ ହୋଇଛି । ଛୋଟପିଲାମାନଙ୍କ ପାଇଁ ସେତୁ ପାରି ହେବା ସମୟରେ ବିଶେଷ ସାବଧାନତା ଅବଲମ୍ବନ ଏକାନ୍ତ ଆବଶ୍ୟକ । ଏହା ବ୍ୟତୀତ ପାର୍କର ବିଭିନ୍ନ ସ୍ଥାନରେ ସୂଚିତ କରାଯାଇଥିବା ନିର୍ଦ୍ଦେଶାବଳୀ ଗୁଡିକୁ ମଧ ନିଷ୍ଠାର ସହିତ ପାଳନ କରାଯିବା ପାଇଁ ସତର୍କବାଣୀ ଥାଏ ।

## ୟେଲୋଷ୍ଟୋନର ବଣ୍ୟପ୍ରାଣୀ ଓ ସମ୍ଭାବିତ ବିପଦ

ପାର୍କ ଭିତରେ ମୁକ୍ତ ଭାବେ ଘୂରିବୁଲୁଥିବା ମାରାତ୍ମକ ବଣ୍ୟ ଜନ୍ତୁମାନଙ୍କଠାରୁ ନିରାପଦ ଦୂରତାରେ ରହିବାକୁ ଉକ୍ତ ବିଜ୍ଞାପନ ପୁସ୍ତିକାରେ ବିଶେଷ ପରାମର୍ଶ ଦିଆଯାଇଥିବା ଦେଖିଲି । ସେପରି କେତେକ ବଣ୍ୟ ଜନ୍ତୁଙ୍କ ଭିତରେ ବିଶେଷ ଉଲ୍ଲେଖନୀୟ ହେଲେ ବାଇସନ୍, ଏଲକ୍ (ଶିଙ୍ଗାଳ ବଡ ହରିଣ), ଭାଲୁ, ଗଧିଆ (ଉଲ୍ଫ), କୟୋଟ୍ (ବିଲୁଆ ଜାତିର) ଇତ୍ୟାଦି ହିଂସ୍ର ଜନ୍ତୁ ।

ସେମାନଙ୍କ ସମ୍ପର୍କରେ ସତର୍କବାଣୀ ଥିଲା– ପ୍ରଥମ କର୍ତ୍ତବ୍ୟ ସେଭଳି ହିଂସ୍ର ଜନ୍ତୁଙ୍କ ଠାରୁ ଉଚିତ ଦୂରତା ଅବଲମ୍ବନ କର । ସେ ତାଲିକାରେ ଉଲ୍ଲେଖ ଅନୁସାରେ– ଭାଲୁ ଓ ଗଧିଆମାନଙ୍କଠାରୁ ସର୍ବନିମ୍ନ ନିରାପଦ ଦୂରତା ହେଲା ୩୦୦ ଫୁଟ୍, ବାଇସନ, ଏଲକ୍, ବଡଶିଙ୍ଗା ଜଙ୍ଗଲି ମେଣ୍ଢା, ମୃଗ, ମୃଜ୍ (ବରଫ ହରିଣ) ଓ କେୟୋଟ୍ (ବିଲୁଆ ଜାତିର) ପ୍ରାଣୀମାନଙ୍କଠାରୁ ୭୫ ଫୁଟ୍ ଦୂରରେ ରହିବା ନିରାପଦ । ଏ ସବୁ ଜନ୍ତୁମାନଙ୍କୁ କଦାପି କୌଣସି ଭାବେ ରଗେଇବା ଉଚିତ ନୁହେଁ ବୋଲି ବିଜ୍ଞାପନରେ ଦର୍ଶାଯାଇଥିଲା । ଆହୁରି କୁହାଯାଇଥାଏ– ସେମାନଙ୍କୁ ଘେରୋଉକରି ପାଟିତୁଣ୍ଡ କରାଯିବା ମଧ ଘୋର ବିପଦଜନକ ।

ବାଇସନ ବା ଅରଣା ମଇଁଷି ସମ୍ପର୍କରେ କୁହାଯାଇଥାଏ ଏହା ଆଦୌ ଏକ ସୁଧାର ବଣ୍ୟପ୍ରାଣୀ ନୁହେଁ । ଏହାର ଓଜନ ହାରାହାରି ୯୦୦ କିଲୋଗ୍ରାମ୍ ! ପୁଣି ଏ ଭୟଙ୍କର ଜୀବ ଇଚ୍ଛାକଲେ ଖୁବ୍ ଜୋର୍‌ରେ ମଧ ଦଉଡିପାରେ । ବାଇସନ୍ ଘଣ୍ଟା ପ୍ରତି ୩୦ମାଇଲ୍ ବେଗରେ ଧାଇଁ ପାରେ । ସେମାନଙ୍କ ଆକ୍ରମଣରୁ ବର୍ତ୍ତିବା ଲକ୍ଷ୍ୟରେ ଧାଇଁ ପଳାଇବାକୁ ଚେଷ୍ଟାକରିବା ନିରର୍ଥକ– ତେଣୁ ସାବଧାନ !

ଭାଲୁ ଓ ଏଲକ୍‌ମାନଙ୍କ ବିଷୟରେ ସତର୍କବାଣୀ ମଧ୍ୟ ଗୁରୁତ୍ୱ ସହକାରେ ଉଲ୍ଲେଖ-କରାଯାଇଥାଏ ସୂଚନାପତ୍ରରେ ।

ସେ ସବୁକୁ ଗୋଟିଗୋଟି କରି ସମସ୍ତଙ୍କୁ ପଢି ଶୁଣେଇସାରି ମୁଁ ନାତୁଣୀ ଦୁହିଁଙ୍କୁ ଗେଲରେ ପଚାରିଲି, ''କିଓ ! ତୁମେ ଦୁହେଁ ସେ ବାଇସନ ଦଳ ସାମନାରେ ଯୋଉ ବୀରତ୍ୱ ଆଜି ଦେଖେଇଦେଲ ଟିକେ ପୂର୍ବରୁ ତା ଫଳ କଣ ହେଇଥାନ୍ତା ଜାଣିଲ ? ସେମାନଙ୍କ ଦଳପତି କେମିତି ଆଡିପଟେଇ ଖୁରା ଘସୁଥିଲା ମାଟି ଉପରେ ଦେଖିଚଟି ? ବର୍ତ୍ତମାନ ବୁଝୁଚଟି କଣ ହୋଇଥାନ୍ତା ତା' ଫଳ ଯଦି ସେ ଜନ୍ତୁ ତୁମକୁ ଗୋଡେଇଥାନ୍ତା ? ତା' ସ୍ପିଡ୍ ପରା ଘଣ୍ଟାକୁ ୩୦ ମାଇଲ୍ ! ତମମାନଙ୍କର ସ୍ପିଡ୍ କେତେ ?''

କଥାଟାକୁ କଳ୍ପନା କରିନେଇ ସମସ୍ତେ ଡରରେ ଉଲୁସିଉଠିଲେ । କିନ୍ତୁ ଆନୁ କହିଲା, ''ଅଜା ! ଜାଣିଚ ? ସେ କାହିଁକି ମୋର କିଛି କରିନଥାନ୍ତା ? କାରଣ କାଲି ମୁଁ ମୁଣ୍ଡ ସଫା କରିଥିଲି ଗୋଟାଏ ନୂଆ ଭେରାଇଟି ସାମ୍ପୁରେ । ସେ ସାମ୍ପୁଟାର ଗନ୍ଧ ଅବିକଳ ତାରି ଗନ୍ଧ ଭଳି– ବାଇସନିଆ । ସେ ଯଦି ମୋ ପାଖକୁ ଆସିଥାନ୍ତା ତେବେ ମୋ ମୁଣ୍ଡବାଳର ସାମ୍ପୁ ଗନ୍ଧ ଶୁଙ୍ଘି ଭାବିଥାନ୍ତା ମୁଁ ତାଙ୍କରି କେହି ରିଲେସନ ନିଶ୍ଚୟ । ନୁହେଁ ?''

ତା କଥା ଶୁଣି ଆମେ ସମସ୍ତେ ଗୋଟାଏ ପେଟଫଟା ହସ ହସିଉଠିଲୁ । ପରିବେଶଟି ସମ୍ପୂର୍ଣ୍ଣ ହାଲୁକା ହେଇଗଲା । ଏ ନାତୁଣୀ ଆନୁ ପିଲାଟି ଆମର ଖାଲି ସାହସୀ କି ଦୁଃସାହସୀ ନୁହେଁ– ସେ ଗୋଟାଏ ଜୋକର ବି ।

'ଫାୟାର୍ ହୋଲ୍' ନଈ କୂଳେ କୂଳେ ଆମେ ଏଇ ଭିତରେ ବେଶ୍ କିଛି ବାଟ ଆଗେଇ ଆସିଲୁଣି । ଆମ ରାସ୍ତାର ଡାହାଣ ପଟେ ନଈ ଆଉ ବାଁ ପଟେ ଉଚ୍ଚାଉଚ୍ଚା କାନ୍ଥ ପରି ତୀଖ ପର୍ବତ ।

''ଏ ପର୍ବତଗୁଡ଼ିକର ରୂପ ଦେଖୁଚନ୍ତି ତ ନନା ? ମତେ ଦିଶୁଚି ସାର୍ ଆର୍ଥର୍ କୋନାନ୍ ଡୟେଲ୍‌ଙ୍କ ''ଦ ଲଷ୍ଟ୍ ଓ୍ୱାର୍ଲଡ୍'' (The Lost World) ବହିର ସେଇ ପର୍ବତମାନଙ୍କର ଦୃଶ୍ୟ । ଦେଖୁଚନ୍ତି ନା ଏ ପର୍ବତଗୁଡ଼ାକର କାନ୍ଥ କେତେ Strait and perpendicular? ପୁଣି ସେ ପର୍ବତଗୁଡ଼ାକର କୌଣସି ଶୃଙ୍ଗ ମଧ୍ୟ ନାହିଁ– ପୂରା ଏକ ଜନମାନବଶୂନ୍ୟ ବିସ୍ତୃତ ସମତଳ ଉପତ୍ୟକା । ଗୋଟାଏ ସମ୍ପୂର୍ଣ୍ଣ ଭିନ୍ନ ଜଗତ ନୁହେଁ କି ? ଆଚ୍ଛା ଭାବନ୍ତୁ ନା ଭୂପୃଷ୍ଠରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ସାତଆଠ ହଜାର ଫୁଟ ଉପରେ ଝୁଲୁଥିବା ସେ ଯେଉଁ ଉପତ୍ୟକାଟା ସେଠି ଦେଖୁଚନ୍ତି ସେ ଉପତ୍ୟକାରେ କାହିଁକି ପ୍ରାଗ୍‌ଐତିହାସିକ ପ୍ରାଣୀମାନେ ଏବେ ମଧ୍ୟ ନଥିବେ ? ସାର୍ ଆର୍ଥର୍ କୋନନ୍ ଡୟଲ୍ ତାଙ୍କ ଲଷ୍ଟ ଓ୍ୱାଲର୍ଡ ବହିରେ ସେଇସବୁ ଜୀବ ଜଗତର ବର୍ଣ୍ଣନା କରିଚନ୍ତି !'' ଅଭିଜିତଙ୍କ କଣ୍ଠସ୍ୱର ସମ୍ପୂର୍ଣ୍ଣ ଭିନ୍ନ ଶୁଣାଗଲା କାନକୁ ।

ମୁଁ କହିଲି, ''ମତେ ଦିଶୁଚି ଅନ୍ୟ ଏକ ଦୃଶ୍ୟ । ଆମ ପୁରାଣରେ ପାତାଳର ବିସ୍ତୃତ

ବର୍ଣ୍ଣନାମାନ ଅଛି । ମତେ ଲାଗୁଚି ଆମେ ବର୍ତ୍ତମାନ ପାତାଳ ଅଭିମୁଖେ ଯାତ୍ରା କରୁଚେ । ତୁମେ ଲକ୍ଷ୍ୟ କର ଏ ନଦୀ, ପର୍ବତ, ଅରଣ୍ୟ ଆଉ ଏଠାକାର ଉଦ୍ଭିଦଜଗତ ଆମ ଜଣା ଜଗତଠାରୁ କେତେ ଭିନ୍ନ । ଏ ନିଶ୍ଚୟ ଏକ ଭିନ୍ନ ଜଗତ୍ । ଆଶ୍ଚର୍ଯ୍ୟ ହେବାର ନାହିଁ– ପୂର୍ବେ ଏ ୟେଲୋଷ୍ଟୋନ ଉପତ୍ୟକାଟାକୁ କାହିଁକି ୟୁରୋପୀୟ ଉପନିବେଶବାଦୀମାନେ କହୁଥିଲେ ସଇତାନର ଘର ବୋଲି । ତାଙ୍କ ଧର୍ମରେ ଅବଶ୍ୟ ସେମାନେ ସଇତାନର ପରିକଳ୍ପନା କରନ୍ତି ପାତାଳରେ । କିନ୍ତୁ ଆମର ପାତାଳ ନିବାସୀ ହେଲେ ଦାନବୀର ବଳି ଯାହାଙ୍କ ଗର୍ବ ଚୂର୍ଣ୍ଣ କରିବାକୁ ଭଗବାନ୍ ବିଷ୍ଣୁ ବାମନ ଅବତାର ଗ୍ରହଣ କରିଥିଲେ ଆଉ ତାଙ୍କୁ ପାତାଳପୁରର ରାଜା କରି ପଠେଇଥିଲେ ଏଠିକି ତାଙ୍କର ତୃତୀୟ ପାଦରେ ।''

ଏଇ ଭଳି ଗପସପ ଭିତରେ ଆମେ ଫାୟାରହୋଲ ନଈ କୂଳେକୂଳେ କେତେ ବାଟ ଆଗକୁ ଚାଲିଆସିଥାଉ କାହାରି ଦୃଷ୍ଟି ନଥାଏ ସେଦିଗକୁ ।

ହଠାତ୍ ଡ୍ରାଇଭିଂ ସିଟରୁ ଅଭିଜିତ ଖୁସିରେ ପାଟିକରି ଉଠିଲେ, ''ଦେଖନ୍ତୁ ! ଆମେ ଆସିଗଲେ ଏ ରାସ୍ତାରେ ଥିବା ପାର୍କର ଏକ ଚମତ୍କାର ଗେିଜର ପାଖରେ । ୟା'ର ନାମ 'ଫାଉଂଟେନ ପେଂଟ ପଟ୍ ଗେଜର୍'– ଏ ଏକ ବିସ୍ମୟକର ସ୍ଥାନ !''

ପିଲାମାନେ ଉତ୍ସୁକତା ନେଇ ଝୁଙ୍କିପଡିଲେ କାର୍ ଓ୍ୱିଣ୍ଡୋ ଉପରକୁ ।

ଆମ କାର ସେଇମାତ୍ର ପ୍ରବେଶ କରିସାରିଥାଏ 'ଲୋୟର୍ ଗେିଜର ବେସିନ୍' (Lowr Geyser Basin) ଅଞ୍ଚଳକୁ । ଏଇଠୁ ଆରମ୍ଭ ହେଲା ଆମର ଆଜିର ଅସୀମ ବିସ୍ମୟର ଭଣ୍ଡାର ୟେଲୋଷ୍ଟୋନ୍ ପାର୍କର ପ୍ରକୃତ ଭ୍ରମଣ ଅଭିଯାନ ।

## ଫାଉଂଟେନ ପେଣ୍ଟ୍ ପଟ ଗେଜର (Fountain Paint Pot Geyser)

ରାସ୍ତାକଡ଼ ପାର୍କିଂ ଏରିଆରେ ସେତେବେଳକୁ ଶହଶହ କାର୍ ଜମିସାରିଥାଏ । ସେଥିରୁ ଆମ ଆଗରୁ ଆସୁଥିବା ଟୁରିଷ୍ଟମାନେ ଓହ୍ଲେଉଥାନ୍ତି । ଅନେକେ ଦୃଶ୍ୟ ଦେଖିସାରି ନିଜନିଜ କାରକୁ ଫେରିଆସୁଥାନ୍ତି । ଅଭିଜିତ କାର ପାର୍କ କଲେ । ଆମେ ଓହ୍ଲେଇପଡ଼ିଲୁ ।

''ଓଃ ! କି ଗରମ !''– ଅଙ୍କିତା ମୁଣ୍ଡ ଉପରକୁ ଚାହିଁ କହିଲା, ''ବାପ୍‌ରେ ! ଏଠି ୟେଲୋଷ୍ଟୋନରେ ବି ଏତେ ଟାଣ ଖରା ? ମୁଁ ଭାବୁଥିଲି ଏ ଜାଗା ଭାରି ଥଣ୍ଡା ହୋଇଥିବ । ବାବା ! ଏଇଲେ ଆମେ କେତେ ଅଲ୍‌ଟିଟ୍ୟୁଡ୍‌ରେ ?''

''ଦଶ ହଜାର ଫୁଟ୍ ସମୁଦ୍ର ପତ୍ତନରୁ !''– ଅଭିଜିତ ପିଲାମାନଙ୍କୁ ସାବଧାନ ହେବା ପାଇଁ ଇସାରା ଦେବା ସହିତ ଆମକୁ କହିଲେ, ''ଚାଲନ୍ତୁ ସେଇ ଯୋଉ ରଙ୍ଗୀନ୍ ପାଣି କୁଣ୍ଡଭଳି ସ୍ଥାନଟା ଆଗରେ ଦିଶୁଚି ସେଇଠିକି । ସେଠି ଭେଟିବେ ଆପଣମାନେ ଆଜିର ପ୍ରଥମ ବିସ୍ମୟ ଏ ଜାଗାର । ଆମ ଚାରିପାଖର ଏଇ ବ୍ୟାପକ ଅଞ୍ଚଳଟାର ନାମ ହେଲା 'ଲୋୟର୍ ଗେଜର୍ ବେସିନ୍' ଅର୍ଥାତ୍ ପାର୍କର ନିମ୍ନାଂଚଳର ଉଷ୍ଣପ୍ରସ୍ରବଣ କ୍ଷେତ୍ର । ଏ

ଅଞ୍ଚଳ ଆଗକୁ ଅଛି 'ମିଡଲ୍ ଗୈଜର୍ ବେସିନ୍' ବା ମଧ୍ୟାଞ୍ଚଳ ପ୍ରସ୍ରବଣ କ୍ଷେତ୍ର । ଆହୁରି ଉପର ଭାଗରେ ଅବସ୍ଥିତ 'ଅପର୍ ଗୈଜର୍ ବେସିନ୍' କ୍ଷେତ୍ର । ସେଇ କ୍ଷେତ୍ରଟା ୟେଲୋଷ୍ଟୋନ୍ ପାର୍କର ସର୍ବୋତ୍କୃଷ୍ଟ ଦର୍ଶନୀୟ ସ୍ଥାନ । ସେଠି ଆପଣ ଭେଟିବେ ବିଶ୍ୱପ୍ରସିଦ୍ଧ ଉଷ୍ଣପ୍ରସ୍ରବଣ ଗୁଡ଼ିକୁ ଯଥା:- 'ଦ ଓଲଡ୍ ଫେଥ୍‌ଫୁଲ୍ ଗୈଜର୍' ଏବଂ ତା'ଠାରୁ ବିସ୍ମୟକର ଆହୁରି ଅନେକ ଦର୍ଶନୀୟ ଗୈଜର– ପ୍ରତ୍ୟେକ ଗୋଟାଏ ଗୋଟାଏ ମ୍ୟାଜିକ୍ ସ୍ପଟ୍ ଏ ପାର୍କର ।''

ଆମେ ଶୀଘ୍ରଶୀଘ୍ର ପାଦ ପକାଇ ଆଗକୁ ଚାଲିଲୁ । ରାସ୍ତା ଉପରୁ ବେଶ୍ କିଛି ଦୂରରୁ ଆଖିରେ ପଡୁଥାଏ ଏକାଧିକ ଜଳାଶୟ ଭରପୂର ଏକ ବ୍ୟାପକ ଅଞ୍ଚଳ । ପ୍ରତ୍ୟେକ ଜଳାଶୟର ରଙ୍ଗ ଭିନ୍ନଭିନ୍ନ– ସତେକି ଜଳାଶୟ ନୁହେଁ ରଙ୍ଗକୁଂଡ ଗୋଟାଏ ଗୋଟାଏ । ଚିତ୍ରକରମାନଙ୍କର ରଙ୍ଗବାକ୍ସ ବା ପେଣ୍ଟବକ୍ସରେ ଖୋପଖୋପ ହେଇ ରଙ୍ଗ ସଜା ହେଇଥିବା ପରି ଜଳାଶୟଗୁଡ଼ିକ ପାଖାପାଖି ହୋଇଥାଏ । ସେଥିରେ ନାଲି ନେଳି ସବୁଜ ପ୍ରଭୃତି ସାତରଙ୍ଗର ପେଂଟ ବ୍ୟତୀତ ଆହୁରି ଅନେକ ମିଶ୍ରିତ ରଙ୍ଗ ସବୁ କେଉଁ ଅଦୃଶ୍ୟ ଚିତ୍ରକରର ବ୍ୟବହାର ପାଇଁ ସାଇତା ହେଇ ରହିଥାଏ । ମନେହେଲା ହୁଏତ ସେ ଅଦୃଶ୍ୟ ଚିତ୍ରକାର ଅନ୍ୟ କେହି ନୁହେଁ– ସ୍ୱୟଂ ପ୍ରକୃତିମାତା ବା ସ୍ୱର୍ଗର ଦେବତାମାନେ ଯେଉଁମାନେ ନିଜନିଜର ସୃଜନ ପ୍ରବୃତ୍ତି ଚରିତାର୍ଥ ନିମନ୍ତେ ଅଦୃଶ୍ୟରେ ଆସନ୍ତି ଏଇ ଜାଗାକୁ ।

ସବା ପ୍ରଥମେ ଆମେ ଗୋଟିଏ ରଙ୍ଗକୁଂଡ ନିକଟରେ ପହଞ୍ଚିଲୁ । ସେ କୁଣ୍ଡର ରଙ୍ଗ ଏକ ଅଦ୍ଭୁତ ପ୍ରକାର ନୀଳ । ସେଭଳି ନୀଳରଙ୍ଗକୁ ବୈଜ୍ଞାନିକ ଭାଷାରେ କୁହାଯାଇପାରେ ଇଂଡିଗୋ ବ୍ଲୁ ବା ମାରାଇନ୍ । କିନ୍ତୁ ସେ ରଙ୍ଗର ଏକ ଆଧ୍ୟାତ୍ମିକ ପ୍ରଭାବ ଲକ୍ଷ୍ୟକଲି । ମନ ଭିତରେ ଆପେଆପେ ଜାତହେଲା ଏକ ତୁଳନାତ୍ମକ ରୂପକଳ୍ପ– ଭଗବାନ୍ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କର ଶରୀରର ରଙ୍ଗ ! କିଛି ସମୟ ପରେ ମୋର ବୈଜ୍ଞାନିକ କୌତୂହଳ ଫେରି-ଆସିଲା । କୁଣ୍ଡର ତରଳ ଜିନିଷଟା ପ୍ରକୃତରେ କଅଣ ଜାଣିବା ଉଦ୍ଦେଶ୍ୟରେ ଖଣ୍ଡେ କାଠିରେ ମୁଁ ସେଇ ତରଳ ରଙ୍ଗୀନ ଜଳର ଘନତ୍ୱ ଜାଣିବାକୁ ବିଚାରିଲି । ଦେଖିଲି ଜିନିଷଟା ଥଲଥଲିଆ । ଦୂରରୁ ଗାଢ ନେଳୀ ପାଣିଭଳି ଦିଶୁଥିବା ତରଳ ବସ୍ତୁଟା ଟଗବଗ ହେଇ ଫୁଟୁଥାଏ ଖିରି ଶିଝୁଥିବା ପରି । ଲାଗୁଥାଏ ନେଳୀ ରଙ୍ଗର କୌଣସି କାଦୁଆ ରାସାୟନିକ ବସ୍ତୁ ଭୂଗର୍ଭରୁ ଉବୁରିଉଠୁଥାଏ ଓ ସେଥିରୁ ବାଂଫମିଶା ଗରମ ପାଣି ବୋହିଚାଲିଥାଏ ଝରଣା ଆକାରରେ କୁଣ୍ଡ ବାହାରକୁ ।

ମୁଁ ଅଭିଜିତଙ୍କୁ ପଚାରିଲି, ''ଏ ନୀଳ ବର୍ଣ୍ଣର ରାସାୟନିକ ପଦାର୍ଥ ଭୂତଳରୁ ବାହାରୁଚି ନିଶ୍ଚୟ । ତେବେ କେତେ ତଳେ ଥାଇପାରେ ଏହାର ଉତ୍ସ ? କ'ଣ କୌଣସି ଭଲ୍‌କାନିକ୍ (ଆଗ୍ନେୟ) ମେକାନିଜମ୍ ରହିଚି ଯା ପଛରେ? କେତେ ଶହ ବା ହଜାର ବର୍ଷ ଧରି ଏ ପ୍ରକ୍ରିୟା ଚାଲିଥାଇପାରେ ?''

ଅଭିଜିତ ତାଙ୍କ ପାଖରେ ଥିବା କୌଣସି ଗାଇଡ୍ ଲିଟରେଚର୍ ଉପରେ ଆଖି-

ପକାଇଲେ । କହିଲେ, ''ଏଇ ସମସ୍ତ ୟେଲୋଷ୍ଟୋନ୍ ଅଞ୍ଚଳ ଗୋଟାଏ ଆଗ୍ନେୟଗିରି ଅଞ୍ଚଳ । ଏଠି ଭୂଗର୍ଭରେ ସୃଷ୍ଟିହେଉଥିବା ଉତ୍ତାପରେ ବିଭିନ୍ନ ପ୍ରକାର ରାସାୟନିକ ପ୍ରକ୍ରିୟା ଅନବରତ ଚାଲିଚି ଭୂଗର୍ଭରେ । ଲକ୍ଷଲକ୍ଷ ବର୍ଷ ଧରି ଏ ପ୍ରକ୍ରିୟା ସକ୍ରିୟ ରହିଚି । ଆଖି ବୁଲେଇ ଦେଖନ୍ତୁ ଚାରିଆଡକୁ । ଯେତେ ଦୂର ପର୍ଯ୍ୟନ୍ତ ଆଖି ପାଉଚି କ'ଣ ଦେଖୁଚନ୍ତି ?''

''ଗୁଡ଼ାଏ ରଙ୍ଗ କୁଣ୍ଡ,'' ମୁଁ ଉତ୍ତର ଦେଲି, ''ଖାଲି ନେଳୀ ତ ନୁହେଁ– ମୁଁ ଦେଖୁଚି ଅନେକ ରଙ୍ଗର କୁଣ୍ଡ । କୋଉ କୁଣ୍ଡର ରଙ୍ଗ ମୋତି ପରି ଲାଲ ତ କୋଉ କୁଣ୍ଡରେ ଟହଟହ କରୁଚି ବୈଦୁର୍ଯ୍ୟର ଜ୍ୟୋତି । ହୀରା ନୀଳା ମୋତି ମାଣିକ୍ୟ ଭଳି ଝଟକୁଥିବା ଏଇ ରଙ୍ଗ କୁଣ୍ଡ ଗୁଡାକ ସତରେ ଦିଶୁଚି Paint Box ପରି । ଏଇଥି ପାଇଁ ତାହେଲେ ଏ ଜାଗାର ନାମ ଦିଆଯାଇଚି 'ଫାଉଂଟେନ୍ ପେଂଟ୍-ପଟ୍' ?''

''ବିଜ୍ଞାନ ଭାଷାରେ ଏ କୁଣ୍ଡଗୁଡାକ ହେଲା 'ମଡ୍ ପଟ୍ସ୍', ଅର୍ଥାତ୍ ପଙ୍କ କୁଣ୍ଡ !'', ଅଭିଜିତ ବ୍ୟାଖ୍ୟା କଲେ, ''ଏଠି ଭୂଗର୍ଭରେ ଅନେକ ରକମ ଖଣିଜ ପଦାର୍ଥ ରହିଚି । ଭୂତାତ୍ତ୍ୱିକ ଚାପ-ତାପ ପ୍ରଭାବରୁ ଫୁଟନ୍ତା ପାଣି ସାଥିରେ ମିଶି ସେସବୁ ଖଣିଜଦ୍ରବ୍ୟ ମିଶା କାଦୁଅ ଭୂପୃଷ୍ଠକୁ ଫୁଟି ବାହାରିଆସୁଚି । ଏ ସବୁ ରଙ୍ଗୀନ ପଙ୍କ ପ୍ରକୃତରେ ଭିନ୍ନ ଭିନ୍ନ ପ୍ରକାରର ରାସାୟନିକ ଜିନିଷ ।'' ଅଭିଜିତ ପୂର୍ଣ୍ଣାଙ୍ଗ ବିବରଣୀଟିଏ ଦେବାକୁ ବସିଲେ ।

କିନ୍ତୁ ଆମ ହାତରେ ଆଉ ସମୟ ନଥାଏ ସେଇ ଗୋଟାଏ ଜାଗାରେ ବେଶୀ ସମୟ ଠାକି ଯିବା ପାଇଁ । ଅଭିଜିତ ହାତ ଘଡିକୁ ଚାହିଁଦେଇ ଚମକିପଡ଼ିଲେ । କହିଲେ, ''ଆଉ ମୋଟେ ଚାଳିଶ ମିନିଟ୍ ! ଆମକୁ ଓଲଡ୍ ଫେଥ୍‌ଫୁଲ୍ ଗୈଜର ସ୍ପଟ୍‌ରେ ପହଞ୍ଚିବାକୁ ପଡିବ ଠିକ୍ ଗୋଟାଏ ପନ୍ଦରକୁ ଆଖିରେ ରଖି । ଚାଲନ୍ତୁ ଜଲ୍‌ଦି । କିନ୍ତୁ ତା ପୂର୍ବରୁ ଆଉ ଏକ ଦର୍ଶନୀୟ ଅଞ୍ଚଳକୁ ମିସ୍ କରାଯାଇନପାରେ ।''

## ବିସ୍କୁଟ୍ ବେସିନ୍ (Biscuit Basin)

ଓଲଡ୍ ଫେଥ୍‌ଫୁଲ୍ ଯିବା ବାଟରେ ଅଭିଜିତ ଗାଡି ସ୍ଲୋ କଲେ । କହିଲେ, ''ଦେଖନ୍ତୁ ଦେଖନ୍ତୁ ! ଡାହାଣ ପାଖକୁ ଚାହାଁନ୍ତୁ ସମସ୍ତେ– ଏ ଜାଗାକୁ କହନ୍ତି ବିସ୍କୁଟ୍ ବେସିନ୍ !'' ଆମେ ଝରକା ପଟକୁ ଝୁଙ୍କିପଡ଼ି ଉଣ୍ଡିଲୁ ଚାରିଆଡକୁ । କିନ୍ତୁ ବିସ୍କୁଟ୍‌ଫିସ୍କୁଟ୍ କୋଉଠି ଦୃଶ୍ୟମାନ ହେଲାନାହିଁ । ସ୍ଥାନେ ସ୍ଥାନେ ସ୍ୟାହି କୁଣ୍ଡ ଭଳି ଗାଢା ନେଳୀ ପାଣିର ପୋଖରୀ । କିନ୍ତୁ ଏ ଜାଗାଟା ପୂର୍ବର ''ଫାଉଂଟେନ୍ ପେଣ୍ଟ ପଟ'' ପରି ହରରଙ୍ଗୀ ନୁହେଁ । ପାଣିର ରଙ୍ଗ ଦିଶୁଥାଏ ଗଭୀର ସମୁଦ୍ରର ପାଣିଠୁ ଟିକେ ଅଧିକ ଗାଢନୀଳ । କିନ୍ତୁ ଏ ସ୍ଥାନର ନାଁ ଦିଆଯାଇଥାଏ ବିସ୍କୁଟ୍ ବେସିନ୍ ।

ଆମକୁ ସେଇ ରଙ୍ଗ ପୋଖରୀ ଗୁଡାକ ସହିତ ପରିଚୟ କରାଇଦେବାକୁ ଅଭିଜିତ କହିଲେ, ''ସେ ଯୋଉ ବଡ ପୁଲ୍ (ପୋଖରୀ)ଟା ଦିଶୁଚି ତା ନାଁ 'ସାଫାୟାର୍ ପୁଲ୍' ।

ସାଫାୟାର୍ ହେଲା ଗୋଟାଏ ଜାତିର ମଣି ପଥର– ରଙ୍ଗ ଗାଢ ନୀଳ । ଏ ପୋଖରୀଟା କେବେ ସୃଷ୍ଟି ହେଇଚି ଜାଣନ୍ତି ? ମୋଟେ ପଚାଶ ବର୍ଷ ତଳେ, ୧୯୫୯ରେ ଗୋଟାଏ ବଡ ଭୂମିକମ୍ପରୁ ଏହାର ସୃଷ୍ଟି । ସେଇ ଭୂକମ୍ପ ନାମ ହେଲା 'ହେବଗେନ୍ ଲେକ୍ ଆର୍ଥକ୍ୱେକ୍' । ଏ ବିସ୍କୁଟ୍ ବେସିନ୍‌ରେ ଦେଖିବେ ଆହୁରି ଅନେକ ଏମିତି ଝରଣା ବା ଗୈଜର । ସେଗୁଡ଼ାକର ନାଁ– 'ଜୁଏଲ୍ ଗୈଜର', 'ସେଲ୍ ଗୈଜର', 'ଆଭୋକା ସ୍ପ୍ରିଂ', 'ମଷ୍ଟାର୍ଡ ସ୍ପ୍ରିଂ' ଇତ୍ୟାଦି । କିନ୍ତୁ ଏ ଜାଗାର ନାମକରଣ ହେଇଚି ଏ ଗୈଜରମାନଙ୍କ ଯୋଗୁ ନୁହେଁ– ଜାଗାର ନାଁ 'ବିସ୍କୁଟ୍ ବେସିନ୍'– ଏଇ ନାଁରେ ଏ ଜାଗା ପ୍ରସିଦ୍ଧ । ଆସନ୍ତୁ ଦେଖିଆସିବା ସେ ଜାଗାଟାକୁ ଥରେ ।''

ସମସ୍ତେ କାର୍‌ରୁ ଓହ୍ଲେଇଲୁ । ପଦାକୁ ବାହାରି ଆସିବା ପରେ ଯାଇ ପୂରା ସ୍ଥାନଟିର ଚେହେରା ଦେଖାଗଲା ଭଲକରି । ଦେଖାଗଲା ସମଗ୍ର ଅଞ୍ଚଳଟା ଉପରେ ଫଡାଫଡା ହେଇ ଅବିକଳ ବିସ୍କୁଟ୍ ରଙ୍ଗର କ'ଣ ସବୁ ବିଛେଇହେଇ ପଡିଚି । ସେଗୁଡାକ ଅନ୍ୟ କିଛି ନୁହେଁ– କେବଳ ସଲ୍‌ଫର୍ । ସାରା ଅଞ୍ଚଳଟା ଉପରେ ଘସିଫଡା ଭଳି ବିଛେଇହେଇଥାଏ ଏଇ ଶୁଷ୍କ ଗନ୍ଧକ ବା ସଲ୍‌ଫର୍‌ର ଆସ୍ତରଣ । ଏହାରି ନାମ ବିସ୍କୁଟ୍ ବେସିନ୍ ।

ୟେଲୋଷ୍ଟୋନ୍ ପାର୍କର ବିସ୍କୁଟ୍ ବେସିନ୍ ଭିତରଟା ଅବଶ୍ୟ ଏକ ଉଦ୍ଭିଦ ଶୂନ୍ୟ ମରୁଭୂମି ନୁହଁ । ସ୍ଥାନେସ୍ଥାନେ ପାଇନ୍ ଗଛର ତୋଟା ସବୁ ରହିଥାଏ । ନିରାଟ ବାଲିଆ ଜାଗାରେ ଆଉ ଗ୍ରୀଷ୍ମକାଳର ମୁଣ୍ଡଫଟା ଖରାବେଳେ ସେ ତୋଟା ଦିଶୁଥାଏ ଆମ ଆଡର ନଈପଠାର ଲଙ୍କାଆମ୍ବ ତୋଟା ଭଳି । ଏଠାକାର ପାଇନ୍ ଗଛ ଗୁଡାକ ଡେଙ୍ଗା ନୁହେଁ; ଗେଡାଗେଡା ରୁଗୁଡା ରୁଗୁଡା ଆଉ ଭାରି କାଠୁଆ । ପିଲାମାନେ ଏଣେତେଣେ ବୁଲି କ'ଣ ସବୁ ଦେଖାଦେଖି କଲାବେଳେ ଗୋଟାଏ ପାଇନ୍ ତୋଟା ଭିତରେ ଏକ ଆରାମ ସ୍ଥାନ ପାଇ ମୁଁ ବସିପଡିଲି ଟିକେ । ଅନ୍ୟମାନେ ବାହାରିଗଲେ ବିସ୍କିଟ୍ ବେସିନ୍ ବୁଲି ଦେଖିବାକୁ । ସେମାନେ ଫେରିଆସି ମତେ ଖୋଜି ପାଇଲେ ନାଇଁ । ବହୁତ ଖୋଜାଖୋଜି ପରେ ହଠାତ୍ ଆନୁର ସିଆଣା ଆଖି ଦେଖିପାରିଲା ମତେ ଗୋଟାଏ ଅଦ୍ଭୁତ ଜାଗାରେ । ମୁଁ ବସିଥାଏ ଗୋଟାଏ ବୁଢା ପାଇନ୍ ଗଛ କୋରଡରେ । ସେ ଗଛଟା କେଜାଣି କୋଉ ବର୍ଷର ଝଡ ତୋଫାନରେ ଉପୁଡିପଡି ମରିଯାଇଥାଏ । ପତ୍ର ଗୋଟିଏ ବି ନଥାଏ । ଗଛରୁ ବକଳ ଛାଡିଯାଇଥାଏ ପୂରାପୂରି । ଦିଶୁଥାଏ ଗୋଟାଏ ଡାଇନୋସର୍ ଜାତିର କୋଉ ପ୍ରାଗୈତିହାସିକ ପ୍ରାଣୀର କଙ୍କାଳ ପରି ଦୂରରୁ । ଆନୁ ମତେ ସେ ଡାଇନୋସୋର୍ ପେଟ ଭିତରେ ଠାବ କରୁକରୁ ପାଇଗଲା । ଖୁସିରେ ପାଟି କଲା, ''ଦେଖ୍‌ରେ ଦେଖ୍ ! ଅଜା ତପସ୍ୟା କରୁଚନ୍ତି ଡାଇନୋସୋର୍‌ର ପେଟ ଭିତରେ !''

ଅଭିଜିତ ପୁଣି ହାତ ଘଡି ଦେଖିଲେ । ଘୋଷଣା କଲେ, ''ତମେମାନେ ଏଠି ଡାଇନୋସୋର ଦେଖିବ ନା 'ଓଲଡ୍ ଫେଥ୍ ଫୁଲ୍ ଗୈଜର' ଦେଖିବାକୁ ଯିବ ? ଆଉ

ରହିଲା ମୋଟେ ପନ୍ଦର ମିନିଟ୍ । ଏଠୁ ଚାରି ମାଇଲ୍ ଆଗକୁ ସେ ଜାଗା । କିନ୍ତୁ ରାସ୍ତାରେ କେତେ ଗାଡ଼ି ଦେଖୁଚଟି ? ଏ ସବୁ ଗାଡ଼ି ଛୁଟିଛନ୍ତି ସେଇଠିକି । ଆମେ ଠିକ୍ ସମୟରେ ନପହଞ୍ଚିଲେ କାର୍ ପାର୍କିଂ ପାଇଁ ଜାଗା ପାଇବାନାଇଁ ଜାଣିଥାଅ । ହରି ଅପ୍ !''

## ଓଲଡ୍ ଫେଥ୍‌ଫୁଲ୍ ଗୈଜର୍ : ବିଶ୍ୱର ପରମ ଆଶ୍ଚର୍ଯ୍ୟ

ଆମେ ପହଞ୍ଚିଗଲୁ ଠିକ୍ ସମୟରେ ଠିକ୍ ଜାଗାରେ ଯୋଉଠିକି ଧାଇଁଥାନ୍ତି ସମସ୍ତେ ସେଦିନ । ଆମେ ସେଠି ପହଞ୍ଚିଲା ବେଳକୁ ଗୋଟାଏ ବାଜି ଦଶ ମିନିଟ୍ ! ଆଉ ରହିଲା ମୋଟେ ପାଞ୍ଚ ମିନିଟ୍ ! ଅଭିଜିତଙ୍କ ସ୍ୱର ଶୁଭିଲା ଧଇଁସଇଁ । ସେ ଆମ ସମସ୍ତଙ୍କୁ କହିଲେ, ''ଦେଖିଲେଣି ! ସାରା ପୃଥିବୀର ଲୋକ ବୋଧେ ଆଜି ଏଠିକି ଉଠିଆସିଚନ୍ତି ! ହେ ଭଗବାନ୍ ! କେତେ ଗାଡ଼ି ! ମୁଁ କାର୍ ପାର୍କିଂ କରିବି କୋଉଠି ? ଆଉ ମୋଟେ ପାଞ୍ଚ ମିନିଟ୍ ବାକି ! ମୁଁ ଏଇଠି ରଖୁଚି କାର୍– ଆପଣମାନେ ସମସ୍ତେ ଦଉଡନ୍ତୁ ! ସେଠି ଦେଖନ୍ତୁ– ହଜାର ହଜାର ଲୋକ ଜମିଗଲେଣି ! ଆପଣମାନେ ସେଠି ଠେଲାପେଲା କରି ଯେକୌଣସି ପ୍ରକାରେ ଭିତରକୁ ପଶିଯାନ୍ତୁ । ଓଲଡ୍ ଫେଥ୍‌ଫୁଲ୍ ଗୈଜର ଚାରିପାଖେ ବାରିୟର୍ ଅଛି । ବାରିୟର୍ ପଛପାଖେ ଠିଆହେବେ– ଜମା ଆଗକୁ ଯିବେନାହିଁ କେହି ! ପିଲାମାନଙ୍କ ହାତ ଧରି କଂଟ୍ରୋଲ୍ କରିବା ନିହାତି ଦରକାର ଏଠି । ଧାଅଁ ସମସ୍ତେ । ମୁଁ କାର୍ ପାର୍କ କରି ଯାଉଚି ପଛେ ପଛେ. . . ''

ଆମେ କାର୍‌ରୁ ବାହାରିପଡ଼ି ଦୌଡ଼ିଲୁ ଘଟଣା ସ୍ଥଳକୁ । ସେତେବେଳକୁ ସ୍ଥାନଟା ଲୋକାରଣ୍ୟ । ଆମେ ତାଙ୍କରି ଭିତରେ ଗୁଞ୍ଜିଗାଞ୍ଜିହେଇ ଠିଆ ହେଇ ପଡିଲୁ । ଆନ୍ଲୁଟି ସାନପିଲା । ଲୋକଙ୍କ ମେଳରେ ପିଲାଟି ଆମର ଲୁଚିଯାଉଚି ଦେଖି ମୁଁ ତାକୁ ଟେକିନେଇ ମୋ କାନ୍ଧରେ ବସେଇଦେଲି । ଅଙ୍କିତା କୌଣସି ପ୍ରକାରେ ଠେଲି ପେଲି ହେଇ ଆଗ ଧାଡିକୁ ପଳେଇଲା । ଜୁଲି ଆଉ ନିରୁପମା ଭିଡ ଭିତରେ ଗୋଟାଏ ସୁବିଧା ଜାଗା ଖୋଜି ବାହାର କରିନେଇଥାନ୍ତି ନିଜପାଇଁ । ବାକି ରହିଲେ ଅଭିଜିତ । ସେ କୁଆଡେ ଗଲେ ଆମ ଆଖି ତାଙ୍କୁ ଖୋଜୁଥାଏ । ଏତିକିବେଳେ ତାଙ୍କ କଥା ଶୁଣାଗଲା, ''ମୁଁ ଠିକ୍ ଅଛି ! କ୍ୟାମେରା ରେଡି ! ଆପଣମାନେ ଏଣେ ତେଣେ ଚାହାନ୍ତୁନାଇଁ । ଆଉ ମାତ୍ର ଅଧ ମିନିଟିଏ ସମୟ . . .''

ହଜାର ହଜାର ଦର୍ଶକ ଠିଆ ହେଇ ଯାଇଥାନ୍ତି ଗୋଟାଏ କାଠବାଡ ପାଖରେ । ବାଡ ଆରପଟେ ବିରାଟ ଏକ ଖୋଲା ପଡିଆ । ପଡିଆ ମଝିରେ ଦିଶୁଥାଏ ଏକ ବିରାଟ ଗୋଲେଇ ଚକ୍କର– ପ୍ରାୟ ଶହେଫୁଟ ବ୍ୟାସର ଗୋଲେଇର କେନ୍ଦ୍ରରେ ଦିଶୁଥାଏ ଏକ ବିଶାଳ ଗର୍ତ୍ତ । ସେ ଗର୍ତ୍ତର ଆକୃତି ଦିଶୁଥାଏ ଏକ ବଡ ଅଜଗର ସାପ ମୁଖ ବ୍ୟାଦାନ କଲା ଭଳି । ତା ଭିତରଟା ଅନ୍ଧକାରମୟ । ସେଇ ଭୟଙ୍କର ଅନ୍ଧକାରମୟ ମୁଖ ଉପରେ

କେନ୍ଦ୍ରୀଭୂତ ହୋଇଥାଏ ହଜାର ହଜାର ମଣିଷଙ୍କ ଆଖି ! ସେଠି କଣ ଘଟିବାକୁ ଯାଉଚି ତାହାହିଁ ନିଜ ଆଖିରେ ଦେଖିବାକୁ ଆସିଥାନ୍ତି ଆମ ଭଳି ସାରା ପୃଥିବୀର ବିଭିନ୍ନ ଦେଶରୁ ଲୋକ । ସମସ୍ତଙ୍କ ଆଖି ସେଇ ପାତାଳ ଫୁଟା ଗାତ ମୁହଁ ଉପରେ । ସେଇ ଗାତରୁ କୁଆଡେ ମୁହଁ କାଢିବ ଆଜି ପୃଥିବୀର ଶ୍ରେଷ୍ଠ ଦର୍ଶନୀୟ ଗୋଟାଏ କଣ ଯାହାର ନାମକରଣ କରାଯାଇଥାଏ 'ଓଲଡ୍ ଫେଥ୍‌ଫୁଲ୍ ଗୈଜର' ! ଆଉ ଅଧ ମିନିଟ– କ'ଣ ଘଟିବାକୁ ଯାଉଚି ତା'ପରେ ଦେଖିବାକୁ ଅପେକ୍ଷାରତ ଥାଉ ଆମେ ।

ଆରମ୍ଭ ହେଇଗଲା କାଉଂଟ ଡାଉନ୍ ଦର୍ଶକମାନଙ୍କ ତୁଣ୍ଡରେ ।

ଶୁଭିଲା, "ଟେନ୍. . .ନାଇନ୍. . .ଏଇଟ୍. . ."

ଆନୁ ମୋ କାନ୍ଧ ଉପରେ ସବାର ହେଇଥାଏ । ମୋ କାନ ପାଖେ ମୁହଁ ରଖି ପଚାରିଲା ସେ, "ଅଜା ! ସତ ? ଯଦି ନହେଲା କିଛି ?"

ମୁଁ ତା ଗୋଡ ଦିଇଟାକୁ ମୋ ଛାତି ଉପରେ ଭିଡ଼ି ଧରିଥାଏ । ସେ ବସିଥାଏ ମୋ କାନ୍ଧରେ । ତାର ସରୁସରୁ ଲମ୍ବା ଗୋଡ ଦିଇଟାକୁ ଥାପୁଡେଇଦେଇ କହିଲି, "କାଉଂଟ ଡାଉନ୍ ଦ' ନମ୍ବର୍ସ". . .

ଆନୁ କାଉଂଟ୍‌ଡାଉନ୍‌ରେ ଯୋଗଦେଲା, "ସେଭେନ୍. . . ସିକ୍ସ. . . ଫାଇଭ୍. . . ଫୋର୍. . . ଥ୍ରି. . . ଟୁ. . . ଓ୍ୱାନ୍. . . ଜିରୋ !"

ହଠାତ୍ ଆମ ପାଦତଳ ମାଟି ଦୁଲୁକିବାକୁ ଲାଗିଲା । ମାଟି ତଳୁ ଶୁଭିଲା ଏକ ଅଶ୍ରୁତ-ପୂର୍ବ ଶବ୍ଦ– ଭୟଙ୍କର ଗର୍ଜନ ! ପରେ ପରେ ମସ୍ତବଡ ଏକ ଭୟଙ୍କର ଅହିରାଜ ସାପ ଫଣା ଟେକି କେଳା ପେଡିରୁ ବାହାରିଲା ପରି ମାଟି ତଳୁ ମୁଣ୍ଡ ଟେକିଲା 'ଓଲଡ ଫେଥ୍‌ଫୁଲ୍ ଗୈଜର' । ସୁସୁ ଗର୍ଜନରେ ଗଗନ ପବନ ମୁଖରିତ ହେବାକୁ ଲାଗିଲା । ଗୋଟାଏ ବିରାଟ ବରଗଛର ଗଣ୍ଡିପରି ମୋଟା ଗୈଜର୍ ଏଥର ଭୂଗର୍ଭରୁ ମୁଣ୍ଡ ଟେକି ଉର୍ଦ୍ଧ୍ୱକୁ ଆରୋହଣ କରି ଲାଗିଲା । ତାର ଉଚ୍ଚତା କେଉଁ ପର୍ଯ୍ୟନ୍ତ ବୃଦ୍ଧିପାଇବ ସେଇ ଦୃଶ୍ୟ ଦେଖିବାକୁ ସମସ୍ତେ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥାନ୍ତି । କାହାରି ମୁହଁରୁ ଉଁ କି ଚୁଁ ଶବ୍ଦ ବାହାରିବାକୁ ନାହିଁ । ଏକ ଅସ୍ୱାଭାବିକ ନୀରବତା ଅନୁଭବ କରିହଉଥାଏ ସେତେବେଳେ– ଘଟଣା ସ୍ଥଳରେ ହଜାରହଜାର ଜନତାଙ୍କ ଉପସ୍ଥିତି ସତ୍ତ୍ୱେ ! ଉତ୍‌ଫଣ ସର୍ପର ମୁଣ୍ଡ ତଥାପି ଉଠୁଥାଏ ଉପରକୁ ଉପରକୁ । ସୁସୁ ଗର୍ଜନ କରି ପ୍ରାୟ ଦେଢଶହ ଫୁଟ ଉଚ୍ଚତାକୁ ଛୁଇଁବା ପରେ ନିଜକୁ ସମ୍ପୂର୍ଣ୍ଣ ପ୍ରକଟ କଲା ସେ ଗୈଜର । ତାରି ଭିତରେ ତା ଫୁତ୍‌କାରରୁ ସବୁ ଦିଗକୁ ଛିଟିକିଚାଲିଥାଏ ଗଜଗଜ ହେଇ ଫେଣ ମିଶା ପୋଡା ସଲ୍‌ଫର୍ ଧୂଆଁ ଆଉ ତହତହ ତାତିଲା ପାଣି । ସତେକି ସେ କାଳ ସର୍ପ ତା ଥୁଥୁ ଫୁତ୍‌କାରରେ ଆମ ଆଡ଼କୁ ଲକ୍ଷ୍ୟକରି ଫିଙ୍ଗୁଥାଏ ଗରଳ !

"ଅଜା !" କାନ୍ଧ ଉପରୁ ଆନୁ ଡାକିଲା, "ମତେ ଡରମାଡୁଚି. . . ଏଇଟା କ'ଣ ଗୋଟାଏ ଜାଏଂଟ୍ ସ୍ନେକ୍ ?"

ମୋ ଛାତି ଉପରେ ଓହଳିଥିବା ତାର କୁନିକୁନି ଗୋଡ ଦୁଇଟିକୁ ଆହୁରି ଜୋର୍‌ରେ ଜାବୁଡ଼ି ଧରି କହିଲି, ''ଡରିବାରେ କ'ଣ ଅଛି ? ଏ ପରା ଆମର ଓଲଡ୍ ଫେଥ୍ ଫୁଲ୍ ଗୈଜର ! ଆମରି ପୃଥିବୀ ଗର୍ଭରୁ ବାହାରୁଚି ! ଦେଖୁଚୁ କେମିତି ଧୂଆଁ ? ଖାଲି ଷ୍ଟିମ୍ ନୁହେଁ– ଏଥିରେ ମିଶିଚି ସଲ୍‌ଫର୍ ଡାଇଅକ୍ସାଇଡ୍ ଗ୍ୟାସ୍ ! ଇସ, କି ପୁରୁକୁଟିଆ ଗନ୍ଧ !''

ସେତିକିବେଳେ ଶୁଣାଗଲା କୋଳାହଳ । ଛୋଟ ପିଲା ଆଉ ବୁଢ଼ାବୁଢ଼ୀମାନେ ଏତେ ବେଳ ଚୁପ୍‌ଚାପ୍ ଠିଆହୋଇଥିଲେ । ହଠାତ୍ ତାଙ୍କ ସମ୍ମିଳିତ ସ୍ୱର ଶୁଭିଲା, ''ଓ ମାଇ ଗଡ୍ ! ହାଲେଲୁଲା !''

ପରେପରେ ଆନନ୍ଦ ମୁଖରିତ ହୋଇପଡ଼ିଲା ଅଞ୍ଚଳଟା । ସମସ୍ତେ ଆରମ୍ଭକଲେ ଯେ ଯାହା ଭାଷା ଓ ଧର୍ମର ପ୍ରାର୍ଥନା । ସାରା ବିଶ୍ୱର କେତେକେତେ ଦେଶରୁ କେତେ କେତେ ଭାଷାଭାଷୀ, କେତେକେତେ ଧର୍ମାବଲମ୍ବୀ ଜନତା ଏକାବେଳକେ ନିଜନିଜ ଭାଷାରେ ନିଜନିଜର ପ୍ରାର୍ଥନାରେ ଖଣ୍ଡମଣ୍ଡଳ କମ୍ପେଇଦେଲେ । ସେ ଶବ୍ଦ ଶୁଣି ମୋ ରୁମ ଟାଙ୍କୁରି ଉଠିଲା । ମୁଁ ବି ବଡପାଟିରେ ପ୍ରାର୍ଥନା କଲି, ''ହରିବୋଲ !'' ମୋ ସାଙ୍ଗେ ସ୍ୱର ମିଳେଇଲା ଆନୁ । ଆଗପଟୁ ଶୁଭିଲା ଅଙ୍କିତାର ସ୍ୱର– ଜୟମା କାଳୀ । ପଛ ଆଡୁ ଶୁଭିଲା କାନ୍ଦ କାନ୍ଦ ସ୍ୱରରେ ଜୟ ଜଗନ୍ନାଥ ! ଆଇ ଆଉ ଜୁଲି– ।

''ଠିଆହେଇଥାଅ– ଜାଗା ଛାଡ଼ନାଇଁ,'' ଅଭିଜିତଙ୍କ ସ୍ୱର ଶୁଭିଲା, ''ଏଭଳି ଚାଲିବ କିଛି ସମୟ– ପାଞ୍ଚରୁ ଏଗାର ମିନିଟ୍ ପର୍ଯ୍ୟନ୍ତ ଚାଲିପାରେ ଏ ଉଦ୍‌ଗୀରଣ । ୧୪ ହଜାରରୁ ୩୨ ହଜାର ଲିଟର ଫୁଟନ୍ତା ସଲ୍‌ଫ୍ୟୁରସ୍ ଓ୍ୱାଟର୍ ଡିସ୍‌ଚାର୍ଜ ହେବ ବର୍ତ୍ତମାନ ! ଏତେ ବଡ ଗୈଜର ପୃଥିବୀରେ ଆଉ କୋଉଠି ନାହିଁ ! ପ୍ରତିଦିନ ନିର୍ଦ୍ଦିଷ୍ଟ ସମୟରେ ହଜାର ହଜାର ବର୍ଷ ଧରି ଏ ଗୈଜର ବିଶ୍ୱାସନୀୟ ଭାବେ ତା ଧର୍ମ ପାଳିଆସିଚି । ସେଇଥି ପାଇଁତ ଯା ନାଁ– ଓଲଡ୍ ଫେଥ୍‌ଫୁଲ୍ !''

ଆମେ ଠିଆହେଇ ରହିଲୁ । ପ୍ରାୟ ଦଶମିନିଟ୍ ପର୍ଯ୍ୟନ୍ତ ଓଲଡ୍ ଫେଥ୍‌ଫୁଲ୍ ବର୍ଷିଚାଲିଲା ।

ଆସ୍ତେ ଆସ୍ତେ ଅହିରାଜର ଫଣା ତଳକୁ ଖସିଲା । ଜଳସ୍ତମ୍ଭର ଉଚ୍ଚତା କମିକମି ଆସିଲା । ଶେଷରେ ପେଡ଼ି ଭିତରକୁ ଆପଣା ଛାଏଁ ସେ ମହାସର୍ପ ଅପସରିଗଲା । ସମବେତ ଦର୍ଶକଙ୍କ ଧନ୍ୟବାଦ ସ୍ଲୋଗାନ୍‌ରେ ୟେଲୋଷ୍ଟୋନ୍ ପ୍ରକମ୍ପିତ ହେଲା ।

''ଯା ପରେ ପୁଣି କେତେବେଳେ ହେବ ଏମିତି ?'' ଆନୁର ଆଗ୍ରହ କମିନଥାଏ ସେ ପର୍ଯ୍ୟନ୍ତ ।

''ହଁ,'' ପଛପଟୁ ଅଭିଜିତ୍‌ଙ୍କ ସ୍ୱର, ''ପୁଣି ପରେ– ତାର ଗୋଟାଏ ଟାଇମ୍ ଟେବ୍‌ଲ୍ ଅଛି । ଆମେ ପୁଣି ଆସି ଦେଖିପାରିବା । ଆଜି ଆଉ ଥରେ ହେବାର ଅଛି ସାଢେ ତିନି କିମ୍ବା ଚାରିଟାରେ– ଚାଲ ବୁଝିବା'' ।

ଝିଅକୁ ମୋ କାନ୍ଧ ଉପରୁ ତଳକୁ ଓହ୍ଲେଇଦେଲା ଜୁଲି । କହିଲା, "ଚାଲ ଖାଇବ ସମସ୍ତେ । କେଡ଼େ ସୁନ୍ଦର ଜାଗା ଏ ପାର୍କ ସତେ !"

ଆମେ ସମସ୍ତେ ଏକାଠିହେଇ ବାହାରିଲୁ ଖାଇବା ପାଇଁ ଜାଗା ଅନୁସନ୍ଧାନରେ । ପାର୍କ ଭିତରେ ଦର୍ଶକମାନଙ୍କ ଖିଆପିଆ ସୁବିଧା ପାଇଁ ସ୍ଥାନେ ସ୍ଥାନେ ପାଇନ୍ କାଠ ପଟାରେ ତିଆରି ଲଞ୍ଚ ଟେବ୍ଲ ଆଉ ବେଞ୍ଚ୍ ମାନ ପଡ଼ିଥାଏ ଗଛ ଆଢୁଆଳରେ । ଆମେ ଚାଲିଲୁ ଗୋଟାଏ ଟେବ୍ଲ ପାଖକୁ । ଲଞ୍ଚ୍ ପ୍ୟାକେଟ୍ ଯତ୍ନର ସହିତ ଗତରାତିରୁ ପ୍ରସ୍ତୁତ କରାଯାଇଥାଏ । ନିରୁପମା ଓ ଜୁଲି ସେଥିପାଇଁ ପୁରି ଗୁଗୁନି ପିଠା ମିଠା ସହିତ ପ୍ରଚୁର ଫଳ ଓ ଦହିର ବନ୍ଦୋବସ୍ତ କରିଥାନ୍ତି । ପିଇବା ପାଇଁ କୋକ୍ ଓ ପାଣି ବୋତଲ ମଧ୍ୟ ପ୍ରଚୁର ପରିମାଣରେ ମହଯୁତ୍ ଥାଏ ।

ବାହାରେ ଦି'ପହର ସୂର୍ଯ୍ୟତାପର ଜ୍ୱାଳା ଅସହ୍ୟ ମନେହେଉଥିଲେ ମଧ୍ୟ ପାର୍କ ଭିତରଟା ଛାୟାଶୀତଳ । ବାସ୍ତବରେ ଏ ଅଞ୍ଚଳଟା ଏକ ପ୍ରାଚୀନ ଅରଣ୍ୟ । ଘଞ୍ଚ ମନୋରମ ପାଇନ୍ ବୃକ୍ଷର ଏକ କୁଞ୍ଜରେ ବସି ଆମେ ଆରାମରେ ମଧ୍ୟାହ୍ନ ଭୋଜନ ସମାପ୍ତ କଲୁ । ଆଖ ପାଖରେ ଆହୁରି ଅନେକ ଟୁରିଷ୍ଟ୍ ପରିବାର ନିଜନିଜ ଟେବ୍ଲରେ ବସି ଖିଆପିଆ ଓ ଗପସପ କରୁଥାନ୍ତି ।

ଲଞ୍ଚ ସମାପ୍ତ ହେବା ପରେ ଆମେ ପୁଣି ବାହାରିଲୁ ଏଇ ଅପର ଗୈଜର ବେସିନ୍‌ର ଆହୁରି କେତେ ଗୁଡ଼ିଏ ଜାଗା ବୁଲିବା ଉଦ୍ଦେଶ୍ୟରେ ।

ଓଲଡ୍ ଫେଥ୍‌ଫୁଲ୍‌ର ଚାରିପାଖରେ ଏକ ବ୍ୟାପକ କ୍ଷେତ୍ର ଉପରେ ଆଖି ବୁଲାଇ ଦେଖିଲୁ ସବୁଠାରେ ମାଟି କୁହୁଳୁଚି ଆଉ ଅନେକ ସ୍ଥାନରେ ଉଠୁଚି ଧଳାଧୂଆଁର କୁଣ୍ଡଳୀ । ସମଗ୍ର ଅଞ୍ଚଳର ବାୟୁମଣ୍ଡଳ ସଲ୍‌ଫର୍‌ର ଫୁରୁକୁଟିଆ ଗନ୍ଧରେ ଭରପୂର । ପୁଣି ସ୍ଥାନେସ୍ଥାନେ ମାଟି ଉପରେ ବଡ଼ବଡ଼ କୋରଡ଼ ଭିତରେ ଦିକ୍‌ଦିକ୍‌ହେଇ ନିଆଁ ଜଳିବା ଦୃଶ୍ୟ ଦେଖି ବୁଝିହେଉଥାଏ ସେସବୁ ସ୍ଥାନରେ Dormant Volcano (ସୁପ୍ତ ଆଗ୍ନେୟଗିରି) ଗୁଡ଼ିକର କ୍ରିୟାକଳାପ ତଥାପି ଚାଲୁରହିଥାଏ । ସେଇ ଜାଗା ଗୁଡ଼ିକୁ ବୁଲି ଦେଖିବାରେ ବିପଦ ନିଶ୍ଚୟ ରହିଥାଏ; କିନ୍ତୁ ଆମେ ଦେଖିଲୁ ସେଇ ଅଞ୍ଚଳ ଭ୍ରମଣ ଲକ୍ଷ୍ୟରେ ଦଳଦଳ ଦର୍ଶକ ଧାଡ଼ିବାନ୍ଧି ଚାଲିଲେଣି । ଆମେ ମଧ୍ୟ ଯୋଗଦେଲୁ ସେମାନଙ୍କ ସାଥିରେ ।

ଯାତ୍ରା ଆରମ୍ଭ ପୂର୍ବରୁ ରାସ୍ତା କଡରେ ଆଖିଦୃଷ୍ଟିଆ ଭାବେ ବିଜ୍ଞାପିତ ହେଇଥିବା ଏକ ନୋଟିସ୍ ବୋର୍ଡ ଉପରେ ମୋ ଆଖି ପଡିଲା । ସେଥିରେ ଦର୍ଶାଯାଇଥାଏ ଆମର ଗନ୍ତବ୍ୟ ସ୍ଥଳର ସମ୍ଭାବ୍ୟ ବିପଦ ଓ ସତର୍କତା ସମ୍ବନ୍ଧରେ ବହୁ ଜରୁରି ତଥ୍ୟସବୁ । ମୁଖ୍ୟ ସତର୍କତା ସମ୍ପର୍କରେ ସୂଚନା ଦିଆଯାଇଥାଏ ବଡବଡ ଲାଲ୍ ଅକ୍ଷରରେ । ଲେଖା ଥିଲା—: ପାଦତଳ ମାଟିକୁ ବିଶ୍ୱାସକରନା । ଆଖିକୁ ଟାଣ ଦେଖାଯାଉଥିବା ମାଟି ପ୍ରକୃତରେ ଭାରି ନରମ । ଚୋରାବାଲିରେ ଗୋଡ ପଡ଼ିଗଲେ ଯେପରି ପଥଚାରି ଭୂଗର୍ଭକୁ ଧସିପଡ଼ିବାର ଆଶଙ୍କା

ରହିଥାଏ ଏଇ ଆଗ୍ନେୟ କ୍ଷେତ୍ରରେ ମଧ୍ୟ ସେଇ ବିପଦର ଆଶଙ୍କା ରହିଚି । ପାଦତଳ ମୃତ୍ତିକାର ତଳେତଳେ ପ୍ରବାହିତ ତହତହ ତାତିଲା କାଦୁଅମିଶା ପଙ୍କପାଣି ଯେକୌଣସି ସମୟରେ ମାଟି ଉପରକୁ ଛିଟିକି ପଡ଼ିବା ଅସମ୍ଭବ ନୁହେଁ । ସେଥିପ୍ରତି ସର୍ବଦା ସତର୍କତା ଅବଲମ୍ବନ କରିବା ଉଚିତ୍ !

ଏହା ସହିତ ଭ୍ରମଣକାରୀର ନିରାପତ୍ତା ପାଇଁ ପାର୍କ ପକ୍ଷରୁ ସୁଚିନ୍ତିତ ବ୍ୟବସ୍ଥା ମଧ୍ୟ କରାଯାଇଥିବା ଲକ୍ଷ୍ୟକଲି । ଚଲାପଥଗୁଡ଼ିକୁ ବିପଦମୁକ୍ତ ରଖିବା ଉଦ୍ଦେଶ୍ୟରେ ଏଠାରେ ପଥଚାରୀମାନଙ୍କ ପାଇଁ ଯାତ୍ରାପଥ ଗୁଡିକ ଉପରେ ମଜଭୁତ କାଠପଟା ବିଛାଯାଇ ନିର୍ମାଣ କରାଯାଇଥାଏ ଓ ରାସ୍ତାର ଦୁଇପାଖେ କାଠବାଡା ଦିଆଯାଇଥାଏ । ସ୍ଥାନେ ସ୍ଥାନେ ସତର୍କତା ଅବଲମ୍ବନ ଉଦ୍ଦେଶ୍ୟରେ ସୂଚନା ଓ ନିର୍ଦ୍ଦେଶ ଦିଆଯାଇଥାଏ– ''କାଠପଟା ବିଛା ଯାଇଥିବା ମାର୍ଗକୁ ପ୍ରତି ପଦକ୍ଷେପରେ ଅନୁସରଣ କରନ୍ତୁ । ମାଟି ଉପରକୁ ଆଦୌ ଓହ୍ଲାନ୍ତୁ ନାହିଁ । ତା ପାଖରେ ବଡବଡ ଅକ୍ଷରରେ ମଧ୍ୟ ଲେଖାଥାଏ, ''ଏହି ନିର୍ଦ୍ଦେଶକୁ ଅମାନ୍ୟ କରିବା ଫଳରେ ବିଗତ ବର୍ଷମାନଙ୍କରେ ଏପରି ଅନେକ ଦୁର୍ଘଟଣା ଘଟିଯାଇଚି ଏ ଅଞ୍ଚଳରେ ଏବଂ ବହୁ ଅମୂଲ୍ୟ ଜୀବନ ହାନି ଘଟିଛି ।''

ଯାତ୍ରା ଆରମ୍ଭ ହେଲା । ୟେଲୋଷ୍ଟୋନ୍ ପାର୍କରେ ଆମ ପାଇଁ ଆଜି ଅପରାହ୍ଣର ସେଇ ଯାତ୍ରାଟି ନିଶ୍ଚିତ ଭାବେ ଥିଲା ଏକ ବୈଜ୍ଞାନିକ ଅଭିଯାନ (Scientific Expedition) ।

## ଜାଏଁଟେସ୍ ଗେଜର (The Giantess Geyser)

ଆମର ପ୍ରଥମ ଅଭିଯାନର ଲକ୍ଷ୍ୟ ସ୍ଥଳ ଥିଲା ଦ' ଜାଏଁଟେସ୍ ଗୈଜର । ଆମେ ସେଇ ଗେଜର ପାଖରେ ପହଞ୍ଚି ଦେଖିଲୁ ଅନେକ ସହଯାତ୍ରୀ ସ୍ଥାନଟିକୁ ଘେରିଯାଇଛନ୍ତି । ସେଇ ଦଳ ସହିତ ସାମିଲ ହେଉଥିବା ଜଣେ ଅଭିଜ୍ଞ ବ୍ୟକ୍ତିଙ୍କ କଥା କାନରେ ପଡ଼ିଲା । ସେ କହୁଥାନ୍ତି ''ଆପଣମାନଙ୍କୁ ଟିକେ ସମୟ ଅପେକ୍ଷା କରିବାକୁ ହବ ଏଠି । ମତେ ଲାଗୁଚି ଖୁବ୍ ଅଳ୍ପ ସମୟ ଭିତରେ ଆମେମାନେ ହୁଏତ ଆଜି ଦେଖିପାରିବା ଏ ଜାଏଁଟେସ (ଅସୁରୁଣୀ)ର ଆବିର୍ଭାବ । ହଁ ଠିକ୍ ସମୟରେ ପହଞ୍ଚି ପାରିଚେ ଆମେ । ଅଳ୍ପ ସମୟ ଆଉ– ଶୁଣୁଚନ୍ତି ଶବ୍ଦ ମାଟିତଳୁ ।''

ଆମେ ସମସ୍ତେ କାନଡେରି ଶୁଣିଲୁ । ସେତେବେଳେ ଆମ ପାଦ ତଳ ମାଟି ଭିତରେ ଗୋଟାଏ ବଡ ଡ୍ରମ୍ ବାଜିଲା ଭଳି ଶବ୍ଦ ଶୁଣାଗଲା । ସେଇ ଶବ୍ଦ ସହିତ ଆମ ପାଦ ତଳ ମାଟି ମଧ୍ୟ ଜୋର୍‌ରେ ଦୁଲୁକି ଉଠିଲା । କ'ଣ ଭୂମିକମ୍ପ ହେବ ନା କ'ଣ ? ଅବିକଳ ସେମିତି ଥରିଲା ପାଦତଳ ମାଟି । ପରେ ପରେ ଏକ ବିରାଟ ବିସ୍ଫୋରଣ ସହିତ ଭୂଗର୍ଭରୁ ମୁଣ୍ଡ ଟେକିଲା ଏକ ବିରାଟ ଗୈଜର । ଫୁଟନ୍ତା ପାଣିର ବାମ୍ପ ଭିତରୁ ଏକ ବିଶାଳ ସ୍ତମ୍ଭାକୃତି ଗୈଜରର ଆବିର୍ଭାବ ଦେଖି ଅଧିକାଂଶ ଦର୍ଶକ ଭୟଭୀତ ହୋଇପଡ଼ିଲେ । ଜଣେ

ମହିଳାଙ୍କ ଦେହ ଉପରେ ଗରମ ପାଣିର ଛିଟିକା ମଧ୍ୟ ପଡ଼ିଲା । ସେ ଚିତ୍କାରକରିଉଠିଲେ ।

''ଘୁଞ୍ଚ ଯାଆନ୍ତୁ ଘୁଞ୍ଚ ଯାଆନ୍ତୁ । କିନ୍ତୁ ମନେରଖନ୍ତୁ ଏ ଜାଏଁଟେସ୍ ଆଜି ପର୍ଯ୍ୟନ୍ତ କାହାରି କିଛି କ୍ଷତି କରିନାହିଁ । ୟା'ର ଗୁଡ୍ ରେକର୍ଡ ଅଛି ପାର୍କ ଅଥରିଟିଙ୍କ ପାଖରେ । ଦେଖନ୍ତୁ କେତେ ଉଚ୍ଚକୁ ଫିଙ୍ଗୁଚି ପାଣି । ଆହୁରି ଉଚ୍ଚକୁ ଉଠିବ । ଥରେଥରେ ଦୁଇଶହ ଫୁଟ ଯାକେ ମଧ୍ୟ ପାଣି ଫିଙ୍ଗିପାରେ ଏ ଜାଏଁଟେସ୍ । ତେବେ ସବୁଦିନେ ନୁହେଁ– ବର୍ଷକ ଭିତରେ ଖୁବ୍ ବେଶୀରେ ଛ'ଥର ନହେଲେ ଖୁବ୍ କମ୍‌ରେ ଦୁଇଥର ଜାଏଁଟେସ୍‌ର ଆବିର୍ଭାବ ଘଟେ ବୋଲି କହନ୍ତି । ଆମେମାନେ ସତରେ ଭାରି ଭାଗ୍ୟବାନ୍– ଆଜି ଏ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଲା ଅସୁରୁଣୀ କୃପାରୁ ।'' ଗାଇଡ୍ ଭଦ୍ରଲୋକଙ୍କର ସବ୍‌ଜାନତା କଥା ଶୁଣି ମୁଁ ଲୋକଟିକୁ ଦେଖିବାକୁ ଆଗ୍ରହୀ ହେଲି ।

ଲୋକ ଗହଳି ଭିତରେ ଆଖି ବୁଲେଇ ଦେଖିଲି ଜଣେ ଲୋହିତ ଭାରତୀୟଙ୍କ ପରି ଚେହେରା ଓ ବେଶପୋଷାକର ବ୍ୟକ୍ତି ଆମ ଦଳରେ ଉପସ୍ଥିତ ଅଛନ୍ତି । ମୁଁ ସେ ଭଦ୍ରବ୍ୟକ୍ତିଙ୍କୁ ଭଲକରି ଦେଖିବା ପାଇଁ ନିକଟତର ହେଲି । ତାଙ୍କ ଚେହେରା ଓ ବେଶ-ପୋଷାକରୁ ମନେହେଲା ସେ ଜଣେ ସ୍ଥାନୀୟ ଆମେରିକାନ୍ ଭାରତୀୟ ଅଧିବାସୀ । ଲୋକଟି ସହିତ ପରିଚିତ ହେବା ଆଶାରେ ମୁଁ ତାଙ୍କୁ ମୋ ପରିଚୟ ଦେଲି । କହିଲି– ଆମେ ଭାରତ୍‌ରୁ ଆସିଚୁ । ଆପଣ କଣ ଏଠାକାର ଆମେରିକାନ୍ ଭାରତୀୟ କି । ଆପଣଙ୍କ ପରିଚୟ ପାଇଲେ ଖୁସି ହୁଅନ୍ତି ।

ସେ ତାଙ୍କ ପରିଚୟ ଦେଲେ । ନିଜ ନାମ ପ୍ରକାଶ କଲାପରେ କହିଲେ, ''ଆମେମାନେ ଗୋଇଂସ୍ନେକ୍ ଆଦିବାସୀ ସମ୍ପ୍ରଦାୟର ଲୋକ ।''

''ଗୋଇଂ ସ୍ନେକ୍?''

''ୟେସ୍, ଏ ଆମର ଟୋଟେମ୍ ନେମ୍ । ଏକଦା ଏ ଇଲାକାର ରାଜା ଥିଲୁ ଆମେ । ବର୍ତ୍ତମାନ ଆମେ ଆମ ନିଜ ରାଜ୍ୟରେ ଯାଯାବର । ମୁଁ ଏଇ ପାର୍କରେ ଗାଇଡ୍ କାମ କରି ପେଟ ପୋଷେ । ଆପଣମାନଙ୍କର ଗାଇଡ୍ ଦରକାର କି ?''

ମୁଁ ଅଭିଜିତଙ୍କ ସହିତ କଥାବାର୍ତ୍ତା ହେଲି । ଲୋକଟିକୁ ସାଙ୍ଗରେ ନେଇ ଆଜିର ପାର୍କବୁଲିବା ଆମ ପାଇଁ ସହଜ ହେବ ବିଚାରି ତାଙ୍କୁ ଜଣାଇଦେଲି । ପରେ ପରେ ଆମେ ଚାଲିଲୁ ଆଗକୁ ଆସୁଥିବା ଦର୍ଶନୀୟ ସ୍ଥାନ ଦେଖିବାକୁ ।

## ଡବ୍‌ଲେଟ୍ ପୁଲ୍ ଗେଜର (Doublet Pool Geyser)

ମିଃ. ଗୋଇଂ ସ୍ନେକ୍ ଜଣେ ମଜାଦାର ଲୋକ ଭଳି ଜଣାପଡୁଥାନ୍ତି । ସେ ଆମକୁ ବାଟ କଢେଇବାର ଦାୟିତ୍ୱ ନେଲା ପରେ ଆମେ ବେଶ ଆଶ୍ୱସ୍ତ ଅନୁଭବ କଲୁ । ପ୍ରତି କଥାରେ ଭଦ୍ରଲୋକ ଜୋକ୍ କରୁଥାନ୍ତି ଓ ଚାରିଆଡେ ଉଠୁଥିବା ନିଆଁ ଧୂଆଁକୁ ଦେଖି ଆମେ

ଭୟକରୁଥିବା ଦେଖି ସେ ପରିହାସରେ ଆମର ଅଯଥା ଆଶଙ୍କାକୁ ଫୁଙ୍କି ଉଡେଇ ଦେଲା ପରି କହୁଥାନ୍ତି– "ହ୍ୱାଇଟ୍ ମ୍ୟାନ୍ ଏ ଜାଗାକୁ କହନ୍ତି ସାଟାନ୍‌ର ଘର । କିନ୍ତୁ ଆମ ଚେରୋକି ଭାଷାରେ ଏଇ ଜାଗା ହେଲା ସୃଷ୍ଟିର କେନ୍ଦ୍ର । ଯେତେବେଳେ ପୃଥିବୀ ଗଭୀର ଜଳରେ ବୁଡ଼ିଯାଇଥିଲା ତାକୁ ଆମ ଗଡ୍ 'Water Beetle' ରୂପରେ ପିଠିରେ ବୋହି ଟେକିଆଣିଲେ ପାଣି ଉପରକୁ । ଆମର ସେଇ ଗଡ୍‌ଙ୍କ ନାମ Dayunishi । ଆମ ବିଚାରରେ ୟେଲୋଷ୍ଟୋନ୍ ହଉଚି ସୃଷ୍ଟିର ଏନ୍ତୁଡ଼ିଶାଳ (Birth place) । ଆମ ମତରେ ଗଡଙ୍କ ସୃଷ୍ଟି ପ୍ରକ୍ରିୟା ଶେଷ ହୋଇ ନାହିଁ– ଚାଲିଚି ।"

ସେତେବେଳକୁ ଆମେ ପହଞ୍ଚିଥାଉ ଗୋଟିଏ ଜାଆଁଳା ପୋଖରୀ ଭଳି ଦିଶୁଥିବା ଏକ ଗୈଜର ପାଖରେ । ଗୋଇଂ ସ୍ନେକ୍ ସେ ଦୁଇ ଜଳାଶୟ ସହିତ ଆମର ପରିଚୟ କରାଇ ଦେଲେ– "ଏ ହେଲା ଡବଲ୍‌ପୁଲ୍ ଗୈଜର । ପୂର୍ବ ଜନ୍ମରେ ଏ ଦୁହେଁ ଥିଲେ ଜାଆଁଳା ଭଉଣୀ ଦୁଇଟି । ସେମାନେ ପରସ୍ପରକୁ ନିବିଡ ଭାବେ ଭଲପାଉଥିଲେ । ମୃତ୍ୟୁପରେ ଗଡ ଯେତେବେଳେ ସେମାନଙ୍କୁ ଅଲଗା ଅଲଗା ଜାଗାରେ ଜନ୍ମ ଦବାକୁ ବସିଲେ ଭଉଣୀ ଦୁହେଁ ଏତେ ବିକଳ ହୋଇ କାନ୍ଦିଲେ ଯେ ଗଡଙ୍କର ଦୟା ହେଲା । ସେଦୁହିଙ୍କୁ ଏଇ ୟେଲୋଷ୍ଟୋନ ପାର୍କରେ ପାଖାପାଖି Double pool କରି ଜନ୍ମଦେଲେ ।"

ଗୋଇଂ ସ୍ନେକଙ୍କ ଏଭଳି ବ୍ୟାଖ୍ୟା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ, କାରଣ ମୁଁ ଜାଣିଥିଲି ଲୋହିତ ଭାରତୀୟଙ୍କ ପୁରାଣ ସହିତ ଆମ ଭାରତୀୟ ପୁରାଣର କେତେକ ସାମଞ୍ଜସ୍ୟ ଅଛି– ବିଶେଷତଃ ସୃଷ୍ଟି ତତ୍ତ୍ୱରେ ଆମର ଯେପରି ଅବତାରବାଦ ଅଛି– କଚ୍ଛପ ଅବତାରରେ ଭଗବାନ ବିଷ୍ଣୁ ପୃଥିବୀକୁ ଜଳରୁ ଉଦ୍ଧାର କରିଥିବା ପରି ପୌରାଣିକ କାହାଣୀ ଲୋହିତ ଭାରତୀୟମାନଙ୍କର ମଧ୍ୟ ଅଛି ।

ତେବେ ବୁଝାପଡ଼ିଲା ଜଳାଧାର ଦୁଇଟି ପରସ୍ପରର ପାଖାପାଖି ହୋଇ ରହିଥିବାରୁ ବୋଧହୁଏ ଏ ଗୈଜରର ନାମକରଣ କରାଯାଇଥାଏ ଏହିପରି 'ଡବଲ୍ ପୁଲ୍' ବା ଜାଆଁଳା ଭଉଣୀ । କିନ୍ତୁ ଏ ଜଳାଧାର ଦୁଇଟି ମଧ୍ୟ ଏମିତି ସେମିତି ଦୁଇଟା ପୋଖରୀ ନୁହନ୍ତି । ଏ ଦୁହେଁ ଏତେ ଆଖିଦୃଷିଆ ହୋଇଥିବାର କାରଣ କେବଳ ଜଳର ଗାଢ଼ନୀଳ ବର୍ଣ୍ଣ ନୁହେଁ– ଜଳାଧାର ଦ୍ୱୟକୁ କିଏ ଯେମିତି ଯୋଡ଼ିଏ ସମ୍ବଲପୁରୀ ଖଣ୍ଡୁଆ ପାଟଶାଢ଼ି ପିନ୍ଧେଇଦେଇଥାଏ, ଅବିକଳ ସେମିତି ବିଚିତ୍ର କାରୁକାର୍ଯ୍ୟମୟ ଦିଶୁଥାଏ ପୋଖରୀ ଦୁଇଟିକୁ ସୀମାବଦ୍ଧ କରି ରଖିଥିବା କୌଣସି ରଙ୍ଗିନ୍ ପଦାର୍ଥର ବନ୍ଧବାଡ ।

ଅଭିଜିତ ହସହସ ମୁଖରେ ସେଇ ବାନ୍ଧଣି ଆଡକୁ ଆଙ୍ଗୁଠି ଦେଖେଇ କହିଲେ– ଏ ଜିନିଷ କ'ଣ ଜାଣନ୍ତି ? Bacterial deposits ! Very thick deposits of certain types of organisms !

## ପ୍ଲୁମ୍ ଗେଜର୍ (Plume Geyser)-

ପରେପରେ ଆମେ ଚାଲିଲୁ ଆହୁରି ଆଗକୁ । କିଛି ବାଟ ଯିବା ପରେ ଭେଟିଲୁ ପୁଣି ଏକ ଅଦ୍ଭୁତ ଗୈଜର– ପ୍ରାୟ ପଚିଶ ଫୁଟ ଉପରକୁ ଗୈଜର ମୁଣ୍ଡ ଟେକିଥାଏ ।

''ବାବା ! ଏଇ ଦେଖ ଦେଖ– ଏଇଟା କେମିତି ଦିଶୁଚି କହିଲ ? ଅବିକଳ ଗୋଟାଏ ମୟୂରର ଚୂଳ ଭଳି ନୁହଁ ?''

''ଏଇଟିର ନାମ ପ୍ଲୁମ୍ ଗେଜର''– ଗୋଇଂସ୍ନେକ୍ ଆମକୁ ଗେଜରର ଇତିହାସ ବୁଝେଇଲେ, ''ପ୍ରତି କୋଡିଏ ମିନିଟ୍‌ରେ ଏ ଗୈଜର ମୁହଁ କାଢେ ମାଟି ତଳୁ ଆଉ ଚାରି ପାଞ୍ଚଥର ଫୁତ୍‌କାର କଲା ପରେ ପୁଣି ପଶିଯାଏ ମାଟି ଭିତରକୁ । ଏ ଗୈଜର ବେଶୀ ପୁରୁଣା ନୁହେଁ– ମୋଟେ ଅଶୀ ନବେ ବର୍ଷ ତଳେ ବାହାରଚି– ୧୯୨୨ରେ ।''

ଏହାପରେ ସେ ଆମକୁ ପଚାରିଲେ, ''ଆଚ୍ଛା, ଇଣ୍ଡିଆରେ ପରା ମୟୂର ଅଛନ୍ତି ? ତାଙ୍କ ପ୍ଲୁମ୍ (ଚୂଳ) ନା ଟେଲ୍ (ପୁଚ୍ଛ) କୋଉଟା ବେଶୀ ସୁନ୍ଦର ?''

''ମୟୂରର ଟେଲ୍ ବେଶୀ ସୁନ୍ଦର !'' ଅଙ୍କିତା ଦେଖିଥିଲା ମୟୂରମାନଙ୍କୁ ତାର ଦିଲ୍ଲୀ ରହଣି ବେଳେ । ସେ ସେତେବେଳେ ଦିଲ୍ଲୀର ଏକ ପବ୍ଲିକ୍ ସ୍କୁଲରେ ପଢୁଥିଲା । ତାଙ୍କ ସ୍କୁଲ୍ ଆଖପାଖରେ ଥିଲେ ବହୁତ ମୟୂର । ଅଣ୍ଡିରା ମୟୂରମାନେ ମେଘ ଦେଖିଲେ ପୁଚ୍ଛ ମେଲେଇ ନାଚିବା ସେ ଅନେକ ଥର ଦେଖିଥାଏ । ଗୋଇଂସ୍ନେକ କହିଲା, ''ଆଚ୍ଛା ତମେମାନେ ମେକ୍ସିକୋର 'ପାରାଡାଇଜ୍ ବାର୍ଡ' ନାଁ ଶୁଣିଚ ? ସେମାନେ ସିନା ଦେଖିବାକୁ କଳା, କିନ୍ତୁ ଏଡେ ସୁନ୍ଦର ଡ୍ୟାନ୍ସ କରନ୍ତି ଯେ ରୁସିଆର ବାଲେ ଡ୍ୟାନ୍ସରମାନେ ବି ସେମାନଙ୍କ ପାସଙ୍ଗରେ ପଡ଼ିବେ ନାହିଁ । ପାରାଡାଇଜ ଚଢ଼େଇ ମୁଣ୍ଡରେ ଦୁଇଟା ଲମ୍ବା ଲମ୍ବା ଚୂଳ ଥାଏ । ଚୂଳ ଦୁଇଟା କେତେ ଲମ୍ବ ଜାଣିଚ ପିଲେ ? ସେମାନଙ୍କର ପ୍ଲୁମ୍ ଲମ୍ବିଥାଏ ମୁଣ୍ଡରୁ ଟେଲ ପର୍ଯ୍ୟନ୍ତ । ଏ ପ୍ଲୁମ୍ ଗୈଜରଟାର ପାଣି ଦିଶୁଚି ଅବିକଳ ଆମ ସାଉଥ୍ ଆମେରିକାର ପାରାଡାଇଜ୍ ବାର୍ଡର ଚୂଳ ଭଳି ।''

ପ୍ରାୟ ଦୁଇ ତିନି ମିନିଟ୍ ଭିତରେ ଚାରିପାଞ୍ଚଥର ଫୁଟୁ କରି ପାଣି ଫିଙ୍ଗିଲା ପରେ ଗୈଜରଟା ଧୀରେଧୀରେ ଚୁପ୍‌ଚାପ୍ ମାଟି ତଳକୁ ପଶିଗଲା ।

''ଯେ ପୁଣି ବାହାରିବ କୋଡିଏ ମିନିଟ୍ ପରେ । ଚାଲ ଏଥର ଆମେ ଯିବା ଆଗକୁ । ଆଗରେ କେତେକେତେ ବଢ଼ିଆ ଦୃଶ୍ୟ ଅଛି ଦେଖିବାକୁ !'' ଗୋଇଂସ୍ନେକ୍ ଚାଲିଲେ ବାଟ କଢେଇ ଆଗକୁ ।

## ବି ହାଇଭ୍ ଗେଜର (Bee Hive Geyser)-

କିଛି ବାଟ ଆଗେଇଲା ପରେ ଆମ ସାମ୍‌ନାରେ ଦେଖାଗଲା ଆହୁରି ଏକ ଅପୂର୍ବ ସୁନ୍ଦର ଗୈଜର । ମାଟିତଳୁ ସେଇକ୍ଷଣି ବାହାରିଥିଲା ସେ । ଦେଖିବାକୁ ମସ୍ତ ବଡ ଏକ

ମହୁଫେଣା ଭଳି । ଫେଣାକୁ ଘେରି ବାଘୁଆ ମହୁମାଛିମାନେ ଲକ୍ଷଲକ୍ଷ ସଂଖ୍ୟାରେ ଭଣଭଣ ହେଇ ଉଡିବୁଲିବା ପରି ସେ ବିଚିତ୍ର ଦୃଶ୍ୟ ଦେଖି ଆମେ ସମସ୍ତେ ଅବାକ୍ ଭାବେ ଠିଆ-ହେଇ ପଡ଼ିଲୁ ।

''ଏ ଗୈଜରର ନାଁ 'ବି ହାଇଭ୍ ଗୈଜର' ! ଦେଖନ୍ତୁ– କେତେ ମହୁମାଛି ଘେରି ଯାଇଚନ୍ତି ମହୁଫେଣାକୁ !'' ଗମ୍ଭୀର ସ୍ୱରରେ ଘୋଷଣା କଲେ ଆମ ଗାଇଡ୍ ।

ପ୍ରକୃତରେ କିନ୍ତୁ ସେସବୁ ମହୁମାଛି ନୁହନ୍ତି; ଗୈଜରରୁ ଛିଟିକିପଡୁଥିବା ଅଜସ୍ର ଜଳକଣାର ସମାହାର ଯୋଗୁ ଭ୍ରମ ସୃଷ୍ଟି ହେଉଥାଏ ଗୋଟାଏ ମହୁଫେଣାକୁ ଘେରି ଉଡିବୁଲୁଥିବା ଲକ୍ଷଲକ୍ଷ ମହୁମାଛିଙ୍କ ପରି ।

## ବିଗ୍‌କବ୍ ଗେଜର (BigCub Geyser)–

ଗୋଇଂସ୍ନେକ ଆମକୁ ଆହୁରି ଆଗକୁ ବାଟ କଢ଼େଇ ନେଉଥାନ୍ତି । କିଛି ବାଟ ପରେ ସେ ଅଟକିଗଲେ । କହିଲେ, ''ଆପଣମାନଙ୍କୁ ଦେଖେଇବି ଆଜି ଆଉ ଏକ ବିଚିତ୍ର ଦୃଶ୍ୟ । ଆପଣମାନେ ଜାଣନ୍ତି ସିଂହ ଅରଣ୍ୟରେ ବାସକରେ । କିନ୍ତୁ ଆମର ଏଠି ସିଂହମାନେ ମାଟି ତଳେ ଥାଆନ୍ତି । ଏ ହେଉଚି ଗୋଟିଏ ଗୈଜର । ଯାର ନାଁ ବିଗ୍‌କବ୍ ଗୈଜର । ଏଠି ମାଟି ତଳେ ଏଇ ଆଖପାଖରେ ବାସକରୁଚନ୍ତି ଗୋଟିଏ ସିଂହ ପରିବାର । ସେ ପରିବାରରେ ଚାରି ଜଣ ସଭ୍ୟ– ସିଂହ ସିଂହୀ, ସେମାନଙ୍କ ବଡପୁଅ ଆଉ ସାନପୁଅ– ଏମିତି ହେଲେ ଚାରି ଜଣ । ବାପ, ମା, ଛୁଆ-ଚାରିଜଣଙ୍କ ଘର ଏକ ଗାତରେ । କିନ୍ତୁ ସେମାନଙ୍କ ଘରର ଚାରିଟା ଦ୍ୱାର । ସେଇ ଗାତ ବାଟେ ମୁହଁ କାଢି ସେମାନେ ଗର୍ଜନ କରନ୍ତି । ଆସନ୍ତୁ ଦେଖିବା ସେଇ ସିଂହ ପରିବାରର ଘର ।''

''ଏଇ ଦେଖନ୍ତୁ !''– ରାସ୍ତା ଉପରୁ ଅଳ୍ପ ଦୂରରେ ଗୋଟାଏ ବଡ ଗର୍ତ୍ତ ଦିଗକୁ ଆଙ୍ଗୁଠି ଦେଖେଇ କହିଲେ, ''ହେଇ ସେ ଯୋଉ ଭଲ୍‌କାନୋର ମୁହଁରେ ବିରାଟ 'କୋନ୍' ଦିଶୁଚି ସେଇ ଗୋଟାକ ହେଲା ବଡ ସିଂହର ଗୁହା । ସେଇ ଗୁହା ଭିତରୁ ବାପସିଂହ ପ୍ରଥମେ ଏକ ଭୟଙ୍କର ଗର୍ଜନ କରିବ । ପରେ ଗୁହା ମୁହଁରୁ ବାହାରିବ ଭୁସଭୁସ ହୋଇ ଧୂଆଁ । ପରେ ଅଜସ୍ର ପରିମାଣ ଫୁଟନ୍ତା ପାଣିର ଫୁଆରା ମାଟି ଉପରକୁ ପିଚକାରି ଭଳି ବାହାରିବ । ବହୁତ ଉଚ୍ଚକୁ ଯିବ ସେ ପାଣିର ଫୁଆରା । ଏଇ ହେଲା ବାପ ସିଂହର କରାମତି । ଯା ପରେ ମା ସିଂହର ପାଳି । ହେଇ ସେଠି ଦେଖନ୍ତୁ ଟିକେ ଦୂର ଛଡାରେ ଅଛି ଆଉ ଗୋଟିଏ ଛୋଟ ମୁହଁବାଲା କୋନ– ସେଇଟି ହେଲା ମା ସିଂହର ମୁହଁ । ତାର ଦୁଇ ପାଖକୁ ଦେଖନ୍ତୁ– ଦୁଇପାଖେ ଯୋଡାଏ ସାନସାନ କୋନ ଦେଖୁଚନ୍ତି ତ ? ସେ ଦୁଇଟା ହେଲା– ଛୁଆ ସିଂହ ବା ଲାୟନ କବ୍ ଦୁହିଁଙ୍କ ମୁହଁ । ଏଇ ଚାରି ମୁହଁ ବାଟେ ସେମାନଙ୍କର ଗର୍ଜନ ତର୍ଜନ ସହିତ ଅବିରାମ ନିଶ୍ୱାସନ ହୁଏ ! ଦିନ ଭିତରେ ଏକାଧିକ

ବାର ଏମାନେ ଚେଇଁଉଠିଥାନ୍ତି । ପ୍ରତି ଥର ଚେଇଁଉଠିବା ପରେ ସେମାନେ ମିନିଟକରୁ ସାତମିନିଟ ପର୍ଯ୍ୟନ୍ତ ଗର୍ଜନ ତର୍ଜନ କରିସାରି ପୁଣି ନିରବ ହେଇଯାନ୍ତି ।''

ଆମେ ପଚାରିଲୁ, ''ଏ ଗୈଜର କଣ ବର୍ତ୍ତମାନ ଚେଇଁଉଠିବାର ସମ୍ଭାବନା ଅଛି ?''

''ଭାଗ୍ୟରେ ଥିଲେ''– ଗାଇଡ ପଚାରିଲେ– ଅପେକ୍ଷା କରିବେ ?

କିନ୍ତୁ ଅପେକ୍ଷା କରିବାକୁ ଆମ ହାତରେ ବେଶୀ ସମୟ ନଥାଏ । ସେତେବେଳକୁ ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟ ଆଡକୁ ବହୁତ ଢଳି ସାରିଥାନ୍ତି । ଆମେ ବି କ୍ଲାନ୍ତ ହୋଇ ପଡିଥାଉ । ଗାଇଡ୍‌ଙ୍କୁ ପଚାରିଲୁ– ଆଉ କେତେଟା ଗୈଜର ଆଗକୁ ଦେଖିବାକୁ ଅଛି ଏଇ ରୁଟରେ ? ଆମ ଆଗେଆଗେ ଚାଲିଥିବା ଦଳେ ବିଦେଶୀ ଟୁରିଷ୍ଟ ଅଳ୍ପ ଦୂରରେ କୌଣସି ଏକ ଦୃଶ୍ୟ ଚାରିପାଖେ ଘେରିଥିବା ଦେଖି ଆମେ ସ୍ଥିରକଲୁ ଏତେ ବାଟ ଆସିବା ପରେ ଆଗକୁ ଥିବା ଦର୍ଶନୀୟ ଜାଗା ସବୁ ନଦେଖି ପଛକୁ ଫେରିଯିବାଟା ମୂର୍ଖତା ହେବ । ତେଣୁ ଆଗକୁ ହିଁ ଚାଲିଲୁ ।

## ସ'ମିଲ୍ ଗେଜର (Saw-mill Geyser)–

ଚଲାବାଟ ପାଇଁ ତିଆରିହେଇଥିବା ସରୁ ପଟା ରାସ୍ତାରେ ଆମେ ପୁଣି ଆଗେଇଲୁ । ''ଆପଣମାନେ ସ-ମିଲ୍ ଦେଖିଥିବେ ନିଶ୍ଚୟ– ଯୋଉଠି ବଡବଡ କାଠ ଗଣ୍ଡି ଚିରାଯାଏ । ସେଠି ବଡ ବଡ ଚକ୍ରାକାର (ସର୍କୁଲାର୍) କରତରେ ମୋଟାମୋଟା ଗଣ୍ଡିକାଠ (ଲଗ୍) ଚିରାଯାଏ । ସେ କରତଗୁଡାକ ଦେଖିବାକୁ କେମିତି ଚିନ୍ତା କରନ୍ତୁ । ଶଗଡ ଚକ ଆକାରର ଚଉଡା ଇସ୍ପାତ୍ ବ୍ଲେଡ୍‌ର ଗୋଟାଏ ପଟ ଧାର ଖାଲି ଦାନ୍ତଦାନ୍ତ ହେଇଥାଏ । କରତର ସେଇ ଦାନ୍ତରେ ମୋଟା ମୋଟା କାଠ ଗଡ ଗୁଡାକୁ ଚିରାଯାଏ । ଏମିତି ଗୋଟିଏ ଗୈଜର ଦେଖିବେ ଚାଲନ୍ତୁ ଟିକେ ଆଗରେ । ମୋ ପଛେପଛେ ଏଇ କାଠପଟା ଉପରେ ପାଦ ଚାପିଚାପି ହୁସିଆରରେ ଆସନ୍ତୁ । ଦେଖନ୍ତୁ କେତେ ଖସଡା ହେଇଚି ଏ ପଟାଗୁଡାକ । ଛୋଟପିଲାମାନଙ୍କ ପାଇଁ ଭାରି ବିପଦସଙ୍କୁଳ ସ୍ଥାନ ଏ ସବୁ ଚଲାବାଟ । ବେଳେବେଳେ ଭୟଙ୍କର ଦୁର୍ଘଟଣା ଘଟେ । ଥରେଥରେ ଜଣେଜଣେ ପିଲା ଜାଣିଜାଣି ଚଲାବାଟ ଛାଡି ଅବାଟରେ ଅମଣିଆ ପଶିଯିବାକୁ ଚେଷ୍ଟା କରନ୍ତି । ହଠାତ୍ ଧସିପଡନ୍ତି କୌଣସି ଚୋରାବାଲି ଭିତରକୁ ନହେଲେ ଅଦୃଶ୍ୟ ଗୈଜର ମୁହଁକୁ । ସେମାନେ ସାଧାରଣତଃ ମାଟିରେ ପୋତିହେଇ ମରନ୍ତି ନହେଲେ ଗାତ ଭିତରେ ଉହଡହ ଫୁଟନ୍ତା ପାଣିରେ ପଡି ମରିଥାନ୍ତି । ଗାଇଡ୍‌ଙ୍କ ସତର୍କବାଣୀ ଶୁଣି ଆମେ ସମସ୍ତେ ସାବଧାନ ହେଲୁ । ଏହା ପରେ ଆଈ ତାଙ୍କ ସାନ ନାତୁଣୀ ଆନୁର ଗୋଟାଏ ଖୁଆକୁ ଜୋର୍‌କରି ମୁଠେଇ ଧରିଲେ । ବଡ ନାତୁଣୀ ଅଙ୍କିତା ରହିଲା ମୋ ଦାୟିତ୍ୱରେ । ପିଲାମାନଙ୍କ ହାତ ଧରି ଆମେ ଏଥର ଧୀରେଧୀରେ ଆମ ଗାଇଡ ମିଃ ଗୋଇଂସ୍ନେକ୍‌ଙ୍କ ପଦାଙ୍କ ଅନୁସରଣ କଲୁ ।''

କିଛି ସମୟ ପରେ ଆମେ ପହଞ୍ଚିଲୁ ଗୋଟାଏ ଅଦ୍ଭୁତ ଦୃଶ୍ୟ ପାଖରେ । ସେଠି ଦେଖିବାକୁ ମିଳିଲା ଏକ ବିରାଟାକାର ଗୈଜର ମାଟିତଳୁ ଢେର୍ ଊର୍ଦ୍ଧ୍ୱକୁ ବିନ୍ଦୁବିନ୍ଦୁ କରି ପାଣି ବର୍ଷା କରୁଚି । ସେ ବର୍ଷାରୁ ଛିଟିକିପଡୁଥିବା ଜଳବିନ୍ଦୁ ଏକ ଚକ୍ରାକାର କରତ ଘୂରିବା ଭଳି ଘିରଘିର ହେଇ ଘୂରିଲାଗିଥାଏ । ସେଇ ଘୂରନ୍ତା ଚକରୁ ଛିଟିକି ପଡୁଥିବା ଜଳବିନ୍ଦୁ ଗୁଡ଼ିକ ଏକ ଚକ୍ରାକାର କରତର ଦାନ୍ତଭଳି ଆକାର ଧାରଣ କରିଥାଏ ।

"ଏ କରତରେ କଣ କାଠ କାଟି ହବ ?" ଆଇଙ୍କ ହାତରୁ ନିଜକୁ କେତେବେଳେ ଖସେଇନେଇ ଗାଇଡ ଗୋଇଂସ୍ନେକଙ୍କ ପାଖକୁ ପଳେଇଥାଏ ଆନୁ । କିନ୍ତୁ ବଡଭଉଣୀ ଅଙ୍କିତାର ମନରେ ଏକ ବୈଜ୍ଞାନିକ ପ୍ରଶ୍ନ ସେତେବେଳେ ମୁଣ୍ଡଟେକିଥାଏ । ପଚାରିଲା– "ମିଃ ଗୋଇଂ ସ୍ନେକ୍ ! ଏ ଗୈଜରଟାର ଏମିତି ଚେହେରା ହେବାର କାରଣ କ'ଣ ? ଏ଼ ସ୍ଥାନରେ ମାଟି ତଳେ କୌଣସି ପ୍ରେସର ଯୋଗୁ ନୁହେଁ କି ?"

ଝିଅର ପ୍ରଶ୍ନର ଉତ୍ତର ମିଳିଲା ଅଭିଜିତଙ୍କଠାରୁ । ସେ ତାଙ୍କ ହାତରେ ଧରିଥାନ୍ତି ଗୋଟାଏ ମୋଟା ଗାଇଡ୍ ବହି । ତାରି ପୃଷ୍ଠା ଲେଉଟାଉଥାନ୍ତି ସେ । କିଛି ସମୟ ପରେ କହିଲେ, "ଏଠି ଭୂତାତ୍ତ୍ୱିକ ଗଠନ ଏମିତି ଯେ ମାଟିତଳୁ ପ୍ରବଳ ଚାପ ପାଇ ଉପରକୁ ଉଠୁଥିବା ଜଳସ୍ରୋତ ଏକ ସ୍ପାଇରାଲ ଭଳି ସରୁ ଫାଟ ଦେଇ ପଦାକୁ ଛିଟିକୁଚି । ସେଇ ସ୍ପିନ ଆକ୍ସନ ଯୋଗୁ ଏ ଗୈଜରର ରୂପ ଏମିତି– ସର୍କୁଲାର କରତ ଭଳି । ଏ ଅଞ୍ଚଳରେ ଏମିତି ଅନେକ ସ୍ପିନ ଗୈଜର ରହିଛି । ସମସ୍ତଙ୍କ ଆକ୍ଟିଭିଟି ଏକାଭଳି ନୁହେଁ । ପୁଣି ସେମାନଙ୍କର ଆକ୍ଟିଭିଟି ସମୟ ଭିନ୍ନଭିନ୍ନ । କାହାର ସମୟ ସୀମା ମାତ୍ର ନ ମିନିଟ୍ ତ କାହାର ଚାରିଘଣ୍ଟା । ଏମାନେ ପ୍ରତିଦିନ ଏକ ଘଣ୍ଟାରୁ ତିନିଘଣ୍ଟା ଛାଡ଼ି ପଦାକୁ ବାହାରନ୍ତି ।"

## ଦ' ଗ୍ରାଣ୍ଡ ଗେଜର (The Grand Geyser)

ସେତେବେଳକୁ ଗୋଇଂ ସ୍ନେକଙ୍କୁ ଆନୁ, ଅଙ୍କିତା ବେଶ୍ ଚିହ୍ନିସାରିଥାନ୍ତି । ୟେଲୋଷ୍ଟୋନ ପାର୍କର ଅନ୍ଦିକନ୍ଦି ତାଙ୍କୁ ଜଣାଥାଏ ଭଳି ମନେହେଉଥାଏ ତାଙ୍କ କଥାରୁ । ପିଲା ଦୁହେଁ ତାଙ୍କ ସାଙ୍ଗେ ଏଣିକି ମୁକ୍ତଭାବେ କଥାବାର୍ତ୍ତା ଆରମ୍ଭ କରିଥାନ୍ତି । କଥାହେଉହେଉ ସେ ତିନିଜଣ କେତେବେଳେ ଆମଠୁଁ ଦୂରେଇ ଚାଲିଗଲେଣି ଢେର୍ ଆଗରେ ଦିଶୁଥିବା ଅନ୍ୟ ଏକ ନୂଆ ଗୈଜର ସନ୍ଧାନରେ । ଝିଅ ଦିଇଟାଙ୍କୁ ଜଣେ ଅଜଣା ଲୋକ ସାଥିରେ ଏପରି ପଳାଇବାକୁ ପସନ୍ଦ କରିନପାରି ଆଇ ଆଶଙ୍କା ପ୍ରକାଶକଲେ ଆଉ ନିଜେ ଧାଇଁବାକୁ ଆରମ୍ଭକଲେ । ତାଙ୍କ ପଛେପଛେ ଜୁଲି, ଅଭିଜିତ ଓ ମୁଁ– ।

ଆମେ ଟାଉଟାଉ ଗୋଡକାଢ଼ି ଦଉଡ଼ିଲୁ ସେମାନଙ୍କ ନିକଟକୁ । ଅଳ୍ପ ସମୟ ପରେ ପହଞ୍ଚିଲୁ ସେଠି । ଯାହା ଦେଖିଲୁ ସେଥିରେ ଆନୁ ଅଙ୍କିତାଙ୍କୁ ଗାଳି କରିବା କଥା ଭୁଲି

ଗଲୁ । ଆମ ସମସ୍ତଙ୍କ ଅଜାଣତରେ ପାଟି ଆମର ଆଁ ହେଇଗଲାଣି କେତେବେଳେ ଏଇ ଭିତରେ । ଦେଖିଲୁ ମାଟି ଉପରୁ ପ୍ରାୟ ଦୁଇଶହ ଫୁଟ ଉଚ୍ଚ ଯାକେ ମୁଣ୍ଡ ଟେକି ଗୋଟାଏ ବିରାଟ ଗୈଜର ଫୁତ୍‌କାର ମାରିଚାଲିଥାଏ । ଉଚ୍ଚତା ଓ ଆକାରରେ 'ଓଲଡ୍ ଫେଥ୍ ଫୁଲ୍' ଠୁଁ ବି ବଡ ଏ ଗୈଜର ।

ପଥର ମୂର୍ତ୍ତି ଭଳି ନିର୍ବାକ୍ ଅବସ୍ଥାରେ କିଛି ସମୟ ସେଇ ବିସ୍ମୟକର ଦୃଶ୍ୟ ଦେଖିଲା ପରେ ଅଭିଜିତ ଖୋଜିଲେ ଗାଇଡ ବୁକ୍‌ରୁ ସେ ଗୈଜରଟାର ନାଁ । କିନ୍ତୁ ଗାଇଡ ବହିରୁ ନାମ ଖୋଜିବା ପୂର୍ବରୁ ଆମ ସାଙ୍ଗେ ଗୋଡେଇଥିବା ସେଇ ଅଜ୍ଞାତ ଲୋହିତ ଭାରତୀୟ ଲୋକଟି ଆମକୁ ଶୁଣେଇଲା, ''ପୃଥିବୀର ସର୍ବ ବୃହତ୍ ଉଚ୍ଚ ଗୈଜର ଏଇ– ଯା ନାଁ 'ଦ ଗ୍ରାଣ୍ଡ ଗୈଜର' । ଆପଣମାନେ ପୂର୍ବରୁ ଯୋଉ ଓଲ୍‌ଡ ଫେଥ୍‌ଫୁଲ ଗୈଜର ଦେଖିଥିଲେ ତା ଠାରୁ ମଧ୍ୟ ଏ ବଡ । ଯାର ଉଚ୍ଚତା ଦୁଇ ଶହ ଫୁଟ ! ଏତେ ଉଚ୍ଚକୁ ଏତେ ଗୁଡାଏ ପାଣି ଫିଙ୍ଗିବା କିଛି ସହଜ କଥା ନୁହଁ, ସାର୍ । ଫାୟାର ବ୍ରିଗେଡର ଦମକଳ ବି ଯା ପାସଙ୍ଗରେ ପଡିବ ନାଇଁ । ତେବେ ଓଲ୍‌ଡ ଫେଥ୍‌ଫୁଲ ଆଉ ଯା ଭିତରେ ଗୋଟିଏ ପାର୍ଥକ୍ୟ ଅଛି । ଦେଖୁଚନ୍ତି ନା ଏ ଗୈଜରର ଫୁତକାର ମାରିବା ଷ୍ଟାଇଲଟା କେମିତି ? କେମିତି ରହିରହି ତୋପ ଫୁଟାଇଲା ଭଳି ଢୋଢୋ ଆବାଜ ଦେଇ ଏ ଗୈଜର ବାନ୍ତି କରୁଚି ପୋଡା ସଲଫରଧୂଆଁ ମିଶା ହଜାର ହଜାର ଟନ୍ ଷ୍ଟିମ୍ ହଟ୍ ୱାଟର ! କିନ୍ତୁ ଓଲ୍‌ଡ ଫେଥ୍‌ଫୁଲ୍ ଗୈଜରର ଗୋଟାଏ ଖାସ୍ ଗୁଣ ଅଛି– ଯା ଭଳି ଛିଣ୍ଡାଛିଣ୍ଡା ନୁହେଁ, କଂଟିନ୍ୟୁଅସ । ଯାର କ୍ରିୟାକଳାପ ବି କିଛି କମ୍ ନୁହେଁ– ନଅରୁ ବାରମିନିଟ୍ । କିନ୍ତୁ ଏଇ ସମୟ ଭିତରେ ଅନ୍ତତଃ ତିନି ଚାରିଥର ନିଶ୍ଚେ କାଶିବ ଏ ଗୈଜର । ପୁଣି ଦୈନିକ ସାତ ଘଣ୍ଟାରୁ ପନ୍ଦରଘଣ୍ଟା ଅନ୍ତରାଳରେ ଥରେ ନିଶ୍ଚେ ମାଟି ତଳୁ ମୁଣ୍ଡ ଟେକିବ ଏ ।''

## ଶ୍ୟାମକୁଣ୍ଡ (Crested Pool)

ଦି ପହର ଖରାର ତେଜ ଅନେକ କମିଗଲାଣି । କିନ୍ତୁ ଗରମରେ ଦେହ ଜଳିଗଲା ଭଳି ଲାଗୁଥାଏ । ଆନୁ ଅଙ୍କିତା ଶୋଷରେ ଆଉଟୁ ପାଉଟୁ ହେଇ ପାଟିକରୁଥାନ୍ତି– ପାଣି ପାଣି । ସେତିକିବେଳେ ଆଖିରେ ପଡ଼ିଲା ସେ ଅପୂର୍ବ ଦୃଶ୍ୟ । ଅଦୂରରେ ଗୋଟିଏ ନୀଳାମ୍ବର ଜଳାଶୟ ଦେଖି ଆନୁର ଶୋଷ ଆହୁରି ବଢ଼ିଗଲା । ସେ କହିଲା, ''ଆଃ କି ସୁନ୍ଦର– ବାବା ! ମୁଁ ଏ ସ୍ୱିମିଂ ପୁଲରେ ପହଁରିବି ଯାଉଚି...''

ଆମେ ଆସି ପହଞ୍ଚିଥାଉ ସେଇ ପୋଖରି କୂଳରେ । ଗୋଇଂସ୍ନେକ କହିଲେ, ''ଆମ ଶାସ୍ତ୍ରରେ ଅଛି– ଏ ପୋଖରୀରେ ରାତିରେ ଆକାଶରୁ ତାରାମାନେ ଓହ୍ଲେଇ ଆସି ଗାଧୁଅନ୍ତି । ସେମାନଙ୍କ ଦେହରୁ ଗାଢ଼ ନୀଳ ରଙ୍ଗ ବୋହିବୋହିକା ଏ ପୋଖରୀର ରଙ୍ଗ ଏତେ ନୀଳବର୍ଣ୍ଣ ଧାରଣ କରିଚି ।''

ଆକାଶର ତାରାମାନଙ୍କ ଗାଧୁଆ କଥା ଶୁଣି ଆଈ କହିଲେ, ‘‘ଶୁଣିଲ ! ଏମାନଙ୍କର ବି ସେଇ ବିଶ୍ୱାସ– ସ୍ୱର୍ଗରୁ ତାରାମାନେ ଆସନ୍ତି ଗାଧୋଇବାକୁ ମର୍ତ୍ତ୍ୟଲୋକର ସୁନ୍ଦର ନଈ ପୋଖରୀ ହ୍ରଦରେ । ଆମ ଭାରତର ଲୋକଙ୍କର ବି ବିଶ୍ୱାସ ଜହ୍ନରାତିରେ ଅପ୍ସରୀମାନେ ସ୍ୱର୍ଗରୁ ଓହ୍ଲେଇ ମର୍ତ୍ତ୍ୟଲୋକରେ ବିହାର କରନ୍ତି– ସୁନ୍ଦର ନଦୀ ହ୍ରଦ ପୋଖରୀରେ ସ୍ନାନ କରନ୍ତି ।’’

‘‘କିନ୍ତୁ ଏ ଗାଇଡ ମ୍ୟାପ୍‌ରେ ଯା ନାଁ ଦିଆଯାଇଚି ‘କ୍ରେଷ୍ଟେଡ୍ ପୁଲ’– ଅଭିଜିତ ଟୁରିଷ୍ଟ ଗାଇଡ୍ ବହିଟାକୁ ଖୋଲିଧରି ପଢ଼ିଲେ ।’’

ମୁଁ କହିଲି– ସେ ଯାହା ଲେଖାଥାଉ– ମୁଁ ବୃନ୍ଦାବନରେ ଦେଖିଚି ଶ୍ୟାମକୁଣ୍ଡ ରାଧାକୁଣ୍ଡ ପାଖକୁ ପାଖ ଲାଗିଲାଗି । ଏ ନିଶ୍ଚୟ ସେଇ ବୃନ୍ଦାବନର ଶ୍ୟାମକୁଣ୍ଡ ଭଳି ୟେଲୋଷ୍ଟୋନର ଶ୍ୟାମକୁଣ୍ଡ । ଦେଖିବ ରହ– ମୁଁ ବେଟ୍ ପକେଇ କହିବି, ଏଇ ଆଖପାଖରେ ନିଶ୍ଚୟ ଥିବ ଏମିତି ଆଉ ଏକ କୁଣ୍ଡ ଯାହା ନାମ ରାଧାକୁଣ୍ଡ । ଗୋଇଂସ୍ନେକକୁ ପଚାର– ଏମିତି ଆଉ ସୁନ୍ଦର ପୁଲ ଏଠି ଆଖ ପାଖରେ କୋଉଠି ଅଛି କି ନାହିଁ ?’’ ଜୁଲି ସେତେବେଳକୁ ଠିଆହେଇଥାଏ ପୋଖରୀ ବନ୍ଧ ଉପରେ । ପୋଖରୀର ସ୍ଥିର ସ୍ୱଚ୍ଛ ଗଭୀର ଜଳ ଦର୍ପଣ ପରି ଚକ୍‌ଚକ୍ କରୁଥାଏ । ସେଥିରେ ପ୍ରତିଫଳିତ ହେଉଥାଏ ମୁଣ୍ଡ ଉପର ଅପରାହ୍ନ ଆକାଶର ନୀଳିମା ଆଉ ତାରି ଭିତରେ ଜୁଲିର ନିଜ ମୁହଁଟି ମଧ୍ୟ ।

‘‘ଠିକ୍ ଅଛି,’’ ଅଭିଜିତ ରାଜିହୋଇଗଲେ । ହସ ହସ ହେଇ କହିଲେ, ‘‘ମୁଁ ପାର୍କ ଅଥରିଟିଙ୍କୁ ଲେଖିବି ଏ ପୁଲ୍‌ର ନାଁ ବଦଳେଇ ଶ୍ୟାମକୁଣ୍ଡ ରଖିବାକୁ ।’’

ପରେପରେ ଗାଇଡ୍ ବହି ଦେଖି ସେ କହିଲେ, ‘‘ଏ ପୋଖରୀର ପାଣି କେତେ ଗଭୀର ଜାଣନ୍ତି ? ବୟାଳିଶ ଫୁଟ ! ପୁଣି ଏ ପାଣି ସିନା ଦିଶୁଚି ଏମିତି ଶାନ୍ତ ଶୀତଳ– ହେଲେ ଏ ପାଣିକୁ ଭୁଲରେ ବି ଗୋଡ ବଢ଼ାନ୍ତୁ ନାଇଁ– ଚମ ଫୋଟକା ହୋଇଯିବ ! ଏଇ ପୁଲ୍ ତଳେ ଚାଲିଚି ମହା ବିପ୍ଲବ– ଭଲ୍‌କାନିକ୍ ଆକ୍‌ସନ୍‌ସ୍ ! ଏ ପାଣି ସିନା ଏମିତି ସ୍ଥିର ନିଶ୍ଚଳ ଦିଶୁଚି– କିନ୍ତୁ ଏହା ସାମୟିକ । ହଠାତ ଥିବଥିବ ତଳୁ ଭୁଡୁ ବିସ୍ଫୋରଣ ଶବ୍ଦ ଶୁଣାଯିବ । ତା ପଛକୁ ପାଣି ଗବ୍‌ଗବ୍ ହେଇ ଫୁଟିବ । ପରେପରେ ତଳର ଉତ୍ତପ୍ତ ଜଳସ୍ତମ୍ଭ ମାନ ଭଉଁରି ଭିତରୁ ଉଠିବ ଊର୍ଦ୍ଧ୍ୱକୁ । ସ୍ତମ୍ଭର ଉଚ୍ଚତା ଆଠରୁ ଦଶ ଫୁଟ ପର୍ଯ୍ୟନ୍ତ ଦିଶିବ ବାହାରକୁ । ପୋଖରୀର ପାଣି ଉଚ୍ଛୁଳି ପଡ଼ିବ । ସେ ପାଣିରେ ଅସମ୍ଭବ ପରିମାଣ ସଲଫର୍ । ପାଣିରେ ମିଳେଇ ରହିଥିବା ସଲଫର୍ ପୋଖରୀ ବନ୍ଧରେ କ୍ଷୀରରେ ସର ପଡ଼ିଲା ପରି ଜମିଯିବ । ଏମିତି ହଜାର ହଜାର ବର୍ଷର ଏଇ ବହଳ ଧଳା ହଳଦିଆ ସଲଫର୍ ଡିପୋଜିଟ ଏ ପୋଖରୀର କେଡ଼େବଡ଼ ହୁଡାଟିଏ ଗଢ଼ିଚି ଦେଖୁଚନ୍ତି ? ସେଇ ହୁଡାକୁ କହନ୍ତି ‘କ୍ରେଷ୍ଟ୍’ ।’’

ପୋଖରୀ ପାଣି ଡହଡହ ଫୁଟୁଚି ଶୁଣି ପିଲାମାନଙ୍କ ଖରାବେଳ ଗାଧୁଆ କଥା ସେଇଠି ବନ୍ଦ ହେଇଗଲା । ଆନୁ ଅଙ୍କିତା ମୁହଁ ଶୁଖେଇ ପଚାରିଲେ, ‘‘ବାବା ! ଚାଲ ତାହେଲେ

ଆଉ କୋଉଠି ଥଣ୍ଡା ପାଣିର ପୋଖରୀ ଥିବ ଖୋଜିବା ।''

ଗୋଇଂସ୍ନେକ ଆମ କଥାବାର୍ତ୍ତା ଶୁଣୁଥାନ୍ତି । ଆମ ଭାଷା ବୁଝିବା ତାଙ୍କ ପାଇଁ ଅସମ୍ଭବ । କିନ୍ତୁ କଣ ଠଉର କଲେ, କହିଲେ, ''ଏ ପୁଲ୍‌ଟା 'ମେଲ' (ପୁରୁଷ)– ଏଇ ପାଖରେ ୟାର ଯୋଡି ଗୋଟାଏ 'ଫିମେଲ' ପୁଲ୍ ଅଛି– ଚାଲନ୍ତୁ ଦେଖିବେ ।''

## ରାଧାକୁଣ୍ଡ (Beauty Pool)

ଅଳ୍ପ ବାଟ ନଯାଉଣୁ ଗୋଇଂ ସ୍ନେକ୍ ଆମକୁ ନେଇ ପହଞ୍ଚେଇଦେଲେ ଗୋଟିଏ ଅପୂର୍ବ ମନୋରମ ଜଳାଶୟ କୂଳରେ । ଅଭିଜିତଙ୍କୁ ଆଖି ଠାରିଲେ, ''ୟା ନାଁ କଣ ଜାଣନ୍ତି– ବିଉଟି ପୁଲ୍''– ଗାଇଡ୍ ବହି ଖୋଲି ଅଭିଜିତ ଦେଖିଲେ ସତକୁ ସତ ସେ ପୁଲ୍‌ର ନାଁ– ବିଉଟି ପୁଲ୍ !

ଜୁଲି କୁର୍‌କୁର୍ ହେଇ ହସି କହିଲା, ''ଦେଖିଲ– ଯୋଉଠି ଶ୍ୟାମସୁନ୍ଦର ଥିବେ ସେଠି ନିଶ୍ଚେ ଥିବେ ରାଧାରାଣୀ– ମୁଁ ପରା ଜାଣେ ! ତାହେଲେ ଆଜିଠାରୁ ଏ ଗୈଜରର ନାଁ ହେଲା ରାଧାକୁଣ୍ଡ ।''

ଆନୁ ଅଙ୍କିତା ଏକାସାଙ୍ଗେ ପାଟି କରି ଉଠିଲେ, ''ଦେଖ ଦେଖ– କୁଣ୍ଡ ଚାରିପାଖେ ଇନ୍ଦ୍ରଧନୁ !''

ରାଧାକୁଣ୍ଡ ଅବିକଳ ଶ୍ୟାମକୁଣ୍ଡ ପରି ବିସ୍ତୀର୍ଣ୍ଣ, ଗଭୀର ଆଉ ତା ପାଣିର ରଙ୍ଗ ବି ଘନନୀଳ । କିନ୍ତୁ ତାକୁ ଘେରିଥିବା ସେଇ ଅଦ୍ଭୁତ ଉଜ୍ଜ୍ୱଳ ରଙ୍ଗର ଚକ୍ରାକାର ଜିନିଷଟା କଣ ? ସତେକି ସୁନ୍ଦରୀ ସ୍ତ୍ରୀ ଜଣେ ପରିଧାନ କରିଚି ବହୁ ବର୍ଣ୍ଣୀ ପାଟ ଶାଢୀଟିଏ !

''ସେ ଜିନିଷଟା କଣ ଜାଣ ?'' ଅଭିଜିତ ଗାଇଡ୍ ବୁକ୍‌ରୁ ଦେଖିଲେ, ''ସେଇ ବ୍ୟାକ୍ଟେରିଆଲ ଡିପୋଜିଟସ୍ ! ଏ କୁଣ୍ଡର ଫନ୍ଦରେ ଏକ ପ୍ରକାର ଜୀବାଣୁ ଅଛନ୍ତି । ସେଇମାନେ ସୃଷ୍ଟିକରିଚନ୍ତି ଏଇ ବହୁବର୍ଣ୍ଣୀ ଇନ୍ଦ୍ରଧନୁ ରଙ୍ଗର ବହଳ ଆସ୍ତରଣ । ସେ ଜିନିଷକୁ ଛୁଅଁନା– ସେଗୁଡ଼ାକ ଜୀବାଣୁଙ୍କ ଗନ୍ତାଘର– ହୁସିଆର ।''

କିନ୍ତୁ ଜୀବାଣୁଫିବାଣୁ କିଛିକୁ ଖାତିର ନକରି ଗୋଇଂସ୍ନେକ ସେଇ ପୋଖରୀ ବନ୍ଧ ପାଖ ରଙ୍ଗୀନ ପଙ୍କରୁ ପୁଳାଏ ହାତରେ ଉଠେଇନେଲେ । ଆମକୁ ଦେଖେଇ କହିଲେ, ''ଏ କାଦୁଅରେ ଆମେ ଆମ ଗାଁରେ ଘରକାନ୍ଥ ଲିପୁ– ଛବି ଆଙ୍କୁ । ଆମ 'ଚେରୋକି'କୁ ଚାଲ ଦେଖିବ. . .''

ବହୁତ ସମୟ ଧରି ଚାଲିଚାଲି ହାଲିଆ ଲାଗିଲାଣି ସେତେବେଳକୁ । ମୁଁ ଗାଇଡକୁ ପଚାରିଲି, ''ଶ୍ୟାମକୁଣ୍ଡ ରାଧାକୁଣ୍ଡ ତ ଦେଖିଲୁ– ଆଗକୁ ଆଉ କିଛି ଇଂଟରେଷ୍ଟିଂ ଜାଗା ଅଛିକି ?''

ସେ ଆମେରିକାନ୍ ଇଂଡିୟାନ୍ ଲୋକଟି ବେଶ୍ ଜଣେ ସମଝଦାର ମଣିଷ । ମୋ

କଥାରେ ଗମ୍ଭୀର ହେଇଯାଇ କହିଲା, ''ଆପଣମାନଙ୍କ କଥାରୁ ମୁଁ ଯାହା ଅନ୍ଦାଜ କଲି ଆପଣମାନେ ଆପଣଙ୍କ ଧର୍ମର ଗଡ୍ ଗଡେସ୍‌ଙ୍କ ବିଷୟରେ କଥାବାର୍ତ୍ତା ହେଉଥିଲେ । ଗଡ ଗଡେସ ଗଲେ– ଏଥର ଆସିବେ ସାଟାନିକ ଫୋର୍ସେସ । ଆପଣମାନେ ଜାଣନ୍ତି– ଏ ହ୍ୱାଇଟ ଲୋକମାନେ ସାଟାନ୍‌କୁ ଭାରି ଡରନ୍ତି । ପୂର୍ବେ ୟେଲୋଷ୍ଟନ ଅଞ୍ଚଳକୁ ସେମାନେ କହୁଥିଲେ ସାଟାନ୍‌ର ଘର । ଏ ଜାଗାକୁ ପଶୁନଥିଲେ ଭୟରେ– ଏବେ ସିନା ଏତେ ଟୁରିଷ୍ଟ ଭିଡ଼ । ଆଗକୁ ଚାଲନ୍ତୁ ଦେଖିବେ କି ଭୟଙ୍କର ରୂପ ଗେିଜର ଗୁଡାକର !''

ସାଟାନ୍ ନାଁ ଶୁଣି ପିଲାମାନେ ଚେଙ୍ଗା ହେଇଉଠିଲେ । ଆମେ ଚାଲିଲୁ ଆଗକୁ ।

ବେଶ୍ କିଛି ବାଟ ଆଗେଇ ଆସିଲୁଣି । ସୂର୍ଯ୍ୟକିରଣର ପ୍ରଖରତା ଅନେକ କମି ଗଲାଣି ଏଇ ଭିତରେ । ଶୀତ ଶୀତ ଲାଗିଲା । ମୁଁ ମୋ ହ୍ୟାଣ୍ଡବ୍ୟାଗରୁ ବାହାରକଲି ସ୍ୱେଟର । ଅନ୍ୟମାନେ କିନ୍ତୁ ସ୍ୱେଟର ପିନ୍ଧିବା ଦରକାର କଲେନି ।

ଚାରିପଟେ ଆଖି ବୁଲେଇ ଦେଖିଲି– ଏକ ବିଶାଳ ବ୍ୟାପକ କ୍ଷେତ୍ର । ଏଇ କ୍ଷେତ୍ରର ଗୋଟାଏ ପାଖୁ ବୁଲିବୁଲି ଆମେ ଆସି ପହଞ୍ଚିସାରିଥାଉ ପ୍ରାୟ ଅନ୍ୟ ପାଖେ । ଚାରିପାଖେ ଡେଙ୍ଗାଡେଙ୍ଗା ପାଇନ୍ ବଣ । ସେଇ ବଣଆଡୁ ଶୁଭୁଥାଏ କୁଆମାନଙ୍କର କାକା ରାବ । ଏଠାକାର କୁଆ ଦେଖିବାକୁ ଆମ ଭାରତର କୁଆ ମାନଙ୍କ ପରି ସେତେ କଳା ନୁହନ୍ତି– ଧୂସରିଆ ରଙ୍ଗ । ଆଉ, ଏମାନଙ୍କ ଡାକ ଡାମରାକୁଆଙ୍କ ଭଳି ଖୁବ୍ କର୍କଶ । ସେଇ ପାଇନ ବଣର ଗୋଟାଏ ପଟର ଦିଗ୍‌ବଳୟ ଆଡକୁ ସୂର୍ଯ୍ୟ ଆକାଶରେ ଢଳୁ ଥାନ୍ତି– ସେଇ ପଟଟା ତାହେଲେ ପଶ୍ଚିମ ଦିଗ । ଏଇ କିଛି ମିନିଟ ଭିତରେ ଆକାଶର ରଙ୍ଗ ବଦଳି ପାଉଁଶିଆ ହେଇଗଲାଣି । ସାରା ଅଞ୍ଚଳଟା ଉପରେ ଥରେ ଆଖି ବୁଲେଇ ଦେଖିଲି– ଠାଠା ହେଇ ଶୁଖିଲା ମାଟି କୁହୁଳୁଥାଏ ଆଉ ମାଟିତଳୁ ଉଠୁଥାଏ ଧୂଆଁ । ଅନେକ ଜାଗାରେ ମାଟି ଉପରେ କୋରଡ ଭଳି ଗାତ ମୁହଁରେ କଳୁଥାଏ ଦିକଦିକ ହେଇ ନିଆଁ– ଅବିକଳ ଶ୍ମଶାନରେ ଜଳୁଥିବା ଜୁଇ ଭଳି ସେ ଦୃଶ୍ୟ । ସେ ସବୁ ବୋଧହୁଏ ସୁପ୍ତ ଆଗ୍ନେୟଗିରି ବା ଅର୍ଦ୍ଧମୃତ ଜ୍ୱାଳାମୁଖୀମାନଙ୍କର ଗହ୍ୱର । ସାରା ଅଞ୍ଚଳର ବାୟୁମଣ୍ଡଳରେ ଭରିରହିଥାଏ ପୋଡା ସଲଫରର ଫୁରୁକୁଟିଆ ଗନ୍ଧ । ସମଗ୍ର ଅଞ୍ଚଳଟାର ଦୃଶ୍ୟ ଉପରେ ଆଖି ପକେଇଲେ ମନରେ ଆସୁଥାଏ ଅହେତୁକ ନୈରାଶ୍ୟ । ସତେକି ୟେଲୋଷ୍ଟୋନ ଗୋଟାଏ ପାର୍କ ନୁହେଁ, ଏକ ମହାଶ୍ମଶାନ !

## କ୍ୟାସଲ୍ ଗେଜର (Castle Geyser)–

''ଏଇ ଦେଖୁଚନ୍ତି ସେଠି– ?'' ଆମକୁ ବାଟ କଢ଼େଇ ଚାଲିଥିବା ଆମ ଗାଇଡ୍ କେତେବେଳେ ଅଟକିଯାଇଥାନ୍ତି । ଗୋଟାଏ ଜାଗାରେ ଠିଆ ରହି ଆଙ୍ଗୁଠି ଦେଖେଇ କହିଲେ ସେ, ''ହେଇ ସେଇ ଗୋଟାକ ହେଲା ସାଟାନ୍‌ର କ୍ୟାସଲ ।''

ଆମେ ସମସ୍ତେ ଅଟକି ରହିଲୁ । ଦେଖିଲୁ ରାସ୍ତା କଡରେ, ଅଳ୍ପ କିଛି ଦୂରରେ, ଅବିକଳ ଗୋଟାଏ ଦୁର୍ଗ ଭଳି ଉଚ୍ଚ କାନ୍ଥ । କାନ୍ଥର ଠାଏ ଏକ ବିରାଟ ଗାତ । ଦିଶୁଥାଏ ଗୋଟାଏ ଅସମ୍ଭବ ବଡମୁହଁବାଲା ତୋପ ଯେମିତି ଖଞ୍ଜାହେଇଥାଏ ସେଠି । ସେ ମୁହଁ ଭିତରକୁ ଅକ୍ଲେଶରେ ଗଳି ଯାଇପାରିବ ଗୋଟାଏ ବଡ ହାତୀ !

ଆମେ ଅଟକିରହିଲୁ । ଅଭିଜିତ ଗାଇଡ୍ ବହିର ପୃଷ୍ଠା ଓଲଟେଇ କହିଲେ, ''ଯା ନାଁ କ୍ୟାସଲ୍ ଗୈଜର । ଏ ହେଲା ଏ ପାର୍କରେ ଯେତେ ଗୈଜର ଅଛି ସେ ସମସ୍ତଙ୍କ ଭିତରେ ସବୁଠୁ ପୁରୁଣା । ହଜାର ହଜାର ବର୍ଷଧରି ଉଦ୍ଗୀରଣ ଘଟିଚି ଯା ମୁହଁରୁ– ସେଥିପାଇଁ ଯା ମୁହଁ ଏତେ ବଡ । ଯା ମୁହଁ ଚାରିପଟ କୋନ୍ (Cone)କୁ ଚାହାଁନ୍ତୁ । ଦେଖୁଚନ୍ତି– ଗୋଟାଏ ଆଗ୍ନେୟଗିରିର ମୁହଁ ?''

ସେତିକିବେଳେ ଗୋଇଂସ୍ନେକଙ୍କ ସତର୍କବାଣୀ ଶୁଣାଗଲା, ''ସାବଧାନ ! ଏ ଦୁର୍ଗରେ ରହୁଚି ଗୋଟାଏ ବୁଢ଼ୀ ଅସୁରୁଣୀ (ଓ୍ୱିଚ) ! ଆମ ଭାଷାରେ ସେ ହେଲା 'ଡେଓ୍ୱା' ! ରାଗିଗଲେ ଏଡେ ଜୋର୍‌ରେ ହୁହୁ ହେଇ କମ୍ପିବ ଯେ ଖଣ୍ଡମଣ୍ଡଳ କମ୍ପିଯିବ । ପୁଣି ଫୁଙ୍କିବ ଏତେ ଦୁର୍ଗନ୍ଧ ପବନ ମିଶା ଗରମପାଣି ଯେ ତମେ ନାକରେ ରୁମାଲ ଦେଇ ବି ରକ୍ଷା ନାହିଁ । ସ୍କଙ୍କ ଗନ୍ଧେଇଲା ପରି ଗନ୍ଧ ହବ । ଯୁଆଡେ ଦଉଡ଼ିପଳେଇଲେ ବି ସେ ଗନ୍ଧ ତୁମ ପିଛା ଛାଡ଼ିବ ନାହିଁ । ଚାଲନ୍ତୁ, ଏଠି ବେଶୀ ସମୟ ରହିବା ଠିକ୍‌ନୁହଁ ।''

କିନ୍ତୁ ଠିକ୍ ସେଇ ସମୟରେ ତୋପ ଫୁଟିଲା ଭଳି ଶବ୍ଦ ଶୁଣାଗଲା କ୍ୟାସଲ ଗୈଜର ମୁହଁରୁ । ପିଲାମାନେ ଚିହିରିଉଠିଲେ । ଆମେ ବି ଭୟକଲୁ– କାଳେ ଆମ ଉପରକୁ ତାତିଲା ପାଣି ଛିଟିକିଆସିବ । ସମସ୍ତେ ଦଉଡ଼ିଲୁ ବେଶ୍ କିଛି ଦୂରକୁ । ଦେଖିଲୁ ଦୁର୍ଗର ତୋପ ଭଳି ପ୍ରକାଣ୍ଡ ଗହ୍ୱରରୁ ଉଠୁଚି ଭୁସ୍‌ଭୁସ୍ ଗ୍ୟାସ ଆଉ ବାମ୍ପ ମିଶା ପାଣିର ଫୁଆରା ।

''ଏ ବିସ୍ଫୋରଣର ପ୍ରତାପ ଦେଖନ୍ତୁ–'' ଅଭିଜିତ୍ ଗାଇଡ୍ ବହିର ଗୋଟାଏ ପୃଷ୍ଠା ଖୋଲି ଧରିଥାନ୍ତି । କହିଲେ, ''କେତେ ଉଚ୍ଚକୁ ପାଣିର ଏ ଫୁଆରା ଉଠୁଚି ଶୁଣିବେ ? ନବେ ଫୁଟ ! ଖାଲି ବଏଲିଂ ସଲଫର ଓ୍ୱାଟର । ଏ ପ୍ରକ୍ରିୟା ଚାଲିବ କୋଡିଏ ମିନିଟ ଧରି । ପରେ ପରେ ହଟସ୍ପ୍ରିଂ ବଦଳରେ ବାହାରିବ କେବଳ ଧୂଆଁ । ଏ ଗୈଜରର ଗୁଣ ହେଲା ଏଇ– ପହିଲି ଦଫାରେ ପାଣି ତା ପର ଦଫାରେ ଗ୍ୟାସ୍ । ଗ୍ୟାସ୍ ବାହାରିବ ଅଧଘଣ୍ଟାଏ ପର୍ଯ୍ୟନ୍ତ– ତାପରେ ସବୁ ଶାନ୍ତ । ପୁଣି ଦଶ ବାରଘଣ୍ଟା ପରେ ପୁନରାବୃତ୍ତି ହେବ ଏ ପ୍ରକ୍ରିୟାର– ଏମିତି ଚାଲିଆସିଲାଣି ହଜାର ହଜାର ବର୍ଷଧରି । ଏ ଏକ ଅଦ୍ଭୁତ ପ୍ରାକୃତିକ ବିସ୍ମୟ ଏ ପାର୍କରେ– ହଜାର ହଜାର ବର୍ଷ ଧରି ଚାଲିଚି ଏ ଉଦ୍ଗୀରଣ– ତଥାପି ସରୁ ନାହିଁ ଏଠାକାର ଭୂତାତ୍ତ୍ୱିକ ପ୍ରକ୍ରିୟା । ହଜାର ହଜାର ବର୍ଷ ଧରି ଗୋଟିଏ ନିର୍ଦ୍ଦିଷ୍ଟ ରୁଟିନରେ ଏ ଯେଉଁ ପ୍ରକ୍ରିୟାର ପୁନରାବୃତ୍ତି ଘଟୁଚି ପ୍ରାକୃତିକ ପ୍ରଣାଳୀରେ ତାର କାରଣ ସାଧାରଣ ମଣିଷ କେମିତି ବୁଝିବ ? ସେଇଥିପାଇଁ ଯାକୁ ବୋଧହୁଏ କୁହାଯାଏ ସଇତାନ୍ ବା ଡେଭିଲର ଦୁର୍ଗ ।''

ସେତିକିବେଳେ ବାଜିଲା ଏକ ତୀବ୍ର ଦୁର୍ଗନ୍ଧ ନାକରେ । ''ହେଇ !'' ଆନୁ ଚିତ୍କାର କଲା, ''ଏଇଟା ନିଶ୍ଚୟ ସ୍କଂକର ଦୁର୍ଗନ୍ଧ ! ସ୍କଂଙ୍କ ପାଉଚି..''

ଆମେ ସମସ୍ତେ ଏକା ସାଙ୍ଗେ ହସିଉଠିଲୁ । ଗୋଇଂ ସ୍ନେକ କହିଲେ, ''ଅସୁରୁଣୀ ପାଦ ଶୁଙ୍ଘିଲ– ଚାଲ ପଳେଇବା ଏଠୁ । ଜାଣିଚନା ଏ ପାର୍କରେ ଗୋଟାଏ ଅସୁର ଗେଜର ବି ଅଛି ଏଇ ପାଖରେ– ଅସୁରୁଣୀ ଆଉ ଅସୁର ଦିହେଁ ପାଖାପାଖି– ସେମାନେ ସ୍ୱାମୀ ସ୍ତ୍ରୀ । ଦୁହେଁ ଦୁହିଁଙ୍କୁ ବଦ୍‌ମାସୀରେ ପାରିଉଠିବାକୁ ଚେଷ୍ଟା ଚଳେଇ ଆସିଚନ୍ତି ସୃଷ୍ଟି ଆରମ୍ଭରୁ ହୁଏତ !''

## ଜାଏଂଟ ଗେଜର (Giant Geyser)

ଆମେ ଯାଇ ପହଞ୍ଚିଲୁ ଏକ ମସ୍ତବଡ ଗୈଜର ଫିଲଡ୍‌ରେ । ସେଠି ଥାଏ ଗୋଟାଏ ବିରାଟ ଗୈଜର– ତାରି ନାମ ''ଜାଏଂଟ ଗୈଜର'' । ସେଇ ଗୈଜରକୁ ଦେଖେଇ ଗାଇଡ ପିଲାମାନଙ୍କ ଉଦ୍ଦେଶ୍ୟରେ କହିଲେ, ''ଏଇ ଦେଖ ଦେଖ ଏ ଅସୁରକୁ । ଏ ଏକ ବିଷମ ଜନ୍ତୁ । ଏ ସିନା ଏକା ଭଳି ପଦାକୁ ଦିଶୁଚି– କିନ୍ତୁ ଭିତରେ ଭିତରେ ଯାର ବହୁ ସାଙ୍ଗ ସାଥି ଥାଆନ୍ତି । ଏ ଯେତେବେଳେ ମୁହଁ ଖୋଲିବ ତା ଜାତିଭାଇମାନେ ବି ତା ସାଙ୍ଗେ ସୁର ମିଶେଇ ଗର୍ଜିବେ । ଯେ ଯେତେବେଳ ଫୁଟିବ ଯା ତୋଡ ମାଟି ଫୁଟେଇ ଉଠିବ ଦୁଇଶହ ଅଢେଇଶହ ଫୁଟ ଉଚ୍ଚକୁ । ସେତେବେଳେ ଦେଖିବ ଯା ପ୍ରକୋପ ! ମେଦିନି ରଖରଖ ଡାକପକେଇବ । ଆଖ ପାଖରେ ଯା ଭାୟାମାନେ ବି ରବାଦ କରି ଛାଡିବେ ଷ୍ଟିମ ମିଶା ପାଣି ଶୂନ୍ୟକୁ । ଜାଣିଚ ନା– ଏ ଅସୁରକୁ ମଝିରେମଝିରେ ଏତେ ନିଦ ଲାଗିବ ଯେ ବର୍ଷବର୍ଷ ଧରି ସେ ଶୋଇରହିବ । ପୁଣି ହଠାତ୍ ତା ନିଦ ଭାଙ୍ଗିବ । ଉଠିପଡ଼ି ହାଁ ହାଁ ହେଇ ଆଁ କରି ଗର୍ଜନ କରିବ ।''

ଆନୁର ମନେପଡ଼ିଗଲା ରାମାୟଣ ମୁଭିରେ ଦେଖିଥିବା କୁମ୍ଭକର୍ଣ୍ଣ ରାକ୍ଷସର କଥା । କୁମ୍ଭକର୍ଣ୍ଣ ବର୍ଷରେ ଛଅ ମାସ ଶୁଏ ଛଅ ମାସ ଉଠେ । ତା ନିଦ ଭାଙ୍ଗିଲେ ତାକୁ ଭାରି ଭୋକ । ଏକାବେଳେ ଦୁଇଟା ମଇଁଷି, ଦଶଟା ଛେଳି, ପନ୍ଦରଟା ମେଣ୍ଢା ଦରକାର ତାର ଗିଳିବାକୁ । ନିଦ ଭାଙ୍ଗୁ ଭାଙ୍ଗୁ ସେତକ ଖାଦ୍ୟ ତା ହାତ ପାହାନ୍ତିରେ ନପାଇଲେ ସେ ତା ଜାତିଭାଇ ଯାହାକୁ ଦେଖିବ ଗିଳିପକେଇବ । ସେଥିପାଇଁ ତା ଭାଇ ରାବଣ କୁମ୍ଭକର୍ଣ୍ଣର ଖଟ ଗୋଡରେ ମଇଁଷି ଛେଳି ମେଣ୍ଢାଗୁଡାକୁ ବାନ୍ଧିଦବାକୁ ଚାକରମାନଙ୍କୁ ଆଦେଶ ଦେଇଥାଏ– ନହେଲେ ସର୍ବନାଶ ।

ଆନୁର କୁମ୍ଭକର୍ଣ୍ଣ କଥା ମନେପଡ଼ିଯିବାରୁ ସେ ହସିହସି ଗଡ଼ିଗଲା । ପଚାରିଲା, ''ଯାର ଖଟ ଗୋଡରେ ତ ନିଶ୍ଚେ ବନ୍ଧାହେଇଥିବେ ବିଚରା ନିରୀହ ମଇଁଷି ଛେଳି ମେଣ୍ଢା ? କାହାନ୍ତି ସେମାନେ ?''

ଅଭିଜିତ ବହିକୁ ଅନେଇ ହସିହସି ଝିଅର କଥାରେ କଥା ମିଶେଇଲେ, ''ସେସବୁ ନିଶ୍ଚେ ଭୂଗର୍ଭରେ କୋଉଠି ବନ୍ଧାହେଇଥିବେ– ଖୋଜିଲେ ମିଳିବେ । ତେବେ ଯେ ଗେଜର ସତରେ ଅଦ୍ଭୁତ । ଯା ଇତିହାସ କହୁଚି– ୧୯୫୫ ପର୍ଯ୍ୟନ୍ତ ଏ ଗେଜର ନିୟମିତ ମାଟିତଳୁ ଆତ୍ମପ୍ରକାଶ କରିଆସୁଥିଲା । କିନ୍ତୁ କୌଣସି କାରଣରୁ ସେଇ ବର୍ଷ ଯାର ଉଦ୍‌ଗୀରଣ ହଠାତ୍ ବନ୍ଦହେଇଗଲା । ଲୋକେ ଭାବିଲେ ଯେ ବୋଧେ ମରିଗଲା । କିନ୍ତୁ ବୟାଳିଶ ବର୍ଷ ପରେ ୧୯୯୭ରେ ଯାର କୁମ୍ଭକର୍ଣ୍ଣ ନିଦ ପୁଣି ଭାଙ୍ଗିଗଲା । ବାସ୍ ସେଇ ବର୍ଷଠୁ ପ୍ରତି ତିନି ଦିନରୁ ଦଶ ଦିନ ଛଡାରେ ଯାର ନିଦ ଭାଙ୍ଗୁଚି । ଘଣ୍ଟାଏ ପର୍ଯ୍ୟନ୍ତ ଗର୍ଜନତର୍ଜନ କରି ଷ୍ଟିମ ଆଉ ପାଣି ଦୁଇଶହ ଅଢେଇଶହ ଫୁଟ ଉପରକୁ ଫିଙ୍ଗାଫିଙ୍ଗି ପରେ କ୍ଲାନ୍ତ ହେଲା ପରି ଶୋଇପଡୁଚି ।''

## ବହୁରଙ୍ଗୀ ଝରଣା (Chromatic Spring)

ଏହା ପରେ ଆମେ ସେ ସ୍ଥାନ ଛାଡ଼ି ଚାଲିଲୁ ଆଗକୁ । ତେଣେ ଆହୁରି କିଛି ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିବାର ପ୍ରତିଶ୍ରୁତି ଦେଇ ଆମକୁ ବାଟ କଢ଼େଇଲେ ମିଃ ଗୋଇଂ ସ୍ନେକ । କେତେ ମିନିଟ ଚାଲିବା ପରେ ପହଞ୍ଚିଲୁ ଏକ ବହୁରଙ୍ଗୀ ଝରଣା କୂଳରେ । ଆଃ କି ଚମତ୍କାର ! ସତେକି ପ୍ରକୃତି ଏ ପୋଖରୀ ଭିତରେ ବିବିଧ ରଙ୍ଗର ପସରା ସାଇତି ରଖିଥାଏ । ସେଇ ପସରାରୁ ମନ ମୁତାବକ ଗୋଟିଏ ଗୋଟିଏ ରଙ୍ଗ ବାଛି ପାଣିକୁ ରଙ୍ଗେଇ ରଙ୍ଗୀନ୍ ପାଣିକୁ ଫିଙ୍ଗୁଥାଏ ପଦାକୁ । ବିଭିନ୍ନ ରଙ୍ଗର ପାଣି ପରସ୍ପର ସହିତ ଫେଂଣ୍ଟି ନହେଇ ଅଲଗା ଅଲଗା ହେଇ ବେଣୀ ପଡ଼ିଲା ଭଳି ଦିଶୁଥାଏ । ଦିଶୁଥାଏ ଗୋଟିଏ କାର୍ପେଟ ଭଳି । ବିଭିନ୍ନ ରଙ୍ଗର ସୂତା ସବୁ ଭାଗ ମାପ ମୁତାବକ ବୁଣିହେଇଥିବା ପରି ଦିଶୁଥାଏ ସେ ଦୃଶ୍ୟ ବାହାରକୁ । ସେଇ କାରଣରୁ ନିଶ୍ଚୟ ଏଇ ଝରଣା ଭଳି ଗେଜରଟିର ନାମକରଣ କରାଯାଇଥାଏ ''କ୍ରୋମାଟିକ୍ ସ୍ପ୍ରିଙ୍ଗ'' ।

ବହି ପୃଷ୍ଠା ଉପରୁ ଆଖି କାଢି ଅଭିଜିତ ଆମକୁ ବଡବଡ ଆଖିରେ ଚାହିଁଲେ । କହିଲେ, ''ଭାବିହେଉନାହିଁ ସତରେ– ପ୍ରକୃତରେ ଏ ଜାଗାର କିଛି ମିରାକ୍ଲ ପ୍ରଭାବ ଅଛି । କାହିଁକି ଶୁଣିବେ ? ଏ ପାର୍କର ଲିଟରେଚର କହୁଚି– ଏ ଯୋଉ ରଙ୍ଗୀନ୍ ଝରଣା ଆମେ ଏଠି ଦେଖୁଥାଇଁ ତାର ଉତ୍ପତ୍ତି ସ୍ଥଳ କୁଆଡେ ଏଠି ନାହିଁ– ମାଇଲ୍‌ମାଇଲ୍ ପଛରେ ଆମେ ଦେଖିଆସିଥିବା 'ବିଉଟି ପୁଲ୍' ଅର୍ଥାତ 'ରାଧାକୁଣ୍ଡ' କୁଆଡେ ଏ କ୍ରୋମାଟିକ୍ ସ୍ପ୍ରିଙ୍ଗର ସୋର୍ସ !''

''କିନ୍ତୁ ସେ ବିଉଟିପୁଲ୍ ତ ଯାଇ ରହିଲାଣି କେତେ ପଛରେ ! ତା ମାନେ ଏଠି ମାଟି ତଳେତଳେ ଏତେ ସବୁ ସୁଡଙ୍ଗ ଅଛି ? ଏଠାକାର ଝରଣା ପାଣି ଆସୁଚି ଏତେ ଦୂରରୁ ? ବାବାଃ ! ଏ ୟେଲୋଷ୍ଟୋନ ପାର୍କ ସତରେ ଏକ ବିଚିତ୍ର ଜଗତ ।'' ବହୁରଙ୍ଗୀ

ଝରଣାର ରଙ୍ଗ ବେରଙ୍ଗ ଜଳବେଣୀ ଗୁଡ଼ିକୁ ବିସ୍ମୟ ବିଭୋର ଦୃଷ୍ଟିରେ ଅନାଇ ଅନାଇ ମୁଁ ଅନୁମାନ କରୁଥାଏ ଭୂତଳର ସ୍ଥିତିକୁ । ଆମ ପାଦତଳେ କଣ ସତରେ ଅନ୍ୟ ଏକ ଜଗତ ନାହିଁ ଯାହାକୁ କୁହାଯାନ୍ତା ସଇତାନର ବାସସ୍ଥାନ ନାମରେ ? ସେଇ ସଇତାନର ବାସସ୍ଥାନରୁ ନିର୍ଗତ ବହୁରଙ୍ଗୀ ଝରଣା କୂଳରେ କିଛି ସମୟ ଠିଆହୋଇ ଆମେ ପ୍ରକୃତିର ବିଚିତ୍ର କିମିୟାଗୁଡ଼ିକୁ ଦେଖିଦେଖି ବିସ୍ମୟ ବିଭୋର ହେଉଥାଉ । ଏଣେ ଦିନ ସରି ସରି ଆସୁଥାଏ ।

''ଶୀଘ୍ର ଶୀଘ୍ର ଚାଲ'' ଗୋଇଂସ୍ନେକ ପିଲାମାନଙ୍କୁ ଚେତେଇଦେଲେ, ''ଆହୁରି ବହୁତ ବହୁତ ଅଦ୍ଭୁତ ଗୈଜର ଅଛି ଆଗକୁ ।''

''ଆଉ କଣ କଣ ଅଛି ?'' ମୁଁ ପଚାରିଲି ।

ମୋ ପ୍ରଶ୍ନର ଉତ୍ତର ମିଳିଲା ଅଭିଜିତଙ୍କ ଆଡୁ । ସେ ଦେଖୁଥାନ୍ତି ଗାଇଡ ବହିରୁ ଚିତ୍ରଗୁଡାକୁ । କହିଲେ, ''ଏଇ ଯେମିତି– 'କମେଟଗୈଜର' ମାନେ ଲଂଜାତାରା ଗୈଜର । ପୁଣି ଅଛି 'ସ୍ପେଣ୍ଡିଡ ଗୈଜର', 'ବାଉଲ ଗୈଜର', 'ଡେଜି ଗୈଜର', 'ଗ୍ରୋଟୋ ଗୈଜର', 'ରିଭର ସାଇଡ ଗୈଜର', 'ଫ୍ୟାନ ଆଣ୍ଡ ମର୍ଟାର ଗୈଜର' ଆଉ ସବୁଠୁ ଚମତ୍କାର 'ମର୍ଣ୍ଣିଂ ଗ୍ଲୋରି' ଗୈଜର ଇତ୍ୟାଦି ଅଦ୍ଭୁତ ଅଦ୍ଭୁତ ଗୈଜରମାନ ଭର୍ତ୍ତି ହେଇଚି ଆଗକୁ ଆଗକୁ । ତେବେ ଚାଲନ୍ତୁ ଦେଖିବା ଏଇ ପାଖରେ– ''ମର୍ଣ୍ଣିଂ ଗ୍ଲୋରି ଗୈଜର'' ଆଗରେ ।

କିନ୍ତୁ ସେଇ ନାଁଟା ସିନା ଗାଇଡ ବୁକ୍‌ରୁ ମିଳିଗଲା; ସେ ଜାଗାକୁ ବାଟ କୋଉଠି ଖୋଜିବାକୁ ଡେରି ହବ ଜାଣି ଅଭିଜିତ ପଚାରିଲେ ଗୋଇଂସ୍ନେକଙ୍କୁ ।

ଗୋଇଂସ୍ନେକ ବାଟ କଢେଇ ନେଇଗଲେ ଆମ ଦଳକୁ ଠିକ୍ ଜାଗାକୁ ।

## ମର୍ଣ୍ଣିଂଗ୍ଲୋରି (Morning Glory)

ଦୂରରୁ ସେ ଜାଗାଟା ଏଭଳି ଆକର୍ଷଣୀୟ ଦିଶୁଥାଏ ଯେ ମନେହେଲା ଯେମିତି ଆମେ ୟେଲୋଷ୍ଟୋନ ପାର୍କର ସବୁଠୁ ସୁନ୍ଦର ଗୋଟିଏ ଦର୍ଶନୀୟ ସ୍ଥାନ ଆଡକୁ ଟାଣି ହେଇ ଚାଲୁଚୁ ! ପିଲାମାନେ ଖୁସିରେ ନାଚିଲେ ଜାଗାଟିକୁ ଦୂରରୁ ଦେଖୁଦେଖୁ ।

''ତମେମାନେ ଯଦି ଆଉ କିଛି ନଦେଖି ଆଜି ଖାଲି ଏଇ ଗୋଟିକ ଜାଗା ଦେଖି ଚାଲିଯାଇଥାନ୍ତ ତେବେ ବି ତମର ପାର୍କବୁଲା ସାର୍ଥକ ହୋଇଥାନ୍ତା...'' ଗୋଇଂସ୍ନେକ ପିଲାଙ୍କ ହସଖୁସିରେ ଭାଗ ନେଲା ପରି କହିଲେ, ''ସାରା ପୃଥିବୀ ଗୋଟାକର ଯେତେ ଦର୍ଶକ ଏ ପାର୍କକୁ ବୁଲି ଆସନ୍ତି ସମସ୍ତେ ଏ ଜାଗା ଛାଡ଼ି ଅନ୍ୟ କୁଆଡେ ଯିବାକୁ ଇଚ୍ଛା କରନ୍ତି ନାହିଁ । ତେବେ ଏ ଜାଗାଟାର ବିଉଟି ସକାଳରବେଳା ସବୁଠାରୁ ବେଶି ଅନୁଭବ କରିହୁଏ– ସେଥିପାଇଁ ଦରକାର ମର୍ଣ୍ଣିଂ ସନଲାଇଟ..''

ପିଲାଦୁହେଁ ଦଉଡ଼ିଲେ ସବା ଆଗେ ସେଠି ପହଞ୍ଚିଯିବାକୁ । ସେତେବେଳକୁ ଦର୍ଶକଙ୍କ

ଭିଡ ଜମିଥାଏ । ସେ ଭିଡ଼ରେ ଆମେ ଜାଗା ଟିକିଏ ପାଇବାକୁ ବ୍ୟାକୁଳ ହେଇପଡ଼ିଲୁ । ଶେଷରେ ଭିଡ଼ କାଟି ପହଞ୍ଚିଲୁ ।

ଆଖି ଖୋଷିହେଇପଡ଼ିଲା ଯେତେବେଳେ ମର୍ଣ୍ଣିଂଗ୍ଲୋରିର ଯଥାର୍ଥ ଗ୍ଲୋରି ମୋ ଆଖି ଆଗରେ ଉଭାହେଲା । ମର୍ଣ୍ଣିଂଗ୍ଲୋରି ଗୋଟିଏ ବିରାଟ ଗୈଜର; କିନ୍ତୁ ଏ ଗୋଟିଏ ଜଳାଶୟ । ଜଳାଶୟଟି ଦେଖିବାକୁ ଗୋଟିଏ ସୂର୍ଯ୍ୟମୁଖୀ ଫୁଲ ପରି । ଫୁଲ ମଝିରେ ଏକ ବିରାଟ କେଶର । କେଶର ଚାରିପାଖେ ଘୋର ଗଭୀର ଜଳରେ ଭଉଁରୀ ଖେଳିଲା ପରି ଏକ ଗଭୀର ଗର୍ତ୍ତ । ସେଠି ପାଣିର ରଙ୍ଗ ଦିଶୁଥାଏ ଶ୍ରୀକୃଷ୍ଣଙ୍କ ଶରୀରର ବର୍ଣ୍ଣ ପରି ଅବର୍ଣ୍ଣନୀୟ ଘନନୀଳ । ସେଇଟି ଜଳାଶୟର କେନ୍ଦ୍ର ବିନ୍ଦୁ । ତାକୁ କେନ୍ଦ୍ର କରି ଘୂରୁଥାଏ ଶତାଧିକ ବୃତ୍ତ । ବୃତ୍ତଗୁଡ଼ିକ ଗୋଟିଏ ବର୍ଣ୍ଣାଳୀ ପରି ଘନନୀଳ ବର୍ଣ୍ଣରୁ ଫିକା ହୋଇ କ୍ରମଶଃ ସମୁଦ୍ର, ଆକାଶ, ଶେଷରେ କୂଳ ଆଡକୁ ଏହାର ରଙ୍ଗ ପାଲଟିଥାଏ ସବୁଜ ଏବଂ କୂଳ ଉପରେ ଏହା ସବୁଜରୁ ହଳଦିଆ ଓ ଶେଷରେ ସୁନା ପରି ସମ୍ପୂର୍ଣ୍ଣ ସୁନେଲି ପାଲଟିଥାଏ । ସେଇ ବହଳ ହଳଦିଆ ଓ ସୁନା ରଙ୍ଗ ଯୋଗୁ ଜଳାଶୟଟିର ରୂପ ଦିଶୁଥାଏ ଏକ ବିଶାଳ ଆକୃତିର ସୂର୍ଯ୍ୟମୁଖୀ ଫୁଲପରି । ଫୁଲର ପାଖୁଡ଼ା ଗୁଡ଼ିକ ମଧ ସୁସ୍ପଷ୍ଟ ଆକାର ଧାରଣ କରିଥାଏ । ବୋଧହୁଏ ଗୈଜରଟିର ଏଇ ରୂପ ଓ ସୌନ୍ଦର୍ଯ୍ୟ ଯୋଗୁ ଏହାର ନାମ ରଖାଯାଇଥାଏ ମର୍ଣ୍ଣିଂଗ୍ଲୋରି ।

ଆମେ ସେ ଦୃଶ୍ୟ ଦେଖୁଦେଖୁ ଭୁଲିଗଲୁଣି ସେତେବେଳକୁ ସମୟ ।

ଏତିକିବେଳେ ମୋ କାନ ପାଖରେ ଫୁସଫୁସ ସ୍ୱରଟିଏ ଶୁଣିଲି– "ଆପଣ ଜାଣନ୍ତି ଏ ଗୈଜରଟାକୁ ଏ ଲୋକମାନେ ଜୀବନରୁ ମାରିଦବାକୁ ବସିଚନ୍ତି ?" ସେ ଥିଲା ଆମ ସାଥିରେ ଏତେ ସମୟ ଧରି ବନ୍ଧୁ ପରି ଘୂରିବୁଲୁଥିବା ଗାଇଡ୍‌ର କାନ୍ଦୁରା ସ୍ୱର ।

"ହ୍ୱାଟ ?" ଚମକିପଡ଼ିଲି । ସମସ୍ତେ ତା ପରେ ମର୍ଣ୍ଣିଂଗ୍ଲୋରିରୁ ମୁହଁ ଟେକି ଚାହିଁଲେ ମୋ ମୁହଁକୁ ।

"ହଁ ! ଅପେକ୍ଷା କରନ୍ତୁ ଦେଖିବେ କଣ ପାଇଁ ଏକଥା କହୁଚି ମୁଁ– ଦେଖିବେ ତା କାରଣ– ଟିକେ ଅପେକ୍ଷା କରନ୍ତୁ ।" ଗୋଇଂସ୍ନେକ ଆଖି ଠାରି ମତେ ଦେଖେଇଦେଲେ ଲୋକ ଗହଳି ଭିତରୁ ଜଣେ ଟୁରିଷ୍ଟକୁ । ଗୋରାଲୋକଟାର ଚେହେରାରୁ ମନେ ହେଉଥାଏ ସେ ହୁଏତ ଜଣେ ଆମେରିକାନ ବା ୟୁରୋପର କେଉଁ ଦେଶର । ସେ ତା ହାତରେ ଗୋଟାଏ ବିଅର କ୍ୟାନ ଧରିଥାଏ ଓ ସେଥିରୁ ଢୋକେଢୋକେ ବିଅର ପିଇପିଇ ଖୁବ୍ ତନ୍ମୟ ଦୃଷ୍ଟିରେ ଅନାଇ ଉପଭୋଗ କରୁଥାଏ ମର୍ଣ୍ଣିଂଗ୍ଲୋରିର ସୌନ୍ଦର୍ଯ୍ୟକୁ ।

ଦେଖୁ ଦେଖୁ ସେ ମଦ୍ୟପ ତା ହାତର ବିଅର କ୍ୟାନଟାକୁ ଉପରକୁ ଟେକି ମୁହଁକୁ ନିଗାଡିଦେଲା ଶେଷ ବିନ୍ଦୁ ଟିକକ, ତା ପରେ ଖାଲି କ୍ୟାନଟାକୁ ଫୋପାଡ଼ିଲା ମର୍ଣ୍ଣିଂଗ୍ଲୋରି ମଝିକୁ । କ୍ୟାନଟା ଯାଇ ଥପ୍‌କରି ପଡ଼ିଲା ଏକେବାରେ କେଶର ମଝି ଭଉଁରି ଭିତରେ ।

ଖାଲି ବିଅର କ୍ୟାନଟା ବେଶ୍ କିଛି ବେଳ ଘୂରିଘୂରିକା ଶେଷରେ ଟୁବ୍ କିନା ବୁଡ଼ିଗଲା ତଳକୁ । ହଜାର ହଜାର ଦର୍ଶକ ଦେଖୁଥାନ୍ତି । ପରେପରେ ଆଉ ଗୋଟାଏ କଣ ଜିନିଷ ଆସି ପଡ଼ିଲା ସେଇ କେଶର ମଝି ଭଉଁରୀରେ– ବୋଧହୁଏ ପିଲାଙ୍କ ଖେଳନା ।

"ଏଇ ଭାଣ୍ଡାମି ହେଲା କାରଣ"– ଗୋଇଂସ୍ନେକ ଦୁଃଖ ପ୍ରକାଶ କଲେ । କହିଲେ, "ୟା ଭିତରକୁ ଲୋକେ କଣକଣ ଜିନିଷ ନ ଫୋପାଡୁଚନ୍ତି ଗଲା ପଚାଶ ଶହେ ବର୍ଷ ଧରି ! ଆମେରିକାନ ପେନି, ଇଂଲିସ ଫାର୍ଦିଂ– ଦୁନିଆ ଯାକର ଦେଶର ମନି ଗଦା ହେଇଚି ୟା ପେଟରେ । ବିଭିନ୍ନ ଦେଶର ଟୁରିଷ୍ଟ ଫିଙ୍ଗନ୍ତି ନିଜ ନିଜ ଦେଶର ମୁଦ୍ରା ଏ ପୁଲ ଭିତରକୁ ନିଜ ନିଜ ଶୁଭ ମନାସି । ପୁଣି ଶୁଣିବେ– ଏଠି ପ୍ରେମିକ ପ୍ରେମିକାଙ୍କ ଉତ୍ପାତ ବହୁତ । ମୁଦଦିଆ ନୀଳ ଲଫାପାରେ ଭର୍ତ୍ତିକରି ଆଣିଥାନ୍ତି ଫର୍ଦ୍ଦ ଫର୍ଦ୍ଦ ପ୍ରେମ ପତ୍ର ନିଜ ସାଙ୍ଗରେ । ସେଗୁଡ଼ାକୁ ଫିଙ୍ଗିଦିଅନ୍ତି ମର୍ଣ୍ଣିଂଗ୍ଲୋରିର ଗର୍ଭ ଭିତରକୁ । ବିଶ୍ୱାସ ଯେ ପ୍ରେମିକ ବା ପ୍ରେମିକା ନିଶ୍ଚେ ପଡ଼ିଯିବ ଗଭୀର ପ୍ରେମରେ– ଏ ଚିଠି ମର୍ଣ୍ଣିଂ ଗ୍ଲୋରି ହାର୍ଟକୁ ଛୁଇଁଲା ମାତ୍ରେ ! କାଗଜ, ପ୍ଲାଷ୍ଟିକ, ମେଟାଲସ, ଗୋଡି ପଥର କାଠରେ ଭରପୂର ହେଇଗଲାଣି ଏ ପୋଖରୀ ତଳ । ତା ଫଳ କଣ ହେଉଚି ଜାଣନ୍ତି ?" ଗୋଇଂସ୍ନେକ ଆମକୁ ଦେଖେଇଲେ ତା ପରେ ଗୈଜରଟାର ଫନ୍ଦ ଭଳି ଗୋଟାଏ ଜାଗା– ଜାଗାଟା ଦିଶୁଥାଏ ସମ୍ପୂର୍ଣ୍ଣ ମାଟିଆ ।

"କିଛି ବର୍ଷ ତଳେ ଏଇ ଫନ୍ଦର ରଙ୍ଗ ଝଟକୁଥିଲା ସୁନା ଭଳି ହଳଦିଆ– ବର୍ତ୍ତମାନ ଦିଶୁଚି ଲୁହାରେ କଳଙ୍କି ଲାଗିଲା ପରି ଖଇରିଆ । ଏଇ ଉନ୍ନତି ହେଉଚି ଆମର ଏଠି ଏ ବିଶ୍ୱପ୍ରସିଦ୍ଧ ୟେଲୋଷ୍ଟୋନ ନ୍ୟାସନାଲ ପାର୍କ ବୋଲାଉଥିବା ପୃଥିବୀର ଅଦ୍ୱିତୀୟ ପରିବେଶ ମଣ୍ଡଳରେ । ଏଠାକୁ ଲକ୍ଷଲକ୍ଷ ଟୁରିଷ୍ଟ ଆସନ୍ତି ପ୍ରତିବର୍ଷ । ହଁ, ବହୁତ ଆୟ ହୁଏ ଏ ଦେଶର ସରକାରଙ୍କର । କିନ୍ତୁ ବର୍ଷ ପରେ ବର୍ଷ ପରେ ଫିଙ୍ଗା ଚାଲିଚି ମଇଳା... । କେତେଦିନ ସମ୍ଭାଳିବ ? ଆପଣମାନେ ଭାଗ୍ୟବାନ୍ । ଯଦି ଆଉ କିଛି ବର୍ଷ-ପରେ ଆସିବେ ଏଠିକି ତେବେ ଏଠି ମର୍ଣ୍ଣିଂଗ୍ଲୋରି ଜାଗାରେ ଦେଖିବେ ଖତଗଦା !"

ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟ ଛୁଇଁସାରିଥାନ୍ତି ।

ଅଭିଜିତ ହାତ ଘଡିକୁ ଚାହିଁଲେ । ପରେପରେ ଗାଇଡ ବହିକୁ ଅନେଇ କହିଲେ, "ସରି ମିଃ ଗୋଇଂସ୍ନେକ । ଆମ ହାତରେ ଆଉ ବେଶି ସମୟ ନାହିଁ । ଆମକୁ ଯିବାକୁ ଅଛି 'ଓ୍ୱେଷ୍ଟ ଥମ୍ୱ' ।"

"ଓ ! ଓ୍ୱେଷ୍ଟ ଥମ୍ୱ ? ସେ ଇଲାକାରେ ଗୋଟାଏ ବିରାଟ ହ୍ରଦ ଅଛି– 'ୟେଲୋଷ୍ଟୋନ ଲେକ' । ଯାଆନ୍ତୁ ଦେଖିବେ । କିନ୍ତୁ କଦାପି ଭୁଲିବେ ନାଇଁ ଏ ପାର୍କର ଗୋଟାଏ ମିଷ୍ଟିରିଅସ ସାଇଟ ଦେଖିବାକୁ । ସେ ଜାଗା ନାମ 'ମିନର୍ଭା ଟେରାସ' । ସେଇଟା ଦେଖିବା ଲାଏକ ଏ ପିଲାମାନଙ୍କର । ସେଠି ଦେଖିବେ ପର୍ବତରୁ ଝରୁଚି ପାଣି ନୁହେଁ–

ମୋଲଟନ ସଲଫର । ଦୂରରୁ ଦିଶିବ ବରଫର ଗ୍ଲେସିୟର ପରି– କିନ୍ତୁ ପାଖକୁ ଯାଇ ଦେଖିବେ ସେ ଗ୍ଲେସିୟର ବରଫ ନୁହେଁ, କେବଳ ତରଳ ସଲଫର । ଏ ଭଳି ଅଦ୍ଭୁତ ଦୃଶ୍ୟ ପୃଥିବୀରେ ବିରଳ– ଅନ୍ୟ କୋଉ ଗ୍ରହରେ ହୁଏତ ସମ୍ଭବ । ଜମା ଭୁଲିବେ ନାଇଁ ସେ ଦୃଶ୍ୟ ଦେଖିବାକୁ ।'' ଗୋଇଂସ୍ନେକ ବିଦାୟନେବାକୁ ପ୍ରସ୍ତୁତ ହେଲେ ।

କୁଲି ତା ପର୍ସ ଖୋଲି ଗୋଟାଏ ପଚାଶ ଡଲାର ନୋଟ ଧରିଥାଏ ହାତରେ– ଗୋଇଂସ୍ନେକଙ୍କ ଗାଇଡ କାମ ପାଇଁ ମୂଲ ।

ଲୋକଟି ତା ମୂଲ ନେଇ ଖୁସିରେ ପୁଣି ଥରେ କହିଲା, ''ୱାଡୋ ୱାଡୋ– ଥ୍ୟାଙ୍କ ୟୁ ଥ୍ୟାଙ୍କ ୟୁ'' । ପରେପରେ ସେ ଚାଲିଲା ଟାଉ ଟାଉ ହେଇ କୁଆଡେ କେଜାଣି । ୟେଲୋଷ୍ଟୋନ ପାର୍କର ଗହନ ପାଇନ ବଣ ଭିତରେ ହଜିଗଲା ସେ ଆଖି ପିଛୁଳାକେ ।

ଆମେ ୟେଲୋଷ୍ଟୋନ ପାର୍କରେ ଦୁଇଦିନର ଭ୍ରମଣ ପ୍ଲାନ କରି ଘରୁ ବାହାରିଥିଲୁ । ସେଦିନ ସନ୍ଧ୍ୟାରେ ଆମେ ଫେରିଗଲୁ ମାଡ଼ିସନ ଟାଉନରେ ଆମ ପାଇଁ ରିଜର୍ଭ ଥିବା ହୋଟେଲକୁ । ସେଦିନ ରାତିରେ ହଠାତ୍ ମୋର ଦେହ ଖରାପହେଲା । ସେଥିପାଇଁ ପରଦିନର ୟେଲୋଷ୍ଟୋନ ପାର୍କ ଭ୍ରମଣ ପ୍ରୋଗ୍ରାମକୁ କାଟଛାଂଟ କରିବାକୁ ପଡ଼ିଲା । ତଥାପି ୟେଲୋଷ୍ଟୋନ ପାର୍କର ସେଇ ଅଦ୍ଭୁତ ସ୍ଥାନ ''ମିନର୍ଭା ଟେରାସ''ର ସଲଫର ଗ୍ଲେସିୟର ଗୁଡ଼ିକୁ ନଦେଖି ଫେରିଆସିବାର ପ୍ରଶ୍ନ ନଥିଲା । ସେ ସ୍ଥାନକୁ ଦେଖିଲେ ଯେ କେହି ନିଶ୍ଚୟ ବୁଝିପାରିବ କାହିଁକି କୋଲଷ୍ଟର ରିପୋର୍ଟରେ ୟେଲୋଷ୍ଟୋନ ପାର୍କକୁ କୁହାଯାଇଥିଲା The Home of Satan ବୋଲି । ସେଠି ଚତୁର୍ଦ୍ଦିଗରେ କେବଳ ହଳଦୀ ବର୍ଣ୍ଣର ଏକ ଅର୍ଦ୍ଧତରଳ ବସ୍ତୁ ନଦୀ ନାଳ ଝରଣା ପରି ପ୍ରବାହିତ ହେଉନାହିଁ– ଦେଖିଲି ପାହାଡ କାନ୍ଥ ଫୁଟେଇ ଶୁଷ୍କ ଗ୍ରାନାଇଟ ପଥର ଭିତରୁ ପିଚିକି ପଡୁଚି ଧାରଧାର ସଲଫର ! ଶେଷରେ ଦେଖିବାକୁ ମିଳିଲା ସେଇ ମିନର୍ଭା ଟେରାସର ଆହୁରି ଏକ ଅର୍ଥପୂର୍ଣ୍ଣ ଦୃଶ୍ୟ ! ଏକ ସ୍ଥାନରେ ଗୋଟାଏ ବିଶାଳ ହାତୀ ଆକୃତିର ପାହାଡ ମୁଣ୍ଡରୁ ଝରଝର ହେଇ ବୋହିଚାଲିଥାଏ ସଲଫର (ଗନ୍ଧକ)ର ଝର । ପୁଣି ଅନ୍ୟ ଏକ ସ୍ଥାନରେ ଦେଖିବାକୁ ମିଳିଲା ଆହୁରି ଅର୍ଥପୂର୍ଣ୍ଣ ଏକ ଦୃଶ୍ୟ । ସେଠାରେ ଏକ ବିଶାଳ ଶିବଲିଙ୍ଗ ଆକୃତିର ପଥରର ମସ୍ତକରୁ ବୋହିଯାଉଥାଏ ଧାରଧାର ତରଳ ଗନ୍ଧକର ଝରଣା । ସେ ଅଭାବିତ ଦୃଶ୍ୟ ଯେକୌଣସି ଭାରତୀୟର ମନରେ ଉଦ୍ରେକ କରିବ ଶିବଭାବ । ଭଗବାନ ଶିବଙ୍କ ଜଟାରୁ ଗଙ୍ଗା ପ୍ରବାହିତ ହେବା ପରି ସେ ଦୃଶ୍ୟ ମତେ ଅଭିଭୂତ କଲା । ସେଇ ଶିବଭାବ ନେଇ ଆମେ ସେଦିନ ଅପରାହ୍ଣରେ ୟେଲୋଷ୍ଟୋନ ଭ୍ରମଣ ସାରିଲୁ ଓ ଫେରି ଆସିଲୁ ୟୁଟାଃ ସଲଟଲେକ ସିଟିକୁ ।

ୟେଲୋଷ୍ଟୋନ ଭ୍ରମଣ ଥିଲା ଆମେରିକାରେ ମୋ ପାଇଁ ଏକ ଶୈବତୀର୍ଥ ଦର୍ଶନର ଅନୁଭବ ଏବଂ ଏକ ସ୍ଥାୟୀ ପ୍ରଭାବଶାଳୀ ଅଭିଜ୍ଞତା ।

## ପଶ୍ଚିମ-ଗୋଲାର୍ଦ୍ଧର ସର୍ବ-ବୃହତ୍ ଲବଣହ୍ରଦ–

## The Great Salt Lake, Utah

– ତା ୧୮ ଅକ୍ଟୋବର, ୨୦୦୮ ।

ୟୁଟାଃର ଏକ ଆଶ୍ଚର୍ଯ୍ୟକର ସ୍ଥାନ ହେଲା ଏ ରାଜ୍ୟର ଲବଣ ହ୍ରଦ । କୁହାଯାଏ ଏ ହ୍ରଦ ହେଲା ପଶ୍ଚିମଗୋଲାର୍ଦ୍ଧର ସବୁଠୁ ବଡ ଲୁଣିପାଣି ହ୍ରଦ । ଲୁଣି ପାଣି ହ୍ରଦ ଆମ ଓଡିଆଙ୍କ ପାଇଁ କିଛି ନୂଆ ନୁହେଁ । ଆମ ରାଜ୍ୟର ଚିଲିକା ହ୍ରଦ ତ ସମଗ୍ର ଏସିଆର ସବୁଠୁ ବଡ ଲୁଣିପାଣି ହ୍ରଦ– ଏଥିରେ ଆଶ୍ଚର୍ଯ୍ୟ କଥା କ'ଣ ଯେ ଆମେ ଏଠାକାର ସେପରି ଗୋଟାଏ ହ୍ରଦ ଦେଖିବାକୁ ସେତେ ଗୁରୁତ୍ୱପୂର୍ଣ୍ଣ ମନେକରିଥାନ୍ତୁ ? କିନ୍ତୁ ଅଭିଜିତ୍ ମତେ ଅବାକ୍ କରିଦେଲେ । କହିଲେ– ନନା ! ଆପଣଙ୍କୁ ରକି ମାଉଣ୍ଟେନ୍‌ସ୍‌ର କେତେଗୁଡିଏ ବିଚିତ୍ର ସ୍ଥାନ ଦେଖେଇବାକୁ ପ୍ଲାନ କରିଚୁ । ସେସବୁ ଜାଗା ଦେଖିଲେ ଆପଣ ନିଶ୍ଚୟ ଚିରଦିନ ଲାଗି ଆପଣଙ୍କର ଏଇ ୟୁଟାଃ ରହଣିକୁ ମନେରଖିବେ । ଚାଲନ୍ତୁ ଦେଖିବେ ସଲଟ୍‌ଲେକ୍ । ପରେପରେ ଆମେ ପ୍ରୋଗାମ୍ କରିଚୁ– ଯିବା ୟେଲୋଷ୍ଟୋନ୍– ଯା'ପରେ ବ୍ରାଇସ୍ କେନିୟନ୍ । ଏସବୁ ସ୍ଥାନ ବିଶ୍ୱପ୍ରସିଦ୍ଧ । ଥରେ ଦେଖିଲେ ଆପଣ ଜାଣିପାରିବେ କାହିଁକି ରକି ପର୍ବତକୁ କୁହାଯାଏ The treasure mountain of America । ଆପଣ ନିଶ୍ଚୟ ଶୁଣିଥିବେ ଗଲା ଶତାବ୍ଦୀର ଆମେରିକାର Gold Rush ବିଷୟରେ ଅନେକ କାହାଣୀ । ସେ ଗୋଲଡ୍ ରସ୍‌ର କେନ୍ଦ୍ରାଂଚଳ ହେଲା ରକି ମାଉଣ୍ଟେନ୍‌ସ୍ ଉପରେ ଅବସ୍ଥିତ କେତେଟା ଜାଗା– ତା' ଭିତରେ ପ୍ରଧାନ ଆମର ଏଇ ରାଜ୍ୟ ୟୁଟାଃ । ଆଉ ଏ ରାଜ୍ୟର ରାଜଧାନୀ ହେଲା ଆମ ଏ ସହର ସଲଟ୍‌ଲେକ୍ ଯୋଉଟା ଥିଲା ଗୋଲଡ୍ ରସ୍‌ର ହେଡ୍‌କ୍ୱାର୍ଟର୍ ! ...ଚାଲନ୍ତୁ ବାହାରିବା ।

ଆଜି ଶନିବାର– ୱିକ୍ ଏଣ୍ଡ ଛୁଟି ଦିନ । ସକାଳ ୧୧ରେ ଆମେ ସପରିବାର ଘରୁ ବାହାରିଲୁ । ଅଭିଜିତ୍ କାର୍ ଡ୍ରାଇଭ୍ କରୁଥାନ୍ତି ଆଉ ଆମେ ଚାରିଜଣ ସବାର । ଆମେ ବୋଇଲେ ନିରୁପମା, ଜୁଲି, ଆମର ଦୁଇଟି ଗେହ୍ଲା ନାତୁଣୀ ଅଙ୍କିତା (୧୨) ଆଉ ଆନୁ (୭) ଆଉ ମୁଁ । ପାଗଟା ଭାରି ବଢିଆ । ସୁନେଲି ଖରା ବିଛେଇ ହେଇ ପଡିଥାଏ ଚାରିଆଡେ । ଅକ୍ଟୋବର ମାସଟି ଏ ଦେଶର ଶରତ୍‌ଋତୁର ଶେଷ ମାସ । ଯା'କୁ କହନ୍ତି ପତ୍ରଝଡା ବା 'ଫଲ୍'ର ମାସ । ବଡବଡ ଗଛର ପତ୍ରଗୁଡାକ ଲାଲ୍ ହଳଦୀ ନୀଳ ଇତ୍ୟାଦି ହରେକ ରଙ୍ଗରେ ରଂଜିତ ହେଇସାରିଥାଏ । ଯା ପରେ ଆସିଯିବ ଶୀତ । ୟୁଟାଃର ଶୀତ ଭାରି ଟାଣ । ନଭେମ୍ବର ଆରମ୍ଭରୁ ପଡିବ ବରଫ । ଆଃ– ମୁଁ ତ ସେଇ ଲୋଭରେ ଏ ବର୍ଷ ଜାଣିଜାଣି ଟିକେଟ୍ କରିଚି ଇଣ୍ଡିଆ ଫେରିବାକୁ ଡିସେମ୍ବରରେ । ଖାସ୍ କାରଣ– ତୁଷାରପାତ କେମିତି ହୁଏ, କେମିତି ଦିଶେ, ସେ ଦୃଶ୍ୟ ଥରେ ସ୍ୱଚକ୍ଷୁରେ ଭଲକରି ଦେଖିବା ପାଇଁ ।

ହଠାତ୍ କାନରେ ପଡିଲା– ନନା ! ଅଭିଜିତ୍ ଡାକିଲେ ଡ୍ରାଇଭିଂସିଟ୍‌ରୁ– ବାଁ ପଟକୁ ଚାହାନ୍ତୁ– ସେ ଯୋଉ ଗ୍ରେଟ୍ ଚାଇନିଜ୍ ୱାଲ୍ ଭଳି ପର୍ବତମାଳା ଲମ୍ବିଯାଇଚି ହେଇ ସେଠି– ସେଗୁଡାକ ହେଲା ରକିଜ୍– ଏ ରକିପର୍ବତମାଳା କୋଉଠୁ ବାହାରି କୋଉ ଯାକେ ଲମ୍ବିଚି ଜାଣନ୍ତି ? ଉତ୍ତରଦିଗରେ କାନାଡାରୁ ବାହାରି ଏ ପର୍ବତ ଲମ୍ବିଚି ଦକ୍ଷିଣରେ ନିଉ ମେକ୍ସିକୋ ଯାକେ– ପ୍ରାୟ ତିନିହଜାର ମାଇଲ୍– । ୟା' ତୁଳନାରେ ଆମ ହିମାଳୟ କେତେ ଛୋଟ ଭାବନ୍ତୁ ନା– ମୋଟେ ପନ୍ଦର ଶହ ମାଇଲ୍– ୟା'ର ଅଧା ।

କାର୍ କାଟଦେଇ ରାସ୍ତାକଡକୁ ଅନେଇ ଦେଖିଲି ଗୁଡାଏ ପର୍ବତ ମାଳ ମାଳ ହେଇ ଧାଇଁଚନ୍ତି ରାସ୍ତା କଡେକଡେ ଆମ ସାଙ୍ଗେ ସାଙ୍ଗ ହେଲା ଭଳି । ପର୍ବତ ଗୁଡାକ ବେଶ୍ ଉଚ୍ଚା ହେଲେ ବି ଜମାରୁ ସୁନ୍ଦର ନୁହନ୍ତି । ମନେପଡିଗଲା ହରିଦ୍ୱାର ଋଷିକେଶ ପାଖ ହିମାଳୟର ସେ ଅପୂର୍ବ ଦୃଶ୍ୟ ସବୁ । ହିମାଳୟ ସଂପର୍କରେ ଅଭିଜିତ୍‌ଙ୍କ ମତାମତକୁ ଦୃଷ୍ଟିରେ ରଖି ଟିକେ ଲଘୁ ସ୍ୱରରେ କହିଲି, "ହଁ, ତମ ରକି ପର୍ବତ ଭାରି ଲମ୍ବା ପାହାଡ ମାନୁଚି– ହେଲେ ତମର ଏ ପର୍ବତରେ କେତେଟା ତୀର୍ଥସ୍ଥାନ ଅଛି କହିଲ ? ଏଇଟା ଗୋଟାଏ ତୀର୍ଥବିହୀନ ଦେଶ । ଏ ମାଟିରେ ଯଦି ଭଗୀରଥ ଜନ୍ମହେଇଥାନ୍ତେ ତେବେ ସିନା ଗଙ୍ଗାଙ୍କୁ ଆଣିଥାନ୍ତେ ସ୍ୱର୍ଗରୁ ! ତେବେ ସିନା ଗଙ୍ଗାଦେବୀଙ୍କୁ ନିଜ ଜଟାରେ ଅବତରଣ କରିବାକୁ ଏ ପର୍ବତ ଉପରେ ବସିଥାନ୍ତେ ବ୍ୟୋମକେଶ ଶିବ । ଏ ପବର୍ତଟା ତିନିହଜାର ମାଇଲ୍ ଲମ୍ବ କହୁଚ– ୟା' ଉପରେ କୋଉଠି ମନ୍ଦିରଟିଏ ଅଛି ଯୋଉଠି ସକାଳେ ସଞ୍ଜେ ଘଣ୍ଟା ବାଜେ, ଶଂଖ ଧ୍ୱନି ଶୁଣାଯାଏ ? ଏ ତମର ଗୋଟାଏ ଅପାଣ୍ଡବା ଦେଶ ନା ଆଉ କ'ଣ ?"

ମୋ ମୁହଁରୁ କଥା ନସରୁଣୁ ଆମ ନାଚବାଲୀ ନାତୁଣୀ ଅଙ୍କିତା ଝାମ୍ପିପଡି କହିଲା, "ଅଜା ଜାଣିଚ, ଆମର ଏ ସଲଟ୍‌ଲେକ୍ ସିଟିରେ ହିନ୍ଦୁ ମନ୍ଦିର ତ ଅଛି ତୁମେ ଦେଖିଚ, ତା' ବାହାରେ ଆଉ ଗୋଟାଏ ବଡ ମନ୍ଦିର ଅଛି ଯୋଉଠି ଜଗନ୍ନାଥଙ୍କୁ ପୂଜାକରାଯାଏ । ସେଠି ଠାକୁର କିଏ କିଏ ଅଛନ୍ତି ଜାଣ ? ଜଗନ୍ନାଥ ବଳଭଦ୍ର ସୁଭଦ୍ରାଙ୍କୁ ଛାଡି ଆମ ହିନ୍ଦୁଙ୍କ ସବୁ ଠାକୁର– ରାମ ଲକ୍ଷ୍ମଣ ସୀତାଙ୍କଠୁ ରାଧା କୃଷ୍ଣ ସମସ୍ତେ । ସେ ମନ୍ଦିରରେ ଘଣ୍ଟାବାଜେ, ଶଂଖବାଜେ, ଧୂପ ଦୀପ ଆଳତି ହୁଏ. . . ସେ ମନ୍ଦିରରେ ନାଚ କରିବାକୁ ମତେ ନିମନ୍ତ୍ରଣ କରନ୍ତି ସେଠାର ବାବାଜୀ ମହାରାଜ । ବାବାଙ୍କ ନାମ ଚାରୁ ଦାସ । ପୂରା ଆମେରିକାନ୍ ଲୋକ । ସେ ଧୋତୀ ପଂଜାବୀ ପିନ୍ଧନ୍ତି । ଚନ୍ଦନ ଚିତା ଲଗେଇ ପୂଜା କରନ୍ତି । ପ୍ରତି ସକାଳେ ସନ୍ଧ୍ୟାରେ ସଂକୀର୍ତ୍ତନ ହୁଏ ସେ ମନ୍ଦିରରେ । ତାଙ୍କ ସ୍ତ୍ରୀ ବି ହ୍ୱାଇଟ୍ ଆମେରିକାନ୍– କିନ୍ତୁ ଦେଖିଲେ ଭାବିବ ପୂରା ଇଣ୍ଡିୟାନ୍– ଶାଢୀ ପିନ୍ଧନ୍ତି, ଚିତା ଚନ୍ଦନ ଲଗାନ୍ତି, ମାଳ ପିନ୍ଧନ୍ତି– ଦେଖିବାକୁ ଠିକ୍ ମୋ ଆଈ ଭଳି ।"– ନିରୁପମାଙ୍କୁ କୁଣ୍ଢେଇଧରି ଘୋଷଣାକଲା ବଡ ନାତୁଣୀ ଅଙ୍କିତା ।

– "ଏଁ, ଦେଖିବାକୁ ଆଈ ଭଳି ?"– ମୁଁ ହୋ ହୋ ହେଇ ହସିପକେଇଲି । ସମସ୍ତେ ହସିହସି ଅନେଇଲୁ ଆଈନାତୁଣୀଙ୍କ ମିଳନ ଦୃଶ୍ୟକୁ । ସାନ ନାତୁଣୀ ଆନୁର ହସ ବନ୍ଦ କରି ହେଲାନାହିଁ ବେଶ୍ କିଛି ସମୟ । ସେଇ ହସରେ ହସରେ ଆମେ ପହଞ୍ଚିଗଲୁ ଆମର ଗନ୍ତବ୍ୟସ୍ଥଳ ଗ୍ରେଟ୍ ସଲଟ୍‌ଲେକ୍ ପାଖରେ ।

ବାଟରେ ଗୋଟାଏ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ଟିକେ ଗାଡି ଅଟକେଇଲେ ଅଭିଜିତ୍ । ଦେଖିଲୁ ଗୋଟାଏ ବିସ୍ତୀର୍ଣ୍ଣ ପଡିଆ ଜମି ଉପରେ ଗଡୁଚି ମାଳମାଳ କ'ଣ ସେଗୁଡାକ ? ମଣିଷ ଖପୁରି ନୁହଁ ତ ?

ଅଭିଜିତ୍ କହିଲେ, "ଏ ଗୁଡାକ ହେଲା ଏଠାକାର ଗୋଟାଏ ଜାତିର କଖାରୁ ଯାହାକୁ କହନ୍ତି ଜୁକିନି । ଯାକୁ ବିଲରୁ ତୋଳିନବାକୁ ବୋଧେ ଚାଷୀର ସମୟ ହେଲାନାହିଁ । ଲଟା ସବୁ କେବେଠୁ ମଲାଣି– ଫସଲ ଉଜୁଡୁଚି ବିଲରେ । ଏ ଦେଶର ସମସ୍ୟା ହେଲା ଏଇଆ– ଏତେ ପ୍ରଚୁର ଫଳ ଗଛରେ ଫଳେ ଯେ ସେଗୁଡାକୁ ଅମଳ କରିବାକୁ ଲୋକ ଅଭାବ । ଜାଣନ୍ତି ନନା । ଆପଣମାନେ ଆସିବା ଆଗରୁ ମତେ ଜଣେ ଲୋକ କହିଲା– ହେୟ ! ତମେ ପିଚ୍ ତୋଳିବ ? ଆସ ମୋ ଅର୍ଚାଡ୍‌କୁ । ପିଚ୍ ତୋଳିବ ଆଉ ଯେତେ ଖାଇବ ଯେତେ ଘରକୁ ନବ ନିଅ । ଏ ଦେଶରେ ରୋଗ ହେଲା ପ୍ରାଚୁର୍ଯ୍ୟ– over production !"

ଧୀରେ ଧୀରେ ପ୍ରାକୃତିକ ଦୃଶ୍ୟପଟ ବଦଳିବାକୁ ଲାଗିଲା । କିଛି ସମୟ ପୂର୍ବରୁ ଗଛପତ୍ରର ଯୋଉ ଜୀବନ୍ତ ସବୁଜିମା ଆଖିରେ ପଡୁଥିଲା ସବୁ ଯେମିତି ଆଖି ପିଛଡାକେ କୁଆଡେ ହଜିଗଲା । ଆମ କାର୍ ଦିଗ ବଦଳେଇ ଚାଲିଥାଏ ସଲଟ୍ ଲେକ୍ ମୁହାଁ । ଆଉ ପ୍ରକୃତିମାତା ତା' ରଙ୍ଗୀନ୍ ପାଟଶାଢିଟାକୁ ବଦଳେଇ ଆମ ଆଗରେ ଉଭାହେଇଗଲା ଗୋଟାଏ ଖାଙ୍କରକେଶୀ ମଳିନ ମାଟିଆ ଶାଢି ପିନ୍ଧା ଗାଉଁଲି ମାଇପୀ ଲୋକଟିଏ ଭଳି ।

ଅଭିଜିତ୍ କହିଲେ– We now enter into a desert ! See how the climate changed so suddenly from moist coolness to hot desert dryness !

ଅଭିଜିତ୍ ଡ୍ରାଇଭ୍ କରି ଚାଲିଲେ ଗୋଟାଏ ରାସ୍ତାରେ ଯାହାର ଦି'ପାଖେ ଯୁଆଡେ ଅନେଇଲେ ଦିଶୁଥାଏ ବାଲିବନ୍ତ ଆଉ ନାଗଫେଣିଆ । ପାଣିପାଗ ବଦଳିବା ସହିତ ବଡବଡ ଗଛସବୁ ଆଖି ପିଛଳାକେ କେମିତି ପାଲଟିଯାଏ ଗୁଳ୍ମକୁ– ତା' ପ୍ରମାଣ ମିଳିଗଲା ହାତେ ହାତେ । ୟୁଟାଃର ଏ ପଶ୍ଚିମପଟଟା ପୂରା ମରୁଭୂମି । ଆଉ, ଏଇ ମରୁଭୂମିର ମଝିରେ ଅବସ୍ଥିତ ଏକ ପ୍ରାଚୀନ ମୃତ-ସମୁଦ୍ର । ତା'ରି ନାଁ ତାହେଲେ ସଲଟ୍‌ଲେକ୍ ? ଭୂଗୋଳର କରାମତି ମତେ ବିସ୍ମିତ କରିବାକୁ ଆରମ୍ଭ କରୁଥାଏ ସେତେବେଳେ ।

କିଛି ସମୟ ଡ୍ରାଇଭ ପରେ ଆମେ ପହଞ୍ଚିଲୁ ଗୋଟାଏ ରୋଡ ବ୍ଲକ୍ ସାମ୍ନାରେ । ସେଠି ଥାଏ ବଡ ଲୁହା ଗେଟ୍ । ବନ୍ଧୁକଧାରୀ ଗାର୍ଡମାନେ ଗେଟ୍ ଜଗି ଠିଆହେଇଥନ୍ତି ।

ବିଲ୍‌କୁଲ୍ ଗୋଟାଏ ସିକ୍ୟୁରିଟି ଚେକିଂ ବ୍ୟବସ୍ଥା ଦେଖି ମୁଁ ସନ୍ଦେହକଲି– ଏଠି ବି କ'ଣ ଆତଙ୍କବାଦର ଆଶଙ୍କା ନା କ'ଣ? ପରେ ବୁଝିଲି ସଲଟ୍‌ଲେକ୍ ଗୋଟାଏ ନ୍ୟାସ୍‌ନାଲ୍ ପାର୍କ। ସାରା ପୃଥିବୀରୁ ଭ୍ରମଣକାରୀମାନେ ଆସନ୍ତି ଏ ହ୍ରଦ ଦେଖିବାକୁ। ପ୍ରବେଶପାଇଁ ଏଠି କରାଯାଇଚି ଟିକେଟ୍ ବ୍ୟବସ୍ଥା– ପ୍ରତି କାର ପିଛା ଆଠ ଡଲାର।

ଟିକେଟ୍ କିଣାଗଲା ପରେ ପ୍ରବେଶ ଦ୍ୱାରର ଗେଟ୍ ଖୋଲିଲା କାର ଭିତରକୁ ଯିବାପାଇଁ । ଯା'ପରେ ଏକ ଲମ୍ବା ରାସ୍ତାରେ ଡ୍ରାଇଭ୍– ରାସ୍ତାକଡରେ ଖାଲି ବାଲି ଆଉ କଣ୍ଟା ଗଛ– ଗୋଟାଏ ହେଲେ ବଡଗଛ ଆଖିରେ ପଡିଲାନାହିଁ। କିଛି ବାଟ ଅତିକ୍ରମ କଲାପରେ ଦିଶିଲା ପାଣି– ଏକ ଦିଗନ୍ତବିସ୍ତାରୀ ଜଳରାଶିର ନୀଳିମା। ସେ ଦୃଶ୍ୟ ମତେ ଅଭିଭୂତ କଲା ।

ସେତେବେଳକୁ ଆମେ ସଲଟ୍‌ଲେକ୍ ହ୍ରଦର ଗୋଟିଏ ସରୁ ଅନ୍ତରୀପ ଭଳି ଜାଗାରେ ପହଞ୍ଚିଥାଉ। ଦେଖିଲି– ସେ ଅନ୍ତରୀପ ହ୍ରଦ ମଧ୍ୟ ଦେଇ ବହୁ ଦୂର ଲମ୍ବିଯାଇଥାଏ ଆଗକୁ। ଆମ ଡ୍ରାଇଭିଂ ରାସ୍ତା ସେଇ ଅନ୍ତରୀପ ଭିତର ଦେଇ କେଜାଣି କେତେ ଆଗକୁ ଲମ୍ବିଥାଏ । ରାସ୍ତାର ଏପାଖେ ସେପାଖେ ହ୍ରଦ। ଉଭୟ ପାର୍ଶ୍ୱର ଜଳରାଶି ବିସ୍ତୀର୍ଣ୍ଣ ଓ ବ୍ୟାପକ । ଆଦିଗନ୍ତ ବିସ୍ତାରୀ ଗଭୀର ନୀଳ ଜଳରାଶି ଆମର ଏପାଖେ ଆଉ ସେପାଖେ। ଲାଗିଲା କନ୍ୟାକୁମାରୀ ଅନ୍ତରୀପର ଗୋଟାଏ ପଟେ ଆରବସାଗର ଆଉ ଆର ପାଖେ ବଙ୍ଗୋପସାଗର, ପୁଣି ସାମ୍‌ନାରେ ଭାରତ ମହାସାଗର କି ? ଆଖି ବୁଲେଇ ଚାହିଁଲି ଚାରିଆଡକୁ। ଦେଖିଲି ପାଣି ଉପରେ ଠାଠା ହେଇ ଭାସୁଚନ୍ତି ଦଳଦଳ ହଂସ ଓ ପାଣିକୁଆଙ୍କ ସମେତ ଅନେକ ଜାତିର ଜଳଚର ପକ୍ଷୀ ।

ପିଲାମାନେ କାର୍‌ରୁ ଓହ୍ଲେଇପଡିଲେ ରାସ୍ତାକଡରେ ହ୍ରଦ ପାଣିର ଦୃଶ୍ୟ ଦେଖି। ଅସଂଭାଳ ହେଲେ ପାଣି ପାଖକୁ ଧାଇଁଯିବାକୁ। ତାଙ୍କୁ ନିୟନ୍ତ୍ରଣ କରିବା ପାଇଁ ତାଙ୍କ ପଛେ ପଛେ ଧାଇଁଲେ ସେମାନଙ୍କ ଆଈ ଆଉ ମାମା। ଅଭିଜିତ୍ କ୍ୟାମେରା ଠିକ୍ କରୁଥାନ୍ତି ଫଟୋ ଉଠାଇବାକୁ । ଧୀରେଧୀରେ ସେମାନେ ଦୂରରୁ ଦୂରକୁ ଚାଲିଗଲେଣି ଅନେକ ବାଟ– ପାଣି କୂଳେକୂଳେ– ବନ୍ଧ ଉପରେ ଏକା ମୁଁ। ଏକାନ୍ତରେ ଦୃଶ୍ୟପଟକୁ ନିରେଖୁ ନିରେଖୁ ଆଖିରେ ପଡିଲା ସେ ଅପୂର୍ବ ଦୃଶ୍ୟ। ଦେଖିଲି ଗୋଟାଏ ପାଖର ହ୍ରଦ ଜଳ ଉପରେ ପ୍ରତିବିମ୍ବିତ ହେଉଚି ଗୋଟିଏ ଚମତ୍କାର ଦୃଶ୍ୟ। ନିସ୍ତରଙ୍ଗ ନୀଳ ଜଳରାଶିର ଦର୍ପଣ ଉପରେ ଦିଗ୍‌ବଳୟର ଢେଉଢେଉକା ପର୍ବତମାଳାର ଛାଇ ଦେଖି ନିଜକୁ ଭୁଲିଗଲି କିଛକ୍ଷଣ ପାଇଁ । ମତେ ଲାଗିଲା ମୁଁ ଠିଆହେଇଚି ମୋ ପିଲାଦିନର ଅନ୍ୟ ଏକ ସ୍ୱର୍ଗୀୟ ସୌନ୍ଦର୍ଯ୍ୟର କୋଳକୁ । ସେତେବେଳକୁ ମୁଁ ସତରେ ଫେରିଯାଇଥାଏ ସୁଦୂର ଅତୀତର ମୋର ମୋର ସେଇ ଆଦ୍ୟ କୈଶୋରର ଦିନମାନଙ୍କୁ। ସେତେବେଳେ ମୁଁ ନୂଆ ନୂଆ କବିତା ଲେଖା ଆରମ୍ଭ କରିଥାଏ। ଆମ ସୁବର୍ଣ୍ଣପୁର ମାଇନର୍ ସ୍କୁଲ୍‌ର ଠିକ୍ ସାମ୍‌ନାରେ

ବିସ୍ତୀର୍ଣ୍ଣ ଜଳରାଶିର ଭଣ୍ଡାର ମହାନଦୀ ଆଉ ସ୍କୁଲ୍ ପଛପଟେ ବିଦ୍ୟମାନ ସେ ସମୟର (୧୯୪୫) ଏକ ନନ୍ଦନକାନନର ହ୍ରଦ ଅଂଶୁପା। ସକାଳେ ମହାନଦୀ ପାଣି ଉପରେ ସୂର୍ଯ୍ୟୋଦୟ ଆଉ ଅପରାହ୍ଣରେ ଅଂଶୁପାକୂଳରେ ସୂର୍ଯ୍ୟାସ୍ତର ସ୍ୱର୍ଗୀୟ ଦୃଶ୍ୟ ଦେଖି ବିମୋହିତ ଅବସ୍ଥାରେ ମୁଁ ରଚନା କରିଚାଲିଥାଏ ରାଶିରାଶି କବିତା– ମୋର ଆଦ୍ୟ କୈଶୋରର କବିତା। ମହାନଦୀର ଆରପାଖେ ଡମପଡାର ଘଞ୍ଚ ଅରଣ୍ୟ ସଂକୁଳିତ ପର୍ବତମାଳା । ଆଉ, ଅଂଶୁପା ଚାରିପାଖେ ବିରାଜମାନ କରୁଥାଏ ଘଞ୍ଚ ଆରଣ୍ୟକ ବ୍ୟାଘ୍ର ବିହାରସ୍ଥଳୀ ସରଣ୍ଡା ପର୍ବତମାଳା। ସେଇ ପର୍ବତମାଳାର ପ୍ରତିଫଳନକୁ ମହାନଦୀ ଆଉ ଅଂଶୁପାର ଶାନ୍ତ ପ୍ରଶାନ୍ତ ନୀଳ ଜଳଦର୍ପଣରେ ପ୍ରତିଫଳିତ ହେବାର ଦୃଶ୍ୟକୁ ଲକ୍ଷ୍ୟକରି ମୁଁ ଭାବୁଥିଲି ହୁଏତ ପ୍ରତି ସକାଳେ ସଂଜେ ସୂର୍ଯ୍ୟୋଦୟ ଆଉ ସୂର୍ଯ୍ୟାସ୍ତ ସମୟରେ ସ୍ୱର୍ଗ ଅବତରି ଆସେ ମର୍ତ୍ତ୍ୟକୁ– ଆଉ ସ୍ୱର୍ଗ ମର୍ତ୍ତ୍ୟର ମିଳନଶଯ୍ୟା ହେଲା ମହାନଦୀ ଏବଂ ଅଂଶୁପାର ବକ୍ଷସ୍ଥଳ।

ବର୍ତ୍ତମାନ ପରିଣତ ବୟସରେ ୟୁଟାଃର ସଲଟ୍‌ଲେକ୍ ହ୍ରଦର ନିସ୍ତରଙ୍ଗ ଜଳଶଯ୍ୟାରେ ପ୍ରତିଫଳିତ ସେଇ ସ୍ୱର୍ଗୀୟ ଛବି ମୋ କବିପ୍ରାଣକୁ ପୁଣି ଉଚ୍ଛ୍ୱସିତ କଲା। ବଡପାଟିରେ ମୁଁ ଉଦ୍‌ଘୋଷଣା କଲି– ଆରେ ପିଲେ ଶୁଣ ! ଆଜିକୁ ଦେଢଶହ ବର୍ଷ ତଳେ ଆମ ଓଡିଶାର ଜଣେ ମହାକବି ରାଧାନାଥ ରାୟ ଗୋଟିଏ ବିଖ୍ୟାତ କାବ୍ୟ ରଚନା କରିଥିଲେ– ତା ନାଁ ଚିଲିକା। ସେ କାବ୍ୟର ଆରମ୍ଭ କେମିତି ଶୁଣ– "ଉତ୍କଳ କମଳା ବିଳାସ ଦୀର୍ଘିକା / ମରାଳ ମାଳିନୀ ନୀଳାମ୍ବୁ ଚିଲିକା / ଉତ୍କଳର ତୁହି ଚାରୁ ଅଳଙ୍କାର, ଉତ୍କଳ ଭୁବନେ ଶୋଭାର ଭଣ୍ଡାର।" ଆଛା, ଏମିତି କବିତା ଏଠିକାର କେହି କବି ତାଙ୍କ ରାଜ୍ୟର ଏଇ ବିଚିତ୍ର ପ୍ରାକୃତିକ ସଂପଦ ସଲଟଲେକ୍‌କୁ ନେଇ ରଚନା କରିଚନ୍ତି କି ?

ଏ ଭିତରେ ପିଲାମାନେ ହ୍ରଦର ପାଣି କୂଳରୁ କେତେଗୁଡାଏ କୁନିକୁନି ଶାମୁକା ଆଉ କଣ କଣ ସ୍ପେସିମେନ୍ ସଂଗ୍ରହ କରି ଗାଡିକୁ ଫେରିଆସିଥାନ୍ତି। ଝିଅ ଜୁଲି ଏକାଧାରରେ ଜଣେ ସାଇଣ୍ଟିଷ୍ଟ, ସଂଗୀତଜ୍ଞ ଆଉ ଆର୍ଟିଷ୍ଟ। ତା' ଘର ସଜାହେଇଥାଏ ନିଜ ହାତର ଆର୍ଟ ଆଉ ପଟଚିତ୍ର ସହିତ ଭୂତାତ୍ତ୍ୱିକ ପଥର ଫସିଲ୍‌ରୁ ଉପଲବ୍ଧ କେତେଗୁଡାଏ ଅଦ୍ଭୁତ ଆକୃତିର ପଥରରେ। ହ୍ରଦକୂଳରୁ ସେ ଗୋଟେଇ ଆଣିଥାଏ କେତେଖଣ୍ଡ ବିଚିତ୍ର ଆକୃତିର ପଥର। ସେଗୁଡିକ ବୋଧହୁଏ ଅତ୍ୟନ୍ତ ପ୍ରାଚୀନ ପ୍ରାଗୈତିହାସିକ ଯୁଗର ଯାହା ମନେହେଉଥାଏ ଆଖିକୁ। ସେସବୁକୁ କାର୍ ଡିକିରେ ସାବଧାନତାର ସହିତ ସାଇତି ରଖିବାରେ ସେ ବ୍ୟସ୍ତ ଥାଏ। ପୁଣି ନିରୁପମା ଜଣେ ପୁରୁଖା ସ୍ପୋର୍ଟସ ପର୍‌ସନ୍। ତାଙ୍କର ସ୍କୁଲ୍ କଲେଜ୍ ଦିନରେ ସେ ବହୁ ସାର୍ଟିଫିକେଟ୍ ପାଇଥିଲେ ଦଉଡ ଜମ୍ପ ଆଉ ହର୍ଡଲ୍‌ସ ଇତ୍ୟାଦି ଆଇଟମ୍‌ରେ। ଓଡିଶା ଅଲିମ୍ପିକସ୍‌ରେ ସେ ହର୍ଡଲସ୍ ଦଉଡରେ ରେକର୍ଡ ଭଙ୍ଗ କରିଥିଲେ କଲେଜରେ। ଆଖିଆଗରେ ଏକ ନିର୍ଜନ ବେଳାଭୂମି ଦେଖି ସେ ଫେରିଯାଇଥାନ୍ତି ତାଙ୍କ ପିଲାଦିନକୁ। ହରିଣୀ ପରି ଦଉଡୁଥାନ୍ତି ହ୍ରଦକୂଳର ଆବୁଡା ଖାବଡା ଢିମା ପଥର ଗୁଡାକୁ ଡେଇଁଡେଇଁକା

ଅବିକଳ କିଶୋରୀ ବାଳିକାଟିଏ ଭଳି । ଅଭିଜିତ୍ ବିଜ୍ଞାନମନସ୍କ । ସେ କେତେକ ଛୋଟଛୋଟ ବୁଦା ଗଛ ସଂଗ୍ରହ କରି ଆଣିଥାନ୍ତି ପରୀକ୍ଷା କରିବାକୁ ସେଗୁଡିକର ବଟାନିକାଲ୍ ଚରିତ୍ର, ଆଉ ଖୁସିରେ ଘୋଷଣା କରୁଥାନ୍ତି– ଏଗୁଡାକ କ'ଣ ଜାଣନ୍ତି ନନା ? ଏ ହେଲା ଡାରଉ୍ୱିନ୍‌ଙ୍କ ବିବର୍ତ୍ତନବାଦ ତତ୍ତ୍ୱର ଚାକ୍ଷୁସ ପ୍ରମାଣ– Life adopts the environmental changes for survival । ଦେଖନ୍ତୁ ଏ ଗଛଟାକୁ– ଏ କ'ଣ ଜାଣନ୍ତି ? ଏ ହଉଚି ପାଇନ୍ ଜାତିର ଗଛ ଯାହାର ସ୍ୱାଭାବିକ ଉଚ୍ଚତା ଚାଳିଶ ଫୁଟ୍ । କିନ୍ତୁ ଏଠି ଏ ମରୁଭୂମି କ୍ଲାଇମେଟ୍‌ରେ ଜାଏଣ୍ଟ୍ ବନିଚି ଗୋଟିଏ ବାଣ୍ଟୁବାବା ! ଯା' ହାଇଟ୍ ଛ'ଇଞ୍ଚରୁ ବେଶୀ ହବନି । ଚାଳିଶ ଫୁଟର ଡେଙ୍ଗାଗଛ ମରୁଭୂମିରେ ଜନ୍ମହେଇ ଜାଏଣ୍ଟରୁ ଡ୍ୱାର୍ଫ ପାଲଟିଚି କେବଳ ବଞ୍ଚିରହିବା ଲୋଭରେ । ପରେ ପରେ ନିଜ କ୍ୟାମେରାରେ ଫଟୋ ଉଠେଇବାରେ ଲାଗିଗଲେ ସେ । ମୁଁ ତାଙ୍କୁ କହିଲି– ସେସବୁର ଫଟୋ ତ ଉଠେଇଲଣି ଢେର୍‌ଢେର୍– ବର୍ତ୍ତମାନ ଏ ଦୃଶ୍ୟଟା ଦେଖ– ଟିକିଏ ପୂର୍ବରୁ ମତେ ବିହ୍ୱଳିତ କରିଥିବା ସେଇ ନିସ୍ତରଙ୍ଗ ହ୍ରଦ ଜଳରେ ଢେଉଢେଉକା ପାହାଡର ପ୍ରତିଫଳନଟିକୁ ଦେଖାଇ ମୁଁ ତାଙ୍କୁ କହିଲି– My son, let's forget Darwin for a moment. Look ! there is God's own magnificient appearance reflecting on that stretch of deep blue waters. Do you see it ?

ଅନେକ ସମୟ ପର୍ଯ୍ୟନ୍ତ ସେଇ ଅଭିଭୂତକାରୀ ଛବିଟାକୁ ନିରେଖି ନିରେଖି ଦେଖିଲାଗିଲେ ସମସ୍ତେ । ଶତାଧିକ ଫଟୋ ଉଠାଗଲା ତା'ପରେ ସେଇ ଦୃଶ୍ୟର ପଟ୍ଟଭୂମିରେ ଆମ ସମସ୍ତଙ୍କର । ଯା'ପରେ ଆରମ୍ଭହେଲା ସଲଟ୍‌ଲେକ୍ ଭିତର ଅଂଚଳକୁ ଯାତ୍ରା । ମଝିରେ ମଝିରେ କାର୍ ଅଟକେଇ ଆମେ ବାହାରକୁ ବାହାରୁଥାଉ କିଛି ସମୟ ମୁକ୍ତ ପବନରେ ଘୂରାଫେରା କରିବା ପାଇଁ । କିନ୍ତୁ ରାସ୍ତାର ଦୁଇ ପାଖେ ବିସ୍ତୀର୍ଣ୍ଣ ନୀଳ ଜଳରାଶି ସତ୍ତ୍ୱେ ଏଠି ସୂର୍ଯ୍ୟଙ୍କ ତାପ ଅସହ୍ୟ ମନେହେଲା । ମୁହଁ ତାତିଯାଉଥାଏ ଖରାରେ । ପୁଣି ଜାଗାଟା ଭଣ ଭଣ ଗନ୍ଧାଉଥାଏ କ'ଣ ପାଇଁ । ତା' ସାଙ୍ଗକୁ ପ୍ରବଳ ମଶା ! ତଥାପି ଆମେ ସେ ବିରାଟ ହ୍ରଦର ବିଭିନ୍ନ ଇଲାକା ବୁଲିବୁଲି ଦେଖିବୁ ବୋଲି ସ୍ଥିରକଲୁ । ଆମେ ଏକା ନୁହଁ, ଆମ ଆଗରେ ପଛରେ ଚାଲିଥାଏ ଧାଡିଧାଡି ଟୁରିଷ୍ଟ୍ ଗାଡି ।

ସେ ଭ୍ରମଣ ଭିତରେ ମୁଁ ଲକ୍ଷ୍ୟକଲି ସଲଟ୍‌ଲେକ୍ ଆମ ଚିଲିକା ପରି ଗୋଟାଏ ଜୀବନ୍ତ ହ୍ରଦ ନୁହେଁ; ଏହା ଏକ ମୃତହ୍ରଦ । ବାସ୍ତବରେ ଏହାକୁ ଅଫିସିଆଲ୍ ଘୋଷଣା କରାଯାଇଥାଏ ଗୋଟାଏ Dead Sea ନାମରେ । ମୃତହ୍ରଦର ସମସ୍ତ ଲକ୍ଷଣ ମଧ୍ୟ ଏଠି ଆମେ ଦେଖିବାକୁ ପାଇଲୁ । ପ୍ରଥମ ଲକ୍ଷଣ– ଏହାର ପଚାଗନ୍ଧରୁ । ଗନ୍ଧର କାରଣ ଏ ଅଂଚଳରେ ବୃଷ୍ଟିପାତ ବହୁତ କମ୍ । ଯାହା କିଛି ବୃଷ୍ଟି ହୁଏ ସେଥିରୁ ତିନିତିନିଟା ନଈ ଧୋଅରା ମାଟି ବାଲି ସହିତ ବହୁ ପରିମାଣରେ ଖଣିଜ ପଦାର୍ଥ ବୋହିଆଣେ ହ୍ରଦ

ଭିତରକୁ । କିନ୍ତୁ ହ୍ରଦ ବାହାରକୁ ପାଣି ବାହାରିଯିବାର ମାର୍ଗ ନଥାଏ । ଫଳରେ ପ୍ରଖର ସୂର୍ଯ୍ୟକିରଣରେ ହ୍ରଦ ପାଣି ବାଷ୍ପୀଭବନ ପ୍ରକ୍ରିୟାରେ ଶୁଖିବା ଛଡା ଅନ୍ୟ ବାଟ ନଥାଏ ଜଳ ନିଷ୍କାସନର । ଗୋଟାଏ ବଡ କରେଇରେ ଯୁଗଯୁଗ ଧରି ପାଣି ସିଝୁଥିବା ପରି ଏ ହ୍ରଦପାଣି ସିଝୁଥାଏ ଆଉ ଯା ଭିତରେ ଥିବା ମାଛ କଙ୍କଡା ଦଳ ସାଙ୍ଗେ ଖଣିଜପଦାର୍ଥକୁ ସିଝେଇ ଚାଲିଥାଏ– ଫଳରେ ଏ ଦୁର୍ଗନ୍ଧ । ସେଇ କାରଣରୁ ମଧ୍ୟ ହ୍ରଦପାଣିର ସାନ୍ଦ୍ରତା ବଢିବଢି ଚାଲିଥାଏ ବର୍ଷ ପରେ ବର୍ଷ । ବର୍ତ୍ତମାନ ଏ ହ୍ରଦ ଜଳର ଘନତା (Density) ଏତେ ପ୍ରଗାଢ ହେଲାଣି ଯେ ଜଣେ ସନ୍ତରଣକାରୀ ଏ ହ୍ରଦରେ ବୁଡି ମରିବାର ଭୟ ନଥାଏ । ଏଇ ସବୁ ହେଲା ମୃତ ସମୁଦ୍ର ବା ହ୍ରଦର ଲକ୍ଷଣ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଏ ମୃତହ୍ରଦରେ ବି ଜୀବନ୍ତ ପ୍ରାଣୀଙ୍କ ଅଭାବ ନଥାଏ । ପରୀକ୍ଷା ପାଇଁ ହ୍ରଦପାଣିରୁ ଆଞ୍ଜୁଳାଏ ନେଇ ଦେଖିଲି ଏ ବିଷାକ୍ତ ଲୁଣିପାଣିରେ ସୁଦ୍ଧା ସାଲୁବାଲୁ ହଉଥାନ୍ତି ଚୁଙ୍ଗୁଡିମାଛ । ବୋଧହୁଏ ସେଇ ଚୁଙ୍ଗୁଡି ଆହାର କରିବାକୁ ଏ ହ୍ରଦରେ ଭେଳା ଭେଳା ହଂସ ପାଣିକୁଆ ଆଉ ଅନେକ ଭିନ୍ନ ଜାତିର ଚଢେଇ ବୁଡୁକି ଲଗଉଥାନ୍ତି ଦିନମାନ ଏ ଲୁଣିପାଣିରେ !

ପ୍ରାୟ ଦୁଇଘଣ୍ଟା ହ୍ରଦ କୂଳେକୂଳେ ଡ୍ରାଇଭ୍ କଲା ପରେ ଭୋକ ଲାଗିଲା । ଦେଖିଲୁ ଗୋଟାଏ ଜାଗାରେ ରାସ୍ତାକଡରେ ଅଟକିଚନ୍ତି ଗୁଡାଏ ଟୁରିଷ୍ଟ କାର୍ । ହୁଏତ ସେଠି ଗୋଟାଏ ରେଷ୍ଟୁରାଁ ଥାଇପାରେ ଭାବି ସେଠିକି ଗଲୁ । ଦେଖିଲୁ ସତରେ ସେଇଟା ଗୋଟାଏ ରେଷ୍ଟୁରାଁ ଏରିଆ । ବେଶ୍ କିଛି ସଂଖ୍ୟାର ଟୁରିଷ୍ଟଙ୍କ କାର୍ ରହିଥାଏ ପାର୍କିଂ ଏରିଆରେ । ଅଭିଜିତ୍ ତାଙ୍କ କାର୍ ପାର୍କ କଲେ ଗୋଟାଏ ଖୋଲା ଜାଗାରେ । ଅନେକ ବିଦେଶୀ ଟୁରିଷ୍ଟ୍ ଛୁଆପିଲା ଧରି ଓହ୍ଲେଇଥାନ୍ତି ସେଠି । ରେଷ୍ଟୁରାଁ ଏରିଆ ଗହଗହ କଂପୁଥାଏ । ସେମାନଙ୍କୁ ଦେଖି ମୋ' ମନରେ ଏକ ପ୍ରଶ୍ନ ଉଦୟ ହେଲା– ଏତେ ସଂଖ୍ୟାରେ ବିଦେଶୀ ଟୁରିଷ୍ଟ୍ ଏଠି କ'ଣ ଦେଖିବାକୁ ଆସୁଚନ୍ତି ପୃଥିବୀର ଦୂରଦୂରାନ୍ତ ଦେଶରୁ ? ଏ ତ ନାଏଗ୍ରା ଫଲସ୍ ନୁହଁ କି ଫ୍ଲରିଡାର ଡିଜ୍‌ନିଲ୍ୟାଣ୍ଡ ନୁହଁ– କ'ଣ ଦେଖିବାକୁ ଆସିଚନ୍ତି ଏମାନେ ଏ ମୃତହ୍ରଦର ମଶା ଭଣ ଭଣ ଦୁର୍ଗନ୍ଧଭରା ସ୍ଥାନରେ ?

ସତେକି ମୋର ସେଇ ପ୍ରଶ୍ନର ଉତ୍ତର ଦେବାକୁ ଗୋଟାଏ କାର୍ ପାର୍କିଂ ଏରିଆରେ ଅଟକିଲା । ସେଥିରୁ ଓହ୍ଲେଇଲେ ଜଣେ ଗୌରକାୟ ସୁସ୍ଥ ସୁଠାମ ଚେହେରାବାନ୍ ଯୁବକ । ତାଙ୍କ ବୟସ ତିରିଶରୁ ବେଶୀ ହେଲା ଭଳି ଲାଗୁନଥାଏ । ଯୁବକଜଣକ କାର୍‌ରୁ ଓହ୍ଲେଇ ଆସିଲେ ରେଷ୍ଟୁରାଁ ଦିଗରେ । ହଠାତ୍ କ'ଣ ମନେକଲେ ଅଟକିଗଲେ ଆମ ପାଖରେ । ନିରୁପମାଙ୍କୁ ଅନାଇ ସେ ପଚାରିଲେ– Are you from India ? ବୋଧହୁଏ ନିରୁପମାଙ୍କ ପରିଧାନ ଶାଢି ତାଙ୍କୁ ଟାଣିଆଣିଲା ଆମପାଖକୁ ।

ତା' ପ୍ରଶ୍ନର ଉତ୍ତର ଦେଲେ ଅଭିଜିତ୍ । ଅଭିଜିତ୍‌ଙ୍କ ହଁ ଟୋକାଟାକୁ ଉତ୍ସାହିତ କଲା । ନିଜର ପରିଚୟ ଦେବାକୁ ସେ କହିଲା– I am Jesse Wicher. I have just

returned from India । (ମୋ ନାଁ ଜେସ୍‌ଓ୍ୱିଚର୍, ମୁଁ ଏଇମାତ୍ର ଫେରିଚି ଭାରତ ଭ୍ରମଣରୁ ।)

ଭାରତ ଭ୍ରମଣରୁ ସେଇ ମାତ୍ର ଫେରିଥିବା ଆମେରିକାନ୍ ଟୋକାଟାକୁ ସେଭଳି ପରିବେଶ ଓ ପରିସ୍ଥିତିରେ ଦେଖି ତା' ସହିତ ଆଉ ଟିକେ କଥାହେବାପାଇଁ ମୋ' ଇଚ୍ଛା ବଳିଲା । ପଚାରିଲି– ତମେ କାହିଁକି ଭାରତ ଭ୍ରମଣରେ ଯାଇଥିଲ ? କୋଉ କୋଉ ଜାଗା ଦେଖିଲ ଭାରତରେ ? ଉତ୍ତରରେ ସେ ଯାହା କହିଲା ସେଥିରେ ମୋର ଆଗ୍ରହ ଆହୁରି ବଢ଼ିଲା ଲୋକଟାକୁ ଭଲକରି ଚିହ୍ନିବା ପାଇଁ । ସେ ଯାହା କହିଲା ତାହା ମୋ ଡାଏରିରେ ସେଦିନ ଟିପିଥିଲି– ତାହା ଉଦ୍ଧାର ନକଲେ ଲୋକଟାର ପରିଚୟ ଉପରଠାଉରିଆ ହେଇଯିବ । କହିଲା– I am a graduate of University of New York, a citizen of Buffallo NY. I went to India and visited Reiki centers in Bombay, Madras, Calcutta . I am a Reiki Master Healer and teacher, Spiritual counsellor, Intuitive reader. I conduct self-employment classes with Voice Instruction । ଏତକ କହିସାରି ସେ ତା ପକେଟ୍‌ରୁ ଗୋଟାଏ ଇଣ୍ଟ୍ରୋଡକ୍‌ଟରି କାର୍ଡ ବାହାରକରି ମୋ ହାତକୁ ବଢେଇଦେଲା । ସେଥିରେ ତାର ସଂପୂର୍ଣ୍ଣ ଠିକଣା ଇତ୍ୟାଦି ବିବରଣୀ ଛପାଥିଲା । କାର୍ଡଟା ପଢି ଆଶ୍ଚର୍ଯ୍ୟ ହୋଇ ମୁଁ ତା' ମୁହଁକୁ ଚାହିଁଲି– କାରଣ ସେ ଥିଲା ଜଣେ ବୋନାଫାଏଡ୍ ରେଇକି ଆଉ ଯୋଗ ଟିଚର୍ । ଜଣେ ନ୍ୟୁୟର୍କ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ୍ ପ୍ରାଚ୍ୟବିଦ୍ୟା ରେଏକି ଓ ଆଧ୍ୟାତ୍ମିକ ବିଦ୍ୟା ଶିକ୍ଷାପାଇଁ ଭାରତ ଭ୍ରମଣରେ ଯାଇ ସେଇମାତ୍ର ସ୍ୱଦେଶକୁ ଫେରିବା ବାଟରେ ହଠାତ୍ ଏ ଅପନ୍ତରା ୟୁଟାଃ ମରୁଭୂମି ଭିତରକୁ କାହିଁକି ଆସିଚି– କ'ଣ ଦେଖିବାକୁ ? ପୁଣି କାଳକାଳ ଧରି ମୃତ୍ୟୁ ଶଯ୍ୟାରେ ପଡି ସଢୁଥିବା ଗୋଟାଏ ପଚା ପାଣିର ହ୍ରଦ ପ୍ରତି କାହିଁକି ଏତେ ଆଗ୍ରହୀ ଲୋକମାନେ ? ସେକଥା ଜାଣିବାକୁ ମୁଁ ପୁଣି ପଚାରିଲି– Mr. Wicher, after returning from India what attracts you here in this place where there is nothing but a vast mass of rotten saline water, in this dead lake– Salt lake ?

ତା' ପ୍ରତି ମୋର ଏ ପ୍ରଶ୍ନ ପଛରେ ସେମିତି କିଛି ଖାସ୍ ମତଲବ ନଥିଲା– କେବଳ ଜାଣିବାକୁ ଚାହୁଁଥିଲି ଆଜିକାଲିକା ଆମେରିକାନ୍ କଲେଜ ଗ୍ରାଜୁଏଟ୍‌ମାନେ କ'ଣ ଖୋଜୁଚନ୍ତି ଭାରତରେ ? ମୋର ଏ ପ୍ରଶ୍ନର ଉତ୍ତର ଯାହା ମିଳିଲା ତାହା ମୋ ପାଇଁ ଥିଲା ବାସ୍ତବିକ୍ ଅପ୍ରତ୍ୟାଶିତ ।

ଅବିଳମ୍ବେ ମିଳିଲା ଉତ୍ତର, You must be knowing that this place is a mysterious place of nature. Indeed this is the most favoured

haunt for the reiki masters. Why? Because this ancient prehistoric place is nature's store house of spiritual energy. Here nature is dying slowly and burning over a funeral pyre over millennia, from time immemorial. All such ancient places emit strong healing force of mother nature. I have come here for gathering that healing power only ।

ତା'ର ଏ ଉତ୍ତର ମନେପକେଇଦେଲା ବହୁବର୍ଷ ତଳେ ପଢିଥିବା ଖଣ୍ଡେ ଉପନ୍ୟାସ– "ମରୁତୀର୍ଥ ହିଂଲାଜ୍" ! ଏ ପୁସ୍ତକର ରଚୟିତା ଅବଧୂତ ଯାହାଙ୍କ ବଙ୍ଗଳାଭାଷାର ଉପନ୍ୟାସକୁ କେହି ଜଣେ ଅନୁବାଦ କରିଥିଲେ ଓଡିଆରେ ।

ପ୍ରାଗୈତିହାସିକ ପ୍ରାଚୀନତା ସହିତ ଅଧ୍ୟାତ୍ମବାଦର ନିବିଡ ସଂପର୍କକୁ ବୈଦିକଯୁଗରୁ ଆବିଷ୍କାର କରିଥିଲେ ଭାରତୀୟ ସାଧକମାନେ । ସେଥିପାଇଁ ହିମାଳୟ ଥିଲା ତପସ୍ୟା ଓ ଯୋଗ ସାଧନାର କ୍ଷେତ୍ର ଭାରତରେ । କେବଳ ନଦୀ ପର୍ବତ ସମୁଦ୍ର ନୁହେଁ– ଯୋଗ ସାଧନାର ପ୍ରକୃଷ୍ଟ କ୍ଷେତ୍ର ମଧ୍ୟ ଶୁଷ୍କ ମରୁଭୂମି । ସେଥିପାଇଁ ବୋଧହୁଏ ମହାପୁରୁଷ ଯୀଶୁଖ୍ରୀଷ୍ଟ ଆଉ ମହମ୍ମଦ ସଂଭବ ହୋଇପାରିଥିଲେ ଇସ୍ରାଇଲ୍ ଆଉ ଆରବ ମରୁଭୂମିରେ ।

ସେ ଯାହାହେଉ– ସଲଟ୍‌ଲେକ୍ ହ୍ରଦଟି ଭୂତାତ୍ତ୍ୱିକ ଯୁଗର ଇତିହାସ କହେ– ଏହା ଯଥାର୍ଥରେ ଅନ୍ୟ ଏକ ବିଶାଳ ପ୍ରାଗୈତିହାସିକ ହ୍ରଦର ଅବଶିଷ୍ଟାଂଶ ମାତ୍ର । ଲକ୍ଷାଧିକ ବର୍ଷ ତଳେ ଭୂ-ପୃଷ୍ଠର ବିଚଳନ ପ୍ରକ୍ରିୟାରୁ ସୃଷ୍ଟି ହେଇଥିଲା ବିଶାଳ ଫୋଲ୍ଡ଼ ମାଉଣ୍ଟେନ୍ ଯାହାର ନାମ ରକିଜ୍ । ସେଇ ବିଚଳନରୁ ଭୂପୃଷ୍ଠର ଏକ ବିରାଟ ଅଂଶ ଛିଟିକି ଉଠିଥିଲା ଶୂନ୍ୟକୁ– ରକିଜ୍ ପର୍ବତମାଳାର ସୃଷ୍ଟି ସେଇ ଭୂତାତ୍ତ୍ୱିକ ଯୁଗରେ । ରକି ପର୍ବତମାଳାର ଦୈର୍ଘ୍ୟ ପ୍ରାୟ ତିନିହଜାର ମାଇଲ ଉତ୍ତରରୁ ଦକ୍ଷିଣକୁ । ଏହାର ଉଚ୍ଚତା ହାରାହାରି ପାଞ୍ଚ ଛ' ହଜାର ଫୁଟ ।

ସୁଦୀର୍ଘ ରକି ପର୍ବତମାଳାର ସ୍ଥାନେସ୍ଥାନେ ପୃଥିବୀ ପୃଷ୍ଠର ବହୁ ବୈଚିତ୍ର୍ୟମୟ ପ୍ରାକୃତିକ ବିସ୍ମୟ ପ୍ରକଟିତ କରେ ନିଜକୁ । କେଉଁଠି ଭୂତଳରୁ ତରଳ ସଲଫର୍ ମିଶା ଜଳସ୍ତମ୍ଭମାନ ଶହଶହ ଫୁଟ୍ ଉଚ୍ଚତାକୁ ଉବୁରିଉଠୁଥାଏ ତ କୋଉଠି ଲକ୍ଷେ ବର୍ଷ ପୂର୍ବେ ଭୂତାତ୍ତ୍ୱିକ ପ୍ରଣାଳୀରେ ନିଜକୁ ନିଜେ ଗଢିଥିବା ସହସ୍ରାଧିକ ସଂଖ୍ୟାର ବିସ୍ମୟକର ଆକୃତିର ପାହାଡ ପର୍ବତ ମାନ ମାଇଲ୍ ମାଇଲ୍ ଧରି ବ୍ୟାପୀ ଥିବା କ୍ଷେତ୍ର ଉପରେ ବିରାଜମାନ କରୁଥିବା ଦେଖାଯାଏ । ପୁଣି ଆମ ଭାରତୀୟ ଦର୍ଶକଙ୍କ ଦୃଷ୍ଟିରେ ସେ ସବୁ ପର୍ବତର ରୂପ ଦେଖିବାକୁ ମିଳେ ଆଶ୍ଚର୍ଯ୍ୟଜନକ ଭାବେ ଅବିକଳ ଆମ କୋଣାର୍କ ଓ ରାଜାରାଣୀ ମନ୍ଦିର ପରି– ସେହିପରି କାରୁକାର୍ଯ୍ୟ ସଂବଳିତ ଆଉ ଠିକ୍ ଅନୁରୂପ ସ୍ଥାପତ୍ୟ ମଧ୍ୟ !

ସେ ଯାହାହେଉ, ସେଇ ଭୂତାତ୍ତ୍ୱିକ ବିସ୍ମୟପୂର୍ଣ୍ଣ ସ୍ଥାନମାନଙ୍କ ଭିତରୁ ୟୁଟାଃର

ସଲଟ୍‌ଲେକ୍ ମଧ୍ୟ ଏକ ପରମ ଆଶ୍ଚର୍ଯ୍ୟମୟ ପ୍ରାକୃତିକ ସ୍ଥାନ ଥିଲା ମୋ ପାଇଁ । ପାଞ୍ଚ ଛ' ହଜାର ଫୁଟ୍ ପର୍ବତ ଶିଖରରେ ଗୋଟାଏ ଏଡେ ବଡ ଲୁଣିପାଣିର ହ୍ରଦ ପ୍ରଥମେ କେମିତି ସୃଷ୍ଟି ହେଲା ଏହା ଥିଲା ମୋ ବିସ୍ମୟର କାରଣ । ସେ ବିସ୍ମୟର ସମାଧାନ ପାଇଁ ଅଭିଜିତ୍ ଇଣ୍ଟରନେଟ୍‌ରୁ ବାହାରକରିଥିବା ଏକ ମ୍ୟାପ ମତେ ଦେଖେଇଲେ । ସେ ମ୍ୟାପ୍‌ଟା ଥିଲା ୟୁଟାଃର ଭୂତାତ୍ତ୍ୱିକ ଯୁଗର ଏକ ନକ୍ସା । ସେଥିରୁ ଦେଖିଲୁ– ବର୍ତ୍ତମାନ ଆମେ ଯୋଉ ବିରାଟ ସଲଟ୍‌ଲେକ୍ ହ୍ରଦକୁ ଆଖି ସାମ୍ନାରେ ଦେଖୁଥାଉ ସେଠି ଲକ୍ଷାଧିକ ବର୍ଷ ତଳେ ଥିଲା ଆହୁରି ଏକ ବିଶାଳ ହ୍ରଦ, ତାହାକୁ କୁହାଯାଏ ସଲଟ୍‌ଲେକ୍‌ର ଜନ୍ମଦାତ୍ରୀ ଜନନୀ । ସେ ପ୍ରାଗୈତିହାସିକ ହ୍ରଦର ନାଁ "ବନ୍‌ଭିଲ୍" (Bonneville) । ସେତେବେଳେ ଏ ହ୍ରଦର ଆକାର ଥିଲା ସମଗ୍ର ୟୁଟାଃ ରାଜ୍ୟଠାରୁ ବି ବଡ । ତାର ଆକାର ସଂପର୍କରେ ଧାରଣା କରିବାକୁ ଉଲ୍ଲେଖ କରାଯାଇଥିଲା ଯେ ସେତେବେଳର ବନ୍‌ଭିଲ୍ ହ୍ରଦ ଆଜିର ଆମେରିକାର ଲେକ୍ ମିସିଗାନ୍ (Lake Michigan) ପରି ବା ତା'ଠାରୁ ବଡଥିଲା । ତାର କ୍ଷେତ୍ରଫଳ ଥିଲା– ୫୮,୦୦୦ ବର୍ଗ କିଲୋମିଟର) ! ତେବେ ସେ ଆଜିକୁ ପ୍ରାୟ ୧୬,୦୦୦(ଶୋହଳହଜାର) ବର୍ଷ ତଳେ, ଧରାପୃଷ୍ଠକୁ ଆସିଲା ଏକ ତୁଷାରଯୁଗ ଯାହାକୁ ଭୂତତ୍ତ୍ୱରେ ନାମିତ କରାଯାଏ ବୃହତ୍ ତୁଷାର ଯୁଗ (The Great Ice Age) । ସେଇ ସମୟରୁ ପୃଥିବୀ ପୃଷ୍ଠର ତାପମାତ୍ରା ମଧ୍ୟ ବଢିବାକୁ ଆରମ୍ଭକଲା । ଜଳବାୟୁରେ ଘଟିଲା ସାଂଘାତିକ ପରିବର୍ତ୍ତନ । ତାର ପ୍ରଭାବରେ ଅତିକାୟ ବନ୍‌ଭିଲ୍ ହ୍ରଦ ଆରମ୍ଭକଲା ଶୁଖିବାକୁ । କ୍ରମଶଃ ସେଇ ଶୁଷ୍କକରଣ ପ୍ରକ୍ରିୟା ବନ୍‌ଭିଲ୍ ହ୍ରଦକୁ ନିଃଶେଷ କରିଲାଗିଲା ଏବଂ ଶେଷରେ ଅବଶିଷ୍ଟାଂଶ ରୂପେ ରହିଯାଇଚି କେତେଗୁଡିଏ କ୍ଷୁଦ୍ର ଜଳାଧାର ବା ହ୍ରଦ । ସେ ଭିତରୁ ବୃହତ୍ତମ ଅଂଶଟି ହେଲା ଆଜିର ଏଇ ସଲଟ୍‌ଲେକ୍ !

ଇତିହାସ ମାଧ୍ୟମରେ କାଳ ବା ମହାକାଳ ସହିତ କଥାବାର୍ତ୍ତା ଓ ଭାବ ବିନିମୟ ପାଇଁ ଏହିପରି-ପ୍ରାଗୈତିହାସିକ ଦୃଷ୍ଟିରୁ ପ୍ରାଚୀନ ସ୍ଥାନ ଭ୍ରମଣ ମୋ ପାଇଁ ଥିଲା ହୁଏତ ଏକାନ୍ତ ଉପଯୋଗୀ । ପୂର୍ବରୁ କହିଚି କୌଣସି ମୃତ ସମୁଦ୍ର ବା ହ୍ରଦର ଗଭୀର ଆଧ୍ୟାତ୍ମିକ ପ୍ରଭାବ ରହିଛି ମଣିଷର ମନ ଉପରେ । ଏହା ସୃଷ୍ଟିକରେ ଗଭୀର ଆଧ୍ୟାତ୍ମିକ ମନୋଭାବ । ଭାରତରେ ଏପରି ଆଧ୍ୟାତ୍ମିକ ପ୍ରଭାବବନ୍ତ ସ୍ଥାନମାନଙ୍କୁ ନାମିତ କରାଯାଇଚି ତୀର୍ଥସ୍ଥାନ ନାମରେ । ଆମ ଭାରତୀୟ ପର୍ଯ୍ୟଟକଙ୍କ ପାଇଁ ସଲଟ୍‌ଲେକ୍ ନିଶ୍ଚିତ ଭାବେ ଏକ ମହନୀୟ ତୀର୍ଥସ୍ଥଳ ।

ଆମେ ସେଦିନ ତିନିଚାରି ଘଣ୍ଟା କାଳ ସଲଟ୍‌ଲେକ୍‌ର ବିଭିନ୍ନ ଦ୍ୱୀପାଂଚଳ ମଧ୍ୟ ଦେଇ ଯାଇଥିବା ଶତାଧିକ ମାଇଲ୍ ରାସ୍ତାରେ ହ୍ରଦ ପରିକ୍ରମା କରିସାରି ସନ୍ଧ୍ୟାସୁଦ୍ଧା ଘରକୁ ଫେରିଲୁ ।

## ରକିପର୍ବତ ଶିଖରରେ ଦୀପାବଳି ଉତ୍ସବ–

– ତା ୨୫ ଅକ୍ଟୋବର, ୨୦୦୮ ।

"ଅଜା ! ଆଜି ସନ୍ଧ୍ୟାରେ ମୋର ଗୋଟାଏ ଡ୍ୟାନ୍ସ ପ୍ରୋଗ୍ରାମ୍ ଅଛି"–

"କୋଉଠି ?"– ମୁଁ ଅନିସନ୍ଧିତ୍ସୁ ହେଲି ବୁଝିନେବାକୁ ସେ ଖବରଟା କେତେଦୂର ସତ, କାରଣ ଏମାନେ ଏଇ ଅଳ୍ପ କେଇ ସପ୍ତାହ ତଳେ ମାତ୍ର ବଦଳି ହେଇ ଆସିଥାନ୍ତି ଆମେରିକାର ପୂର୍ବ ଉପକୂଳର ବଲ୍‌ଟିମୋର୍ ସହରରୁ ତିନିହଜାର ମାଇଲ ଦୂର ଏ ପଶ୍ଚିମା ପାହାଡିଆ ରାଜ୍ୟ ୟୁଟାଃର ସଲଟ୍‌ଲେକ୍ ସିଟିକୁ । ଏ ପରିବାରକୁ ଏପର୍ଯ୍ୟନ୍ତ ଏ ଅଂଚଳରେ ଦେଶୀ କେହି ଲୋକ ଚିହ୍ନିବାର ସଂଭାବନା କମ୍ । କିନ୍ତୁ ଏଠି ଏ ଅଜଣା ଅଶୁଣା ରାଜ୍ୟରେ ପାଦ ଦେଉନଦେଉଣୁ ପୁଣି ନିମନ୍ତ୍ରଣଟାଏ ମିଳିଗଲା ଏ ଚଉଦବର୍ଷର ନାତୁଣୀ ଅଙ୍କିତାକୁ ଆମର ଡ୍ୟାନ୍ସ ପ୍ରୋଗ୍ରାମ୍ ପାଇଁ ? ପୁଣି ଓଡିଶୀ ନୃତ୍ୟ ! ଏ ମର୍ମନ ଖ୍ରୀଷ୍ଟିୟାନ୍‌ଙ୍କ ରାଜ୍ୟ ୟୁଟାଃରେ ପୁଣି ଏମିତି କୋଉ ଅନୁଷ୍ଠାନ ଅଛି ଯାହାର ଦରକାର ହଉଚି ଓଡିଶୀ ନୃତ୍ୟ ପ୍ରୋଗ୍ରାମ୍ ? ମୋର ସେ ପ୍ରଶ୍ନର ଉତ୍ତର ମିଳିଲା ସେଦିନ ସନ୍ଧ୍ୟାରେ ।

ସେଦିନ ଦି'ପହରେ ଆମେ ସପରିବାର ଘରୁ ବାହାରିଲୁ ଅଭିଜିତ୍‌ଙ୍କ କାର୍‌ରେ । ପ୍ରାୟ ଦୁଇ ଘଣ୍ଟାର ଲମ୍ବା ଡ୍ରାଇଭ୍ ପରେ ଆମେ ପହଞ୍ଚିଲୁ ସଲଟ୍‌ଲେକ୍ ସିଟିର ଅପରପ୍ରାନ୍ତରେ ଏକ ପାହାଡିଆ ଅଞ୍ଚଳରେ । ମୁଖ୍ୟରାସ୍ତାର ଗୋଟିଏ ପାଖେ ପାହାଡ ଉପରକୁ ଚଢିବା ପାଇଁ ଗୋଟାଏ ଘାଟି ରାସ୍ତାରେ ଅଭିଜିତ୍ କାର୍ ଚଳାଇଲେ । ରାସ୍ତାଟା ସରୁ ଆଉ ଦୁଇପଟେ କାନ୍ଥ ଭଳି ପାହାଡ । ପାହାଡଗୁଡାକ ଲଣ୍ଡା । ଖାଲି ପଥର ଆଉ ପଥର; କିନ୍ତୁ ଏ ପାହାଡଗୁଡାକର ରୂପରେ କିଛି ବିଶେଷତ୍ୱ ଥିଲା ନିଶ୍ଚୟ । ସେ ବିଶେଷତ୍ୱ ହେଲା ରକି ପର୍ବତମାଳାର 'ସେଇ ସ୍ୱତନ୍ତ୍ର ଭୂତାତ୍ତ୍ୱିକ ପରିଚୟ– କାନିୟନ୍ ଆଉ କାନିୟନ୍– ଯେମିତି କୋଉ ଅସୁର ତା' ବଡବଡ ନଖରେ ପର୍ବତଗୁଡାକୁ ବିଦାରି ପକେଇଥାଏ ମୁଣ୍ଡରୁ ପାଦଯାକେ ଫଡାଫଡା କରି ! ଏଇ ହେଲା ରକିପର୍ବତର ମୂଳ ଚରିତ୍ର ।

ପ୍ରାୟ୍ ଦୁଇତିନିହଜାର ଫୁଟ୍ ଉଚ୍ଚ ଯାକେ ଘାଟି ଚଢିବା ପରେ କାର୍ ପଶିଲା ଗୋଟିଏ ଖୋଲା ମଇଦାନ ଭିତରକୁ । ପାହାଡ ଉପରେ ଗୋଟାଏ ଉପତ୍ୟକା ଉପରେ ଏ ମଇଦାନ୍ ।

ଗାଡ଼ିରୁ ଓହ୍ଲାଇ ମୁଣ୍ଡ ଉଠେଇ ଉପରକୁ ଚାହିଁବା ମାତ୍ରେ ଆଖିରେ ପଡିଲା ସେ କି ଅଦ୍ଭୁତ ଦୃଶ୍ୟ ? ଶୃଙ୍ଗ ଉପରେ ଗୋଟାଏ ଅବିକଳ ଫତେପୁର ସିକ୍ରି ଷ୍ଟାଇଲ୍‌ର ବିଲଡିଂ ! ସେ ବିଲଡିଂର ଚାରିକଣରେ ଚାରିଟା ବଡବଡ Bell Shaped ୱାଚ୍ ଟାୱାର୍ । ଆଲୋକମାଳାରେ ସୁସଜ୍ଜିତ ହୋଇଥାଏ ସାରା ବିଲଡିଂ । ପାହାଡ ଉପରେ ସେ ଜାଗା ଦିଶୁଥାଏ ସ୍ୱର୍ଗ ଭୁବନ ପରି ।

ଆରମ୍ଭହେଲା ପାହାଚ ଚଢିବା । ଅଭିଜିତ୍ କୁଳି ଆମକୁ ପ୍ରାରମ୍ଭିକ ସୂଚନାମାନ ଦେଲେ– "ଏଇଟା ୟୁଟାଃର ଇସ୍‌କନ୍ ମନ୍ଦିର । ମନ୍ଦିରର ନାମ ରାଧାକୃଷ୍ଣ ମନ୍ଦିର । ୟା'ର ପ୍ରତିଷ୍ଠାତା ଜଣେ ଧନୀ ଆମେରିକାନ୍ । ସେ ନିଜ ପକେଟ୍‌ରୁ ଚାରିଲକ୍ଷ ଡଲାର ଖର୍ଚ୍ଚକରି ଏ ମନ୍ଦିର ତୋଳାଇଚନ୍ତି ଏଠି ରକିଜ୍ ପର୍ବତ ଉପରେ । ସେ ଆମେରିକାନ୍ ଓ ତାଙ୍କ ସ୍ତ୍ରୀ ଇସ୍‌କନ୍‌ର ଆଜୀବନ ସଭ୍ୟା । ଉଭୟ ସ୍ୱାମୀ ସ୍ତ୍ରୀ ଦୀକ୍ଷା ନେଇଚନ୍ତି ବୈଷ୍ଣବଧର୍ମର । ଦୀକ୍ଷା ନେବା ପରେ ଭଦ୍ରଲୋକ ନିଜ ନାଁ ବଦଳେଇଚନ୍ତି ଚାରୁଦାସକୁ ଆଉ ତାଙ୍କ ସ୍ତ୍ରୀ ଗ୍ରହଣ କରିଚନ୍ତି କି ସୁନ୍ଦର ଏକ ଭାରତୀୟ କାବ୍ୟିକ ନାମ– ବୈଭବୀ ଦେବୀ ! ଆଜି ଏ ମନ୍ଦିରରେ ଚାଲିଚି ଦୀପାବଳୀ ଉତ୍ସବ, ତା' ସାଙ୍ଗକୁ ଗିରିଗୋବର୍ଦ୍ଧନ ପୂଜା ଉତ୍ସବ । ଏଇ ଉତ୍ସବକୁ ଅଙ୍କିତାକୁ ନିମନ୍ତ୍ରଣ କରାଯାଇଚି ଶାସ୍ତ୍ରୀୟ ହିନ୍ଦୁ ପରମ୍ପରାର ଭାରତୀୟ ନୃତ୍ୟ-ପ୍ରଦର୍ଶନ ପାଇଁ । ଗତକାଲି ଏଠି ଜଣେ ଭାରତନାଟ୍ୟମ୍ ଡ୍ୟାନ୍‌ସରଙ୍କ ପ୍ରୋଗ୍ରାମ୍ ଥିଲା । ସେ ଜଣେ ଉଚ୍ଚକୋଟୀର ଭାରତନାଟ୍ୟମ୍ ଡ୍ୟାନ୍ସର, ଦକ୍ଷିଣଭାରତୀୟ ମହିଳା । ଆଜି ପାଳି ପଡିଚି ଆମ ଅଙ୍କିତାର– ଓଡିଶୀ ଡ୍ୟାନ୍ସର । ଶୁଣିଚୁ– ଏଠାକାର ସ୍ଥାନୀୟ ମର୍ମନ ସଂପ୍ରଦାୟର ଖ୍ରୀଷ୍ଟିୟାନ୍ ଲୋକ ଚାରୁଦାସଙ୍କ ଏଭଳି ଫଙ୍କ୍‌ସନ୍‌କୁ ବହୁସଂଖ୍ୟାରେ ଆସନ୍ତି । ସେମାନଙ୍କର ହିନ୍ଦୁଧର୍ମ ପ୍ରତି ସେଭଳି ଧର୍ମୀୟ ବାସନ୍ଦ କିଛି ନାହିଁ– ଅନ୍ୟ ସଂପ୍ରଦାୟର ସେକ୍ୟୁରିଆନ୍ ଖ୍ରୀଷ୍ଟିୟାନ୍‌ଙ୍କ ପରି । ଆଜି ଆମ ଅଙ୍କିତା ପାଇଁ ଏ ଫଙ୍କ୍‌ସନ୍‌ଟା ହେବ ଗୋଟାଏ ବଡ ପରୀକ୍ଷା ।"

କଥାବାର୍ତ୍ତା ଭିତରେ ଆମେ ପହଞ୍ଚିଯାଇଥାଉ ପାହାଡ ଉପର ମନ୍ଦିରର ତଳ ମହଲାରେ । ଜନସମାଗମ ଆରମ୍ଭହେଉଥାଏ । ଅଭିଜିତ୍ ୱାଚ୍ ଦେଖି କହିଲେ, "ଟାଇମ୍ ବହୁତ ଅଛି– ଚାଲନ୍ତୁ ପ୍ରଥମେ ଜାଗାଟା ଦେଖିନେବା ଭଲକରି । ପ୍ରଥମେ ଲକ୍ଷ୍ୟକରନ୍ତୁ ରକି ପର୍ବତ ଉପର ଏ ନିର୍ଜନ ନିକାଞ୍ଚନ ଅଂଚଳର ପରିବେଶ । ଏଠି ଏ ଗ୍ରାନାଇଟ୍ ଭଳି କଠିନ ପାହାଡରୁ ପଥର କାଟି ଏଭଳି ଗୋଟାଏ ମନୋରମ ବଗିଚା ବାଡି ସହିତ ଆଶ୍ରମଟିଏ ଆଉ ମନ୍ଦିରଟିଏ ତିଆରିକରିବା ମଣିଷଟିର କି ଅଦମ୍ୟ ଉତ୍ସାହ ଲକ୍ଷ୍ୟ କରନ୍ତୁ । ୟା' ଭିତରେ ଅଛି ଗୋଟାଏ କେତେ ବଡ ପୋଖରୀ ହେଇ ସେଠି– ଦେଖନ୍ତୁ । ପୁଣି ଅଛନ୍ତି ପଶୁପକ୍ଷୀ ବିଭିନ୍ନ ଜାତିର । ଏ ନିରାଟ ଶୁଖିଲା ମରୁଭୂମି ଭଳି ଜାଗାରେ, ପୁଣି ପାହାଡ ଉପରେ ଏ ଦୁଇ ଆମେରିକାନ୍ ଲୋକ ଚାରୁଦାସ ଆଉ ତାଙ୍କ ସ୍ତ୍ରୀ ବୈଭବୀ ଦେବୀ କାହିଁକି ମନବଳେଇଲେ ଗୋଟାଏ ଋଷି ଆଶ୍ରମ ତିଆରି କରିବାକୁ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଚି ମତେ" ।

ଆମେ ଚାଲିଲୁ ପୋଖରୀ ଆଡକୁ । ହୁଡା ଉପରେ ପହଞ୍ଚିଲାମାତ୍ରେ ଆଖିରେ ପଡିଲା ପୋଖରୀ ଭିତରେ ଭାସୁଚି ଗୁଡିଏ କାଗଜଡଙ୍ଗା । ପ୍ରତି ଡଙ୍ଗାରେ ଜଳୁଚି ଗୋଟାଏ ଗୋଟାଏ ମହମବତି । ଏ କ'ଣ ଆମ ଓଡିଶାର ବୋଇତବନ୍ଦାଣ ଉତ୍ସବ ନା କ'ଣ !

ମନରେ ବିସ୍ମୟ ନେଇ ପୋଖରୀଟାର ଚାରିପାଖକୁ ନଜର ପକେଇ ଦେଖିଲି– ତାହା ଗୋଟାଏ ମସ୍ତବଡ ଲମ୍ବା ଚଉଡା ଚଉଖୁଣ୍ଟିଆ ପୋଖରୀ– ନିଶ୍ଚୟ ପ୍ରାକୃତିକ ଜଳାଶୟଟିଏ ନୁହେଁ; ମନୁଷ୍ୟକୃତ । ପୋଖରୀର ଗୋଟାଏ ପାଖ ବନ୍ଧ ଉପରେ ଆଖି ପଡିଲା। ଦେଖିଲି– ସେଠି ମୂର୍ତ୍ତିମାନ ହେଇଚନ୍ତି ରାମ ଲକ୍ଷ୍ମଣ ସୀତା ଓ ହନୁମାନଙ୍କ ଚାରିଟି ବଡବଡ ମୂର୍ତ୍ତି । ପାଖରେ ରଖାଯାଇଚି ଏକ ଆଧୁନିକ ଯୁଗର ଛୋଟ ଉଡାଜାହାଜ ଭଳି ଏକ ଆକୃତି । ତାହା କ'ଣ ତେବେ ପୁଷ୍ପକବିମାନ ? ସେ ବିମାନ ସେଇ ମାତ୍ର ଲ୍ୟାଣ୍ଡ କରିଥାଏ– ଯାତ୍ରା ଶେଷ କରିଥାଏ ବୋଧହୁଏ ଅଯୋଧ୍ୟାର ସରଜୁନଦୀ ତଟରେ । ସରଜୁ ନଦୀ କୂଳରେ ଅଭ୍ୟର୍ଥନା ଅଭିଳାଷୀ ଅଯୋଧ୍ୟାବାସୀ ଧୂପଦୀପ ଧରି ଅପେକ୍ଷାରତ ।

ଅଭିଜିତ କହିଲେ– ଆଜି ଦୀପାବଳୀ ଉତ୍ସବ ପାଳନ କରାଯାଉଚି ମନ୍ଦିରରେ। ଚଉଦ ବର୍ଷ ବନବାସ ପରେ ଆଜି ତିଥିରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଅଯୋଧ୍ୟାକୁ ଫେରିଥିଲେ ଲଙ୍କାରୁ। ଅଯୋଧ୍ୟାବାସୀ ବିଜୟୋଲ୍ଲାସରେ ଦୀପାବଳୀ ମନାଇଥିଲେ ନା ଆଜିର ତିଥିରେ ? ବୋଧହୁଏ ସେଇ ସ୍ମୃତିକୁ ଏମାନେ ଡ୍ରାମାଟାଇଜ୍ କରୁଚନ୍ତି ଏଠି ୟା'ଙ୍କ ମନ୍ଦିରରେ ।

ପୋଖରୀ ହୁଡାକୁ ଲାଗି ଦିଶୁଥାଏ ଗୋଟାଏ ସୁନ୍ଦର ଉପବନ– ଫୁଲଫଳର ବଗିଚା। ଜୁଲି କହିଲା– ଏଇଟା କେବଳ ଏକ ମନ୍ଦିର ନୁହେଁ; ଗୋଟାଏ ଋଷି ଆଶ୍ରମ ମଧ୍ୟ। ଦେଖୁନ ସେଠି ଦିଶୁଚନ୍ତି ପଲେ ଗାଈ। ଆଃ, କି ସୁନ୍ଦର ସୁନ୍ଦର ଗାଈ ବାଛୁରୀ ଚରୁଚନ୍ତି ସେଠି। ପୁଣି ଦେଖ– ସେ ଅଡା ଭିତରେ ଓଟ ଭଳି ସେ ଯୋଉ ଜନ୍ତୁଗୁଡାକ ମୁଣ୍ଡ ଟେକି ଅନଉଚନ୍ତି– ସେଗୁଡାକ କ'ଣ କହିଲ ?– ଲାମା ।

ମନେପଡିଲା ପିଲାଦିନର ଭୂଗୋଳପାଠ। ଦୁଇ ଆମେରିକା ମହାଦେଶର ପଶ୍ଚିମରେ ରକି ଆଣ୍ଡିଜ ପାର୍ବତ୍ୟ ଅଂଚଳଟା ହେଲା ଏଇ ଲାମାମାନଙ୍କ ପ୍ରାକୃତିକ ବାସସ୍ଥାନ । ସେଇ ଛୋଟଛୋଟ ଓଟ ଭଳି ଦିଶୁଥିବା ଆଉ ଲମ୍ବା ଲମ୍ବା ବେକ ଟେକି ଅନାଉଥିବା ଅଦ୍ଭୁତ ପ୍ରାଣୀଗୁଡାକୁ ଦେଖିବାକୁ ଅଟକିଗଲି ମୁଁ ଆଉ ମୋ ସାଙ୍ଗେ ନାତୁଣି ଦୁହେଁ।

ଜୁଲି ଡାକମାରିଲା– ପ୍ରେୟାର୍ ଟାଇମ୍ ହେଇଯିବ– ଆମକୁ ଯିବାକୁ ହେବ ମନ୍ଦିରକୁ– ଶୀଘ୍ର ଚାଲ। ସେଇଠୁ ସେ ଆମକୁ ବାଟ କଢେଇ ନେଇଗଲା ଆଶ୍ରମ ବଗିଚା ଭିତରକୁ। ପହଞ୍ଚିଲୁ ଏକ କୁଂଜବନ ଭଳି ବଗିଚା ଭିତରେ। ସେଠି ଦେଖିଲୁ ପ୍ରାକୃତିକ ପରିବେଶ ଭିତରେ ରଖାଯାଇଥାନ୍ତି ବିଭିନ୍ନ ଜାତିର ପକ୍ଷୀ– ମୟୂର, ଶୁଆ, ହଂସ, ପାରା ଇତ୍ୟାଦି। ମୟୂରମାନେ ସେମାନଙ୍କର ଲମ୍ବାଲମ୍ବା ପୁଚ୍ଛ-ଲମ୍ବେଇ ବସିଥାନ୍ତି ଗଛଡାଳରେ। ଆଃ, କି ସୁନ୍ଦର ସ୍ୱାସ୍ଥ୍ୟବାନ୍ ହେଇଚନ୍ତି ଏ ମୟୂରଗୁଡାକ ସତରେ ! ନିଶ୍ଚୟ ବେଶ୍ କିଛି ପାଉଚନ୍ତି ଖାଇବାକୁ। ଆନୁ କହିଲା– ଅଜା, ମତେ ଗୋଟାଏ ଫିଦର୍ ଆଣିଦିଅ ସେ ମୟୂର ଟେଲ୍‌ରୁ । ହସିଲୁ ସମସ୍ତେ ସାତ-ଆଠବର୍ଷର ଝିଅର ସେଭଳି ଅନୁରୋଧ ଶୁଣି ।

ମୁଁ ହସି ହସି କହିଲି ଗେହ୍ଲା ନାତୁଣୀକୁ ମୋର– ତାକୁ ମାଗୁନୁ– ହେ ପକ୍ଷୀରାଜ

ମୟୂର ! ମତେ ଆପଣଙ୍କ ପୁଚ୍ଛରୁ ଗୋଟିଏ ମୟୂରଚନ୍ଦ୍ରିକା ଦିଅନ୍ତୁ !

ଆନୁ ଭାବିଲା ମୁଁ ମଜା କରୁନାଇଁ । ସତକୁ ସତ ସେ ପୋ଼ଓଡ଼ିଆ ଭାଷା ଓ ସ୍ୱରକୁ ଅନୁକରଣ କରି ମାଗିଲା– ହେ ପକ୍ଷୀରାଜ ମୟୂର. . . ! ଆଶ୍ଚର୍ଯ୍ୟର କଥା– ଆନୁର କଥା ଶେଷନହେଉଣୁ ଉଚ୍ଚ ଗଛଡାଳରେ ଚୁପ୍‌ଚାପ୍ ନିଜର ଲମ୍ବା ପୁଚ୍ଛ ଲମ୍ବାଇ ବସିଥିବା ମୟୂରଟି ତାର ଗୋଟାଏ ପାଖ ଡେଣା ହଲେଇଦେଲା ଓ ସାଙ୍ଗେ ସାଙ୍ଗେ ଗୋଟାଏ ମୟୂରଚନ୍ଦ୍ରିକା ଥିବା ପର ତା' ଡେଣାରୁ ଖସିପଡିଲା । ପରଟା ସିଧା ଖସି ଆସି ପଡିଲା ଆନୁର ମୁଣ୍ଡ ଉପରେ ! ଏ ଦୃଶ୍ୟ ଦେଖୁଥାନ୍ତି ସମସ୍ତେ । ସେତେବେଳକୁ ଆହୁରି ଅନେକ ଦର୍ଶକ ଓ ତାଙ୍କ ପିଲାମାନେ ଜମିଯାଇଥାନ୍ତି ପକ୍ଷୀନିବାସ ଭିତରେ ।

ଆନୁର ଆଖିଦୁଇଟା ସେତେବେଳେ ବିସ୍ତାରିତ ହୋଇଯାଇଥାଏ– ଗଭୀର ଅବିଶ୍ୱାସ ଭରା ଆଶ୍ଚର୍ଯ୍ୟରେ । ମୟୂର ପରଟିକୁ ବରଦାନ ଭଳି ଗୋଟେଇନେଇ ସେ ସେଟିକୁ ତା' ଛାତିରେ ଜାକିଧରିଲା ।

ଯା'ପରେ ଆମେ ଆଗେଇଲୁ ଅନ୍ୟ ଦିଗରେ । ଏ ଭିତରେ ଅନ୍ୟ ପିଲାମାନେ ଆସି ଜମିଗଲେଣି କଥାକୁହା ଶୁଆର ପଂଜୁରି ଚାରିପାଖେ । ଏ ଗୁଡିକ ଇଣ୍ଡୋନେସୀୟ ଅରଣ୍ୟର ପକ୍ଷୀ । ବିଚିତ୍ର ଚିତ୍ରିତ ରୂପ ସେମାନଙ୍କର । ଶୁଆଙ୍କ ଭଳି ଲାଲ୍ ଥଣ୍ଟ, ରଙ୍ଗୀନ୍ ଡେଣା, ଆଉ ବେକ ଛାତିରେ ଚିତାକୁଟା ହେଲା ଭଳି ଛବି ସାଙ୍ଗକୁ ସେମାନଙ୍କ ମାନବିକ କଣ୍ଠସ୍ୱରର କଥାବାର୍ତ୍ତା ଶୁଣିବାକୁ ଲାଗିଥାଏ ପିଲାଙ୍କ ଗହଳି ପଂଜୁରୀ ଚାରିପାଖେ ।

ସେଇ ପଂଜୁରୀକୁ ଘେରିଥିବା ପିଲାଙ୍କ ଗୋରା ତକ୍‌ତକ୍ ଚେହେରା ଦେଖି ବୁଝାପଡିଲା ଏମାନେ ନିଶ୍ଚୟ ସ୍ଥାନୀୟ ଆମେରିକାନ୍ ପିଲା । ସେମାନଙ୍କୁ ଦେଖି ଭାବିଲି– ଏଇମାନେ ତେବେ ମର୍ମନ ଲୋକଙ୍କ ପିଲା ହେଇଥିବା ସଂଭବ । ସେମାନଙ୍କ ସୁନ୍ଦର ଚେହେରା ଦେଖି ମୁଁ ଅନ୍ଦାଜ୍ କରୁଥାଏ ଏମାନଙ୍କ ବାପା ମା' କିଭଳି ଚେହେରାବାନ୍ ହୋଇଥିବେ । ପୂର୍ବରୁ ଆମେରିକାର ମର୍ମନ ସଂପ୍ରଦାୟ ସଂପର୍କରେ ବହିରୁ ଅନେକକଥା ପଢି ମୋ' ମନରେ ମର୍ମନମାନଙ୍କ ପ୍ରତି ବହୁ ପ୍ରକାର କୌତୂହଳ ରହିଥାଏ । ଜାଣିଥିଲି ଏ ସଂପ୍ରଦାୟର ଲୋକଙ୍କ ମୁଖ୍ୟ ବାସସ୍ଥଳ ଆମେରିକାର ଏଇ ରକିପାର୍ବତ୍ୟ ରାଜ୍ୟ ୟୁଟାଃ । ମର୍ମନଙ୍କ ସଂପର୍କରେ ମୋର ଏ କୌତୂହଳ ଅଚିରେ ପରିତୃପ୍ତ ହେଇଥିଲା ଅବଶ୍ୟ ଆମର ଏଇ ୟୁଟାଃ ରହଣିକାଳରେ । ସେ ବିଷୟ ଟିକିଏ ପରେ ପରବର୍ତ୍ତୀ ଅଧ୍ୟାୟରେ ଆସିବ ।

କିଛି ସମୟ ପରେ ମନ୍ଦିର ଉପରମହଲାରେ ଶଂଖଧ୍ୱନି ହେଲା । ପରେ ପରେ ଶୁଣାଗଲା ସଂକୀର୍ତ୍ତନର ବାଦ୍ୟବାଜଣା– ମୃଦଙ୍ଗ ଗିନି କାହାଳି ପ୍ରଭୃତି ବାଦ୍ୟ ଧ୍ୱନି । ଲୁଲି କହିଲା, "ସନ୍ଧ୍ୟା ଆଳତି ଆରମ୍ଭହେଇଗଲାଣି– ଚାଲ ଆମେ ଯିବା ଉପର ମହଲାକୁ ।"

ମନ୍ଦିର ଆଡକୁ ଯିବା ବାଟରେ ଦେଖିଲୁ ଗୋଟିଏ ଜାଗାରେ ଗାଈମାନଙ୍କ ରାଞ୍ଚ । କେତେଗୁଡିଏ ହୃଷ୍ଟପୁଷ୍ଟ ଦୁଧିଆଳୀ ଗାଈ ସେ ରାଞ୍ଚରେ ମୁକ୍ତଭାବେ ବୁଲୁଥାନ୍ତି । ଲକ୍ଷ୍ୟ କଲୁ

ଗାଈମାନଙ୍କ ଶିଙ୍ଗରେ ତେଲ ହଳଦି ମଖାଯାଇଚି । କାହା ବେକରେ ଗଜରା ହାର ପଡିଚି ତ ଆଉ କାହା ପିଠି ଉପରେ ନାଲି ପାଟ ଚାଦର ପଡିଚି ।

ଜୁଲି କହିଲା– ଏ ଗାଈମାନଙ୍କୁ ପୂଜା କରଯାଇଚି । ଆଜି ମନ୍ଦିରରେ ଗୋବନ୍ଧାଣ ଉତ୍ସବ ହେବ । ଚାରୁଦାସ ବହୁବର୍ଷ ଭାରତରେ ରହି ବହୁ ତୀର୍ଥ ଭ୍ରମଣ କରିଚନ୍ତି ବୋଲି କହୁଥିଲେ ତାଙ୍କ ପରିଚୟ ଦେଲାବେଳେ । ସେ ଆଉ ତାଙ୍କ ସ୍ତ୍ରୀ ବୈଭବୀ ପୂରାପୂରି ଭାରତୀୟ ବୈଷ୍ଣବ । ତାଙ୍କୁ ଦେଖିଲେ, କଥାବାର୍ତ୍ତା ହେଲେ ଜାଣିବ ।

କଥାବାର୍ତ୍ତା ଭିତରେ ମନ୍ଦିର ତଳମହଲାରୁ ସିଢି ଚଢି ଚାଲିଲୁ ଉପର ମହଲାକୁ । ସିଢିରେ ଆମ ସାଙ୍ଗେ ସାଙ୍ଗେ ଚାଲିଥାନ୍ତି ଆହୁରି ବହୁତ ଲୋକ । ସେମାନଙ୍କୁ ଦେଖି ଜୁଲି କହିଲା– ନନା ! ଏଇମାନେ ହେଲେ ଏଠାକାର ସ୍ଥାନୀୟ ମର୍ମନ ଲୋକ । ବାବାରେ ! ଆଜି ତ ଯାତ୍ରାଭଳି ଲୋକ ଆସିଗଲେଣି । ଆମ ଆଗେ ଆଗେ ଚାଲିଥିବା ଅଙ୍କିତାକୁ ଶୁଣେଇ ଓଡିଆରେ ଚୁପ୍‌ଚୁପ୍ କରି ସେ କହିଲା– ଡରନା ! ଏମାନେ ଭାରି ଭଦ୍ର । ତୋ' ନାଚ ଦେଖିବାକୁ ଆଜି ତ କ'ଣ ବହୁତ ଭିଡ ଏ ମନ୍ଦିରରେ !

ଉପରମହଲାରେ ପହଞ୍ଚି ଦେଖିଲୁ ଏକ ବିଶାଳ କାର୍ପେଟେଡ୍ ହଲ୍ । ହଲ୍‌ର ଗୋଟିଏ ଦିଗ ପୂରା ଅଧିକାର କରି ରହିଥାଏ ଏକ ବିଶାଳ ବେଦୀ । ବେଦୀ ଉପରେ ସୁସଜ୍ଜିତ ଆସ୍ଥାନ । କେନ୍ଦ୍ର-ସ୍ଥଳରେ ଫୁଲରେ ମଣ୍ଡିତ ହୋଇ ଅଧିଷ୍ଠିତ ହୋଇଥାନ୍ତି ମନ୍ଦିରର ଇଷ୍ଟଦେବ ରାଧାକୃଷ୍ଣଙ୍କ ଦୁଇଟି ଅତି ସୁନ୍ଦର ଲାଇଫ୍‌ସାଇଜ୍ ପ୍ରତିମୂର୍ତ୍ତି । ତାଙ୍କ ଚାରିପାଖେ ହିନ୍ଦୁ ଦେବଦେବୀଙ୍କ ମେଳା । ଆଖିବୁଲେଇନେଇ ଖୋଜିଲି କୋଉଠି ଅଛନ୍ତି ଜଗନ୍ନାଥ ? ଲକ୍ଷ୍ୟ କଲି ଏକ ସ୍ୱତନ୍ତ୍ର ଆସ୍ଥାନରେ ସ୍ଥାନିତ ହେଇଥାନ୍ତି ପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା, ସୁସଜ୍ଜିତ ତ୍ରିମୂର୍ତ୍ତି । ଜୁଲି ମତେ ଓ ନିରୁପମାଙ୍କୁ ଡାକିନେଇ ବସେଇଲା ଦର୍ଶକ ଗ୍ୟାଲେରୀରେ ପଡିଥିବା ଧାଡିଧାଡି ସୋଫା ସେଟ୍ ସାମ୍ନାଧାଡିର ଏକ ଲମ୍ୱାଚଉଡା ସୋଫାରେ । ଆମ ଧାଡିର ଆଉ ଆମ ପଛଧାଡିର ଖାଲି ସୋଫାଗୁଡାକ କ୍ରମେ ଭର୍ତ୍ତି-ହେଇଗଲା ଆଗନ୍ତୁକ ଦର୍ଶକମାନଙ୍କ ଦ୍ୱାରା । ଅନେକ ଲୋକ ବସିପଡିଲେଣି କାର୍ପେଟ ଉପରେ ବା ଖାଲି ଚଟାଣ ଉପରେ । ଅଧିକାଂଶ ହେଲେ ନାରୀ । ସେମାନଙ୍କ ସାଙ୍ଗରେ ଆସିଥାନ୍ତି ଅନେକ ଛୋଟ ଛୋଟ ପିଲା– ସେମାନଙ୍କ ଭିତରେ କେଇଟି ଉଡିଆଣି ଶିଶୁ ବି ! ଶିଶୁଗୁଡିକ ଜୁଳୁଜୁଳୁ ହେଇ ଅନାଉଥାନ୍ତି ମା' କୋଳରୁ ଚାରିଆଡକୁ ।

ପୂଜା ଆଳତି ଚାଲିଲା ବେଶ୍ କିଛି ସମୟ ଆମ ହିନ୍ଦୁ ରୀତିର ସମସ୍ତ ପୂଜା ଉପଚାର ସହିତ । ଶେଷରେ ଠାକୁରମାନଙ୍କ ଧୂପ ଆଳତି । ବାଦ୍ୟବାଜଣାରେ ମନ୍ଦିର ପ୍ରକମ୍ପିତହେଲା । ଏକ ଉଲ୍ଲାସମୟ ପରିବେଶ । ଘନଘନ ହରିବୋଲ ଭିତରେ ଆଳତି ଶେଷହେଲା । ପୂଜକ ଧୂପଦାନୀଟିକୁ ନେଇ ଦର୍ଶକ ମହଲରେ ବୁଲେଇ ବୁଲେଇ ଭକ୍ତମାନଙ୍କୁ ପବିତ୍ର ଧୂପ ଆଘ୍ରାଣ କରିବାକୁ ଦେଲେ । ଦେଖିଲି ଧୂପ ଧୂଆଁ ଆଘ୍ରାଣ ପାଇଁ ମର୍ମନମାନଙ୍କର ସେ କି

ଆଗ୍ରହ– ବେଶୀ ଆଗ୍ରହୀ ନାରୀମାନେ । ନିଜନିଜ ପିଲାଙ୍କୁ ଧୂପ ଆଘ୍ରାଣ କରାଇବା ପାଇଁ ଖୁବ୍ ଉତ୍ସାହିତ କରୁଥାନ୍ତି ସେମାନେ ।

**ଇସ୍କନ୍ ବାବାଜୀ ଚାରୁଦାସ ଏକ ଅନନ୍ୟ ବ୍ୟକ୍ତିତ୍ୱ–**

ପୂଜା ଆଳତି ଭିତରେ ଆଜି ସନ୍ଧ୍ୟାର ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ସମସ୍ତ ପ୍ରସ୍ତୁତି ଆରମ୍ଭ ହୋଇଯାଇଥାଏ । ସନ୍ଧ୍ୟାର ସଂଗୀତ ଆସର ଉଦ୍ଦେଶ୍ୟରେ ବିଭିନ୍ନ ବାଦ୍ୟଯନ୍ତ୍ର– ହାରମୋନିୟମ୍, ପଖଉଜ, ତୁବିତବଲା, ଗିନି, ତାନ୍‌ପୁରା ଆଦି ଧରି ବାଦ୍ୟକାରମାନେ ନିଜନିଜ ଆସନରେ ବସିଗଲେଣି । ବାବାଜୀ ଚାରୁଦାସ ମାଇକ୍ ସେଟ୍, ପ୍ରୋଜେକ୍ଟର୍, ଲ୍ୟାପ୍‌ଟପ୍ ଇତ୍ୟାଦି ନିରୀକ୍ଷଣ କାମରେ ଲିପ୍ତ । ମାତାଜୀ ବୈଭବୀ ଦେବୀ ଅତିଥିମାନଙ୍କୁ ସଂଖୋଳି ସେମାନଙ୍କ ସୁବିଧା ଅସୁବିଧା କଥା ବୁଝୁଥାନ୍ତି । ତାଙ୍କୁ ଏଇ ପ୍ରଥମ ବାର ମୁଁ ଦେଖିବାକୁ ପାଇଲି ନିକଟରୁ । ସେ ଜଣେ ସୁଶ୍ରୀ ମଧ୍ୟବୟସ୍କା ଆମେରିକାନ୍ ମହିଳା । ଇସ୍କନ୍ ଧର୍ମାବଲମ୍ବୀ ହେବା ପରେ ବୈଷ୍ଣବୀରୂପରେ ତାଙ୍କ ଚେହେରା ଆହୁରି ଆକର୍ଷକ ଓ ପ୍ରଭାବଶାଳୀ ହୋଇଉଠିଥାଏ । ହସିହସି ସେ ଆମକୁ ସ୍ୱାଗତକଲେ ଏବଂ ବିଶେଷ ନିମନ୍ତ୍ରଣ ଦେଇ କହିଲେ– please share Prasad with us before you go ।

ଏଇ ଭିତରେ ବାବାଜୀ ଚାରୁଦାସ ମାଇକ୍‌ରେ ଘୋଷଣା ଆରମ୍ଭକଲେ– Before we go for the cultural programme. I have an important announcement... ପରେ ପରେ ସେ ଜୁଲି ଓ ଅଙ୍କିତାଙ୍କର ପରିଚୟ ଦେଲେ । କହିଲେ– ଆମ ସହରକୁ ନବାଗତା ଦୁଇଜଣ କଳାକାରଙ୍କୁ ଆମେ ସ୍ୱାଗତ କରୁଛୁ । ଡକ୍ଟର ଜୁଲି ରାୟ ଓ ତାଙ୍କ ସୁଯୋଗ୍ୟ ସ୍ୱାମୀ ଡକ୍ଟର ଅଭିଜିତ୍ ରାୟ ଅଳ୍ପଦିନ ତଳେ ମେରିଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟରୁ ବଦଳିହୋଇ ଆମ ସଲଟ୍‌ଲେକ୍ ସିଟି ବିଶ୍ୱବିଦ୍ୟାଳୟକୁ ଆସିଛନ୍ତି । ସେ ଦୁହେଁ ସାଇଣ୍ଟିଷ୍ଟ୍ । ଡକ୍ଟର ଜୁଲି ରାୟ ମଧ୍ୟ ଜଣେ ତାଲିମପ୍ରାପ୍ତ ଭାରତୀୟ କ୍ଲାସିକାଲ୍ ସିଙ୍ଗର । ଆଜି ସେ ଆମ ରାଧାକୃଷ୍ଣ ମନ୍ଦିରରେ କେତୋଟି ଭାରତୀୟ ଭକ୍ତିସଂଗୀତ ପରିବେଷଣ କରିବେ । ତାଙ୍କ କନ୍ୟା କୁମାରୀ ଅଙ୍କିତା ରାୟଙ୍କୁ ଆଜି ଆମେ ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ କରିଛୁ ଏକ ବିଶେଷ କାର୍ଯ୍ୟକ୍ରମ ପାଇଁ । ଗତକାଲି ଆମ ମନ୍ଦିରର ମୁକ୍ତରଙ୍ଗମଞ୍ଚରେ ଜଣେ ବିଖ୍ୟାତ ଭାରତୀୟ ନୃତ୍ୟାଙ୍ଗନା ଆପଣମାନଙ୍କ ସମ୍ମୁଖରେ ଭାରତନାଟ୍ୟମ୍ ଶୈଳୀର କ୍ଲାସିକାଲ୍ ଡ୍ୟାନ୍ସ ପରିବେଷଣ କରିଥିଲେ । ଆଜି ସେଇ ମଞ୍ଚରେ ଆପଣମାନେ ଦେଖିବାକୁ ପାଇବେ ଜଣେ ଚଉଦବର୍ଷର କିଶୋରୀ କଳାକାରଙ୍କ ଡ୍ୟାନ୍ସ ପରଫରମ୍ୟାନ୍ସ । ସେ ଆପଣମାନଙ୍କ ସମ୍ମୁଖରେ ପରିବେଷଣ କରିବେ ଓଡିଶୀ କ୍ଲାସିକାଲ୍ ନୃତ୍ୟ । ଦର୍ଶକମାନଙ୍କୁ ଜଣାଇଦେବା ଉଚିତ୍ ମନେକରୁଚି ଯେ ଓଡିଶା ହେଉଚି ମହାପ୍ରଭୁ ଜଗନ୍ନାଥଙ୍କ ସ୍ୱଧାମ ଯେଉଁଠୁ ଏଇ ଓଡିଶୀ ନୃତ୍ୟର ଉତ୍ପତ୍ତି ।

ଏହାପରେ ପ୍ରୋଜେକ୍ଟର୍ ମାଧ୍ୟମରେ ସେ ପ୍ରଦର୍ଶନ କଲେ ଏକ ପ୍ରାମାଣିକ ଚଳଚ୍ଚିତ୍ର–

ତାହା ଥିଲା ଭାରତର ଗୋଟିଏ ପାର୍ବଣ ତିଥିର ଦୃଶ୍ୟ । ଛବିରେ ଆମେ ଦେଖିବାକୁ ପାଇଲୁ ଗୋଟିଏ ପର୍ବତ । ବାବାଜୀ ଚାରୁଦାସ ମାଇକ୍‌ରେ ଘୋଷଣାକଲେ– Well, this is that mountain Govardhana Lord Sri Krishna held up on his little finger for seven days and nights... ଏହାପରେ ସେ ସେଇ ଚଳଚ୍ଚିତ୍ରରେ ପ୍ରଦର୍ଶିତ ଏକ ଅଦ୍ଭୁତ ଦୃଶ୍ୟ ପ୍ରତି ଦର୍ଶକମାନଙ୍କ ଦୃଷ୍ଟି ଆକର୍ଷଣ କଲେ ।

ଚଳଚ୍ଚିତ୍ରରେ ଦେଖିବାକୁ ମିଳୁଥିଲା ଶହଶହ ତୀର୍ଥଯାତ୍ରୀ ସେଇ ପାର୍ବଣ-ତିଥିରେ ଦଳଦଳ ହେଇ ପଦଯାତ୍ରା କରୁଥାନ୍ତି ଗୋବର୍ଦ୍ଧନଗିରି ପରିକ୍ରମା ଉଦ୍ଦେଶ୍ୟରେ । ସେମାନଙ୍କ ଗହଣରେ ଥିଲେ କେତକ କୃଚ୍ଛ୍ରସାଧକ ଦଣ୍ଡପ୍ରଣାମୀ ଭକ୍ତ । ସେମାନେ ବାରମ୍ବାର ଭୂମି ଉପରେ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଗିରି ଗୋବର୍ଦ୍ଧନ ପରିକ୍ରମା ବ୍ରତ ପାଳନରେ ପଡିଉଠି ଅଗ୍ରସର ହେଉଥାନ୍ତି ।

ଚାରୁଦାସ ସେଇ ଦଣ୍ଡ ପକାଇ ପକାଇ ମାଟି ଉପରେ କୃମିପରି ଲୋଟିପଡୁଥିବା ବ୍ରତଧାରୀମାନଙ୍କ ପ୍ରତି ଶ୍ରୋତାଙ୍କ ଧ୍ୟାନ ଆକର୍ଷଣକରି କହିଲେ, "Just imagine what these crawling ceatures are upto ! They are doing a typical penance for which they have taken vows. Such vows are sometimes taken by people who wish to pay back their debts to Lord in return for some miraculous divine grace they received.

ପରେପରେ ସେ ଭାରତର ଧାର୍ମିକ ପରମ୍ପରାରେ ବ୍ରତ ଉପବାସ ଓ ବ୍ରତ ପାଳନର କଠିନ ନିଷ୍ଠା ସଂପର୍କରେ ଏକ ସଂକ୍ଷିପ୍ତ ସୂଚନା ଦେଲେ । କହିଲେ– ଭାରତରେ ବହୁବହୁ ତୀର୍ଥସ୍ଥାନ ଅଛି ଯାହା ସବୁ ମୋର ଭାରତ ଭ୍ରମଣ ସମୟରେ ମୁଁ ଓ ମୋର ଧର୍ମପତ୍ନୀ ବୈଭବୀ ଦେବୀ ବୁଲି ଦେଖିଛୁ । ମୋର ଦୁଃଖ– ଆମ ଆମେରିକାରେ ସବୁ ଅଛି କେବଳ ନାହିଁ ଗୋଟିଏ ଅତି ମୂଲ୍ୟବାନ୍ ସଂପଦ– ସେଇଟି ହେଲା ତୀର୍ଥ ! ଆଜି ଆପଣମାନେ ଏଇ ରକି ପର୍ବତର ଶିଖର ଦେଶରେ ଯେଉଁ ସ୍ଥାନରେ ସମବେତ ହୋଇଛନ୍ତି ତାହାକୁ ଏକ ତୀର୍ଥସ୍ଥାନକୁ ରୂପାନ୍ତରିତ କରିବା ହେଉଚି ମୋର ଏକମାତ୍ର ସ୍ୱପ୍ନ ।

– ଏହାପରେ ବାବାଜୀ ଉପସ୍ଥିତ ଦର୍ଶକବର୍ଗଙ୍କୁ ଆହ୍ୱାନ କଲେ– Well, I would now request you all for taking part in some of our activities in the temple ।

ବାବାଜୀଙ୍କ ନିର୍ଦ୍ଦେଶରେ ସହାୟକମାନେ ସେଇ ପ୍ରାର୍ଥନା ସଭାଗୃହରେ ଏ ପର୍ଯ୍ୟନ୍ତ ଲୋକଲୋଚନର ଅଗୋଚରରେ ଥିବା ଗୋଟାଏ କିଛି ବଡଆକାରର କୁଦଭଳି ଦିଶୁଥିବା ଜିନିଷକୁ ଘୋଡେଇ ରଖିଥିବା ଚଦରଟାକୁ ହଟାଇଦେଲେ । ଚଦର ତଳୁ ଆତ୍ମପ୍ରକାଶ କଲା ଗଦାଏ ହାଲୁଆ ! ଭକ୍ତମାନଙ୍କ ଉଦ୍ଦେଶ୍ୟରେ ବାବାଜୀ ଚାରୁଦାସ କହିଲେ– ଆଶ୍ଚର୍ଯ୍ୟ ହୁଅନ୍ତୁ ନାହିଁ– ଏଇଟି ହେଲା ଆମର ଗିରି ଗୋବର୍ଦ୍ଧନ । ମନେକରନ୍ତୁ ମହାପ୍ରଭୁ ଶ୍ରୀକୃଷ୍ଣ

ଆଜିର ପୁଣ୍ୟତିଥିରେ ଏଇ ପର୍ବତଟିକୁ ଟେକିଧରି ଗୋକୁଳକୁ ସେଦିନ Rain God Indra କବଳରୁ ରକ୍ଷାକରିଥିଲେ । ଭଗବାନଙ୍କର ସେଇ ଅଭୂତପୂର୍ବ ଐଶ୍ୱରିକ ଲୀଳା ପ୍ରତି କୃତଜ୍ଞତା ଜଣାଇବାକୁ ଆମେ ଆମର ଭକ୍ତମାନଙ୍କୁ ଅନୁରୋଧ କରିବୁ । ସେମାନେ ହାତରେ ଧୂପଦୀପ ଧରି ଏଇ ଗିରିଗୋର୍ଦ୍ଧନ ପର୍ବତକୁ ବନ୍ଦନାକରିବେ ଏବଂ ପରେ ପରିକ୍ରମା କରିବାର ଆନନ୍ଦ ଲାଭ କରିବେ ।

ତାଙ୍କର ଏଭଳି ଅନୁରୋଧ ଶୁଣି ମୋର ଉତ୍କଣ୍ଠା ଜାଗ୍ରତହେଲା । ସତରେ କ'ଣ ଏଇ ଦର୍ଶକମାନଙ୍କ ଭିତରେ ଥିବା ସଂଖ୍ୟାଗରିଷ୍ଠ ମର୍ମନ ଲୋକଙ୍କ ଉପରେ ବାବାଜୀ ଚାରୁଦାସଙ୍କର ସେଇ ନିବେଦନ କିଛି ପ୍ରଭାବ ସୃଷ୍ଟି କରିବ ? କିନ୍ତୁ ପରେ ପରେ ଯାହା ଘଟିଗଲା ତାହା ଥିଲା ମୋପାଇଁ ସଂପୂର୍ଣ୍ଣ ଅପ୍ରତ୍ୟାଶିତ ।

ଦେଖିଲି ଅଳ୍ପ ସମୟ ଭିତରେ ସମବେତ ଜନତା ଗୋଟିଏ ଲମ୍ବା କ୍ୟୁ-ବାନ୍ଧି ଠିଆହେଇଗଲେଣି । ସେ କ୍ୟୁର ସବା ଆଗରେ ଥିଲେ ମର୍ମନ ମହିଳାମାନେ । ପ୍ରାୟ ସମସ୍ତଙ୍କ ସହିତ ଛୋଟବଡ ପିଲା । ମହିଳାମାନେ ନିଜନିଜ ହାତରେ ଧରିଥାନ୍ତି ଗୋଟିଏ ଗୋଟିଏ ଜଳନ୍ତା ଦୀପ– ତେଲ ଦୀପ ! ସେଇ ଦୀପଗୁଡ଼ିକୁ ନିଜନିଜ ହାତରେ ଭକ୍ତି-ସହକାରେ ଟେକିଧରି ସେମାନେ ହାଲୁଆରେ ନିର୍ମିତ ଗିରିଗୋବର୍ଦ୍ଧନକୁ ବନ୍ଦନା କରିବା ପାଇଁ ନତଜାନୁ ହେଲେ । ଏହାପରେ ଧାଡି ବାନ୍ଧି ଗିରି ଗୋବର୍ଦ୍ଧନ ପରିକ୍ରମା କରିବାକୁ ଲାଗିଲେ । ଏ ଦୃଶ୍ୟ ମତେ ଏପରି ଅଭିଭୂତ କଲା ଯେ ମୋ ଆଖିରୁ ଧାରଧାର ଲୁହ ଅନିୟନ୍ତିତ ଭାବେ ଝରିବାକୁ ଲାଗିଲା । ମନେହେଲା ମୁଁ ଯେମିତି ଆମେରିକାରେ ନାହିଁ– ଅଛି ଗୋକୁଳ ବୃନ୍ଦାବନରେ !

ଏହା ପରେ ଅନ୍ୟ ଏକ ସଂପୂର୍ଣ୍ଣ ଦୁର୍ଲଭ ଦୃଶ୍ୟ ମୋ ପାଇଁ ଦେଖିବାକୁ ଥିଲା– ସେଇଟି ହେଲା ଗୋ-ବନ୍ଦନା । ବାବାଜୀଙ୍କ ନିର୍ଦ୍ଦେଶରେ ଏ ଭିତରେ ଦୁଇଟି ସୁସଜ୍ଜିତ ବାଛୁରୀଙ୍କୁ ଦୁଇ ମହଲା ଉପର ମନ୍ଦିରର ଗର୍ଭଗୃହ ଭିତରକୁ ଅଣାଯାଇଥାଏ । ବାଛୁରୀ ଦୁଇଟିଙ୍କ ଶିଙ୍ଗ ତେଲ ହଳଦି ମଖାଯାଇ ଆଲୁଅରେ ଝଟକୁଥାଏ । ସେମାନଙ୍କ ବେକରେ ଫୁଲର ମୋଟାମୋଟା ଗଜରା ମାଳ ପଡିଥାଏ । ପିଠିକୁ ଆବୃତ କରୁଥାଏ ଲାଲ୍ ପାଟକନାର ଚିତ୍ରିତ ଚାଦର । ଖୁବ୍ ସୁନ୍ଦର ଖୁସୁଣିଆ ଦିଶୁଥାନ୍ତି ପ୍ରାଣୀ ଦୁଇଟି ।

ବୈଭବୀ ଦେବୀ ଆରମ୍ଭକଲେ ଗୋ-ବନ୍ଦନା ପର୍ବ । ସେ ପ୍ରଥମେ ବାଛୁରୀ ଦୁଇଟିଙ୍କୁ ସ୍ନେହରେ ଆଉଁଷି ଆଉଁଷି ସେମାନଙ୍କୁ ମନ୍ଦିରର ପ୍ରସାଦ ଅର୍ପଣ କଲେ– ପରେପରେ ବିଧିବଦ୍ଧ ଭାବେ ଗୋ ବନ୍ଦନା ଆରମ୍ଭହେଲା । ଶଂଖଧ୍ୱନି ଏବଂ ଘଣ୍ଟାଘଣ୍ଟିର ପବିତ୍ର ବାଜଣା ସହିତ ବାଛୁରୀ ଦ୍ୱୟଙ୍କୁ ଧୂପଦୀପ ଦ୍ୱାରା ବନ୍ଦନା ଉତ୍ସବ ଆରମ୍ଭହେଲା । ଦେଖାଗଲା ଏଇ ହିନ୍ଦୁସୁଲଭ ଔପଚାରିକ ପୂଜା ଉପଚାରରେ ଉପସ୍ଥିତ ମର୍ମନ ନାରୀମାନେ ଅତ୍ୟଧିକ ପ୍ରବଣତା ପ୍ରକାଶକରି ପ୍ରତ୍ୟେକେ ନିଜନିଜ ହାତରେ ଦୀପଟିଏ ଲେଖାଏଁ ଧରି ଗୋବନ୍ଦନା

ଉତ୍ସବରେ ମାତିଗଲେ । ଏହିପରି ଶେଷହେଲା ସେଦିନର ଦୀପାବଳି ଉତ୍ସବର ପ୍ରଥମ ସାନ୍ଧ୍ୟ ଅଧିବେଶନ ।

ଏହାପରେ ସାଂସ୍କୃତିକ କାର୍ଯ୍ୟକ୍ରମ । ଡକ୍ଟର ଜୁଲି ରାୟ ପରିବେଷଣ କଲେ ଶିବାଷ୍ଟକ ସହିତ କେତୋଟି ମୀରା ଓ କବିର ଭଜନ । ମୁକ୍ତ ରଙ୍ଗମଞ୍ଚରେ କୁମାରୀ ଜୁଲି ରାୟଙ୍କ ଗୀତ କୃଷ୍ଣ ଗୋବିନ୍ଦ ଛନ୍ଦର ଓଡିଶୀ ନୃତ୍ୟ ଓ ଏକକ ଅଭିନୟ ଶତାଧିକ ଦର୍ଶକଙ୍କୁ ମନ୍ତ୍ରମୁଗ୍ଧ କରି ରଖିଲା ଦୀର୍ଘ ଏକଘଣ୍ଟା । ଲକ୍ଷ୍ୟ କଲି ଦର୍ଶକ ଗହଣରେ ଅଧିକାଂଶ ଥିଲେ ସ୍ଥାନୀୟ ମର୍ମନ ସଂପ୍ରଦାୟର ନାରୀ ପୁରୁଷ ।

ପରେପରେ ପ୍ରସାଦ ସେବନ ପର୍ବ । ଅବିକଳ ପୁରୀ ଜଗନ୍ନାଥ ମନ୍ଦିରର ଅଭଡାବାସ୍ନାରେ ମନ୍ଦିରର ରୋଷଗୃହ ମହକୁ ଥିବା ଅନୁଭବ କରି ରୋମାଞ୍ଚିତ ହେଲି ।

ତେବେ, ପରବର୍ତ୍ତୀ କାର୍ଯ୍ୟକ୍ରମଟି ଥିଲା ଅତିଥିମାନଙ୍କର ସାମୂହିକ ଚିତ୍ତବିନୋଦନ ନିମିତ୍ତ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ– ଦାଣ୍ଡିଆନୃତ୍ୟ ପ୍ରୋଗ୍ରାମ୍ । ଶହଶହ ବୃଦ୍ଧବୃଦ୍ଧା, ଯୁବକ ଯୁବତୀ, କିଶୋର କିଶୋରୀ ସେଇ ଅପୂର୍ବ ଲୋକନୃତ୍ୟକୁ ଯେପରି ଆପ୍ରାଣ ଉପଭୋଗ କରୁଥାନ୍ତି ସେ ଦୃଶ୍ୟ ମୋତେ ଗଭୀର ଭାବେ ପ୍ରଭାବିତ କଲା ।

ବିଦାୟ ନେବା ପୂର୍ବରୁ ମନ୍ଦିରର କର୍ତ୍ତା ବାବାଜୀ ଚାରୁଦାସ ଓ ତାଙ୍କ ବୈଷ୍ଣବୀ ସହଧର୍ମିଣୀଙ୍କ ସହିତ ଆଳାପ ଆଲୋଚନା ସୁଯୋଗରେ ମୁଁ ସେମାନଙ୍କ ଭବିଷ୍ୟତ କାର୍ଯ୍ୟକ୍ରମ ସଂପର୍କରେ ଜାଣିବାକୁ ପଚାରିଲି, "What next?" ବାବାଜୀଙ୍କ କ୍ଲୁପ୍ତ ଉତ୍ତର– "We need to soften up the tempers of the angry-rockys a little more. We need to have the Himalyas right here in our home country" ।

(ଏଇ ପ୍ରାଚୀନ ବୃଦ୍ଧ ରକି ପର୍ବତର ହୃଦୟକୁ ଟିକେ ଅଧିକ ପ୍ରେମାସକ୍ତ କରିବା ଆମର ଲକ୍ଷ୍ୟ । ଆମେ ଚାହୁଁ ଆମ ଜନ୍ମଭୂମିରେ ଅନ୍ୟ ଏକ ହିମାଳୟ ।)

## ପ୍ରକୃତିର ଚରମ ବିସ୍ମୟକର ସ୍ଥାନ ବ୍ରାଇସ୍ କେନିୟନ୍

**(Bryce Canyon National Park)–**

– ତା ୧୫ ନଭେମ୍ବର ୨୦୦୮, ଶନିବାର– ସଲଟ୍‌ଲେକ୍ ସିଟି ।

ସେଦିନ ସକାଳ ଠିକ୍ ସାଢେଦଶରେ ଆମେ ସମସ୍ତେ ଘରୁ ବାହାରି ବସିଲୁ କାର୍‌ରେ । ଆଜି ମୋ ପାଇଁ ଭାଗ୍ୟ ନିର୍ଦ୍ଦିଷ୍ଟ କରିଥିଲା ଏକ ଅତ୍ୟନ୍ତ ଶୁଭଦିନ । ଏତେଥର ଆମେରିକା ବୁଲି ଆସିବା ଭିତରେ ମୁଁ କେତେକେତେ ବିଚିତ୍ର ସ୍ଥାନ ଏ ବିଶାଳ ଆମେରିକା ଭୂଭାଗରେ ନଦେଖିଥିଲି । କିନ୍ତୁ ରକି ପର୍ବତ ଶିଖରରେ ସମୁଦ୍ର ପତ୍ତନର ଦଶହଜାର ଫୁଟ ଉପରେ ଆଜି ଯୋଉ ଅଦ୍ଭୁତ ଦୃଶ୍ୟମୟ ଭୂମି ନିଜ ଆଖିରେ ଦେଖିବାର ସୌଭାଗ୍ୟ ମତେ

ମିଳିପାରିଥିଲା ଏହା କେବଳ ମଣିଷର ଭାଗ୍ୟରେ ଥିଲେ ମିଳେ ବୋଲି ମୋର ତିଳାର୍ଦ୍ଧେ ସନ୍ଦେହ ନାହିଁ । ସେଥିପାଇଁ ମୁଁ ମୋ ଜୋଇଁ ଅଭିଜିତ ଓ ଝିଅ ଜୁଲି– ଏ ଦୁହିଁଙ୍କୁ ଏହାର ଶ୍ରେୟାଂଶ ଅର୍ପଣ କରୁଚି ।

ଯାତ୍ରାରମ୍ଭରୁ ଅଭିଜିତ୍ ତାଙ୍କ କାର୍‌ର ଜିପିଏସ୍ ସିଷ୍ଟମ୍‌ଟାକୁ ପ୍ରଥମେ ସେଟ୍ କଲେ । ଗନ୍ତବ୍ୟସ୍ଥଳର ଠିକଣା ସେଟ୍ କରୁକରୁ କହିଲେ ସେ– ନନା ! ବ୍ରାଇସ୍ କେନିୟନ୍ (Bryce Canyon) ଏଠିକି ଆମ ଘରପାଖରୁ ପ୍ରାୟ ସାଢେ ତିନିଘଣ୍ଟାର ଡ୍ରାଇଭ୍– ଅଢେଇଶହ ମାଇଲ୍ । ୟା'ର ଜିୟୋଗ୍ରାଫିକ୍ ଲୋକେସନ୍ କହିବି ? ଏ ଜାଗାଟା ୟୁଟାଃର ଦକ୍ଷିଣ ପଶ୍ଚିମ ଦିଗରେ ଦଶହଜାର ଫୁଟ୍ ଉଚ୍ଚ ପ୍ଲେଟୋ ଉପରେ । ଲାଟିଚ୍ୟୁଡ୍– ୩୭ ଡିଗ୍ରୀ ନର୍ଥ; ଲଙ୍ଗିଚ୍ୟୁଡ୍ ୧୧୨ ଡିଗ୍ରୀ ୱେଷ୍ଟ..."

କାର୍ ଚାଲିଲା । ଅଭିଜିତ୍‌ଙ୍କ କାର୍‌ରେ ଆମେ ଥାଉ ପାଞ୍ଚଜଣ ପ୍ୟାସେଂଜର୍– ମୁଁ, ନିରୁପମା, ଝିଅ ଜୁଲି, ଆଉ ଦୁଇ ନାତୁଣୀ ଅଙ୍କିତା ଓ ଆନୁ । ଅଭିଜିତ୍ କାର୍ ଡ୍ରାଇଭ୍ କରୁଥାନ୍ତି । ସେ ଆଜି ଆମର ଗାଇଡ୍ । ଆଗରୁ ସାଙ୍ଗ ମେଳରେ ସେ ବ୍ରାଇସ୍ ସମେତ ଏ ଅଞ୍ଚଳର ଅନ୍ୟ କେତେଟା ଜାତୀୟ ଉଦ୍ୟାନ ବୁଲି ଦେଖିସାରିଲେଣି । ତାଙ୍କୁ ବି ସଲଟ୍‌ଲେକ୍ ସିଟି ସମେତ ୟୁଟାଃର ଅନ୍ୟାନ୍ୟ ଦର୍ଶନୀୟ ଜାଗା ମାନଙ୍କୁ ବାଟଘାଟ ଜଣାହେଇଗଲାଣି ।

ସଲଟ୍‌ଲେକ୍ ସହର ଭିତର ଦେଇ କିଛି ବାଟ ଅତିକ୍ରମ କଲା ପରେ ପାରିପାର୍ଶ୍ୱିକ ଦୃଶ୍ୟରେ ଆଖିଦୃଷ୍ଟିଆ ପରିବର୍ତ୍ତନମାନ ଲକ୍ଷ୍ୟକରିହେଲା । ଗଛବୃକ୍ଷର ସାନ୍ଦ୍ରତା କମିବାକୁ ଲାଗିଲା । ପାହାଡଗୁଡାକର ରୂପ ଦିଶିଲା ଅଧିକରୁ ଅଧିକ ଟାଙ୍ଗରା ଆଉ ରୁକ୍ଷ । ଗୋଟାଏ ଗୋଟାଏ ଜାଗାରେ ଚାଲିଥାଏ ଜୋର୍‌ସୋର୍ ପାହାଡ କଟା– ବୁଲ୍‌ଡୋଜର୍, ଆର୍ଥ ମୁଭର୍, ବିଶାଳବିଶାଳ ଆକାରର ଟ୍ରକ୍ ଟ୍ରାକ୍ଟର ଗୁଡାଏ ଲାଗିପଡିଥାନ୍ତି ପଥର ଖୋଳା ଆଉ ପଥର ବୁହାରେ ।

ସେ ଆଡକୁ ଦେଖେଇ ଅଭିଜିତ୍ କହିଲେ, "ନନା ! ଦେଖୁଚନ୍ତି– ଏଇ ଅଂଚଳଟା ସେଇ American Gold Rush ଅଂଚଳ । ଏ ଅଂଚଳ ଗୋଟାକଯାକ ଭର୍ତ୍ତି– ମିନ୍‌ରାଲ୍‌ରେ । ଖଣି ଖାଦାନର ଜାଗା ଏ । ଏଇଟା ଗୋଟାଏ ତମ୍ବା (କପର୍) ଖଣି ଯୋଉଠି କାମ ଚାଲିଚି ବର୍ତ୍ତମାନ । ଆହୁରି ଅନେକ ପ୍ରକାର ମିନ୍‌ରାଲ୍‌ସ୍‌ର ଭଣ୍ଡାର ହେଲା ରକିଜ୍ । ତା' ଭିତରେ ୟୁଟାଃ ଷ୍ଟେଟ୍‌ଟା ନମ୍ବର୍ ୱାନ୍ । ଆମ ଓଡିଶା ଭଳି ୟୁଟାଃ ହେଲା ୟୁଏସ୍‌ଏର ଗୋଟାଏ ମିନ୍‌ରାଲ୍ ରିଚ୍ ଷ୍ଟେଟ୍ ।"

Gold Rush କଥାଟା କାନରେ ବାଜିବାକ୍ଷଣି ମୁଁ ଟିକିଏ ଅନ୍ୟମନସ୍କ ହେଇଗଲି । ଜାଣିଥିଲି ଊନବିଂଶ ଶତାବ୍ଦୀରେ ଆମେରିକାର ଏ ପଶ୍ଚିମାଂଚଳଟା ଥିଲା ଗୋଟାଏ ସଂପୂର୍ଣ୍ଣ ଅନାବିଷ୍କୃତ ଘୋର ବିପଦଜନକ ଆରଣ୍ୟକ ସ୍ଥାନ । ୟାକୁ କୁହାଯାଉଥିଲା Wild West

ଯୋଉଠିକି ବାଟ ମିଳୁନଥିଲା ପୂର୍ବାଞ୍ଚଳର ଉପନିବେଶବାଦୀ ଗୋରା ସାହାବମାନଙ୍କୁ । କିନ୍ତୁ ସେମାନଙ୍କ ପାଖରେ କୌଣସି ସୂତ୍ରରୁ ଖବର ପହଞ୍ଚିଯାଇଥିଲା ଯେ ପୃଥିବୀର ସବୁତକ ସୁନା ଭଗବାନ୍ ପୋତିରଖିଚନ୍ତି ଏଇ ରକି ପାହାଡ ଉପର ବିସ୍ତୀର୍ଣ୍ଣ ଅଂଚଳରେ । ସେଇ ସୁନା ଲୋଭରେ ଆରମ୍ଭ ହେଇଥିଲା ଦୁର୍ଦ୍ଧର୍ଷ ଦୁର୍ଦ୍ଦାନ୍ତ ସୁନାଲୋଭୀଙ୍କ ଆପ୍ରାଣ ପ୍ରୟାସ ଆଉ ସେଇଥିରୁ ସୃଷ୍ଟ ସେ Savage Gold Rush !

ସେଇ ସୁନା ସନ୍ଧାନୀଙ୍କୁ ନେଇ ବହୁବହୁ ଆମେରିକାନ୍ ସାହିତ୍ୟ ସୃଷ୍ଟିହେଇଥିଲା ସେକାଳେ– ବହୁ ବହୁ ସିନେମା ବି । ମନେପଡିଲା ଚାର୍ଲି ଚାପ୍‌ଲିନ୍‌ଙ୍କ ଗୋଟାଏ ସିନେମା– ସେଥିରେ ଚାପ୍‌ଲିନ୍ ଅଭିନୟ କରିଥିଲେ ଜଣେ ଦୁର୍ଦ୍ଧର୍ଷ Gold Hunter ଅମେରିକାନ୍ ଲୋକର କ୍ୟାମ୍ପ ଫଲୋୟର୍ ବା ଭୃତ୍ୟ ଭୂମିକାରେ । ଛବିରେ ଦେଖିବାକୁ ମିଳିଥିଲା ସେତେବେଳର ଜଡବାଦୀ ଆମେରିକାର ନଗ୍ନ ବାସ୍ତବ ରୂପ– ଗୋରାଲୋକଙ୍କ ଅନ୍ତରର ମୂଳସ୍ୱରୂପ ! ସୁନାସନ୍ଧାନୀମାନେ ହିଂସ୍ର ପଶୁ ପରି ଚାରିଆଡେ ଘୂରିବୁଲୁଥାନ୍ତି । କୋଉଠି କାଣିଚାଏ ସେଇ ଅମୂଲ୍ୟ ହଳଦିଆ ରଙ୍ଗର ଦ୍ରବ୍ୟଟା ମିଳିଯିବା ଖବର ପାଇବା ମାତ୍ରେ ଧାଉଁଥାନ୍ତି ସେ ଦିଗରେ । ଚାପ୍‌ଲିନ୍‌ଙ୍କ ଗଳ୍ପର ନାୟକ ସୁନାସନ୍ଧାନୀ ନିଜ ଲୋକବାକ ଧରି ଘୂରିବୁଲୁଥାଏ । କ୍ୟାମ୍ପ ପଡୁଥାଏ ସ୍ଥାନେ ସ୍ଥାନେ । ଆଖିବୁଜା ଚାଲିଥାଏ ମାଟି ଖୋଳା । ଚାରିଆଡେ ଖାଲି ଗାତଖୋଳାରେ ଦିନ ବିତୁଥାଏ, କିନ୍ତୁ ସୁନାର ଦେଖାଦର୍ଶନ ନାହିଁ । ସେଇ ଭିତରେ ପଡିଲା ଖାଦ୍ୟାଭାବ ।

ଦିନେ ଭୃତ୍ୟ ଚାପ୍‌ଲିନ୍‌ଙ୍କର ପଡିଲା ଭାଳେଣି– ଆଜି ମାଲିକକୁ କ'ଣ ରୋଷେଇ କରି ଖାଇବାକୁ ଦେବ ! ମାଲିକ ଭୋକରେ ହାଁହାଁ । ଅର୍ଡର କଲେ ଯଦି କିଛି ନମିଳୁଚି ତେବେ ପୋଷା କୁକୁରଟାକୁ କାଟି ତା'ର ମାଂସ ରାନ୍ଧ । ଚାପ୍‌ଲିନ୍ କ୍ୟାମ୍ପ ଜଗୁଆଳ ପୋଷା କୁକୁରକୁ ମାରି ତା' ମାଂସ ରୋଷେଇକଲେ । ଉଭୟ ମାଲିକ ଓ ଭୃତ୍ୟ ସେଦିନ କୁକୁର ମାଂସ ଖାଇ ଭୋକ ମେଣ୍ଟେଇଲେ ।

ପରଦିନ ଭୃତ୍ୟ ମାଲିକଙ୍କ ଡିନର୍ ପାଇଁ ଆଉ ପ୍ରକାରେ ଚମତ୍କାର ଜିନିଷ ରାନ୍ଧିଲା– ହଳେ ପୁରୁଣା ଚମଡା ଜୋତାର ରୋଷ୍ଟ । ପ୍ରଭୁ ଓ ଭୃତ୍ୟ ଜୋତା ରୋଷ୍ଟ୍ ଚୋବେଇ ଚୋବେଇ ପେଟର ଜ୍ୱାଳା ଉପଶମ କଲେ । ଏହି କ୍ରମରେ ଦିନେ ଦେଖାଗଲା ମାଲିକ ହାତରେ ଗୋଟାଏ ମାଂସକଟା କଟୁରି ଧରି ଭୃତ୍ୟ ଆଡକୁ ଆସୁଚନ୍ତି । ସେତେବେଳେ ଭୃତ୍ୟ (ଚାପଲିନ୍) ଅନ୍ୟମନସ୍କ ଭାବେ କ'ଣ କିଛି କାମରେ ବ୍ୟସ୍ତ ରହିଥାଏ । ମଝିରେ ମଝିରେ ଗୋଟାଏ ବିଚିତ୍ର ଶବ୍ଦ କରୁଥାଏ । ଦୂରକୁ ସେ ଶବ୍ଦ ଶୁଭୁଥାଏ ଅବିକଳ ଗୋଟାଏ ବଣ କୁକୁଡା ବୋବେଇବା ପରି ।

ନିଜ ପଛପଟେ ଜଣେ ଲୋକର ପାଦଚିପା ଚାଲି ବାରିନେଇ ଚାକର ବିଚରା ଚମକିପଡି ଅନେଇଦେଲା ପଛକୁ । ଦେଖିଲା– ଅନ୍ୟ କେହି ନୁହନ୍ତି– ନିଜର ମାଲିକ

ସ୍ୱୟଂ । ବୁଝିବାକୁ ବାକି ରହିଲା ନାଇଁ ଆଜି ବିଚରା ଭୃତ୍ୟଟିର ପରମାୟୁର ଶେଷଦିନ । ପରେ ପରେ ମାଲିକ ଓ ଭୃତ୍ୟ ଭିତରେ ଆରମ୍ଭହେଇଗଲା ଏକ ହାସ୍ୟଉଦ୍ଦୀପକ ମାରାଥନ୍ ରେସ୍ କମ୍ପିଟିସନ୍ ।

ତାହା ଥିଲା ଊନବିଂଶ ଶତାବ୍ଦୀର ଆମେରିକାନ୍ ଉପନିବେଶବାଦୀଙ୍କର ଅମାନୁଷିକ ସର୍ବଗ୍ରାସୀ ଲୋଭ ଉପରେ ଚୂଡାନ୍ତ ଟିପ୍ପଣୀ ଜଣେ ବିଂଶଶତାବ୍ଦୀର ବୁଦ୍ଧିଜୀବୀର । ଭୃତ୍ୟ ଭୂମିକାରେ ଅଭିନୟ କରୁଥିବା ବିଶ୍ୱବିଖ୍ୟାତ ସାଟାୟାରିଷ୍ଟ୍ ଚାର୍ଲି ଚାପ୍‌ଲିନ୍‌ଙ୍କର ସେଇ ବିଦ୍ରୂପାତ୍ମକ ମୁଭି କଥା ପିଲାଙ୍କୁ ଶୁଣାଉ ଶୁଣାଉ ଆମେ ବେଶ୍ କିଛି ବାଟ ଅତିକ୍ରମ କରିସାରିଥାଉ ।

ଏହା ଭିତରେ ରାସ୍ତାକଡର ଦୃଶ୍ୟ ଆହୁରି ଆହୁରି ବଦଳିଚାଲିଥାଏ । ଆମେ ସେତେବେଳକୁ ପ୍ରବେଶ କଲୁଣି ୟୁଟାଃ ରାଜ୍ୟର ଦକ୍ଷିଣ ପଶ୍ଚିମ ଦିଗର ଏକ ଶୁଷ୍କ ମରୁଅଂଚଳରେ । ବାହାରେ ଭୀଷଣ ତେଜିୟାନ୍ ସୂର୍ଯ୍ୟାଲୋକରେ ଚାରିଆଡ ଜଳିଗଲା ଭଳି ଦିଶୁଥାଏ । ତାପମାତ୍ରା ନିଶ୍ଚୟ ବହୁତ ବେଶୀ– ଆମ ଭାରତବର୍ଷର ମେ ଜୁନ୍ ମାସ ଖରା ପରି ।

ଗାଡି ଭିତରେ ଚାଲୁଥିବା ଏ.ସି. ଯଥେଷ୍ଟ ମନେହେଉନଥାଏ । ମୁଁ ମୋ ଜାକେଟ୍‌ଟାକୁ ଦେହରୁ ଉତାରିପକେଇଲି । ମନେ ମନେ ଭାବିଲି– ବୋଧହୁଏ ଆମର ଗନ୍ତବ୍ୟସ୍ଥଳ ବ୍ରାଇସ୍ କେନିୟନ୍‌ଟା ଗୋଟାଏ ଭୀଷଣ ଗରମ ମରୁ ଅଂଚଳ ହେଇଥିବ । ସେ ମରୁଭୂମିରେ କ'ଣ ଏମିତି ଦେଖିବାକୁ ଅଛି ଯେ ଅଭିଜିତ୍ ଓ ଜୁଲି ସେ ଜାଗାଟା ଆମକୁ ଦେଖେଇବାକୁ ନଉଚନ୍ତି ?

ଅଭିଜିତ୍ କାର୍ ରେଡିଓ ଅନ୍ କଲେ । ଶୁଣାଗଲା– ବ୍ରାଇସ୍ କେନିୟନ୍‌ରେ ବର୍ତ୍ତମାନ ପାଗ ଭଲ ଅଛି । କିନ୍ତୁ ଗଲା ସପ୍ତାହରେ ସେ ଅଂଚଳରେ ହେଇଯାଇଚି ବଡ ଧରଣର ତୁଷାରପାତ । ରାସ୍ତାରୁ ବରଫ ସଫେଇ କାମ ସରିଯାଇଚି । କିନ୍ତୁ ସ୍ଥାନେସ୍ଥାନେ ରାସ୍ତା ଉପରେ ଆଇସ୍ ସ୍ଲିଟ୍ ଜମି ରହିଚି । ଟୁରିଷ୍ଟମାନଙ୍କୁ ସାବଧାନ କରିଦିଆଯାଉଚି ସ୍ଲିଟ୍ ଉପରେ ଅସାବଧାନରେ ଗାଡି ଚଳେଇବା ବା ଧାଇଁବା ବିପଦଜନକ ।

ଅଭିଜିତ୍ ରେଡିଓ ବନ୍ଦକରି ଆମକୁ ସତର୍କ କରିଦେବାକୁ କହିଲେ, "ଆମେ ଟିକିଏ ଡେରିକରିଦେଲେ । ବ୍ରାଇସ୍ କେନିୟନ୍‌ରେ ବରଫ ପଡିଯାଏ ସେପ୍ଟେମ୍ବର ଶେଷସୁଦ୍ଧା । ଏବେ ତ ନଭେମ୍ବର ! ପାର୍କରେ ବରଫ ଜମାହେଇଥିବ । ଆପଣମାନେ ସେ ଥଣ୍ଡା ସହି ପାରିବେ ନାହିଁ । ଆପଣମାନଙ୍କ ପାଇଁ ଉ୍ଇଣ୍ଟର୍ ଜ୍ୟାକେଟ୍ ଓ ଜୋତା ଅଣାହେଇଚି– ସେସବୁ ପିନ୍ଧିନେବେ ଗାଡିରୁ ବାହାରିବା ମାତ୍ରେ, ନହେଲେ ଥଣ୍ଡା ଧରିନବ. . ."

ସେ ସତର୍କବାଣୀ ଶୁଣି କହିଲି– "ଯାହାହେଉ ଏ ବର୍ଷ ଆମର ଆମେରିକା ବୁଲାଟା ସାର୍ଥକ ହେଲା । ଏଥର ଆମେରିକା ଭ୍ରମଣର ଗୋଟିଏ ବଡ ଉଦ୍ଦେଶ୍ୟ ଥିଲା ମୋର ବରଫ ପଡିବା ଦୃଶ୍ୟ ଦେଖିବା– ସେଥିପାଇଁ ଆମ ଆମେରିକା ରହଣିର ସମୟ ସୀମାକୁ

ବଢ଼େଇଥିଲି ଡିସେମ୍ବର ଯାକେ । ନହେଲେ ପାଞ୍ଚପାଞ୍ଚଥର ଆମେରିକା ଆସି ବରଫ ନଦେଖି ଭାରତ ଫେରିବାଟା ଆମେରିକା ବୁଲାକୁ ପାଣିଚିଆ କରିଦେଇଥାନ୍ତା ବୋଲି ଜାଣ ।"

"କିନ୍ତୁ ଆମେ ତ ବରଫ ଭୋଗିସାରିଲେଣି''– ମନେପକେଇଦେଲେ ନିରୁପମା, "ଗଲା ସପ୍ତାହରେ ପରା ବରଫ ପଡିଥିଲା ସଲଟ୍‌ଲେକ୍‌ସିଟିରେ ? ଆମେ ଯାଇନଥିଲେ ସେଦିନ ପାର୍କକୁ ବରଫରେ ବୁଲିବାକୁ ?''

ଯା' ଭିତରେ ସତରେ ଥରେ ବଡଧରଣର ତୁଷାରପାତ ହେଇଯାଇଥାଏ ସଲ୍‌ଟ୍‌ଲେକ୍ ସିଟିରେ । ସେଦିନ ଘର ଝରକା ପଛ ପାଖେ ବସି ସେ ଅଦ୍ଭୁତ ଦୃଶ୍ୟ ଦେଖିଲି ପ୍ରଥମକରି । ରାତି ପାହାନ୍ତାରୁ ବରଫ ପଡିବା ଆରମ୍ଭ ହେଇଥାଏ । ଝିଅ ଜୁଲିମା ମତେ ନିଦରୁ ଉଠେଇଦେଇ କହିଲା– ନନା ! ବରଫ କେମିତି ପଡେ ଦେଖିବ ପରା– ଝରକା ଆରପାଖକୁ ଚାହଁ ।

ମୁଁ ଚଞ୍ଚଳ ଉଠି ବସିଲି । ନିଦ ମଳମଳ ଆଖିରେ ଝରକା କାଚ ସେ ପାଖକୁ ଚାହିଁ ଦେଖିଲି– ଝରକା କାଚ ଉପରେ ତୁଳାଭଳି ବରଫଖଣ୍ଡ ମାନ ମେଞ୍ଚାମେଞ୍ଚାହେଇ ଲାଖି ଅଦ୍ଭୁତ ଜ୍ୟାମିତିକ ଚିତ୍ରର ଆକୃତି (snow crystal lattices) ଧରିନେଇସାରିଲାଣି । ସେ ଜ୍ୟାମିତିକ ଚିତ୍ର ସବୁ ଦିଶୁଥାଏ ଧଳା ଧଳା ଫୁଲ ମାଳମାଳ ହେଇ ଫୁଟି ଥିଲା ପରି । କିଛି ସମୟ ସେଇ ଦିବ୍ୟ-ସ୍ୱଚ୍ଛ ବରଫ ଫୁଲଗୁଡିକୁ ନିରୀକ୍ଷଣ କରିବା ପରେ ରାତିପାହାନ୍ତାର ମେଘୁଆ ଆକାଶ ଆଡକୁ ଆଖି ପକେଇଲି । ଇସ୍ ! ଆକାଶରୁ ସତେକି ଟିକିଟିକି ତାରା ସବୁ ଝରିପଡୁଥାନ୍ତି ! ସେଇ ମାଳମାଳ ତାରା ଏକାଠିହେଇ ପବନରେ ଭାସିଭାସି ବୁଲୁଥାନ୍ତି– ଶିମିଳି ତୁଳା ଉଡିଲା ପରି । ସେଇ ତୁଳାପରି ବର୍ଷୁଥିବା ବରଫ ଛେଦା ଗୁଡ଼ିକ ଭାସିଭାସି ତଳର ସମସ୍ତ ବଡ ଛୋଟ ଗଛଗୁଡାକର ଡାଳପତ୍ରରେ ଓ ଭୂଇଁ ଉପରେ ସବୁଜ ଲଅନ୍‌ର ଘାସ ଉପରେ ଜମିବାରେ ଲାଗିଥାଏ । ଗଛଗୁଡାକର ଡାଳ ନଇଁପଡିଲାଣି ବରଫ ଭାରରେ । ସକାଳ ହେବାମାତ୍ରେ ଉଦିତ ସୂର୍ଯ୍ୟର ସୁନେଲି କିରଣରେ ଗଛଗୁଡିକ ମଣିମୁକ୍ତାରେ ମଣ୍ଡିତା ଅବଗୁଣ୍ଠିତା ନାରୀମୂର୍ତ୍ତି ପରି ଝଟକିବା ଆରମ୍ଭ କଲେଣି । ଶେଯରୁ ଉଠି ବସିଲି । ଝିଅକୁ କହିଲି– ମୁଁ ଚାଲିଲି ପାର୍କକୁ । ଆଜି ଯେକୌଣସି ମତେ ମୁଁ ଫୁଙ୍ଗୁଳା ଦିହରେ ଜଗିଂ ଟ୍ରାକ୍‌ରେ ଥରେ ଦଉଡିବି– ଦେଖିବା ମୋର କ'ଣ ହବ– ମୁଁ ଚାଲିଲି । – କହି କବାଟ ଖୋଲି ଘରୁ ପଦାକୁ ମୁହଁ କାଢିବାମାତ୍ରେ ଗୋଟାଏ ଜୋର୍ ଚଟକଣା ଗାଲରେ ବାଜିଲା ଭଳି ତଟସ୍ଥ ହେଇଗଲି । ଇସ୍ ! କି ଭୟଙ୍କର ଥଣ୍ଡା । ମୋ ଦେହ ମୁହଁ ସେ ଥଣ୍ଡାରେ 'ଜଳିଗଲା' ସତେକି । ଧଡ୍‌କିନା କବାଟ ଆଉଜେଇଦେଇ ମୁଁ ଆଗ ଦମେ ଜୋର୍ ନିଃଶ୍ୱାସ ମାରିଲି ।

ପଛରେ ପିଲାମାନେ ଠିଆହେଇଥାନ୍ତି । ମୋ ଅବସ୍ଥା ଦେଖି ନାତୁଣୀଦୁହେଁ ହସି ହସି ଗଡିଗଲେ । କହିଲେ– ଅଜା ! ଦେଖିଲଟି ? ଏଇ ଥଣ୍ଡାରେ ଆମେ ଏଇଲେ ଯିବୁ

ସ୍କୁଲ୍‌କୁ । ତୁମେ ବରଫ ଭୋଗିନଥିଲ ତ– ଏ ହେଲା ତୁମର ପ୍ରଥମ ଲେସନ୍ ଆମେରିକାନ୍ ଓ୍ୱିଣ୍ଟର୍ ସାଙ୍ଗେ । ଏମିତି ହେଇଥିଲା ଆମ ଅବସ୍ଥା ପ୍ରଥମେ ଆମେ ଦିଲ୍ଲୀ ଛାଡି ଏ ଦେଶକୁ ଆସିବା ପରେ । ବରଫକୁ ଡରନାହିଁ । ଭାରି ମଜା ବରଫରେ ଚାଲିବା ।

ସେଦିନ ରାସ୍ତାରେ ଗାଡି ମଟର ଯାତାୟାତ ବନ୍ଦହେଇଗଲା ଅନେକ ବେଳ ଯାଏ । ପରେ ଗୋଟାଏ ବରଫ ସଫେଇ ଗାଡି ଆସିଲା । ରାସ୍ତାରେ ଜମିଯାଇଥିବା ବରଫଗୁଡାକ ଉପରେ ଛିଞ୍ଚା ହେଲା ଲୁଣ । ପରେ ବରଫକୁ ସ୍ନୋ-ବ୍ଲୋୟର୍‌ରେ ରାସ୍ତାରୁ ହଟେଇଦିଆଗଲା । ବରଫ ଗୁଡ଼ାକ କୁଢ କୁଢ ହେଇ ଜମିଲା ରାସ୍ତା ଦି'କଡେ । ଭାବିଲି ବରଫଗୁଡାକ କିଛି ସମୟ ପରେ ଆପେ ଆପେ ପାଣି ହେଇ ବୋହିଯିବ । କିନ୍ତୁ ନା– ସେ ବରଫ ସେମିତି ଜମିରହିଲା ଅନେକ ଦିନ । ଶୀତଋତୁ ଆରମ୍ଭ ହେଇଥିଲା ଏଇ ଭାବେ ସେଦିନ ଆମ ପାଇଁ ।

ଅଭିଜିତ୍‌ଙ୍କ ଫ୍ଲାଟ୍ (4393, Inverary Drive) ସାମ୍ନାରେ ଥାଏ ଗୋଟାଏ ବିରାଟ ପାର୍କ । ତା' ନାମ ବିଗ୍ କଟନ୍ ଉଡ୍ ପାର୍କ (Big Cotton Wood Park) । ଏ ପାର୍କଟା ଏଡେ ବଡ ଯେ ତା ଭିତରେ ମାଇଲ୍‌ମାଇଲ୍ ଲମ୍ବା ଜଗିଂଟ୍ରାକ୍‌ରେ ଘଣ୍ଟାଘଣ୍ଟା ଚାଲିଲେ ବି ବାଟ ସରେ ନାଇଁ । ଏଇ ପାର୍କରେ ମୁଁ ଆଉ ନିରୁପମା ଏଠିକି ଆସିବା ଦିନୁ ପ୍ରତିଦିନ ସକାଳେ ସଂଜରେ ଦୁଇଓଳି ବୁଲିବାକୁ ଯାଉଥିଲୁ । ସେପ୍ଟେମ୍ବର ମାସ ପ୍ରଥମ ସପ୍ତାହରେ ଆମେ ଏଠି ପହଞ୍ଚିବା ସମୟରେ ପାଗ ଥାଏ ଅତି ମନୋରମ । ପାର୍କର ଲଅନରେ ବିସ୍ତୃତ ଘାସପଡିଆ । ସବୁଆଡ ସବୁଜିମାରେ ଭରପୂର । ପାର୍କ ଭିତରେ ଗୁଡିଏ ଆପ୍ଲ ଗଛରେ ଲାଲ୍‌ଲାଲ୍ ପାଚିଲା ଦରପାଚିଲା ଆପ୍ଲ ଭର୍ତ୍ତିହେଇଥାଏ । ଠାଏଠାଏ ବଡବଡ ଡେଙ୍ଗା ପାଇନ ଓକ୍‌ଗଛର ତୋଟା । ତୋଟା ଭିତରେ ପିକ୍‌ନିକ ପାଇଁ ଚୁଲି ଓ ଜଳ ଯୋଗାଣ ବ୍ୟବସ୍ଥା କରାଯାଇଥାଏ । ବଡବଡ ପାଇନ୍ ଗଡ ଗୁଡାକୁ ଚିରିଦେଇ ସେ ପଟାରେ ଟେବୁଲ୍ ବେଞ୍ଚ କରାଯାଇଥାଏ– ଲଞ୍ଚ ଡିନର୍ ପାଇଁ । ପାର୍କରେ ଠାଏ ଗୋଟାଏ ବଡ ବେସ୍‌ବଲ୍ କୋର୍ଟ– ତା'ଛଡା ଇନ୍‌ଡୋର୍ ଷ୍ଟାଡିୟମ୍ । ପାର୍କ ବାହାରେ ବିଶାଳ ପାର୍କିଂଲଟ୍‌ରେ ଶହଶହ କାର୍ ଲାଗେ ବେସ୍‌ବଲ୍ ମ୍ୟାଚ୍ ଦିନମାନଙ୍କରେ । ଆମେ ସେ ପାର୍କରେ ଗ୍ରୀଷ୍ମ ଆଉ ଶରତ (ଫଲ୍)ର ଦୃଶ୍ୟ ପ୍ରାଣ ଭରି ଉପଭୋଗ କରିସାରିଥାଉ ସେପ୍ଟେମ୍ବର୍‌ରୁ ନଭେମ୍ବର ଭିତରେ । ବର୍ତ୍ତମାନ ଆସିଲା ଶୀତଋତୁ । ଏ ଋତୁ ବି ସେମିତି ଉପଭୋଗ କରିବାକୁ ମୁଁ ଉନ୍ମୁଖ ହେଇ ରହିଥିଲି ଏତେ ଦିନ ।

ସେଦିନ ଥିଲା ବରଫ ଉପରେ ଦୀର୍ଘପଥ ଚାଲିବାର ପ୍ରଥମ ସୁଯୋଗ । ବାହାରିଲି ବୁଲିବାକୁ ପାର୍କରେ । ମୋ ଜିଦି ଦେଖି ନିରୁପମା ବି ବାହାରିଲେ ମୋ ସାଙ୍ଗେ । ୟୁଟାଃରେ ପହଞ୍ଚିବା ପରେ ମୋର ରକ୍ତଚାପ କାହିଁକି କେଜାଣି ହଠାତ୍ ଖୁବ୍ ବେଶୀ ଏପଟ ସେପଟ ହେବା ଦେଖାଗଲା । ଡାକ୍ତର କହୁଥାନ୍ତି high altitude syndrome । ସଲ୍‌ଟ୍‌ଲେକ୍

ସିଟିର ଅଲଟିଚ୍ୟୁଡ୍ ଆଠହଜାର ଫୁଟ୍– ତେଣୁ ବାୟୁମଣ୍ଡଳରେ ଅକ୍ସିଜେନ୍ କମ୍ । ଏ ହାଇ ଅଲ୍‌ଟିଚ୍ୟୁଡ୍‌ରେ କେତେ ଲୋକଙ୍କର ଏମିତି ହୁଏ ରକ୍ତଚାପ ବୃଦ୍ଧି– ବୋଧହୁଏ ମୋର ବି ସେଇଆ ହେଇଥାଇପାରେ । ଏଠି ବେଶୀ ପରିଶ୍ରମ କରି ଦଉଡାଦୌଡ଼ି ନକରିବାକୁ ମତେ କୁହାଯାଇଥାଏ । ତଥାପି ମୁଁ ଦୁଇଓଳି ପାର୍କରେ ପ୍ରାୟ ପଞ୍ଚଚାଳିଶ ମିନିଟ୍ ଜଗିଂ କରେ । ଖରାଦିନତକ ବଡ ମଜାରେ କଟିଗଲା । କିନ୍ତୁ ବରଫ ପଡିଯିବା ପରେ ମୋର ଚଲାବୁଲାରେ କାଳେ ବାଧା ଉପୁଜିବ ସେଇ ଆଶଙ୍କା ଥାଏ ମନରେ । ତଥାପି ସେଦିନ ସକାଳେ ବରଫ ଉପରେ ଚାଲିବାର ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନର ଲୋଭ ସଂବରଣ କରିନପାରି ବାହାରିପଡିଲି । ମୋ ଜିଦି ଦେଖି ନିରୁପମା ଓ ଜୁଲି ବାହାରିଲେ ମୋ ସାଙ୍ଗେ । ଝିଅ ଆମ ଦୁହିଁଙ୍କୁ ଯୋଡାଏ ମୋଟାମୋଟା ଓଭର୍ କୋଟ୍, ଟୋପି, ଆଉ ବରଫଜୋତା ପିନ୍ଧେଇଦେଲା । ନିଜେ ମଧ୍ୟ ତା ଶୀତପୋଷାକ ପିନ୍ଧି ବାହାରିପଡିଲା । ଆମେ କବାଟ ଖୋଲି ବାହାରିଲୁ ବାହାରକୁ । ଏଥର ଶୀତ ପୋଷାକ ପିନ୍ଧି ଘରର ନିରାପଦ ଉଷୁମ ବାତାବରଣରୁ ବାହାରିପଡିବା ପରେ ଶୀତରତୁର ଚାପଡା ବାଜିଲା ନାଇଁ ଗାଲରେ, ବରଂ ଗୋଟାଏ ଅଦ୍ଭୁତ ରୋମାଞ୍ଚକର ଆଡ୍‌ଭେଞ୍ଚରରେ ବାହାରିଲା ଭଳି ଅନୁଭବ ହେଲା । ମନେପଡିଲା ଋଷିଆନ୍ ଉପନ୍ୟାସ ଗୁଡିକରେ ବରଫକୁ ନେଇ ବର୍ଣ୍ଣିତ ଦୃଶ୍ୟ ସବୁ । ପୁସ୍କିନ୍, ଟଲ୍‌ଷ୍ଟୟ, ଡଷ୍ଟୋଭସ୍କି, ଗର୍କିଙ୍କ ସମେତ ନୋବେଲ୍ ପୁରସ୍କାର ବିଜୟୀ ଲେଖକ ପାଷ୍ଟରନାକ୍‌ଙ୍କ ଡକ୍ଟର ଜିଭାଗୋ ଉପନ୍ୟାସରେ ବର୍ଣ୍ଣିତ ଶୀତରତୁର ତୁଷାରପାତର ସେଇ ରୋମାଞ୍ଚକର ଦୃଶ୍ୟସବୁ ହୋଇଥାଏ ମୋର ପ୍ରେରଣାର ଉତ୍ସ । ଝିଅ ଜୁଲି କହିଲା– ଚାଲ ଯିବା ପାର୍କଆଡେ । ଘର ସାମନାରେ ତ 'ବିଗ୍ କଟନ୍ ଉଡ୍' ପାର୍କ । ରାସ୍ତା ଟପି ଗେଟ୍ ପାଖରେ ପହଞ୍ଚି ଦେଖିଲି– ସାମନାରେ କ୍ଷୀର ସମୁଦ୍ର! ଯୁଆଡେ ଅନେଇଲେ କେବଳ ସେଇ ଧଳାଚଦର । ପାର୍କଟା ସଂପୂର୍ଣ୍ଣ ଅଦୃଶ୍ୟ । ତା' ଭିତରେ କେବଳ ଦେଖାପଡୁଥାଏ ସାପଭଳି କୁଞ୍ଚେଇ କୁଞ୍ଚେଇ ଏମୁଣ୍ଡ ସେମୁଣ୍ଡ ଲମ୍ବିଯାଇଥିବା ଗୋଟାଏ କ'ଣ ! ସେଇଟା ହେଲା ଜଗିଂ ଟ୍ରାକ୍ ।

– ଜୁଲି କହିଲା, "ନନା ! ଏଇ ଟ୍ରାକ୍‌ରେ ଅଳ୍ପ ବାଟ ଯାଇ ଫେରିଆସିବା ଚାଲ ।"

ଡରିଡରି କୁନ୍ଥୁକୁନ୍ଥୁ ହେଇ ଆମେ ଶେଷରେ ଟ୍ରାକ୍‌କୁ ପାଦ ବଢେଇଲୁ । ସେତେବେଳ ପର୍ଯ୍ୟନ୍ତ ମୁଁ ପୂରା ଦମ୍‌ରେ ନିଶ୍ୱାସ ମାରୁନଥାଏ । ଥଣ୍ଡାରେ ନାକ ଭିତରଟା ପୋଡିଗଲା ଭଳି ଲାଗୁଥାଏ । କିଛି ପାହୁଣ୍ଡ ପକାଇ ଜଗିଂ ଟ୍ରାକ୍‌ରେ ଆଗେଇବା ମାତ୍ରେ ଶ୍ୱାସ ପ୍ରଶ୍ୱାସର ମାତ୍ରା ବଦଳିଗଲା । ପ୍ରଥମ ଦମକାଏ ନିଃଶ୍ୱାସ ବଡକରି ନେବାମାତ୍ରେ ମତେ ଲାଗିଲା ଯେପରି ମୋ ଶ୍ୱାସନଳୀରେ ଗୋଟାଏ ଧାରୁଆ ଛୁରୀ ଚର୍‌କରି କିଏ ଚଳେଇଦେଲା ! ଏତେ କଷ୍ଟ ହେଲା– ଭାବିଲି ଥାଉ– ଏଥର ଫେରିଯିବା ଉଚିତ୍, ନହେଲେ ବୋଧହୁଏ ନିମୋନିଆ ହେଇଯିବ । କିନ୍ତୁ ନାଁ, ବରଫକୁ ଡରି ଭୀରୁପରି ପଳେଇବା ବଦଳରେ ସବୁ

କଷ୍ଟକୁ ସହିଯାଇ ଦୁଇଚାରିଟା ଲମ୍ବାଲମ୍ବା ନିଶ୍ୱାସ ନେଲି । ଆଶ୍ଚର୍ଯ୍ୟ କଥା– ଶ୍ୱାସନଳୀରେ ଥଣ୍ଡା ପବନର ଯା'ଆସ କାହିଁକି କେଜାଣି ସେତେ କଷ୍ଟଦାୟକ ଆଉ ମନେହେଲାନାହିଁ– ବରଂ ବେଶ୍ ଆରାମ ଲାଗିଲା । ମନେହେଲା ଯେମିତି କଣ୍ଠନଳୀରେ ପିପରମେଣ୍ଟ ମିଶା ଗ୍ୟାସ୍ ଚଳ-ପ୍ରଚଳ ହବା ଆରମ୍ଭହଉଚି । ନିରୁପମା ବି ସେଇଭଳି ଉଶ୍ୱାସ ଅନୁଭବ କଲେ । ଆମେ ତିନିଜଣ ସେଦିନ ବେଶ୍ କିଛି ବାଟ ବରଫ ଭିତରେ ବୁଲିଲୁ ।

ସେଦିନ ପାର୍କରୁ ଫେରି ଆବିଷ୍କାର କଲି ମୋର ସ୍ୱର ଅଦ୍ଭୁତ ଭାବେ ପରିଷ୍କାର ଶୁଭିବାକୁ ଆରମ୍ଭ କରିଚି । ଦୀର୍ଘଦିନ ଧରି ମୋର କଣ୍ଠସ୍ୱର ପ୍ରାୟ ହଜିଯାଇଥିଲା । କଥା କହିଲେ ଶୁଭୁଥିଲା ଗର୍ଦ୍ଦଭ ସ୍ୱର ପରି ଅଶ୍ରାବ୍ୟ । କିନ୍ତୁ ପାର୍କରୁ ଫେରିବା ପରେ ସେଇ ବିକୃତ ସ୍ୱରଟା ହଠାତ୍ ଶୁଣାଗଲା ମୋ' କିଶୋର ବୟସର ସ୍ୱରପରି ଅତ୍ୟନ୍ତ ମଧୁର ସୁରେଲି ! ଆଶ୍ଚର୍ଯ୍ୟ ହେଲି– ମୋର ପୂର୍ବର ମ୍ୟୁଜିକାଲ୍ ଭଏସ୍‌ଟାକୁ ମତେ ଏମିତି ଅଚାନକ କିଏ କେମିତି କାହିଁକି ଓ୍ୱାପସ କରିଦେଲା !

କହିରଖେ, ପିଲାଦିନୁ କିଛି ବୟସ ପର୍ଯ୍ୟନ୍ତ ମୁଁ ଚମକ୍ରାର ସ୍ୱରରେ ଗୀତ ବୋଲି ପାରୁଥିଲି । କଲେଜରେ ପଢିଲାବେଳେ ମହମଦ ରଫିଙ୍କ ସ୍ୱରକୁ ସଂପୂର୍ଣ୍ଣରୂପେ ଉତାରି ଦେଇ ପାରୁଥିଲି ମୋ କଣ୍ଠରେ । ସାଙ୍ଗମାନଙ୍କ ଆଗରେ ଆମ ସମୟର ପ୍ରସିଦ୍ଧ ହିନ୍ଦି ସିନେମା ବୈଜୁ ବାଓ୍ୱାରାର ସବୁତକ କ୍ଲାସିକାଲ୍ ସଂଗୀତ ଗାଇ ସେମାନଙ୍କୁ ଆପ୍ୟାୟିତ କରୁଥିଲି । କିନ୍ତୁ ହାୟ ! ମୋର ସେ ଗୀତଗାଇବା ଗଳାଟା କୁଆଡେ଼ ଚାଲିଯାଇଥିଲା ଗତ କେତେ ବର୍ଷ ଧରି– ଫାରିଂଜାଇଟିସ୍ ରୋଗରେ କିଛି ବର୍ଷ ଆକ୍ରାନ୍ତ ହେବା ପରେ । କିନ୍ତୁ ସେଦିନ ସନ୍ଧ୍ୟାରେ, ବରଫ ଉପରେ ଅଧଘଣ୍ଟାଏ ଚାଲି ଘରକୁ ଫେରିବା ପରେ ଅନୁଭବ କଲି ମୋର ସେ ପୂର୍ବ ସ୍ୱରଟା ପୁଣି ଫେରିଆସିଚି ! ହୁଏତ ବରଫ-ଶୀତଳ ଥଣ୍ଡା ବାୟୁ ଗୋଟାଏ ସୂକ୍ଷ୍ମ ସର୍ଜିକାଲ ସ୍କାଲପେଲ ପରି ମୋ ଗଳାର ଫାରିଂଜାଇଟିସ୍ ରୋଗଗ୍ରସ୍ତ ବଧିର ଟିସୁଗୁଡାକୁ କାଟି ସଫାକରିଦେଲା– ଆଉ ମୁଁ ମୋର ସ୍ୱାଭାବିକ କଣ୍ଠସ୍ୱର ପୁଣି ଫେରିପାଇଥିଲି ।

## ବ୍ରାଇସ୍ କେନିୟନ୍‌ର ପ୍ରବେଶଦ୍ୱାର–

ଏ ଭିତରେ କେତେ ଘଣ୍ଟା ବିତିଯାଇଥାଏ । ଗାଡିର ବେଗ କମିଯିବାରୁ ଧ୍ୟାନ ଭାଙ୍ଗିଗଲା । କିଛି ସମୟ ପରେ ବାଟପାଖ ଏକ ଖୋଲାଜାଗାରେ ଆମ କାର୍ ଅଟକିଲା ।

ଅଭିଜିତ୍‌ଙ୍କ ସ୍ୱର କାନରେ ବାଜିଲା, "ଏଇଠୁ ଆରମ୍ଭ ହେଲା ଆମର ଆଜିର ଟୁର୍ ପ୍ରୋଗାମ୍– ଏ ଜାଗାଟାକୁ କହନ୍ତି ବ୍ରାଇସ୍ କେନିୟନ୍‌ର ପ୍ରବେଶଦ୍ୱାର'' (Bryce Entrance) । ଏଇଠୁ କେନିୟନ୍ ଫର୍ମେସନ୍‌ର ଦୃଶ୍ୟ ଦେଖିପାରିବେ ଆପଣ ।''

ଓ୍ୱାଚ୍‌କୁ ଦେଖିଲି– ସମୟ ଦିନ ଦୁଇଟା । ଘର୍ ଛାଡିବାର ଠିକ୍ ସାଢେତିନିଘଣ୍ଟା

ପରେ ଆମେ ପହଞ୍ଚିଥିଲୁ ବ୍ରାଇସ୍ କେନିୟନ୍‌ର ପ୍ରଥମ ପ୍ରବେଶଦ୍ୱାରରେ । ଏତେ ସମୟ ଏକାଖଂଜରେ ନିଜନିଜ ସିଟ୍‌ରେ କାର୍‌ରେ ବସିବା ଯୋଗୁ ମୋ ଅଣ୍ଟା ଟିକେ ଲାଗିଯାଇଥାଏ । ନିଜକୁ କାର୍ ବେଲ୍ଟର ନାଗପାଶରୁ ମୁକ୍ତ କରିବାକୁ ଟିକିଏ ସମୟ ଦରକାର ପଡୁଥାଏ ମୋର । ଅନ୍ୟମାନେ ଯେ ଯାହା ଖଂଜରେ ଗାଡିରୁ ଓହ୍ଲେଇ ରାସ୍ତାକଡରେ ଠିଆହେଇ ଅଳସ ଭାଙ୍ଗିବା ଆରମ୍ଭ କରୁଥାନ୍ତି ।

ଗାଡିରୁ ଓହ୍ଲାଇ ରାସ୍ତାକଡକୁ ଚାହିଁଦେବା ମାତ୍ରେ ମୁଁ କିନ୍ତୁ ସ୍ତବ୍ଧ ହେଇଗଲି– ଓଃ, ସେ କି ଅଦ୍ଭୁତ ଦୃଶ୍ୟ ! ଦେଖିଲି ରାସ୍ତାର ଗୋଟାଏ ପାଖେ, ଅଳ୍ପ ଦୂରରେ ଅବିକଳ ଦିଲ୍ଲୀର ଲାଲ୍‌କିଲ୍ଲା ଦୁର୍ଗ ପରି ଲାଲ୍ ପଥରରେ ଗୋଟାଏ ବିରାଟ ଦୁର୍ଗର କାନ୍ଥ ! କାନ୍ଥ ଉପରେ ଖୋଦେଇ ହେଇଚି ନାନା ଆକୃତିର ରୂପ ଓ ରୂପକମାନ– ଅବିକଳ "Baroque" ଷ୍ଟାଇଲ୍‌ରେ ! ଦୁର୍ଗଟାର କାନ୍ଥ କିଛି କମ୍ ବାଟ ଯାକେ ଲମ୍ବିନଥାଏ– ମନେ ହେଉଥାଏ ସତେକି ଏ ଅଂଚଳଟାଯାକ ପୂରାକୁ ବେଢେଇରଖିଚି ଦୁର୍ଗର ସେଇ ଗେରୁଆ ପଥର ରଙ୍ଗର ଉଚ୍ଚ ପାଚେରି ।

କାନ୍ଥ ଉପରକୁ ଚାହିଁ ଚମକିପଡିଲି । ସେଠି କାନ୍ଥ ଉପରେ ଧାଡିଧାଡି ହେଇ ଅସ୍ତ୍ରଶସ୍ତ୍ର ଧରି ଜଗିରହିଛନ୍ତି ଦ୍ୱାରପାଳମାନେ । ସେମାନଙ୍କର ରୂପ କିନ୍ତୁ ଅଦ୍ଭୁତ– ମଣିଷ ଭଳି ଦିଶିଲେ ବି ମଣିଷ ନୁହନ୍ତି– ସତେକି କୋଉ ଯକ୍ଷ ବା ଗନ୍ଧର୍ବଲୋକରୁ ଓହ୍ଲାଇପଡିଚନ୍ତି ଯକ୍ଷ ଗନ୍ଧର୍ବ ବା Alien ମାନେ । ସେଇ ଅତିମାନବମାନଙ୍କର ଉପସ୍ଥିତିହିଁ ସୂଚେଇଦଉଥାଏ ଯେ ଆମେ ଏକ ଭିନ୍ନଲୋକକୁ ବର୍ତ୍ତମାନ ପ୍ରବେଶ କରିବାକୁ ଯାଉଚୁ ।

– "ଏମାନଙ୍କୁ କୁହାଯାଏ ହୁଡୁଜ (Hoodoos) ।"

– "Hoodoos?"– ମୁଁ ବୁଝିପାରିଲି ନାହିଁ ତାଙ୍କ ଭାଷା ।

"ହଁ ହୁଡୁଜ ! ଏଗୁଡାକ ମଣିଷ ହାତଗଢା ନୁହନ୍ତି– ସଂପୂର୍ଣ୍ଣ ଭୂତାତ୍ତ୍ୱିକ– ମାନେ Geological Formations ! ବୟସ ଲକ୍ଷାଧିକ ବର୍ଷ ! ପୁଣି ଏଗୁଡାକ ପଥରର ସ୍ୱାଭାବିକ ଅବକ୍ଷୟରୁ ସୃଷ୍ଟି ହେଇ ନାହାନ୍ତି, ଅର୍ଥାତ୍ ପାଣିପବନର କ୍ଷୟକାରୀ ଗୁଣରୁ ସୃଷ୍ଟି-ହେଇନାହାନ୍ତି । ଏଗୁଡାକ ସୃଷ୍ଟିହେଇଚନ୍ତି ଲକ୍ଷଲକ୍ଷ ବର୍ଷର ବରଫ ଆଉ ପାଣିର କ୍ରମ କ୍ଷୟିଷ୍ଣୁ ପ୍ରଭାବରୁ । ଶିଳ୍ପୀମାନେ ଯେମିତି ଖଣ୍ଡେ ପଥରକୁ ନିହାଣରେ ଖୋଳି ଖୋଳି ସ୍ଥାପତ୍ୟ ଚିତ୍ରମାନ ଖୋଦେଇକରନ୍ତି, ମୂର୍ତ୍ତି ଗଢନ୍ତି– ଏଠି ନିଜେ ପ୍ରକୃତି ହଜାର ହଜାର ଏକର ଜମି ଉପର ପଥର ସ୍ତରକୁ ଉପରୁ ତଳଆଡକୁ ଖୋଳିଖୋଳି ଲକ୍ଷଲକ୍ଷ ବା କୋଟିକୋଟି ବର୍ଷରେ ଏଇ ଆମ୍ଫିଥିଏଟର୍‌ଗୁଡାକୁ ଗଢିଚି । ତେଣୁ ଟେକ୍‌ନିକାଲ୍ ଅର୍ଥରେ ବ୍ରାଇସ୍ କେନିୟନ୍ ଗୋଟିଏ କେନିୟନ୍ ନୁହେଁ, ଯେ ହେଲା ଗୋଟାଏ ବିରାଟ ଆମ୍ଫିଂଥିଏଟର୍ (Amphi-theater) ! ଏ କାମ କୋଉ ଯୁଗର ଜାଣନ୍ତି ନନା– ସେ ଯୁଗର ନାମ ଜିଓଲଜିରେ ସେନୋଜୋଇକ୍ (Cenozoic age) ଯୁଗ । ଆଉ ଏ

ପାହାଡିଆ ଅଂଚଳଟାର ନାଁ ହେଲା ଭୂତତ୍ତ୍ୱ ବିଜ୍ଞାନରେ "ପାଁସାଁଣ୍ଟ ପ୍ଲେଟୋ'' (Paunsaugunt Pleateau) ।

ଏତିକିବେଳେ ଜୁଲିମା ଆମ ବିଜ୍ଞାନ ଚର୍ଚ୍ଚାରେ ବାଧାଦେଲା । କହିଲା, "ଚାଲ, ଆଗକୁ ଚାଲ ଟିକଏ– ହେଇ ସେଠି ଦେଖୁଚ ଆମ ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରର ତୋରଣ ?''

ଆମେ କିଛି ବାଟ ଯିବା ପରେ ଦୁର୍ଗର ପ୍ରକୃତ ଗେଟ୍ ଦେଖାଗଲା । ଦୁର୍ଗକାନ୍ଥରେ ଏକ ବିଶାଳ ପ୍ରବେଶଦ୍ୱାର । ତା' ଉପରେ ଗୋଟାଏ ତୋରଣ ମଧ୍ୟ– ଅବିକଳ ମୁକ୍ତେଶ୍ୱର ମନ୍ଦିରର ତୋରଣ ପରି କାରୁକାର୍ଯ୍ୟମୟ ! ଆଉ ତୋରଣ ଉପରେ ଅବିକଳ ଆମ କୋଣାର୍କ ମନ୍ଦିର ଉପରର ମୃଦଙ୍ଗ, ମୁରଜ, ପଖଉଜ ଏବଂ ଝାଂଜ ମଂଜିରା ଇତ୍ୟାଦି ବାଦ୍ୟଯନ୍ତ୍ର ଧରି ନର୍ତ୍ତନଶୀଳ ନଟୀମାନଙ୍କର ଜୀବନ୍ତ ମନେହେଉଥିବା ମୂର୍ତ୍ତି ଦେଖି ପକେଇବା ମାତ୍ରେ ମୁଁ ସଂପୂର୍ଣ୍ଣ ଆତ୍ମହରା ହେଇ କହିଉଠିଲି– "ନା ଅସମ୍ଭବ ! ତମେ କହୁଚ ଏସବୁକୁ ମଣିଷ କରିନାଇଁ– କରିଚି ଜିଓଲଜି ? ମୁଁ ପ୍ରସ୍ତୁତ ନୁହେଁ ମାନିନେବାକୁ ତମ ବିଜ୍ଞାନର ମିଥ୍ୟାକୁ ଅଭିଜିତ୍ ! ଯଦି କହୁଚ ଯାକୁ ପ୍ରକୃତି ଗଢିଚି ତେବେ ମନେରଖ ପ୍ରକୃତି ଆଦୌ ଜଡନୁହେଁ; ପ୍ରକୃତି ଆମ ଶାସ୍ତ୍ରରେ ଚୈତନ୍ୟମୟୀ ! ସେ ହିଁ ଅସଲ ସୃଷ୍ଟିକର୍ତ୍ତ୍ରୀ ଜାଣିରଖ ।''

"ନନା !''– ଅଭିଜିତ୍ ଡାକିଲେ, "ଆସନ୍ତୁ ଏଠି ଗୋଟାଏ ଫଟୋଉଠାଇବା ଆମ ସମସ୍ତଙ୍କର । ଯା'ପରେ ଯିବା ଆଗକୁ । ଏ ତ ଆରମ୍ଭମାତ୍ର । ଚାଲନ୍ତୁ ଦେଖିବେ ତେଣେ ପ୍ରକୃତ ବ୍ରାଇସ୍ କେନିୟନ୍‌ରେ ।''

ଫଟୋ ଉଠାସରିବା ପରେ ଆମେ ସମସ୍ତେ ଯାଇ କାର୍‌ରେ ବସିପଡିଲୁ । ସୂର୍ଯ୍ୟ-ପଶ୍ଚିମ ଦିଗ୍‌ବଳୟ ଆଡକୁ ଅନେକ ଆଗେଇଗଲେଣି । ସନ୍ଧ୍ୟା ହେବା ଆଗରୁ ଆମକୁ ସମଗ୍ର ବ୍ରାଇସ୍ କେନିୟନ୍ ଅଂଚଳଟା ବୁଲି ଦେଖିବାକୁ ପଡିବ । ଏ କିଛି କମ୍ ବଡ କ୍ଷେତ୍ର ନୁହେଁ । ସମୁଦାୟ ୨୦ମାଇଲ୍ ରାସ୍ତା ଉପରେ ବୁଲି ବୁଲି ସ୍ଥାନେ ସ୍ଥାନେ ଆମକୁ ଦେଖିବାକୁ ପଡିବ ସେସବୁ ଜାଗା । ଯା' ଭିତରେ ଅଛି ଏପରି କେତେକ ଜାଗା ଯାହା ବିଶ୍ୱପ୍ରସିଦ୍ଧ । ସବୁଠୁ ବେଶୀ ଚମତ୍କାର ଓ ଦର୍ଶନୀୟ ହେଲା ଆମ୍ଫିଥିଏଟର୍ ଇଲାକା ।

ସେତେବେଳକୁ ଆହୁରି ବହୁସଂଖ୍ୟାରେ ଗାଡି ଆସି ଜମିଯାଇଥାନ୍ତି ପାର୍କିଂ ଲଟ୍‌ରେ ।

ଆମେ ତରତର ହେଇ ବସିଲୁ ଆମ କାର୍‌ରେ । ଅଭିଜିତ୍ କାର ଛୁଟେଇଲେ । ଦେଖିଲି ରାସ୍ତା ଦୁଇପାଖେ ମାଇଲ ମାଇଲ ବ୍ୟାପୀ ଅପନ୍ତରା ଭୂଇଁ । ତା' ଭିତରେ ସାମାନ୍ୟ କେତେଟା ଛୋଟ ବଡ ଝାଉଁଗଛଭଳି ଗଛ । ନିରାଟ ମରୁଭୂମି ଅଞ୍ଚଳ ପରି ମନେହେଲା ସ୍ଥାନଟା । କିନ୍ତୁ କିଛି ଦୂରରେ ଦିଶୁଥାଏ ଓଏସିସ୍ ଭଳି ଏକ ଘଞ୍ଚ ସବୁଜ ଅଂଚଳ । ସେଇ ସବୁଜ ଅଂଚଳ ଦିଗରେ ଆମ କାର ମୁହେଁଇଥାଏ ।

କାର୍ ଅଟକିଲା ଚେକ୍ ଗେଟ୍ ସାମ୍ନାରେ । ସେଠି ଟିକେଟ୍ କାଟି ଭିତରକୁ ଯିବାର ବ୍ୟବସ୍ଥା । ଅଭିଜିତ୍ ସମସ୍ତ ପ୍ରାରମ୍ଭିକ ବ୍ୟବସ୍ଥା କରିଦେଲେ । ଏହାପରେ କାର୍ ଆଗେଇଲା । କିଛି ସମୟ ପରେ ଆମେ ଯୋଉଠି ଗାଡିରୁ ଓହ୍ଲେଇଲୁ ସେ ଜାଗାର ନାଁ ବ୍ରାଇସ୍ ପଏଣ୍ଟ (Bryce Point) ।

## ବ୍ରାଇସ୍ ପଏଣ୍ଟ – ମର୍ତ୍ତ୍ୟର ଦେବଭୂମି–

ବ୍ରାଇସ୍ ପଏଣ୍ଟ ପାଖ କାର୍‌ପାର୍କିଂ ଏରିଆରେ ଆମ କାର୍ ରହିବାକ୍ଷଣି ଏକ ଆଶ୍ଚର୍ଯ୍ୟଜନକ ଦୃଶ୍ୟ ଦୂରରୁ ମୋର ଦୃଷ୍ଟି ଆକର୍ଷଣ କଲା । ମନେହେଲା ଯେମିତି ଆମେ ଆସି ପହଞ୍ଚିସାରିଚୁ ମନ୍ଦିରମାଳିନୀ କୌଣସି ଏକ ଅଞ୍ଚଳରେ ଯୋଉଠି ଯୁଆଡକୁ ଆଖି ବୁଲେଇଲେ ଦିଶୁଥାଏ କେବଳ ମନ୍ଦିର ମନ୍ଦିର ଆଉ ମନ୍ଦିର ! ପୁଣି ଛୋଟିଆ ନୁହେଁ, ଦୁଇଶହ ତିନିଶହ ଫୁଟ୍ ଉଚ୍ଚର ମାଳମାଳ ମନ୍ଦିର, ଯୋଉଗୁଡାକ ତିଆରିହେଇଥାଏ ଖାଲି ସାଧାରଣ ଲାଲ୍‌ରଙ୍ଗର ନୁହେଁ– ଶୁଦ୍ଧ ମାଣିକ୍ୟ ପଥରରେ ! ଅକ୍ଟୋବର ମାସର ଶାରଦୀୟ ଅପରାହ୍ନ ସୂର୍ଯ୍ୟରଶ୍ମିରେ ସେ ମାଣିକ୍ୟ ପଥରରେ ନିର୍ମିତ ମନ୍ଦିରଗୁଡିକ ସୃଷ୍ଟିକରୁଥାଏ ଏକ ପାର୍ବଣ ମନୋଭାବ । ଭାରତରେ ଏହା ହେଲା ଦେବୀ ଦୁର୍ଗାଙ୍କୁ ମର୍ତ୍ତ୍ୟଲୋକକୁ ଆବାହନ କରିବାର ଋତୁ । ମନ ଚଞ୍ଚଳ ହୋଇଉଠିଲା । କାଳ ବିଳମ୍ବ ନକରି ଚାଲିଲି ମୁଁ ଦୂରରେ ଦିଶୁଥିବା ସେଇ ଅଦ୍ଭୁତ ଦୃଶ୍ୟର ନିକଟତମ ହେବାକୁ ।

ମୋ ପଛେପଛେ ଆସୁଥାନ୍ତି ପିଲାମାନେ । ନିରୁପମାଙ୍କୁ ଇସାରା ଦେଲି– ଶୀଘ୍ର ଆସ– ଖରା ମଉଳିଯାଇପାରେ । ବରଫପଡିବ ବୋଲି ୱେଦର୍ ଫୋର୍‌କାଷ୍ଟ୍ ହେଇଚି !

ଆମେ ପ୍ରାୟ ଦଉଡିଲୁ । ପ୍ରାୟ ଦୁଇଶହ ଗଜ ଧାଇଁଲା ପରେ ଅଟକି ରହିଗଲୁ । ସାମ୍ନାରେ ପାଚେରି । ପାଚେରି ସେପାଖେ ପାତାଳ ! ବ୍ରାଇସ୍ କେନିୟନ୍‌ର ଆମ୍ଫିଥିଏଟର୍– ସେଇ ପାତାଳପୁରୀରେ ଅବସ୍ଥିତ ! ସେ ଏକ ବିଶାଳ ଆମ୍ଫିଥିଏଟର୍– ଭୂମି ଉପରୁ ବହୁତ ତଳେ, ଅନ୍ୟ ଏକ ପ୍ଲେନ୍‌ରେ ।

ସେଇଠି ନିର୍ମିତ ହୋଇଥାଏ ସେଇ ମନ୍ଦିରମାଳିନୀ ଅଞ୍ଚଳ ଅର୍ଥାତ୍ ଏକ ସ୍ୱତନ୍ତ୍ର ବିଶ୍ୱ ! ମନ୍ଦିର ଗୁଡିକ ବିଭିନ୍ନ ଉଚ୍ଚତାର ଆଉ ସଜାଯାଇଥାଏ ଗ୍ୟାଲେରି ତଳକୁ ଗ୍ୟାଲେରି, ତା'ତଳକୁ ଆହୁରି ଆହୁରି ଗ୍ୟାଲେରି– ଏହିପରି ବହୁ ତଳ ଭୂମି ଉପରେ । ପ୍ରତି ଗ୍ୟାଲରିରେ ଶହଶହ ମନ୍ଦିର । ସବୁଠାରୁ ବିସ୍ମୟକର– ସେ ମନ୍ଦିରଗୁଡିକ ବିଲ୍‌କୁଲ୍ ଆମରି ଓଡିଶୀ ମନ୍ଦିର ପରି– ଅର୍ଥାତ୍ ମାଳମାଳ ରେଖ ଦେଉଳ ! ଆମ ପୁରୀ କୋଣାର୍କ ଭୁବନେଶ୍ୱରର ମନ୍ଦିର ସବୁ ହୁଏତ ଏଇ ସବୁ ମନ୍ଦିରର ଗୋଟାଏ ଗୋଟାଏ ଅନୁକରଣ ମାତ୍ର ! ସତେକି ଓଡିଶାରୁ ଶିଳ୍ପୀମାନଙ୍କୁ ଅଣାଇ ନିର୍ମାଣ କରାଯାଇଥାଏ ଏଇ ମନ୍ଦିରଗୁଡିକୁ ଏଠି ଆମେରିକାର ରକି ପର୍ବତ ଉପରେ !

ମୁଁ ଆର୍କିଓଲଜି ବିଷୟରେ କେତେକ ବହି ପଢିଚି । ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ବିଖ୍ୟାତ ପ୍ରାମାଣିକ ପୁସ୍ତକ The Temples of Bhubaneswar ଏବଂ ଚାର୍ଲସ୍ ଫାବ୍ରିଙ୍କ The History of the Art of Orissa, ଯେଉଁଥିରେ ଓଡିଶାର ପ୍ରାଚୀନ ମନ୍ଦିରମାନଙ୍କର ନିର୍ମାଣତତ୍ତ୍ୱ ସମେତ ଚାରୁକଳାର କ୍ରମବିକାଶର ଧାରା ଓ ଇତିହାସ ଆଲୋଚିତ ହୋଇଚି– ଖ୍ରୀ. ପୂ. ଦ୍ୱିତୀୟ– ପ୍ରଥମ ଶତାବ୍ଦୀର ଖଣ୍ଡଗିରି ଗୁମ୍ଫାଠାରୁ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ କୋଣାର୍କ ନିର୍ମାଣ ପର୍ଯ୍ୟନ୍ତ ପୂରା ପନ୍ଦର ଶହ ବର୍ଷର କଳା ବିକାଶର ଇତିହାସ । ସେଇ ଜ୍ଞାନର ପଟ୍ଟଭୂମି ଉପରେ ଠିଆହେଇ ସେଦିନ ମୁଁ ବ୍ରାଇସ୍ କେନିୟନ୍‌ର ଏଇ ବ୍ରାଇସ୍ ପଏଣ୍ଟ ଆମ୍ଫିଥିଏଟର୍‌ର ପ୍ରାଗୈତିହାସିକ ଜିଓଲଜିକାଲ୍ ଫର୍ମେସନ୍‌ଗୁଡିକୁ ବିଚାରକରି ଦେଖୁଥିଲି । ମତେ ଜଣାଗଲା ମୋ ଆଖି ଆଗରେ ଯେପରି ଓଡିଶାର ସେଇ ପନ୍ଦରଶହ ବର୍ଷର ଚାରୁକଳା ବିକାଶର ଇତିହାସ ପ୍ରାଂଜଳ ଭାବେ ପଥର ଉପରେ ଲେଖାହେଇ ଥୁଆହେଇଚି । ସେଥିରେ ପ୍ରାଏ ଆର୍ଟ ଇତିହାସର ଚାରିଯୁଗ ଭିତରୁ ତିନୋଟି-ଯୁଗ, ଯଥା– କ୍ଲାସିକାଲ୍, ମ୍ୟାନରିଜମ୍ ଏବଂ ବ୍ୟାରୋକ ଯୁଗର ସମସ୍ତ ପ୍ରକାର ସୃଷ୍ଟି । ଏହା କେବଳ ସଂଭବ ମଣିଷ ହାତର ସୃଷ୍ଟିରେ । କିନ୍ତୁ ମୋ ଆଖି ସାମ୍‌ନାରେ ଉଭାହେଇଥିବା ସେଇ ବିଶାଳ ଆମ୍ଫିଥିଏଟର୍ ଗୋଟାକଯାକ ଯାହା ଆଦୌ ମଣିଷ ତିଆରି ନୁହେଁ । ତାହା ଥିଲା ଲକ୍ଷ ଲକ୍ଷ ବର୍ଷ ତଳର ଭୂତାତ୍ୱିକ ଯୁଗର, ଅର୍ଥାତ୍ ସେନୋଜୋଇକ୍ (Cenozoic age) ଯୁଗର କିଛି ଅସାମାନ୍ୟ ପ୍ରାକୃତିକ ବସ୍ତୁ ବିଶେଷ ମାତ୍ର । ଏସବୁ ତେବେ କ'ଣ ଏକ ଅନ୍ଧ ପ୍ରାକୃତିକ ଫୋର୍ସର ନିର୍ବୋଧ ପରିପ୍ରକାଶ– ନା ଅନ୍ୟ କିଛି ?

ପଥର କାନ୍ଥ ଉପରୁ ହାମୁଡେଇପଡି ତଳକୁ ଝୁଙ୍କିପଡି ସମୁଦାୟ ଦୃଶ୍ୟ ଭୂମି ଉପରେ ବାରମ୍ୱାର ଆଖି ବୁଲେଇ ମୁଁ ନିଜକୁ ସେଇ ପ୍ରଶ୍ନ ପଚାରୁଥାଏ ବାରମ୍ୱାର । ହଠାତ୍ ମୋ ଦୃଷ୍ଟି ସ୍ଥିର ହେଲା ନିକଟତମ ଦୂରତାରେ ସେଇ ମନ୍ଦିର ପରି ଦିଶୁଥିବା ଗୋଟିଏ ନିର୍ଦ୍ଦିଷ୍ଟ ଷ୍ଟ୍ରକ୍‌ଚର୍ ବା ଢାଞ୍ଚା ଉପରେ । ଆଶ୍ଚର୍ଯ୍ୟ ହେଲି– ସେ ଢାଞ୍ଚାଟି ଦିଶୁଥାଏ ଅବିକଳ ଭୁବନେଶ୍ୱରର ରାଜାରାଣି ମନ୍ଦିର ପରି । ଅବିକଳ ବ୍ୟାରୋକଯୁଗର କଳାକୃତି ପରି ସେ ମନ୍ଦିରର ଗଢଣ । ତାହା ଥିଲା ଏକ ରେଖଦେଉଳ ପର୍ଯ୍ୟାୟର ଓଡିଶୀ ସ୍ଥାପତ୍ୟ । ଏହାର ପାଦ ଜଂଘ କଟି ବକ୍ଷ ଗଳା ବା ବେକି ଆଉ ମସ୍ତକ ସବୁ ଅବିକଳ ସେଇ ରାଜାରାଣୀ ମନ୍ଦିର ପରି । ପୁଣି ଏହାର ଅମଳକ ଏକ ବିଶାଳ ଗୋଲାକାର ପଥର । ଅମଳକ ଉପରେ ଲକ୍ଷ୍ୟକଲି ଅବିକଳ ଓଡିଶୀ ନୃତ୍ୟ ଭଙ୍ଗୀରେ ନୃତ୍ୟରତା କେତକ ଲଳିତ ନାରୀ ମୂର୍ତ୍ତିମାନଙ୍କୁ ।

ପରେପରେ ଆଖି ବୁଲେଇ ସେ ମନ୍ଦିରର ଆମୂଳଚୂଳ ଲକ୍ଷ୍ୟ କଲି । ଦେଖିଲି– ମନ୍ଦିରର ସବା ତଳ ବା ପାଦଭାଗରେ ସଜା ହେଇଚନ୍ତି ଧାଡିଧାଡି ହାତୀମାନଙ୍କର ମୂର୍ତ୍ତି– ଅବିକଳ କୋଣାର୍କ ମନ୍ଦିର ଶୈଳୀରେ । ତା' ଉପର ସ୍ତରଟା ତଳସ୍ତରଠାରୁ ସ୍ପଷ୍ଟ ସ୍ୱତନ୍ତ୍ର

ଜଣାପଡୁଥାଏ ଆଉ କେତେପ୍ରକାର ଚିତ୍ରାଙ୍କନ ଯୋଗୁ । ସେ ସ୍ତରର ଉପରକୁ ଉପରକୁ ପ୍ରତ୍ୟେକ ସ୍ତରରେ ଗଜବାଜି, ପ୍ରେମୀଯୁଗଳ ନରନାରୀ, ଅଶ୍ୱାରୋହୀ ବୀର ପରୁଷମାନଙ୍କର ଯୁଦ୍ଧରତ ମୂର୍ତ୍ତି ସବୁ ! ସମସ୍ତ କଳାତ୍ମକ ପରିପ୍ରକାଶ ଆଶ୍ଚର୍ଯ୍ୟଜନକ ଭାବେ ମାନବିକ ସୃଷ୍ଟିର ପ୍ରମାଣ ଦେଉଥାଏ– ସତେକି ନିହଣ ମୁନରେ ସୁଚିନ୍ତିତ ଡିଜାଇନ୍ ମୁତାବକ ସେ ସବୁ ଚିତ୍ର ମନ୍ଦିର ଗାତ୍ରରେ ଖୋଦିତ ! ଏସବୁ କିପରି ସଂଭବ ହେଲା ଅନ୍ଧ ପ୍ରକୃତି ହାତରେ ? ଏଇ ପ୍ରଶ୍ନଟି ମତେ ମୂଳରୁ ଘାରିଥାଏ, ଆଉ ଯେତେ ବେଶୀ ବେଶୀ ଦେଖିଲେ ତାର କୌଣସି ସମାଧାନ ଦିଶିବା ପରିବର୍ତ୍ତେ ମୁଁ ଏକ ଗୋଲକଧନ୍ଦାରେହିଁ ଛନ୍ଦିହୋଇସାରିଥାଏ ସେତେବେଳକୁ ।

ସେଇ ଗୋଲକଧନ୍ଦାରେ ପଡି ଆଉଟୁପାଉଟୁ ହେଉଥିବା ସମୟରେ ମତେ ସମାଧାନର ଏକ ରାସ୍ତା ଦେଖାଗଲା । ମତେ ଲାଗିଲା ଏଗୁଡିକ ଯଦି ମଣିଷ ହାତର କାମ ନୁହେଁ ତେବେ ଏହାର ସ୍ରଷ୍ଟା ନିଶ୍ଚୟ କୌଣସି ଅପାର୍ଥିବ ସତ୍ତା ବିଶେଷ, ଯାହାଙ୍କୁ ପ୍ରିସିଦ୍ଧ ଆବିଷ୍କାରକ ଏରିକ୍ ଭନ୍ ଡାନିକେନ୍ (Eric Von Daniken) ତାଙ୍କ "ଚାରିଅଟ୍ ଅଫ୍ ଦ' ଗଡ୍ସ୍'' ପୁସ୍ତକରେ ନାମିତକରନ୍ତି Extra Terestrial Visitors ବୋଲି । ଯଦି ତାହା ନୁହେଁ, ତେବେ ଏହାକୁ ହିନ୍ଦୁ ପୁରାଣ ମତରେ ବିଚାର କରି ଦେଖିଲେ ଦେବତାମାନଙ୍କର କାମ ବୋଲି କହିବାକୁ ହେବ ! ଦେବତାମାନଙ୍କର ମର୍ତ୍ତ୍ୟ ବିହାର ସ୍ଥଳ ଏଇ ଅଦ୍ଭୁତ ଦେବନଗରୀଟିକୁ ଯେ ଦେବଲୋକର ଇଂଜିନିୟର ବିଶ୍ୱକର୍ମା ଗଢିନଥିବେ ତାହା କାହିଁକି ସଂଭବ ନହେବ !

ଏତେବେଳ ପର୍ଯ୍ୟନ୍ତ ଆମ ଦଳରେ ଉପସ୍ଥିତ ନାତୁଣୀ ଅଙ୍କିତା ଓ ଆନୁଙ୍କୁ ମୁଁ ଭୁଲିଯାଇଥିଲି । ହଠାତ୍ ଅଙ୍କିତାର ଅଭିଭୂତ କଣ୍ଠସ୍ୱର କାନରେ ପଡିଲା– ''ଅଜା ! ହେଇ ସେଠି ଦେଖୁଚ– ଓଡିଶୀ ଡ୍ୟାନ୍ସ ଚାଲିଚି ମନ୍ଦିର ଉପରେ ! ଆମ ଓଡିଶୀ ଡ୍ୟାନ୍ସର ସବୁତକ ମୁଦ୍ରା ଡିମନ୍‌ଷ୍ଟ୍ରେଟ୍ କରୁଚନ୍ତି ସେମାନେ– ସେ ମୂର୍ତ୍ତିଗୁଡାକ ! କେମିତି ଚଉକଠାଣିରେ ଠିଆହେଇଚନ୍ତି ଦେଖୁଚ ! କ'ଣ ଆମ କେଲୁସାର୍‌ଙ୍କ ଗୋଟାଏ ଓଡିଶୀ ଡ୍ୟାନ୍ସ ସ୍କୁଲର ବ୍ରାଞ୍ଚ ଏଠି ପୂର୍ବକାଳେ ଥିଲାକି ? ନହେଲେ ଏମାନେ ଏ ଡ୍ୟାନ୍ସ ମୁଦ୍ରାଗୁଡାକୁ ଶିଖିଲେ କେମିତି ?''

ତେରବର୍ଷର ନାତୁଣୀ ଅଙ୍କିତା ଜଣେ ଓଡିଶୀ ଡ୍ୟାନ୍ସର । ଖରାଛୁଟିରେ ଭୁବନେଶ୍ୱର ଯାଏ ସେଠି କେଳୁଚରଣ ମହାପାତ୍ରଙ୍କ ଓଡିଶୀ ଡ୍ୟାନ୍ସ ଅନୁଷ୍ଠାନରେ ଟ୍ରେନିଂ ନେବାକୁ । କେଳୁବାବୁଙ୍କ ବୋହୂ ବିଖ୍ୟାତ ଓଡିଶୀ ଡ୍ୟାନ୍ସର ସୁଜାତା ମହାପାତ୍ରଙ୍କର ସେ ଶିଷ୍ୟା । ତା' ଆଖିକୁ ବ୍ରାଇସ୍ କେନିୟନ୍‌ର ସେଇ ଭୂ-ତାତ୍ୱିକ ଗଢଣ ବୋଲାଉଥିବା ଜିଓଲଜିକାଲ୍ 'ଫର୍ମେସନ୍‌ଗୁଡାକ ଆଦୌ ଗୁଡିଏ ଏଣୁତେଣୁ ଜିନିଷ ଭଳି ଦିଶୁନଥାଏ । ସେ ଦେଖୁଥାଏ ସେସବୁ ଭିତରେ ଓଡିଶୀ ନୃତ୍ୟର ମୁଦ୍ରା ସମେତ ନୃତ୍ୟର କୋରିଓଗ୍ରାଫି !

ଅନେକ ସମୟ ଧରି ଆମେ ସେହିପରି ତନ୍ମୟ ଦୃଷ୍ଟିରେ ସେଇ ଦୃଶ୍ୟ ସବୁକୁ ଦେଖିଲାଗିଲୁ । ଅଭିଜିତ୍‌ଙ୍କ ଡାକ ଶୁଭିଲା– ''ଗାଡିକୁ ଆସନ୍ତୁ ସମସ୍ତେ । ଆମକୁ ଆହୁରି ବହୁ ଜାଗା ଦେଖିବାକୁ ଅଛି ।''

ସେତେବେଳକୁ ଆକାଶରେ ସୂର୍ଯ୍ୟକିରଣ ମଳିନପଡିଗଲାଣି ଅନେକ । ହଠାତ୍ ମାଡିଆସିଲା ଶୀତ । ସମସ୍ତେ ସଙ୍ଗେସଙ୍ଗେ ଗରମପୋଷାକ ପିନ୍ଧିପକେଇଲୁ । ଗୋଟାଏ ରେସ୍ତୁରାଁ ଏରିଆକୁ ଯାଇ ସେଠି କାଠ ବେଞ୍ଚରେ ବସି କାଠ ଟେବୁଲ୍ ଉପରେ ଆମର ଘରୁ ଅଣାଯାଇଥିବା ସ୍ନାକ୍‌ସ୍ ପ୍ୟାକେଟ୍‌ଗୁଡାକ ଖୋଲି ଜଳଖିଆ ଖାଇନେଲୁ । ଟିକିଏ ରେଷ୍ଟ ନେବା ପରେ ପୁଣି ବସିଲୁ କାର୍‌ରେ ।

କେତେଟା ଟୁରିଜମ୍ ମ୍ୟାପ୍ ଖୋଲି ଆଉଡୋଉଥାନ୍ତି ଆମର ଆଜିକାର ଟୁର୍ ଗାଇଡ୍ ଅଭିଜିତ୍ ରାୟ । କହିଲେ– ଏଠିକି ବର୍ଷକୁ କେତେ ଟୁରିଷ୍ଟ୍ ଆସନ୍ତି ଜାଣନ୍ତି ? ବର୍ଷକୁ ବର୍ଷ ଦୁଇ ନିୟୁତ ଭିଜିଟର୍ସ ଆସନ୍ତି ସବୁ ଦେଶରୁ । ଏ ଆମ୍ଫିଥିଏଟର୍‌ର ଏରିଆ କେତେ ଜାଣନ୍ତି– ସମୁଦାୟ ୩୮ ହଜାର ୩୮୫ ଏକର ! ଯା' ଭିତରେ ଅଛି ୫୦ ମାଇଲ୍ ଲମ୍ବା ହାଇକିଂ ଟ୍ରେଲସ୍. . . ଯା ଭିତରେ ବହୁତ ସାଇଟ୍ ସିଇଂ ଜାଗା ଅଛି । ଚାଲନ୍ତୁ ବାହାରନ୍ତୁ । ପ୍ରଥମେ ଆମେ ଯିବା ଇନ୍‌ସ୍‌ପିରେସନ୍ ପଏଣ୍ଟ୍ (Inspiration Point), ତାପରେ ରେନ୍‌ବୋ ପଏଣ୍ଟ (Rainbow point), ନାଚ୍ୟୁରାଲ୍ ବ୍ରିଜ୍ (Natural Bridge) । ଶେଷରେ ସନ୍‌ସେଟ୍ ପଏଣ୍ଟ (Sun Set Point) ଠାରେ ଦେଖିବା ସୂର୍ଯ୍ୟାସ୍ତ । ଏ ପାର୍କରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ଦୃଶ୍ୟ ଏକ ଦେବଦୁର୍ଲଭ ଡିଭାଇନ୍ ଏକ୍ସପିରିଏନ୍ସ ! ଚାଲନ୍ତୁ ଶୀଘ୍ର ବାହାରିବା ଅନ୍ଧାର ହେଇଯିବା ପୂର୍ବରୁ ।''

ଟିକେ ରହିଯାଇ ସେ କହିଲେ, ''ନନା ! ଏ ବ୍ରାଇସ୍ କେନିୟନ୍ ଜାଗାଟାକୁ ସାଇଣ୍ଟିଷ୍ଟ୍‌ମାନେ ବାଛିଚନ୍ତି ପୃଥିବୀର ସର୍ବୋତ୍କୃଷ୍ଟ ସ୍ଥାନ ଭାବେ । କାରଣ ଏଠି ରାତିର ଅନ୍ଧାର ଏତେ ଗଭୀର ଯେ ସେଥିରେ ସୁଦୂର ଆକାଶର ସବୁଠୁ ନିଷ୍ପ୍ରଭ ତାରା ମଧ୍ୟ ସ୍ପଷ୍ଟ ଦେଖାଯାଏ । ଏ ଜାଗାଟା ସହରଠାରୁ ଢେର୍ ଦୂରରେ, ତେଣୁ ସହରୀ ଆଲୁଅର ପ୍ରଭାବ ରାତିରେ ଆଦୌ ନଥାଏ ଏଜାଗାର ଆକାଶ ଉପରେ । ପୁଣି ଏ ଜାଗାର ବାୟୁମଣ୍ଡଳ ସବୁଠୁ ବେଶୀ ନିର୍ମଳ । ଧୂଳିକଣାର ଚିହ୍ନବର୍ଣ୍ଣ ନାହିଁ ଏଠାକାର ପବନରେ । ଚାଲନ୍ତୁ ଯିବା ଆଗକୁ ।''

ଆମେ ବସିଲୁ କାରରେ । କିଛି ରାସ୍ତା ଗଲା ପରେ ଦେଖିଲୁ ରାସ୍ତା କଡରେ କୁଢ କୁଢ ହେଇ ବରଫ ଜମିଚି । ଅଭିଜିତ କହିଲେ– ଏ ଅଂଚଳରେ ସ୍ନୋଫଲ୍ ହେଇଯାଇଚି ବୋଲି ରେଡିଓ କହିନଥିଲା ? ଗୋଧୂଳିର ଶେଷ ଆଲୋକ ଲିଭିବା ପର୍ଯ୍ୟନ୍ତ ଆମେ ବୁଲିବୁଲି ବହୁବହୁ ଅଦ୍ଭୁତ ଦୃଶ୍ୟ ଦେଖି ଚାଲିଲୁ । ସେସବୁର ଟିକିନିଖି ବିବରଣୀ ଏଠାରେ ଦେବା ସଂଭବ ନୁହେଁ କଦାପି । ନିଜ ଆଖିରେ ନଦେଖିବା ପର୍ଯ୍ୟନ୍ତ ବ୍ରାଇସ୍ କେନିୟନ୍

ବିଷୟରେ ଯାହା ବି କୁହାଯିବ ତାହା ଅନ୍ୟ ପାଇଁ ଅବିଶ୍ୱାସ୍ୟ ହିଁ ମନେହେବା ସ୍ୱାଭାବିକ ।

ଘରକୁ ଫେରିବାକୁ ପ୍ରସ୍ତୁତ ହେଲୁ ଶେଷରେ। ବହୁ ଜାଗା ଅଦେଖା ରହିଗଲା ତଥାପି। ଫେରନ୍ତି ଯାତ୍ରାର ସମୟ ମୋ ପାଇଁ ଥିଲା ପୂର୍ବରାତିରେ ଦେଖିଥିବା କୌଣସି ଅଦ୍ଭୁତ ଦୈବୀସ୍ୱପ୍ନକୁ ପୁଣି ମନେପକେଇ ବିହ୍ୱଳିତ ହେବାପରି ଏକ ଚମତ୍କାର ସମୟ। ଆମେ ସଲଟ୍‌ଲେକ୍ ସିଟିରେ ପହଞ୍ଚିଲୁ ରାତି-ଅଧରେ । ତାହା ଥିଲା ମୋ ଜୀବନର ସାର୍ଥକତମ ଦିନ ।

ବ୍ରାଇସ୍ କେନିୟନ୍‌ର ଇତିହାସ : ଚୁମ୍ବକରେ ବ୍ରାଇସ୍ କେନିୟନର ଇତିହାସଟି ହେଲା ଏହିପରି– ଏହାର ମୂଳ ଅଧିବାସୀ ଥିଲେ ଏ ଦେଶର ଆଦିବାସୀ ଯାହାଙ୍କୁ କୁହାଯାଏ ଆମେରିକାନ୍ ଇଣ୍ଡିୟାନ୍ ବା ଲୋହିତ ଭାରତୀୟ। ପ୍ରାୟ ଦଶହଜାର ବର୍ଷ ତଳୁ ପାୟୁଟ (Paiute) ନାମକ ଏକ ସ୍ଥାନୀୟ ଆଦିବାସୀ ଗୋଷ୍ଠୀ ଏ ସ୍ଥାନରେ ବସବାସ କରି ରହୁଥିଲେ। ଏ ଆଦିବାସୀମାନଙ୍କର ସଂସ୍କୃତି ଏବଂ ପୌରାଣିକ ବିଶ୍ୱାସ ଉପରେ ଆଧୁନିକ ଗବେଷଣାମାନ କରାଯାଇଚି। ସେମାନଙ୍କର ପୁରାଣ ମତରେ ଏଇ ସ୍ଥାନର ଏ ସବୁ ଅଦ୍ଭୁତ ମନ୍ଦିର ନିର୍ମାଣ କରିଥିଲେ କେତେକ ଦୈବୀମାନବ ଯେଉଁମାନେ ଅଭିଶପ୍ତ ହୋଇ ପଥର ପାଲଟିଯାଇଚନ୍ତି। ଏଠାର ବିଶାଳକାୟ ଜୀବନ୍ତ "ହୁଡୁଜ"ମାନଙ୍କୁ ପଥର କରିସାରି "କୋୟୋଟ୍ ଦେବତା" ସେମାନଙ୍କ ଉପରେ ଏକ ଲାଲ୍ ରଙ୍ଗ ବୋଳିଦେଇଚନ୍ତି। ହୁଡୁଜ ମାନଙ୍କର ଆଦିବାସୀ ନାଁ ହେଲା ଅଙ୍କୁ (Ankuku wasa wits)।

ଏ ସ୍ଥାନର ନାମ ବ୍ରାଇସ୍ କେନିୟନ୍ ହେବାର ତାତ୍ପର୍ଯ୍ୟ ହେଲା ଅଠରଶହ ଶତାବ୍ଦୀର ମଧ୍ୟଭାଗରେ ୧୮୫୦ରେ ମର୍ମନ ସଂପ୍ରଦାୟର ୟୁରୋପୀୟ-ଆମେରିକାନ୍ ଗୋରାଲୋକେ ପ୍ରଥମେ ପ୍ରବେଶ କଲେ ଏଠାରେ। ସେମାନେ ଏ ସ୍ଥାନକୁ ମୁଖ୍ୟତଃ ଚାରଣଭୂମି ଭାବେ ବ୍ୟବହାର କରୁଥିଲେ। ସେଇ ସଂପ୍ରଦାୟର ଜଣେ ବ୍ୟକ୍ତି ଇବେଂଜର ବ୍ରାଇସ୍‌ଙ୍କ ନାମରେ ଏ ସ୍ଥାନର ନାମକରଣ ହୋଇଛି ବ୍ରାଇସ୍ କେନିୟନ୍।- ଇବେଂଜର ବ୍ରାଇସ୍ ୧୮୮୧ ପର୍ଯ୍ୟନ୍ତ ସପରିବାରେ ଏଠାରେ ବସବାସ କରୁଥିଲେ। ତାଙ୍କର ସେଇ ପୁରୁଣା ଟାଇଲଛୁଆଁଣି କାଠଘରଟି ଏଯାଏଁ ଏଠାରେ ସୁରକ୍ଷିତ ରହିଚି ।

## ସଲଟ୍‌ଲେକ୍ ସିଟିରେ ଶେଷ ସପ୍ତାହ–

ଓ୍ୱ ୨୬, ନଭେମ୍ବର ୨୦୦୮–

ଆମେରିକାରେ ଆମର ରହଣି କାଳ ସମାପ୍ତ ହେବାର ଅନ୍ତିମ ପର୍ଯ୍ୟାୟରେ ଆଜି ଏକ ଭୟଙ୍କର ଦୁଃସମ୍ବାଦ ମିଳିଲା ଭାରତରୁ । ସେ ଦୁଃସମ୍ବାଦ କେବଳ ଭାରତ ପାଇଁ ନୁହେଁ, ସମଗ୍ର ବିଶ୍ୱବାସୀଙ୍କ ପାଇଁ ଥିଲା ଏକ ଚରମ ଆହ୍ୱାନ । ସି.ଏନ୍.ଏନ୍ ସମେତ ଆମେରିକାର ପ୍ରାୟ ସମସ୍ତ ଟିଭି ସମ୍ବାଦ ସରବରାହ ସଂସ୍ଥା ସେଇ ଲୋମହର୍ଷଣକାରୀ ଘଟଣାବଳୀର

'ଲାଇଭ୍ ଟ୍ରାନ୍ସମିସନ୍' କରିଚାଲିଥାନ୍ତି– ଦିନରାତି ତିନିଦିନ ପର୍ଯ୍ୟନ୍ତ । ସେଇ ତିନି ଦିନ କାଳ ଆମେ ଖିଆପିଆ ଭୁଲି ତଟସ୍ଥ ଅବସ୍ଥାରେ ଟି.ଭି ଆଗରେ ବସିଥାଉ ।

ତାହା ଥିଲା ମୁମ୍ବାଇର ଛତ୍ରପତି ରେଳ ଟର୍ମିନାଲ୍ ସମେତ ବମ୍ବେର ପ୍ରସିଦ୍ଧ ହୋଟେଲ୍ ତାଜ୍, ହୋଟେଲ୍ ଟ୍ରାଇଡେଂଟ୍ ଏବଂ ନରିମ୍ୟାନ୍ ପଏଂଟ୍‌ରେ ଅବସ୍ଥିତ ଇସ୍ରାଏଲ୍ ଦୂତାବାସ ଉପରେ ପାକିସ୍ଥାନ ପ୍ରରୋଚିତ ଆତଙ୍କବାଦର ଲୋମହର୍ଷଣକାରୀ ନରହତ୍ୟାର ଧାରା-ବିବରଣୀ । ଦୀର୍ଘ ତିନିଦ୍‌ଦିନ ବ୍ୟାପୀ ଚାଲିଥିବା ସେଇ ନୃଶଂସ ନରହତ୍ୟାର ପ୍ରତ୍ୟକ୍ଷ ଦୃଶ୍ୟ ଥିଲା ୨୦୦୧ ସେପ୍ଟେମ୍ବର ୧୧ ତାରିଖରେ ଆମେରିକାରେ ଘଟିଯାଇଥିବା ସେଇ ଜଘନ୍ୟ ଆଲ୍‌କାଏଦା ଆତଙ୍କବାଦର ଅନ୍ୟ ଏକ ସଂସ୍କରଣ ।

ଏହି ଦୁଃସମ୍ବାଦ ଭିତରେ ଆଉଟୁପାଉଟୁ ହେଇ ସପ୍ତାହଟି କଟିଗଲା କୌଣସି ପ୍ରକାରେ । ଏଇ ସମୟ ଭିତରେ ଏଠି ସଲଟ୍‌ଲେକ୍ ସିଟିରେ ଏକାଧିକ ଥର ତୁଷାରପାତ ହୋଇସାରିଲାଣି । ତୁଷାରପାତର ଦୃଶ୍ୟ ଅତ୍ୟନ୍ତ ସାତ୍ତ୍ୱିକ ଏବଂ ବିମୁଗ୍ଧକାରୀ । ରାତି ପାହି ସକାଳ ହେବା ମାତ୍ରେ ଧରାବକ୍ଷର ସମଗ୍ର ଦୃଶ୍ୟପଟ ହଠାତ୍ ଏକ ସ୍ୱଚ୍ଛ ଶୁଭ୍ର ପଟଳରେ ଆବୃତ ହୋଇଯାଇଥିବାର ଦେଖିଲେ ମନରେ ଯେଉଁ ବିସ୍ମୟ ଜାତ ହେବା ସ୍ୱାଭାବିକ ତାହା କେବଳ ଆତ୍ମୋପଲବ୍ଧିର ବିଷୟ ମାତ୍ର ।

ସେଇ ଉପଲବ୍ଧିଟିକୁ ଆହୁରି ନିବିଡ଼ କରିବା ପାଇଁ ମୁଁ ଓ ନିରୁପମା ଏଇ ସପ୍ତାହ ଭିତରେ କେତେଥର ବରଫ ପଡ଼ିବା ପରେପରେ ଘର ସାମନା ପାର୍କରେ ବୁଲିବାକୁ ଯାଇଚୁ । ବରଫ ପଡୁଥିବା ବେଳେ ଘରୁ ବାହାରିବା ଆମ ପରି ଉଷ୍ଣଜଳବାୟୁ ଦେଶର ଲୋକଙ୍କ ପାଇଁ ସତରେ ଏକ ଦୁର୍ଲଭ ଅନୁଭବ । ଏଠାରେ ରହଣିର ଏଇ ଶେଷ ସପ୍ତାହରେ ତାହା ଆମକୁ ଖୁବ୍ ସହଜରେ ମିଳିଯାଇଥିଲା ।

## ଘରବାହୁଡ଼ା–

ଏଥର ଆମେରିକା ଭ୍ରମଣ ଶେଷ ହେବା ପୂର୍ବରୁ ମୁମ୍ବାଇରେ ଘଟିଥିବା ସେଇ ଅହେତୁକ ଅନ୍ଧ ଆତଙ୍କବାଦର ନୈରାଶ୍ୟମୟ ନାରକୀୟ ଦୃଶ୍ୟ ଗୁଡାକୁ ଟିଭି ପରଦାରେ ଦେଖୁଥିବା ସମୟରେ ସେ ବର୍ଷ ନଭେମ୍ବର ଚାରି ତାରିଖରେ ସମାପ୍ତ ହୋଇଥିବା ଆମେରିକାର ପ୍ରେସିଡେଂଟ୍ ନିର୍ବାଚନକୁ ନେଇ ଗଣମାଧ୍ୟମରେ ଚାଲିଥିବା ଘମାଘୋଟ ବିଶ୍ୱବ୍ୟାପୀ ବୌଦ୍ଧିକ ବିଚାର ବିମର୍ଶର କ୍ରିୟା-ପ୍ରତିକ୍ରିୟା ସବୁକୁ ମଧ୍ୟ ଗଭୀର ଆଗ୍ରହ ସହିତ ଲକ୍ଷ୍ୟକରୁଥିଲି । ଏଥର ନିର୍ବାଚନରେ ଆମେରିକାର ଡିମୋକ୍ରାଟିକ୍ ପାର୍ଟିର ନେତା ବରାକ୍ ହୁସେନ ଓବାମା ଆମେରିକାର ପ୍ରେସିଡେଂଟ ପଦ ପାଇଁ ବହୁ ଜନମତରେ ନିର୍ବାଚିତ ହୋଇଥାନ୍ତି । ସେ ଜଣେ କଳାଲୋକ ହୋଇ ଆମେରିକା ଭଳି ଏକ ଗୋରାଲୋକଙ୍କ ଦେଶରେ କିପରି ସର୍ବୋଚ୍ଚ ରାଜନୈତିକ ପୋଷ୍ଟ ବା ପ୍ରେସିଡେଂଟ ପଦବୀକୁ ନିର୍ବାଚିତ

ହୋଇପାରିଲେ ତାହାହିଁ ଥାଏ ବିଚାର ବିମର୍ଶର ବିଷୟବସ୍ତୁ ।

କିନ୍ତୁ ମୋ ପାଇଁ ସେ ଘଟଣାଟି ହୋଇଥାଏ ସର୍ବାଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଏକ ''ନେମେସିସ୍''ର କାହାଣୀ । କାରଣ ଏଇ ୨୦୦୮ର ଆମେରିକାନ୍ ରାଷ୍ଟ୍ରପତି ନିର୍ବାଚନ ପୂର୍ବରୁ କିଏ ଭାବିଥିଲା ଦିନେ 'ଅଙ୍କଲ ସାମ୍'ଙ୍କ ରାଜପ୍ରାସାଦର ପ୍ରବେଶ ଦ୍ୱାରକୁ ଉନ୍ମୁକ୍ତ କରି ଦିଆଯିବ ହାରିଏଟ୍ ବିଚର୍ ଷ୍ଟୋଙ୍କ ଉପନ୍ୟାସ 'ଟମକକାଙ୍କ କୁଟୀର'ର ନାୟକ ଟମକକା ଓ ତାଙ୍କ ଆଫ୍ରିକୀୟ ରକ୍ତସମ୍ପର୍କୀୟ ବନ୍ଧୁ ବିରାଦରଙ୍କ ପାଇଁ ?

ତା ୪ ଡିସେମ୍ବର, ୨୦୦୮– ଆମର ଭାରତ ବାହୁଡାର ପ୍ରଥମ ପାଦ ଯାତ୍ରା ଆରମ୍ଭ ହେଲା । ସକାଳ ଫ୍ଲାଇଟ୍‌ରେ ଆମ ପାଇଁ ବିମାନ ଟିକେଟ୍ ପୂର୍ବରୁ ବୁକିଂ ହୋଇଥାଏ ସଲଟ୍‌ଲେକ୍‌ସିଟିରୁ ହାର୍ଟଫୋର୍ଡ (କନେକ୍ଟିକଟ୍)କୁ । ଅଭିଜିତ, ଜୁଲି ଓ ଦୁଇ ନାତୁଣୀ ଅଙ୍କିତା ଆନୁ ଆମକୁ ବଳେଇ ଦେବା ପାଇଁ ସଲଟ୍‌ଲେକ୍‌ସିଟି ବିମାନ ବନ୍ଦରକୁ ଆସିଥିଲେ । ଏକ ମାର୍ମିକ ବିଦାୟପର୍ବ ପରେ ନିରୁପମା ଓ ମୁଁ ଆମ ପାଇଁ ନିର୍ଦ୍ଧାରିତ ବିମାନରେ ବସିଲୁ । ଦୀର୍ଘ ଛ' ଘଣ୍ଟାର ବିମାନ ଯାତ୍ରା ପରେ ଆମେ କନେକ୍ଟିକଟ୍‌ର ରାଜଧାନୀ ସହର ହାର୍ଟଫୋର୍ଡ ବିମାନ ବନ୍ଦରରେ ପହଞ୍ଚିଲୁ । ଆମକୁ ପାଛୋଟି ନେବାକୁ ଝିଅ ଜୋଇଁ– ସୁଲୁ, ମହେଶ ବିମାନ ବନ୍ଦରକୁ ଆସିଥିଲେ । ସେଦିନ ସନ୍ଧ୍ୟାରେ ଆମେ ସେମାନଙ୍କ ଗ୍ଲାସ୍‌ଟନ୍‌ବରି ଘରେ ପହଞ୍ଚିଲୁ । ଏଠାରେ ଆଠଦିନର ରହଣି ପରେ ତା ୧୩ ଡିସେମ୍ବର ୨୦୦୮ରେ ଆମେ ଭାରତ ଫେରିବା ପାଇଁ ପୂର୍ବନିର୍ଦ୍ଧାରିତ ବିମାନଯାତ୍ରାର ସମୟ ନିର୍ଘଂଟ ଅନୁସରଣ କଲୁ ଏବଂ ପରଦିନ ମୁମ୍ବାଇ ଓ ସେଠାରୁ ଭୁବନେଶ୍ୱର ଫେରିଆସିଲୁ ।

ଏଥରକର ଆମେରିକା ଭ୍ରମଣ ଆମ ପାଇଁ ଥିଲା ଉଭୟ ସ୍ଥଳ ଓ ଆକାଶ ପଥରେ ଦୀର୍ଘତମ ଦୂରପଥ ଯାତ୍ରା ସହିତ ବହୁ ବୈଚିତ୍ର୍ୟପୂର୍ଣ୍ଣ ଭୌଗୋଳିକ ସ୍ଥାନ ପରିଦର୍ଶନର ଏକ ଦୁର୍ଲଭ ସୁଯୋଗ । ଏଥରର ଆମେରିକା ଭ୍ରମଣ କାଳରେ ଆମେ ଏଇ ବିଶାଳ ଉପମହାଦେଶର ଏପରି କେତେକ ସ୍ଥାନର ସନ୍ଧାନ ପାଇପାରିଛୁ ଯାହା ସାଧାରଣ ଟ୍ରାଭେଲ୍ କମ୍ପାନୀ ପରିଚାଳିତ ଦର୍ଶନୀୟ ସ୍ଥାନ ତାଲିକାରେ ସ୍ଥାନିତ ହେବାର ସମ୍ଭାବନା ନଥାଏ । ସେପରି କେତେକ ଅବଶ୍ୟ ଦର୍ଶନୀୟ ସ୍ଥାନର ଉଲ୍ଲେଖ ରହିଚି ଏହି ଭ୍ରମଣ ଡାଏରୀର ୟୁଟାଃ ଅଧ୍ୟାୟରେ । ସେ ମଧ୍ୟରେ ମୋ ପାଇଁ ସର୍ବାଧିକ ପ୍ରଭାବ ସୃଷ୍ଟିକାରୀ ଥିଲା ଦୁଇଟି ଅଦ୍ଭୁତ ସ୍ଥାନ– 'ୟେଲୋଷ୍ଟୋନ ନାସନାଲ୍ ପାର୍କ' ଏବଂ 'ବ୍ରାଇସ୍ କେନିୟନ୍' । ଏହିଠାରେ ହିଁ ମୁଁ ସୃଷ୍ଟିର ବହୁ ସଂଗୁପ୍ତ ରହସ୍ୟର ସନ୍ଧାନ ପାଇଛି ଯାହା ମୋ ପାଇଁ ଥିଲା ବିଶ୍ୱରୂପଦର୍ଶନ ପରି କ୍ରାନ୍ତିକାରୀ ଅଭିଜ୍ଞତା ।

——

୧। ଲେଖକ-ଦମ୍ପତି : ୟେଲୋଷ୍ଟୋନ୍ ନ୍ୟାସ୍‌ନାଲ୍‌ପାର୍କ ଫାୟାର୍‌ହୋଲ୍ ନଦୀକୂଳରେ ।

୨। ୟେଲୋଷ୍ଟୋନ୍ ନ୍ୟାସ୍‌ନାଲ୍‌ପାର୍କ– ଦର୍ଶକଙ୍କ ସମ୍ମୁଖରେ ରହସ୍ୟମୟ ନିତ୍ୟସମୟାନୁବର୍ତ୍ତୀ "ଦ' ଓଲ୍‌ଡ଼ ଫେଥ୍‌ଫୁଲ୍" ଉଷ୍ଣପ୍ରସ୍ରବଣ (ଗେିଜର) ହଠାତ୍ ସକ୍ରିୟ ହେବା ସମୟର ଦୃଶ୍ୟ । ଛବିର ସମ୍ମୁଖାଂଶରେ– ନାତୁଣୀ ଅପର୍ଣ୍ଣା (ଆନ୍ନି) ସହିତ ଜାମାତା ଅଭିଜିତ ରାୟ ।



୩। ୟେଲୋଷ୍ଟୋନ୍ ନ୍ୟାସ୍‌ନାଲ୍‌ପାର୍କ ଅନ୍ତର୍ଗତ ମିନର୍ଭା ଟେରାସ୍‌ଠାରେ ଭୂଗର୍ଭରୁ ନିରବଧି ଉବୁରି ଉଠୁଥିବା ତରଳଗନ୍ଧକର ପ୍ରବାହରୁ ଜାତ ବ୍ୟାପକ ଗୈଇର କ୍ଷେତ୍ର : ଛବିରେ (ବାମରୁ) ଜାମାତା ଅଭିଜିତ୍, ସାନ ନାତୁଣୀ ଅପର୍ଣ୍ଣା, କୁଲି, ବଡ଼ନାତୁଣୀ ଅଙ୍କିତା, ପତ୍ନୀ ନିରୁପମା ଓ ଲେଖକ ।

୪। ୟେଲୋଷ୍ଟୋନ୍ ନ୍ୟାସନାଲ୍‌ପାର୍କର ରମଣୀୟ ପ୍ରାକୃତିକ ପରିବେଶ: ଦୃଶ୍ୟସ୍ଥଳରେ ବଡ଼ନାତୁଣୀ ଅଙ୍କିତା ସହ ଲେଖକ ଦମ୍ପତି ।



୫। ୟେଲୋଷ୍ଟୋନ୍ ନ୍ୟାସ୍‌ନାଲ୍ ପାର୍କର ଅନ୍ୟତମ ବିସ୍ମୟ- ଛବିରେ ଦେଖାଯାଉଥିବା ହାତୀ ଆକୃତିର ପଥରଖଣ୍ଡଟି ମଧ୍ୟ ଏକ ଗୈଜର । ଏହାର ସର୍ବାଙ୍ଗ ଭେଦକରି ଗନ୍ଧକମିଶା ଗରମ ପାଣି ଭୂଗର୍ଭରୁ ଅନବରତ ଝରୁଥାଏ ।

୬। ୟେଲୋଷ୍ଟୋନ୍ ପାର୍କରେ ପ୍ରବାହିତ ଏକ ନଦୀର ସେତୁ ଉପରେ ଲେଖକ ଦମ୍ପତି ।



୭। ଛବିରେ ଦେଖାଯାଉଥିବା ମନ୍ଦିରାକୃତି ସ୍ଥାପତ୍ୟଗୁଡ଼ିକ ବାସ୍ତବରେ ମଣିଷ ହାତ ତିଆରି ନୁହେଁ; ଏହା ଲକ୍ଷଲକ୍ଷ ବର୍ଷ ତଳେ ପ୍ରାକୃତିକ ପ୍ରକ୍ରିୟାରେ ଗଢ଼ିଉଠିଥିବା କେତେକ ଭୂ-ତାତ୍ତ୍ୱିକ ଢାଂଚା ଯାହାର ଅଦ୍ଭୁତ ସାମଂଜସ୍ୟ ଦେଖିବାକୁ ମିଳେ ଆମ ଓଡ଼ିଶାର ଭୁବନେଶ୍ୱର, ପୁରୀ ଓ କୋଣାର୍କର ମନ୍ଦିରଗାତ୍ରର ସ୍ଥାପତ୍ୟ ସହିତ - ବ୍ରାଇସ୍‌କେନିୟନ, ୟୁଟାଃରେ ।

୮। ବ୍ରାଇସ୍ କେନିୟନ୍ ଉପତ୍ୟକାର ସାମଗ୍ରିକ ରୂପଃ ଆମେରିକାର ଆଦିମ ଅଧିବାସୀମାନେ ଏ ଅଂଚ଼ଳଟିକୁ ଦେବଭୂମି ଭାବେ ନାମିତ କରନ୍ତି ।

୯। ଛବିର ଅତିମାନବୀୟ ପ୍ରତିକୃତିଗୁଡ଼ିକ ବାସ୍ତବରେ ଗୁଡ଼ିଏ ଭୂତାତ୍ତ୍ୱିକସଂଗଠନ ଯାହା ନାମିତ କରାଯାଏ 'ହୁଡୁ' (Hoodoo) ନାମରେ। ଏଭଳି ଅଦ୍ଭୁତରୂପ ସବୁ ସମଗ୍ର ବ୍ରାଇସ୍‌କେନିୟନ୍ ଅଞ୍ଚଳରେ ଭରପୂର।



୧୦। ବ୍ରାଇସ୍ କେନିୟନ୍‌ର ଅନ୍ୟତମ ବିସ୍ମୟକର ସ୍ଥାନ Natural Bridge– ଏଠାରେ ଏକ ବିଶାଳ ଭୂତାତ୍ତ୍ୱିକ ସଂଗଠନ ଦେଖିବାକୁ ମିଳେ ଯାହା ବାସ୍ତବିକ ଏକ ବିଶାଳକାୟ ପ୍ରାକୃତିକ ସେତୁ ଭଳି ଦେଖାଯାଏ । ଛବିରେ କନ୍ୟା ଲୁଲି ଓ ଜାମାତା ଅଭିଜିତ୍ ।



୧୧। ବ୍ରାଇସ୍ କେନିୟନ୍‌ର ଉଚ୍ଚତମ ଶିଖର– Rainbow Point ଯେଉଁଠି ବର୍ଷସାରା ଉପତ୍ୟକା ଉପରେ ଇନ୍ଦ୍ରଧନୁ ଦୃଶ୍ୟମାନ ହୁଏ । ଛବିରେ– (ବାମରୁ) ବଡ଼ନାତୁଣୀ ଅଙ୍କିତା, ଲେଖକ, ପତ୍ନୀ ନିରୂପମା, କନ୍ୟା ଲ୍ଲୁଲି ଏବଂ ସାନ ନାତୁଣୀ ଅପର୍ଣ୍ଣା ।



୧୨। ମର୍ମନମାନଙ୍କର ପ୍ରଧାନ ଉପାସନା ସ୍ଥାନ– ସିମ୍ଫୋନୀ–ବାଦନ ସମୟର ଦୃଶ୍ୟ । ପୃଷ୍ଠଭୂମିର ସ୍ତମ୍ଭାକୃତି ପଦାର୍ଥଗୁଡ଼ିକ ବାସ୍ତବରେ ଏଗାରଶହ ସଂଖ୍ୟାର ଟେବରନାକୁ ପାଇପ୍‌ର ଗୁଚ୍ଛ ଯାହାର ସମ୍ମିଳିତ ଗୁଂଜନ–ଧ୍ୱନିରେ ବିଶାଳ ପ୍ରେକ୍ଷାଳୟ ଗୁରୁଗମ୍ଭୀର ଭାବେ ପ୍ରତିଧ୍ୱନିତ ହୁଏ । ଛବିରେ ଜାମାତା ପ୍ରବୀର ଓ କନ୍ୟା ବୁଲବୁଲ୍ ସହିତ ଲେଖକ ଦମ୍ପତି ।



୧୩। ମୃତ ସମୁଦ୍ର ବନ୍‌ଭିଲ୍ (Bonneville)ର ଆଦିଗନ୍ତ ବିସ୍ତୀର୍ଣ୍ଣ ଶୁଷ୍କ ଲବଣ ଚଟାଣ ଉପରେ ଲେଖକ ଦମ୍ପତି ।

୧୪। ୟୁଟାଃ ରାଜ୍ୟର ସ୍ପାନିସ୍ ଫୋର୍କଠାରେ, ରକି ପର୍ବତର ଏକ ଶୃଙ୍ଗ ଉପରେ ନିର୍ମିତ ଆଧୁନିକ ଇସ୍‌କନ୍ (ରାଧାକୃଷ୍ଣ) ମନ୍ଦିର ।



୧୫। ୟୁଟାଃ ସାନିଶ୍‌ଫୋର୍କ ଇସ୍‌କନ୍ ରାଧାକୃଷ୍ଣ ମନ୍ଦିରର ଉପାସନା ଗୃହ ଅଭ୍ୟନ୍ତରର ଦୃଶ୍ୟ- ଛବିରେ ଉପାସନା ମଣ୍ଡପ ନିକଟରେ ପତ୍ନୀ ନିରୁପମା ।

୧୬। ୟୁଟାଃର ବିଖ୍ୟାତ ଦର୍ଶନୀୟ ସ୍ଥାନ- ''ସଲ୍‌ଟ୍‌ଲେକ୍'' ଲବଣ ହ୍ରଦ । ଛବିରେ ଲେଖକ ଓ ତାଙ୍କ ପରିବାର- ବାମରୁ ଲେଖକଦମ୍ପତି, ଦୁଇନାତୁଣୀ- ଆନୁ ଓ ଅଙ୍କିତା, ଜୁଲି ଓ ଜାମାତା ଅଭିଜିତ ।



୧୭। ୱାସିଂଟନ୍ (ଡ଼ିସି)– ଏକ ସାଧାରଣସଭାରେ ବିଶ୍ୱବ୍ୟାପୀ ଜଗନ୍ନାଥଚେତନା ପ୍ରସାରଣ ଅନୁଷ୍ଠାନ (JOGA) ପକ୍ଷରୁ ଲେଖକଙ୍କୁ ''ପ୍ରଜ୍ଞାଜ୍ୟୋତି'' ସମ୍ମାନ ପ୍ରଦାନ ଉତ୍ସବରେ ସମ୍ମାନିତ କରାଯାଉଛି । ଛବିରେ– ଡ଼. ଶଶଧର ଦାସ, (ପୃଷ୍ଠଭୂମିରେ) ସଂଯୋଜକ ଡ଼. ନରେଶ ଦାସ ଏବଂ ଲେଖକ ।

୧୮। ନାତି ମନୀଶର ଗ୍ରାଜୁଏସନ୍ ଉତ୍ସବର (୨୦୦୮) ପାରିବାରିକ ମିଳନର ଏକ ଦୃଶ୍ୟ– ଛବିରେ ଝିଅ ଜୋଇଁ, ନାତି ନାତୁଣୀଙ୍କ ଗହଣରେ ଲେଖକ ଦମ୍ପତି ।



୧୯। ଆମେରିକାର ମିନିଆପଲିସ ସହରରେ ରଥଯାତ୍ରା (୨୦୦୮) ଉତ୍ସବରେ ଯୋଗଦେବା ଅବସରରେ ଉତ୍ସବର ପ୍ରଧାନ ଆୟୋଜକ ଡ଼. ସିତିକଣ୍ଠ ଦାଶ ଓ କଳ୍ପନା ଦାଶଙ୍କ ଠାକୁରଘରର ଦୃଶ୍ୟ । ଛବିରେ ଆତିଥେୟଙ୍କ ଗହଣରେ ଲେଖକ ଦମ୍ପତି ।



୨୦। ନାତି ପ୍ରତୀକର ଗ୍ରାଜୁଏସନ୍ ଉତ୍ସବ ଉପଲକ୍ଷେ ପାରିବାରିକ ମିଳନ- ଫ୍ରାଙ୍କଲିନ୍, ଟେନୀସୀ, ୨୦୦୬ । ଛବିରେ- (ଆଗଧାଡ଼ି ବାମରୁ) ଲେଖକ, ପତ୍ନୀ ନିରୁପମା, ନାତୁଣୀ ଅଙ୍କିତା ଓ ଅପର୍ଣ୍ଣା, କନ୍ୟା ନିବେଦିତା (ସୁଲୁ), କନ୍ୟା ଜୁଲି, (ପଛଧାଡ଼ିରେ ବାମରୁ) ନାତି ଅମୃତ, ଜାମାତା ମହେଶ, ନାତି ମନୀଶ, ନାତି ପ୍ରତୀକ, କନ୍ୟା ବୁଲବୁଲ ଏବଂ ଅଭିଜିତ୍ ।



୨୧। ନାତୁଣୀ ଅଙ୍କିତାର ଗ୍ରାଜୁଏସନ୍ ଉତ୍ସବ– (୨୦୧୩), ସ୍ଥାନ– ସଲଟ୍‌ଲେକ୍ ସିଟି ବିଶ୍ୱବିଦ୍ୟାଳୟ ପ୍ରେକ୍ଷାଳୟ, ୟୁଟାଃ । (ବାମରୁ) ପରିବାରର ବନ୍ଧୁ ଡ଼, ଚନ୍ଦନା ମିଶ୍ର, ପତ୍ନୀ ନିରୁପମା, ଜାମାତା ପ୍ରବୀର, ନିବେଦିତା ଓ ବୁଲବୁଲ, ଲେଖକ, ନାତୁଣୀ ଅଙ୍କିତା ଓ ଅପର୍ଣ୍ଣା, ଜୁଲି, ନାତି ପ୍ରତୀକ ଓ ଅମୃତ, ଜାମାତା ଅଭିଜିତ, ନାତି ମନୀଶ ଓ ଶିବାନୀ ।

୨୨। ଏକ ଶାରଦୀୟ ଅପରାହ୍ଣରେ ଲେଖକଙ୍କ ପ୍ରିୟ ବିହାରସ୍ଥଳୀ ଫ୍ରାଙ୍କଲିନ୍ ସହରର ସାଉଥ୍ ପଏଣ୍ଟସ୍ଥ ହ୍ରଦ କୂଳର ୱିଲୋ ବୃକ୍ଷ ତଳେ କନ୍ୟା ପ୍ରଜେଶ (ବୁଲବୁଲ) ସହିତ ଲେଖକ ।



୨୩। ୟୁଟାଃ ରାଜ୍ୟ ଅନ୍ତର୍ଗତ ଏକ ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ 'ପ୍ରୋଭୋ ବ୍ରାଇଡ଼ାଲ୍‌ଫଲ୍' ସନ୍ନିକଟ ରକି ପର୍ବତମାଳାର ମହିମ୍ନ ଦୃଶ୍ୟ ଯାହା ଜଣେ ଭାରତୀୟ ମନରେ ଏକ ଦେବାଳୟର ଭ୍ରମ ସୃଷ୍ଟିକରେ।



ଶାନ୍ତନୁ କୁମାର ଆଚାର୍ଯ୍ୟ
(ଜନ୍ମ: ୧୫ ମେ, ୧୯୩୩)

ଏକ ସମୟରେ ଆମେରିକା ଭ୍ରମଣକୁ ପାଥେୟ କରି ଭ୍ରମଣ କାହାଣୀ ସବୁ ରଚିତ ହେଉଥିଲା ଯାହା ପଢ଼ିଲେ ମନେ ହେଉଥିଲା ସ୍ୱର୍ଗ ଆମ ମୁଣ୍ଡ ଉପରେ ଆଉ ନାହିଁ; ତାହା ଚାଲି ଆସିଲାଣି ଆମ ପାଦତଳର ଭୌଗୋଳିକ ପୃଥିବୀ ପଅଷର ଏକ ନିର୍ଦ୍ଦିଷ୍ଟ ଭୂଭାଗକୁ ଯାହାକୁ ବର୍ତ୍ତମାନ କୁହାଯାଉଛି ଭୂସ୍ୱର୍ଗ, ଅର୍ଥାତ୍ ଆମେରିକା। କିନ୍ତୁ ସେଇ ପାଦତଳର ଭୂସ୍ୱର୍ଗରେ ରହିଛି ଏପରି କେତେକ ରହସ୍ୟମୟ ପ୍ରାକୃତିକ ଅଞ୍ଚଳ ଯାହା ଆମେରିକାର ଖୋଦ୍ ଅଧିବାସୀମାନଙ୍କ ପାଇଁ ମଧ୍ୟ ଅବୋଧ ଆଉ ବିସ୍ମୟକର। ସେହିପରି କେତେକ ଅଞ୍ଚଳକୁ ଦୃଷ୍ଟିରେ ରଖି ଲେଖକଙ୍କର ବାରମ୍ବାର ଆମେରିକା ପରିଭ୍ରମଣ ଅନୁଭୂତିରୁ ଏହି ଭ୍ରମଣ କାହାଣୀଟିର ସୃଷ୍ଟି। କିଛି ବର୍ଷ ପୂର୍ବେ ଏହି ଲେଖକଙ୍କର ରଚିତ ଭ୍ରମଣୋପନ୍ୟାସ "ତୃଷ୍ଣା : ଏକ ଅନାବିଷ୍କୃତ ଆମେରିକା" ପ୍ରକାଶ ପାଇ ପ୍ରଭୂତ ପାଠକୀୟ ଆଦୃତି ଲାଭ କରିଛି। କିନ୍ତୁ "ବୈଚିତ୍ର୍ୟମୟ ଦେଶ : ଆମେରିକା ଭ୍ରମଣ" ଅନୁଭୂତି ଏକ ଭ୍ରମଣୋପନ୍ୟାସ ନୁହେଁ ବା ଗତାନୁଗତିକ ଭ୍ରମଣ କାହାଣୀଟିଏ ମଧ୍ୟ ନୁହେଁ। ଏହା ଲେଖକଙ୍କର ଅନ୍ତର୍ଦୃଷ୍ଟି ସମ୍ପନ୍ନ ବିଧିବଦ୍ଧ ଅନ୍ୱେଷଣରୁ ଉପଲବ୍ଧ ଏକ ଭିନ୍ନ ସ୍ୱାଦର ରମଣୀୟ ଭ୍ରମଣ ସାହିତ୍ୟ।